# ଜୀବନ ଓ ଜୀବିକା



ଜଷ୍ଟିସ୍ ହରିହର ମହାପାତ୍ର

Digitized by srujanika@gmail.com

କଟକ

ତା ୦୧-୧୨-୨୦୦୪

ହରିହର ବାବୁଙ୍କ ଆତ୍ମଜୀବନୀ — 'ଜୀବନ ଓ ଜୀବିକା'ର ଏକ ନୂଆ ସଂସ୍କରଣ ମୁଦ୍ରଣ ପାଇଁ ଯାଉଛି । ଅନେକ ଦିନୁ ଏ ପୁସ୍ତକର ଚାହିଦା ଥିଲା ମାତ୍ର ସଂଯୋଗର ଅଭାବ ଥିଲା ।

ହରିହର ବାବୁ ତାଙ୍କ ସମୟରେ ଅନେକ ବିଷୟରେ ଅଦ୍ୱିତୀୟ ଥିଲେ । ଯିଏ ତାଙ୍କ ସହିତ ଚଳିବାର ସୁଯୋଗ ପାଇଛନ୍ତି ତାଙ୍କର ବୋଧହୁଏ ଏହି ମତ । ସେ ମୋର ଶ୍ୱଶୁର — ଓକିଲାତି ବ୍ୟବସାୟରେ ମୋର ଗୁରୁ ଥିଲେ । ମୁଁ ତାଙ୍କ ସହିତ ଆଠବର୍ଷ କାମ କରିବାରେ ଏକ ଦୃଢ ଭିତ୍ତି ପ୍ରସ୍ତୁତ ହୋଇ ଯାଇଥିଲା ଓ ପରବର୍ତ୍ତି ଜୀବନରେ ତାହାରି ସଦ୍‌ବ୍ୟବହାର ମୋତେ ବହୁପରିମାଣରେ ସାହାଯ୍ୟ କରିଥିଲା ।

ହରିହର ବାବୁ ନିଜ ଅସୁବିଧା ପ୍ରତି ଦୃଷ୍ଟି ନଦେଇ ଅନ୍ୟର ସୁବିଧା କରିବାପାଇଁ ଯତ୍ନବାନ ରହୁଥିଲେ । ତାଙ୍କ ବନ୍ଧୁ ଗୋଷ୍ଠୀର ଅନେକଙ୍କଠାରୁ ମୁଁ ଏହି ମତ ପାଇଛି । ନିଜେ ଅଭାବ ମଧ୍ୟରେ ଚଳିଥିବାରୁ ସେ ଅନ୍ୟର ଅଭାବ ଓ ସେ କାରଣରୁ ଜାତ ଅସୁବିଧା ପ୍ରତି ସର୍ବଦା ଯତ୍ନବାନ୍ ଥିଲେ । ରାଜନୀତିରେ ନରହି ସବୁ ମତବାଦଠାରୁ ଦୂରରେ ରହି ସମସ୍ତଙ୍କ ସହିତ ମିଳିମିଶି ରହିବାର ଶକ୍ତି ତାଙ୍କର ଥିଲା । ସମାଜରେ ନିଜର ଅପରିମିତ ଦମ୍ଭ ଓ କ୍ଷମତାର ପ୍ରତିଷ୍ଠା ଥିଲା ତାଙ୍କର । କଥାରେ ଜୋର, କଲମରେ ବଳ ଓ ମୁହଁରେ ହସ ତାଙ୍କର ଶକ୍ତିଗୁଚ୍ଛ । ଆଜିକାର ସମାଜରେ ଏପରି ଜଣେ ଉଚ୍ଚସ୍ତରର ନାଗରିକ ପାଇବା ବିରଳ ।

ତାଙ୍କ ଆତ୍ମଜୀବନୀ ସୁପାଠ୍ୟ । ମୋର ଧାରଣା ବହିର ନୂଆ ସଂସ୍କରଣ ସମାଜର ନୂଆ ପିଢି ପାଇଁ ଏକ ପଥ-ପ୍ରଦର୍ଶକ ହେବ ।

**ରଙ୍ଗନାଥ ମିଶ୍ର**

Digitized by srujanika@gmail.com

ବୈକୁଣ୍ଠ,

ଘେନିଥାନ୍ତ ଆଜି ଆଦରେ
ଏ ଅକିଞ୍ଚନ ଲେଖା
ମିଳିଥାନ୍ତା ଯଦି ଏ ପୁରେ
ସାକ୍ଷାତ ଦେଖା ।
ଲେଖା ନେଇ ଛାପୁ ଥିଲ
ସାହିତ୍ୟେ, ମୁକୁରେ
ଲେଖା ଛାଡନ୍ତେ ଦୋଷିଲ
ସବୁରି ଆଗରେ ।

ଭାଷଣକୁ କହ ମୋର ସାହିତ୍ୟର ଧାରା
ସଙ୍ଖୋଳିଲେ କହ ଏ ଯେ ସ୍ନେହର ପସରା
ଅଦୃଶ୍ୟେ ହୁଅଇ ଦେଖା
ଶୁଭେ ଅଶ୍ରୁତ ଗୀର
ପ୍ରୀତି ଉପହାର ନିଅ
ଅଭୁଲା ସ୍ମୃତିର ।

ହରି

ପରମବନ୍ଧୁ ପରଲୋକଗତ ସବୁଜ କବି
ବୈକୁଣ୍ଠନାଥ ପଟ୍ଟନାୟକ ଅଛନ୍ତି ଯେଉଁଠି,
ଯିଏ ଏ ସେଇଠି ।

Digitized by srujanika@gmail.com

# ସୂଚନା

ଏହା ଏକ ଇନ୍ଦ୍ର ପତ୍ରିକା ନୁହେଁ । ଇତିହାସର ଖସଡା ମଧ୍ୟ ନୁହେଁ । କେତେକ ଘଟନା ଆଧାରିତ ଏକ ରଚନା ମାତ୍ର । ନିଜର ପ୍ରତିକ୍ରିୟା ହୁଏତ କେତେକ ସ୍ଥଳରେ କିଞ୍ଚିତ ପ୍ରକାଶ ପାଇଛି ।

ଏହାର ଅଳ୍ପ ଅଂଶ ସହକାର ମାସିକ ପତ୍ରିକାରେ ଶ୍ରଦ୍ଧାସ୍ପଦ ବିଚିତ୍ରାନନ୍ଦ କରଙ୍କ ଇଚ୍ଛାରେ ଛପା ହୋଇଥିଲା । ତାହା ପୁସ୍ତକ ମଧ୍ୟସ୍ଥ ହେବା ପାଇଁ ତାଙ୍କର ସାନୁଗ୍ରହ ଅନୁମତି ମିଳିଛି । ସେହି ଅଂଶ ଉପରେ କେତେକ ଲବ୍‌ଧପ୍ରତିଷ୍ଠ ସାହିତ୍ୟିକ ବନ୍ଧୁ ଯେଉଁ ଶ୍ରଦ୍ଧାପୂର୍ଣ୍ଣ ସନ୍ତୋଷ ପତ୍ରରେ ପ୍ରକାଶ କରିଥିଲେ, ସେଥିପାଇଁ ମୁଁ ସେମାନଙ୍କ ନିକଟରେ କୃତଜ୍ଞ ।

ହରିହର ମହାପାତ୍ର

Digitized by srujanika@gmail.com

# ସୂଚୀ



Digitized by srujanika@gmail.com

Digitized by srujanika@gmail.com



Digitized by srujanika@gmail.com

# ଶ୍ରୀରାମ

ଜନ୍ମସ୍ଥାନ, ଜନ୍ମଦିନ, ଜନ୍ମସମୟର ଗୁରୁତ୍ୱ କିଛି ଥିଲା ପରି ମନେହୁଏ ନାହିଁ, ବିଶେଷ କରି ଜୀବନର ସାୟାହ୍ନରେ । ପିଲାଦିନେ ବାପ ମା' ସେହି ତିନୋଟି କଥାକୁ କାନିରେ ଗଣ୍ଠି ପକାଇଲା ପରି ସାଇତି ରଖିଥାନ୍ତି । ଜ୍ୟୋତିଷ ଜାତକ ତିଆରି କଲାବେଳେ ତାକୁଇ ଆଧାର କରନ୍ତି । ଦେହ ଭଲମନ୍ଦ ବେଳେ, ସେହି ତିଥି, ବାର, ରାଶି, ନକ୍ଷତ୍ର ଉପରେ ଗଣନା ଚାଲେ । ପାଠ ପଢ଼ିବ କି ନାହିଁ, ଧନ ରୋଜଗାର ହେବ କି ନହେବ, ମାନ ମର୍ଯ୍ୟାଦା କେତେ ମିଳିବ, ଏକ ନା ବହୁ ବିବାହ, ଏ ସବୁ ନିର୍ଦ୍ଧାରିତ ହୁଏ ଭବିଷ୍ୟତବାଣୀରେ ସେହି ଗଣନା ଉପରେ । ଗଣନା ଅଭ୍ରାନ୍ତ ବୋଲି ବିଶ୍ୱାସ ରହିଥାଏ, ବିପରୀତ ଘଟିବାଯାଏ । ବାପ ମା' ପିଲାର ଭାଗ୍ୟଫଳ ଜନ୍ମବେଳୁ ଜାଣିବା ପାଇଁ ଆଗ୍ରହୀ ହେବା ସ୍ୱାଭାବିକ୍ । କାରଣ ଯାହାକୁ ସେ ଜନ୍ମ ଦେଲେ, ତାର ଜୀବନ ନିୟନ୍ତ୍ରଣ କରିବାର ସାମର୍ଥ୍ୟ ତାଙ୍କର ବଡ଼ ସୀମିତ । ସେ ଜୀବନର ଆରମ୍ଭ ଯଦିଓ ନିଶ୍ଚିତ ହେଲା ଅନ୍ତୁଡିଶାଳର କୁଆଁ କୁଆଁ କାନ୍ଦରୁ, ତାହାର ଶେଷ ପିତା ମାତାଙ୍କର ଇସାରାର ବାହାରେ । ଅଜ୍ଞାତକୁ ଜ୍ଞାନର ପରିସର ଭିତରକୁ ଆଣିବା ପାଇଁ ଆପ୍ରାଣ ଚେଷ୍ଟାର ନିଦର୍ଶନ ଜ୍ୟୋତିଷଶାସ୍ତ୍ର । ଆଗକୁ ଜାଣିବା ପାଇଁ ସିନା ତାହାର ସହାୟତା ଲୋଡା, ପଛକୁ ଚାହିଁବାବେଳେ ତାକୁ ବିଚାରି କି ଲାଭ ?

ମା' କାଖରେ, ବାପ କାନ୍ଧରେ ତୀର୍ଥଯାତ୍ରା ହୁଏ ନାହିଁ । ନିଜ ପାଦରେ ଚାଲିଲେ ପଥଚାରଣା ଆରମ୍ଭ ହୁଏ । କେବେ ତାହାହେଲା ମନେ ନାହିଁ । ବହୁ ବର୍ଷ ତ ବିତିଗଲାଣି । ଲଙ୍ଗଳା ହୋଇ ହଳଦି ଲଗାଇ ଘର ବାଡିଆଡେ ପଡିଶା ଘର ଏକା ବୟସର ପିଲାଙ୍କ ସାଙ୍ଗରେ ରାମ ରାବଣ ଖେଳିବା, କନିଅର ସରୁଡାଙ୍ଗର ଧନୁ ସାଙ୍ଗକୁ ଖଡିକା ଶର ସଜାଡି ଚାକୁଣ୍ଡାଗଛ ଅସୁରକୁ ଧରାଶାୟୀ କରିବା ନିଜସ୍ୱ ଶକ୍ତିର ପ୍ରଥମ ପରିଚୟ । ଏକଥା ସ୍ମରଣ କଲାବେଳକୁ ଆଜି ମନରେ ଆଶ୍ଚର୍ଯ୍ୟବୋଧ

Digitized by srujanika@gmail.com

ଆସୁଛି । ଖେଳରେ ଯେଉଁ ରାମ ଆସିଥିଲେ, ସେହି ପୁଣି ଆସିଲେ ଅଦ୍ଭୁତ ଭାବରେ ମୂର୍ତ୍ତିମନ୍ତ ହୋଇ ବନାରସରୁ ସ୍ୱଇଚ୍ଛାରେ ଦୂର ସମ୍ପର୍କୀୟ ଏକ ଆତ୍ମୀୟଙ୍କର ଆଶ୍ରୟରେ । ଖେଳଥିଲା ଗାଁରେ-ସାକ୍ଷୀଗୋପାଳ ପାଖ ବିଶ୍ୱନାଥ ପୁରରେ । ମୂର୍ତ୍ତି ମିଳିଲେ କଟକ ଚାନ୍ଦିନିଚଉକରେ । ୧୯୩୨ ମସିହା ଶେଷ ବେଳକୁ ଓକାଲତି ଆରମ୍ଭ କରି ଦୁଃସାହସରେ ୧୯୩୭ ମସିହା ଜାନୁୟାରୀ ପହିଲାଦିନ ଚାନ୍ଦିନିଚଉକ ଛକ ପାଖରେ ଘର ତୋଳିବା ଆରମ୍ଭ କରି, ମେ ମାସ ୨୨ ତାରିଖରେ ସେ ଘରକୁ ଆମେ ଆସିଲୁ ରହିବାକୁ । ଏକତାଲା ଚଳିବା ଭଳି ହୋଇଥାଏ । ବାହାରପଟ ବାରଣ୍ଡା, ପୋର୍ଟିକୋ ବାକୀ ଥାଏ । ସେହି ବର୍ଷ ଶେଷକୁ ତାହା ସରିଲା । ସେହି ସାଙ୍ଗରେ ସିଡିଘର ଓ ଠାକୁର ଘର ମଧ୍ୟ ହେଲା । ଦୋତାଲା ସରୁ ସରୁ ଆଉ ବର୍ଷେ ବିତିଗଲା । ଆମ ଶୋଇବା ତଳୁ ଉପରକୁ ଯିବା ପରେ, ଦିନେ ସକାଳୁ ମୁଁ ବାହାର ବାରଣ୍ଡାକୁ ଆସି ଦେଖେ ଯେ ଜଣେ ବୟସ୍କ ଲୋକ ବୁଜୁଳାଟିଏ ପାଖରେ ରଖି ଶୋଇଛନ୍ତି । ଭାବିଲି ମହକିଲ କିଏ ଆସିଥିବ । ଓକିଲ ଘରେ ରାତିଅଧିଆ ଲୋକେ ଆସି ଏପରି ଅପେକ୍ଷା କରିଥାଆନ୍ତି । ମୋ ଖଡ଼ବଡ଼ରେ ଲୋକଟି ଉଠି ବସିଲେ । ଗୌରବର୍ଣ୍ଣ, ସ୍ମିତହାସ, ନିଃସଙ୍କୋଚ ଚାହାଣୀ । ମୋ ନମସ୍କାରକୁ ଅପେକ୍ଷା କରୁଥିଲେ ବୋଧହୁଏ । କହିଲେ ବନାରସରୁ ଆସିଲେ, ରାତିରେ ଟ୍ରେନ୍‌ରୁ ଓହ୍ଲାଇ ଏଠାରେ ପହଞ୍ଚିଲା ବେଳକୁ ଆମେ ସବୁ ଶୋଇପଡିଥିଲୁ । ଫାଟକ ଖୋଲାଇ ବାରଣ୍ଡାକୁ ଆସିଲା ବେଳକୁ ପ୍ରାୟ ପାହାନ୍ତିଆ । ଝାପ୍ସା ଝାପ୍ସା ମନରେ ଚିହ୍ନିଲି, ମୋ ପିଇସିନାନୀଙ୍କ ଜୋଇଁ ମହେଶ୍ୱର ମିଶ୍ରେ ବୋଧ ହୁଏ । ପଚାରିପାରୁ ନଥାଏ । ବହୁ ବର୍ଷ ତଳେ ଦେଖିଥିଲି । ମତେ ସେତେବେଳେ ୮/୯ ବର୍ଷ । ଦଦେଇଙ୍କ ସାଙ୍ଗରେ ପରିବାରର ସବୁ ଯାଉଥିଲୁ ଗଞ୍ଜାମ କୋଦଳା ପାଖ ମଧୁସୂଦନପୁର ଗାଁକୁ । ବାଟରେ ରହିଲୁ ଖଲ୍ଲିକୋଟ ଗଡରେ ଜଣଙ୍କ ଘରେ । ଉଚ୍ଚ ପଥର ପିଣ୍ଡା । ଅଣଓସାରିଆ ଘର ଦୁଇବଖରା । ମୋ'ଠାରୁ ୮/୧୦ ବର୍ଷ ବଡ଼ ଗୋରା ତୋରା ଭେଣ୍ଡା ଜଣେ ସେ ଘରେ ଥାଆନ୍ତି । ତାଙ୍କ ମୁରବିମାନେ ଆମକୁ ଚର୍ଚ୍ଚା କଲେ, ଯେଉଁ ଓଲିକ ତାଙ୍କ ଘରେ ଆମେ ରହିଲୁ । ଶୁଣିଲି ସେ ଆମ ବନ୍ଧୁ ବାନ୍ଧବ । ନନାଙ୍କର ପାଞ୍ଚ ଭଉଣୀଙ୍କ ମଧ୍ୟରୁ ବଡ଼ ଦୁଇ ଭଉଣୀ ମଧୁସୂଦନପୁରରେ ଗୋଟିଏ ପରିବାରରେ ଦୁଇ ଭାଇକୁ ବିବାହ ହୋଇଥିଲେ । ଜଣେ ଜେଜେନାନୀ, ଆଉଜଣକ ବାଇକୋଳିନାନୀ । – ବାଇକୋଳି ନାନୀଙ୍କ ପୁଅ ବ୍ରତ ହେଉଥାଏ ବୋଲି ଦଦେଇ ଆମକୁ ନେଇ ଯାଉଥାନ୍ତି । ସେତେବେଳେ ବସ୍ କଥା ଶୁଣା ନ ଥିଲା । ଗୋରୁ ଗାଡିରେ ଦୂରାନ୍ତରକୁ ଯାଇପାରିଲେ

Digitized by srujanika@gmail.com

ବଡ଼ ଭାଗ୍ୟର କଥା । ନଚେତ୍ ଠା'କୁ ଠାଏ ଥକ୍କାମାରି, ଚାଲିକରି ଯିବା ସାଧାରଣ କଥା । ଛୋଟ ପିଲାଏ କିଛି ବାଟ ଚାଲିବେ, କିଛି ବାଟ କାଖହେବେ । ବାଟରେ ଗାଳି ଖାଉଥିବେ, ଆକଟ ଶୁଣୁ ଥିବେ ଯଦି ଭୋକ ହେଲାବୋଲି କହିବେ କି ଗୋଡ଼ ବିନ୍ଧିଲାବୋଲି ଧିମାଇବେ । ମଧୁସୂଦନପୁରର ମୋ ଦି' ପିଇସାଙ୍କ ମଧ୍ୟରୁ ଯେ ବୋଇକୋଳି ନାନୀଙ୍କୁ ବିବାହ କରିଥିଲେ, ତାଙ୍କର ଉପାଧି ଥିଲା ଭାରତୀ ଭୂଷଣ । ସେ ସଂସ୍କୃତ ପଢ଼ିଥିଲେ, ଆଖପାଖରେ ପଣ୍ଡିତ ବୋଲି ଖାତିର ଥିଲା । ଜମି କିଛି ଥାଇ ଗାଁରେ ପାରିବାରଘର । ସେବେ ବ୍ରତ, ବିବାହ, ଶୁଦ୍ଧିକୁ ଆସୁଥିଲେ କୁଟୁମ୍ବ, ଆତ୍ମୀୟ ବନ୍ଧୁବାନ୍ଧବ । ସୂର୍ଯ୍ୟବନ୍ଧୁ ଥିଲେ ବେଳେବେଳେ ଆସନ୍ତି । ସାଙ୍ଗସୁଖଙ୍କୁ ଡାକିବା ରୀତି ନ ଥିଲା । ଏବର କଥା ଭିନ୍ନେ । ବନ୍ଧୁ କୁଣିଆଙ୍କ ଅପେକ୍ଷା ଆଜିକାଲି ଡାକରା ବେଶି ହୁଏ ଯେଉଁ ମାନଙ୍କ ସାଙ୍ଗରେ ଲୋକେ ଚଳୁଛନ୍ତି ବା ଯାହାଙ୍କ ପାଖରେ ଉପକୃତ । ସାମାଜିକ ବନ୍ଧନ ଟାଣ ନ ଥିଲେ, ଆମେ ଏତେ ବାଟରୁ ଯାଇ ନଥାନ୍ତୁ, ବ୍ରତଘରେ ଯୋଗ ଦେବାପାଇଁ । ସେହି ସମୟରେ ଆତିଥ୍ୟ ପାଇବା ଘରେ ଖଲିକୋଟ ଗଡ଼ରେ ଯେଉଁ ଭେଣ୍ଡିଆଙ୍କୁ ଦେଖିଥିଲି ଏବଂ ବ୍ରତଘର ଗହଳିରେ ପୁଣି ଅଳ୍ପ ଦେଖିଲି, ତାଙ୍କରି ମୁହଁର ଛାପ ମୋ ମନର କେଉଁ କୋଣରେ ପଚିଶ ବର୍ଷ ଲୁଚି ରହିଥିଲା କେଜାଣି, ଉଙ୍କିମାରି ଉଠିଲା ବନାରସରୁ ଆସିଥିବା ଆଗନ୍ତୁକଙ୍କୁ ଦେଖି; ବାଇକୋଳି ପିଉସିନାନୀଙ୍କ ଝିଅ ନିମନାନୀଙ୍କ ସ୍ୱାମୀ ଖଲିକୋଟ ରଜାଙ୍କ ରାଜପୁରୋହିତ ବଂଶର ମହେଶ୍ୱର ମିଶ୍ରେ ବୋଧହୁଏ । ସେ ପରିଚୟ ଖୋଲୁ ନଥାନ୍ତି । ଭାବୁଥାନ୍ତି ବନ୍ଧୁଘର, ଅବଶ୍ୟ ଚିହ୍ନିଥିବେ । କିନ୍ତୁ ପଚିଶ ବର୍ଷ ଉପରେ ଦେଖା ସାକ୍ଷାତ ନାହିଁ, ପଚରା ଉଚରା ଶୂନ୍ୟ । ଖାଲି ଶୁଣିଥିଲି, ରାଜାଙ୍କ ବ୍ୟବହାରରେ ଅପମାନ ବୋଧ କରି ସେ ରାଜ୍ୟ ଛାଡି ଚାଲିଯାଇଥିଲେ ବନାରସ । ରୁଷାରୁ ହୁଏ ରୋଷ । ସେଠାରେ କିଛି ସଂସ୍କୃତ ଚର୍ଚ୍ଚା ଓ ବ୍ରାହ୍ମଣ୍ୟ କର୍ମ କରି ଗୁଜରାଣ ମେଣ୍ଟାଉଥାନ୍ତି । ପିଲାଙ୍କୁ ପାଖକୁ ନେଇ ଯାଇଥିଲେ । ବହୁବର୍ଷ ପରେ ଏବେ ଏକାକୀ ଫେରିଛନ୍ତି । ଅକୁହାରେ ବହୁକଥା କୁହାଯାଏ, କ୍ଷୀଣ ସ୍ମୃତିର ସଂଘର୍ଷରେ, ସମ୍ପର୍କ ଜାଗେ ଅତର୍କିତରେ । ବନାରସରେ ଥିଲେ କଅଣ ହେଲା, ତୀର୍ଥଯାତ୍ରାରେ ଖଲିକୋଟ ଅଞ୍ଚଳରୁ ଯେ ଯାଉଥିଲେ, ତାଙ୍କ ସହିତ ତ ଭେଟ ହେଉଥିଲା । ମଝିରେ ମଝିରେ ବନ୍ଧୁବାନ୍ଧବ ମଧ୍ୟ ହାବୋଡି ଯାଉଥିଲେ । ଦୂରରେ ରହିଲେ ଦୂର ସମ୍ପର୍କୀୟଙ୍କ ପ୍ରତି ନିକଟଭାବ ଜାଗେ । ସେ ଖବର ଅନ୍ତର ପାଉଥିଲେ ଆମ ଘର ବିଷୟରେ । ମିଶ୍ରେ ଯେତେ ନ ଥିବେ, ତାଙ୍କ ସ୍ତ୍ରୀ (ନିମନାନୀ) ମୋ ନନା, ଦଦେଇଙ୍କର ଭାଣିଜୀ ବୋଲି ମାମୁଁଘର କଥା ପଚରା

Digitized by srujanika@gmail.com

ପଚରି କରିବା ସ୍ୱାଭାବିକ । ମୁଁ ପଢ଼ାସାରି, କଟକରେ ଓକାଲତି କରୁଥିବା ଖବର ତାଙ୍କ ପାଖେ ପହଞ୍ଚିଥିଲା । ଓଡିଆ ବଜାରରେ ରହୁଥିବା ସେ ଶୁଣିଥିଲେ । ତେଣୁ ଟ୍ରେନ୍‌ରୁ ଓହ୍ଲାଇ ସେଠାକୁ ଯାଆନ୍ତି । ସେଠି ବୁଝିଲେ ଯେ ଆମେ ଚାନ୍ଦିନିଚଉକରେ ରହୁଛୁ । ଆଗରୁ ସମ୍ବାଦ ନ ଦେଇ କାହାଘରେ ପହଞ୍ଚିବା ସିନା ଆଜିକାଲିର ଆଦବ କାଏଦା ବହିର୍ଭୂତ, ମହେଶ୍ୱର ମିଶ୍ରଙ୍କ ବିଚାରରେ ବନ୍ଧୁଘରକୁ ଯିବାରେ ଏତେ ଲଘା ପଘା କଅଣ-ବିଶେଷକରି ଯେଉଁ ଉଦ୍ଦେଶ୍ୟରେ ସେ ଆସିଛନ୍ତି । ବୟସରେ ବଡ଼, ନାନାଙ୍କ ଭାଣିଜି ଜ୍ୱାଇଁ, ଦୂରାଗତ କୁଣିଆଙ୍କୁ ଘର ଭିତରକୁ ନେଲି । ଗାଧୁଆ ନିତ୍ୟକର୍ମ ସାରି, ମିଶ୍ରେ ପଚାରିଲେ, ଦିଅଁଙ୍କ ଘର କରିଛଟି ?

ଠାକୁରଘରକୁ ଗଲାବେଳକୁ ବୁଜୁଲା ଭିତରୁ ଛୋଟ ପୁଟୁଳାଟିଏ ହାତରେ ଧରିଲେ । ଠାକୁରଘରର ମାଲିକ ମୋ ସ୍ତ୍ରୀ । ସେ ରଖି ଥାଆନ୍ତି, ଛୋଟ ମହାଲକ୍ଷ୍ମୀଙ୍କ ମୂର୍ତ୍ତି ଏବଂ ଆଉକିଛି ଫରୁଆ ପ୍ରଭୃତି । ଘର ଭିତରେ ସିଂହାସନ ଗଢ଼ା ହୋଇଥାଏ କିନ୍ତୁ ତଦୁପଯୋଗୀ ମୂର୍ତ୍ତି ନଥାନ୍ତି । ମହେଶ୍ୱର ମିଶ୍ରେ ପୁଟୁଳିଟି ଖୋଲି ବାହାର କଲେ ପିତଳ ମୂର୍ତ୍ତି ତିନୋଟି, ରାମ, ଲକ୍ଷ୍ମଣ, ସୀତା । ଆମେ ଦି' ପ୍ରାଣୀ ଆଶ୍ଚର୍ଯ୍ୟ । ମୋ ସ୍ତ୍ରୀଙ୍କର ସେହି ସମୟରେ ଯେଉଁ ପ୍ରଶାନ୍ତ ହସ, ତୃପ୍ତ ଦୃଷ୍ଟି ବାହାରିଲା ତାହା ଅତୁଳନୀୟ । କଦାଚିତ୍ ଏପରି ବିହ୍ୱଳ ଭାବର ପ୍ରକାଶ ମିଳେ ।

ମିଶ୍ରଙ୍କର ମୁଁ ଶଳା ଲେଖା ହେବି । ସେ ଭିଣୋଇ । ଅକୁଣ୍ଠରେ ତାଙ୍କ ପାଦଛୁଇଁ ମୋ ସ୍ତ୍ରୀ ପ୍ରଣାମ କଲେ । ତିନିହେଁ କିନ୍ତୁ ନିର୍ବାକ୍ । ସେହିପରି ନିର୍ବାକ ମଧ୍ୟ ସେହି ତିନୋଟି ମୂର୍ତ୍ତି ସିହାଂସନର ତଳ ପାହାଚ ଉପରେ । ତିନିଜଣଙ୍କର ଦୃଷ୍ଟି ତାଙ୍କରି ଉପରେ ନିବିଷ୍ଟ । ଅପ୍ରତ୍ୟାଶିତ ଅନୁଗ୍ରହ ପ୍ରାପ୍ତିରେ ସ୍ତ୍ରୀ ନିବେଦନ କରୁଥାନ୍ତି ଅସ୍ପଷ୍ଟ କୃତଜ୍ଞ ଅଭିବାଦନ, ମୁଁ ଚାହିଁଥାଏ ଅପଲକ ନେତ୍ରରେ କମନୀୟ କାନ୍ତିକୁ । ଅଭିଷ୍ଟ ସିଦ୍ଧିଭାବରେ ମିଶ୍ରେ ହାତଯୋଡି ବସି'ଥାନ୍ତି । କଥା କାହାରି ନାହିଁ, କିନ୍ତୁ ପ୍ରଶ୍ନ ଉତ୍ତର ପାଇଁ ତ ସବୁବେଳେ ଭାଷା ଲୋଡା ନ ଥାଏ । ଏକ ମନର ଭାବନା ଅନ୍ୟ ମନରେ ଜଗାଏ ସ୍ପନ୍ଦନ । ପ୍ରଶ୍ନ ବୁଝି ଉତ୍ତର ଆସେ ଆପେ ଆପେ । ଦୂରରେ ଥିବା ଲୋକଙ୍କ ଭିତରେ ଏପରି ବିନିମୟ ହେବା ପଢ଼ାଶୁଣାର କଥା; କିନ୍ତୁ ପାଖାପାଖି ଆମ ତିନିଜଣଙ୍କର ଏହା ସହଜ ଅନୁଭୂତି ।

ମିଶ୍ରେ କହିଲେ ଗଞ୍ଜାମି ଉଚ୍ଚାରଣରେ । ହିନ୍ଦିରାଜ୍ୟରେ ବାରବର୍ଷ ରହିଲେ କଣ ହେବ, ଘର ଭିତରେ ସ୍ୱାମୀ, ସ୍ତ୍ରୀ ପିଲାଙ୍କ ମଧ୍ୟରେ ଜନ୍ମଗତ ଉଚ୍ଚାରଣ ଯାଉଛି କେତେକେ । ଉଚ୍ଚାରଣ ସଙ୍କେତରୁ କୌଳିକ ଐତିହ୍ୟ ଯେପରି ବିବେଚନା

Digitized by srujanika@gmail.com

କରିବା ସମ୍ଭବପର ହୁଏ, ସେହିପରି ଧମନୀରକ୍ତ ଯାଞ୍ଚରୁ ପିତୃତ୍ୱ ସ୍ଥିର କରାଯାଏ । କେତେକ ଦୈହିକ ମୌଳିକ ରୀତି ବଂଶ ପରମ୍ପରାରେ ଲୁକ୍କାୟିତ ରହି, ହଠାତ୍ ଅତର୍କିତ ଅବସ୍ଥାରେ ବାହାରିପଡ଼ି ଦେହବାହୀକୁ ଚିହ୍ନଟ କରାଇ ଦେବାର ଦୃଷ୍ଟାନ୍ତ ରହସ୍ୟମୟ ଉପନ୍ୟାସରେ କେବଳ ନୁହେଁ, ଅପରାଧ ଗବେଷଣା ଇତିବୃତ୍ତିରେ ମଧ୍ୟ ଦେଖାଯାଏ । ରୂପ, ଆକୃତି, ଅସ୍ତ୍ରୋପଚାର ଓ ପ୍ରଲେପ ସାହାଯ୍ୟରେ ଚିହ୍ନା ବାରି ନହେବା ପାଇଁ କିଛି ବଦଳା ଯାଇପାରେ, କିନ୍ତୁ ଜୈବିକ ଭିତ୍ତିଗତ ରୀତି ସ୍ଥାୟିତ୍ୱନୀତି ଅବଲମ୍ବନ କରି ବଂଶାନୁକ୍ରମେ ଚାଲିଥାଏ । ବହୁ ଶତାବ୍ଦୀ ପୂର୍ବେ ଇଂଲଣ୍ଡ ଓ ସ୍କଟଲ୍ୟାଣ୍ଡରୁ ଯେଉଁ ଅଧିବାସୀମାନେ ଦେଶ ଛାଡି ଆମେରିକାରେ ବସବାସ କରୁଛନ୍ତି, ସେମାନଙ୍କର ଭାଷା ଇଂରାଜୀ ଥିଲା ଓ ଅଛି କିନ୍ତୁ ଉଚ୍ଚାରଣରେ ଭେଦ ଥିଲା ଏବଂ ଏବେ ବି ଧରା ପଡିଲାଭଳି ରହିଛି । ମହେଶ୍ୱର ମିଶ୍ରଙ୍କର ତ ମୋଟେ ବାରବର୍ଷ ଦେଶତ୍ୟାଗ । ଗଞ୍ଜାମର ଭଞ୍ଜ କୌଳିନ୍ୟ ଭାଷା, ଶବ୍ଦପୂର୍ଣ୍ଣତା ଉଚ୍ଚାରଣ ଏତେ ସହଜେ ଯିବ କୁଆଡେ । ବାପେ ତାଙ୍କର ପ୍ରଖ୍ୟାତ ସଂସ୍କୃତିଜ୍ଞ ଥିଲେ । ସେ ଛିଟିକା କିଛି ୟାଙ୍କର ମଧ୍ୟ ଥିଲା । ଦେବ ଦେବୀଙ୍କ କଥା କହିଲା ବେଳେ ମହିମା ଉପଯୋଗୀ ସମ୍ମାନସୂଚକ ଭାଷା ଲୋଡାହୁଏ । ଯେ ସଂସ୍କୃତ ଜାଣେ, ସେଥିରୁ ଶବ୍ଦ ଆଣେ । ଯେ ସେଥିରେ ଅପାରଗ, ଓଡିଆ ଏକବଚନ ସ୍ଥଳେ ବହୁବଚନ, ତୁମେ ବଦଳରେ ଆପଣ, ଶୁଣ ଯାଗାରେ ଶୁଣିବା ହେଉ ଇତ୍ୟାଦି ପ୍ରୟୋଗ କରି ଅବସ୍ଥାର ମହନୀୟତା ପ୍ରକାଶ କରିବାର ଚେଷ୍ଟା କରନ୍ତି । ଏହି ଧରଣର ଅନ୍ୟ ଏକ ପରିଚୟ ପୁରୀ ବ୍ରାହ୍ମଣ ଶାସନ ଭିତରେ ଆଗେ ମିଳୁଥିଲା । ତୁମେ କେତେବେଳେ ଆସିଛ ପଚାରିବା ଉଦ୍ଦେଶ୍ୟରେ ମାନ୍ୟାର୍ଥେ ଆପଣ କେତେବେଳେ ଆସିଛ ବୋଲି କୁହାଯାଉ ଥିଲା । ବ୍ରାହ୍ମଣେତର ଜାତିର ଲୋକଙ୍କ ମଧ୍ୟରେ ଉଚ୍ଚନାଗରିକତ୍ୱ ବା ସମ୍ମାନ ଦେଖାଇବା ଆବଶ୍ୟକ ମନେହେଲେ ସେ ପ୍ରକାର ଭାଷା ମଧ୍ୟ ଚାଲେ । ପ୍ରାୟ ମାସକ ତଳେ ପୁରୀପାଖ ଗୋଟିଏ ଗାଁକୁ କିଛି ସମୟ ପାଇଁ ଯାଇଥିଲି । ଗାଁରେ ସମସ୍ତେ ଚାଷୀକୁଳ । ଆଦରରେ ଆପ୍ୟାୟିତ ହେଲି । ଜଣେ ପୁରୁଖା ଲୋକ ମୁଖରୁ ବାରମ୍ବାର ଶୁଣୁଥାଏ, ଆପଣ ଆସିଛ, ଆମର କେତେ ଭାଗ୍ୟ ।ଏହିପରି କେତେକ ଅସହଜ ଶବ୍ଦ ପ୍ରୟୋଗ ଭିତରେ ମିଶ୍ରଙ୍କର ବୟାନ ଶ୍ରୁତିମଧୁର ହେଉଥାଏ । ବୟସରେ କନିଷ୍ଠ ଥିବାରୁ ମତେ ତମେ କହିବା ତାଙ୍କର ସ୍ୱାଭାବିକ । ମଝିରେ ମଝିରେ ଆପଣ ସମ୍ବୋଧନ ସ୍ନେହସୂଚକ ସମ୍ମାନ ମନେ କରୁଥିଲେ । ପୁରୀ ଶାସନୀ ଢ଼ଙ୍ଗ ତାଙ୍କର କିଛି ଥିଲା । ପୂର୍ବ ବଂଶ ବ୍ରାହ୍ମଣ ଶାସନରୁ ଯାଇ ଖଲିକୋଟ ରାଜ ଆଶ୍ରିତ ହୋଇଥିଲେ ।

Digitized by srujanika@gmail.com

ଉପରନ୍ତୁ, ସେହିପରି ପୁରୀ ଶାସନରୁ ଯାଇ ମଧୁସୂଦନପୁରରେ ଘର ବାନ୍ଧିଥିବା ପରିବାରରେ ବିବାହ କରି ସେ ଢ଼ଙ୍ଗ ଦ୍ୱିଗୁଣିତ ହୋଇଥାଏ । ଆମସାଙ୍ଗେ ମେଳ ଖାପ ଖାଇଲା ପ୍ରାୟ, ଉଚ୍ଚାରଣରେ ଦୀର୍ଘତା ଯଦିଓ ଭିନ୍ନ ।

କହିଲେ, ପ୍ରାୟ ଦୁଇ ବର୍ଷ ହେଲା ଏହି ତିନିଟି ମୂର୍ତ୍ତି କିଣି ରଖିଛନ୍ତି । ଯେଉଁବାଟେ ପ୍ରାୟ ପ୍ରତିଦିନ କାଶୀବିଶ୍ୱନାଥ ମନ୍ଦିରକୁ ଯାଆନ୍ତି, ସେହିବାଟରେ କେତୋଟି ପିତଳ, ପଥର, ସଙ୍ଗମଲମଲ ମୂର୍ତ୍ତିବିକା ଦୋକାନ । ଶିବ, ପାର୍ବତୀ ମୂର୍ତ୍ତି ବେଶି ଥାଏ । ଗୋଟିଏ ଦୋକାନରେ ଏହି ରାମ, ଲକ୍ଷ୍ମଣ, ସୀତା ମୂର୍ତ୍ତି ଥାଆନ୍ତି । କେତେଥର ତାଙ୍କର ଦୃଷ୍ଟି ପଡ଼ିଛି । ନ ଦେଖିଲା ପରି ଦେଖନ୍ତି, ଆସନ୍ତି । ଏମିତି କଟିଲା କେତେଦିନ । ରାତିରେ ଦିନକର କେତେକ'ଣ ସ୍ୱପ୍ନ ଭିତରେ ସେହି ଦୋକାନ କଥା ମନେ ଆସିଲା । ସକାଳେ ଅସ୍ପଷ୍ଟ ସଙ୍କେତ ବୋଲି ଭାବିଲେ । ଦୋକାନୀକୁ ଦାମ ପଚାରି ନିଜର ଅକୁଳାଣ ସମ୍ବଳ ଯୋଗୁ ତୁନି ରହିଲେ । କିଛି ଦିନ ପରେ ପୁଣି ମୂଲ୍ୟର ପ୍ରଶ୍ନ । ଏଥର ଦୋକାନୀ ଟିକିଏ ପ୍ରସନ୍ନ । ବ୍ରାହ୍ମଣର ଆଗ୍ରହ ଦାମ ଭରଣାରେ ମଧ୍ୟ ଏକ ଅଂଶ । ବାକି ଯାହା, ମିଶ୍ରଙ୍କ ସଙ୍ଗତି ଭିତରେ । ମୂର୍ତ୍ତି ତିନୋଟି ଆଣିଲେ । ଘରେ ନିମନାନୀ (ତାଙ୍କ ସ୍ତ୍ରୀ) ଦେଖି ଖୁସି । କିନ୍ତୁ ମୂର୍ତ୍ତି ରହିଲେ ଯେପରି ଥିଲେ ଦୋକାନରେ । ମିଶ୍ରେ ଶାକ୍ତ, ଘରେ ଦୁର୍ଗା ଠାକୁରାଣୀ । ରାମ ଉପାସକ ଯଦିଓ ନୁହଁନ୍ତି, ଆଣିଥିଲେ ଆଗ୍ରହରେ ରାମଙ୍କୁ କାହିଁକି ? ଏ ପ୍ରଶ୍ନର ଉତ୍ତର ଆମ ପାଖରେ ନ ଥିଲା । ତାଙ୍କ ପାଖରେ ମଧ୍ୟ ନାହିଁ । ମୁଁ ଭାବିଲାବେଳକୁ, ଆମ ଘର ତୋଳା ଆରମ୍ଭ, ତାଙ୍କ ମୂର୍ତ୍ତିକିଣା ପ୍ରାୟ ଏକା ସମୟ । ଦୁଇ ବର୍ଷରୁ କିଛି ଅଧିକ ବିତିଲା, ମନ ହେଲା ଥରେ ଜନ୍ମସ୍ଥାନକୁ ଆସିବେ । ଚୋରକୁ ମାନ କରି ଖପରାରେ ଖାଇ କି ଲାଭ ? ଜନ୍ମମାଟି ସଙ୍ଗେ ଜୀବନର ସମ୍ବନ୍ଧ ଅଚ୍ଛିନ୍ନ । ଇନ୍ଦୁଡିଶାଳ ଆଉ ଶ୍ମଶାନ ଗାଁର ଅଭେଦ୍ୟ ସ୍ଥଳୀ । ରାଜା ସିନା ଅବିବେକୀ ହେଲେ, ଗାଁ ଲୋକଙ୍କର ବା କି ଦୋଷ ? ଯାହାଙ୍କ ସଙ୍ଗେ ସୁଖ ଦୁଃଖ ଏତେ ବର୍ଷ ଧରି ଚଳି ଆସିଥିଲା ତାଙ୍କୁ ଛାଡି ନୂଆ ଜାଗାରେ ନୂଆ ଲୋକଙ୍କୁ ଯେତେ ଆବୋରିଲେ କଅଣ ହେବ, ସେମାନେ ମୁହଁର ସଙ୍ଗାତ, ପ୍ରାଣର ମିତ ନୁହନ୍ତି । ଗଡକୁ ଯାଇ ବାସଡିହ ସଜାଡି ପୁଣି ରାଜ ପୁରୋହିତ ଆଧି ଠିଆ କରାଇବାକୁ ଇଚ୍ଛା । ସ୍ତ୍ରୀ, ପରିବାର ରହିଲେ ବନାରସରେ, ମିଶ୍ରେ ବାହାରିଲେ ବାସସ୍ଥଳୀ ତନଖି କରିବାକୁ । ସାଙ୍ଗରେ ବୁଜୁଳା, ତା' ଭିତରକୁ ଆସିଲେ ତିନି ମୂର୍ତ୍ତିଙ୍କ ପୁଟୁଳା । ନିମନାନୀ ପଚାରିଲେ, ତାଙ୍କୁ କାହିଁକି ନଉଚ ? ଉତ୍ତର, ବାଟରେ କଟକଠି ହରିବାବୁଙ୍କ ଘରେ ଦେଇଯିବି । ଏ କଥା ତ ଆଗରୁ ଭାବି ନ ଥିଲେ ।

Digitized by srujanika@gmail.com

ହଠାତ୍, ମନକୁ ଆସିଲା ବୁଜୁଳା ବାନ୍ଧିବା ବେଳେ । ଏବେ ଆସି ପହଞ୍ଚିଛନ୍ତି ଆମ ଘର ଖୋଜି । କାଲିଯିବେ ଖଲିକୋଟ । କହିଲେ, ଘରେ ସିଂହାସନ କରିଚ, ଦିଅଁ ଥିଲେ ଆସିବାକୁ, ଏବେ ଆସିଲେ । ଆମେ କୃତ୍ୟ କୃତ୍ୟ, ସେ ନିରୁଦ୍‌ବେଗ । ମୂର୍ତ୍ତିମାନଙ୍କ ଦାମ ପଚାରିବାକୁ କି ଯାଚିବାକୁ ଆମର ବହପ ପାଇଲା ନାହିଁ । ଯାହା ଘଟନା, ଦାମ ତ ଅମୂଲ୍ୟ । ରାମ ଭକ୍ତି ମୋ ସ୍ତ୍ରୀଙ୍କର ପିଲାଦିନୁ । ତାଙ୍କ ମା (ପିତାମହୀ) ବେଶି ବୟସର ନୁହେଁ, ବିଧବା ଥିଲେ । ତିନିପୁଅ, ଦୁଇଝିଅ ତାଙ୍କର । ବଡ଼ ପୁଅଙ୍କର ବଡ଼ଝିଅ ମୋ ସ୍ତ୍ରୀ । ଆଉ ଦି'ପୁଅ ଅଲଗା ଅଲଗା ଥାଆନ୍ତି । ସକାଳୁ ଉଠି ଗାଧୁଆ ପାଧୁଆ ପରେ, ଦେବାର୍ଚ୍ଚନ ତାଙ୍କର ପ୍ରଧାନ କାର୍ଯ୍ୟ ଥିଲା । ବଡ଼ ନାତୁଣୀକି ବରାଦ, ସବୁଦିନ ସକାଳୁ ୧୦୮ ତୁଳସୀ ପତ୍ରରେ ଚନ୍ଦନ ଦେଇ ଶ୍ରୀରାମ ଲେଖିବ, ଠାକୁରଙ୍କ ପାଦତଳେ ଚଢ଼ାହେବ । ବର୍ଷ ବର୍ଷର ଅଭ୍ୟାସରେ ବିଶ୍ୱାସ ଓ ଭକ୍ତି ମନରେ ବସା ବାନ୍ଧି ରହିବା ତ ଅସ୍ୱାଭାବିକ ନୁହେଁ । ସେ ମଣିଲେ, ତାଙ୍କୁ ଦୟାକରି ଶ୍ରୀରାମଚନ୍ଦ୍ର ଆପେ ବିଜେ ହୋଇଛନ୍ତି । ମିଛ ବୋଲି, କହି ହେବନାହିଁ । ସତ, ମିଛ, ଶ୍ରୀରାମଙ୍କୁ ଜଣା । ମହେଶ୍ୱର ମିଶ୍ରେ ସେହି ଯାତ୍ରାରେ ଖଲ୍ଲିକୋଟ ଗଲେ । ଯାତ୍ରା ଶେଷ । ମାସକ ପରେ ସେଠାରେ ତାଙ୍କର ଦେହାନ୍ତ ହୋଇଗଲା । ରୋଗ ବଇରାଗ ବିଶେଷ ନଥିଲା । ଜନ୍ମମାଟିର ଡାକରା ବନାରସରେ ଶୁଭିଲା, ନା ଶ୍ରୀରାମଚନ୍ଦ୍ରଙ୍କ ଆଜ୍ଞାରେ ବାହୁଡା ଯାତ୍ରା ଆରମ୍ଭ କଲେ, କିଏ କହିବ ? ଆମପରି ଦୀନହୀନ ଲୋକଙ୍କ ପ୍ରତି କୃପାର ଏ ଆବରଣ ନୁହେଁ ତ ? ପିଲାଦିନେ ରାମ ରାବଣ ଖେଳରେ ସବୁବେଳେ ମୁଁ ରାମ ହେଉଥିଲି । ବାଳୀବଧ ବେଳକୁ ମୁଁ ରାମ, ମାୟାମୃଗକୁ ଗୋଡାଇଲା ବେଳେ ମୁଁ ସେଇଆ । ସାଙ୍ଗ ପିଲାଙ୍କର ସେଥିରେ ଚିଡା । କିନ୍ତୁ କଥା ବୁଲି ବୁଲି ସେଇକଥା ହୋଇ ଯାଉଥିଲା । ପିଲାଦିନ ଖେଳର ରାମ, ଗାର୍ହସ୍ଥ୍ୟ ଜୀବନରେ ମୂର୍ତ୍ତି ଗ୍ରହଣ କଲେ ପରା ! ସେତେବେଳେ ରାମଲୀଳା ଯାତ୍ରା ଦେଖି ରାମ ସାଜୁଥିଲି, ଏବଠୁଁ ସତ ରାମଙ୍କୁ ଦେଖି ନିଜର ଯାତ୍ରା ସୁଆଙ୍ଗ ଆରମ୍ଭ । ଖଞ୍ଜି ହେଲାପରି ପଟ୍ଟ ପରିବର୍ତ୍ତନ ଜୀବନରେ ଏହିପରି ଘଟେ । ଜାଣି ଜାଣି ହୁଏ ନାହିଁ, ଏହାହିଁ ଆଶ୍ଚର୍ଯ୍ୟ ।



Digitized by srujanika@gmail.com

# ଗାଁରେ ଖେଳ

ଗାଁରେ ଆମେ ପିଲାଏ ଚାରିପ୍ରକାର ଖେଳୁଥିଲୁ । ଖମ୍ବ ଖମ୍ବିକା, ବୋହୂଚୋରି, ବୋହୂବୋହୂକା, ରାମଲୀଳା । ଘର ଆଗରେ ଓ ପଛରେ ନଡିଆଗଛ । ସେଥିରୁ ଚାରୋଟି ଗଛମୂଳେ ଚାରିଜଣ ପିଲା ଠିଆ ହୁଅନ୍ତି । ସେମାନେ ପରସ୍ପର ଗୋଟିଏ ଗଛ ପାଖରୁ ଆଉ ଗୋଟିଏ ଗଛ ମୂଳକୁ ଦଉଡନ୍ତି । ବାଟରେ ଯଦି ଅନ୍ୟ ପକ୍ଷର (ଆଉ ଚାରି ପିଲା) ଜଣେ ଛୁଇଁଦେଲା ତା'ହେଲେ, ସେ ମରିଗଲା । ଏହିପରି ଚାରିଜଣଯାକ କଟିଗଲା ପରେ ଗୋଟିଏ ବୋଝ ନେଇ ହାରିଯିବେ । ଆର ଦଳକ ଠିଆହେବେ, ଆଗଦଳ ତାଙ୍କୁ ଛୁଇଁବେ ।

ବୋହୂଚୋରିରେ ଦୁଇଦଳ ସମାନ ସଂଖ୍ୟାରେ ବାଣ୍ଟିହୋଇ ଯାଆନ୍ତି । ଗୋଟିଏ ପକ୍ଷରୁ ଜଣେ ବୋହୂ ହୋଇ ମାଟିରେ ବସେ । ଅନ୍ୟମାନେ ତାକୁ ଜଗି ଛକି ଠିଆହୁଅନ୍ତି । ବିପକ୍ଷ ଦଳ ଧାଡିବାନ୍ଧି ରହନ୍ତି ଆଗକୁ । ସେମାନଙ୍କ ଭିତରୁ ଜଣେ ରାହାଧରି ଦଉଡି ଆସିବ ଆକ୍ରମଣ କରି ବୋହୂକୁ ଚୋରି କରିବାକୁ । ରାହା ସରିବା ପୂର୍ବରୁ ବୋହୂ ପକ୍ଷର ଯାହାକୁ ଛୁଇଁ ପାରିବ, ସେ ମରିଗଲା ବୋଲି ଧରାଯିବ । ରାହା ସରିବା ବେଳକୁ ଯଦି ସେ ନିଜ ପଟ ଭିତରକୁ ନ ଫେରିଥିବ ତେବେ ସେ ମରିଗଲା ବୋଲି କଟିଯିବ । ଏହିପରି କରୁ କରୁ ଯେଉଁ ଦଳର ସମସ୍ତେ ଆଗ କଟିଯିବେ, ସେ ପକ୍ଷ ହାରିଗଲା । ବୋହୂ ଯଦି ତାଙ୍କର, ତେବେ ଆରବାଲା ବିଜୟ ଉଲ୍ଲାସରେ ବୋହୂକୁ ନେଇଯିବେ । ଏଥିରେ ମାନ, ଅପମାନ ଖୁବ୍ ତେଜେ । କଳି ତକରାନ, ରୁଷାରୁଷି ମଧ୍ୟ ଚାଲେ । ଖେଳରେ କିଏ ଭଣ୍ଡୁର କରିଥିଲେ ତାର ନିଶାପ ମଧ ହୁଏ । ଦ୍ୱିପକ୍ଷୀୟ ଗଣତନ୍ତ୍ରର ପୂର୍ବାଭାସ ।

ବୋହୂ ବୋହୂକା ଖେଳ ବଡ଼ ମଜାର । ସେତେବେଳେ ଜଣା ପଡୁଥିଲା ଗୋଟିଏ ସାଧାରଣ ଘରୁଆ କଥା । ଏବେ ତାର ପ୍ରତୀକ ଭିନ୍ନ ଭାବରେ ଦିଶୁଛି । ଏ ଖେଳରେ ପୁଅ ଝିଅ ପିଲାଏ ଏକାଠି ହୋଇ, ଆଗ ବଛାହୁଏ କିଏ ବରକନ୍ୟା

Digitized by srujanika@gmail.com

ହେବ, ତାପରେ ଶାଶୁ, ଶଶୁର, ନଣନ୍ଦ ଭାଉଜ, ଭାଇ ଦେଢ଼ଶୁର ଇତ୍ୟାଦି ବଛା ହୁଅନ୍ତି । ଯେତେ ପିଲା ଥିବେ ସମସ୍ତେ କିଛି ନା କିଛି ହେବେ । ତା'ପରେ ଖେଳ ଆରମ୍ଭ ବରକନ୍ୟାଙ୍କ ବିବାହରୁ । ସଢ଼େଇରେ ହାଣ୍ଡି, ବାଲିରେ ଭାତ ଠାରୁ ଭୋଜିର ସବୁ ଅନୁକରଣ ହୋଇ, ବରକନ୍ୟା ଘରକୁ ଆସନ୍ତି । ବୋହୂ ସକାଳୁ ଉଠି ଗାଧୋଇ, ରନ୍ଧାବଢ଼ା କରି, ମୁରୁଜ ଚିତା ଦେଇ, ତୁଳସୀ ମୂଳେ ସନ୍ଧ୍ୟା ଦୀପ ରଖି, ରାତିରେ ଶୋଇବା ପର୍ଯ୍ୟନ୍ତ ସବୁ ଟିକିନିଖି ହୋଇ ଖେଳର ଅନ୍ତର୍ଭୁକ୍ତ । ଗୌରୀ ବୋଲି ଝିଅ ବକଟେ ଥିଲା । ବୋହୂ ପଣିଆକୁ ଭାରୀ ପାରିବାର । ମୁଁ ବର କେତେଥର ହେଇଛି । ଥରେ ଦିଅର ହୋଇ ଗୌରୀଠାରୁ ଖୁନ୍ଦା ଖାଇବା ମନେ ଅଛି । ଦିଅରର ବାହାଘର ହେଲା, ଗୌରୀ ମୁରବୀ, ଶାଶୁ ମରିଯାଥିବାରୁ, ସାନ ଜା'କୁ ଆକଟ କହିଲେ ନ ସରେ । ମତେ ଥଟ୍ଟା ଟାପରା କରିବାରେ ଗୌରୀ ଯେପରି ନିପୁଣ, ସାଇ ମାଇପଙ୍କ ସଙ୍ଗେ ଶୃଙ୍ଖଳା ବରଡାଟାଏ ପାଇଁ କଳିକରି ଗାଳିଗୁଲଜ ଦେବାରେ ସେପରି ନିଖୁଁତ । ଘରମାନଙ୍କରେ ଯାହାହବାର ଦେଖୁଥିଲୁ, ତାହାର ପୂରା ନକଲ କରିବା ଥିଲା ଖେଳର ପରିପାଟୀ । ଏ ଖେଳ ଖେଳହୁଏ, ଦି' ପହରେ କାହାରି ଘରେ, ଯାହାର ଟିକିଏ ନିଛାଟିଆ ପିଣ୍ଡା କି ବାଡ଼ିଘର ଖାଲିଥାଏ । ଏ ଖେଳରେ କେତେ ପିଲାଙ୍କର ବହୁତ ଆଗ୍ରହ ଥାଏ । ମୋର ମଧ୍ୟ । ଟିକିଏ ଲୁଚାଲୁଚିରେ ଏ ଖେଳ ହେଉଥିଲା । ସମସ୍ତଙ୍କୁ ରୁଣ୍ଡ କରିବା ସହଜ ନଥିଲା । ଖେଳିବା ପାଇଁ ଜାଗା ସବୁବେଳେ ସୁବିଧାରେ ମିଳେ ନାହିଁ । ଖେଳ ଆରମ୍ଭ ହେଲେ ପହରେ ଖଣ୍ଡେ ଚାଲେ । କାହା ଘରର କିଏ କଅଣ ନୂଆ ଦେଖିଛି ବା ଶୁଣିଛି ତାକୁ ଖେଳରେ ପୂରାଇବାକୁ ହୁଏ । ଅଳ୍ପ ବହୁତେ, ଗାଁ ଯାକର ଗୁପ୍ତ ଓ ମୁକ୍ତ ଘଟଣାମାନ ପିଲାଙ୍କ ନଜରରୁ ବର୍ତ୍ତୁ ନ ଥିଲା । ଅନେକ ଦରଦୀ କଥା ତା' ଭିତରେ ଥାଏ । ଗାଁ ଧୋବଣୀର ଝିଅ ପୋଖତି ହେବା ପାଇଁ ବାପଘରକୁ ଆସିଥାଏ । ଦିନେ ଲୁଗା ନବାପାଇଁ ବାଟପେଇ ସାଆନ୍ତଙ୍କ ଘରକୁ ଆସିଥିଲା ବେଳେ, ସାଆନ୍ତଙ୍କ ପୁଅ ତାକୁ ଟାପରା କରି କୌତୁକ କଲା । ଧୋବଣୀ ଝିଅର ମା ସାଆନ୍ତାଣୀଙ୍କ ଆଗରେ ଗୁହାରି କଲାରୁ ସାଆନ୍ତ ସାଆନ୍ତାଣୀ ତାକୁ ଯାହାସବୁ କହି ତୁନି କରାଇଥିଲେ, ସେ କଥା ଗୌରୀ ଦିନେ ଶାଶୁ ହୋଇ ବାଡ଼ି ବସିଲା । ସମସ୍ତଙ୍କର ହସ କିଏ ଦେଖେ । ମୁଁ ହୋଇଥିଲି, ସେଦିନ ନୂଆ ବୋହୂର ଶଶୁର, ଗୌରୀ ଶାଶୁ । ଏପରି କେତେ କ'ଣ । ଏବେ ଭାବିଲା ବେଳକୁ ଆଶ୍ଚର୍ଯ୍ୟ ଲାଗୁଛି, ପିଲା ମନରେ ସ୍ଥାୟୀ ଛାପ କିପରି ଅଜାଣତରେ ପଡ଼େ । ଫ୍ରୟେଡଙ୍କୁ ଏ ସବୁ କହିଥିଲେ, ସେ ସୂତାରୁ ଖିଅ କାଢ଼ି କହିଦିଅନ୍ତେ ମୂଳ ଜୈବିକ ତତ୍ତ୍ୱ । ଖେଳର ବାଲି ଗଳାର ମାଳି ହୁଏ ।

Digitized by srujanika@gmail.com

ରାମଲୀଳା ଭିନ୍ନ ରକମର । ଆମ ଗାଁରେ ଗୋପୀନାଥ ଇଷ୍ଟ ଦେବତା । ତାଙ୍କର ଏକୋଇଶ ଦିନ ଚନ୍ଦନ ଯାତ୍ରା ହୁଏ, ପ୍ରତି ବର୍ଷ । ଗାଁର ପୂର୍ବ ମୁଣ୍ଡରେ ତାଙ୍କ ଦେଉଳ । ପାଖରେ ପୋଖରୀ । ବାଲିଝର ଥିବାରୁ ବାଲି ପୋଖରୀ କହନ୍ତି । ଚନ୍ଦନ ଯାତ୍ରାରେ ଉପରଓଳି ଗୋପୀନାଥ ବିଜେ ହୁଅନ୍ତି ବିମାନ ଉପରେ । ଗାଁ ଭିତରେ ସମସ୍ତଙ୍କ ଦୁଆରେ ପଂକ୍ତି ଭୋଗ ଖାଇ ଯାଆନ୍ତି ପଶ୍ଚିମ ମୁଣ୍ଡକୁ । ସେ ପଟରେ ଗୋଟିଏ ବଡ଼ ପୋଖରୀ । ଚନ୍ଦନ ପୋଖରୀ । ସେଥିରେ ଚାପ ସଜଡା ହୋଇଥାଏ । ଦିଅଁ ଚାପ ଖେଳନ୍ତି । ଆଖଡା ପିଲା ନାଚହୁଏ ଚାପ ଉପରେ । ଚାପରୁ ଆସି ଚନ୍ଦନ ମଣ୍ଡପରେ ପାଣି କୁଣ୍ଡରେ ବୁଡ଼ନ୍ତି । ବଡ଼ ମୂର୍ତ୍ତି ପିତ୍ତଳର । ରାଧା ମଧ୍ୟ ସେହିପରି । ସୁନ୍ଦର ଗଠନ । କେତେକାଳୁ ଅଛନ୍ତି କେଜାଣି । ଧାତୁ ମୂର୍ତ୍ତି ନିର୍ବିକାରରେ ପାଣିରେ ରହନ୍ତି ରାଧାଙ୍କ ସାଙ୍ଗରେ ଚନ୍ଦନ ଘୋଟା ସରିବାଯାଏ । ତାପରେ ସର୍ବାଙ୍ଗ ଚନ୍ଦନ ଭୂଷିତ ହୁଅନ୍ତି । ପୁଷ୍ପସଜ୍ଜା ହୁଏ । ଆରତି, ଭୋଗପରେ ପୁଣି ରାତି ଚାପକୁ ବିଜେ । ସେଠାରୁ ଦେଉଳକୁ ପ୍ରତ୍ୟାବର୍ତ୍ତନ । ସେତେବେଳକୁ ରାତି ପାହାନ୍ତିଆ । ଦିଅଁ ଫେରିଲାବେଳକୁ ମତେ ନିଦରୁ ଉଠାଇ ଦେବାପାଇଁ ମୁଁ ଜିଗର କରି ଶୋଇଥାଏ । ମୋର ଜଣେ ପିଇସୀନାନୀ, ମଣି ବୋଲି ତାଙ୍କୁ ଅନ୍ୟମାନେ ଡାକୁଥିଲେ, ମତେ ସବୁଦିନ ଡାକି ଦିଅନ୍ତି । ଦିଅଁ ଫେରିଲା ବେଳକୁ ଆଖଡ଼ା ନାଟ ହୁଏ । ତାଙ୍କ ଆଗରେ ଗାଁ ଦାଣ୍ଡରେ ଯେଉଁଠାରେ ବିମାନ କିଛି ସମୟ ପାଇଁ ଠିଆ ରହେ । ଆମ ଘର ଆଗରେ ସେହିପରି ଠିଆ ହେବାର ନିର୍ଣ୍ଣିତ ଜାଗା । ତେଣୁ ନାଟ ଦେଖିବାର ସୁବିଧା । ସେହି ଲୋଭରେ ନିଦରୁ ଉଠିବା କଥା । ଚନ୍ଦନ ମଣ୍ଡପରେ ଯେଉଁ ଭୋଗ ହୁଏ, ଗାଁ ବାଲା ପାଳିକରି ତାହା ଯୋଗାନ୍ତି । ଏକୋଇଶ ଦିନ ବଣ୍ଟା ହୋଇ ରହିଛି ତାଙ୍କ ଭିତରେ । ଯାହାର ଯେଉଁଦିନ ପାଳି, ସେ ଫୁଲ, ଭୋଗ ବରାଦ କରନ୍ତି । ଏ ପାଳି ଜଣ ଜଣଙ୍କର ଥିଲା । ପରେ କୁଟୁମ୍ବ ବଢ଼ି ଏକାଧିକ ପରିବାରଙ୍କ ଉପରେ ଦାୟିତ୍ୱ ରହିଛି । ସେମାନଙ୍କ ଆର୍ଥିକ ଅବସ୍ଥା ଉପରେ ନିର୍ଭର କରେ ପାଳିର ଚାକଚକ୍ୟ, ଭୋଗର ମାପ । ଅନ୍ୟ ସଲଟଣ ସେହିପରି କେତେ ପାଳିରେ ହୁଏ । ଲୀଳା, ସୁଆଙ୍ଗ କେହି କେହି କରାନ୍ତି ରାତିରେ । ଚଞ୍ଚଳ ଭୋଗ ରାଗ ଖିଆପିଆ ସରିଲେ, ଯାତ୍ରା ଆରମ୍ଭ ହୁଏ ପାଳିବାଲାଙ୍କ ଆଗ ଦୁଆରୀ ପଦାଡ଼ରେ, ଲୋକେ ଜମା ହୁଅନ୍ତି ଚାରିପଟରେ । ଗାଁର ଦି ମୁଣ୍ଡରେ ଥିବା ପଡ଼ା ଗାଁ, ପ୍ରଧାନ ସାହି, ବାଉରି ସାହି, ଧୋବା ଘର ଉଜାଡି ହୋଇ ପଡନ୍ତି । ବାହାର ଗାଁରୁ ମଧ୍ୟ ଆସନ୍ତି । କେତୋଟି

Digitized by srujanika@gmail.com

ପାଳି ଡକାହକା ଥାଏ । ସେ ପାଳି ଦିନରେ ଯାତ୍ରା ପ୍ରତିବର୍ଷ ହୁଏ । ଲୋକେ ସେହିଦିନକୁ ଅପେକ୍ଷା ରଖି ଥାଆନ୍ତି । କୁଣିଆ ତାକୁ ଲକ୍ଷ୍ୟ କରି ଆସନ୍ତି ବନ୍ଧୁ ଘରମାନଙ୍କୁ । ସବୁଠାରୁ ବଡ ଡକାହକା ଥିଲା ଅଠର ପାଳି । ଆମ ଅଜାଘର ବଂଶର ସେ ପାଳି । ଦୀଗିତ (ଦୀକ୍ଷିତ) ଘର ବୋଲି ତାଙ୍କର ଡାକ । ପାଳିଘର ପାଇଁ ଜମି ଖଞ୍ଜାଥାଏ । ଚନ୍ଦନବେଳେ ପାଞ୍ଚପାଳି ଓ ଅଠର ପାଳି ତାଙ୍କର । ପ୍ରଥମ ଦିନ ଧୁମଧାମକୁ ବଳି ଦ୍ୱିତୀୟ ଦିନ । ଅଠର ପାଳିକୁ ବହୁତ ଆତୁ ଲୋକେ ଦେଖିବାକୁ ଆସନ୍ତି । ତିନି, ଚାରି ଯାତ୍ରାଦଳ ସାଙ୍ଗକୁ ବୁଢ଼ାବୁଢ଼ୀ, ଘୋଡାନାଚ ଇତ୍ୟାଦି ହୁଏ । ଗାଁର ଅନ୍ୟ କେତେଜଣଙ୍କ ପାଳିରେ ମଧ୍ୟ ଯାତ୍ରା ଆସେ ସବୁ ବର୍ଷ । ଆଉ କେହି କେହି ସୁବିଧା ଅନୁସାରେ କୌଣସି କୌଣସି ବର୍ଷ ଯାତ୍ରା ଆୟୋଜନ କରି ଥାଆନ୍ତି । ଏହା ଗ୍ରାମ୍ୟ ଆଭିଜାତ୍ୟର ପ୍ରତୀକ । ଆମର ନଥ ପାଳି । ବିଭବ ଦେଖାଇବାର ଆମର ସଙ୍ଗତି ନଥାଏ । କିନ୍ତୁ ଯେଉଁଦିନ, ଯାହା ପାଳିରେ, ଯାହା ଦୁଆରେ ଯାତ୍ରା ହୁଏ ସେଠରେ ମୁଁ ଯାଇ ହାଜର, ମୂଳରୁ ଶେଷଯାଏ । ରାତିଉଜାଗର ବାଧେନାହିଁ । ଘରେ ମଧ୍ୟ ଅନୁମତି ମିଳିବାର ଗୋଟିଏ ସୁବିଧା ଥିଲା । ପାଞ୍ଚପାଳି, ଅଠରପାଳି ମାମୁଁଘର ପାଳି ଥିବାରୁ ବୋଉ ତ ଯିବାର କଥା— ତା ସାଙ୍ଗରେ ମୁଁ । ଅନ୍ୟଦିନ ପାଇଁ ସୁପାରିଶ କରିବାର ଲୋକ ମୋ ନାନୀ । ଆମ ଘରେ, ପାଞ୍ଚପିଇସୀ ନାନୀଙ୍କ ମଧ୍ୟରୁ ଦୁଇଜଣ ଗଞ୍ଜାମରେ, ଆଉଜଣେ, ଯେ ସବାସାନ, ନୀଳାନାନୀ ଶ୍ରୀରାମଚନ୍ଦ୍ରପୁରରେ ବିଭାହୋଇ ତାଙ୍କ ଘର ମାନଙ୍କରେ ଥାଆନ୍ତି । ବାକୀ ଦୁଇଜଣଙ୍କ ମଧ୍ୟରୁ ଜଣେ ବାଳୁତ ବିଧବା । ତୃତୀୟ ପିଇସୀନାନୀ ସେ । ନାଁ ମଣି । ସବୁବେଳେ ରହି ଆସିଛନ୍ତି ଆମଘରେ । ସ୍ୱାମୀ ଘରକୁ ପହଲି ପାଳି ଯିବା ପୂର୍ବରୁ ବିଧବା । ସେ ମତେ ପିଲାଦିନୁ ଆତଯାତ କରିଥିଲେ । ମୋର ସବୁ ଅଳି ତାଙ୍କ ପାଖରେ । ପିଲାଦିନ କଥାସବୁ ମନେ ପକାଇଲେ, ବୋଉ ଅପେକ୍ଷା ତାଙ୍କ ସଙ୍ଗେ ମୋର ସମ୍ପର୍କ ବେଶି । ପ୍ରକୃତ କହିଲେ, ସମ୍ପର୍କ ବେଶି ନୁହେଁ, ସବୁ ସମ୍ପର୍କ ପ୍ରାୟ ତାଙ୍କ ପାଖରେ । ସବୁକଥା ମୋର ସେ କରୁଥିଲେ । ହଳଦି ଲଗାଇବା ଠାରୁ, ଶୁଆଇବା, ପାଖରେ ଶୋଇବା, ସ୍କୁଲକୁ ନବା, ସବୁ । ସେ ଏକରକମ ଘରର ମୁରବୀ । କାରଣ ନନା ରହୁଥିଲେ ବାହାରେ । ମୋ ପିଲାଦିନେ ସେ ଥିଲେ ପୁରୀରେ ହରଚଣ୍ଡୀ ସାହି ମାଇନର ସ୍କୁଲରେ ଓଡିଆ ପଣ୍ଡିତ । ତା ପରେ ଗଲେ ସ୍କୁଲ ଆସିଷ୍ଟାଣ୍ଟ ସବ୍ ଇନସପେକ୍ଟର ହୋଇ ବାଲେଶ୍ୱର ଜିଲ୍ଲା ବାସୁଦେବପୁର ସୋରଆଡେ । ସେଠାରୁ ବୌଦ୍, ପାଲଲହଡା

Digitized by srujanika@gmail.com

ଗଡଜାତ ଅଞ୍ଚଳକୁ ବଦଳି ହେଲା । ୧୯୧୫ ବେଳକୁ ସିଂହଭୂମର ଚାଇବାସା ଜିଲ୍ଲାସ୍କୁଲକୁ ଓଡିଆ ଶିକ୍ଷା ସେଠାରେ ଆରମ୍ଭ କରିବାକୁ ଗଲେ । ଛୁଟିରେ ଗାଁକୁ ଆସନ୍ତି । ଦଦେଇ ପୁରୀରେ କାମ କରୁଥିଲେ ମୋହରୀର ହୋଇ । ଶନିବାର ଦିନ ରାତିକୁ ଗାଁକୁ ଆସି ସୋମବାର ସକାଳେ ଫେରୁଥିଲେ । ସାନ ଦଦେଇ ଜଣେ ଥିଲେ, ତାଙ୍କର କାଳ ହୋଇଯାଇଥାଏ । । ତାଙ୍କ ବିଧବା ସ୍ତ୍ରୀ ଓ ଗୋଟିଏ ପୁଅ, ମୋ ଠାରୁ ଛୋଟ । ଘରେ ମରଦାନା ପ୍ରାୟ ନଥାଏ । ମାଇପେ ସବୁ ଯେ ଥାଆନ୍ତି ତାଙ୍କ ଭିତରେ ମଣିନାନୀ ସବୁଠାରୁ ବଡ଼, ତେଣୁ ମୁରବୀ । ନନା, ଦଦେଇଙ୍କ ଠାରୁ ମଧ୍ୟ ବୟସରେ ସେ ଆଗ । ମୋ ବୋଉ ଦେଠେଇ, ଘରର ବୋହୂ; ତାଙ୍କ ଅଧସ୍ତନ ବିବେଚିତ ହେବାର କଥା । ମୁଁ ଥାଏ ଘରର ବଡ଼ପୁଅ । ନାନୀ ମୋତେ ଆଦରି ନେଲା ଜନ୍ମଦିନୁ । ମାତୃସ୍ତନଭୁକ୍ତ ହେଲି, ମାତ୍ର ମାତୃ ସ୍ନେହସିକ୍ତ ହେବା ବାଦ୍ ପଡିଲା । ନାନୀର ସ୍ନେହ, ଆଦର ମୋ ବାଲ୍ୟ କାଳର ପରମ ତୃପ୍ତି । କଟାଳ ସେ ଶୁଣେ, ଆକଟ ସେ କରିପାରେ ନାହିଁ । ବୋଉର ସାହସ ପାଏ ନାହିଁ, ନାନୀ ଆଗରେ ମତେ ରୋକିବାକୁ । ନନା ଦଦେଇ ତ ଘରେ ନ ଥାନ୍ତି ଛାଟ ବସାଇବାକୁ । ତେଣୁ ଯାତ୍ରା ଦେଖିବାକୁ ନାନୀ ରାଜି ହୋଇଗଲେ, ମୋର ଚାରିଖୁଣ ମାଫ । ଚନ୍ଦନଯାତ୍ରାବେଳେ ସବୁ ଯାତ ଦେଖେ । ସବୁଯାତ୍ରା ରାମାୟଣକୁ ନେଇ । ଅଠରପାଳିକୁ ଅଧିକା ଯାତ ଯାହା ହୁଏ, ତାହା କଂସ ବଧ, ଗୋପଲୀଳା । ମୁଁ ତାକୁ ନ ଦେଖି, ଦେଖେ ରାମଲୀଳା । କେଉଁଦିନ ଧନୁଭଙ୍ଗ, କାହାଦୁଆରେ ବନବାସ, କେବେ ଲଙ୍କା ଦହନ, ଅଶ୍ୱମେଧ ଯଜ୍ଞ-ଏହିପରି ରାମାୟଣର ବିଭିନ୍ନ ପର୍ଯ୍ୟାୟ ଯାତ୍ରାରେ ବାହାରେ । ପାରିଶ୍ରମିକ ସେତେବେଳେ ରାତିକୁ ତିନିଟଙ୍କା । ସନ୍ଧ୍ୟା ବେଳକୁ ଯାତ୍ରାବାଲା ପେଡି ପେଟରା ନେଇ ଆସିଯାଆନ୍ତି । ରାତିରେ ତାଙ୍କର ଖାଇବା ଦିଅଁଙ୍କ ଭୋଗ ଆଡୁ ହୁଏ । ବାକୀ ମଶାଲ ତେଲ ପାଳିବାଲା ଦେଲେ, ଯାତ୍ରାର ଆୟୋଜନ ପୂରା । ନଡିଆଚାଞ୍ଚ ପଡ଼େ ମାନ୍ୟବାଲା ଦେଖଣାହାରୀଙ୍କ ପାଇଁ । ଅନ୍ୟମାନଙ୍କର ଭୂମି ଆସନ । ସ୍ତ୍ରୀ ବେଶରେ ପୁରୁଷ ବାହାରନ୍ତି । ସୂର୍ପଣଖା, ମାରିଚ, ଜଟାୟୁ, ରାବଣ ମୁଖା ପିନ୍ଧନ୍ତି । ଦଶରଥଙ୍କର ମୁକୁଟ, ବଶିଷ୍ଠଙ୍କର ଜଟାଦାଢ଼ି, ହନୁମାନର ମୁଖା ସାଙ୍ଗକୁ ଲାଙ୍ଗୁଡ଼; ମାୟାମୃଗର ପିଠିରେ ହରିଣ ଚମଡା । ମନ୍ଥରା, ମନ୍ଦୋଦରୀଙ୍କ ଉପରେ ସେତେ ନଜର ନଥାଏ ଯେତେ ଥାଏ ରାମ, ଲକ୍ଷ୍ମଣ ସୀତାଙ୍କ ଉପରେ । ଯେଉଁ ଦଳରେ ସେ ତିନିଜଣ ସୁନ୍ଦର ଥାଆନ୍ତି, ସେ ପାର୍ଟିର ଚାହିଦା ବେଶି । ଏହି ରାମଲୀଳା ସବୁ ଦେଖି, ଚନ୍ଦନ

Digitized by srujanika@gmail.com

ପରେ ଧୁମ୍ ହୋଇଉଠେ ଆମ ଖେଳ, ବାଡିଆଡେ ପୁଅ ପିଲାଙ୍କ ଭିତରେ । ବେଳେ ବେଳେ ବୟସ୍କ ମାଇପେ ବସନ୍ତି, ଭୁଲ ଭଟକା ବତାଇ ଦିଅନ୍ତି । ପାଗ, ପଟୁକା କିଛି ନଥାଏ ।ଯେ ଯାହା ପାରିଲା, ମନକୁ ମନ ଶବ୍ଦ ଯୋଡି ଗଦ୍ୟରେ କହେ, କିଛି ଗୀତ ଆଉଡେଇ ପାରିଲେ ବାହାଦୁରୀ । ''ଅଇଲି ମୁଁ ହନୁମାନ, କରିବି ଲଙ୍କା ଦହନ ।'' ଏ ଖେଳ ଅନ୍ୟ ଗାଁରେ ଚାଲୁ ନଥିଲା । ଆମ ଗାଁ ଚନ୍ଦନଯାତ୍ରାର ପ୍ରସିଦ୍ଧି ଥିଲା, ଯେପରି ଥିଲା, ବୀର ନରସିଂହପୁରର ଶୀତଳ ଷଷ୍ଠୀ, ବୀର ରାମଚନ୍ଦ୍ର ପୁରର ଚମ୍ପକ ଦ୍ୱାଦଶୀ, ଶ୍ରୀରାମଚନ୍ଦ୍ର ପୁରର ସରନ୍ତି ସୋମବାର । ସେ ଗାଁର ପର୍ବମାନଙ୍କରେ ଯାତ୍ରା ନଥାଏ । ଆମ ଗାଁରେ ବର୍ଷକୁ ବର୍ଷ ଯାତ୍ରାର ଧୁମ୍‌ରେ ଖେଳର ମୋଡ ସେହି ଅନୁଗାମୀ ହୋଇଥାଏ । ଏବେ ଆଉ ତାହା ନାହିଁ । ସେ ପାଳିର ଆଡମ୍ବର ଧ୍ୱଂସେଇ ଗଲାଣି । ଯାତକୁ ଆଦର ନାହିଁ । ଆଭିଜାତ୍ୟର ନିରୀକ୍ଷଣ ବର୍ତ୍ତମାନ ଅନ୍ୟ ପ୍ରକାର ।

ଡୁ ଡୁ ଖେଳ କେବେ କେମିତି ଅଳ୍ପ ହୁଏ । ତା, ପାଇଁ ପ୍ରଶସ୍ତ ଜାଗା ଲୋଡା । ଯେଉଁ ଗାଁରେ ଖଣ୍ଡି ମୁଣ୍ଡ ଥାଏ, ସେଠାରେ ତାହାର ପ୍ରଚଳନ ଥିଲା । ଆମ ଗାଁ ଲମ୍ବାସାହି । ଏ ମୁଣ୍ଡ ସେ ମୁଣ୍ଡ କହନ୍ତି । ଖଣ୍ଡି ନାହିଁ । ଅନ୍ୟ କେତେକ ଗାଁରେ ପ୍ରଥମ ଖଣ୍ଡି, ଦ୍ୱିତୀୟ ଖଣ୍ଡି ଅଛି, ତୃତୀୟ ମଧ୍ୟ । ଦୁଇ ଖଣ୍ଡି ମଝିରେ ଖୋଲା ଜାଗା । ବାଣ ଓ ଅନ୍ୟ ପ୍ରତିଯୋଗିତା ପାଇଁ ତାହାର ପ୍ରୟୋଜନ । ସେଠାରେ ଡୁ ଡୁ ଖେଳ ପାଇଁ ସୁବିଧା ମିଳେ । ଆମର ତା ନ ଥିଲା ।

ଘର ଭିତରେ ଦେଖୁଥିଲୁ ଖେଳର ସରଞ୍ଜାମ, କେବଳ କଉଡି । ଝିଅ, ବୋହୂ ଖେଳୁଥିଲେ କେତେବେଳେ କେମିତି ଦିପହରେ, ଖାଇ ପିଇସାରି । ଅଣ୍ଡିରିପୁଅ କେହି ସେଥିରେ ଯୋଗଦେଲେ ତାକୁ ମାଇଚିଆ କହି ଚିଡାନ୍ତି । ତାସ ମୁଠା କାହା କାହା ଘରେ ଥାଏ । ମୁରବୀମାନଙ୍କୁ ଲୁଚାଇ ଖେଳହୁଏ । ପଢ଼ା ବାହାନାରେ କାହାଘରେ ୫/୬ ଜଣ ପିଲା ଏକାଠି ହେଲେ, ତାସ ଖେଳର ସୁବିଧା ଆସେ । ଆଜିକାଲି ଲୁଡୋ, କାରମ, ତାସ ସବୁରି ଘରେ । ସେଥିରେ କିଛି ବାରଣ ନାହିଁ । ବରଂ ବୟସ୍କମାନେ ବେଳେ ବେଳେ କନିଷ୍ଠ ମାନଙ୍କ ସାଙ୍ଗରେ ବସି ଯାଆନ୍ତି । ଚେସ୍‌ବୋର୍ଡ ଆଉଟିକିଏ ସୌଖିନ ପାହ୍ୟାର । ଆମ ପିଲାଦିନେ ଏ ସବୁର ନାମ ଜଣା ନ ଥିଲା । ତାସ କେବଳ ଲୁଚାଲୁଚିରେ ଥାଏ । ପିଲାଙ୍କ ପାଇଁ ଆଉ ଗୋଟିଏ ଖେଳଥିଲା, ବାଘ ଛେଳି । ମାଟିରେ ଖଡିରେ ଛକି କାଟି, ଖଡିକା ବା ଗୋଡିରଖି ଦି ଜଣ ଖେଳନ୍ତି । ଲୁଡୋର ଗ୍ରାମ୍ୟ ସଂସ୍କରଣ ଏକ ପ୍ରକାର । ବ୍ରିଜ୍, ରମି ନାମ ଶୁଣା ନଥିଲା, ଖେଳ ତ

Digitized by srujanika@gmail.com

ଦୂରର କଥା । ତାସ ଖେଳ ଅଭିଭାବକ ଦୃଷ୍ଟିରେ ଏତେ ଦୂଷହଣୀୟ ଥିଲା ଯେ ସତ୍ୟବାଦୀ ବନ ବିଦ୍ୟାଳୟର କୌଣସି ଛାତ୍ର ଏ ଦୋଷରେ ଅପରାଧି ସାବ୍ୟସ୍ତ ହେଲେ, ଦଣ୍ଡନୀୟ ହୁଏ । କାଳର କି ଗତି !

ଗାଁରେ ଆଉ ଦି ରକମ ଖେଳର ଚାଲ ଥାଏ । ତାହା ବୟସ୍କମାନଙ୍କର । ଅକର୍ମା ଭେଣ୍ଡାପୁଅମାନେ ଗଞ୍ଜପା ଧରନ୍ତି । ଚକାଚକା ଭିନ୍ନ ଭିନ୍ନ ଚିତ୍ର ରଞ୍ଜିତ ତାସ । ବାଛିଏ ଖେଳକୁ ବହୁତ ସମୟ ଲାଗେ । ଯୋଡିଏ ପାଲି ଥିଲା ଗାଁ ଭିତରେ । ଖେଳନ୍ତି ଯେତେଜଣ , ବସି ଦେଖନ୍ତି ତା' ଠୁ ବେଶି । ବୁଢ଼ାମାନେ ନାପସନ୍ଦ କରି କହନ୍ତି, ଗଞ୍ଜପା ଖେଳରେ କୁଟୁମ୍ବ ନାଶ । ହେଉଥିବ ବୋଧହୁଏ । ଯେଉଁ ଘରର ଲୋକେ ଏ ଖେଳରେ ଭାଗ ନେଉଥିଲେ, ତାଙ୍କ ଘରେ ଭାତ ହାଣ୍ଡିରେ ପେଜ ନଥିଲା । ସେଥିକି କିନ୍ତୁ ବେପରବାୟ । ଯେଉଁ ଦିପୁଞ୍ଜା ନଡିଆଗଛ ଥାଏ, ସାମାନ୍ୟ ଗୁଜରାଣ ମେଣ୍ଟାଇବାକୁ ଯଥେଷ୍ଟ । ଧାନଜମି ମାଣେ ଅଧେ ଥିଲେ, ଭାଗଚାଷୀ ଅଧେ ଧାନ ମାପିଦେଇ ଯାଏ ଓ ପର୍ବ ପର୍ବାଣୀରେ ଲାଉଟାଏ, କଖାରୁଟାଏ ଭେଟି ପଏଠ କରେ । ଘର ଛପର କରିବାକୁ ଛଣ, ମୂଲ ତା ଉପରେ । ବ୍ରାହ୍ମଣ ପିଲାତ କ୍ଷେତକୁ ଯିବ ନାହିଁ ହଳ ଧରିବାକୁ କି ଧାନ ବାଛିବାକୁ । କୁଳ ମର୍ଯ୍ୟାଦା ରଖିବା ପାଇଁ ଅକାମି ହେବା ବୃହତ ଗୁଣ । ସକାଳେ ଉଠି ନିତ୍ୟକର୍ମ ସାରିବା ପାଇଁ ବାଡି, ମାଳଆଡେ ଯିବାର କଥା । ସେତେବେଳେ କେଉଁଠି ଶୁଖିଲା ବରଡାଟାଏ, ଖୋସାଦି'ଟା ହାତରେ ପଡିଲେ, ଜାଳ ସଂଗ୍ରହ ହୋଇଗଲା । ନଡିଆ ଗୋଟେ ଅଧେ ଯଦି ଗଛରୁ ଝଡିଥାଏ, ଯାହାର ଗଛ ହେଉ ପଛେ, ଯେ ଦେଖିଲା ତାହାର ସେ ପ୍ରାପ୍ୟ । ଏ ସବୁ ସୁବିଧା ପାଇଁ ଟିକିଏ ଦୂର ବାଟକୁ ନିତ୍ୟକର୍ମ ସାରିବାକୁ ଚାଲାକ ଲୋକେ ଆଗତୁରା ଯାଆନ୍ତି । ତା' ପରେ ଗାଧୁଆ, ଗାଁ ମୁଣ୍ଡରେ ଦେବଦର୍ଶନ, ମହାଦେବଙ୍କ ଠାରେ ପାଣିଲାଗି ସାରି ଘରକୁ ଆସିଲା ବେଳକୁ ପହରେ ଦିନ । ଦିଅଁ ପୂଜା ସମସ୍ତଙ୍କ ଘରେ ନିତ୍ୟ ନୈମିତିକ । ସେଥିରେ ଅଢ଼ ସମୟ ଲାଗେ ନାହିଁ । ସେଥିପାଇଁ ଫୁଲଚନ୍ଦନ ଲୋଡା । ନ ମିଳିଲେ, ଅରୁଆ ଚାଉଳ ଦି' ଟାରେ କାମ ଚଳେ । ସବୁକାଳେ ସବୁ ଜରୁରୀ କଥାର ବିକଳ୍ପ ବ୍ୟବସ୍ଥା ଥାଏ । ବ୍ରାହ୍ମଣ୍ୟ ଧର୍ମର ଟେକ ତାରି ଉପରେ । ଘର ଦିଅଁଙ୍କ କାମ ସକାଳ ବେଳା ଶେଷହୁଏ ଅନ୍ନ ଭୋଗରେ । ଗୃହକର୍ତ୍ତ୍ରୀ ଦି'ଟା ଭାତ ଫୁଟାଇ ଥୋଇ ପାରିଲେ, କର୍ତ୍ତାଙ୍କ ଦକ୍ଷତା ସାବ୍ୟସ୍ତ ହୁଏ । ନଥିଲା ଘରେ, ଚାଉଳ କି ଚୂଡାଭଜା ଗଣ୍ଡେ ଦେଲେ ବି ଚଳେ । ତା' ଯଦି ନ ମିଳେ କେଉଁଦିନ, ଆରମ୍ଭ ହୁଏ

Digitized by srujanika@gmail.com

ଘରେ ଅଶାନ୍ତି । ଭୋକିଲା ପେଟରେ ପାଟି ବହୁତ । ଦେବତା ଆରାଧନା ଭୋଗ ଉପଯୋଗୀ ନା ଭୋଗ, ଆରାଧନା ଅନୁକ୍ରମି, ଏ ମୀମାଂସା ସମୟ ସାପେକ୍ଷ । କିନ୍ତୁ ଏଇଟା ନିଶ୍ଚିତ ଯେ ଭୋଗ ପରେ ଭୋକ । ଏ ଦୁଇ ପରସ୍ପର ନିର୍ଭରଶୀଳ ଓ ପୂର୍ବାପର ସଙ୍କେତବାହୀ । ଘରର ଏ ନିତ୍ୟକ୍ରିୟା ସମାପ୍ତି ପରେ କର୍ମହୀନ ଦିବସର ଦୀର୍ଘ ଅଂଶ କ୍ଷେପଣ ପାଇଁ ଗଞ୍ଜପା ଖେଳ ଯେ ଉଦ୍ଭାବନ କରିଥିଲେ, ସେ ଦୂରଦ୍ରଷ୍ଟା ଥିଲେ । ଗାଁ ଭେଣ୍ଡିଆମାନେ ତାହାର ଆଶ୍ରୟ ନେଲେ ତାଙ୍କୁ ଦୋଷୁଥିଲେ କାହିଁକି କେଜାଣି । ମଣି ମିଶ୍ରେ ଆମ ଗାଁ ମଝିରେ ଗୋଟିଏ ତେଜରାତି ଦୋକାନ କରିଥିଲେ । ପଡିଆରା ତାଙ୍କର କମ ନୁହେଁ । ଏବେ ଭାବିଲେ, ମନେ ହେଉଛି ତାଙ୍କ ମୂଳଧନ ପାଞ୍ଚଟଙ୍କାରୁ ବେଶି ନ ଥିବ । ସକାଳ ଓଳି ଗ୍ରାହକ ଗହଳି ଭାଙ୍ଗିଯାଏ ଦିନ ପହରକ ଭିତରେ । କିଏ ପଇସେ, କିଏ ଅଧଲେ ସଉଦା ପାଇଁ ଆସିଲେ, ମଣି ମିଶ୍ରଙ୍କୁ ଖାତିର କରି ଚିନ୍ତାମଣି ମିଶ୍ରେ ଡାକନ୍ତି, ଯଦି ଦିନେ ଅଧେ ପାଇଁ କାଳି ନେବାକୁ ଥାଏ । ମଣି ଭାଇନା, ଚିନ୍ତା କକେଇ ବୋଲି ବଧାଇ ଦିଅନ୍ତି, କାଳିବାସି ଆଉ ଟିକିଏ ବେଶି ନବାକୁ ଥିଲେ । ଦୋକାନ ପୁଣି ଖୋଲେ ସନ୍ଧ୍ୟାବେଳକୁ । ସାରାଦିନ ହାତରେ କାମ ନଥାଏ, ଦୋକାନ ଓଳିକ ଛଡା । କରିବେ କଅଣ, ଗଞ୍ଜପାର ବିନା ଆଶ୍ରୟରେ । ତାଙ୍କ ପିଣ୍ଡାରେ ଗଞ୍ଜପା ପାଲି ଖୋଲେ ଦିନ ଦିପହର ଗଡିଲେ, ଟାଲେ ଗୋରୁ ବାହୁଡା ଯାକେ । ବକ ପାଣିକୁ ଚାହିଁଲା ପରି, ସମସ୍ତେ ଏକାଗ୍ରରେ ଚାହିଁ ବସିଥାନ୍ତି ଗଞ୍ଜପାକୁ । ଆମେ ପିଲେ ପାଖ ମାଡୁ ନାହିଁ । ଏବେ ଗାଁରେ ସେ ଖେଳ ଆଉ ନାହିଁ । ବେଳେ ବେଳେ ଦେଖେ ପୁରୀ ଟାଉନ୍‌ରେ ସେବକ ପଡ଼ିଆରୀଙ୍କ ଭିତରେ କାହା କାହା ଦାଣ୍ଡ ପିଣ୍ଡାରେ ଏ ଖେଳ ଜମିବାର । ଖେଳ ସିନା ଉଠିଯାଇଛି, କିନ୍ତୁ ଗଞ୍ଜପାର ଆଦର ବଢ଼ିଛି ଅନ୍ୟ ପ୍ରକାରେ । ନାନା ରଙ୍ଗର ମିଶ୍ରଣରେ ବହୁଳ ଚିତ୍ର ଥିବାରୁ ଆଖିକୁ ଆକର୍ଷଣ ଢ଼େର । ଆମ ଦେଶରେ କେବଳ ନୁହେଁ, ଭାରତ ବାହାରେ ମଧ୍ୟ ଗଞ୍ଜପା ତାସ ଏବେ ବ୍ୟବହାର ହେଉଛି ଟେବୁଲ ଉପରେ କାଚ ଗିଲାସର ବଇଠି ରୂପେ, ଅବା ପାଣି ଗିଲାସର ଘୋଡଣୀ ଭାବେ । ମର୍ଯ୍ୟାଦା ତାହାର ବଢ଼ିଛି ସମ୍ଭ୍ରାନ୍ତିର ଏକ ସୂଚକ ରୂପେ । ସଭ୍ୟତାର ରୋଳ ସହରରୁ ଗାଁକୁ ମାଡେ । ପୁଣି ମୋଡ ବୁଲିଲେ, ଗାଉଁଲି କଥା ସହରୀ ଡାଳୁକୁ ଉଠେ । ପଧାନ ଘରର ପିତଳ ଖଡୁ ଆମେରିକାର ଦପ୍ତର ଟେବୁଲ ଉପରେ ଉଠିଲା ବେଳକୁ ଟୋକିଓର

Digitized by srujanika@gmail.com

ପ୍ଲାଷ୍ଟିକ୍ ଚୁଡି ପଧାନ ଝିଅର ହାତ ମଣ୍ଡନ କରୁଛି । ବେଙ୍ଗ ବୋଲେ ବେଙ୍ଗୁଲିଲୋ, ପ୍ରଥିବୀ କ୍ଷଣ କ୍ଷଣକେ ଆନ ।

ପଚାଶ ବର୍ଷରୁ ଊର୍ଦ୍ଧ୍ୱ ଯେ ଟିକିଏ ଚଳିଲା ବାଲା, ତାଙ୍କର ଥିଲା ପଶାପାଲି । ଗ୍ରାମ୍ୟ ଆଭିଜାତ୍ୟର ଅନ୍ୟ ଏକ ରୂପ । କଳିଷଠାକୁ ଚାହିଁଲା ବେଳକୁ ଆଉ ମୋଟେ ଦଶଟା ବରଷ । ଅଳସ ଜୀବନକୁ ସରସ କରିବା ପାଇଁ ବାହାରେ ସାଙ୍ଗମେଳ ଚାହି । ଖାଇବା ମଉଜରେ ସାଙ୍ଗ ଯୁଟନ୍ତି । ସେଥିରେ ଖର୍ଚ୍ଚ ଅଛି । ଯୋଗାଡ କରିବାରେ ପରିଶ୍ରମ ମଧ୍ୟ । ପଶାପାଲି ଉପରେ ସାଙ୍ଗ ଠୁଳ କରିବା ସହଜ । ତାର ତୋଡ ଯେପରି ନିଶା ସେପରି । ପଶାକାଠି 'ପୁଅବାର' ଡାକି ଗଡାଇ ଦେଲାବେଳେ ମନ ଯାଇ ମାମୁଁ ଘରେ । ଗୋଟି ପାଚୁ, ବା ନ ପାଚୁ, ଚାଲୁ ବା ବସୁ, ପାଟିଡାକ, ନାକଫୁଲା, ଆଖି ତରାଟରେ ଅପର ପକ୍ଷ ତଟସ୍ଥ । ଏ ଖେଳ ବସୁଥିଲା, ଆମ ଆଗଦୁଆରି ବଳଭଦ୍ର ମହାପାତ୍ରଙ୍କ ବେଦୀ ଉପରେ । ଯାହା ଘରେ ବ୍ରତ, ବିଭା, ସେ ଘର ଆଗରେ ମାଟିବେଦୀ କରେ । କାମ ସରିଗଲେ ବେଦୀ ଭାଙ୍ଗେ । କିନ୍ତୁ ବଳଭଦ୍ର ମହାପାତ୍ରଙ୍କ ବେଦୀ ସବୁଦିନିଆ, ଇଟାରେ ଗଢ଼ା, ଉଚ୍ଚାହୋଇ ଉପରେ ଚାଳ । ଗାଁରେ ଆଉ କାହାରି ସେମିତି ନଥିଲା । ବଳଭଦ୍ର ମହାପାତ୍ରେ ଦି'ଭାଇ ଥିଲେ । ବଡଭାଇ ଜଗନ୍ନାଥଙ୍କର କାଳ ହୋଇ ଯାଇଥାଏ । ସେ ଦି'ଭାଇ ଭିଙ୍ଗାରପୁର ଚୌଧୁରୀ ଘରେ ବାଳକୃଷ୍ଣ ଚୌଧୁରୀଙ୍କର ଦୁଇ ଝିଅ ମାଣିକ, ନିଶାମଣିଙ୍କୁ ବିବାହ ହୋଇଥିଲେ । ଆମ ଗାଁ ସାମନ୍ତ ବ୍ରାହ୍ମଣଙ୍କ ବସତି । ପୁରୀ ଜିଲ୍ଲା ଶାସନ ଭିତରେ ପ୍ରାୟ ଅଗ୍ରଣୀ । ଭିଙ୍ଗାରପୁର ଚୌଧୁରୀ ଜାତିରେ ନିରସ । ତାଙ୍କ ସାଙ୍ଗରେ ବିବାହ ସମ୍ବନ୍ଧ ଶାସନ ଗାଁରେ ନିଷିଦ୍ଧ । ତାଙ୍କ ଘରେ ଅନ୍ନପାକ ଗ୍ରହଣ କରିବା ଆଚାରବିରୁଦ୍ଧ । ଆମ ଗାଁ ଭୋଜି ସଭାରେ ବଂଶର କେହି ବସିଲେ, ଗାଁ ବ୍ରାହ୍ମଣେ ଚଳୁ ନ କରି ଉଠି ଯିବାର କଥା । କାନ୍ଧରେ ପଇତା ପଡିଲେ କଅଣ ହେବ, ଜାତିଆଣରେ ପାହାଚ ପାହାଚ, ତଳବାଲା ଉପରକୁ ଉଠିବା କାଠିକର ପାଠ । ଯାଗଯଜ୍ଞ କରି ପୁରୀ ରାଜାଙ୍କ ଠାରୁ ଶାସ୍ତ୍ରୀ ପଦବୀ ପାଇ ମୁକ୍ତି ମଣ୍ଡପ ସମ୍ମତି ମିଳିଲେ କେଜାଣି ଅବା ଅଧପାହାଚେ ଉଠି ହେବ । ସଭା ଉପର ପାହାଚର ସମକକ୍ଷ ହେବା ଅସମ୍ଭବ । କିନ୍ତୁ ପାହାଚ ଉପରୁ ତଳକୁ ଖସାଇ ପାରିଲେ ସମତା ଆସିପାରେ । ଓପରବାଲା ଜାତ୍ୟାଭିମାନୀ, ଅହଙ୍କାରୀ ମାତ୍ର ଦରିଦ୍ର । ଚୌଧୁରୀ ବଂଶ ଧନୀ । ପୁରୀ, କଟକ ଜିଲ୍ଲାରେ ତାଙ୍କର ଧନଜନିତ

Digitized by srujanika@gmail.com

ଖ୍ୟାତି । ଭାରତ ବର୍ଷର ବହୁ ତୀର୍ଥ ସ୍ଥାନରେ ତାଙ୍କର କୋଠା । ପୁରୀ, ଭୁବନେଶ୍ୱର, କଟକ, ପ୍ରୟାଗ, ମଥୁରାରେ ବାସସ୍ଥଳୀ । ଭିଙ୍ଗାରପୁରରେ କୋଠାବାଡି ବାଗବଗିଚାପୂର୍ଣ୍ଣ । ବଡ଼ ଭାଇଆଳି କୁଟୁମ୍ବ । ଗାଁରେ ଗୋପୀନାଥ, ବକ୍ରନାଥଙ୍କ ମନ୍ଦିର ମାନଙ୍କର ସମ୍ପତ୍ତି ଅଚଳ । ଜଣେ ଭାଇଙ୍କ ଘରେ ବାଘଭାଲୁ ପୋଷାହେଇ ଚିଡିଆଖାନା । ଜମିଦାରୀ ବହୁଆଡେ ବିସ୍ତୃତ । ଧନ ସାଙ୍ଗକୁ ମାନ ଥାଏ । ଧର୍ମ, ଆଚାର ପୂରାପୁରି ଶାସନୀ ବ୍ରାହ୍ମଣଙ୍କୁ ବଳି । ଖମାରଇ, ଛାମୁକରଣ, ଗୁମାସ୍ତା, ବେବର୍ତ୍ତା ସାଙ୍ଗକୁ ଜ୍ୟୋତିଷ, ପଣ୍ଡିତ ଖଞ୍ଜା ଥାଆନ୍ତି । ଊଣାଥାଏ କେବଳ ଜାତି ନିକିତିରେ । ସେତେବେଳେ ବଡ଼ଲୋକମାନଙ୍କର ଧନ ପରେ ଆଉ ଦୁଇ ଦିଗକୁ ନଜର ଥାଏ । କାହାରି କାହାରି ଉତ୍କଣ୍ଠା ହୁଏ ସରକାରୀ ସମ୍ମାନ-ସମ୍ମାନ କହିବା ଠିକ୍ ହେବ ନାହିଁ- ସରକାରୀ ଅନୁଗ୍ରହ । ସେଥିପାଇଁ ସବ୍‌ଡିଭିଜନର ଅଫିସର ଜିଲ୍ଲା କଲେକ୍ଟରଙ୍କ ସୁପାରିସ ପାଇଁ ଲସର ପସର ହୁଅନ୍ତି, ଦାତବ୍ୟ କାମରେ ଟଙ୍କା ଦିଅନ୍ତି । ରାୟ ସାହେବ, ଖେତାବ ପାଇଲେ କୃତ୍ୟ କୃତ୍ୟ ହୁଅନ୍ତି । ଆଉ କେହି ଥାଆନ୍ତି ଯେ ସରକାର ଅପେକ୍ଷା ସମାଜକୁ ଧରନ୍ତି ବେଶି, ଜାତି ପାହାଚରେ ଉଠିବାକୁ । ସେଥିପାଇଁ ମଧ୍ୟ ଧନ ଖଇରାତି ଲୋଡା । ଖଣ୍ଡାୟତ, କରଣ, କ୍ଷତ୍ରୀୟ ଯେପରି ପାହାଚ, ପାହାଚ, ବ୍ରାହ୍ମଣଙ୍କ ଭିତରେ ତା ଠାରୁ ବେଶି ପାହାଚର ବ୍ୟବଧାନ । ଭିଙ୍ଗାରପୁର ଚୌଧୁରୀ ଘର ଏହି ପାହାଚରେ ଉଠିବାକୁ ବହୁ ଦିନରୁ ଚେଷ୍ଟା କରୁଥିଲେ । ପୁରୀ ଶାସନ ଭିତରେ ବନ୍ଧୁ ପାତି ପାରିଲେ, ଅନ୍ୟ ଆଡେ ଜାତିଟାଣ ମେଳାଇ ଯିବ । ଆମ ଗାଁର ଜଗନ୍ନାଥ, ବଳଭଦ୍ର ମହାପାତ୍ରେ ଦୁଇଭାଇ ବତ୍ସସ କୁଳର ଶ୍ରେଷ୍ଠ ବ୍ରାହ୍ମଣ ବଂଶଜ କିନ୍ତୁ ଅତି ଅଭାବଗ୍ରସ୍ତ । ବାଳକୃଷ୍ଣ ଚୌଧୁରୀ ଚର ପେଶିଲେ ଏ ଦୁହିଁଙ୍କୁ ଲୋଭାଶକ୍ତ କରିବାକୁ । ଜମି ଦେବେ, ଘର ତୋଳିଦେବେ, ବାରମାସର ତେରପର୍ବ ସବୁ ଚଳାଇବେ, ଯାନି, ଯାତ୍ରା କଥା ବୁଝିବେ, ମୋଟ ଉପରେ ସଂସାର ସୁରୁଖୁରୁରେ ଚଳାଇବା ପାଇଁ ତାଙ୍କ ଉପରେ କିଛି ଆଞ୍ଚ ଆସିବ ନାହିଁ । ଗାଁରେ ଅନ୍ୟ ସମସ୍ତଙ୍କ ଅପେକ୍ଷା ସେ ଦୁହେଁ ବିନା ପରିଶ୍ରମରେ ସ୍ୱଚ୍ଛଳ ଅବସ୍ଥାର ଅଧିକାରୀ ହୋଇପାରିବେ, ଚୌଧୁରୀ କନ୍ୟା ପାଣିଗ୍ରହଣ କଲେ । ଜାତି ଅଭିମାନ ଠାରୁ ଲକ୍ଷ୍ମୀ ଆଗମନ ଅଧିକ ଲୋଭନୀୟ ହେଲା- ଦୁଇ ମହାପାତ୍ରେ ଚାଲିଲେ ବରବେଶରେ ଭିଙ୍ଗାରପୁର । ଫେରିଲେ ବହୁ ଜାକଜମକରେ । ପାଲିଙ୍କି, ସବାରୀ, ଗୋରୁଗାଡି, ବୋଝଭାରରେ ଗାଁ ଚମକିଲା । କିନ୍ତୁ ଗାଁବାଲାଙ୍କ ପତ୍ର ତାଙ୍କ ଘରେ ପଡିଲା ନାହିଁ । ଜ୍ଞାତି, କୁଟୁମ୍ବ ବାରିଲେ, ଅଦା ଘରେ ବନ୍ଧୁ କଲେ ବୋଲି ।

Digitized by srujanika@gmail.com

ଅଦା ବୋଇଲେ ଭିଙ୍ଗାରପୁର ଚୌଧୁରୀଙ୍କୁ ବୁଝାଏ; ଯେପରି ଦୁବ କହିଲେ ପୁରୀ ମାର୍କଣ୍ଡେଶ୍ୱର ସାହି ଧନୀ ପରିବାର ଭିଖାରୀ ମିଶ୍ରଙ୍କ ଘରକୁ ଚିହ୍ନନ୍ତି । କେଉଁ କାଳେ ପୂର୍ବ ବଂଶ ଅଦାଚାଷ କରିଥିବାର ଖିଅଧରି ସାମାଜିକ ତାଚ୍ଛଲ୍ୟରେ କୁଳୀନ ସଂପ୍ରଦାୟ ଚୌଧୁରୀଙ୍କୁ ଅଦା ଆଖ୍ୟା ଦେଉଥିଲେ । ଆଦ୍ୟରେ ବିଦ୍ରୋହ, ପରେ ମୈତ୍ରୀ ବାଳକୃଷ୍ଣ ଚୌଧୁରୀ ଜାଣିଥିଲେ । ତାଙ୍କର ଚେଷ୍ଟା ଥିଲା, ଅଙ୍ଗୁଳି ପ୍ରବେଶରୁ ବାହୁ ପ୍ରବେଶ । ବିବାହଘର ବାସି, ଇଟାକାନ୍ଥ, ଚୁନ, ପଲସ୍ତରା, ସାତଶେଣିଆ ଚାଳରେ ପାଞ୍ଚ ବଖରିଆ ଘର ଠିଆହେଲା । ଆଗକୁ ଇଟାରେ ବେଦୀ, ଓପରେ ଚାଳ । ଖରାକୁ ଛାଇ, ବର୍ଷାକୁ ଶୁଖିଲା । ପଶାପାଲିକୁ ଛଇତି, ମଇତି । ଦିପହରେ ଖାଇପିଇ, କଡ ଓଲଟାଇ ଆଖି ମଳ ମଳ କରି ଉଠନ୍ତି ବଳଭଦ୍ର ମହାପାତ୍ରେ । ପଶାପାଲି ପାନବଟୁଆ ସହ ଉଭା ବେଦୀ ଉପରେ । ଡାକ ଶୁଣି ଅନ୍ୟମାନେ ଗଡନ୍ତି । ଅଦାଗନ୍ଧ ଉଭେଇ ଯାଏ । ଗାଁ ଠାକୁର ଗୋପୀନାଥଙ୍କ ପାଖରେ, ଜୋରିମାନା ନୁହେଁ, ମୋଟା ପ୍ରଣାମୀ ଓ ପଚ୍ଛବସ୍ତ୍ର ଦେଇ ସ୍ଖଳନ କ୍ଷାଳନ ହୋଇଗଲା । ପାଳି, ଖେଚୁଡି, ଶ୍ରାଦ୍ଧ, ମଉଳାକୁ ଜ୍ଞାତି କୁଟୁମ୍ବ ଫେରିଲେ । ମହାପାତ୍ରଙ୍କ ଦୁଆରେ ଗାଁ କହଳି ଆଗଠାରୁ ବେଶି । ପଶାଖେଳ ତେଣୁ ନିତିଦିନିଆ ତାଙ୍କ ବେଦୀ ଉପରେ । ବାହାର ଗାଁରୁ କାହାଘରକୁ କୁଣିଆ ଆସିଥିଲେ, ସେଠାରେ ଯାଇ ଯୁଟନ୍ତି । ପାନ, ମାନ ପାଆନ୍ତି । ପଶାକାଠି ଗଡାଇଲେ ପ୍ରବୀଣତା ଜାହିର ହୁଏ । ବେଦୀ ଉପରେ ଦେଖଣାହାରୀ, ବେଦୀ ତଳକୁ ଆମେ-ପିଲାଙ୍କ ଭିଡ । ଖେଳ ବୁଝୁ ନାହିଁ, ମେଳ ଦେଖୁ, କୁହାଟ ଶୁଣୁ, ପରନିନ୍ଦା କିଛି ବୁଝୁ । ଗାଁ ଆର ମୁଣ୍ଡରେ ମଧ୍ୟ ପଶାପାଲି ପଡେ, ଦିଗୀତଙ୍କ ପିଣ୍ଡାରେ । ତାଙ୍କ ଘର ଗାଁରେ ସବୁଠାରୁ ଥିଲାବାଲା । ତାର ଏକ ଚାକ୍ଷୁସ ପ୍ରମାଣ, ଭାଙ୍ଗ ଅଫିମରେ ଖର୍ଚ୍ଚ ସେ ଘରେ ସର୍ବାଧିକ । ପିଣ୍ଡିକ ଦିଗୀତେ ଯଜ୍ଞ କରିଥିଲେ । ପୂର୍ଣ୍ଣାହୂତିରେ ଜାତି କଳମଷ ସ୍ୱର୍ଣ୍ଣପାକ ପାଇଲା । ଗାଁରେ ଧନ ଓ ମାନ ସେ ଘରେ ଠାଇ ହେଲା । ତାଙ୍କର ମଧ୍ୟ ପଥର ପିଣ୍ଡା, ଚୂନକାନ୍ଥ, ନଅଶେଣୀଆ ହାତିଆ ଚାଳ । ବାଡିଆଡ଼େ ସାହାଲେ ମାଟି ଆଟୁ ଧାନ କୋଠି । ଦାଣ୍ଡପିଣ୍ଡାରେ ପଶାଖେଳ ପାଇଁ ସବୁ ସଲଟଣ ଥାଏ । ଖେଳର ଆସର ଜମେ ଭଲ । ଗୁରୁବାରଟା ଛାଡ ଯାଏ । ଗାଁ ମଝିରେ ନନ୍ଦ ପଚ୍ଛାରେ କେବେ କେବେ ପାଳି ପଡୁଥିଲା; କିନ୍ତୁ ଚିନ୍ତାମଣି ମିଶ୍ରଙ୍କ ଗଞ୍ଜପା ସାଙ୍ଗରେ ଟକର ଦେଇ ନ ପାରି ମଉଳିଗଲା । ଖେଳ ସାଙ୍ଗରେ ଖଳ ମଧ୍ୟ ଥାଏ । ପଚିଶ ବର୍ଷ ମଧ୍ୟରେ ନନ୍ଦ ବଂଶ ଉଠିଲେ ତେଜିୟାନ ହୋଇ । ନଡିଆ ବ୍ୟବସାୟ, ଧାନଚାଷ ତାଙ୍କର ବଢ଼ିଲା ।

Digitized by srujanika@gmail.com

ଦିଗୀତ ଘର ମୋହିଁଲେ ଡଳକୁ ଡଳକୁ । ଜମି ବିକାଭଙ୍ଗା କରି କେତେ ଦିନ ଚଳିଲା । ଶଶୁର ଘର ବଳଭଦ୍ର ମହାପାତ୍ରଙ୍କୁ କାଳ ହେଲା ମାଗିଆଣିଲା ତିଅଣ ହାପୁରାଏ । ନଈସୁଅରେ ପାଲପରି ପଶାପାଲି ଟାଣିନେଲା ଦୁଇ ପରିବାରକୁ ଧ୍ୱଂସର ଗହ୍ୱରକୁ । ପଶା ଉଠିଗଲା, ଫାସ ଝୁଲିଲା ବଂଶଧରଙ୍କ ବେକରେ । ଗାଁରେ ଆଉ ନା ଅଛି ଗଞ୍ଜାପା, ନା ପଶା । ବୋହୂବୋହୂକା, ବୋହୂଚୋରୀ, ଉଠିଯାଇଛି । ଖମ୍ବ ବୋଇଲେ ପିଲାଏ ଏବେ ବୁଝନ୍ତି ସିମେଣ୍ଟ ପିଲାର୍ । ନଡିଆ ଗଛ ମୂଳ ଖମ୍ବ ଖମ୍ବିକା ଭୁଲିଗଲେଣି । ଗାଁରେ ବର୍ଷକେ ଥରେ ଅଧେ ଥିଏଟର ହେଉଛି । ଚନ୍ଦନ ବେଳେ ଆଉ ଯାତ୍ରା ହୁଏ କ୍ୱଚିତ୍ । ପିଲାଙ୍କର ସେଥିକି ଆଗ୍ରହ ନାହିଁ । ସିନେମାକୁ ମନ । ରାମଲୀଳା ଖେଳ ଆଉ କୁଆଡୁ ଆସିବ ? କଉଡି ଗଲାଣି କାଣୀ ହୋଇ । କଡେ ଦି' କଡା କାହା ଘରେ ମିଳିଲେ ବଡ଼ । ବିବାହ ପରେ ବରକନ୍ୟା କାଁ ଭାଁ ଏବେ କଉଡି ଖେଳରେ ସମ୍ବର୍ଦ୍ଧିତ ହୁଅନ୍ତି । ବାର ବର୍ଷର ପୁଅ, ନଅ ବର୍ଷର ଝିଅକୁ ସିନା କଉଡି ଖେଳଉଥିଲେ, ଏବେ ତ ବିବାହ ବେଳକୁ ଯୁବା ବୟସ । ସେମାନେ ମା ମାଉସୀଙ୍କୁ ଖେଳାଇବାକୁ ହକ୍‌ଦାର୍ । କେବଳ ତାସ ରହି ଆସିଛି । ମୁଁ ସେଥିରେ ପାରଙ୍ଗମ ନଥିଲି । ମୋ ଖେଳ ସବୁ ଶେଷ ।



Digitized by srujanika@gmail.com

# ଆମ ଗାଁ

ମୋ ନାତିମାନେ ଗାଁ ନ ମାଡ଼ିଲେ ମଧ ଆମ ଗାଁ ବୋଲି କହନ୍ତି । ସହରକୁ କେହି ମୋ ସହର କହନ୍ତି ନାହିଁ । ଖୁବ୍ ହେଲେ ଆମ ସାହି, ଆମ ଗଳି ପର୍ଯ୍ୟନ୍ତ ଯାଆନ୍ତି । ଗାଁରେ ସମ୍ବନ୍ଧ ପାରମ୍ପରିକ । ସହର ସମ୍ପର୍କ ବୈଷୟିକ । ମା'ଠାରୁ ବିଚ୍ଛିନ୍ନ ଥାଇ, ପରେ ଫେରିଲେ ପଖାଳ ମୁଠେ ନିଶ୍ଚିତ । ଧାଇ ସାଙ୍ଗେ କେବେ ଦେଖାହେଲେ ହାତଟେକାରେ ଶେଷ । ଚାଳିଶବର୍ଷ କଟକରେ ରହି, ଗାଁ ଛାଡ଼ରା ଥାଇ ଏବେ ଭାବିଲାବେଳକୁ, କଲମ ମୂନକୁ ଆସି ଯାଉଛି 'ଆମ ଗାଁ' ।

ସତ୍ୟବାଦୀ ପୁଲିସଥାନା ଆଗ ଦେଇ ଜଗନ୍ନାଥ ସଡକ ଯାଇଛି ପୁରୀ ପର୍ଯ୍ୟନ୍ତ । ଛଅନମ୍ବର ରାଜ୍ୟ ପଥକୁ ନାମ ପରିବର୍ତ୍ତନ ଘଟିଛି । ପିଲାଦିନେ ଦେଖିଥିଲି ନାଲି ସଡକ, ମୋରମ ବିଛା । କଳାପିଚୁରେ ପିଠି ତାର ଏବେ ଖରାରେ ଚକ୍‌ଚକ୍ । ରଙ୍ଗ ବଦଳିଲା ନାଲିରୁ କଳା । ଆଗକୁ ହେବ କଳାରୁ ଧଳା, ଯେତେବେଳେ ସିମେଣ୍ଟ ଢ଼ଳେଇ ପେଭ୍‌ମେଣ୍ଟ ରାସ୍ତା ହେଇଯିବ । ସମାଜର ଢ଼ଙ୍ଗ ସଙ୍ଗେ ରାସ୍ତାର ରଙ୍ଗ ବି ବଦଳି ଯାଇଛି । ଥାନା ପାଖରୁ ଶହେଗଜ ଦୂରରେ ଜଗନ୍ନାଥ ସଡକରୁ ପୂର୍ବକୁ ମାଟି ରାସ୍ତାରେ ମାଇଲକ ପରେ ଆମ ଗାଁ, ବିଶ୍ୱନାଥପୁର । ଜୟପୁର, ଧୋବାସାହି, କୋଶଳେଶ୍ୱର ବାଟରେ ପଡେ । ବେଶିଭାଗ, ଦିପଟରେ ଧାନବିଲ । ଡାହାଣ ପଟରେ ଠାଏ-ଠାଏ ନୟନଯୋଡି । କାଦୁଅ ପୂର୍ଣ୍ଣ, ଦଳଭରା, ସ୍ରୋତହୀନ ପାଣିଧାରକୁ କୁହାଯାଏ ନୟନଯୋଡି, ଦୃଷ୍ଟିଶୂନ୍ୟକୁ କମଳଲୋଚନ କହିଲାପରି । ଗାଁର ବିଶେଷତ୍ୱ କିଛି ନଥିଲା । ପୁରୀ ଜିଲ୍ଲାର ସବୁ ଶାସନ ପରି ଏ ଗୋଟିଏ । ତୁଳନାରେ ବରଂ ଛୋଟ । ବୋଧହୁଏ ମର୍ଯ୍ୟାଦା ମୂଳରୁ ଟିକିଏ ବେଶି ଥିଲା । ବ୍ରାହ୍ମଣ ଶାସନ ଷୋଳଟି ରାଜା ବସାଇ ଥିଲେ । ପ୍ରତି ଗାଁକୁ ନିଷ୍କର ଭୂମି ଦେଉଥିଲେ ଗ୍ରାମବାସୀଙ୍କର ସାଂସାରିକ ଚିନ୍ତାର ନିବୃତ୍ତି ପାଇଁ । ସେମାନଙ୍କର ବୃତ୍ତି ହେବାର ଥିଲା ଦେବାର୍ଚ୍ଚନା, ଶାସ୍ତ୍ର ଅଧ୍ୟୟନ ଓ ଶିକ୍ଷାଦାନ । ଯେ ପାରୁଥିଲେ ତାଳପତ୍ର ପୋଥି ଲେଖୁଥିଲେ, ସଂସ୍କୃତରେ, ଓଡିଆରେ ।

Digitized by srujanika@gmail.com

ପ୍ରତି ଶାସନର ଆଦ୍ୟ ଓ ପ୍ରାନ୍ତରେ ଅନ୍ତତଃ ଦୁଇଟି ଦେବ ମନ୍ଦିର, ଦୁଇଟି ପୁଷ୍କରିଣୀ । ଶାସନ ସମ୍ପର୍କରେ ''ବିହନ''ବୋଲି କଥା ଅଛି । 'ବି' ବୋଇଲେ ବିଶ୍ୱନାଥ ପୁର,'ହ' କହିଲେ ହରେକୃଷ୍ଣ ପୁର,'ନ' ହେଲା ନରସିଂହ ପୁର । ବିହନ ଅର୍ଥ ମଞ୍ଜି । ଶାସନ ମଧ୍ୟରେ ଏହି ତିନି ଗାଁକୁ ମୂଳ ପ୍ରାଧାନ୍ୟ ଦିଆହୋଇଥିଲା ।ଏହାର ସତ୍ୟତା ଲୋକଶ୍ରୁତି । ବ୍ରାହ୍ମଣ ଗାଁକୁ ଗ୍ରାମ ବା ଶାସନ ନ କହିଲେ, ଲୋକେ ରୁଷ୍ଟ ହୁଅନ୍ତି । ଆମ ପିଲାଦିନକୁ ଗ୍ରାମର ପୂର୍ବ ପ୍ରୌଢ଼ି ଗ୍ରାମବାସୀଙ୍କର ସର୍ବସ୍ୱ । ସଂସ୍କୃତ ଶିକ୍ଷା କିମ୍ବା ଚର୍ଚ୍ଚା ନଥିଲା । ଗାଁ ଭିତରେ ଜଣେ ମାତ୍ର ପଣ୍ଡିତ ଅଭିମାନୀ ଥିଲେ, କୁଶେଇ ରଥେ । ତାଙ୍କୁ ପଣ୍ଡିତ ବୋଲି କେହି ଡାକନ୍ତି ନାହିଁ । ସେ ନିଜକୁ ପଣ୍ଡିତ କୃଷ୍ଣଚନ୍ଦ୍ର ରଥଶର୍ମା କରି ପରିଚୟ ଦିଅନ୍ତି ଓ ପିଣ୍ଡାରେ ବହିଧରି ଅନେକ ସମୟରେ ବସନ୍ତି । ଗୋପୀନାଥ ମନ୍ଦିରରେ ସନ୍ଧ୍ୟାବେଳେ ପୁରାଣ ପାଠ କରନ୍ତି । ପର ଚର୍ଚ୍ଚା, କାହାରି କୁତ୍ସାରେ ନ ଥାନ୍ତି । ପ୍ରତିଦିନ ସନ୍ଧ୍ୟା ପହରେ ଥାଇ କାନ୍ଧରେ ଚାଦର ପକାଇ ସତ୍ୟବାଦୀ ବଜାର ଆଡେ ଯାଆନ୍ତି । ରେଳଷ୍ଟେସନ, ପୁଲିସଥାନା, ଡାକ୍ତରଖାନା, ପୋଷ୍ଟ ଅଫିସ, ସାକ୍ଷୀଗୋପାଳ ମନ୍ଦିର ଅଫିସ ଆଡେ ବୁଲି ସନ୍ଧ୍ୟାକୁ ଗ୍ରାମକୁ ଫେରନ୍ତି । ସେ ସବୁ ସ୍ଥାନରେ ପଣ୍ଡିତ ବୋଲି ଗୃହୀତ ହୋଇ କିଛି ପାଥେୟ ପାଆନ୍ତି । ପାଞ୍ଜି ଦେଖି ଏକାଦଶୀ, ସଂକ୍ରାନ୍ତି ଲୋକଙ୍କୁ ବତାନ୍ତି । ସରଳ  ପ୍ରକୃତିର ଲୋକ ଥିବାରୁ ଗାଁରେ ତାଙ୍କ ସମବୟସୀଙ୍କ ଠାରୁ ପ୍ରକାଶ୍ୟ ଅପସନ୍ଦ ମନ୍ତବ୍ୟ ବହୁ ସମୟରେ ଶୁଣୁଥିଲେ କିନ୍ତୁ ସେଥିକି ତାଙ୍କର ଗ୍ରାହ୍ୟ ନ ଥିଲା, ଅମାୟିକ ଲୋକ । ମୋ ପ୍ରତି ପ୍ରସନ୍ନ ଥିଲେ । ପାଖକୁ ଡାକି ବେଳେ ବେଳେ ପୁରାଣ ଗପ  କହୁଥିଲେ । ବୟସ୍କମାନଙ୍କର ଅବହେଳା ଦେଖି ପିଲାମାନେ ନାପସନ୍ଦ କରି ତାଙ୍କଠାରୁ ଦୂରେଇ ରହୁଥିଲେ । ମୋ ପାଖରେ ତାହାର ବ୍ୟତିକ୍ରମ ଦେଖି ସେ ବୋଧହୁଏ  କିଛି ଗୌରବବୋଧ କରୁଥିଲେ । ଅନ୍ୟ କାହା ଘରକୁ ନଯାଇ ବେଳେ ବେଳେ ଆମ ଦାଣ୍ଡ ପିଣ୍ଡାକୁ ଆସୁଥିଲେ, ବିଶେଷ କରି ନନା ଯେତେବେଳେ ଗାଁକୁ ଆସନ୍ତି । ଦଦେଇଙ୍କ ପାଖରେ ତାଙ୍କର କଦର ଯୁଟୁ ନଥିଲା । ଆଉ ଜଣେ ଥିଲେ, ମାଧବ ମିଶ୍ରେ । ବୟସରେ କୁଶେଇ ରଥଙ୍କଠାରୁ ବଡ । ତାଙ୍କ ପାଖରେ ଯାଚି ଓଳଗି, ମାଗି କଲ୍ୟାଣ ନ ଥିଲା । ତାଙ୍କୁ କେହି ପଣ୍ଡିତ ବୋଲି ଡାକୁ ନ ଥିଲେ କିମ୍ବା ସେ ଓପରେ ପଡି ପଣ୍ଡିତ ବୋଲି ପରିଚୟ ଦେଉ ନଥିଲେ । ଘରେ ଚଳିବା ସମ୍ବଳ ଥାଏ କିଛି । ନୈଷଧ ବୋଲି ସଂସ୍କୃତ କାବ୍ୟ ଥିବା ଅତି ପିଲାଦିନେ ତାଙ୍କଠାରୁ ଶୁଣିଥିଲି । ପରେ ନୈଷଧ ସମ୍ବନ୍ଧରେ ଯେତେବେଳେ ଜାଣିଲି, ମାଧବ ମିଶ୍ରଙ୍କ କଥା ବହୁତ ମନେ ପଡିଥିଲା । ସେ ସଂସ୍କୃତ ଶିଖିଥିଲେ, ଶ୍ଳୋକ ବୋଲିଲାବେଳେ

Digitized by srujanika@gmail.com

ସାପ ମନ୍ତ୍ରକୁ ସାପ ଆଗେଇଲା ପରି, ଅନେକ ତାଙ୍କ ପାଖରେ ରୁଣ୍ଡ ହୁଅନ୍ତି । ଶ୍ଳୋକ ବୋଲା ଆରମ୍ଭ ହୁଏ ତାଙ୍କର ସନ୍ଧ୍ୟା ନିତ୍ୟକର୍ମ ପରେ ଓ ଚାଲେ ଖାଇବା ପାଇଁ ପତ୍ନୀଙ୍କର ଡାକରା ଯାଏ । ଚେହେରାଟି କମନୀୟ, ଗୋଲଗାଲ, ପକ୍ୱ ସ୍ୱଚ୍ଛ କେଶ, ନିରହଙ୍କାରୀ । ସ୍ନେହ ନଥାଇ ସମ୍ଭ୍ରମ ପାଉଥିଲେ । କୁଶେଇ ରଥଙ୍କର ଓଲଟା । ବ୍ରାହ୍ମଣ ଶାସନରେ ବିଭବ ଥିଲା ବିଦ୍ୟା, ପ୍ରୋଢ଼ିଥିଲା କୁଳ । ପ୍ରଥମଟି ପ୍ରୟାସଲବ୍ଧ, ଦ୍ୱିତୀୟ ପୂର୍ବଧେୟ । ଊନବିଂଶ ଶତାବ୍ଦୀ ଆରମ୍ଭରୁ କମି କମି ସଂସ୍କୃତର ଆଦର ବିଂଶ ଶତାବ୍ଦୀ ଆରମ୍ଭ ବେଳକୁ ପ୍ରାୟ ଶେଷ ହୋଇ ଯାଇଥିଲା । ଆମ ଦେଖନ୍ତେ ସେ ବିଭବ ଆଉ ନଥିଲା । ଯାହା ଘରେ ସଂସ୍କୃତ ଲେଖା ପୋଥି ଥିଲା, ତାହା ସବୁ ପେଟରାରେ ବନ୍ଦ କିମ୍ବା ବସ୍ତାନି ବନ୍ଧା ହୋଇ ଭାଡି ଉପରେ ଅଳନ୍ଧୁ ଖାଉଥିଲା । କିନ୍ତୁ କୁଳ ପ୍ରୋଢ଼ିଥାଏ ଅତୁଟ ।

ଗାଁରେ ବାସିନ୍ଦା କେବଳ ବ୍ରାହ୍ମଣ । ତାଙ୍କୁ କହନ୍ତି ସାଆନ୍ତେ (ସାମନ୍ତ) ବ୍ରାହ୍ମଣ । ମହାପାତ୍ର, ରଥ, ମିଶ୍ର, ନନ୍ଦ ଏହି ସଞ୍ଜ୍ଞାର ସେମାନେ । ତାଙ୍କ ଭିତରେ ବାଚପେୟୀ ରଥ ଉପର ସ୍ତରର, ତାଙ୍କ ତଳକୁ ବତ୍ସସ ମହାପାତ୍ରେ । ତା'ପରେ ଅନ୍ୟ ଦୁଇ ପଂକ୍ତି । ଆମେ ଦ୍ୱିତୀୟ ପାହ୍ୟାର । ବାଜେପେୟୀ ମାତ୍ର ତିନି ଘର । ଆମର ଛଅ ଘର । ବାଜପେୟୀ ଅନ୍ୟ କାହାଘରେ ସଖୁଡି ପତ୍ରରେ ବସିବେ ନାହିଁ । ଆମେ ମଧ୍ୟ ସେହିପରି ଆମ ଜ୍ଞାତି କୁଟୁମ୍ବ ମଧ୍ୟରେ ଆବଦ୍ଧ । ପୁରୀ ଜଗନ୍ନାଥଙ୍କ ମହାପ୍ରସାଦରେ ସେ ବାରଣ ନଥାଏ । ଗାଁରେ ନିସଖୁଡି ଭୋଗରେ କୋହଳ ନୀତି ଚଳେ । ବାଜପେୟୀ, ବତ୍ସସଙ୍କ ଡକରାରେ ଅନ୍ୟମାନେ ଖାଇବାକୁ ଆସନ୍ତି, ସମ୍ମାନର ସ୍ୱୀକୃତି ସ୍ୱରୂପ । ମୋ ପିଲାଦିନେ ଏ ସବୁ କଟକଣା କଠୋର ଥିଲା । କୁଳ ଅନୁସାରେ ପିଲାଙ୍କ ଭିତରେ ମଧ୍ୟ ଅଭିମାନ ଥାଏ । ଆମ ଗାଁରେ କେବଳ ନୁହେଁ , ସବୁ ବ୍ରାହ୍ମଣ ଶାସନରେ ସେହି ପ୍ରକାର । ବିବାହ ପାଇଁ ପାତ୍ର, ପାତ୍ରୀ ଖୋଜିଲାବେଳେ ଏହି ସ୍ତର ସଚେତନତା ସନ୍ଧାନର ପରିସର ନିର୍ଣ୍ଣୟ କରିଦିଏ । ଆଗ କୁଳ, ପରେ ସ୍ୱଚ୍ଛଳତାର ତନଖି । ସବୁ ଗ୍ରାମର ବ୍ରାହ୍ମଣମାନଙ୍କ ଅବସ୍ଥା ପ୍ରାୟ ଏକ ପ୍ରକାର ଅସ୍ୱଚ୍ଛଳ । ଯେ ଯେତେଦିନ କୁଳକୁ ଧରି ରଖିଛି ତାହାର ଗାରିମା ସେତେ ବେଶି । ଧାନଚାଷ ଉପରେ ସମ୍ପୂର୍ଣ୍ଣ ନିର୍ଭରତା ଥିବା ପର୍ଯ୍ୟନ୍ତ, କୁଳ ସାପେକ୍ଷ ଚଳଣି ସମ୍ଭବ ଥିଲା । ଏହା ପାଶ୍ଚାତ୍ୟର ଜୀବନଦର୍ଶନ ବ୍ୟକ୍ତିକୈନ୍ଦ୍ରିକ । ଧର୍ମ ଆଚରଣର ଗୌରବ ଭୂମିକା ସମସ୍ତଙ୍କ ପ୍ରତି ପ୍ରଯୁଜ୍ୟ ଥିବାରୁ, ଗୋଟିଏ ସାଧାରଣ ମାନଦଣ୍ଡରେ ସମସ୍ତଙ୍କର ତଉଲ ହୁଏ । ଆଚରଣର ଉତ୍କର୍ଷ ବ୍ୟକ୍ତିର ସାଧନା ଉପଯୋଗୀ । ଜୀବନର ବ୍ୟାବହାରିକ ପର୍ଯ୍ୟାୟ

Digitized by srujanika@gmail.com

ତେଣୁ ଗୌଣ ଦୃଷ୍ଟିରେ ଦେଖାଯାଏ । ଏହି ମୂଲ୍ୟବୋଧର ସମାନ୍ତରାଳରେ ବ୍ୟକ୍ତିବିଶେଷଙ୍କର ଚାରଣଭୂମି ବିକ୍ଷିପ୍ତ ବା ବିସ୍ତୃତ ନ ହୋଇ ଅତି ସୀମିତ ରହିବା ସ୍ୱାଭାବିକ ଥିଲା । ଗାଁରେ ଅନେକ ଥିଲେ ଯେ ସତ୍ୟବାଦୀ, ପୁରୀ ଟପି ନଥିଲେ । କେହି କେହି ଜୀବନରେ ଥରେ ଦୁଇଥର ମାତ୍ର ପୁରୀ ଯାଇଛନ୍ତି । ଗ୍ରାମ ଚଉହଦି ଯଥେଷ୍ଟ ଥିଲା ସେମାନଙ୍କ ପକ୍ଷରେ । ତା ବାହାରକୁ ନା ଥିଲା କୌତୂହଳ, ନା ଆବଶ୍ୟକତା । ଚାହିଦା କମ୍ । କେତେ ଲୋକଙ୍କର ଖଣ୍ଡିଏ ଧୋତି, ଗୋଟିଏ ଗାମୁଛାରେ ଚଳେ । ଗାଧୋଇ, ଗାମୁଛା ପାଲଟନ୍ତି । ଲୁଗା ଶୁଖେ । ଦିହ ଦିହରେ ଓଦା ଗାମୁଛା ଶୁଖିଯାଏ । ତାକୁ ପିନ୍ଧି ଦିଅଁ ବସାଇବା, ଖାଇବା ଇତ୍ୟାଦି ଚଳେ । ଲୁଗା ଶୁଖିଲେ ତା ପିନ୍ଧାରେ ଆରଦିନ ଗାଧୋଇବା ପର୍ଯ୍ୟନ୍ତ ଚାଲିଯାଏ । ଏଥିରେ ସଂକୋଚ କିଛି ନଥାଏ । ଏପରି ଅଳ୍ପ ଚାହିଦା ପୂରଣ ପାଇଁ ସାମାନ୍ୟ ଜମିରୁ ଭାଗଧାନ ଓ କେତେକ ନଡିଆ ଗଛର ଆୟକୁ ବେଶି ଅକୁଳାନ ବୋଲି ଭାବନ୍ତି ନାହିଁ । ସେହି ପରିପ୍ରେକ୍ଷୀରେ କୁଳକୁ ନିଷ୍କଳଙ୍କ ରଖି ନିଜ ସମତୁଲ୍ୟ ଘରୁ ବୋହୂ ଆଣିବା ବା ଝିଅକୁ ବିବାହଦେବା ଓ ନିଜର ନିର୍ଦ୍ଦିଷ୍ଟ ଜ୍ଞାତି କୁଟୁମ୍ବଙ୍କ ମଧ୍ୟରେ ଜୀବନ ଯାତ୍ରାର ସମ୍ପର୍କ ସବୁ ଆବଦ୍ଧ ରଖିବା ସର୍ବଜନପୂଜିତ ଓ କାମ୍ୟ ବ୍ୟବସ୍ଥା ରୂପେ ଚାଲିଥାଏ । ବିଦ୍ୟା ଅଧ୍ୟୟନ ଓ ଜ୍ଞାନଚର୍ଚ୍ଚାର ସାଧାରଣ ଅଭାବ ହେତୁ ଆଚାର ପରମ୍ପରାର ଜୀବନ ସତ୍ୱ କ୍ରମଶଃ ଲୋପ ପାଇ କେବଳ ଶୁଷ୍କ ଆବରଣର ଖୋଳପା ଦ୍ୱାରା ଯାହା ପରିଚିତ ହେଉଥାଏ । କୁଳ ପରମ୍ପରାର ମହନୀୟତା ଥିଲା ସୀମାବଦ୍ଧ ଗୋଷ୍ଠୀଗତ ଏକନିଷ୍ଠ ବିଦ୍ୟା ଓ ଧର୍ମର ଅନୁଶୀଳନରେ । ତାହାର ଅଭାବରେ କୁଳ ଅକୁଳ ହୋଇ ଯାଉଥିଲା । ବୃଥା ବାହ୍ୟାଡମ୍ବରର ଏକ କୁହେଳିକା ପରି ତାହା ଗ୍ରାମବାସୀଙ୍କର ମନ ଆଚ୍ଛାଦନ କରି ରଖିଥିଲା ମାତ୍ର ।

ଗ୍ରାମଟି ପଶ୍ଚିମରୁ ପୂର୍ବକୁ । ପଶିବା ବେଳକୁ ତାରିଣୀଙ୍କ ଦେଉଳ, ତାପରେ ମହାଦେବ, ମୁଖ୍ୟ ଗୋପୀନାଥଙ୍କ ମନ୍ଦିର ପାଖରୁ ଗ୍ରାମର ଆରମ୍ଭ । ମନ୍ଦିରର ଡାହାଣକୁ ପୁଷ୍କରିଣୀ—ବାଲିପୋଖରୀ । ଗାଁ ଦାଣ୍ଡ ଅଣଓସାରୀ ନୁହେଁ । ଦୁଇଟି ଶଗଡ ବିପରୀତ ଦିଗରୁ ଗଲାବେଳେ ଲୋକ ଯାତାୟାତ ପାଇଁ ସ୍ଥାନ ଯଥେଷ୍ଟ । ଦାଣ୍ଡର ଦୁଇଧାରରେ ପ୍ରଶସ୍ତ ପନ୍ଦାଡ । ତା ପରେ ବାସଗୃହ ଲଗାଲଗି ଧାଡି । ଦକ୍ଷିଣ ସାହିରେ ଆମ ଘର । ସମସ୍ତଙ୍କ ଘର ବଖରା ମାପରେ । ବଖରାକ ଛଅହାତ ଲମ୍ବ । ଦାଣ୍ଡଠାରୁ ସେହି ମାପରେ ପନ୍ଦାଡ ଉପରେ ଘରବାଲାର ଅଧିକାର । ସେହିପରି ଘରଡିହର ପଛରେ ସେହି ମାପ ଅନୁସାରେ ଗଡିଆ ପର୍ଯ୍ୟନ୍ତ ଗୃହସ୍ଥଳୀ ଅଧିକାର ଅନ୍ତର୍ଭୁକ୍ତ ।

Digitized by srujanika@gmail.com

ଗ୍ରାମର ନିର୍ମାଣ ଶୈଳୀରେ ପାରଦର୍ଶିତା ଅଛି । ଦକ୍ଷିଣ ସାହିର କେହି ବସବାସ ଘର ଉତର ଆତକୁ ବଢ଼ାଇବାକୁ ନିଷେଧ । ଉତର ସାହିବାଲା ଦକ୍ଷିଣକୁ ମଡାଇବା ବାରଣ । ଫଳରେ, ଦୁଇସାହିର ଘର ଏକ ଏକ ସରଳରେଖାର ସମ୍ମୁଖ ସୀମାନ୍ତରେ ଆବଦ୍ଧ ଏବଂ ଦାଣ୍ଡ, ପଦାତ ସବୁବେଳେ ଅସଙ୍କୁଚିତ । ଅଲଘଂନୀୟ ପରମ୍ପରା ଅନୁସାରେ ଏହି ବିଧି ରହି ଆସିଛି । ଲଘଂନରେ ଦଣ୍ଡ ନାହିଁ , ନିନ୍ଦା ଅଛି । ପାଳନରେ ମର୍ଯ୍ୟାଦା । ତାହାହିଁ ଶହ ଶହ ବର୍ଷଧରି ଲୋକଙ୍କୁ ଗୋଟିଏ ବାଟରେ ଚଳାଇ ଆସୁଛି । ଶାସ୍ତ୍ରାନୁମୋଦିତ ବାସ୍ତୁପରୀକ୍ଷା, ଦିଗନିର୍ଣ୍ଣୟ, ଚତୁଃସୀମା ନିର୍ଦ୍ଧାରଣରେ ଏହି ଗ୍ରାମ ସବୁ ନିର୍ମିତ ହୋଇଥିଲା । ଗ୍ରାମ ନିଶ୍ଚିତ ସୀମା ମଧ୍ୟରେ ଅବସ୍ଥିତ । ପୂର୍ବ ବା ପଶ୍ଚିମକୁ ମଧ ସଂପ୍ରସାରଣ ନିରୋଧ କରିବା ପାଇଁ ଉଭୟ ଦିଗରେ ଦେବମନ୍ଦିର ଓ ପୁଷ୍କରିଣୀ । ପୂର୍ବ ମୁଣ୍ଡରେ ମହାଦେବ, ହରଚଣ୍ଡୀ ଠାକୁରାଣୀ ଓ ଚନ୍ଦନ ପୋଖରୀ । ଶ୍ମଶାନ ସେହି ପଟକୁ । ଘର ଆଗରେ ଯେପରି ମେଲା ପଦାତ, ପଛରେ ସେହିପରି ପ୍ରଶସ୍ତ ଖୋଲାଜାଗା । ତାହା ପଛକୁ ଢୋତ । ଗଡିଆ କହନ୍ତି । ଗ୍ରାମ ଯେତେବେଳେ ବସିଲା, ଘରର ମୂଳଦୁଆ ଓ କାନ୍ଥ ପାଇଁ ସବୁ ମାଟି ସଂଗ୍ରହ ହୋଇଥିଲା, ଦୁଇପଟରେ ସମାନ୍ତରାଳ, ଭାବରେ ନିର୍ଦ୍ଧାରିତ ଓସାରର ଦୁଇଟି ଲମ୍ବ ଜଳାଶୟ ଖୋଳାଇବା ଦ୍ୱାରା, ଏହି ଦୁଇଟି ଯୁକ୍ତ ହୋଇଥିଲେ ପୂର୍ବ ପଟରେ ଗୋଟିଏ ପୋଲ ତଳେ । ତତ୍କାଳୀନ ଆବଶ୍ୟକତା ପୂରଣ ସଂଗେ ଭବିଷ୍ୟତର ଜଳ ଯୋଗାଣ ବ୍ୟବସ୍ଥା ହୋଇଗଲା । ଚାଷରେ ସାହାଯ୍ୟ କରିବା ଲୋକଙ୍କ ପାଇଁ ଗ୍ରାମର ଦୂରାନ୍ତ ଉପକଣ୍ଠରେ ଦୁଇ ଦିଗରେ ଦୁଇଟି ବସ୍ତି । ବାସୁଦେବପୁର ଓ ପାଣିଭଣ୍ଡାର । ସେହିପରି, ନଡିଆ ଗଛରୁ ଫଳ ତୋଳିବା ପାଇଁ ବାଉରୀ, ଅନ୍ୟ ସାହାଯ୍ୟକାରୀ ଧୋବା ଓ ଭଣ୍ଡାରୀଙ୍କ ବାସସ୍ଥଳୀ ପାଇଁ ନିର୍ଦ୍ଦିଷ୍ଟ ହୋଇଥିଲା । ତେଲି, ତନ୍ତି, କୁମ୍ଭାର କମାର, ବଣିଆଙ୍କ ବସ୍ତି କେତେଗୁଡିଏ ଗ୍ରାମକୁ ଅବଲମ୍ବନ କରି ବିଭିନ୍ନ ସ୍ଥାନରେ ଥାଏ । ଗ୍ରାମର ସ୍ୱାବଲମ୍ବନଶୀଳତା ପାଇଁ ଏହି ଯୋଜନା ମୂଳରେ ଯେଉଁ ସମାଜନୀତି ଥିଲା, ତାହାର ପ୍ରତିଧ୍ୱନି ଶୁଣିବାକୁ ମିଳିଲା ବିଂଶ ଶତାବ୍ଦୀର ତୃତୀୟ ଦଶକରେ ମହାତ୍ମାଗାନ୍ଧିଙ୍କ ଅସହଯୋଗ ଆନ୍ଦୋଳନ ବେଳେ । ସେ ଡାକିଲେ, ଢ଼ିଙ୍କିକୁଟ, ସୂତାକାଟ, ତେଲପେଡ, ନିଜ ହାତରେ କାମ କରି ନିଜର ଗୁଜରାଣ ମେଣ୍ଟାଅ, ନିଜ ଗାଁରେ ଚଳିବା ପାଇଁ ପରକୁ ନ ଚାହଁ ।

ଲକ୍ଷ୍ୟ କରିବା ପାଇଁ ଆଉ ଦୁଇଟି ଗୁରୁତ୍ୱପୂର୍ଣ୍ଣ ବିଷୟ ଏ ଗ୍ରାମମାନଙ୍କରେ ଥିଲା । ରାଜା ଦାନ ଦେଇଥିବା ନିଷ୍କର ଭୂମି ପାଇଁ ଖଜଣା ଦେବାର ନଥିଲା । ଅନ୍ୟ

Digitized by srujanika@gmail.com

ଯେଉଁ ଜମି ଗ୍ରାମବାସୀଙ୍କୁ ମିଳିଲା ତା ହେଲା ଟଙ୍କି ବାହେଲ, ଅର୍ଥାତ ନାମ ମାତ୍ର ଖଜଣା । ଏକରକୁ ଟଙ୍କାଏ, ଭଉଁରିଆ ବନ୍ଦୋବସ୍ତ ବେଳେ ଅନ୍ୟାନ୍ୟ ଜମି ଉପରେ ଯେଉଁ ଜମା ଧାର୍ଯ୍ୟ ହେଲା, ତାହାର ଆଦାୟ, ଜମି ସ୍ୱତ୍ତ୍ୱାଧିକାରୀଠାରୁ ବ୍ୟକ୍ତିଗତ ଭାବରେ ଆଦାୟ ନହୋଇ, ଗ୍ରାମର ସମସ୍ତ ଜମିର ଦେୟ ପାଇଁ ସମସ୍ତ ଗ୍ରାମବାସୀ ସମୂହ ଭାବରେ ଦାୟୀ ରହିଲେ । କାଳକ୍ରମେ, ଜମିଦାର ଦାୟୀ ହେଲେ ଶାସନକର୍ତ୍ତାଙ୍କୁ ରାଜସ୍ୱ ଆଦାୟ ଦେବାପାଇଁ, ଗ୍ରାମବାସୀ ସମସ୍ତେ ଦାୟୀ ରହିଲେ ଗ୍ରାମର ସମସ୍ତ ଦେୟ ଖଜଣା ଜମିଦାରଙ୍କୁ ଦେବାପାଇଁ । ଜମି ମୁତାବକ ପ୍ରତି ଲୋକଙ୍କଠାରୁ ଆଦାୟ କରିବା ଗ୍ରାମବାସୀଙ୍କର ସମୂହ ଦାୟିତ୍ୱ । ସେଥିପାଇଁ ଗାଁ ବାଲାଙ୍କ ତରଫରୁ ଜଣେ ବଛା ହୁଅନ୍ତି ଏ କାର୍ଯ୍ୟ ବର୍ଷେ ଦୁଇ ବର୍ଷ ତୁଲାଇବା ପାଇଁ । ଆଦାୟ ଅସୁଲ ମହାଜନ (ଗ୍ରାମବାସୀ) ମେଳାରେ ସେ ବୁଝାନ୍ତି । ସେହିପରି ଗ୍ରାମ ଦେବାଦେବୀଙ୍କର ସମ୍ପତ୍ତି ବୁଝିବା, ପୂଜା ପାର୍ବଣ ଇତ୍ୟାଦି ଚଳାଇବାର ଭାର ଦିଆଯାଏ ଜଣକ ଉପରେ ବର୍ଷେ, ଦୁଇବର୍ଷ ପାଇଁ । ଠାକୁର ସମ୍ପତ୍ତିର ଦଲୀଲଭୁକ୍ତ ମାରଫତ୍‌ଦାର ସମସ୍ତ ଗ୍ରାମବାସୀ । ଗଣତନ୍ତ୍ରର ଏ ସରଳ ବିଚାର ବହୁ ଶତାବ୍ଦୀ ପୂର୍ବରୁ ଏଠାରେ ରହି ଆସିଥିଲା । ଭାରତବର୍ଷର ଗ୍ରାମ୍ୟ ସଭ୍ୟତାର ମୌଳିକ ଉପାଦାନ ସୃଷ୍ଟି ପାଇଁ ପୂର୍ବକାଳର ଯୋଜନାବଦ୍ଧ ଏହି ଶାସନ ଗ୍ରାମମାନଙ୍କର ଉତ୍ପତ୍ତି ଘଟିଥିଲା । ଅବସ୍ଥାଭେଦରେ ଉପାଦାନର ପ୍ରକୃତି ବା ପରିମାଣ ବା ଉଭୟର ପରିବର୍ତ୍ତନ ହୋଇଥିଲେ ଦୁଃଖ କରିବାର କାରଣ ନଥାନ୍ତା । ମରହଟ୍ଟା, ମୋଗଲ, ବ୍ରିଟିଶ୍ ଶାସନ ପ୍ରକ୍ରିୟା ଗୋଟିକ ପରେ ଗୋଟିଏ ଆସି ଗ୍ରାମ୍ୟ ପରମ୍ପରାକୁ କେବଳ ଆଘାତ କଲେ । ଯାହା ଭାଙ୍ଗିଗଲା ବା ଲୁଚିଗଲା ତାହାର ସ୍ଥାନ ପୂରଣ ନ ହୋଇ ଶୂନ୍ୟତାର ଆବର୍ତ୍ତରେ ଉବୁଟୁବୁ ହେଉଥିଲେ, ଅନ୍ୟମାନଙ୍କ ପରି ଆମ ଗ୍ରାମବାସୀ । କିଛି ହାତରେ ନ ପାଇ ଧରି ରଖିଲେ କେବଳ କୁଳର ବଡିମା ଆବରଣ । ବିଂଶ ଶତାବ୍ଦୀର ଆଦ୍ୟଭାଗରେ ମୋ ଜନ୍ମବେଳକୁ ଏହି ଅବସ୍ଥା ।

ସଂସ୍କୃତ ଦେଶାନ୍ତର ହୋଇଥିଲା । ଇଂରେଜୀ ଶିକ୍ଷା ଦୂରାନ୍ତର । ଓଡିଆ ପ୍ରାୟ ଅବାନ୍ତର । ପାଠପଢ଼ା ଲୋକ ଗାଁରେ ମାତ୍ର ଚାରିଜଣ । ମୋ ପିତା କାଶୀନାଥ ମହାପାତ୍ର ମଧ-ଭର୍ଣ୍ଣାକୁଲାର ପାଶ୍ ପରେ ପଚାଶ ମାଇଲ ବାଟ ପାଦରେ ଚାଲି, କଟକ ଆସି ନର୍ମାଲ ଟ୍ରେନିଂ ସ୍କୁଲରେ ପଢ଼ି ପାଶ୍‌କରି ପୁରୀରେ ହରଚଣ୍ଡୀ ସାହି ମଧ-ଭର୍ଣ୍ଣାକୁଲାର ସ୍କୁଲରେ ଓଡିଆ ପଣ୍ଡିତ ଭାବେ କାର୍ଯ୍ୟ କରୁଥାନ୍ତି । ଶୁଣିଛି, ମାସିକ ବେତନ ବାରଟଙ୍କା । ସାମାନ୍ୟ ଇଂରେଜୀ ନିଜ ଚେଷ୍ଟାରେ ଆୟତ୍ତ କଲେ ପରେ ।

Digitized by srujanika@gmail.com

ଗାଁରେ ସବୁଠାରୁ ପଢୁଆ ସେ । କଟକ ଯାଇ ପଢ଼ିବାରେ ମଧ ସେ ଆଗୁଆ । ରେଳରାସ୍ତା ନଥାଏ । ଗୋରୁଗାଡିର ସମ୍ଭଳ ବି ନଥିଲା । ମଧୁସୂଦନ ରାଓ ସେତେବେଳେ କଟକ ଟ୍ରେନିଂ ସ୍କୁଲର ହେଡମାଷ୍ଟର । ସେହି ସ୍କୁଲ ବଢ଼ି ବଢ଼ି ଏବେ ସର୍ବ ଉଚ୍ଚ ପାହ୍ୟାର ଟ୍ରେନିଂ କଲେଜ ହେଲାଣି । ନନା ଆଉ ଗୋଟିଏ ବିଷୟରେ ଗାଁରେ ଅଲୋଡନ ସୃଷ୍ଟି କରିଥିଲେ, କଟକରୁ ଛୁଟିରେ ଗଲାବେଳକୁ ମୁଣ୍ଡରୁ ପେଣ୍ଡାବାଳ କାଟି ଦେଉଥାଆନ୍ତି । ତାଙ୍କ ପିତା ସେଥିରେ ରୁଷ୍ଟ ହେଲେ, ଅନ୍ୟମାନେ ନିନ୍ଦା କଲେ । ତାଙ୍କୁ ଲଣ୍ଡାକାଶୀ ବୋଲି ଡାକିଲେ । କିନ୍ତୁ ଦେଖାଗଲା, ବର୍ଷ ଦଶଟା ଭିତରେ ଗାଁର ଅଧେ ସେହିପରି ଲଣ୍ଡା । ମୋ ହେତୁବେଳକୁ ଚାଳିଶ ବର୍ଷରୁ ଊର୍ଦ୍ଧ୍ୱଙ୍କ ଛଡା ପୁରୁଷ କାହାରି ମୁଣ୍ଡରେ ଲମ୍ବାବାଳ ଗଣ୍ଠି ନଥିଲା । ଏବେ ଫେସନ୍ ଲେଉଟୁଛି, ପୁଅଙ୍କ ମୁଣ୍ଡରେ ଝାମ୍ପରାବାଳ ଲମ୍ବୁଛି । ଯେଉଁ ତୃତୀୟ କଥାରେ ସେ ଅଗ୍ରଦୂତ ହେଲେ, ତାହା ଗ୍ରାମରେ ବେଶି ଧକ୍କା ଦେଲା । ପୁରୀରେ ଶିକ୍ଷକତାବେଳେ ପରିବାରକୁ ସେଠାକୁ ନେଲେ । ପରିବାର ବୋଇଲେ ବୋଉ, ମଣିନାନୀ ଓ ମୁଁ । କୁଣ୍ଡାଇବେଣ୍ଟ ସାହିରେ ଗୋଟିଏ ଛୋଟ ଚାଳିଘରେ ମାସିକ ଏକ ଟଙ୍କା ଭଡାରେ ବସତି ଆରମ୍ଭ । ସେତେବେଳେ ପୁରୀରେ ରାମଚନ୍ଦ୍ର ଦାଶ ବୋଲି ଜଣେ ଜଣାଶୁଣା ମୁକ୍ତ୍ୟାର ଥିଲେ । ଦାଢ଼ୀ ଓ ଦାଢ଼ ଉଭୟ ମୁହଁରେ ଥିଲା । ତାହା ସାଙ୍ଗକୁ ଥାଏ, ଜାତୀୟବୋଧ ଓ ଦେଶପ୍ରୀତି । ରୋଜଗାର ଭଲ ଥିବାରୁ ସାଧାରଣ କାର୍ଯ୍ୟରେ ଧନ ଓ ଧ୍ୟାନ ଦେବାର ଅସୁବିଧା ନଥିଲା । ତାଙ୍କ ପାଖରେ ଦେଶ ସେବାରେ ମନଥିବା କେତେକ ଶିକ୍ଷିତ ଯୁବକ ଜୁଟୁଥାନ୍ତି, ତାଙ୍କ ପରାମର୍ଶ ଅନୁଯାୟୀ କାର୍ଯ୍ୟ କରିବାକୁ । ସେମାନଙ୍କ ମଧରେ ଗୋପବନ୍ଧୁ ଦାସ, ନୀଳକଣ୍ଠ ଦାସ, ହରିହର ଦାସ, ବାସୁଦେବ ରଥ, ସ୍ୱପ୍ନେଶ୍ୱର ପାଣିଗ୍ରାହୀ, ଦିବାକର ଦାସ ପ୍ରମୁଖ ଥିଲେ । ନନା ମଧ ସେ ଦଳରେ । ଶିକ୍ଷା ପ୍ରସାର, ରୋଗୀସେବା, ପ୍ରାକୃତିକ ବିପର୍ଯ୍ୟୟବେଳେ ସାହାଯ୍ୟ ସେମାନଙ୍କର ବାହ୍ୟିକ କାର୍ଯ୍ୟକ୍ରମ ଥିଲା । କିନ୍ତୁ ଜନଜାଗରଣ ଓ ସମାଜ ସଂସ୍କାର ମୁଖ୍ୟବ୍ରତ । ମୁକ୍ତ୍ୟାର ମହାଶୟଙ୍କ ବଳିଷ୍ଠ ନେତୃତ୍ୱ ନୂତନ ରୂପରେ ପ୍ରକାଶ ପାଇଲା, ଯେତେବେଳେ କର୍ମୀମାନେ ଗେରୁଆବସ୍ତ୍ର ପରିହିତ ହୋଇ ଜାତୀୟ ଗାନ ଗାଇ ପୁରୀ ବଡ ଦାଣ୍ଡରେ ଭିକ୍ଷା ସଂଗ୍ରହରେ ବାହାରିଲେ । ଉତ୍କଳ ସମ୍ମିଳନୀର ପୂର୍ବ ସୋପାନ ଅଲକ୍ଷିତରେ ଆରମ୍ଭ ଏହି ପ୍ରକାରେ ।

ଖ୍ୟାତନାମା ମୁକ୍ତ୍ୟାର ଭିଙ୍ଗାରପୁରର ବ୍ରାହ୍ମଣ ବଂଶର ଥାଇ ମଧ ସପରିବାର ପୁରୀରେ ରହୁଥାଆନ୍ତି କୁଣ୍ଡାଇବେଣ୍ଟ ସାହିରେ । ଏକାନ୍ନବର୍ତ୍ତୀ ପରିବାର ମଧରୁ କେହି

Digitized by srujanika@gmail.com

ନିଜ ସ୍ତ୍ରୀ ଓ ପିଲାଙ୍କୁ ନେଇ ଗାଁ ବାହାରେ କାର୍ଯ୍ୟ କ୍ଷେତ୍ରକୁ ଆଣିବା ଲୋକଦୃଷ୍ଟିରେ ଗର୍ହିତ ଥିଲା । ସଂସ୍କାରବ୍ରତୀ ମୁକ୍ତ୍ୟାର ସେ ପ୍ରଥା ଆରମ୍ଭ କରିଥିଲେ । ତାହାର ଅନୁଗାମୀ ହୋଇ ନନା ଆମକୁ ପୁରୀକୁ ଆଣିଲେ । ଏହାପାଇଁ ମନର କେତେ ସାହସ ଲୋଡାଥିଲା ତାହା ବର୍ତ୍ତମାନର ଅନୁମାନ ବାହାରେ । ଭୁଆସୁଣୀ ବୋହୂ ଶାସନଘରୁ ପଦାକୁ ପାଦ ପକାଇବ, କଳ୍ପନାତୀତ । ଗାଁରେ ଛି, ଛା ମୁକ୍ତ୍ୟାରଙ୍କ ସମର୍ଥନକୁ ଚପି ପାରିଲା ନାହିଁ । ଏ ପଦକ୍ଷେପ ନନା ନ ନେଇଥିଲେ, ପରବର୍ତ୍ତୀ କାଳରେ ଆମ ପରିବାରରେ ଯେଉଁ କେତେ ସାମାଜିକ ଚଳଣିର ସଂସ୍କାର ବା ବ୍ୟତିକ୍ରମ ଘଟିପାରିଲା, ତାହା ବୋଧହୁଏ ସମ୍ଭବ ହୋଇ ନଥାନ୍ତା । ନନା ନୈଷ୍ଠିକ ବ୍ରାହ୍ମଣ; ସନ୍ଧ୍ୟାଆହ୍ନିକ ପୂଜା, ଦୈନିକ କର୍ମ; ତର୍ପଣ ବସୁଦେବ ଯଥାରୀତି କରନ୍ତି, ବ୍ରତ, ବିବାହାଦି କର୍ମାନୁଷ୍ଠାନରେ ଆସ୍ଥାବାନ । ଏ ସବୁ ସତ୍ତ୍ୱେ, ଉଦାର ସହନଶୀଳତାରେ କଦାପି କୁଣ୍ଠିତ ନଥିଲେ ।

ଆମର ପୁରୀକୁ ଆସିବା କେବଳ ନାମକୁ ମାତ୍ର । ଅଳ୍ପ କେତେମାସ ପରେ ଗାଁକୁ ଫେରିଗଲୁ । ବୋଧହୁଏ ପାରିବାରିକ କାରଣରୁ । ଘରେ ବାପା (ପିତାମହ) ମା (ମାତାମହୀ), ଦୁଇ ଦଦେଇ, ଦୁଇ ଦେଠେଇ, ଦୁଇ ପିଇସୀ ନାନୀ — ଜଣେ ବାଲ୍ୟବିଧବା, ଆରକ ବାଲ୍ୟାବସ୍ଥାରୁ ସ୍ୱାମୀ ପରିତ୍ୟକ୍ତା । ଧାନ ଜମି ପ୍ରାୟ ନ ଥିଲା କହିଲେ ଚଳେ । ନନାଙ୍କର ବିବାହ ନିଜ ଗ୍ରାମ ଦିଗୀତଙ୍କ ଘରେ ଜଗନ୍ନାଥ ମିଶ୍ରଙ୍କ କନିଷ୍ଠା କନ୍ୟା ସ୍ୱପ୍ନବତୀଙ୍କ ସଂଗେ ହେବାବେଳେ, ଯୌତୁକ ସ୍ୱରୂପ ଆମ ଘରକୁ ମିଳିଥିଲା ଗୋଟିଏ ନଡିଆ ବାଡି, ଆଉ ଖଣ୍ଡିଏ ଘରଡିହ । ଦିଗୀତ ବଂଶ ମର୍ଯ୍ୟାଦାରେ ଊଣା ନ ଥିବାରୁ ବୋଧହୁଏ ଏହା ମିଳିଥିଲା । ଏତେଗୁଡିଏ କୁଟୁମ୍ବ ଗାଁରେ, ଆଉ ଆମେ ଚାରିଜଣ ପୁରୀରେ, ଅଲଗା ଅଲଗା ରହି ଚଳିବା ବା ଚଳେଇବା ସ୍ୱଳ୍ପ ଆୟରେ କଷ୍ଟକର ହେବାରୁ, ଆମେ ଗାଁକୁ ଫେରିବା ଆବଶ୍ୟକ ହେଲା । ବାପା ଥିଲେ ବୃଦ୍ଧ, ମା' ରୁଗ୍‌ଣା । ଉଭୟ ଗୌରବର୍ଣ୍ଣ, ସୁଦୃଶ୍ୟ ଖର୍ବକାୟ । ମୋ ଦେଖିବାର ଅଳ୍ପ ଦିନରେ ବାପାଙ୍କର କାଳ ହେଲା । ଚାଷ ଆଦିକଥା ବୁଝୁଥିଲେ ସାନ ଦଦେଇ, ନରସିଂହ । ତାଙ୍କର ମଧ୍ୟ ଦେହାନ୍ତ ଘଟିଲା ଅଳ୍ପ ବୟସରେ—ଗୋଟିଏ ଶିଶୁପୁତ୍ର ଓ ଏକ କନ୍ୟା ସହିତ ତାଙ୍କ ବିଧବା ପତ୍ନୀ, ସାନ ଦେଠେଇ ବୋଲି ଡାକେ, ରହିଲେ ନିଜକୁ ଅଭିଶପ୍ତ ଭାବି । ଅନ୍ୟ ଦଦେଇ ଦାମୋଦର ଟିକିଏ ଉଗ୍ର ପ୍ରକୃତିର ଥିଲେ । ତାଙ୍କୁ ସମସ୍ତଙ୍କର ଡର । ଅଳ୍ପ କଥାରେ ରାଗିଯାଆନ୍ତି । ଏପରିକି, ଡାଲି ଅଲଣା ଲାଗିଲେ, ଭାତଥାଳି ସହିତେ ଅଗଣାକୁ ଫୋପାଡି ଦେବାର ଏକାଧିକ ଥର ଦେଖିଥିଲି ।

Digitized by srujanika@gmail.com

ପିଉସୀ ଦୁଇଜଣ ତ ଅସହାୟା । ସାରାଜୀବନ ଭାଇମାନଙ୍କ ପାଖରେ ରହିବାକୁ ହେଲା । ସ୍ୱାମୀ-ପରିତ୍ୟକ୍ତା ଯେ ଥିଲେ, ସେ ସ୍ୱାମୀଙ୍କ ମୃତ୍ୟୁ ପରେ ତାଙ୍କ ଘରକୁ ଗଲେ ନିଜ ମୃତ୍ୟୁର ଦୁଇବର୍ଷ ପୂର୍ବରୁ । ମୋ ବୋଉ ଘରେ ସାନବୋହୂ; ତେଣୁ ସମସ୍ତଙ୍କୁ ମାନ୍ୟ କରିବାର କଥା । ବହୁବର୍ଷ ପର୍ଯ୍ୟନ୍ତ ବୋଉ ତୁଣ୍ଡରୁ ମୁଁ କଥା ଶୁଣି ନଥିଲି । ସମସ୍ତଙ୍କୁ ପାଟିରେ ଚୁଁ ଚୁଁ କରି, ହାତଠାରି ଯାହା ଜଣାଇବା କଥା ଜଣାଇବାକୁ ହୁଏ । ସାଇ ପଡିଶାରୁ ବୟସ୍କା ଆସିଲେ ମଧ୍ୟ ସେହି ବ୍ୟବସ୍ଥା । ସମବୟସୀ ତ କେହି କାହା ଘରକୁ ଆସିବାର ନୁହେଁ । ସେମାନଙ୍କର ଦେଖାହୁଏ ଅତି ଭୋରରୁ ଗଡିଆରେ ଗାଧୋଇଲାବେଳେ, ଆଉ ସନ୍ଧ୍ୟାବେଳେ ଗଡିଆରୁ ପାଣି ଆଣିବା ସମୟରେ । ଦଦେଇମାନଙ୍କ ଛାଇ ସେ ତ ନ ଦେଖିବାର କଥା । ତା ଚୁଁ ଚୁଁ ଶବ୍ଦ ମଧ୍ୟ ସେମାନଙ୍କୁ ଯେପରି ନ ଶୁଭେ ସେଥିପ୍ରତି ସତର୍କ ରହିବାକୁ ହୁଏ । ନିଜ ପିଲା ପ୍ରତି ଆଗ୍ରହ ବା ସ୍ନେହ କରିବାର କେହି ଦେଖିଲେ ତାହା ନିର୍ଲଜ କଥା ଘଟିଲା ବୋଲି ଘରକୁ ଘର ବ୍ୟାପୀ ଯିବାପାଇଁ ସମୟ ଲାଗେ ନାହିଁ । ଆମ ଘରେ ମୁଁ ଏକମାତ୍ର ବଡ ପୁଅ । ଦଦେଇଙ୍କର ଏକ ଝିଅ ମୋଠାରୁ ବଡ, ବିବାହିତା । ସାନ ଦଦେଇଙ୍କର ଦୁଇପିଲା ଅତି ଛୋଟ । ତାଙ୍କ ଭିତରୁ କନ୍ୟାଟି ଚାଲିଗଲା ସାମାନ୍ୟ ବ୍ୟାଧିପରେ । ଘରେ ମୋର ଆନନ୍ଦର ଖୋରାକ କିଛି ନ ଥିଲା । ସାଙ୍ଗସାଥି ଘରେ ଶୂନ୍ୟ । ବୋଉର ସ୍ନେହଁ ଦୃଷ୍ଟି ଥିବ, କିନ୍ତୁ ମୁଁ ଜାଣୁ ନ ଥିଲି । କେବଳ ନାନୀ ପାଖରେ ଯାହା ଅଳି, ସେତିକି । ନନା ତ ବାହାରର ଲୋକପରି । କାର୍ଯ୍ୟ କ୍ଷେତ୍ରରୁ କ୍ୱଚିତ୍ ଆସନ୍ତି । ଆସିଲେ, ବଡଭାଇ, ବଡ ଭଉଣୀମାନଙ୍କ ଆଗରେ ପୁଅକୁ ବା ଆଦର କରିବେ କିପରି ? ତା ଛଡା, ସେ ମଧ୍ୟ ଗମ୍ଭୀର ପ୍ରକୃତିର ଲୋକ । ଘରର ଏହି ପରିବେଶ ମଧ୍ୟରେ ଅତି ପିଲାଦିନୁ ମତେ ନିଃସଙ୍ଗ, ଏକକ ଭାବ ଧଇଲା । ସାରାଜୀବନ ତାହା ଆଉ ଛଟି ପାରିନାହିଁ ।



Digitized by srujanika@gmail.com

# ପାଠପଢ଼ା

ଗାଁରେ ଗୋଟିଏ ଚାଟଶାଳୀ ଥାଏ । ଅବଧାନଙ୍କ ନାମ ମନେ ନାହିଁ । କୃଶକାୟ ଲମ୍ବା ମଣିଷ, ଚେପଟା ମୁହଁ । ଦେଖିଲେ ଲୋକ ଚାହିଁବ ନ ଚାହିଁବାକୁ । ବଖରେ ଘରେ ତାଙ୍କର ରହିବା, ଶୋଇବା ଓ ପାଠ ପଢ଼ାଇବା । ସେ ବସନ୍ତି ଖଣ୍ଡିଏ ନଡିଆଚାଞ୍ଚ ଉପରେ । ରାତିରେ ତାହା ହୁଏ ତାଙ୍କର ଶଯ୍ୟା । ଖାଆନ୍ତି ପିଲାମାନଙ୍କ ଘରେ ଓଳିଏ ଓଳିଏ ପାଳିକରି । କାହା ଘରେ ଶ୍ରାଦ୍ଧ ହେଲେ, ଅବଧାନଙ୍କର ସେଠାରେ ଡାକରା । ସେ ଦିନର ପାଳିବାଲା ଚାଉଳ, ଡାଲି ତାଙ୍କୁ ଦେଇଦିଏ । ମାସ ଶେଷରେ ଅବଧାନେ ତାଙ୍କ ଘରକୁ ଗଲେ, ବଳକା ରସଦ, ମାଗୁଣି ନଡିଆତକ ନେଇଯାଆନ୍ତି । ଫେରନ୍ତି ତା' ପରଦିନ ସନ୍ଧ୍ୟାକୁ । ଗାଁ କୋଠ କଥା ଅର୍ଥାତ୍ ଦେବଦେବୀଙ୍କ ଜମିବାଡି, ଦେଉଳ ହାନି, ଲାଭ କଥା ଯେ ବୁଝୁଥାନ୍ତି, ତାଙ୍କୁ କହିଲେ ଗର ହାଜର ମାଫି ମିଳେ । ଅବଧାନଙ୍କ ଦରମା କୋଠରୁ ପଏଠ ହୁଏ । ତାହାଛଡା, ବରଷକୁ ଦୁଇଭରଣ ଛଣ ତାଙ୍କ ଘର ଛପର ପାଇଁ ଦିଆଯାଏ । ଏ ବ୍ୟବସ୍ଥା କାହାକୁ ବାଧେନାହିଁ । କାହାଘରେ ଛୁତିକିଆ ମୃର୍ତ୍ତିକିଆ ଲାଗିଲେ, ତା' ଘର ପାଳି ସ୍ଥଗିତ ରହେ । ଅବଧାନଙ୍କ ପାଳି ସାଙ୍ଗକୁ, ଘର ଦିଅଁଙ୍କ ନୀତିରେ ମଧ କିଛି ବ୍ୟତିକ୍ରମ ଘଟେ । ଅଶୌଚ ଅବସ୍ଥାରେ ପୂଜା କରିବା, ଠାକୁରଙ୍କୁ ସ୍ପର୍ଶ କରିବା ନିଷେଧ । ଘର ରନ୍ଧା ତାଙ୍କ ଆଗକୁ ଯାଇପାରେ ନାହିଁ । ଗାଁ ଭିତରୁ ଅନ୍ୟ ଜଣଙ୍କୁ ଡାକି ଉଖୁଡା, କୋରା ପ୍ରଭୃତି କିଛି ଶୁଖିଲା ଖାଦ୍ୟ ଭୋଗ କରାଇବାକୁ ହୁଏ । ଏ କାର୍ଯ୍ୟ ନିକଟବର୍ତ୍ତୀ ଅଶୌଚ ହୋଇନଥିବା ପ୍ରତିବେଶୀର ଦାୟିତ୍ୱ ବୋଲି ଧରାଯାଏ । ତାଙ୍କ ସଙ୍ଗେ କଳହ କିମ୍ବା କିଛି ବିବାଦ ଥିଲେ ମଧ ସେ ତାହା ଭୁଲାନ୍ତି । ଏବେ ରଣାଙ୍ଗନରେ ଯୁଦ୍ଧବିରତି କିଛି ଦିନ ପାଇଁ ଘୋଷିତ ହୁଏ ଏବଂ ସେହି ସମୟ ବିତିଗଲେ, ପୂର୍ବ ଯୁଦ୍ଧ ପୁଣି ଚାଲୁହୁଏ । ଏ ପ୍ରକାର ବିରତି ଉଭୟ ପକ୍ଷର ରାଜିନାମାରେ ବା ଇୟୁନାଇଟେଡ୍ ନେଶନସ ପରି ମଧସ୍ଥଙ୍କ ଜରିଆରେ ଘୋଷଣା କରାଯାଉଛି । ଆମ ଗାଁର ପ୍ରଚଳିତ ବିଧି ଏହାଠାରୁ ଉଚ୍ଚ ମାନର ଥିଲା । ସେଥିରେ ବିପକ୍ଷ ଆପେ ଆପେ ଦ୍ୱେଷ ବିରତି

Digitized by srujanika@gmail.com

ସ୍ୱୀକାର କରି ପ୍ରତିବେଶୀ ଘରର କାର୍ଯ୍ୟ ସମ୍ପନ୍ନ କରିଥାଏ । ଭାବିଲା ବେଳକୁ କୌତୁକ ଲାଗୁଛି । ମାତ୍ର ଏ ଚଳଣିର ପଶ୍ଚାତରେ ଯେଉଁ ମାନବିକତା ବୋଧ ଥିଲା, ତାହା ବିଚାରିବାର କଥା । ସଭ୍ୟତାର ପରମ୍ପରା ଏହିପରି ଗଠିତ ହୁଏ । ଯେ କୌଣସି ଦେଶରେ ବ୍ୟକ୍ତିର ମୌଳିକ ଅଧିକାର ସେ ଦେଶର ପାରମ୍ପରିକ ଆଚରଣ ବିଧି ପ୍ରତି ଭ୍ରୂକ୍ଷେପ ନ କଲେ, ସମାଜ ଜଙ୍ଗଲର ସ୍ୱାଧୀନତା ଆଡକୁ ମୁହାଁଇବ, ପଛକୁ ରହିଯିବ ଅତୀତର ଅଭିଜ୍ଞତା, ଅନୁଶୀଳନ ଲବ୍ଧ ଜ୍ଞାନର ବର୍ତ୍ତିକା ।

ଅବଧାନେ ଅବ୍ରାହ୍ମଣ ଥିଲେ ମଧ, ତାଙ୍କୁ ସସମ୍ମାନ ଆହାର ପରିବେଷଣ କରାଯାଏ । ସେ ଅମ୍ଳାନ ବଦନରେ ନିଜର ଖାଇବା ପତ୍ରଟି ନିଜେ ଉଠାଇ ନିଅନ୍ତି ଏବଂ ଖାଇବା ଜାଗାରେ ପାଣିହାତ ମାରିଦିଅନ୍ତି । କାହାଘରେ କେହି ଭୃତ୍ୟ ଏ କାର୍ଯ୍ୟପାଇଁ ନ ଥାନ୍ତି । କୌଣସି ଉପଲକ୍ଷରେ ବେଶି ଲୋକ ଖାଇବାର ଥିଲେ, ଗ୍ରାମର ବାରିକ ଆସେ ପତ୍ର ଉଠାଇବାକୁ । ଯାହା ଘରେ ସକାଳଓଳି ପାଳି, ସେ ଦିଏ ସେଦିନ ଅବଧାନଙ୍କୁ ଗାଧୋଇବା ପୂର୍ବରୁ ଦେହରେ ଲଗାଇବାକୁ ରାଶିତେଲ । ରାତି ପାଳିବାଲା ଦିଏ ସନ୍ଧ୍ୟାବେଳର ଦୀପ ପାଇଁ ପୁଳାଙ୍ଗ ମାଲପା । ସୋରିଷ ତେଲ ଜଣା ନଥିଲା, କିରୋସିନି ଗାଁରେ ପଶି ନଥାଏ, ମରାନଡିଆ ଘିଅ ବାହାରେ କେବଳ ସଂକ୍ରାନ୍ତି ପରି ଦିନମାନଙ୍କରେ ଗାଧୋଇଲା ବେଳକୁ । ଏବେ ପିଲାଏ ଶୁଣିଲେ ହସିବେ । ଅବଧାନଙ୍କ ପାନ ଗୁଣ୍ଡି ତାଙ୍କ ନିଜର, ଯଦିଓ ତାହା ମିଳିଯାଏ ଉପରୁ ଉପରୁ । ପାଳିର ସାଲିଅନା ବାହାରେ ସେତକ ।

ଦଦେଇ ଦିନେ ଓପର ଓଳି ମତେ ନେଇ ଅବଧାନଙ୍କ ପାଖରେ ହାଜର କରାଇଲେ । ବିନା କଥାବାର୍ତ୍ତାରେ ଉଭୟେ ବୁଝିନେଲେ, ଜଣକର କର୍ତ୍ତବ୍ୟର ଶେଷ ହେଲା , ଅନ୍ୟର ଦାୟିତ୍ୱ ଆରମ୍ଭିଲା । ସଂଗେ ସଂଗେ ମାଟି ଚଟାଣରେ ମୋ ବସିବା ଓ ଖଡିରେ ଲେଖିବା ସ୍ଥାନ ନିର୍ଣ୍ଣିତ ହୋଇଗଲା । ମୁଁ ଫେରିଆସିଲି, ପରଦିନ ସକାଳୁ ଅନୁକୂଳ କରିବା ପାଇଁ । ସେଦିନ ଅରୁଆ ଚାଉଳ, ନଡିଆ, କଞ୍ଚାକଦଳୀ ପ୍ରଭୃତି ଗାମୁଛାରେ ବନ୍ଧାହୋଇ ସାଙ୍ଗରେ ଗଲା । ସେତକ ସାଦରେ ଗ୍ରହଣ କରି, ମୋ ମୁଣ୍ଡରେ ବେତ ଛୁଆଇଁ ବତାଇଲେ ଲେଖା ଆରମ୍ଭ । ଚାହାଳୀକୁ ଦୁଇବେଳା ଯିବା ସମୟ କଣ୍ଟ ବତାଇ ଦେଲେ ଅବଧାନେ । ସକାଳୁ ଯେତେ ଶୀଘ୍ର ସମ୍ଭବ, ତାଙ୍କ ଦୁଆର ଖୋଲିବା ପୂର୍ବରୁ ହେଲେ ଭଲ । ଓପର ବେଳା ଛାଇ ପୂର୍ବକୁ ହାତେ ଲମ୍ବିଲା ଆଗରୁ । ମୋ ପରି ଛୋଟ ପିଲାଙ୍କର ସମୟର କଟକଣାରେ କୋହଳ ଥିଲା । ପରିଜା ସାହେବଙ୍କ (ସ୍ୱର୍ଗତ ଡକ୍ଟର ପ୍ରାଣକୃଷ୍ଣ ପରିଜା) ସଙ୍ଗେ ଦିନେ କଥାବାର୍ତ୍ତାବେଳେ ସେ କହିଥିଲେ ଯେ ତାଙ୍କ ଅବଧାନେ, ସମୟ ନିର୍ବିଶେଷରେ

Digitized by srujanika@gmail.com

ଯେଉଁ ପିଲା ଚାହାଳୀ ଭିତରକୁ ଆଗ ପଶେ ତାକୁ ବେତ ଛୁଆଁଇ କହନ୍ତି ଶୂନ୍, ପରେ ପରେ ଯେ ପଶନ୍ତି ତାକୁ ଏକ, ଦୁଇ, ତିନି ବେତ କ୍ରମାନ୍ୱୟରେ ଦିଆଯାଏ । ପିଲାଏ ଘର ଏରୁଣ୍ଡି ଡେଇଁ ପଶିବା ପାଇଁ ଠେଲା ପେଲା ହୋଇ ପଡିଯାଆନ୍ତି । ଯେ ପଡେ ସେ ଖାଏ ଆଉ ଅଧିକା ବେତେ । ଅବୁଝାମଣା ହେଲେ ବି ଅବଧାନଙ୍କ ଅଧିକାରକୁ ବଳ କାହାର ? ହାଇକୋର୍ଟ ନ ଥିଲା ରିଟ୍ ଦରଖାସ୍ତ ପକାଇବା ପାଇଁ । ଆମ ଗାଁ ଚାହାଳୀରେ ଅବଧାନେ ସମଝଦାର, ମାରପିଟ୍ ସେତେ ନ ଥାଏ । ବେତ ଉଠାଇଲେ ପିଳେଇ ପାଣି । ମାଡ ଖାଇବାର ମୋ ମନେ ନାହିଁ । ପଢ଼ା ସେଠାରେ ନଥିଲା । କେବଳ ମାଟିରେ ଲେଖା ଓ ମୁଖସ୍ତ । ସେଠାରେ ଶିଖା ପଣିକିଆ ସବୁଦିନକୁ ମନରେ ରହିଛି । ଏବେ କଲେଜ ପିଲାଏ କାଲ୍‌କୁଲେଟର ଧରିଲେଣି, ମିଶାଣ ଫେଡାଣ, ଗୁଣନ, ହରଣ କରିବା ପାଇଁ । ଉଚ୍ଚ ଗଣିତ କଥା ଛାଡ । ଯେତିକି ଯନ୍ତ୍ର ଅଧୀନକୁ ଯିବ, ସେତିକି ମନ୍ତ୍ର ମନରୁ ଖସିବ ।

ନନା ବାଲେଶ୍ୱର ଜିଲ୍ଲା ବାସୁଦେଇପୁରକୁ ସ୍କୁଲ ଆସିଷ୍ଟାଣ୍ଟ ସବ୍‌ଇନିସପେକ୍ଟର ହୋଇ ସରକାରୀ ଚାକିରୀରେ ଯୋଗଦେଲେ । ଗ୍ରାମର ପ୍ରଥମ ସରକାରୀ କର୍ମଚାରୀ । ବେତନ ତିରିଶଟଙ୍କା ବୋଧହୁଏ । କାର୍ଯ୍ୟରେ ଯୋଗଦେବାର କେତେମାସ ପରେ ପରିବାରକୁ ସେଠାକୁ ନେବା ସ୍ଥିର ହେବାରୁ ମୋର ଚାହାଳୀରୁ ବିଦାୟ ସମୟ ଆସିଗଲା । ଯିବାରେ ସୁଖ ନ ଥିଲା, ଆସିବାକୁ ଦୁଃଖ ଲାଗିଲା ନାହିଁ । ବାସୁଦେଇ ପୁରରେ ଯେଉଁ ଘରେ ରହିଲୁ, ତାର ଝାପ୍‌ସା ମନରେ ଅଛି । ମାଟିର ଦୁଇଟି ଛୋଟ କୋଠରୀ । ରୋଷାଇ ପାଇଁ ଚାଳି । ମଝିରେ ଅଗଣା । ପାଚେରୀରେ ଦୁଆର ଯିବା ଆସିବା ପାଇଁ । ଆମେ ଥାଉ ଚାରିଜଣ, ନନା, ବୋଉ, ନାନୀ ଓ ମୁଁ । ନନାଙ୍କର କାର୍ଯ୍ୟ ବାସୁଦେଇପୁର ସର୍କଲର ପ୍ରାଇମେରୀ ସ୍କୁଲ ତଦାରଖ କରିବା । ସେଥିପାଇଁ ଅଧିକାଂଶ ଦିନ ସକାଳୁ ସେ ବାହାରି ଓପରବେଳା ବା ସନ୍ଧ୍ୟାକୁ ଫେରନ୍ତି । କେବେ କେବେ ଦିନେ ଦୁଇଦିନ ରହନ୍ତି ବାହାରେ । କେତେ ଟଙ୍କା ଆମ ପିଛା ଖରଚ ହୁଏ ଓ କେତେ ଗାଁକୁ ପଠାନ୍ତି କହିପାରିବି ନାହିଁ । ଗାଁ ଦାୟିତ୍ୱ ପାଇଁ ଟଣାଟଣିରେ ଚଳିବାକୁ ପଡେ । ଗସ୍ତ ସବୁ ପଦଯାତ୍ରାରେ । ବିନା ସାଇକେଲ, ବିନା ବସ୍, ବିନା ଟ୍ରେନ୍, ବିନା ପିଅନରେ ଗସ୍ତ କରିବା ନିମ୍ନତମ କର୍ମଚାରୀ ପକ୍ଷରେ ମଧ ବର୍ତ୍ତମାନ କଳ୍ପନାତୀତ ।

ସେ ସମୟର ଗୋଟିଏ କଥା ବଡ ସ୍ପଷ୍ଟ ମନେ ପଡେ । ନନାଙ୍କ ଉପରିସ୍ଥ ସବ୍‌ଇନିସପେକ୍ଟର ଥିଲେ ଜଣେ ମୁସଲମାନ । ଡାହାଳିଆ ଲୋକ । ସେ ଓ ତାଙ୍କ ସ୍ତ୍ରୀ ଥାଆନ୍ତି ଆମ ଘର ପାଖରୁ ଅଳ୍ପ ଦୂରରେ ଆଉ ଗୋଟିଏ ଛୋଟ ମାଟିଘରେ । ନନା

Digitized by srujanika@gmail.com

ଯାଆନ୍ତି ତାଙ୍କ ପାଖକୁ ବେଳେ ବେଳେ । ମୁଁ ସାଙ୍ଗରେ ଥାଏ । ଥରେ ଦେଖିଲି, ତାଙ୍କ ଘରେ ଦାନ୍ତକାଠି ଚୋବାହୋଇ ଥୁଆ ହୋଇଛି । ଆମେ ଦାନ୍ତ ଘଷିଲେ ଦାନ୍ତକାଠି ପକାଇ ଦେଉ । ସେ ରଖୁଥିଲେ ଖଣ୍ଡିଏ କାଠିକୁ କେତେଦିନ ବ୍ୟବହାର କରିବା ପାଇଁ–ଏବେ ଯେପରି ଦାନ୍ତଘଷା ବ୍ରସ୍ ଚାଲିଛି । ଦାନ୍ତକାଠିର ତଦ୍ରୂପ ବ୍ୟବହାର କୁତ୍ରାପି ଆଉ ଦେଖିନାହିଁ । ସେ ଚାଲ୍ ହୁଏତ ଅନ୍ୟ କେଉଁଠାରେ ଥିବ ଏବଂ ତାହାର ଅନୁକରଣରେ ବ୍ରସ୍‌ର ଉଦ୍ଭାବନ ହୋଇଥିବ । ନଚେତ୍ ବ୍ରସର ପୂର୍ବସୂରୀଙ୍କୁ ମିଆଁ ସାହେବ ନିଜ ମନରୁ ସ୍ୱାଗତ ଜଣାଇଥିବେ । ତାର ଅଠର ବର୍ଷ ପରେ ଏମ୍.ଏ.ପରୀକ୍ଷା ଦେଲାବେଳକୁ ଯେଉଁ ଦିନ ପ୍ରଥମ ଟୁଥ୍‌ବ୍ରସ କିଣିଲି ସବ୍‌ଇନସ୍‌ପେକ୍ଟରଙ୍କ ଦାନ୍ତକାଠି ମନରେ ପଡିଲା । ସେହିପରି ଅନେକ ସମୟରେ ବାସୁଦେଇପୁର କଥା ଶୁଣିଲେ ମନର ଏକ କୋଣରେ ସ୍ପନ୍ଦନ ଉଠେ । ଖବର କାଗଜରେ ଅନେକ ସମୟରେ ବାସୁଦେଇପୁର ପ୍ରସଙ୍ଗ ପ୍ରକାଶ ପାଏ । ବର୍ତ୍ତମାନର ପ୍ରଖ୍ୟାତନାମାଙ୍କର ସେ ନିର୍ବାଚନମଣ୍ଡଳୀ । ଥରେ ବୋଧହୁଏ ଡକ୍ଟର ହରେକୃଷ୍ଣ ମହତାବ ଓ ଶ୍ରୀଯୁକ୍ତ ନୀଳମଣି ରାଉତରାୟଙ୍କର ନିର୍ବାଚନ ପ୍ରତିଦ୍ୱନ୍ଦ୍ୱିତା ସେଠାରେ ହୋଇଥିଲା । ସବୁବେଳେ ମନେହୁଏ, ସେ ସ୍ଥାନରେ ମୋ ନିଜର କିଛି ସମ୍ପର୍କ ଥିଲାପରି । ଯେଉଁ ସ୍ମୃତି ଅଜାଣତରେ ଥାଏ, ଅଜ୍ଞାତରେ ଚେଇଁ ଉଠେ, ତାହାର ନିବିଡ଼ତା ବେଶି ।

ବାସୁଦେଇ ପୁରରୁ ନନାଙ୍କର ବଦଳି ହେଲା ସୋର ସର୍କଲକୁ । ସେଠାରେ ରହିଲୁ ଏକ ବଡ ବଗିଚା ଭିତରେ ଥିବା ଗୋଟିଏ ଘରେ । ବଗିଚାରେ ପୋଖରୀ ଥାଏ, ଗୋଟିଏ କାଠ ଫାଟକ ଲାଗିଥାଏ ରାସ୍ତାପଟକୁ । ମନେ ଅଛି, ସେହି ଫାଟକରୁ ଫାଙ୍କେ ମେଲାକରି ଭିତର ବାହାରକୁ ଠେଲି ଖେଳିବାର । ବର୍ତ୍ତମାନ ସୋରରେ ଯେଉଁ ସ୍ଥାନରେ କବି ରାଧାନାଥ ରାୟଙ୍କର ସ୍ମୃତିରେ ପାଠାଗାର ନିର୍ମିତ ହୋଇଛି ସେହିଠାରେ ଥିଲା ସେହି ବଗିଚା ଓ ଘର । କେତେ ବର୍ଷ ତଳେ ରାଧାନାଥ ଜୟନ୍ତୀ ଉତ୍ସବରେ ମୁଖ୍ୟ ଅତିଥି ହୋଇ ଯାଇଥିଲି । ପୂର୍ବତନ ବାଚସ୍ପତି, ସର୍ବୋଦୟ ନେତା ଶ୍ରୀଯୁକ୍ତ ନନ୍ଦକିଶୋର ଦାସ ମହାଶୟ ସେ ଅନୁଷ୍ଠାନର ସଭାପତି ଭାବରେ ସମ୍ବର୍ଦ୍ଧନା ଭାଷଣ ଦେଲାବେଳେ ସୋର ସହିତ ମୋ ପିଲାଦିନର କଥା କହି ସେହି ସ୍ଥାନର ପରିଚୟ ଦେଇଥିଲେ । ମନମଧ୍ୟରେ ସେତେବେଳେ ମୁଁ ସେହି ବଗିଚାର ସେ ଫାଟକ ଖୋଜୁଥାଏ । ବାସୁଦେଇପୁରରେ ପ୍ରାଇମେରୀ ସ୍କୁଲରେ ଯୋଗ ଦେଇଥିଲି । ସୋରରେ ଯେଉଁ ସ୍କୁଲକୁ ଗଲି, ସେଠାରେ ପିଲାଏ ବେଞ୍ଚରେ ବସୁଥିଲେ । ବେଞ୍ଚରେ ବସିବା ମୋର ସେହି ପ୍ରଥମ । ଭାବିଲି, ଗାଁରେ ପିଲାଏ ଅବଧାନଙ୍କ ଚାହାଳୀରେ ମାଟିରେ

Digitized by srujanika@gmail.com

ଘୁସୁରୁ ଥିବେ ଆଉ ମୁଁ ପକ୍କା ଚଟାଣ ଉପରେ ବେଞ୍ଚରେ ଉଭା । ସାନ ହେଉ, ବଡ ହେଉ, କାହାର ଅହଙ୍କାର ଦୈବ ସହେ ନାହିଁ । ନନାଙ୍କର ପୁଣି ବଦଳି ଆଦେଶ ଆସିଲା । ଏଥର ବୌଦ ଗଡଜାତକୁ । ପୁରୀ, କଟକ, ବାଲେଶ୍ୱର ମୋଗଲବନ୍ଦୀ ଅଞ୍ଚଳ । ସେଠାରେ ଜିଲ୍ଲା ଡେପୁଟି ଇନିସ୍‌ପେକ୍ଟରଙ୍କ ଅଧୀନରେ ସ୍କୁଲ ସବ୍‌ଇନସପେକ୍ଟର, ଆସିଷ୍ଟାଣ୍ଟ ସବ୍‌ଇନସେପେକ୍ଟରମାନେ କାର୍ଯ୍ୟ କରୁଥିଲେ । ଉପରକୁ ଥାନ୍ତି ଇନସ୍‌ପେକ୍ଟର । ମୋଗଲବନ୍ଦୀ ଶାସନରୁ ଗଡଜାତ ଶାସନ ପୃଥକ ଥିଲା । ସେଠାରେ ରଜାମାନଙ୍କର ମରଜିରେ ରାଜ୍ୟ ଚାଲେ । ସବୁ ଗଡଜାତ ସ୍କୁଲ କଥା ଦେଖାଶୁଣା କରିବା ପାଇଁ ଜଣେ ଏଜେନ୍‌ସି ଇନସ୍‌ପେକ୍ଟର ଥାଆନ୍ତି । ସେ ଗସ୍ତରେ ଆସିଲାବେଳେ, ରଜାଘରର ହାତୀ, ଘୋଡା ତାଙ୍କ ଖିଦ୍ ମିଦ୍‌ରେ ଲାଗେ । ଅଧସ୍ତନ ଗସ୍ତବାଲାଙ୍କ ପାଇଁ ବହୁ ଅସୁବିଧା । କା ଭାଁ ଯେଉଁ ପ୍ରାଇମେରୀ ସ୍କୁଲ୍ ଥାଏ, ତାକୁ ଦେଖିବା ପାଇଁ ପାହାଡ, ଜଙ୍ଗଲ, ଅତିକ୍ରମ ନ କଲେ ନ ଚଳେ । ମୋଗଲବନ୍ଦୀବାଲା ଗଡଜାତିଆଙ୍କୁ ନାକ ଟେକୁଥିଲେ । କିନ୍ତୁ ଚାକିରିରେ ବାଛବିଚାର କଲେ ଚଳିବ କାହୁଁ ! ସ୍ଥିର ହେଲା, ଆମେ ପୁଣି ଲେଉଟିବୁ ଗାଁକୁ, ନନା ଯିବେ ତାଙ୍କ ନୂତନ କର୍ମସ୍ଥଳ ଚିହ୍ନିବା ପାଇଁ । ସୋର ରେଳ ଷ୍ଟେସନରୁ ବିଦାୟ ଅଭିଯାନର ସ୍ମାରକୀ ହେଲା, ପଇସିକିଆ ସୋଡ଼ା ବୋତଲର କାଚଠିପି ଛତା ପଛ ଅଗରେ ଠେଲି ଶବ୍ଦାୟିତ ପାଣିର ଆସ୍ୱାଦନ । ତାହା ମଧ୍ୟ ଏକ ନୂତନ ଅନୁଭୂତି ।

ଗ୍ରାମରେ ସେତେବେଳକୁ ନିମ୍ନ ପ୍ରାଇମେରୀ ସ୍କୁଲଟିଏ ବସିସାରିଥାଏ । ଚାଟଶାଳୀ ମଧ ଥିଲା ପତନମୁଖ ଅବସ୍ଥାରେ । ଅଭିଭାବକଙ୍କ ବେଖାତିର, ପିଲାଙ୍କ ବିତୃଷ୍ଣା ଲକ୍ଷ୍ୟ କରି ଅବଧାନେ ବୁଜୁଳି ବାନ୍ଧିବା ଉପରେ । ନନା ମୋ ନାମ ଲେଖାଇଲେ ସ୍କୁଲରେ । ପଢ଼ା ଏକରକମ ପ୍ରକୃତ ପକ୍ଷେ ଆରମ୍ଭ ହେଲା । ଶିକ୍ଷକ ଥାଆନ୍ତି ଦୁଇଜଣ, ବଡ ଆପଣେ, ସାନ ଆପଣେ । ବଡଙ୍କ ଘର ଶ୍ରୀ ପୁରୁଷୋତ୍ତମ ପୁର, ନାମ ନୀଳକଣ୍ଠ ମିଶ୍ରେ । ସାନ ଆମ ଗାଁର, ରଘୁନାଥ ମିଶ୍ରେ, ଡାକନାମ କାଲାରଘୁ । କାଲ ନ ଥିଲେ ସେ, ଶୁଭୁଥିଲା କମ୍ । ସାନ ଆପଣେ ତଳ ଶ୍ରେଣୀରେ, ବଡ ଆପଣେ ଉପର ଶ୍ରେଣୀରେ ପଢ଼ାନ୍ତି । ଆମ ତଳ ଶ୍ରେଣୀ ପିଲାଏ ତଳେ ଚଟେଇରେ ବସୁ । ଓପରବାଲା ବେଞ୍ଚରେ । ଗୋଟିଏ କୋଠରୀର ଦୁଇ ଅଂଶରେ ଦୁଇ ଆପଣେ ପିଲାଙ୍କୁ ପଢ଼ାଇବା ସଂଗେ ପରସ୍ପର କଥାବାର୍ତ୍ତା ଅବାଧ ରଖି ଥାଆନ୍ତି । ଦୁଇବେଳା ସ୍କୁଲ ହୁଏ, ଦି'ପହରେ ଛୁଟି । ବଡ ଆପଣଙ୍କ ଖୋରାକି କୋଠରୁ ମିଳେ । ସାନ ଆପଣେ ନିଜ ଘରେ କୃତ୍ୟ ଚଳାନ୍ତି । କାହା ଘରେ କେବେ କିଛି ପିଠାପଣା ହେଲେ, ବଡ

Digitized by srujanika@gmail.com

ଆପଣଙ୍କୁ ମିଳେ । ସେ ଓଳି ହାତ ରୋଷେଇରୁ ମୁକ୍ତି । ସେ ପ୍ରତି ଶନିବାର ସ୍କୁଲ ସାରି ନିଜ ଗାଁକୁ ଯାଆନ୍ତି, ସୋମବାର ସକାଳୁ ଫେରନ୍ତି । ସ୍କୁଲ ବହି ଆଲମାରୀ ଖଣ୍ଡିକରେ ତାଙ୍କ ଲୁଗାପଟା, ଆଲମାରୀ ତଳେ ଥାଳି ଗିନା । ଚୂଲିଥାଏ ଭିତର ପଟ ସରୁ ପିଣ୍ଡା କୋଣରେ । ସକାଳଓଳି ସ୍କୁଲ ସରିବା ପୂର୍ବରୁ ବଡଶ୍ରେଣୀ ପିଲାଙ୍କ ଭିତରୁ ଦୁଇଜଣଙ୍କର ପାଳି ଅନୁସାରେ ଚୂଲି ଲଗାଇବା, ହାଣ୍ଡିଧୋଇ,ପାଣିଆଣି, ଚାଉଳ ପକାଇ ରାନ୍ଧିବା ଆରମ୍ଭ କରିବା କର୍ତ୍ତବ୍ୟ । ଓପରଓଳି ସ୍କୁଲ ଆରମ୍ଭ ହେଲେ ତଳ ଶ୍ରେଣୀର ପିଲା ଅଇଁଠା ବାସନମାଜି, ଚୂଲିଲିପି, ପାଉଁଶକାଢ଼ି ସଫା କରିବାର କଥା । ପାଠପଢ଼ା ଅପେକ୍ଷା ଶାଠଶିକ୍ଷା ଥିଲା ଅଧିକ । ବଡ ଆପଣଙ୍କ ପାଇଁ ଜାଳ ସଂଗ୍ରହ କରିବା, ପୋଖରୀରୁ ମାଠିଆରେ ପିଇବା ପାଣି ଆଣିବା, ଦୋକାନରୁ ତେଲ ଲୁଣ ସଉଦା କରିବା, କେଉଟ ସାହିରେ ଚୂଡା କୁଟାଇବା ଇତ୍ୟାଦି କାମ ପିଲାଙ୍କର ।

ସ୍କୁଲ ଉଚ୍ଚ ପ୍ରାଇମେରୀରେ ପରିଣତ ହେଲା, ଆଉ ଜଣେ ଶିକ୍ଷକଙ୍କ ନିଯୁକ୍ତି ପରେ । ତାଙ୍କ ନାମ ମଧ ରଘୁନାଥ ମିଶ୍ର । ଆମ ଗାଁର । ଡକାହେଲେ ରଘୁ ଆପଣେ ବୋଲି । ସ୍କୁଲରୁ ବିଦାୟ ନେଲା ପରେ ମଧ ତାଙ୍କର ସେହି ନାଁ ରହି ଆସିଛି । ସ୍କୁଲ ଘରର ଦାଣ୍ଡପଟ ବାରନ୍ଦା ପ୍ରଶସ୍ତ । ସନ୍ଧ୍ୟା ପରେ ବଡ ଆପଣେ ମଶିଣା ପକାଇ ସେଠାରେ ଦରବାର ବସାନ୍ତି, ଗାଁ ଭିତରୁ ଲୋକ ଯୁଟନ୍ତି । କହିବା ବୋଲିବାରେ ତାଙ୍କର ଦକ୍ଷତା ଥିଲା । ଦିନେ ଦିନେ ଲାଇବ୍ରେରୀରୁ ବହି କାଢ଼ି ପଢ଼ା ହୁଏ । ସଂସ୍କୃତ ଚର୍ଚ୍ଚା ଉଠିଯିବା ପରେ ଓ ଇଂରେଜୀ ଶିକ୍ଷା ଆସିବା ପୂର୍ବରୁ, ଓଡିଆଶିକ୍ଷା ଓ ଚର୍ଚ୍ଚାର ସୂତ୍ରପାତ ଓ କିଞ୍ଚିତ ପ୍ରସାର ଆରମ୍ଭ ହେଲା ବଡ ଆପଣଙ୍କ ଜରିଆରେ । ଗାଁର ପୂର୍ବ ସଂସ୍କାର ଅନ୍ୟ ରୂପରେ ଜାଗ୍ରତ ହେବାରୁ ଲୋକଙ୍କର ସାଧାରଣ ଆଶା, ଆକାଂକ୍ଷା ବଦଳି ଆସିଲା । ଜଣେ ବ୍ୟକ୍ତିର ସୀମିତ କାର୍ଯ୍ୟଦ୍ୱାରା ବହୁ ଲୋକଙ୍କର ଅଲକ୍ଷ୍ୟ ଉପକାର କିପରି ହୋଇପାରେ, ତା'ର ନିଦର୍ଶନ ବଡ ଆପଣେ । ନିଜେ ଶିକ୍ଷାନୁରାଗୀ ଥିଲେ । ଥରେ ସେ ଶିବରାତ୍ରିକୁ ଭୁବନେଶ୍ୱର ଯାଇଥିଲେ । ଫେରିବା ପରେ ସେ ବିଷୟରେ ପଦ୍ୟ ଆକାରରେ ବହି ଲେଖି ଛପାଇଥିଲେ । ତାହାର ଆବୃତି ସ୍କୁଲରେ ଓ ବାହାରେ ଅନେକ ଦିନ ଚାଲିଥିଲା । ମୋର ଜଣେ ମାମୁଁ ସେହି ଅନୁକରଣରେ ପଦ୍ୟ ଲେଖିବା ଆରମ୍ଭ କଲେ; ଅକାଳ ବିୟୋଗ ନ ହୋଇଥିଲେ ହୁଏତ ଯଶ ଉପାର୍ଜ୍ଜନ କରିଥାଆନ୍ତେ । ବଡ ଆପଣେ ବୟସାଧିକ୍ୟ ପର୍ଯ୍ୟନ୍ତ ସ୍କୁଲରେ ଥିଲେ । କଲେଜରୁ ଛୁଟିରେ ଗାଁକୁ ଗଲେ ମୋର ପ୍ରଧାନ କାର୍ଯ୍ୟ ଥିଲା ତାଙ୍କୁ ଦେଖା

Digitized by srujanika@gmail.com

କରିବା । କି ଆନନ୍ଦ ତାଙ୍କର । ଆଉ କେହି ଛାତ୍ର ତାଙ୍କ ସ୍କୁଲରୁ କଲେଜକୁ ଯାଇନଥିଲେ । ପରେ ଓକାଲତି କଲାବେଳେ କେତେ ଥର ଆସିଛନ୍ତି କଟକ ଆମ ଘରକୁ । ଶେଷଥର ଆସିଲେ ମୁଁ ହାଇକୋର୍ଟ ଜଜ୍ ହେବାପରେ । ସେତେବେଳକୁ ସେ ଅନ୍ଧ ଓ ବୃଦ୍ଧ । ପୁଅକୁ ସାଙ୍ଗରେ ନେଇ ଆସିଥାଆନ୍ତି । ହାତ ଅଣ୍ଡାଳି ମୋ ମୁଣ୍ଡରେ ହାତଦେଇ ଅଶ୍ରୁ ବିଗଳିତ ସ୍ୱରରେ କହିଲେ, ତୁ ମୋର ଅନ୍ଧର ଲଉଡି । ସନ୍ତର୍ପଣରେ ଶହେଟି ଟଙ୍କା ଦେବାରୁ କି ଅକପଟ ଆନନ୍ଦ ତାଙ୍କ ମୁହଁରେ ଦେଖିଲି କହିହେବ ନାହିଁ । ତାଙ୍କ ଦେହାନ୍ତ ପରେ, ପୁଅ ଆସିଥିଲେ । ଶୁଣିଲି, ତାଙ୍କ ଗାଁରେ ବଡ ଆପଣଙ୍କୁ କେହି କିଛି କଲି, ରାଗ ବା ତାଚ୍ଛଲ୍ୟ କରି କହିଲେ, ସେ କ୍ରୋଧରେ ଜବାବ ଦେଉଥିଲେ, ମୋ ପାଦ ଧୂଳିରୁ ହାଇକୋଟ ଜଜ୍ ହେଇଛନ୍ତି, ତମେ କି ଛାର ।

ଚାହାଲି, ବାସୁଦେଇପୁର, ସୋର ପରି ଗାଁ ସ୍କୁଲରେ ପଢ଼ିବା ମଧ ଅଳ୍ପକାଳ । ଏହି ଚାରି ସ୍ଥାନରେ କେବଳ ଓଡିଆ ଶିକ୍ଷା । ନନାଙ୍କର ଇଚ୍ଛାଥାଏ ମୁଁ ଇଂରେଜୀ ପଢ଼େ । ସେ ପୁରୀ, କଟକ ପ୍ରଭୃତି ସହର ଓ ସହରବାସୀଙ୍କ ସମ୍ପର୍କରେ ଆସି ଓ ସରକାରୀ କାର୍ଯ୍ୟରେ ପଶି ଜାଣି ପାରିଥାନ୍ତି ଭବିଷ୍ୟତ ପାଇଁ ତାହାର ଗୁରୁତ୍ୱ କେତେ । ଆମ ଗ୍ରାମ ଅଞ୍ଚଳରେ ଇଂରେଜୀ ଶିକ୍ଷା ପ୍ରତି ବିମୁଖତା ଥିଲା । ତା'ର ପ୍ରଧାନ କାରଣ, ଖ୍ରୀଷ୍ଟାନ ଧର୍ମ ଓ ଇଂରେଜୀ ଭାଷାକୁ ଅବିଚ୍ଛେଦ୍ୟ ବୋଲି ଧରିନେଇଥିଲେ ଯେପରି ହିନ୍ଦୁଧର୍ମ ଓ ସଂସ୍କୃତଭାଷା । କଳିଙ୍ଗ ବା ଉତ୍କଳ ବା ଓଡିଶାରେ ଯେ ଆଗରୁ ସବୁବେଳେ ଓଡିଆ ରଜାଙ୍କ ରାଜତ୍ୱ ଚାଲିଥିଲା, ତା' ନୁହେଁ, ଦକ୍ଷିଣରୁ ତ୍ରିଲିଙ୍ଗବଂଶୀୟ ରାଜା ମଧ ଆସିଥିଲେ । କିନ୍ତୁ ତାଙ୍କ ମାତୃଭାଷା ପ୍ରଜାଙ୍କ ଉପରକୁ ଆସି ନଥିଲା । ରାଜା ଦିକ୍ଷୀତ ହେଉଥିଲେ ପ୍ରଜାଙ୍କ ଭାଷା ଓ ଆଚାରରେ । ମୂଳ ଭଦ୍ରଜ ଭାଷା ରୂପେ ସଂସ୍କୃତ ଆଦୃତ ଥିଲା । ମୋଗଲ ଶାସନ କର୍ତ୍ତୃତ୍ୱକୁ ଆସିବା ସଙ୍ଗେ ଶିକ୍ଷା ଓ ଭାଷାରେ ବିଭ୍ରାଟ ପହଞ୍ଚିଲା । ଆରବୀ, ଫାର୍ସିକୁ ରାଜକୀୟ ସମ୍ମାନ ମିଳିବାରୁ ଉଚ୍ଚ ଅଭିଳାଷୀ ପରିବାରରେ ସେ ଭାଷା ଆୟତ୍ତ କରିବାର ଚେଷ୍ଟା ଆରମ୍ଭ ହେଲା । ରାଜାନୁଗତ କେବଳ ଧର୍ମ ନୁହେଁ, ଭାଷା ମଧ । ରାଜ ଅନୁଗ୍ରହକୁ ଅପେକ୍ଷା ରଖି ସାମାଜିକ ମର୍ଯ୍ୟାଦାର ମୋଡ ବଦଳେ । ଆରବୀ, ଫାର୍ସିକୁ ଆଶ୍ରୟ କରି ଓଡିଆ ଭାଷାର ବିକୃତ ସମ୍ମିଶ୍ରଣ ରୂପେ ଯାହା ବାହାରିଲା ତାକୁ ଦେଖି ସଂସ୍କୃତ ଆତ୍ମରକ୍ଷା ପାଇଁ ଲୋକଲୋଚନ ଅଗୋଚରକୁ କ୍ରମଶଃ ଅପସରି ଗଲା । ଅନାବଶ୍ୟକ ସୂତ୍ରେ ସଂସ୍କୃତ ଭାଷାର ଆଦର କମିଗଲା ସତ, ମାତ୍ର ରକ୍ଷଣଶୀଳ ପୁରୀ ଶାସନରେ ଫାର୍ସି ବା ଆରବୀର ପ୍ରବେଶ ଆଦୌ ଘଟିଲା ନାହିଁ । ବିଧର୍ମୀର ଭାଷାରେ ସ୍ୱଧର୍ମର

Digitized by srujanika@gmail.com

ବିଲୋପର ଆଶଙ୍କା ଏଠାରେ ମଜ୍ଜାଗତ । ଠିକ୍ ସେହି କାରଣରୁ, ୧୮୦୩ ବେଳକୁ ଇଂରେଜୀ ଶାସନ ପୁରୀକୁ ଆସିଲା ପରେ, ଇଂରେଜୀ ଭାଷାର ସକୋଠର ଅବରୋଧ ପ୍ରତିଗ୍ରାମରେ ପ୍ରତିଧ୍ୱନିତ ହେଲା । ତାକୁ ମ୍ଲେଚ୍ଛଭାଷା ବୋଲି ପ୍ରତ୍ୟାହାର କରାଗଲା । ସଂସ୍କୃତ ଯାଉ ପଛକେ, ଇଂରେଜୀ ନ ଆସୁ । ଶିକ୍ଷା ନ ରହୁ, ଧର୍ମ ଥାଉ । ଶହେ ବର୍ଷରୁ ଉର୍ଦ୍ଧ୍ୱ ଏହି ପ୍ରତିରୋଧ ଅକ୍ଷୁର୍ଣ୍ଣ ରହିଲା । ତାହା ପୂର୍ବରୁ ସମଗ୍ର ମୋଗଲ ରାଜତ୍ୱ କାଳରେ ମଧ ଏହି ବ୍ୟବସ୍ଥା । ଫଳରେ ଯେଉଁ ଶାସନ ଗ୍ରାମର ଲୋକେ ବିଦ୍ୟା, ବାଗ୍ମୀତାରେ ଖ୍ୟାତି ଲାଭ କରିଥିଲେ, ତାଙ୍କର ବଂଶଧରମାନେ ଅଶିକ୍ଷା ଓ କୁସଂସ୍କାରରେ ପ୍ରାୟ ତିନିଶହ ବର୍ଷ ଧରି ଅନ୍ଧାରରେ ଘାଣ୍ଟି ହେଉଥାଆନ୍ତି । ଆୟୁର୍ବେଦ, ଜ୍ୟୋତିଷ ଯେଉଁଠାରେ ନିତ୍ୟ ବ୍ୟବହାର୍ଯ୍ୟ ଥିଲା, ସେଠାରେ ହଇଜା, ବସନ୍ତ ରୋଗର କୋକୁଆ ଭୟରେ କାଳେଶୀଙ୍କର ପ୍ରାଧାନ୍ୟ ସ୍ଥାନ ପାଇଲା । ଶାସ୍ତ୍ରଚର୍ଚ୍ଚା ବଦଳରେ ପରଚର୍ଚ୍ଚା ସାର ହେଲା । କଳହ, ବିବାଦ, ଗ୍ରାମର ନିତ୍ୟ ସହଚର । ଏହି ଅବସ୍ଥାର ପ୍ରତିକାର ପାଇଁ ଉନବିଂଶ ଶତାବ୍ଦୀର ଶେଷ ଦଶକରୁ ପୁରୀରେ ମୁକ୍ତାର ରାମଚନ୍ଦ୍ର ଦାଶଙ୍କ ତତ୍ତ୍ୱାବଧାନରେ ଚିନ୍ତା ଓ ଚେଷ୍ଟା ଆରମ୍ଭ ହୋଇଥାଏ । ସେଥିରେ ଉତ୍ସାହୀ ଥିଲେ ପୁରୀ ଜିଲ୍ଲାର ଗ୍ରାମ୍ୟ ଅଞ୍ଚଳରୁ ଯେଉଁ ଅଳ୍ପ କେତେଜଣ ଯୁବକ ଇଂରେଜୀ ଶିକ୍ଷାର ସୁଯୋଗ ପାଇ ପାରିଥିଲେ । ସୁଆଣ୍ଡର ଗୋପବନ୍ଧୁ ଦାସ ଅଗ୍ରଣୀ । ସହଯୋଗୀ ଶ୍ରୀରାମଚନ୍ଦ୍ର ପୁରର ଗୋପୀନାଥ ଦାଶ, ନୀଳକଣ୍ଠ ଦାଶ, ହରିହର ଦାଶ, ବୀର ପ୍ରତାପପୁରର ବୈଦ୍ୟନାଥ ମିଶ୍ର । ଏ ସମସ୍ତଙ୍କର ଛାତ୍ର ଅବସ୍ଥା; କିନ୍ତୁ ଭବିଷ୍ୟତ ପାଇଁ ସଂକଳ୍ପରେ ଆବଦ୍ଧ । କେହି କେହି ଓହରି ଗଲେ । ବି.ଏ. ପାସ୍ ପରେ ବୈଦ୍ୟନାଥ ବାବୁ ଡେପୁଟୀ ହେଲେ । ଗୋପୀନାଥ ବାବୁ ସବ୍ ଡେପୁଟୀ ଚାକିରିରେ ଯୋଗଦେଲେ ସୁଦ୍ଧା ସାଧମତ ସହଯୋଗ ଉନ୍ମୁକ୍ତ ରଖିଥାଆନ୍ତି । ସଙ୍କଳ୍ପ ପାଳନରେ ନିଶ୍ଚିତ ରହିଲେ ଗୋପବନ୍ଧୁ ବାବୁ, ନୀଳକଣ୍ଠ ବାବୁ ଓ ହରିହର ବାବୁ । ପ୍ରଥମ ପଦକ୍ଷେପରେ ପ୍ରତିଷ୍ଠିତ ହେଲା ସତ୍ୟବାଦୀ ମାଇନର ସ୍କୁଲ । ସେ ଅଞ୍ଚଳରେ ଇଂରେଜୀ ଶିକ୍ଷାର ଅୟମାରମ୍ଭ । ସେଠାରେ ମୋର ପଢ଼ିବା ସ୍ଥିର ହେଲା । ୧୯୧୧ ମସିହାରେ ସପ୍ତମ (ବି) କ୍ଲାସରେ ଯୋଗ ଦେଲି ।



Digitized by srujanika@gmail.com

# ସତ୍ୟବାଦୀ ସ୍କୁଲ

ସତ୍ୟବାଦୀ ସ୍କୁଲ ମୂଳରୁ ଅଭିନବ । ବିନା ସରକାରୀ ସାହାଯ୍ୟ ବା ଅନୁମୋଦନରେ ଇଂରେଜୀ ଶିକ୍ଷା ସ୍କୁଲ ସ୍ଥାପନ ହେବାରେ ତାହା ପ୍ରଥମ । ପ୍ରଚଳିତ ବେତନ ହାରଠାରୁ ଅତିନ୍ୟୂନ ପାରିଶ୍ରମିକରେ ଶିକ୍ଷକ ନିଯୁକ୍ତି ଥିଲା ଅଦ୍ୱିତୀୟ । ନିର୍ଦ୍ଦିଷ୍ଟ ଶିକ୍ଷା ଯୋଗ୍ୟତାଠାରୁ ଅତି ଉର୍ଦ୍ଧ୍ୱ ଶିକ୍ଷାପ୍ରାପ୍ତ ବ୍ୟକ୍ତିମାନେ ମାଇନର ସ୍କୁଲରେ ଅଧ୍ୟାପନା କରିବା ସେହିପରି କଳ୍ପନାତୀତ । ଗୋପବନ୍ଧୁ ବାବୁ କଲେଜରେ ପଢ଼ିଲାବେଳେ ନୀଳକଣ୍ଠ ଦାଶ, ଗୋଦାବରୀଶ ମିଶ୍ର, କୃପାସିନ୍ଧୁ ମିଶ୍ର, ହରିହର ଦାଶ, ଅନନ୍ତ ମିଶ୍ର ପ୍ରଭୃତି କେତେଜଣ ଯୁବକଙ୍କ ସହିତ ଦୃଢ଼ ସଂଯୋଗ ରକ୍ଷା କରୁଥିଲେ । ସେମାନେ ମଧ୍ୟ ଛାତ୍ର । ଗୋଦାବରୀଶ ବାବୁ ବାଣପୁରର, ଅନ୍ୟମାନେ ସତ୍ୟବାଦୀ ନିକଟବର୍ତ୍ତୀ ଶ୍ରୀରାମଚନ୍ଦ୍ର ପୁରର । ଗୋପବନ୍ଧୁଙ୍କ ଘର ମଧ୍ୟ ସତ୍ୟବାଦୀ ପାଖ ସୁଆଣ୍ଡ । ସେତେବେଳେ ମାନ୍ୟଭାବରେ 'ବାବୁ'କୁହାଯାଉଥିଲା । କେବଳ ସଂସ୍କୃତଜ୍ଞମାନଙ୍କୁ 'ପଣ୍ଡିତ' ସମ୍ବୋଧନରେ ଆପ୍ୟାୟିତ କରାହେଉଥିଲା । ଓଡିଶା, ବଙ୍ଗଳାରେ ଏହି ଚାଲ । ବିହାର, ଉତ୍ତର ପ୍ରଦେଶରେ ରୀତି ଥିଲା ଭିନ୍ନ । ବ୍ରାହ୍ମଣମାନଙ୍କୁ ପଣ୍ଡିତ ଓ ଅନ୍ୟମାନଙ୍କୁ ବାବୁ ଅଗ୍ରପଦବୀରେ ମାନ୍ୟ ଦେଉଥିଲେ । ପ୍ରଦେଶ ପ୍ରଦେଶ ମଧ୍ୟରେ ସରକାରୀ ବେସରକାରୀ ସମ୍ପର୍କ ଘନିଷ୍ଠ ନ ଥିବାରୁ, ଏହି ପୃଥକ ଚାଲ ଅବ୍ୟାହତ ରହି ଆସୁଥିଲା । ଅସହଯୋଗ ଆନ୍ଦୋଳନର ସୂତ୍ରପାତ ୧୯୨୧ ମସିହାରୁ ଆରମ୍ଭ ହେବାପରେ, ଜାତୀୟ ଜାଗରଣରେ ବିଭିନ୍ନ ପ୍ରଦେଶର ଲୋକେ ଏକତ୍ର ହେଲେ । ସେତେବେଳେ ଓଡିଶା ସ୍ୱତନ୍ତ୍ର ପ୍ରଦେଶ ହୋଇ ନଥାଏ । ବିହାର ସହିତ ଜଡିତ ହୋଇ, ବିହାର ଓଡିଶା ପ୍ରଦେଶ ଅନ୍ତର୍ଭୁକ୍ତ ଥାଏ । ପ୍ରାଦେଶିକ କଂଗ୍ରେସ କମିଟିର ସଦର ମହକୁମା ଥିଲା ବିହାରର ପାଟନା ସହରରେ । ଓଡିଶାରେ କଂଗ୍ରେସରେ ଥିବା ଲୋକ ବିହାର ଅନୁକରଣରେ ଆଣି ଥୋଇଲେ ବ୍ରାହ୍ମଣ କଂଗ୍ରେସ ନେତାଙ୍କ ନାମ ଆଗରେ 'ପଣ୍ଡିତ' । ଜାତିଭେଦ ଉଠାଇବା ପାଇଁ ଯେତେ ହୁରି

Digitized by srujanika@gmail.com

ଉପରେ ଉପରେ । ଚିହ୍ନ ଥାପିବାକୁ କଂଗ୍ରେସ ବି ବର୍ତ୍ତିଲା ନାହିଁ । ୧୯୨୪ ମସିହା ଜୁନ୍ ମାସ ୨୬ ତାରିଖରେ କଟକରେ ଓଡିଶା ପ୍ରାଦେଶିକ କଂଗ୍ରେସ ସମ୍ମିଳନୀ ବଙ୍ଗଳାର ପ୍ରଖ୍ୟାତ ପ୍ରଫୁଲ୍ଲ ଚନ୍ଦ୍ର ରାୟଙ୍କ ସଭାପତିତ୍ୱରେ ବସିଥିଲା । ସେହିଦିନ ଗୋପବନ୍ଧୁ ବାବୁ ହଜାରିବାଗ ଜେଲରୁ ମୁକ୍ତ ହୋଇ କଟକରେ ପହଞ୍ଚି ସିଧା ରେଳ ଷ୍ଟେସନରୁ ଆସି ସଭାମଣ୍ଡପରେ ଉପସ୍ଥିତ ହେବା ବେଳେ ସ୍ୱତଃସ୍ଫୁର୍ତ୍ତ ବିପୁଳ ସମ୍ବର୍ଦ୍ଧନା ଦେଖି ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର ରାୟ ଗୋପବନ୍ଧୁଙ୍କୁ "ଉତ୍କଳମଣି" କହି ସମ୍ମାନ ଅର୍ପଣ କରିଥିଲେ । ଗୋପବନ୍ଧୁ ବାବୁ ହେଲେ ସେହିଦିନଠାରୁ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାଶ । ସେହି ଢ଼ଙ୍ଗରେ ପଣ୍ଡିତ ଶିରୋନାମା ଆସିଲା ଅନ୍ୟ ନେତୃସ୍ଥାନୀୟ ବ୍ରାହ୍ମଣ ବଂଶୋଦ୍ଭବ ମାନଙ୍କ ପାଇଁ, ଯଦିଓ ସେମାନଙ୍କ ଭିତରୁ କାହାରି କାହାରି କାନ୍ଧରେ ପଇତା ନ ଥାଏ, ଯଥା ଗୋଦାବରୀଶ ବାବୁ, କୃପାସିନ୍ଧୁ ହୋତା । ନୀଳକଣ୍ଠ ବାବୁଙ୍କ ପରି କେତେକଙ୍କର ବାହ୍ୟ ବ୍ରାହ୍ମଣ୍ୟ କର୍ମରେ ଆସ୍ଥା ନ ଥିଲା । ପଣ୍ଡିତ ପଦବୀ ପୁରୀ ଜିଲ୍ଲାରେ ଅଟକିଗଲା । ଗଞ୍ଜାମର ବିଶ୍ୱନାଥ ଦାସେ ପଣ୍ଡିତ ବୋଲାଇଲେ ନାହିଁ । କଟକର ପ୍ରାଣକୃଷ୍ଣ ପଢ଼ିଆରୀ ଆଗରୁ ସ୍କୁଲରେ ପଣ୍ଡିତ ଥିଲେ । କଂଗ୍ରେସ କର୍ମୀଙ୍କର ତଳ ମହଲାକୁ ଏ ଆଖ୍ୟା ମଧ୍ୟ ଆସିଲା ନାହିଁ । ସମାଜର ଅନ୍ୟସ୍ତରକୁ ମଧ୍ୟ ନୁହେଁ । ସତ୍ୟବାଦୀ ସ୍କୁଲର ଶେଷ ପର୍ଯ୍ୟନ୍ତ (ଅର୍ଥାତ ଜାତୀୟ ବିଦ୍ୟାପୀଠରେ ପରିଣତ ହୋଇ, ପରେ ବନ୍ଦ ହେବା ପର୍ଯ୍ୟନ୍ତ) ଗୋପବନ୍ଧୁ ବାବୁ ବା କେହି ଶିକ୍ଷକ ପରିଚିତ ହେଉ ନ ଥିଲେ 'ପଣ୍ଡିତ' ବୋଲି । ସାଧାରଣରେ ଓ ସରକାରୀ କାଗଜରେ ସେମାନଙ୍କୁ 'ବାବୁ' ଡାକୁଥିଲେ ।

ଶିକ୍ଷାକୁ ମୂଳଭିତ୍ତି କରି ଜନସେବା ଆରମ୍ଭ କରିବାର ସିଦ୍ଧାନ୍ତ ଗୋପବନ୍ଧୁ ବାବୁ ଓ ତାଙ୍କ ସହଯୋଗୀମାନେ ପୂର୍ବରୁ କରିଥିଲେ । ପୁନାରେ ଜଷ୍ଟିସ ରାନାଡେଙ୍କ ନେତୃତ୍ୱରେ ସେହିପରି କାର୍ଯ୍ୟ ଆରମ୍ଭ ହୋଇଥିଲା । ଡେକାନ ଏଡୁକେସନ୍ ସୋସାଇଟି ସେଠାରେ ଗଠିତ ହୋଇ ଶିକ୍ଷାକେନ୍ଦ୍ର ସ୍ଥାପିତ ହୋଇଥିଲା । ଗୋପାଳକୃଷ୍ଣ ଗୋଖଲେ ପ୍ରଭୃତି ରାନାଡେଙ୍କ ପ୍ରେରଣାରେ ସେଥିରେ ଯୋଗ ଦେଇଥିଲେ । ଫରଗୁସନ୍ କଲେଜର ଖ୍ୟାତି ଶିକ୍ଷାକ୍ଷେତ୍ରରେ ଆବଦ୍ଧ ନ ରହି ଜାତୀୟ ଜାଗରଣ ସ୍ତରରେ ଆଲୋଡନ ସୃଷ୍ଟି କରିଥାଏ । ସେହି ଆଦର୍ଶ ଗୋପବନ୍ଧୁ ବାବୁଙ୍କର ପ୍ରାଥମିକ ପଥ ପଦର୍ଶକ ରୂପେ କାର୍ଯ୍ୟ କଲା । ସେ ଆରମ୍ଭ କଲେ ୟୁନିଭର୍ସାଲ ଏଡୁକେସନ ଲିଗ୍ (ବିଶ୍ୱ ଶିକ୍ଷା ସଂସଦ) ରାନାଡେଙ୍କ ଆଗକୁ ପାଦେ ବେଶି ।। ସଂସଦର କର୍ମସ୍ଥଳୀ ରୂପେ ସତ୍ୟବାଦୀ

Digitized by srujanika@gmail.com

ନିର୍ଣ୍ଣିତ ହେଲା । ସ୍ଥାନ ଅଭୂତପୂର୍ବ । ତା ପୂର୍ବରୁ ବା ପରେ ଅନ୍ୟ କୌଣସି ଶିକ୍ଷାଳୟ ପାଇଁ ଏପରି ଅପରୂପ ଆବାସ ମିଳି ନାହିଁ । ସାକ୍ଷୀଗୋପାଳ ମନ୍ଦିରର ଠିକ୍ ପଶ୍ଚାତରେ ଗହଳ ଛୁରିଅନା ବକୁଳର କୁଞ୍ଜ । ବୃନ୍ଦାବନରୁ ଶ୍ରୀକୃଷ୍ଣ ସାକ୍ଷ୍ୟ ଦେବାପାଇଁ ପୁରୀକୁ ଆସୁ ଆସୁ ବାଟରେ ଏହି କୁଞ୍ଜର ଲୋଭରେ ଅଟକିଗଲେ ଏବଂ ରାଧାଙ୍କୁ ଫେରି ପାଇଲେ ସେବକ ଘରର ଲକ୍ଷ୍ମୀ କନ୍ୟା ରୂପରେ । ଉତ୍କଳରୁ ଦୁଇବନ୍ଧୁ ଯାଉଥିଲେ ମଥୁରା ବୃନ୍ଦାବନ ଆଡେ । ସେଠାରେ ଜଣେ ଅନ୍ୟଜଣଙ୍କ ଠାରୁ କିଛି ଅର୍ଥ ଧାରନେଇ ପରେ ଶଠତା କରି ଅସ୍ୱୀକାର କରିବାରୁ ବ୍ୟଥିତ ବନ୍ଧୁ ରାଜଦ୍ୱାରରେ ଗୁହାରୀ କଲେ । ସାକ୍ଷ୍ୟ ପ୍ରମାଣ ଆବଶ୍ୟକ ହେବାରୁ, ଅଭିଯୋଗକାରୀ ଗଲେ ବୃନ୍ଦାବନ ମୟୂରଚୂଳଙ୍କ ପାଖକୁ, ଯାହାଙ୍କ ସମ୍ମୁଖରେ ଅର୍ଥର ଆଦାନ ପ୍ରଦାନ ହୋଇଥିଲା । ପ୍ରତ୍ୟକ୍ଷଦର୍ଶୀ ସମ୍ମତ ହେଲେ ସତ୍ୟସାକ୍ଷୀ ଦେବାପାଇଁ । ଆକାଶ, ବିମାନ କି ବାଷ୍ପ ଶକଟ ନାହିଁ । ମଟରକାର, ବସ, ଉଭାବନ ଗହ୍ୱରରେ ଭ୍ରୁଣାକାର ମଧ ଧରିନଥିଲେ । ପଦଯାତ୍ରାରେ ଦୁହେଁ ବାହାରିଲେ ପୁରୀ– ଆଗେ ଆଗେ ମୁଦେଇ, ପଛରେ ସାକ୍ଷୀ । ପଛବାଲା ଶକ୍ତିମାନ୍, ଆଗବାଲା ଆସ୍ଥାବାନ୍ । ଇଚ୍ଛାରେ କେବଳ ନିର୍ଭରଶୀଳ ହେଲେ ହେବନାହିଁ, ବିଶ୍ୱାସରେ ନିର୍ଭରଶୀଳ ନହେଲେ ଦେବକୃପା ମିଳେ ନାହିଁ । ସାକ୍ଷୀ କହିଲେ, ତମର ସତ୍ୟାସତ୍ୟ ପ୍ରମାଣ ଯଦି ମୋ କଥା ଉପରେ ନିର୍ଭର କରୁଛି, ତମର ବିଶ୍ୱାସ ମୋ ଉପରେ ଅତୁଟ ଅଛି ତ ? ତମେ ଶ୍ରୀକ୍ଷେତ୍ରରେ ପହଞ୍ଚିବା ପର୍ଯ୍ୟନ୍ତ ପଛକୁ ଆଉ କାହିଁକି ଚାହିଁବ; ମୁଁ ତ ପଛେ ପଛେ ତମ ବାଟଧରି ଚାଲିଛି । କଚେରୀ ସବୁକାଳେ ସମାନ । ସନ୍ଦେହ ତା'ର ମୂଳଦୁଆ । ବିଚାରକ ଭାବେ, ପକ୍ଷ ସତ କହୁଛି ତ ? ପକ୍ଷ ସନ୍ଦେହ କରେ ସାକ୍ଷୀ ଆସି ଯାହା କହିବାର କଥା, କହିବ ତ ? ସାକ୍ଷୀ ମନକୁ ପଚାରେ, କାଳେ ପକ୍ଷ ଠକିଦେବ । ସାକ୍ଷୀତ ସାକ୍ଷୀ, ସେ ଦ୍ୱିବାହୁ ମନୁଷ୍ୟ ହେଉ ବା ଚତୁର୍ମୁଖ ବ୍ରହ୍ମା ହୁଅନ୍ତୁ । ସନ୍ଦେହରେ ଆଗ ଯାତ୍ରୀ କାନ ଡେରିଥାଏ ପଛବାଲାର ନୂପୁର ଧ୍ୱନିକୁ । ନୀଳାଚଳଧାମ ଆଉ ଅଳ୍ପଦୂର । ରତ୍ନଚିରା ନଦୀ ଦିଶିଲା । କାହୁଁ ଝୁଣୁ ଝୁଣୁ ଶବ୍ଦ ତ ଶୁଭୁନାହିଁ । ସନ୍ଦେହୀ ମନକୁ ଆସିଲା ନାହିଁ, ନଇବାଲିରେ ସାକ୍ଷୀଙ୍କର ପାଦ ବୁଡି ଯାଇ ଥାଇପାରେ । ସାଙ୍ଗ ଠକି ଥିଲା ବୋଲି, ସାକ୍ଷୀଙ୍କୁ ଆଶ୍ରା କଲି, ଏବେ ସେ କଣ ଠିକିଲେ କି ? ପଛକୁ ଲେଉଟି ଚାହିଁଲା ବେଳକୁ, ମୃଦୁହସରେ ବଂଶୀ ହଲାଇ ସଂକେତ ମିଳିଲା, ଆଉ ମୁଁ ନଯାଏ, ମୋ ସାକ୍ଷ୍ୟ ଯଦି ଲୋଡା, କମିଶନ୍ ଜବାନବନ୍ଦୀ ପାଇଁ ରାଜଦ୍ୱାରରେ ଦରଖାସ୍ତ କର ।

Digitized by srujanika@gmail.com

ଦୋହରି ବୃନ୍ଦାବନ ଗଢ଼ିଲେ ସାକ୍ଷୀଗୋପାଳ । ଅପରୂପ ମୁଗୁନି ପଥରରେ ପୂର୍ଣ୍ଣ ଅବୟବ ରୂପ ଗ୍ରହଣ କଲେ । ଯମୁନାର ପ୍ରତିବିମ୍ବ ପଡିଲା ରତ୍ନଚିରାର ଜଳରାଶିରେ । ତମାଳର ସୁକୋମଳ ଶ୍ୟାମଳ ଆଭା ଫୁଟିଲା ଝୁରୀଅନାର ମଞ୍ଜୁଳ ପତ୍ରାବଳୀରେ । ସନ୍ଦିଗ୍ଧ ମନର ବିଷାଦ ବିମୋଚନ ପାଇଁ ବକୁଳର ସୁବାସ ବିକଶିତ ହେଲା ।

ଗୋପବନ୍ଧୁ ଆବାଲ୍ୟ ଗୋପବଲ୍ଲଭ ସେବୀ । ନିଜର ଗୃହ ବିଗ୍ରହଙ୍କୁ ପ୍ରତିସନ୍ଧ୍ୟାରେ ଭାଗବତ ପାଠ ନିବେଦନ କରନ୍ତି । ଘଟନାକ୍ରମେ ନୁହେଁ, ଦୈବଘଟନରେ ସାକ୍ଷୀଗୋପାଳଙ୍କର ବିଭୂତି ମିଳିଲା ତାଙ୍କ ଉଦ୍ୟମକୁ । ମନ୍ଦିର ପଛକୁ ଝୁରୀଅନା କୁଞ୍ଜର କିୟଦଂଶରେ ମାଇନର ସ୍କୁଲ ସ୍ଥାପିତ ହେଲା ୧୯୦୯ ମସିହା ଅଗଷ୍ଟ ୧୨ ତାରିଖରେ । ଲମ୍ବା ଚାଳଘର, ମାଟିଚଟାଣ । ଉପକରଣ ସାମାନ୍ୟ, ମାତ୍ର ଉତ୍ସାହ ବିପୁଳ । ଛାତ୍ର ଆସିଲେ ସତ୍ୟବାଦୀ ଚାରିପଟ ଗ୍ରାମ ମାନଙ୍କରୁ ଇଂରେଜୀ ଶିକ୍ଷାର ଲୋଭରେ । ସ୍କୁଲର ମହତ୍ୱ ଆସିଲା ନୀଳକଣ୍ଠ ବାବୁ କଲିକତାରୁ ଏମ୍. ଏ. ପାଶ୍ କରି ଯେଉଁଦିନ ସ୍କୁଲରେ ଯୋଗଦେଲେ । ଓଡିଶାରେ ସେତେବେଳେ ଏମ୍. ଏ. ବାଲା ହାତରେ ଗଣିଲା ପରି । କଟକରେ ବି.ଏ ପର୍ଯ୍ୟନ୍ତ ଥିଲା । ଏମ୍.ଏ. ପାଇଁ କଲିକତା ନିକଟତମ ସ୍ଥାନ କିନ୍ତୁ ସେଠାରେ ପଢ଼ିବାର ଖର୍ଚ୍ଚ ତୁଲାଇବାକୁ ସମ୍ବଳ ଥିଲା କ୍ୱଚିତ୍ ପରିବାରର । କଟକ କଲେଜରୁ (ରେଭେନ୍ସା) ଆଇନ କ୍ଲାସ (ବି-ଏଲ୍) ଉଠିଯାଇ ଥିବାରୁ ସରକାର ମାସିକ ବୃତ୍ତି ଦେଉଥିଲେ, ଯେଉଁମାନେ ଆଇନ ପଢ଼ିବାକୁ କଲିକତା ଯିବାପାଇଁ ଚାହୁଁଥିଲେ । ସେହି ବାହାନାରେ କେତେକ ଯାଉଥିଲେ, ଲ କ୍ଲାସରେ ନାମ ଲେଖାଇ ଏମ୍.ଏ.ପଢୁଥିଲେ । ନୀଳକଣ୍ଠ ବାବୁ, ଗୋଦାବରୀଶ ବାବୁ, କୃପାସିନ୍ଧୁ ବାବୁ ସେହି ପନ୍ଥୀ । ଲ ପାଇଁ ବୃତ୍ତି ନେଲେ କିନ୍ତୁ ଲ ପରୀକ୍ଷା ନ ଦେଇ, ଏମ୍.ଏ. ପାଶ୍ କଲେ । ଏମ୍.ଏ.ପାଶ୍ କଲେ ଉଚ୍ଚ ଚାକିରୀ ଥୁଆ । କିନ୍ତୁ ଏମାନେ ସଂକଳ୍ପବଦ୍ଧ ଜନସେବା ପାଇଁ । ନୀଳକଣ୍ଠ ବାବୁ ଆଗ ପାଶ୍‌କଲେ । ସ୍କୁଲକୁ ଆସିଲେ ୧୯୧୧ ଅକ୍ଟୋବର ୧୧ ତାରିଖରେ । ଅକ୍ଟୋବର ମାସର ଭୂମିକା ଦୈବପ୍ରଦ ବୋଧହୁଏ । ଗୋପବନ୍ଧୁଙ୍କର ଜନ୍ମ ଅକ୍ଟୋବର ମାସରେ (୧୮୭୭ ଅକ୍ଟୋବର ୯ ତାରିଖ ) ନୀଳକଣ୍ଠ ସ୍କୁଲରେ ଯୋଗଦେଲେ ଅକ୍ଟୋବର ମାସରେ । ଗୋପବନ୍ଧୁ 'ସମାଜ' ସମ୍ବାଦପତ୍ର ଆରମ୍ଭ କଲେ ଅକ୍ଟୋବରରେ । (୧୯୧୧ ଅକ୍ଟୋବର ୪ ତାରିଖ)'ସମାଜ'ର ପ୍ରସାରରେ ଯେ ବହୁଳ ଭାବରେ ଜଡିତ ହେଲେ, ରାଧାନାଥ ରଥ, ସେ ମଧ୍ୟ ଚାକିରୀ ଛାଡି ସତ୍ୟବାଦୀରେ ସତ୍ୟବାଦୀ ପ୍ରେସର

Digitized by srujanika@gmail.com

କର୍ମଭାର ଗ୍ରହଣ କଲେ ୧୯୧୯ ଅକ୍ଟୋବର ମାସରେ । (ଘଟଣାକ୍ରମେ ଏସବୁ ଲେଖା ମୁଁ ଆରମ୍ଭ କରିଛି ୧୯୭୮ ଅକ୍ଟୋବର ଏଗାର ତାରିଖ ଦଶହରା ଦିନ ।)

ନୀଳକଣ୍ଠ ବାବୁ ଯେଉଁଦିନ ପ୍ରଥମ ଆସିଲେ, ସ୍କୁଲରେ ଭାରି ଚହଳ । ଦେହରେ ପ୍ୟାଣ୍ଟ, କୋଟ, ମୁଣ୍ଡରେ ସୁନେଲି ଧଡି ଚାଦରର ପଗଡି, ମୁହଁରେ ଚିକ୍କଣିଆ ନିଶ । ଏ ତିନିକଥା ନୂଆ ସମସ୍ତଙ୍କୁ । ସବୁଠାରୁ ବେଶି ପଢ଼ି, ପଢ଼ାଇବା ଆରମ୍ଭ ସବୁଠାରୁ ତଳ ଶ୍ରେଣୀରେ, ଆମେ ସପ୍ତମ ବି କ୍ଲାସରେ । ସମସ୍ତଙ୍କୁ ଭେଲିକି ଲାଗିଲା, ଯେତେବେଳେ ସେ ଉପସ୍ଥାନ ଖାତା ଖୋଲି, ପିଲାଙ୍କ ନା ଡାକି, ଉପସ୍ଥାନ ପକାଇବା ପାଇଁ ପକେଟରୁ କଲମ କାଢ଼ିଲେ । ଲେଖିଲା ବେଳକୁ ଆପେ ଆପେ କାଳି ଆସିଲା । ଏବକୁ ପିଲା ଜନ୍ମ ହେଲାବେଳକୁ ସରସ୍ୱତୀ ତା ହାତରେ ଫାଉଣ୍ଟେନ୍ ପେନ ବା ବଲପଏଣ୍ଟ ଧରାଇ ଦେଉଛନ୍ତି । ସେତେବେଳେ ମଲାବେଳକୁ ସୁଦ୍ଧା କେହି ତାହା ଦେଖୁନଥିଲେ ବା ଜାଣୁନଥିଲେ । ନୀଳକଣ୍ଠ ବାବୁଙ୍କ ପୋଷାକ ଓ କଲମକୁ ବଳିଗଲା ତାଙ୍କ ପଢ଼ାଇବା ଢ଼ଙ୍ଗ । ସେ ଇଂରେଜୀ ପଢ଼ାଇଲେ । ଇଂରାଜୀକୁ ଇଂରାଜୀରେ ପଢ଼ାଇବାକୁ ହେବ । ତା ପୂର୍ବରୁ ଆମେ ବୁଝୁଥିଲୁ ଓଡିଆରେ ଇଂରେଜୀ ଶବ୍ଦର ଅର୍ଥ । ନୂଆ ମାଷ୍ଟ୍ରେ ଆରମ୍ଭ କଲେ Here ଓ There ବୁଝାଇବାକୁ । ବ୍ଲାକ ବୋର୍ଡ ପାଖରୁ ଆମ ପାଖକୁ ଆସି କହିଲେ, I am here ; ଆମ ପାଖରୁ ବ୍ଲାକ ବୋର୍ଡ ପାଖକୁ ଯାଇ କହନ୍ତି you are there.ଏହିପରି କେତେଥର ପରେ, ନାନା ପ୍ରକାରେ ଓ ନାନା ରୂପରେ ଆମକୁ ସେହି ଦୁଇ ଶବ୍ଦର ଅର୍ଥ ଓ ପ୍ରଭେଦ ବୁଝାଇବାରେ କୌତୁକ ଓ ହସରେ କ୍ଲାସ ପୂରି ଉଠିଲା । ଖେଳଛୁଟି ସମୟରେ ସମସ୍ତେ ଆଲୋଚନା କଲେ, ତାଙ୍କ ପୋଷାକ, ପଗଡି, କଲମ ଓ ପଢ଼ାର କୌଶଳ । ପ୍ୟାଣ୍ଟ ଆମେ ଦେଖିନଥିଲୁ । ମୁଣ୍ଡରେ ଠେକା ଦେଖିଥିଲୁ । କିନ୍ତୁ ଚକଚକିଆ ପଗଡି ବେକପାଖରେ କାନି ଓହଳି ବନ୍ଧାହେବା ବିଚିତ୍ର । ନୀଳକଣ୍ଠ ବାବୁ ଆମ କ୍ଲାସ ମାଷ୍ଟର ହେଲେ, ସବୁଦିନ ପ୍ରଥମ ପିରିଅଡ ଇଂରେଜୀ ଶିଖାଇଲେ । ଗତ ଦିନର ପଢ଼ା ମନେରଖି ନୂଆ ବୁଝିବାକୁ ପିଲାଙ୍କର ଆଗ୍ରହ କହିଲେ ନ ସରେ । ମାସକୁ ତିରଶି ଟଙ୍କାରେ ଏମ୍.ଏ ପାଶବାଲା ମାଷ୍ଟ୍ରହେବା ଚାରିପଟ ଗ୍ରାମ ମାନଙ୍କରେ ଏକାଦିନେ ଚହଳ ପକାଇ ଦେଲା । ଗୋପବନ୍ଧୁଙ୍କର କୁହୁକ କାଟୁକଲା । ଶିକ୍ଷାବିମୁଖ ଗ୍ରାମାଞ୍ଚଳରେ ପିଲାଙ୍କୁ ସ୍କୁଲକୁ ପଠାଇବା ପାଇଁ କ୍ରମଶଃ ଆଗ୍ରହ ସୃଷ୍ଟି ହେଲା ।

ନୀଳକଣ୍ଠ ବାବୁଙ୍କ ପରେ ଆସିଲେ ହରିବାବୁ-ହରିହର ଦାଶ । କଟକରେ ଏଫ୍, ଏ (ଏବର ଆଇ.ଏ) ପାଶ୍ କରି ପ୍ୟାରୀମୋହନ ଏକାଡେମୀ ସ୍କୁଲରେ

Digitized by srujanika@gmail.com

ଶିକ୍ଷକତା କରୁଥିଲେ । ଗଣିତରେ ବ୍ୟୁତ୍ପତି, ଛାତ୍ର ବାତ୍ସଲ୍ୟ ଯୋଗୁ ସେଠାରେ ଅତି ପ୍ରିୟ ଥିଲେ । ସେ ମଧ ଗୋପବନ୍ଧୁଙ୍କ ପ୍ରେରଣାରେ ଜନସେବା ସଙ୍କଳ୍ପରେ ଆବଦ୍ଧ ଥିଲେ । ବେଶି ଦରମାର ଚାକିରୀ ଓ ସହର ସୁବିଧା ଛାଡି ଆସିଲେ ସତ୍ୟବାଦୀ ଶିକ୍ଷାୟତନକୁ ମାସିକ କୋଡିଏ ଟଙ୍କା ଭତ୍ତାରେ । ନୀଳକଣ୍ଠ ବାବୁଙ୍କର ଘରର ଅବସ୍ଥା ଗାଁକୁ ଚାହିଁ ଟିକିଏ ସ୍ୱଚ୍ଛଳ ଥିଲା । ତାଙ୍କ ପିତା ଆନନ୍ଦ ଦାଶ ଗ୍ରାମର ମୁରବୀ ଶ୍ରେଣୀର । ଆଶା କରିଥିଲେ, ଏକମାତ୍ର ପୁତ୍ର ଉଚ୍ଚଶିକ୍ଷା ପରେ ଉଚ୍ଚସ୍ଥାନ ଅଧିକାର କରିବ । ଗତି ଧରିଲା ଭିନ୍ନ ପ୍ରକାର । ସେଥିରେ ସେ ବିଶ୍ରବ୍ଧ ହେଲେ ନାହିଁ । ବୋଧହୁଏ ଭବିଷ୍ୟତର ଉଜ୍ଜଳ ତାରକା ପଣ୍ଡିତ ନୀଳକଣ୍ଠ ତାଙ୍କର ଦୃଷ୍ଟିପଥାରୁଢ଼ ହୋଇଥିଲେ । ହରିବାବୁ ସେହି ଗ୍ରାମ ଶ୍ରୀରାମଚନ୍ଦ୍ରପୁରର ଏକ ସଂସ୍କୃତ ପଣ୍ଡିତ ବ୍ରହ୍ମା ଉପାଧିଧାରୀ ବଂଶର । ଯୁବକ ଅବସ୍ଥାରୁ ବିପତ୍ନୀକ । ଗୌର କାନ୍ତି ଭୁଜୁଦେହୀ । ସେ ମଧ ନିଶଯୁଗଳ ଶୋଭିତ । ଶାସନୀ ବ୍ରାହ୍ମଣ ତିଥି ନକ୍ଷତ୍ର ଅନୁଯାୟୀ କ୍ଷୌର ହୁଅନ୍ତି । ନିଶ ଦାଢ଼ୀ ରଖାଯାଇପାରେ କିନ୍ତୁ ସେଥିରୁ ଗୋଟିଏ ଅଂଶ ବାଦ୍‌ଦେଇ ଅପରଟିକୁ ଧାରଣ କରିବା ନିଷେଧ । ସଂସ୍କାରକ ଗୋଷ୍ଠୀଙ୍କର ବୋଧହୁଏ ଦୃଶ୍ୟମାନ ନିଶରୁ ସଂସ୍କାର ପ୍ରଚାର ଆରମ୍ଭ କରିବାର ଥିଲା । ବ୍ରାହ୍ମଣ ନିଶ ରଖିବାର ଦୃଢ଼ ପ୍ରତିବାଦ ଉଠିବାରୁ ନୀଳକଣ୍ଠ ବାବୁ 'ମୋ ନିଶ' ବୋଲି ପ୍ରବନ୍ଧ ଲେଖିଲେ 'ଉତ୍କଳ ସାହିତ୍ୟ' ପତ୍ରିକାରେ । ସବୁ ଦ୍ୱନ୍ଦ୍ୱ ବେଳକୁ ନୀଳକଣ୍ଠବାବୁ ଆଗଭର, କାନ୍ଧକୁ କାନ୍ଧ ମିଶାଇବାକୁ ହରିବାବୁ ସର୍ବଦା ତତ୍ପର । ଜଣେ ବାକ୍‌ପ୍ରିୟ ଜ୍ଞାନଅଭିମାନୀ, ଅପର ସ୍ନେହଶୀଳ ସ୍ମିତଭାଷୀ । ହରିବାବୁଙ୍କର ସାଧାସିଧା ଧୋତି କାମିଜପିନ୍ଧା । ସେ ପଢ଼ାଇଲେ, ଓପର କ୍ଲାସରେ ଗଣିତ, ସ୍ୱାସ୍ଥ୍ୟରକ୍ଷା । କେହି ପରିଦର୍ଶକ ସ୍କୁଲକୁ ଆସିବାକୁ ଥିଲେ, ହରିବାବୁ ବାହାରନ୍ତି ପ୍ୟାଣ୍ଟ କୋଟ୍ ପିନ୍ଧି, ମୁଣ୍ଡରେ ସବୁଜ ରଙ୍ଗର ସୋଲ ପଗଡି । ସେ ଯେ ଭବିଷ୍ୟତର ସର୍ବୋଦୟ ନେତା, ପଦଯାତ୍ରୀ, ଅଜାତଶତ୍ରୁ ନିରହଙ୍କାରୀ ସର୍ବଜନପୂଜିତ ଆଚାର୍ଯ୍ୟ ମହାଶୟ ହେବେ କିଏ ଜାଣିଥିଲା ।

ତାଙ୍କ ପଛକୁ ଯେ ଆସିଲେ (୧୯୧୩ ମେ ମାସ ୧ ତାରିଖ) ସେ ଚମକ ସୃଷ୍ଟିକଲେ ସ୍କୁଲରେ ପାଦ ପକାଇଲାବେଳୁ । ହସିଲେ ପଚାଶ ହାତକୁ ପ୍ରତିଧ୍ୱନି ବାଜେ । ଗୋରା ଦକ୍‌ଦକ୍ ଚେହେରା, ଅନ୍ଧାରରେ ବାରିହେବ । ଲୁଗା, କାମିଜ ଧୋବ ଫର୍ ଫର୍ । ମୁହଁରେ ସୁଦୃଶ୍ୟ ନିଶ, ମୁଣ୍ଡରେ ସଯତ୍ନେ ଅଯତ୍ନ କେଶରାଶି । ସେ ମଧ ଏମ୍.ଏ.ପାଶ୍ । ବିଲାତ ଯିବା ବୃତ୍ତି ଛାଡି, ଆସିଲେ ସଙ୍କଳ୍ପ ପୂରଣରେ ।

Digitized by srujanika@gmail.com

ଗୋଦାବରୀଶ ମିଶ୍ର । କହିବା, ହସିବା ଚାଲିବାରେ ଅନ୍ୟମାନଙ୍କଠାରୁ ପୃଥକ୍ । ବୟସରେ କନିଷ୍ଠ ଥିବାରୁ, ନୀଳକଣ୍ଠବାବୁ, ହରିବାବୁ ପାଟି କରି ଗୋଦାବରୀଶ ଡାକିବାର ଆମେ ଶୁଣୁ । ସେ ଆସିଲାବେଳକୁ ଗଛମୂଳେ କ୍ଲାସ ଆରମ୍ଭ ହୋଇ ସାରିଥାଏ । ନୀଳକଣ୍ଠବାବୁ ହୋଇଥାଆନ୍ତି ହେଡମାଷ୍ଟର । ଆମ କ୍ଲାସରେ (ବୋଧହୁଏ ସେତେବେଳକୁ ଷଷ୍ଠ ଶ୍ରେଣୀ) ଇଂରାଜୀ ପଢ଼ାଇବାକୁ ଆସିବେ ଗୋଦାବରୀଶବାବୁ । ଗଛମୂଳେ ଅପେକ୍ଷା କରିଥାଉ ଖଜୁରୀ ପଟିଉପରେ । ଗଛ ଗଣ୍ଡିରେ ଓହଳି ଥାଏ ବ୍ଲାକ ବୋର୍ଡ । ମାଷ୍ଟରଙ୍କ ପାଇଁ ଖଣ୍ଡିଏ କାଠ ଟୁଲ । ଗୋଦାବରୀଶବାବୁ ଆସିଲେ, ହାତରେ ଚକ୍‌ଖଡି ଧରି । ପାଦରେ କଞ୍ଚା ଚଟି । ଇଂରାଜୀ ପଢ଼ାଇବେ କଅଣ, ପିଲାଙ୍କ ଉଚ୍ଚାରଣରେ ବହୁ ତ୍ରୁଟି । ଏ,ବି,ସି,ଡି, ଇ ପର୍ଯ୍ୟନ୍ତ ସମସ୍ତେ ଉତୁରିଗଲେ ପରୀକ୍ଷାରେ । ଏଫ୍ ଓ ଭିର ପାର୍ଥକ୍ୟ ସେ ବହୁଥର ନିଜର ଓଷ୍ଠ ଚାଳନାରେ ଦେଖାଇବା ପରେ ପିଲାଙ୍କ ଅଭ୍ୟାସ ଆରମ୍ଭ କଲେ ମୋ ଉପରେ । ତଳ ଓଠକୁ ଉପର ଦାନ୍ତ ତଳକୁ ନେଲେ, 'ଭି' ଆଉ ତଳ ଓଠକୁ ଉପର ଓଠ ପାଖକୁ ନେଲେ 'ଏଫ୍' ଯେ ଏତେ ସହଜରେ ଉଚ୍ଚାରିତ ହୋଇପାରେ ତାହା ଅଳ୍ପ ସମୟ ମଧ୍ୟରେ ବୁଝିବା ସମ୍ଭବ ହୋଇଗଲା । ଏବେ ସେଦିନ କଥା ମନେ ପଡେ ଆଉ ଯେଉଁ ଅକ୍ଷର ଉଚ୍ଚାରଣରେ ଦୋଷ ଥାଉ, 'ଏଫ୍' ଓ 'ଭି' ର ତାରତମ୍ୟ ଅଭୁଲା ରହିଛି । ଶିକ୍ଷାରେ ଅଧିକ ତାଲିମ ନେବା ପାଇଁ ସେ ପରେ ବି.ଟି.ପାଶ୍ କଲେ । କଟକ କଲେଜିଏଟ୍ ସ୍କୁଲ ପ୍ରଭୃତିରେ ଇଂରାଜୀ ଶିକ୍ଷାଦାନ ପ୍ରଣାଳୀ ପ୍ରଦର୍ଶନ କରାଇବା ପାଇଁ ସ୍କୁଲ ଇନସ୍‌ପେକ୍ଟର ତାଙ୍କୁ ଥରେ ଅନୁରୋଧ କରି ନେଇଥିଲେ । ସମ ଯୋଗ୍ୟତା ସମ୍ପନ୍ନ ଏକାଧିକ ବ୍ୟକ୍ତି ସ୍କୁଲରେ ଥିବାରୁ, ଗୋପବନ୍ଧୁ ବାବୁଙ୍କ ନିର୍ଦ୍ଦେଶ ବା ପରାମର୍ଶରେ, କିଛି କାଳ ନୀଳକଣ୍ଠବାବୁ, ତାପରେ ଗୋଦାବରୀଶ ବାବୁ ଓ ଶେଷକୁ କୃପାସିନ୍ଧୁ ବାବୁ ହେଡମାଷ୍ଟର କାର୍ଯ୍ୟ ତୁଲାଇଥିଲେ ।

ଗଛମୂଳେ ସ୍କୁଲ ଚାଲିଥାଏ । ଥରେ ଇଂରେଜ ଇନ୍ସପେକ୍ଟର ଆସିଲେ । ସେ ଦିନ ଗୋଦାବରୀଶବାବୁଙ୍କୁ ଚିହ୍ନିବା କଷ୍ଟ । ପୂରା ସାହେବୀ ପୋଷାକ, ବେକରେ ନେକ୍‌ଟାଇ, ମୁଣ୍ଡରେ ଫେଲଟ୍ ହ୍ୟାଟ୍ । ଅନେକ ମନେ କଲୁ, ଇନ୍‌ସପେକ୍ଟର ସାହେବଙ୍କ ସାଙ୍ଗରେ ଅନ୍ୟ ଜଣେ ସାହେବ କର୍ମଚାରୀ । ନୀଳକଣ୍ଠବାବୁ, ହରିବାବୁ ପ୍ୟାଣ୍ଟ ସାଙ୍ଗକୁ ବେକଚିପା କୋଟ୍ ପିନ୍ଧନ୍ତି । ନେକ୍‌ଟାଇ ପିନ୍ଧା ଆମେ ଦେଖି ନ ଥିଲୁ, ପିଲାଙ୍କ ଭିତରେ ଚର୍ଚ୍ଚା ହେଲା, ଫାସଗଣ୍ଠି ଥାଇ ବେକକୁ ଆସିଲା କିପରି ନେକ୍‌ଟାଇ ।

Digitized by srujanika@gmail.com

ଗୋଦାବରୀଶ ବାବୁ ସେତେବେଳେ ରହୁଥିଲେ ମନ୍ଦିର ବଜାରର ଗୋଟିଏ କୋଠରୀରେ । ପରେ ତାଙ୍କ ପରିବାର ଆସିବାରୁ ବଜାର ପାଖରେ ଗୋଟିଏ ମାଟି ଚାଳଘରେ ରହିଲେ । ଦାଣ୍ଡ ଘରଟି ପ୍ରଶସ୍ତ । କେତେଥର ମୁଁ ଯାଇଛି ସେଠାକୁ । ଖଣ୍ଡିଏ ଛୋଟ ଟେବୁଲ, ଗୋଟିଏ କାଠ ଚୌକି, ଟୁଲଟିଏ ଥାଏ । ତା' ଛଡା ପଡିଥାଏ ଖଣ୍ଡେ ସପ ମସିଣା । ଆମେ ବସୁ ସପରେ, ସେ ମଧ୍ୟ । ଚାରିଆଡ ସଫା ସୁତରା । ଆସବାସ ପତ୍ର ଅତି ଅଳ୍ପ ମାତ୍ର ଘର ଭିତରେ ପଶିଲେ, ଭିନ୍ନ ବାରିହୁଏ । ସମସ୍ତଙ୍କର ତ ଦାଣ୍ଡଘର ପ୍ରାୟ ଥାଏ । କିନ୍ତୁ ଏ ଦାଣ୍ଡଘରେ କଅଣ ଥାଏ କେଜାଣି, ଦାଣ୍ଡ ଦୁଆର ମେଲା କଲାବେଳକୁ ଅଲକ୍ଷିତରେ ମନରେ ଲାଗେ କିଛି ଭିନ୍ନତା । ସେ ଦାଣ୍ଡ ଘରେ ମଝିରେ ଗୋଟିଏ କାଠଖୁଣ୍ଟ ଥିଲା । ଖୁଣ୍ଟକୁ ଲଗାଇ ଚୌକି, ଟେବୁଲ ଥାଇ ଘର ଦି'ଭାଗ ହେଲାପରି ଦିଶୁଥାଏ । ସେତେବେଳେ ଆମକୁ କେବଳ ଜଣାପଡୁଥାଏ, ଗୋଦାବରୀଶବାବୁଙ୍କ ଘର ଓ ଚଳଣି ଅନ୍ୟଠାରୁ ପୃଥକ । ସ୍କୁଲ ଚାଲିଥିଲାବେଳେ ଦିପହରକୁ ତାଙ୍କ ଘରୁ ଆସେ ତାଙ୍କ ପାଇଁ କିଛି ଜଳଖିଆ ଖାଇବା ପାଇଁ । ଜିନିଷ ଭିତରେ ଲିଆ, ଦୁଧ, ପାଚିଲା କଦଳୀ । ମାତ୍ର ତା ଆସେ ପରିପାଟୀରେ । ଆଉ କେଉଁ ମାଷ୍ଟରଙ୍କର ସେପରି ଖାଇବାକୁ ନ ଆସୁଥିବାରୁ, ସମସ୍ତଙ୍କୁ ନୂଆ ଆଉ ଆଶ୍ଚର୍ଯ୍ୟ ଲାଗୁଥାଏ ଏ ବ୍ୟବସ୍ଥା । ସେ ସ୍କୁଲକୁ ଆସିଲା ପରେ, ଛୁରିଅନା ବହୁଳ ସ୍ଥାନ ମଧ୍ୟରେ, ଖଣ୍ଡିଏ ଜାଗା ସଫା କରାହେଲା, ଟେନିସ୍ ଖେଳପାଇଁ । ପରେ ତାହା ପକ୍କା ଟେନିସ୍ କୋର୍ଟ ହେଲା । ତାର ଚାରିପଟେ ଭିନ୍ନ ଭିନ୍ନ କ୍ଲାସ । ଖେଳିବା ଆରମ୍ଭ କଲେ ଗୋଦାବରୀଶବାବୁ ଓ ଆଉ କେତେଜଣ ମାଷ୍ଟ୍ରେ । ମୋଟ ଉପରେ କହିବାକୁ ହେବ ଯେ, ଗୋଦାବରୀଶ ବାବୁଙ୍କର ଉପସ୍ଥିତିରେ ସତ୍ୟବାଦୀ ସ୍କୁଲର ବାହ୍ୟିକ ସରଳ ମଫସଲିଆ ଢ଼ଙ୍ଗରେ କିଛି ବିଲାତି ବା ସହରିଆ ମୋଡ ପଶିଲା ।

ଆଉ ଏକ କାରଣକୁ ତାଙ୍କର ଖ୍ୟାତି ବ୍ୟାପିଲା । ସେ ହିପ୍‌ନଟିଜିମ୍ ବା ମେସ୍‌ମେରିଜିମ୍ ଆରମ୍ଭ କରି ଚମକ ଲଗାଇଲେ । ଏ କୌଶଳ ଦେଖାଇବାକୁ ଥରେ ବନ ବିଦ୍ୟାଳୟ ଭିତରେ ଏକ ସଭା ବସିଥିଲା । ଗୋପବନ୍ଧୁ ବାବୁ ଥିଲେ; ପୁରୀରୁ ବହୁ ବିଶିଷ୍ଟ ଲୋକ ଆସିଥିଲେ, ଯଥା-ଏମାର ମଠ ମହନ୍ତ ମହାରାଜ (ମୋଟା ସୋଟା ବିପୁଳ କାୟ ହୋଇଥିବାରୁ ବାରି ହୋଇ ପଡୁଥାନ୍ତି ।) ଜଗବନ୍ଧୁ ସିଂହ, ବନମାଳୀ ଦାଶ, ଦିବ୍ୟସିଂହ ପାଣିଗ୍ରାହୀ, ଆର୍ତ୍ତତ୍ରାଣ ମିଶ୍ର ପ୍ରଭୃତି ସେ ସମସ୍ତେ ସେତେବେଳର ପ୍ରଖ୍ୟାତନାମା ଓକିଲ । ମେସ୍‌ମେରିଜିମ୍‌ର ପରୀକ୍ଷା ହେଉଥାଏ;

Digitized by srujanika@gmail.com

୩/୪ ଜଣ ଛାତ୍ରଙ୍କ ଉପରେ । ତାଙ୍କ ଭିତରେ ମୁଁ ଜଣେ । ବେଶି ଭାଗ ପରିକ୍ଷାର ତୋଡ ପଡେ ମୋ ଉପରେ । ସେ ଦିନ ପରେ ଶୁଣିଲି, ମେସ୍‌ମେରିଜିମ୍ ଅବସ୍ଥାରେ ଗୋଦାବରୀଶବାବୁଙ୍କ ସୂଚନା ଅନୁଯାୟୀ ଗୋପବନ୍ଧୁ ବାବୁଙ୍କ ଦାଢ଼ୀକୁ ମୁଁ ଆମ୍ବଡାଳ ଭାବି ଟାଣିଲା ବେଳେ ଦର୍ଶକଙ୍କ ଭିତରେ ହାସ୍ୟରୋଳ ଉଠିଥିଲା । ଏପରି କେତେ କ'ଣ ଦେଖାହେଲା । ସେଥିରେ ଆମର ଛଳନା ଯେ କିଛି ନ ଥିଲା, ତା ନୁହେଁ କିନ୍ତୁ ସ୍କୁଲର ବଢ଼ତି ପଣରେ ତାହା ସହାୟକ ହୋଇଥିଲା ।

କିଛି କାଳ ଗୋଦାବରୀଶ ବାବୁ ଏକ ପ୍ରକାର ସ୍କୁଲର Show Piece ଥିଲେ । ବିହାର ଓଡିଶାର ଶିକ୍ଷା ବିଭାଗର ଡାଇରେକ୍ଟର ଜେନିଙ୍ଗସ୍ ସାହେବ ସ୍କୁଲ ପରିଦର୍ଶନରେ ଆସିଲାବେଳେ ଗୋଦାବରୀଶବାବୁ ତାଙ୍କ ଆଗରେ, ଶିକ୍ଷକ ମଣ୍ଡଳୀ ଭିତରେ, ଆଗନ୍ତୁକ ଅତିଥିମାନଙ୍କ ଉପସ୍ଥିତିରେ ପୂରା ସାହେବୀ ପୋଷାକ ପିନ୍ଧି ସେକ୍‌ସପିଅରଙ୍କର ହାମ୍‌ଲେଟ୍‌ର କେତେକ ଅଂଶ ନାଟକୀୟ ରୀତିରେ ଆବୃତ୍ତି କରି ସମସ୍ତଙ୍କୁ ଚମକୃତ କରିଥିଲେ । ଇଂରେଜୀ ଉଚ୍ଚାରଣ ଓ କହିବା ଭଙ୍ଗୀରେ ତାଙ୍କର ଅସାଧାରଣ ଦକ୍ଷତା । ତାଙ୍କର ଗୌରବ ଅପେକ୍ଷା ସ୍କୁଲର ଗୌରବ ଏକ କାରଣ ଥିଲା, ଯେଉଁଥିପାଇଁ ଦୂର ଦୂରାନ୍ତରୁ ପିତାମାନେ ନିଜ ପିଲାକୁ ବନ ବିଦ୍ୟାଳୟକୁ ପଠାଉଥିଲେ ।

ତାପରେ ଆସିଲେ (୧୯୧୪ ମସିହାରେ) କୃପାସିନ୍ଧୁ ବାବୁ । ସାକ୍ଷୀ-ଗୋପାଳ ପାଖ ବୀରପ୍ରତାପପୁର ଗ୍ରାମର କୃପାସିନ୍ଧୁ ମିଶ୍ର । ସେ ମଧ୍ୟ କଲିକତାରୁ ଏମ୍.ଏ.ପାଶ୍ କରି ସିଧା ଆସିଲେ ଦାରିଦ୍ର୍ୟର କଷାଘାତ ବରଣ କରି ନାମ ମାତ୍ର ବେତନରେ ସ୍କୁଲରେ ଶିକ୍ଷକତା କରିବା ପାଇଁ । ପ୍ରଥମରୁ ନିଶଦାଢ଼ୀ ସୁଶୋଭିତ ଥିଲା ତାଙ୍କ ମୁଖମଣ୍ଡଳ । ଲମ୍ବା ଚେହେରା । ଗମ୍ଭୀର ପ୍ରକୃତି । ଚାଲିଲାବେଳେ ମୁହଁ ତଳକୁ । ଲୁଗା, କୋଟ୍ ସାଙ୍ଗକୁ ଗୋଡରେ ମୋଜା, ପଟି, ବୁଟ୍ ଜୋତା, ବାତଜ୍ୱରରେ ଗୋଡ଼ ଫୁଲୁଥିବାରୁ ତାହା ସବୁବେଳେ ବ୍ୟବହାର କରୁଥିଲେ । ସେଥିରେ ସାଇକେଲଚାଳନାରେ କମି ନଥିଲା । ଧୀର, ସ୍ଥିର, ଅଳ୍ପଭାଷୀ, ନୀଳକଣ୍ଠବାବୁ, ଗୋଦାବରୀଶବାବୁଙ୍କ ଠାରୁ ଭିନ୍ନ କାଟର । ପଢ଼ା ଓ ପଢ଼ାଇବା ଛଡା ଆଉ କେଉଁଥିରେ ଆଗ୍ରହୀ ସେ ନଥିଲେ । ସେ ଥିଲେ ତିନିଭାଇ ହରିହର, କୃଷ୍ଣଚନ୍ଦ୍ର । ଜନ୍ମ ଶ୍ରୀରାମଚନ୍ଦ୍ରପୁରରେ, ସଙ୍ଗ୍ୟା ଦାଶ । ନୀଳକଣ୍ଠବାବୁ, ହରିବାବୁଙ୍କ ଭଗ୍ନିକ । କୃପାସିନ୍ଧୁ ପୋଷ୍ୟପୁତ୍ର ହୋଇଥିବାରୁ ମିଶ୍ର ବୋଲାଇଲେ । ଥରେ ସାକ୍ଷୀଗୋପାଳ ମନ୍ଦିର ପାଖ

Digitized by srujanika@gmail.com

ବୋଲବେଦୀ ସାମନାରେ ସ୍କୁଲ ତରଫରୁ ହରିଶ୍ଚନ୍ଦ୍ର ନାଟକ ଅଭିନୀତ ହୋଇଥିଲା । କୃପାସିନ୍ଧୁ ବାବୁ ହୋଇଥିଲେ ବିଶ୍ୱାମିତ୍ର, ରୋଷ ଜରଜରରେ ଶୈବ୍ୟାକୁ ଅଭିଶାପ ଦେବାର ଚେହେରା ଏବେ ବି ମୋତେ ଦିଶିଯାଉଛି । ତାଙ୍କ ବଡଭାଇ ହରିହର, ଯଦିଓ ଶିକ୍ଷକ ନୁହନ୍ତି, ସ୍କୁଲ ସହିତ ଅସମ୍ପର୍କିତ ନ ଥିଲେ । ସେ ହୋଇଥିଲେ ହରିଶ୍ଚନ୍ଦ୍ର । ତାଙ୍କ ଅଭିନୟ ଆମକୁ ସବୁଠୁ ଭଲ ଲାଗିଲା । ଶୈବ୍ୟା ହୋଇଥିଲେ ସ୍କୁଲ ହେଡ କ୍ଲର୍କ ରଘୁବାବୁ (ରଘୁନାଥ ମିଶ୍ରେ, ସମସରପୁରର)।

ଆମ ଗାଁର ଦୁଇଜଣ ଶିକ୍ଷକମଣ୍ଡଳୀରେ ଥାଆନ୍ତି । ରାମଚନ୍ଦ୍ର ରଥ, ଗୋପୀନାଥ ମିଶ୍ର । ଉଭୟଙ୍କର ମାଟ୍ରିକ୍ ପର୍ଯ୍ୟନ୍ତ ପଢ଼ା । ରାମବାବୁ ବାଜପେୟୀ ସାମନ୍ତ ବଂଶର । ତାଙ୍କ ବଡଭାଇ ଓ ନନା ଅନ୍ୟ ରକ୍ଷଣଶୀଳମାନଙ୍କ ପରି ସତ୍ୟବାଦୀ ସ୍କୁଲ ଆଦର୍ଶର ବିରୋଧୀ ଥିଲେ, କିନ୍ତୁ ଅଳ୍ପ ହେଲେ ମଧ୍ୟ, କିଛି ଉପାର୍ଜନ ରାମବାବୁ ଘରକୁ ଆଣୁଥିବାରୁ କ୍ରୁଦ୍ଧ ବିରୋଧୀ ଦଳରେ ଚିହ୍ନାପଡୁ ନଥିଲେ । ତାଙ୍କର ଆର୍ଥିକ ଅବସ୍ଥା ଅତି ଅସ୍ୱଚ୍ଛଳ ଥାଏ । ବଡଭାଇ ବଣାଇ ରାଜାଙ୍କର ସାମୟିକ ପୁରୋହିତ କାମ କରୁଥିଲେ । ରାମବାବୁଙ୍କ ସାନଭାଇ ବନମାଳୀ ମୋର ସଙ୍ଗୀ ଓ ସହପାଠୀ । ପଣ୍ଡିତ ନୀଳକଣ୍ଠ ଦାଶ ଆତ୍ମ ଜୀବନୀରେ ରାମବାବୁଙ୍କର ପ୍ରଶଂସା କରି ଲେଖିଛନ୍ତି, ଅଭାବ ଓ ଆଦର୍ଶବାଦ ଏ ଦୁଇକୁ ସେ ସହଚର କରିଥିଲେ । କିନ୍ତୁ ସ୍କୁଲ ଭାଙ୍ଗିଗଲା ପରେ ସତ୍ୟବାଦୀର ନଡିଆ ବ୍ୟବସାୟୀ ଜଣେ ଧନୀବ୍ୟକ୍ତିଙ୍କ ହିସାବ ପତ୍ର ଲେଖିବା, କଚେରୀ କାମ ବୁଝିବାବେଳେ କିପରି ଅସଙ୍ଗତ କଥା ତାଙ୍କୁ କରିବାକୁ ପଡୁଥିଲା, ମୁଁ ଦେଖିଛି । ପେଟ ପୋଷିବାକୁ ସେ ଅନନ୍ୟୋପାୟ ହୋଇଥିଲେ । ଅସହଯୋଗ ଆନ୍ଦୋଳନର ଏକ ଆଦର୍ଶବାଦ ଉପରେ ସତ୍ୟବାଦୀ ସ୍କୁଲ ଭାଙ୍ଗି ଦିଆଗଲା । କିନ୍ତୁ ରାମବାବୁଙ୍କ ପରି କେତେ ଲୋକଙ୍କର ପରିସ୍ଥିତି ତାଡନାରେ ଆଦର୍ଶବାଦ ଭୂମିସାତ ହୋଇଗଲା । ପଢ଼ାସାରି ମୁଁ ବୃତ୍ତି ଅବଲମ୍ବନ କଲାପରେ ରାମବାବୁଙ୍କୁ ଅତି ଅକିଞ୍ଚିତକର ଆର୍ଥିକ ସାହାଯ୍ୟ ଦେଉଥିଲାବେଳେ ତାଙ୍କର ସଂକୋଚରେ ମୁଁ ମ୍ରିୟମାଣ ହେଉଥିଲି । ଅସାକ୍ଷାତରେ ଦେବାନେବାର ବ୍ୟବସ୍ଥା କରି ଦୁହେଁ ନିସ୍ତାର ପାଇଲୁ । ମୋର ଦୁଃଖ ଓ ଦୁର୍ଭାଗ୍ୟ ଯେ ବେଶିକାଳ ରାମବାବୁ ବଞ୍ଚିଲେ ନାହିଁ । ଅଭାବ ଓ ଅବଶୋଷରେ ଗୋଟିଏ ଅମୂଲ୍ୟ ଜୀବନ ଲୀନ ହୋଇଗଲା । ତାଙ୍କ ସ୍ମୃତିରେ ଗାଁରେ ଗୋଟିଏ ଲାଇବ୍ରେରୀ କରାହୋଇଛି, ସମସ୍ତଙ୍କୁ ମନେ ପକାଇ ଦେବାପାଇଁ ଯେ ଜଣେ ଇଚ୍ଛା କଲେ ଦରିଦ୍ର ଥାଇ ମଧ୍ୟ ଦେଶ ସେବାରେ ସନ୍ତୋଷ ଲାଭ କରିପାରେ ।

Digitized by srujanika@gmail.com

ଆମ ଗାଁର ଅନ୍ୟ ମାଷ୍ଟ୍ରେ ଗୋପୀବାବୁ ସତ୍ୟବାଦୀ ମାଇନର ସ୍କୁଲ ହେଲାବେଳୁ ହେଡମାଷ୍ଟର ହୋଇଥିଲେ । ଚାକିରୀ ପାଇଁ ମାଷ୍ଟ୍ର ହୋଇଥିଲେ । ଅଳ୍ପକାଳ ପରେ, ବୋଧହୁଏ ଅସୁସ୍ଥ ହେବାରୁ, ଛାଡିଦେଲେ । ପ୍ରଥମାବସ୍ଥାରେ ତାଙ୍କର କାର୍ଯ୍ୟ ଉଲ୍ଲେଖଯୋଗ୍ୟ ଥିଲା କିନ୍ତୁ ଉତ୍ସାହପ୍ରଦ ନ ଥିଲା । ସେତେବେଳେ ଅନ୍ୟ କୃତବିଦ୍ୟମାନଙ୍କ ମଧ୍ୟରୁ କେହି ସ୍କୁଲରେ ଯୋଗଦେଇ ନଥିଲେ ।

ଆଉ ଦୁଇଜଣ ଶିକ୍ଷକ କାନ୍ଥ ଭିତରେ ଅଦୃଶ୍ୟ ଖୁଣ୍ଟପରି ଥିଲେ । ବାସୁବାବୁ (ବାସୁଦେବ ମହାପାତ୍ର) ଓ ହେଡ୍ ପଣ୍ଡିତେ (ମଧୁସୂଦନ ମିଶ୍ରେ) । ସତ୍ୟବାଦୀ ସ୍କୁଲର ଆରମ୍ଭ ଶ୍ରୀରାମଚନ୍ଦ୍ରପୁରରେ ଥିବା ମଧ-ଭର୍ଣ୍ଣାକୁଲାର ସ୍କୁଲର ସ୍ଥାନାନ୍ତରରେ । ସେହି ଭର୍ଣ୍ଣାକୁଲାର ସ୍କୁଲରେ ମଧୁସୂଦନ ମିଶ୍ରେ ହେଡ୍ ପଣ୍ଡିତେ ଥିଲେ । ତାଙ୍କ ଘର ଶ୍ରୀରାମଚନ୍ଦ୍ରପୁରରେ । ମାନ୍ୟାସ୍ପଦ ବ୍ୟକ୍ତି । ଦୁଆତ, କାଳି, କଲମ ସଙ୍ଗେ ହେଡ୍ ପଣ୍ଡିତେ ଆସିଲେ ଶ୍ରୀରାମଚନ୍ଦ୍ରପୁରରୁ ସତ୍ୟବାଦୀକୁ । ସ୍କୁଲରେ ସମସ୍ତେ ମୂଳରୁ ତାଙ୍କୁ ଖାତିର କରୁଥିଲେ । ଇଂରାଜୀ ନ ଜାଣିଲେ କଅଣ ହେବ, ଇଂରେଜୀ ପଢ଼ାବାଲା ମାଷ୍ଟରମାନଙ୍କ ଉପରେ ସେ ମୁରବିଆନା କରୁଥିବାର ଦେଖାଯାଉଥିଲା । ପଢ଼ାଇବାକୁ ଆସନ୍ତି, ପଢ଼ାନ୍ତି । ସମାଜ ସଂସ୍କାର, ନିଶ ଆନ୍ଦୋଳନ, ପଂକ୍ତି ଭୋଜନ ପ୍ରଭୃତିରେ ନା ଥାଏ ତାଙ୍କର ଯୋଗ, ନା ସହାନୁଭୂତି । ପ୍ରଥମ ଅବସ୍ଥାରେ ସେ ନହେଲେ ସ୍କୁଲ ଚଳନ୍ତା ନାହିଁ । ସ୍କୁଲ ନ ହେଲେ ତାଙ୍କର ମଧ (ଜୀବିକା) ଚଳନ୍ତା ନାହିଁ—ଏହିପରି ଥୁଆ ଥୋଇ ସମ୍ବନ୍ଧରେ ତାଙ୍କ କାର୍ଯ୍ୟ ଚାଲୁଥାଏ । ବୟସ ଓ ସମ୍ମାନରେ ଆଞ୍ଚ ଯୋଗୁ ସେ ସ୍କୁଲ ଛାଡିଲେ ।

ବାସୁବାବୁ ପହିଲମାନ ପରି କୁସ୍ତି କସରତବାଲା । ହୁଇସିଲ ବଜାଇ, ଦଣ୍ଡ, ବଇଠକ କରାଇ ପିଲାଙ୍କୁ ନାକେଦମ୍ କରିଦିଅନ୍ତି । ଡବଲ ମାର୍ଚ୍ଚ କରାଇ ସ୍କୁଲଠାରୁ ଥାନା ପର୍ଯ୍ୟନ୍ତ ମାଇଲକ ଉପରେ ଦୌଡାଇ ଆଣନ୍ତି । ବଳ ବେଳ ତାଙ୍କର ଥାଏ ବହୁତ । ପିଲାଙ୍କ ଦମ୍ ଯେ କମ୍ ସେ କଥା ତାଙ୍କ ମନ ଧରେ ନାହିଁ । କ୍ଲାସ ପଢ଼ାଠାରୁ ଦେହର ପୀଡା ବଳିଯାଉଥିଲା । ମେସ୍ ତଦାରଖ, ପିଲାଏ ଖାଇଲାବେଳେ ଶୃଙ୍ଖଳାରକ୍ଷା, ବୋର୍ଡିଂଘର ଲିପାପୋଛା ଇତ୍ୟାଦି କାର୍ଯ୍ୟ ସେ ଦେଖାଶୁଣା କରୁଥିଲେ । ଏହାଛଡା, ସ୍କୁଲର କିଛି କାମ ପଡିଲେ ପୁରୀ ଯିବା କାମ ତାଙ୍କର । ନୀଳକଣ୍ଠବାବୁଙ୍କର ଏକ ପ୍ରକାର ଆଜ୍ଞାବହ ସେ ଥିଲେ । ତାଙ୍କର ଅକୁଣ୍ଠ ଚିତ୍ତରେ କାର୍ଯ୍ୟନିର୍ବାହ ସମସ୍ତଙ୍କ ଆଖିରେ ପଡୁଥିଲା । ପିଲାଙ୍କର ତାଙ୍କ ପ୍ରତି ଭୟ ଓ ଖାତିର ଥାଏ । ପରବର୍ତ୍ତୀ

Digitized by srujanika@gmail.com

କାଳରେ ତାଙ୍କର ଓଡିଆ ସାହିତ୍ୟ ଚର୍ଚ୍ଚା ଓ ରଚନା ଯୋଗୁ ସେ ପଣ୍ଡିତ ବାସୁଦେବ ମହାପାତ୍ର ରୂପେ ଯଶ ଅର୍ଜନ କଲେ ।

ବାଞ୍ଛାନିଧିବାବୁ (ମିଶ୍ର) ବାଙ୍କୀର ଲୋକ । ମାଟ୍ରିକ ପାଶ୍ କରିଥାନ୍ତି । ସ୍କୁଲ ଓପର କ୍ଲାସ ପିଲାଙ୍କ ବୟସୀ । ଡାହାଳିଆ, ଡେଙ୍ଗା, ଫିଟ୍‌ଫାଟ୍ । ମାଷ୍ଟରମାନଙ୍କ ମଧରେ ସର୍ବ କନିଷ୍ଠ । ପିଲାଙ୍କ ସାଙ୍ଗେ ମିଶନ୍ତି ଭଲ । ସେହି କେବଳ ହାଫ୍‌ପ୍ୟାଣ୍ଟ ପିନ୍ଧି ଫୁଟବଲ ଖେଳକୁ ବାହାରନ୍ତି । ସ୍କୁଲଠାରୁ ପ୍ରାୟ ମାଇଲେ ଦୂରରେ ରେଳଲାଇନ୍ ଆରପଟେ, ଗୋଟିଏ ଶ୍ମଶାନ ପାଖରେ ଖଣ୍ଡିଏ ଖୋଲା ପଡିଆରେ ଫୁଟ୍‌ବଲ୍ ଖେଳହୁଏ । ଓପର କ୍ଲାସ ପିଲାଏ ଯାଆନ୍ତି । ଆମେ ତଳ କ୍ଲାସ ପିଲା କାଁ ଭାଁ ଦେଖଣାହାରୀ ହେଉ । କିନ୍ତୁ, ବାଞ୍ଛାନିଧିବାବୁଙ୍କୁ ହାଫ୍‌ପ୍ୟାଣ୍ଟ ପିନ୍ଧି ସାଇକେଲଚଢ଼ି ହଷ୍ଟେଲର ଖେପମୁଣ୍ଡ ଫାଟକ ଘରୁ ବାହାରିବାକୁ କୌତୁକର ସହିତ ଅପେକ୍ଷା କରି ଚାହିଁଥାଉ । ବାଞ୍ଛାନିଧିବାବୁ ମଧ କାବ୍ୟତୀର୍ଥ ଥିଲେ, ସେ ସଂସ୍କୃତ ପଢ଼ାଉଥିଲେ । ପରେ ଆସିଲେ ପଣ୍ଡିତ ଭୁବନେଶ୍ୱର ମିଶ୍ରେ ସଂସ୍କୃତ ଶିକ୍ଷକ ହୋଇ । ବାଞ୍ଛାନିଧି ବାବୁଙ୍କ ପ୍ରତି ପିଲାଙ୍କର ଏତେ ଦୃଷ୍ଟି କାହିଁକି ଯାଉଥିଲା ? ଅନ୍ୟ କୌଣସି ମାଷ୍ଟରଙ୍କ ପାଖେ କେହି ସ୍ୱତଃସ୍ଫୂର୍ତ୍ତି ଆଦୌ ଦେଖାଇ ପାରିବାର ଅବକାଶ ନଥିଲା । ସ୍କୁଲ, ହଷ୍ଟେଲ, ମେସ୍, ବ୍ୟାୟାମଶାଳା, ସବୁଠାରେ ଥିଲା ଏକ ଭୟମିଶ୍ରିତ ଚାପା ଚାପା ଭାବ । ମନଖୋଲି ହସିବା, ସାଙ୍ଗପିଲାଙ୍କ ସଙ୍ଗେ କୌତୁକ କରିବାରେ କେବଳ ବାଞ୍ଛାନିଧି ବାବୁଙ୍କଠାରୁ ପ୍ରକାଶ ବା ଅପ୍ରକାଶ ଉତ୍ସାହ ମିଳୁଥିଲା । ସେ ବେଶିଦିନ ସତ୍ୟବାଦୀ ସ୍କୁଲରେ ଉଧେଇ ପାରିଲେ ନାହିଁ । ଛାଡି ଚାଲିଗଲେ । ଦୃଶ୍ୟମାନ କଠୋର ବାତାବରଣରୁ ଆଉ କେତେକ ମୁକୁଳିବାକୁ ହୁଏତ ଚାହିଁଥିଲେ, କିନ୍ତୁ ସୁବିଧା ବା ସାହସ ପାଉ ନଥିଲେ ।



Digitized by srujanika@gmail.com

# ବନ ବିଦ୍ୟାଳୟ

ସତ୍ୟବାଦୀ ସ୍କୁଲ ବନ ବିଦ୍ୟାଳୟ ନାମରେ ପରିଚିତ ଓ ପ୍ରସିଦ୍ଧ । କିନ୍ତୁ ପ୍ରଥମରୁ ତାହା ଗଛମୂଳରେ ବସୁ ନଥିଲା । ଆରମ୍ଭ ହୋଇଥିଲା ଏକ ଲମ୍ବା ଚାଳଘରେ, ୧୯୦୯ ଅଗଷ୍ଟ ୧୨ ତାରିଖରେ । ସତ୍ୟବାଦୀ ଅଞ୍ଚଳରେ ଇଂରେଜୀ ଶିକ୍ଷାର ଅୟମାରମ୍ଭ । ଚାରିଆଡେ ଘନ ବସତି, ବ୍ରାହ୍ମଣ୍ୟ କୌଳିନ୍ୟ ଓ ଦାରିଦ୍ର୍ୟ ନିପୀଡିତ ଷୋଳ ଶାସନ ବତିଶ କରବାଡ ଜାଣିଲେ ଯେ ତାଙ୍କ ପୁଅ, ପୁତୁରା, ଭଣଜା, ନାତିମାନେ ଇଂରେଜୀ ପଢ଼ିପାରିବେ । ନିମ୍ନ ପ୍ରାଇମେରୀ, ଉଚ୍ଚ ପ୍ରାଇମେରୀ ବିଦ୍ୟାଳୟ କେଉଁ କେଉଁ ଗାଁରେ ଥାଏ । ସେତିକିରେ ପିଲାଙ୍କର ପାଠପଢ଼ା ଶେଷ ହେଉଥିଲା । ଅତି ଅଳ୍ପ ଲୋକେ ପିଲାଙ୍କୁ ପୁରୀ ଜିଲ୍ଲାସ୍କୁଲକୁ ପଠାଇ ପାରୁଥିଲେ । ପ୍ରାୟ ନାହିଁ କହିଲେ ଚଳେ । ପୁରୀରେ ରହଣି ଓ ଚଳଣିର ଖରଚ ତୁଲାଇବା କ୍ୱଚିତ୍ ଲୋକଙ୍କର ସମ୍ବଳ ଭିତରେ ସମ୍ଭବ ଥିଲା । ସେଥିପାଇଁ ଗୋପବନ୍ଧୁ ସ୍ଥିର କରିଥିଲେ ଇଂରେଜୀ ପଢ଼ା ସ୍କୁଲଟିଏ ସତ୍ୟବାଦୀରେ କରିବାପାଇଁ । ତା'ହେଲେ ଗାଁରୁ ଖାଇ, ସ୍କୁଲକୁ ଯିବା ଆସିବା କରିପାରିବେ, ପାଖ ଗାଁ ବାଲା ପିଲାଏ । ଦୂର ଗାଁରୁ ଘରୁ ଚାଉଳ ଆଣି, ବୋର୍ଡିଂରେ ରହି ଅଳ୍ପ ଖର୍ଚ୍ଚରେ ଅନ୍ୟ ପିଲାଏ ଚଳିବେ । ହେଲା ମଧ ସେଇଆ ।

ପ୍ରଥମ ଦୁଇବର୍ଷ ଚାଲିଲା ହେଡ୍ ପଣ୍ଡିତ ମଧୁସୂଦନ ମିଶ୍ର ଓ ହେଡ୍ ମାଷ୍ଟର ଗୋପୀନାଥ ମିଶ୍ର ଓ ଅନ୍ୟ କେତେଜଣ ଶିକ୍ଷକଙ୍କୁ ନେଇ । ତାଙ୍କ ମଧରେ ଜଣେ ଥିଲେ ଆର୍ତ୍ତତ୍ରାଣ ଦାଶ, ନୀଳକଣ୍ଠବାବୁଙ୍କର ପଡିଶା ଘର, କୁଟୁମ୍ବ ଭିତର । ଇଂରାଜୀ ଅନଭିଜ୍ଞ କିନ୍ତୁ ପ୍ରବୀଣ ଶିକ୍ଷକ । ତାଙ୍କର ପୁତ୍ର ନୀଳମଣି ସେହି ସ୍କୁଲରୁ ମାଟ୍ରିକ୍ ପାଶ୍ କରି ପରେ ସେଠାରେ ଶିକ୍ଷକତା କଲେ । ଅନ୍ୟପୁତ୍ର ଚିନ୍ତାମଣି ମଧ ସେହି ସ୍କୁଲରୁ ଉତ୍ତୀର୍ଣ୍ଣ ହୋଇ ଏମ୍.ଏ.ପାଶ୍ କରି, ସରକାରୀ କଲେଜରେ ଅଧାପନାରୁ ଅବସର ନେଇ ଗୋପବନ୍ଧୁ ସ୍ମୃତିରେ ସ୍ଥାପିତ କଲେଜରେ ଅଧକ୍ଷତା କରି ଅଳ୍ପଦିନ ତଳେ ଦେହତ୍ୟାଗ କରିଛନ୍ତି ।

Digitized by srujanika@gmail.com

ଦୁଇବର୍ଷ ପରେ ନୀଳକଣ୍ଠବାବୁ ଆସି ଯୋଗଦେବା ପରଠାରୁ ସ୍କୁଲର ଚହଳ ଚାରିଆଡେ ପଡିବାକୁ ଆରମ୍ଭ କଲା । ତାହାର କାରଣ ଥିଲା ଦୁଇଟି । ଏମ୍.ଏ.ପାଶ୍ କରି ବଡ ଚାକିରୀକୁ ନଯାଇ ମାସକୁ ମାତ୍ର ୩୫ଟଙ୍କା ବେତନ ନେଇ ଗୋଟିଏ ମାଇନର ସ୍କୁଲରେ ମାଷ୍ଟର ହେଲେ, ଏଇଟା ସମସ୍ତଙ୍କୁ ଆଶ୍ଚର୍ଯ୍ୟ ଲାଗିଲା । ସେଥିରେ ଯେଉଁ ତ୍ୟାଗ ଓ ସେବାର ଆଦର୍ଶ ଜଡିତ ଥିଲା, ତାହା ଶିକ୍ଷିତ ଲୋକଙ୍କ ହୃଦୟକୁ ଯେପରି ସ୍ପର୍ଶ କଲା, ସାଧାରଣ ଲୋକଙ୍କ ଚେତନାକୁ ସେହିପରି ଆଲୋଡିତ କଲା । ଶିକ୍ଷାବିମୁଖ ଆତଙ୍କଭାବ ପରିବର୍ତ୍ତେ ଆଗ୍ରହ ସୃଷ୍ଟି ହେଲା । ଗାଁ ଗହଳରେ ସେହି କଥାର ଚର୍ଚ୍ଚା । ସତ୍ୟବାଦୀ ବଜାରକୁ ଯେ ସଉଦା କରିବାକୁ ଆସନ୍ତି, ଯେ ସାକ୍ଷୀଗୋପାଳ ମନ୍ଦିରକୁ ଦର୍ଶନକୁ ଆସନ୍ତି, ଗାଁକୁ ଫେରି ଦେଖି ନଥିବା, ଶୁଣିନଥିବା କଥାକୁ ଯୋଡି ସ୍କୁଲ କଥା ନାନା ଭାବରେ ପ୍ରଘଟ କରନ୍ତି । ଏତେ ସହଜରେ, ଏତେ ଅଳ୍ପ ସମୟ ମଧ୍ୟରେ ଲୋକଙ୍କର ଶିକ୍ଷା ପ୍ରତି ଆଗ୍ରହ ସୃଷ୍ଟି, ଗୋପବନ୍ଧୁଙ୍କର ଦୂରଦୃଷ୍ଟିର ପରିଚାୟକ ।

ଏ ଆଗ୍ରହ ସଙ୍ଗେ ସଙ୍ଗେ କେତେକ ବିରୋଧଭାବ ମଧ୍ୟ କ୍ରମଶଃ ପ୍ରକାଶ ପାଇଲା । ଶାସନୀ ବ୍ରାହ୍ମଣ ହୋଇ ନିଶ ରଖିବା, ବ୍ରାହ୍ମଣେତର ଲୋକଙ୍କ ସାଙ୍ଗରେ ଏକ ପଂକ୍ତିରେ ଖାଇବା, ଛୁଆଁ ଅଛୁଆଁ ନ ମାନିବା, ବ୍ରାହ୍ମଣ ସମାଜକୁ ବିଶେଷ କରି ଏବଂ ଅନ୍ୟମାନଙ୍କୁ ମଧ୍ୟ ଇଲେକ୍‌ଟ୍ରିକ୍ ସକ ପରି ଲାଗିଲା । ତାହାର ପ୍ରତିଧ୍ୱନି ପୁରୀର ମଠ ମହନ୍ତ, ସାମନ୍ତପତି, ମୁକ୍ତିପଣ୍ଡପକୁ ଡେଜେଇଲା । ଏବର ଲୋକଙ୍କ ପକ୍ଷରେ ସତୁରି ବର୍ଷ ତଳର ରକ୍ଷଣଶୀଳ ସମାଜର ଏ ପ୍ରକାର ପ୍ରତିକ୍ରିୟା ଠିକ୍ ଅଟକଳ କରିବା ହୁଏତ କଷ୍ଟକର ହେବ । କିନ୍ତୁ ସେ ପ୍ରତିକ୍ରିୟା ଅତି ଶୀଘ୍ର ତୀବ୍ର ହୋଇ ଉଠିଲା । ପୁରୀରେ ପଣ୍ଡିତ ସଦାଶିବ ମିଶ୍ର କାବ୍ୟକଣ୍ଠ ଜଣେ ଅତି ପ୍ରତିଷ୍ଠିତ ବ୍ୟକ୍ତି ଥିଲେ । ଜିଲ୍ଲାସ୍କୁଲରେ ସଂସ୍କୃତ ପଣ୍ଡିତ ଥାଇ ଯାହା ପ୍ରତିଷ୍ଠା ଲାଭ କରିଥିଲେ, ତାହାଠାରୁ ବହୁତ ପ୍ରତିଷ୍ଠା ଅର୍ଜନ କରିଥିଲେ, ପୁରୀ ସଂସ୍କୃତ କଲେଜ ବେଦ ବିଦ୍ୟାଳୟ ସ୍ଥାପନ, ମୁକ୍ତିମଣ୍ଡପ ପଣ୍ଡିତ ସଭା, ଉତ୍କଳ ବ୍ରାହ୍ମଣ ସମିତିର ପୁନରୁଦ୍ଧାର ପ୍ରଭୃତି କାର୍ଯ୍ୟର ସଫଳ ଓ ସକ୍ରିୟ ନେତୃତ୍ୱ ଗ୍ରହଣରେ । ସରକାରୀ ମହଲରେ ତାଙ୍କର ଆତଯାତ ଥିଲା । ମହାମହୋପାଧ୍ୟାୟ ଉପାଧିରେ ସରକାର ତାଙ୍କୁ ଆପ୍ୟାୟିତ କରିଥିଲେ । ନୀଳକଣ୍ଠବାବୁଙ୍କ ଦଳର ସମାଜ ସଂସ୍କାର ଆଭିମୁଖ୍ୟର ସେ ହେଲେ ବିରୋଧୀ । ମୁକ୍ତିମଣ୍ଡପ ତାଙ୍କ ଅକ୍ତିଆରରେ ଥିବାରୁ ତାହାର ପ୍ରଭାବ ସତ୍ୟବାଦୀ ଦଳ ବିରୁଦ୍ଧରେ

Digitized by srujanika@gmail.com

ଲଗାଇବାର ସୁଯୋଗ ସେ ବ୍ୟବହାର କଲେ । ବ୍ରାହ୍ମଣ ଶାସନମାନଙ୍କ ସହିତ ତାଙ୍କର ଯୋଗାଯୋଗ ଥାଏ । ଧର୍ମସଂକ୍ରାନ୍ତ ସାମାଜିକ ଚଳଣି ଓ ବ୍ୟବସ୍ଥା ଉପରେ ତାଙ୍କ ମତାମତର ଗୁରୁତ୍ୱ ରହିଥାଏ । ତାଙ୍କ କଥାକୁ କାଟିବାକୁ କେହି ବ୍ୟକ୍ତି ବା ସଂସ୍ଥା ନଥିଲା । ହିନ୍ଦୁ ସମାଜ, ବିଶେଷ କରି ବ୍ରାହ୍ମଣମାନଙ୍କ ମଧ୍ୟରେ ତାଙ୍କର ପ୍ରାଧାନ୍ୟ ଓ ପ୍ରତିପତ୍ତି ଉପରେ ବଡ ଆଞ୍ଚ ଆସିଲା, ସତ୍ୟବାଦୀ ଗୋଷ୍ଠୀର ପରିକଳ୍ପିତ ସମାଜ ସଂସ୍କାର କ୍ରିୟା ଓ ଆନ୍ଦୋଳନ ଦ୍ୱାରା । ବାହାରେ ଶିକ୍ଷା ଅନୁରାଗୀ ଭାବରେ ସତ୍ୟବାଦୀ ସ୍କୁଲର ପ୍ରଶଂସା, ଭିତରେ ସେ ଦଳର ଅଗ୍ରଗାମୀ ପ୍ରତିଷ୍ଠା ଲାଭରେ ଅସ୍ୱସ୍ତି, ଏହି ଦ୍ୱନ୍ଦ ମଧ୍ୟରେ ରକ୍ଷଣଶୀଳତାର ଆହ୍ୱାନ ତାଙ୍କ ପକ୍ଷରେ ବଳବତୀ ହେବା ସ୍ୱାଭାବିକ । କ୍ରମଶଃ ସେ ବିରୋଧର ଅଗ୍ରଣୀ ହେଲେ ।

ମୂଳରୁ ସମାଜ ସେବା, ରୋଗୀସେବା, ସ୍କୁଲର ଏକ ପ୍ରଧାନ ଅଂଶ ଥିଲା । କେଉଁ ଗାଁରେ ଜ୍ୱର, ହଇଜା ଆରମ୍ଭ ହେଲେ, ଶିକ୍ଷକ ଛାତ୍ର ସେଠାରେ ପହଞ୍ଚନ୍ତି ଓ ଯଥାଶକ୍ତି ଲୋକଙ୍କୁ ଭରସା ଓ ସାହାଯ୍ୟ ଦିଅନ୍ତି । ହୋମିଓପାଥି ଔଷଧର ପ୍ରଚଳନ ସେ ଅଞ୍ଚଳରେ ଆରମ୍ଭ ହେଲା ସ୍କୁଲ ତରଫରୁ । କେଉଁ ଗାଁରୁ ଘରପୋଡି ଖବର ଆସିଲେ, ସ୍କୁଲ ଯାଇ ହାଜର ହୁଏ ସେଠାରେ । ଅଂଳାନବମୀ, ରଥଯାତ୍ରାବେଳେ ଯାତ୍ରୀ ଭିଡବେଳେ ସ୍ୱେଚ୍ଛାସେବକ ଦଳ ଦିନ ରାତି ବାହାରନ୍ତି ସ୍କୁଲରୁ । ଚାରିପଟ ଗାଁମାନଙ୍କରେ ମୁଠି ଚାଉଳ ସଂଗ୍ରହ କରିବାକୁ ପିଲାଏ ଯାଆନ୍ତି ପ୍ରତି ରବିବାର ଦିନ । ଏହିପରି ନାନା ଭାବରେ ଲୋକଙ୍କ ସଙ୍ଗେ ପ୍ରତ୍ୟକ୍ଷ ଓ ପରୋକ୍ଷ ସଂଯୋଗ ଯୋଗୁ ସ୍କୁଲର ଲୋକପ୍ରିୟତା ବଢ଼ି ଚାଲିଥାଏ । ସେ ସତ୍ତ୍ୱେ, ଗୋଟିଏ ବିରୋଧ ଧାରା ଅପ୍ରକାଶ୍ୟ କିନ୍ତୁ ଅପ୍ରତିହତ ରହିଥାଏ । ସ୍କୁଲ କର୍ତ୍ତୃପକ୍ଷ ସାମାନ୍ୟ ଚେଷ୍ଟା କରିଥିଲେ, ନିକଟବର୍ତ୍ତୀ ବ୍ରାହ୍ମଣ ଗ୍ରାମମାନଙ୍କରେ ତାଙ୍କ ସପକ୍ଷରେ ପୂର୍ଣ୍ଣ ବାତାବରଣ ସୃଷ୍ଟି କରିପାରି ଥାଆନ୍ତେ କାରଣ ସ୍କୁଲ ପ୍ରତି, ଇଂରେଜୀ ପଢ଼ା ପ୍ରତି ଆଗ୍ରହ ଜନ୍ମି ସାରିଥିଲା ଏବଂ ତାହା ତୁଳନାରେ ସମାଜ ସଂସ୍କାର ଦିଗରେ ସ୍କୁଲରେ ଚାଲିଥିବା ଉଦ୍ୟମର ଗୌଣ ଭୂମିକାର ସକ୍ରିୟ ବିରୋଧ ମୁଣ୍ଡଟେକି ନ ଥାନ୍ତା । କିନ୍ତୁ ନୀଳକଣ୍ଠବାବୁ ପ୍ରଭୃତି ସେଥିପ୍ରତି ଭ୍ରୂକ୍ଷେପ କଲେ ନାହିଁ । ତେଣୁ ରକ୍ଷଣଶୀଳ ସମାଜପତିଙ୍କର କାନକୁହା, ଫୁସ୍‌ଫାସ୍ କୁହୁଳି କୁହୁଳି ଅଗ୍ନିଶିଖାରେ ପରିଣତ ହେଲା ୧୯୧୨ ମାର୍ଚ୍ଚ ମାସ ୨୨ ତାରିଖରେ । ତା ପର ଦିନ ସକାଳେ ଗାଁରେ ଶୁଣିଲୁ, ଗଲା ରାତିରେ ସ୍କୁଲଘର ପୋଡିଯାଉଛି । ଆମେ ପିଲାଏ ଧାଇଁଲୁ ସ୍କୁଲକୁ । ଭସ୍ମୀଭୂତ ଘର ପାଖରେ ବସିଥାନ୍ତି

Digitized by srujanika@gmail.com

ବିମର୍ଷବଦନ ନୀଳକଣ୍ଠବାବୁ, ହରିହରବାବୁ ପ୍ରମୁଖ । ମୋର ଅତି ପିଲାଦିନର ସେ ସ୍ମୃତି । କିନ୍ତୁ ଯାହା ସେ ଦିନ ଦେଖିଥିଲି, ଏବେ ତାର ସ୍ପଷ୍ଟରୂପ ମନରେ ଦିଶୁଛି । ସ୍କୁଲ ଘରକୁ ଚାହିଁଲାବେଳକୁ, ଖାଲି ପାଉଁଶ । ଛପର, ଚୌକି, ଟେବୁଲ, ବେଞ୍ଚ, ବହି ଖାତା ସବୁ ଅଗ୍ନି ଗର୍ଭସ୍ଥ । ଲାଇବ୍ରେରୀର ନା ଥାଏ ଆଲମାରୀ, ନା ବହି । ସବୁଦିନ ପରି ପିଲାମାନେ ସ୍କୁଲକୁ ଆସିଲେ । ସମସ୍ତେ ଏପଟ ସେପଟ ହୋଇ ମାଷ୍ଟରମାନଙ୍କ ଚାରିପଟେ ଠିଆ ହୋଇଥାଆନ୍ତି । ସମସ୍ତଙ୍କ ତୁଣ୍ଡରେ ଗୋଟିଏ ପ୍ରଶ୍ନ, କିଏ ଏ କାଣ୍ଡ କଲା ? ସ୍କୁଲ ଘରେ ନିଆଁ ଲଗାଇଦେଲା । ସତ୍ୟବାଦୀ ବଜାରର ଲୋକେ, ସୁଆରସାହିବାଲା ଆସି ରୁଣ୍ଡ ହେଲେ । ହତାଶର ଛାୟା ସମସ୍ତଙ୍କ ମୁଖମଣ୍ଡଳରେ । ସ୍କୁଲ ଆରମ୍ଭର ମାତ୍ର ତିନିବର୍ଷ ଭିତରେ ଏପରି ବିପର୍ଯ୍ୟୟ ଘଟିବାର ଆଶଙ୍କା କାହାରି ନଥିଲା । ଉତ୍ସାହ, ଉନ୍ମାଦନାର ଉନ୍ନତଶିଖା ଉଠୁଥିଲାବେଳେ, ଅଗ୍ନିଶିଖା ତାକୁ ଦଂଶନ କରିବ ଏ ଅଭିଶାପ କେହି ପ୍ରକାଶ୍ୟରେ ଦେଇନଥିଲେ । ଯେ ଭାବୁଥିଲେ ବ୍ରାହ୍ମଣ୍ୟ କୌଳିନ୍ୟ ଶାପଗ୍ରସ୍ତ ହେବାକୁ ବସିଲାଣି, ସେମାନେ ଧର୍ମର ଜୟ ହେଲାବୋଲି ଆଶ୍ୱାସନା ମନକୁ ମନ ଦେଉଥିବେ; କିନ୍ତୁ ସାଧାରଣରେ ଏହି ଅଗ୍ନିକାଣ୍ଡ ନିନ୍ଦିତ ହୋଇଥିଲା ।

ଶିକ୍ଷକମାନେ ଦୁଃଖାଭିଭୂତ ହୋଇ ବସିରହିବାର ଚିତ୍ର ସମସ୍ତଙ୍କୁ ଦୁଃଖଦାୟକ ହୋଇଥିଲା । ଗୋପବନ୍ଧୁ ବାବୁ ଖବର ପାଇ ପୁରୀରୁ ଆସି ପହଞ୍ଚିଲେ । ରାଶିକୃତ ଭସ୍ମ, ପୁଞ୍ଜିଭୂତ ବିଷାଦଗ୍ରସ୍ତ ଛାତ୍ରଙ୍କୁ ଦେଖି ସେ ବଉଳ ଗଛମୂଳେ ନିସ୍ତବଧ ହୋଇ ଚାରିଆଡକୁ କିଛିକ୍ଷଣ ଚାହିଁ ଆଗେଇଲେ ମୃଦୁ ପଦକ୍ଷେପରେ । ତାଙ୍କୁ ଦେଖି ସମସ୍ତଙ୍କର ଆକୁଳ ଚାହାଣୀ ଅଧିକ ବ୍ୟାକୁଳ ହେଲା । କିନ୍ତୁ ତାଙ୍କର ଅଭୟବାଣୀ ବାହାରିଲା—ଚାଳଘର ଥିଲା, ପକ୍କା ଘର ହେବ, ଏଥିକି ଏତେ ଭାବନା କାହିଁକି ? ମଧୁସୂଦନ ମିଶ୍ରେ କହିଲେ, ସେତେଦିନ ସିନା ସ୍କୁଲ ବନ୍ଦ ରହିବ । ଉତ୍ତର ଆସିଲା, କାହିଁକି ? ଘର ସିନା ନାହିଁ, ଗଛ ତ ଅଛି । ଗଛ ମୂଳେ କ୍ଲାସ କର । ନୂଆ ଦିଗ୍‌ଦର୍ଶନରେ ସମସ୍ତଙ୍କର ନିଦ୍ରାଭଙ୍ଗ ହେଲା, ବନ ବିଦ୍ୟାଳୟର ସ୍ୱପ୍ନରେ ।

ପୃଥିବୀରେ ବହୁ ବଡ ବଡ କଥା ଆରମ୍ଭ ହୁଏ ଅତର୍କିତ ଭାବରେ । ଗଛରୁ ପାଚିଲା ଫଳ ଝଡିବା ଦୈନନ୍ଦିନ ଘଟଣା । କିନ୍ତୁ ସେଥିରୁ ହଠାତ୍ ଦିନେ ନିଉଟନ ଆବିଷ୍କାର କଲେ ପୃଥିବୀର ମାଧ୍ୟାକର୍ଷଣ ଶକ୍ତି । କେଟ୍‌ଲିର ଫୁଟିଲା ପାଣିରେ ଢାଙ୍କୁଣୀ ଥରିଉଠିବା ଦେଖି ବାଷ୍ପୀୟ ଶକଟର କଳ୍ପନା ସାର୍ଥକ ହେଲା । ତିନିବର୍ଷକାଳ

Digitized by srujanika@gmail.com

ସ୍କୁଲ ଚାଲିଥିଲା, ସ୍କୁଲ୍‌ହତାରୁ ଗଛ ସଫା ହୋଇ ଚାଳଘର ସାହାଲା ତୋଳା ହୋଇଥିଲା । ହତାକୁ ଲାଗି ବିସ୍ତୃତ ଛୁରୀଅନା ଘନକୁଞ୍ଜ ରହିଥିଲା । ପୂର୍ବ କାଳରେ ବୃକ୍ଷରାଜି ପରିବେଷ୍ଟିତ ଗୁରୁକୁଳ ଆଶ୍ରମ କଥା ସମସ୍ତଙ୍କୁ ଜଣାଥିଲା । କିନ୍ତୁ ସତ୍ୟବାଦୀ ସ୍କୁଲର ଦୃଷ୍ଟି ଓ ଚିନ୍ତା ଗଛମୂଳକୁ ଯାଇନଥିଲା । ରାବଣ ସୀତାଙ୍କୁ ଲଙ୍କାପୁରୀକୁ ହରଣଚାଳ ନ କରିଥିଲେ, ରାମେଶ୍ୱର ସେତୁବନ୍ଧରେ ଭାରତ ଲଙ୍କାର ସଂଯୋଗ ଘଟିନଥାନ୍ତା । କତିପୟ ଦୂରଦୃଷ୍ଟିହୀନ ଶ୍ରୀକାତର ଲୋକ ଘର ପୋଡିନଥିଲେ, ସ୍କୁଲର ନୂତନ କଳେବର ପ୍ରଶଂସିତ ବନ ବିଦ୍ୟାଳୟ ଲୋକଲୋକଚନକୁ ଆସି ନଥାନ୍ତା ।

ଗୋଟିଏ ଦିନ ପରେ ସମସ୍ତେ ଭୂଲିଗଲେ ଅଗ୍ନି ଦୁର୍ଦ୍ଦଶା । ଆମେ ପିଲାମାନେ ଗାଁମାନଙ୍କରୁ ଆସିଲାବେଳକୁ ମାଷ୍ଟରମାନେ ଲାଗିଥାଆନ୍ତି ଭିନ୍ନ ଭିନ୍ନ କ୍ଲାସର ସ୍ଥାନ ନିରୂପଣରେ । ଦୈବ ଆଗରୁ ସ୍ଥାନବାରି ରଖିଥିଲେ ବୋଧହୁଏ । ଛୁରୀଅନା ବଣ ବାହାରକୁ ନିଘଞ୍ଚ । ଭିତରେ କିନ୍ତୁ ଅରେ ଅରେ ନିର୍ମଳ ଜାଗା । ମଝିରେ ଖଣ୍ଡେ ଗୁଳ୍ମହୀନ ବଡ ଆସ୍ଥାନ ମିଳିଲା, ଅଫିସ, ଶିକ୍ଷକଙ୍କ ବୈଠକି ପାଇଁ, ଝାମ୍ପରା ବଉଳଗଛ ତଳେ । ତାକୁ କେନ୍ଦ୍ରକରି ଚାରିପଟକୁ ଅଳ୍ପ ଅଳ୍ପ ଦୂରରେ କ୍ଲାସ ପାଇଁ ସ୍ଥାନ ସଜାଡି ହୋଇଗଲା । ବଡ କଉତୁକ ଲାଗୁଥାଏ ପିଲାଙ୍କୁ । ଗଛରୁ ପତ୍ର, ଫଳ ଖସୁଛି, ଗୁଣ୍ଡୁଚି ମୂଷା ଏପଟ ସେପଟ ହେଉଛି । ପକ୍ଷୀ ଓପରୁ ଆଗନ୍ତୁକଙ୍କୁ ଠଉରାଉଛନ୍ତି । ଆସନ ଅଣଓସାରୀ ଖଜୁରୀପଟି । କେତେଦିନ ପରେ ମାଷ୍ଟରଙ୍କ ପାଇଁ ଟୁଲ, କ୍ଲାସପାଇଁ ବ୍ଲାକ ବୋର୍ଡ ଆସିଲା । ବୋର୍ଡର ଶୋଭା ବହନ କରିବା ପାଇଁ ଗଛର ଗଣ୍ଡି ପର୍ଯ୍ୟାପ୍ତ । ପିଲାଏ ଲାଗିଲେ, ନିଜ ନିଜ କ୍ଲାସର ନିରୂପିତ ସ୍ଥାନକୁ କଣ୍ଟା, ଗୁଳ୍ମ, ଖାଲ, ଢ଼ିପରୁ ମୁକ୍ତ କରିବାକୁ । ପହଁରାମୁଠାରେ ବିକ୍ଷିପ୍ତ ପତ୍ରରାଜି ଜମାହେଲା ଅଗ୍ନି ଦେବତାଙ୍କ ଆହ୍ୱାନ ପାଇଁ । କ୍ଲାସରୁ କେତେ ଶୁଖିଲା ପତ୍ର ବାହାରିଲା, ତାହାର ଅପୁରସ୍କୃତ ପ୍ରତିଯୋଗିତା ପିଲାଙ୍କର କ୍ଷିପ୍ରତା ଚଞ୍ଚଳ କରୁଥାଏ । ବକୁଳ ଛୁରୀଅନା ବନରେ ସେଦିନ ଦପ୍ତରୀ ଘଣ୍ଟା ପ୍ରଥମ ବଜାଇଲା ସୂର୍ଯ୍ୟାସ୍ତର ଅଳ୍ପ ପୂର୍ବରୁ, କାଳେ କେଉଁ ପିଲା କେଉଁଠି ବଣ ଭିତରେ ରହି ଯାଇଥିବ, ଡାକିବା ପାଇଁ । ଧୂଳି ଧୂସର ହୋଇ ପିଲାଏ ଫେରିଲେ ଘରକୁ, ବନ ବିଦ୍ୟାଳୟ ଅପେକ୍ଷା କଲା ତା'ପର ଦିନ କ୍ଲାସକୁ ।

ସ୍କୁଲ ଘରପୋଡିବେଳକୁ ମାତ୍ର ପାଞ୍ଚଟି କ୍ଲାସ ଖୋଲିଥିଲା । ସପ୍ତମ, ଷଷ୍ଠ, ପଞ୍ଚମ ଓ ଚତୁର୍ଥ । ସପ୍ତମରେ ଏ, ବି, ସେକ୍‌ସନ ଥାଏ । ମାଟ୍ରିକ୍ୟୁଲେସନର

Digitized by srujanika@gmail.com

ଓପର ତିନିଶ୍ରେଣୀ ବାକି ଥାଏ ଖୋଲିବାକୁ । ଏବେ କ୍ଲାସ ସବୁ ତଳୁ ଓପରକୁ ଏକ, ଦୁଇ, ତିନି, କ୍ରମରେ ପରିଚିତ । ସେତେବେଳେ ଥିଲା ଓଲଟା । ତଳ ଚାରଟି ଶ୍ରେଣୀ ଛଡା, ଆଉ ଗୋଟିଏ କ୍ଲାସ ଚାଲୁଥିଲା, କୋଚିଂ କ୍ଲାସ । ଯେଉଁ ଛାତ୍ରମାନଙ୍କର ଇଂରାଜୀ ବର୍ଣ୍ଣପରିଚୟ ନଥିଲା, ସେମାନେ ସେଥିରେ ପ୍ରାରମ୍ଭିକ ଇଂରେଜୀ ଶିକ୍ଷା ପାଉଥିଲେ ଏବଂ ପରେ ନିଜ ଉପଯୋଗୀ କ୍ଲାସରେ ଯୋଗ ଦେଉଥିଲେ । ସର୍ବନିମ୍ନ କ୍ଲାସରୁ ଇଂରେଜୀ ବାଧ୍ୟତାମୂଳକ ପାଠ୍ୟ ବିଷୟ ଥିଲା । ସେବର ଜାତୀୟତାବୋଧରେ ତାହା ଅନ୍ତରାୟ ସୃଷ୍ଟି କରୁନଥିଲା । ୧୯୧୩ ଜାନୁଆରୀଠାରୁ ତୃତୀୟ ଓ ଦ୍ୱିତୀୟ ଶ୍ରେଣୀ ଖୋଲିଲା । ସେହି ବର୍ଷ ମେ ମାସ ପହିଲାରୁ ଗୋଦାବରୀଶବାବୁ ଆସିଲେ । ପରବର୍ତ୍ତୀ ବର୍ଷ (୧୯୧୪) ପ୍ରଥମ ଶ୍ରେଣୀ ଆରମ୍ଭ ହେଲା । କୃପାସିନ୍ଧୁ ବାବୁ (ମିଶ୍ର) ଏମ୍.ଏ.ପାଶ୍ କରି ସିଧା ଆସି ଯୋଗଦେଲେ ସ୍କୁଲରେ, ସେହିବର୍ଷ ନଭେମ୍ବର ୨୫ ତାରିଖରେ । ବହୁ ଆହ୍ଲାଦ ପ୍ରକାଶ ପାଇଲା କାରଣ କଲିକତା ବିଶ୍ୱବିଦ୍ୟାଳୟ ମାଟ୍ରିକୁଲେସନ୍ ପରୀକ୍ଷା ଦେବାପାଇଁ ସ୍କୁଲକୁ ସାମୟିକ ସ୍ୱୀକୃତି ଦେଲେ । ସ୍ଥାୟୀ ସ୍ୱୀକୃତି ଆସିଲା ୧୯୧୭ ରେ । ଓଡିଶା ପାଟନା ବିଶ୍ୱବିଦ୍ୟାଳୟ ପରିସରଭୁକ୍ତ ହେବାରୁ ୧୯୧୮ରେ ସ୍କୁଲର ସ୍ୱୀକୃତି ସେଠାକୁ ପରିବର୍ତ୍ତିତ ହେଲା । ମାତ୍ର ସାତଟି ବର୍ଷ (୧୯୧୪-୧୯୨୧) ପୂର୍ଣ୍ଣାଙ୍ଗ ହାଇସ୍କୁଲ ରୂପେ ବନ ବିଦ୍ୟାଳୟ ଚାଲିଥିଲା । ମିଡଲ୍ ଇଂଲିଶ୍ ସ୍କୁଲ ଆରମ୍ଭଠାରୁ (୧୯୦୯) ବାରବର୍ଷ । ଓଡିଶାରେ ଅସହଯୋଗ ଆନ୍ଦୋଳନର ଅଧିନାୟକତ୍ୱ ଗୋପବନ୍ଧୁ ଗ୍ରହଣ କରି, ତାହାର ପ୍ରଥମ ନିଦର୍ଶନ ସ୍ୱରୂପ ତାଙ୍କର ସର୍ବପ୍ରିୟ ଅନୁଷ୍ଠାନ ସ୍କୁଲଟିକୁ ଜାତୀୟ ଯଜ୍ଞରେ ପ୍ରଥମ ଆହୁତି ଅର୍ପଣ କଲେ । ସେତେବେଳକୁ ବିହାର ଓଡିଶା ସରକାର ସ୍କୁଲକୁ କୋଡିଏ ହଜାର ଟଙ୍କା ମଞ୍ଜୁର କରିଥାଆନ୍ତି । ତାହା ପ୍ରତ୍ୟାଖ୍ୟାତ ହେଲା । ସ୍କୁଲ ମାଟ୍ରିକୁଲେସନ ସୋପାନରୁ ବଦଳି ବିଦ୍ୟାପୀଠ ପଂକ୍ତିରେ ଜାତୀୟ ଶିକ୍ଷାଳୟରେ ପରିଣତ ହେଲା । ଏହା ନିର୍ଦ୍ୱନ୍ଦ୍ୱରେ ହୋଇ ନଥିଲା । ଆଦର୍ଶ ଓ ବାସ୍ତବତାର ବହୁ ଯୁକ୍ତିତର୍କ, ଛାତ୍ର ଓ ଶିକ୍ଷକମାନଙ୍କ ଭବିଷ୍ୟତ, ବିଚାରରେ ବିଭିନ୍ନ ସୂତ୍ରରୁ ବିଭିନ୍ନ ମତର ସମ୍ମୁଖୀନ ହେଲେ ଗୋପବନ୍ଧୁ । ନୀଳକଣ୍ଠବାବୁଙ୍କର ବଳିଷ୍ଠ ଯୁକ୍ତିଥିଲା ସ୍କୁଲ ଜାତୀୟକରଣ ବିରୋଧରେ । କୃପାସିନ୍ଧୁ ବାବୁ ଥିଲେ ତାଙ୍କର ସହାୟକ । ଗୋଦାବରୀଶ ବାବୁ ଗୋପବନ୍ଧୁଙ୍କର ଅନୁକରଣବାଦୀ । ଅସ୍ଥିରତା ମ୍ରିୟମାଣ ହୋଇଗଲା; ଯେତେବେଳେ ଜଣାଗଲା ଯେ ମହାତ୍ମା ଗାନ୍ଧି ୧୯୨୧ ମାର୍ଚ୍ଚ ମାସରେ ଓଡିଶାକୁ ପ୍ରଥମ ଆସିବା ପାଇଁ ରାଜି ହୋଇଛନ୍ତି । ତାହା

Digitized by srujanika@gmail.com

ପୂର୍ବରୁ ସ୍କୁଲଟିକୁ ସରକାରୀ ପଞ୍ଝାରୁ ମୁକ୍ତ କରି ଜାତୀୟ ଆନ୍ଦୋଳନର ସାକ୍ଷ୍ୟ ସ୍ଥାପନ କରିବା ପାଇଁ ଗୋପବନ୍ଧୁ ସ୍ଥିର କଲେ । ତାହାହିଁ ହେଲା । ସ୍କୁଲ ଏକ ପ୍ରକାର ଛତ୍ରଭଙ୍ଗ ହୋଇଗଲା । ବହୁ ପିଲା ଅନ୍ୟ ସ୍କୁଲକୁ ଚାଲିଗଲେ । ଅଭିଭାବକମାନେ ବ୍ୟତିବ୍ୟସ୍ତ ହୋଇପଡିଲେ । କେତେକ ଶିକ୍ଷକ ଅନ୍ୟତ୍ର ଜୀବିକା ସନ୍ଧାନରେ ଗଲେ । ମହାତ୍ମା ଗାନ୍ଧି ୧୯୨୧ ମାର୍ଚ୍ଚ ୨୬ ତାରିଖରେ ଲୋକାରଣ୍ୟ ମଧ୍ୟରେ ବିଦ୍ୟାପୀଠରେ ପଦାର୍ପଣ କଲେ । ସେଦିନ ଅପରାହ୍ନରେ ସେଠାରୁ ପୁରୀ ଗଲେ । ପୂର୍ବଦିନ କଟକ ଆସିଥିଲେ । ସହଯୋଗୀ ଗୋପବନ୍ଧୁ ଅସହଯୋଗୀ ହୋଇ ସରକାରଙ୍କର ଯେପରି କୋପଦୃଷ୍ଟିରେ ପଡିଲେ, ପ୍ରଖ୍ୟାତ ସ୍କୁଲ ସେହିପରି ଲୋକଚକ୍ଷୁରେ ଅଖ୍ୟାତ ହୋଇଗଲା । ଦୁଇବର୍ଷ ପରେ ବିଦ୍ୟାପୀଠ ନାମମାତ୍ର ଜାତୀୟ କଲେଜକୁ ଉନ୍ନୀତ ହୋଇଥିଲା (୧୯୨୩)। ଆଉଥରେ ବିଶ୍ୱବିଦ୍ୟାଳୟ ସ୍ୱୀକୃତ ସ୍କୁଲ ପୁନରୁଦ୍ଧାର କରିବାର ଚେଷ୍ଟା କରାହୋଇଥିଲା । ମାତ୍ର ତାହା ବିଫଳ ହେଲା । ୧୯୨୬ରେ, ମୁଖ୍ୟତଃ ଅର୍ଥାଭାବ ଯୋଗୁ ଶିକ୍ଷା ଅନୁଷ୍ଠାନ ସଂପୂର୍ଣ୍ଣ ବନ୍ଦ ହୋଇଗଲା । ଗୋପବନ୍ଧୁଙ୍କର ଜୀବାବସାନ ତାହାର ଦୁଇବର୍ଷପରେ– ୧୯୨୮ ଜୁନ୍ ।

ଉଚାଭିଳାଷରେ ସତ୍ୟବାଦୀ ସ୍କୁଲର ଜନ୍ମ, ଦୁର୍ଦ୍ଦଶାରେ ତାହାର ଖ୍ୟାତି । ୧୯୧୨ ମାର୍ଚ୍ଚ ୨୨ ତାରିଖରେ ସ୍କୁଲ ଘରପୋଡି ପରେ ସତ୍ୟବାଦୀକୁ ବାହାରର ସବୁ ଅଞ୍ଚଳ ଲୋକଙ୍କ ଦୃଷ୍ଟି ଆପେ ଆପେ ଆକର୍ଷିତ ହେଲା । ସେହି କାରଣରୁ ଏବଂ ସେହି ଦୁର୍ଘଟଣା ପରେ ବନ ବିଦ୍ୟାଳୟ ଆରମ୍ଭ ହୋଇ ଯାଇଥିବାରୁ, ଯେ ଦେଖିଲେ ବା ଯେ ଶୁଣିଲେ, ସମସ୍ତଙ୍କୁ ଚମକ୍ ଲାଗିଲା । ଏମ୍.ଏ.ପାସ୍ ବାଲା ପ୍ରାୟ ବିନା ବେତନରେ ଗଛମୂଳେ ବସି ନିଜ ହାତଲିପା ଜଙ୍ଗଲ ମାଟି ଚଟାଣରେ ତାଳପତ୍ର ଚଟେଇ ଉପରେ ପିଲାଙ୍କୁ ବସାଇ ଇଂରେଜୀ ପଢ଼ାଉଛନ୍ତି, ଏହା ଯେପରି ଅଭିନବ, ସେପରି ଆକର୍ଷଣୀୟ । ପିଲାଙ୍କୁ ବାପ, ଭାଇ ଆଣିଲେ ଗଡଜାତରୁ, ମେଦିନପୁରରୁ, ସମ୍ବଲପୁରରୁ, ଗଞ୍ଜାମରୁ । ସହରିଆ ଅବାଗିଆ ପିଲାଙ୍କ ବାପ ମା'ଭାବିଲେ, ବନ ବିଦ୍ୟାଳୟରେ ଛାଡିଲେ, ପିଲା ବାଗେଇ ଯିବେ । ଛାତ୍ରସଂଖ୍ୟା ବଢ଼ିବା ସଂଗେ ସମସ୍ୟା ଜଟିଳ ହେଲା । ଛୁରୀଅନା କୁଞ୍ଜରେ ସିନା ପଢ଼ା ଚାଲିବ, ଦୂରରୁ ଆସିବା ପିଲାଙ୍କ ରହିବା ପାଇଁ ଘର ଲୋଡା । ଆରମ୍ଭ ହେଲା ଲମ୍ୱା ସାହାଲିକିଆ ମାଟି ଚାଳଘର । ଏ ବ୍ଲକ୍, ବି ବ୍ଲକ୍, ସି ବ୍ଲକ, ବୋର୍ଡିଂରେ ପିଲା ଖୁନ୍ଦି ହୋଇଗଲେ । ଜଳି ଯାଇଥିବା ସ୍କୁଲ ଘରର ତିନି ପଟରେ ତିନି ବ୍ଲକ । ଲୋଡା ପଡିବାରୁ, ଦୂରରେ ଡି

Digitized by srujanika@gmail.com

ବ୍ଲକ୍ ତିଆରିହେଲା, ବୟସ୍କ ଉପର କ୍ଲାସ ପିଲାଙ୍କ ପାଇଁ । ତା ସାଙ୍ଗକୁ ମେସ୍, ଖାଇବା ହଲ, ରୋଗୀବାସ । ତିଆରି ଅବସ୍ଥାରେ, ବର୍ଷାଦିନେ ଏ ସବୁ ଯୋଗାଉଥିଲା କ୍ଲାସମାନଙ୍କୁ ଆଶ୍ରୟ ସ୍ଥଳୀ ।

୧୯୧୩ ଡିସେମ୍ବର ମାସରେ ପୁରୀରେ ଉତ୍କଳ ସମ୍ମିଳନୀର ବୈଠକରେ ଫକୀରମୋହନ ସେନାପତିଙ୍କ ପ୍ରସ୍ତାବ, କନିକାର ରାଜାସାହେବ, ଓ ବ୍ରଜସୁନ୍ଦର ଦାସଙ୍କର ଅନୁମୋଦନ ଓ ସମର୍ଥନ କ୍ରମେ ସତ୍ୟବାଦୀ ବନ ବିଦ୍ୟାଳୟର ପ୍ରଶଂସାସୂଚକ ଏକ ପ୍ରସ୍ତାବ ଗୃହୀତ ହୋଇ ସର୍ବସାଧାରଣ ଓ ଧନାଢ୍ୟ ବ୍ୟକ୍ତିଙ୍କର ଆର୍ଥିକ ସାହାଯ୍ୟ ପାଇଁ ନିବେଦନ କରାଯାଇଥିଲା । ଏଥିରୁ ଅନୁମିତ ହେବ, ବନ ବିଦ୍ୟାଳୟର ଲୋକପ୍ରିୟତା ଓ ସୁଖ୍ୟାତି । ସତକୁ ସତ, ବିନା ସରକାରୀ ସାହାଯ୍ୟରେ, ଲୋକଙ୍କ ସହାୟତାରେ, ସ୍ୱାର୍ଥହୀନ ଜନସେବା କାର୍ଯ୍ୟର ବିପୁଳ ଅଭିନନ୍ଦନରେ, ପକ୍କା ସ୍କୁଲ ଘର ଠିଆହୋଇଗଲା ବର୍ଷକ ଭିତରେ । କିନ୍ତୁ କ୍ଲାସ ଚାଲିଲା ବକୁଳବନ ଛୁରୀଅନା ଗଛମୂଳରେ । ପକ୍କା ଘରେ ରହିଲା ପାଠାଗାର, ପାଠ ଉପକରଣ । ପରିଦର୍ଶକ ଆସୁଥାନ୍ତି ବହୁ ସଂଖ୍ୟାରେ । ଇନ୍‌ସପେକ୍ଟର, ଡିରେକ୍ଟର ସାହେବମାନେ ଆସିଲେ, ସମ୍ବର୍ଦ୍ଧିତ ହୁଅନ୍ତି ଗୋଟିଏ କୁଞ୍ଜ ଭିତରେ । ତାଙ୍କ ସାଙ୍ଗରେ ବେଳେ ବେଳେ ଥାଆନ୍ତି ତାଙ୍କ ସ୍ତ୍ରୀ । ସାହେବୀ ବେଶ ଭୂଷା ଦେଖିବା ଆମ ପିଲାଙ୍କ ପକ୍ଷରେ ନୂଆ । ତାଙ୍କ ପାଇଁ ଟୀ'ଟେବୁଲରେ ନାନା କିସମର ବିସ୍କୁଟ, ଫଳ ଥୁଆହେବାର ଦେଖି ଆମେ ଆଚମ୍ବିତ ହେଉଥାଉ । ସେମାନେ ଚାଲିଯିବା ପରେ, ଯେ ପାରିଲା ସେ, ଉଚ୍ଛିଷ୍ଟ ନୁହେଁ, ବଳକା ରହିଥିବା ପଦାର୍ଥରୁ କିଛି ପାଇପାରିଲେ, କୃତ୍ୟକୃତ୍ୟ ହେଉ । ଗୋପବନ୍ଧୁବାବୁ, ସ୍କୁଲ ସମ୍ପାଦକ ଓ ମୁଖ୍ୟ; ସେ ଉଚ୍ଚ ଶିକ୍ଷାକର୍ତ୍ତାଙ୍କ ପରିଦର୍ଶନ ବେଳେ ଉପସ୍ଥିତ ରହନ୍ତି; ଚୋଗା, ଚପକନ୍, ମୁଣ୍ଡରେ କଳା ପଗଡି ପିନ୍ଧି । ନୀଳକଣ୍ଠବାବୁ, ହରିବାବୁ, କୃପାସିନ୍ଧୁ ବାବୁ ଆସନ୍ତି ସେଦିନ ପ୍ୟାଣ୍ଟ, ବେକଚିପା କୋଟ୍, ମୁଣ୍ଡପଗଡି ପିନ୍ଧି । ଗୋଦାବରୀଶ ବାବୁଙ୍କର ପ୍ୟାଣ୍ଟ, କୋଟ୍ ଟାଇ, ଫେଲଟ୍‌ହ୍ୟାଟ୍, ସମସ୍ତିଙ୍କୁ ବଳିଯାଏ । କିଏ କଳ୍ପନା କରିଥିଲା ଯେ, ଏମାନେ ପରବର୍ତ୍ତୀ ଜୀବନରେ ଆଣ୍ଠୁ ଅନ୍ତୁଡ଼ା ସାତହାତିଆ ଖଦଡ ଲୁଗା ପରିହିତ ହୋଇ ସର୍ବଜନପୂଜିତ କଂଗ୍ରେସ ନେତା ହେବେ ।

ନୀଳକଣ୍ଠବାବୁ କେବେ କେବେ ତାଙ୍କ ମାଁରେ, ଅଧିକାଂଶ ଦିନ ସ୍କୁଲ ବୋର୍ଡିଂରେ ରହନ୍ତି । ପ୍ରଥମେ ସ୍କୁଲରେ ଯୋଗ ଦେବାବେଳେ, କେତେ ମାସ ଗାଁରୁ

Digitized by srujanika@gmail.com

ପ୍ରତିଦିନ ପ୍ୟାଣ୍ଟ କୋଟ ପିନ୍ଧି, ମୁଣ୍ଡରେ ସୁନେଲିଧଡି ଲୁଗାର ପଗଡି ବାନ୍ଧି ଆସୁଥିଲେ । ତା'ପରେ ଧୋତି, କମିଜ ହେଲା ତାଙ୍କର ପହରଣ । ଅନ୍ୟ ମାଷ୍ଟରମାନଙ୍କର ମଧ ସେହି ବେଶ । ପଞ୍ଜାବୀ ସେତେବେଳେ କେହି ପିନ୍ଧୁନଥିଲେ । ଗୋଦାବରୀଶବାବୁ ରହୁଥିଲେ ସତ୍ୟବାଦୀ ବଜାର ପଛପଟେ ଗୋଟିଏ ମାଟି ଚାଳଘରେ, ସପରିବାର । କୃପାସିନ୍ଧୁବାବୁଙ୍କ ପାଇଁ ବଜାର ଉପରେ ଲାଲାବାବୁ ଜମିଦାରଙ୍କର ଅଫିସ ଘରେ କାନିପଟ ବଖରା ନିଆ ହୋଇଥାଏ । ସେ ଥାଆନ୍ତି ସସ୍ତ୍ରୀକ । ହରିବାବୁଙ୍କ ଆସ୍ଥାନ ହଷ୍ଟେଲରେ । ଅନ୍ୟ ମାଷ୍ଟରମାନେ, କିଏ ଗାଁରୁ, କିଏ ବସାଘରୁ ପ୍ରତିଦିନ ଆସନ୍ତି । କ୍ରମେ କ୍ରମେ ଅନେକ ବୋର୍ଡିଂକୁ ଆସିଲେ । ଶହ ଶହ ଛାତ୍ର ଝୁରୀଅନା ବଣଭିତରେ କ୍ଲାସରେ ବସିଥିଲାବେଳେ, ବାହାରକୁ କିଛି ସୋର ଶବଦ ଶୁଭେ ନାହିଁ । ସାକ୍ଷୀଗୋପାଳଙ୍କୁ ଦର୍ଶନ ପାଇଁ ଯେଉଁ ଯାତ୍ରୀମାନେ ଆସନ୍ତି, ସେମାନେ ଦଳ ଦଳ ହୋଇ ବନ ବିଦ୍ୟାଳୟକୁ ଦେଖିବାକୁ ଆସନ୍ତି ତୀର୍ଥସ୍ଥାନ ପରି । ସେମାନେ ଫେରିଯାଇ ତାଙ୍କ ରାଜ୍ୟରେ ପ୍ରଘଟ କରନ୍ତି ତାହାର ଅଭିନବତ୍ୱ ।



Digitized by srujanika@gmail.com

# ବୋର୍ଡିଙ୍ଗ ଯାତ୍ରା

ଯେଉଁ ଛଅବର୍ଷ ମୁଁ ସତ୍ୟବାଦୀ ସ୍କୁଲରେ ପଢ଼ିଲି, ତା'ର ପ୍ରଥମ ତିନିବର୍ଷ ଗାଁରୁ ଯିବା ଆସିବା କରୁଥିଲି । ଗାଁଠାରୁ ସ୍କୁଲ ପ୍ରାୟ ତିନିମାଇଲ (ପାଞ୍ଚ କିଲୋମିଟର, ଆଜିକାଲି ଭାଷାରେ) । ପ୍ରଥମ ମାଇଲ କଚା ମାଟି ରାସ୍ତା । ଗାଁରୁ ପ୍ରାୟ ୧୪ ଜଣ ପିଲା ଯାଆନ୍ତି । ମୁଁ ବୋଧହୁଏ ସର୍ବକନିଷ୍ଠ । ଘଣ୍ଟା କାହାରି ଘରେ ନଥାଏ । ବେଳ ମାପହୁଏ ଦୁଇ ପ୍ରକାରେ । ଗୋପୀନାଥଙ୍କ ଦେଉଳରେ ବଲ୍ଲଭ ଘଣ୍ଟା ବାଜିଲେ, ପିଲାଏ ବୁଝନ୍ତି ଗାଧୋଇବା ବେଳ ହେଲା । ତରବରରେ ପୋଖରୀରେ ଗାଧୋଇ, ଘରେ ତବତ ବା ପଖାଳ ଖାଇ ବାହାରିବାକୁ ହୁଏ ସ୍କୁଲ ପାଇଁ । ଆମ ଘର ଗାଁର ପଶ୍ଚିମ ମୁଣ୍ଡର ପ୍ରାୟ ଶେଷରେ । ସମସ୍ତେ ଯିବେ ସେ ବାଟରେ । ମୁଁ ଦାଣ୍ଡ ଦୁଆରେ ଠିଆ ନ ହୋଇଥିଲେ, ଯେ ଆଗ ଆସନ୍ତି, ମତେ ଡାକନ୍ତି । ସାଙ୍ଗ ହୋଇ ସମସ୍ତେ ଆସୁ । ପହରଣରେ  ଧୋତି, ଚାଦର । ବେଳେ ବେଳେ କେହି ଗେଞ୍ଜି ବା କମିଜ ପିନ୍ଧନ୍ତି । ସମସ୍ତଙ୍କର ନଗ୍ନପାଦ । ସ୍କୁଲରେ ପହଞ୍ଚୁ ଘଣ୍ଟା ବାଜିବା ଆଗରୁ । କେଉଁଦିନ ଡେରି ହେଲେ, କ୍ଲାସ ବାହାରେ ଠିଆ ହେବାକୁ ହୁଏ । ବିଳମ୍ବ ଦୋଷ ସ୍ୱୀକାର, ବିଳମ୍ବର କାରଣ ସଫେଇ, ପ୍ରଥମ ପିରିଅଡ ମାଷ୍ଟରଙ୍କର କ୍ଷମାଦାନ ପରେ, କ୍ଲାସ ପ୍ରବେଶ ହୁଏ । ପାଞ୍ଚ ମିନିଟ୍ରୁ ଅଧିକ ବିଳମ୍ବ ହୋଇଥିଲେ, ହେଡମାଷ୍ଟରଙ୍କ ପାଖକୁ ଯାଇ ଅନୁମତି ନ ଆଣିଲେ ଚଳେ ନାହିଁ । ସେପରି ତିନିଦିନ ବିଳମ୍ବ ପ୍ରବେଶ ହେଲେ, ଦିନକର ଅନୁପସ୍ଥିତି ବୋଲି ଧରାଯାଏ । ସେଥିପାଇଁ ଜୋରିମାନା ଦେବାର କଥା । କିନ୍ତୁ ମାସ ଶେଷରେ ତାହା ମାଫ କରାଯାଏ । ଶ୍ରୀରାମଚନ୍ଦ୍ରପୁର, ବନପୁର, ସମସରପୁର, ବୀର ରାମଚନ୍ଦ୍ରପୁର, ନୂଆ ଗାଁ, ଜୟପୁର, ଆମ ଗାଁ, ଏହି ପରି ତିନିମାଇଲ ପରିଧି ଭିତରୁ ବହୁ ପିଲା ଆସନ୍ତି । ସାତ ଆଠବର୍ଷ ବୟସରେ କିପରି ଏତେବାଟ ଚାଲିକରି ପ୍ରତିଦିନ ଆସୁଥିଲି, ଏବେ ଭାବିଲାବେଳକୁ ନିଜକୁ ଆଶ୍ଚର୍ଯ୍ୟ ଲାଗୁଛି । ସାଙ୍ଗମେଳରେ ବୋଧହୁଏ କଷ୍ଟ ଲାଘବ ହେଉଥିଲା । ଫେରିଲା ବେଳକୁ

Digitized by srujanika@gmail.com

ପ୍ରାୟ ମୁହଁସଞ୍ଜ । ସାରାଦିନ ଖାତା ଓପାସ । ଘରେ ପହଞ୍ଚିଲେ, ଚୁଡାଭଜା, କି ଉଖୁଡା କିମ୍ୱା ପଖାଳ ମିଳେ । ଦୀପ ଲାଗିଲେ, କିଛି ସମୟ ପଢ଼ିବାର କଥା । ସେଥିପାଇଁ ଗାଁ ଭିତରେ ଦୁଇ ତିନିଜାଗାରେ ପିଲାଏ ଏକାଠି ହୁଅନ୍ତି । ପାଳିକରି ପୁଲାଙ୍ଗ ତେଲ ଦେଇ ଦୀପ ଜାଳିବାକୁ । ରାତିପଢ଼ା ପାଇଁ ଇଚ୍ଛା ବା ଆଗ୍ରହ ନଥାଏ । ବାଧ୍ୟରେ ବସିବାକୁ ହୁଏ, କାରଣ ସ୍କୁଲ ମାଷ୍ଟରମାନଙ୍କ ମଧ୍ୟରେ ଗାଁମାନ ବଣ୍ଟା ହୋଇଥାଏ । ସେମାନେ ଦିନେ ଦିନେ ରାତିରେ ତଦାରଖ କରିବାକୁ ଆସନ୍ତି ଛାତ୍ରମାନେ ପଢୁଛନ୍ତି କି ନାହିଁ । ଖିଲାପ ଦେଖିଲେ, ତହିଁ ଆରଦିନ ସ୍କୁଲରେ କୈଫିୟତ୍ ଦେବାକୁ ହୁଏ ।

ଖରାଦିନେ ସ୍କୁଲ ସକାଳ ବସେ । ସେଥିପାଇଁ ବଡିଭୋରରୁ ବାହାରୁ ଗାଁରୁ । ଫେରିଲାବେଳକୁ ଉଦୁଉଦିଆ ଦିପହର । ବାଟରେ ଗଛମୂଳେ ଥକ୍କା ମାରୁ । ଏବେ ସ୍କୁଲ ଗଲେ, ପିଲାଙ୍କ ହାତରେ ଟିଫିନ୍ ବାକ୍ସ, ପାଣି ବୋତଲ, ବହି, ଖାତା, ମୁଣି ବା ବ୍ୟାଗ ଭିତରେ । ଆମବେଳେ ସେ ସବୁ ଅଜଣା ଥିଲା । ଘରକୁ ଆମେ ଫେରିଲାବେଳକୁ ଲୁଗାରେ ନାଳି ସଡକରୁ ନାଲିଧୂଳି, ମାଟି ରାସ୍ତାରୁ କଳାଧୂଳି ପଦଯାତ୍ରାର ନିଦର୍ଶନ ହୋଇ ରହେ, ଗାଁ ଧୋବା ଘରକୁ ସଜ କଚାପାଇଁ ଯିବାଯାଏ । ବାଟ କମାଇବା ପାଇଁ, ରାସ୍ତାରେ ସମସ୍ତ ପଥ ନଯାଇ, ଦୁଇ ଜାଗାରେ ରାସ୍ତା ଛାଡି ମାଳ ଭିତରେ, ବା ବିଲ ଭିତରେ କିଛି ଅଂଶ ଯାଉ, ପାଦକୁ ଅମଡା ହେଲେ ମଧ୍ୟ । ସ୍କୁଲରୁ ସକାଳ କ୍ଲାସ ସାରି ଫେରିଲାବେଳକୁ, ତଳ ତାତି, ଓପର ତାତି । କାହାରି ପାଦରେ ଯୋତା କି ଚଟି ନଥାଏ । ଏବେ ପିଲା ଜନ୍ମବେଳକୁ ହାଓ୍ୱାଇନ୍ ଚଟି ପାଦରେ । ଗାଁରୁ ଗଲାବେଳକୁ, ଆଖିବୁଜିଆ ଦୌଡ; କାଳେ ଡେରି ହୋଇଯିବ । ଲେଉଟିଲାବେଳେ, ଖରାସତ୍ତ୍ୱେ, ଗୋଟିଏ ଆକର୍ଷଣ ଥାଏ, ମାଳରେ ଆମ୍ବଗଛରୁ ଟେକାମାରି ଫଳ ଛଡେଇବାକୁ । ମୋ ଟେକା ଗଛ ଅଧରୁ ଲେଉଟେ । ବଡ ପିଲାଙ୍କ ବାହାଦୂରୀରେ ଯେଉଁ ଆମ୍ବ ପଡେ, ସେଥିରେ ସମସ୍ତଙ୍କ ଭାଗ । ଉଦୁଉଦିଆ ଦିପହର ହେଲେ ବି, ବାଡିଜଗିଲା ବାଉରାଣୀ ପାଟିକରି, ହାତରେ କଣିଖଣ୍ଡେ ଧରି ଦଉଡିଆସେ ଆମକୁ ଘଉଡାଇବା ପାଇଁ । ସେ ଗୋଟେ ଗଛମୂଳକୁ ଆସିଲେ, ଆମେ ଧାଉଁ ଆଉ ଏକ ଗଛ ପାଖକୁ । ଆମେ ବ୍ରାହ୍ମଣ ପିଲା, ଆମକୁ ତ ସେ ଛୁଇଁ ପାରିବ ନାହିଁ, ବାଡେଇବା ଦୂରର କଥା । ପାଟିରେ ତାର ବାଡବତା ନ ଥାଏ । ଯାହା ଆସେ, ଗାଳିଦିଏ । କିଛି ସମୟ ପରେ ଆପେ ନିରସ୍ତ ହୋଇଯାଏ ।

ବର୍ଷାଦିନ କଥା ମନେ ପଡିଲେ, ଦେହ ଶୀତେଇ ଯାଉଛି । ବର୍ଷାତି ଜଣା ନଥିଲା । ଛତା ସମସ୍ତଙ୍କର ନଥାଏ । ଗାଁରୁ ଜୟପୁର ମୁଣ୍ଡ ଜଗନ୍ନାଥ ସଡକ ପର୍ଯ୍ୟନ୍ତ

Digitized by srujanika@gmail.com

ମାଇଲକ ରାସ୍ତା ଆଣ୍ଠୁଏ କାଦୁଅ । ମଝିରେ ମଝିରେ ପାଣି ଜମେ ଓପର ପାଣି ଅପେକ୍ଷା, ତଳପାଣି କାଦୁଅ ବଡ ଅକଡିଆ ଲାଗେ । ଲୁଗାକୁ ଫେରିକଛା ମାରି ଆଣ୍ଠୁ ଉପରକୁ ଟେକି, ତା ଉପରେ ଗାମୁଛା ଗୁଡାଇ ଆମେ ଯାଉ, କାଦୁଅଛିଟା, ପାଣିଓଦାରୁ ଲୁଗା ଓ ଅଣ୍ଟାତକ ରକ୍ଷା କରିବାପାଇଁ । ବର୍ଷା ପଡିଲେ, ଗୋଟିଏ ଛତା ତଳକୁ ୩ଟି ମୁଣ୍ଡ ଆସେ । ତାଳପତ୍ର ପଖିଆରେ ଦିଜଣ ପଶନ୍ତି । ଓପର ଫୁଙ୍ଗୁଳା ଦେହ ତିନ୍ତିଲେ, ସ୍କୁଲରେ ପହଞ୍ଚି ଗାମୁଛାରେ ପୋଛିଦେଲେ ଚଳିଯାଏ । ବର୍ଷା ଚାରିମାସ ବଡ କଷ୍ଟ । ମାଷ୍ଟରମାନେ ଜାଣି ନ ଜାଣିଲା ପରି ରହନ୍ତି । ସବୁ ସ୍କୁଲଠାରୁ ଅଲଗା, ବନ ବିଦ୍ୟାଳୟ ତ କଲେ, ଖରାଦିନ ଛୁଟି ନ କରି ବର୍ଷାଛୁଟି କାହିଁକି କଲେ ନାହିଁ କେଜାଣି । ବର୍ଷାକାଳରେ ସ୍କୁଲ ବଣରେ ହୁଏ ନାହିଁ । ଚାଳ ସାହାଲା ତଳକୁ ଆସେ । ସେ ସମୟରେ ଛାତ୍ର ଉପସ୍ଥାନ କମେ । ଜର, ସର୍ଦ୍ଦି ଘରେ, ଘରେ । ଅଦାରସ, ମହୁ ପିପ୍‌ପଳୀ ଗୁଣ୍ଡରେ କେତେ କମିବ ? ମୁଁ ଅନେକ ଦିନ ସ୍କୁଲରୁ ଫେରି ହାଲିଆ ହୋଇ ଶୋଇପଡେ । ରାତିରେ ପଢ଼ିବାକୁ କେହି ଡାକିବାକୁ ଆସିଲେ ନାନୀ (ପିଇସି ମଣିନାନୀ) ମନା କରିଦିଏ । ମୋ କଷ୍ଟ ପାଇଁ ସେ କଷ୍ଟ ପାଏ । ତା ପାଖରେ ରାତିରେ ଶୋଇଲାବେଳେ, ଦିନେ ଦିନେ ପାଦରେ ତେଲ ଘଷିଦିଏ । ପାଦ ଆଙ୍ଗୁଠି ମୂଳରେ ବାଳିଜନ୍ଦା ଘା ହୋଇ ଦରଜ ହୋଇଥାଏ । ତେଲ ଫୁଟାଇ ସେଥିରେ ଲଗାଇ ଦିଏ । ଏତେ ମମତା ଆଉ କେଉଁଠି ପାଇନାହିଁ ।

ବଡି ସକାଳୁ ଉଠି, କ୍ଲାସ ପଢ଼ା କରିବାକୁ ପଡେ । ପଢ଼ା ନାଁକୁ । ସ୍କୁଲକୁ ଯିବା ଚିନ୍ତାରେ ଆମେ ଯେତେ ବ୍ୟସ୍ତ ନଥାଉ, ତାଠାରୁ ବେଶି ଚିନ୍ତିତ ଥାଆନ୍ତି ଘର ମାଇପେ । ଭାତ, ଡାଲି ସକାଳୁ ରାନ୍ଧିବା ପାଇଁ ଆଗରୁ ଶୁଖିଲା ବରଡା, ଫୋପଡା, ହାଣ୍ଡିଶାଳ ଭାଡିଉପରେ ରଖା ହୋଇଥାଏ । କାଠ ଜାଳିବାର ସୌଖୀନ ଆମଘରେ ନଥିଲା । ଗାଁରେ ଜଣେ ଦିଜଣଙ୍କୁ ଛାଡିଦେଲେ, ସମସ୍ତଙ୍କ ଘରେ ଜାଳେଣି, ନଡିଆ ଗଛରୁ ଖସା ବରଡା, ଶୁଖିଲା ଆମ୍ବ, ପଣଶ ଡାଳ, ପତ୍ର । କେବଳ ଶୀତଦିନ ନିଆଁ ଧୂନି ପାଇଁ ଗୋଟିଆ ଗୋଟେଇ ବରକାଠ ଗୁଣ୍ଡଥାଏ । ଗାଁ କୋଠର ଦଣ୍ଡାରୁ ଗଛ କଟାହେଲେ, ଯାହାର ପଇସା ବହପ ପାଏ, ସେ କିଛି କାଠ କିଣି, ବିବାହ, ବ୍ରତ ପାଇଁ ସାଇତି ରଖନ୍ତି । ନିତି ଦିନିଆ ରନ୍ଧାରନ୍ଧିରେ ତାହା ବ୍ୟୟ ହୁଏ ନାହିଁ ।

ଆମ ଘର ଦେଢ଼ବଖରା । ବଖରାକ ୬ ହାତ ପୂର୍ବ ପଶ୍ଚିମ । ଦାଣ୍ଡପଟକୁ ସେଇ ନଅହାତ ଭିତରେ ଦୁଇଟି କଚା ଚାଳଘର । ଗୋଟିଏ ଦାଣ୍ଡଘର, ଅର୍ଥାତ ଦାଣ୍ଡକୁ ଯିବାପାଇଁ ଦୁଆର ଥାଏ । ସେହି ଘରେ ନାନୀ ଓ ମୁଁ ଶୋଉ । କୁଣିଆ

Digitized by srujanika@gmail.com

ମାଇପେ କିଏ ଆସିଲେ, ସେହି ଘରେ ଶୁଅନ୍ତି । ରାତିରେ ଶୋଇବା ପାଇଁ, ସପ ମଶିଣା ବା ମୁନ୍ଦରା ଉପରେ କନ୍ଥା । ଦିନରେ ସେ ଘର ମୁକୁଳା, ଯିବା ଆସିବା ପାଇଁ ଦାଣ୍ଡଘର । ଦାଣ୍ଡପିଣ୍ଡା ଅଣ ଓସାରିଆ, ଚାରିଫୁଟ୍‌ରେ ତିନିଫୁଟ୍ । ଗାଁ ଚଳଣି ପାଇଁ ଯଥେଷ୍ଟ । ଯେ ଗାଁରୁ ଆସନ୍ତି, ମାଟି ପିଣ୍ଡାରେ ବିନା ଆସନରେ ବସିବାରେ କିଛି କୁଣ୍ଠା ନ ଥାଏ । ବାହାର ଗାଁର କିଏ କେବେ କ୍ୱଚିତ ଆସିଲେ, ପିଣ୍ଡାରେ ପିଢ଼ା ଖଣ୍ଡିଏ ପକାଇ ତାଙ୍କର ଅଭ୍ୟର୍ଥନା ସମାପ୍ତ ହୁଏ । ଆଗନ୍ତୁକର ରାତ୍ରିବାସ ଲୋଡାହେଲେ, ଦାଣ୍ଡଘର ଆମେ ଛାଡି, ଭିତର ପିଣ୍ଡାରେ ଶୋଉ । ଦାଣ୍ଡପଟର ଅନ୍ୟ ଘରଟିରେ ବୋଉ ଶୁଏ । ସେ ଘରେ ଖଣ୍ଡିଏ ଖଟ, ଘରର ତିନିଭାଗ ମାଡି ବସିଥାଏ । ଖଟତଳେ ସବୁ ଜିନିଷପତ୍ର । ଦାଣ୍ଡ ଘରେ ଚାଳ ତଳକୁ ଗୋଟିଏ ଭାଡିଥାଏ । ତହିଁକି ବାଟ, ବୋଉ ଶୋଇବା ଘରୁ । ନିଶୁଣି ପକାଇ ଭାଡିକି ଉଠନ୍ତି । ଭାଡିରେ ବହୁ ସମ୍ଭାର, ଯଥା, ଆମ୍ବୁଲ ହାଣ୍ଡି, ପେଡି ପେଟରା । ସେ ଅଂଶ ଗୃହସ୍ଥଳୀର ଷ୍ଟୋରରୁମ୍, ବୋଉ ଶୋଇବା ଘରୁ ଗୋଟିଏ ପଟ ଦାଣ୍ଡଆଡକୁ କାନ୍ଥଦେଇ ଅଲଗା ହୋଇଥାଏ, ଦିଅଁଙ୍କ ଘର ପାଇଁ । ସେଠାରେ ଦାଣ୍ଡପଟକୁ ଖଣ୍ଡିଏ ଛୋଟିଆ ଝରକା ଲାଗିଥାଏ, ଦିନ, ରାତି ବାରିବା ପାଇଁ । ଦିଅଁ ଖଟୁଲିରେ ବସି ଥାଆନ୍ତି । ତାଙ୍କ ଆଗକୁ ଅଳ୍ପ ଜାଗା ଛାଡିଦେଇ, ଚାଉଳହଣ୍ଡା ଥାଏ ସେ ଘରେ । ସେ ଘରକୁ ଗାମୁଛା, ମଠା ବା ଧୁଆଲୁଗା ନ ପିନ୍ଧି କେହି ଯିବା ନିଷେଧ । ଅତି ଦରକାର ପଡିଲେ, ମୁଁ ଲଙ୍ଗଳା ହୋଇ ଯିବାକୁ ହୁକୁମ୍ ମିଳେ, ଦିଅଁଙ୍କ ପିତଳ ଥାଳିଆ, ଗିନା, ପାତ୍ରୀ, ଦୀପ ବାହାରକୁ ଆଣିବା ପାଇଁ ମଜା ହେବା ସକାଶେ । ବୋଉ ଶୋଇବା ଘରର ଯେଉଁ ଅଂଶ ଖଟ ବାହାରେ ଥାଏ, ତାହା ମରଦଙ୍କ ଖାଇବା ଜାଗା । କୁଣିଆ ଥିଲେ, ଦାଣ୍ଡଘରେ ଖିଆହୁଏ । ସକାଳ ଓ ରାତି ଖାଇବାରେ ପରିପାଟୀ ଥିଲା । ଓଳିଆ ହୋଇ, ପାଣିଛିଞ୍ଚା ହୁଏ । ମୁରୁଜ ପଡେ । ପିଢ଼ା ଥୁଆହୁଏ । ପାଣିଢ଼ାଳ ରହେ । ଯଥା ସମ୍ଭବ, ପୂର୍ବକୁ ମୁହଁକରି ଖାଇବାକୁ ବସୁ । ବାପଥିଲା ପୁଅର ଦକ୍ଷିଣକୁ ମୁହଁ କରି ଖାଇବା ବାରଣ । ଗୋଡ, ହାତ ନ ଧୋଇ, ଖାଇବା ପତ୍ରରେ ବସିବା ମନା ଥାଏ । ଦିଅଁଙ୍କ ପୂଜା ପୂର୍ବରୁ ଶଙ୍ଖୁଡି ଆହାର ଘରେ କାହାରି ପ୍ରାପ୍ୟ ନ ଥିଲା । ହାଣ୍ଡିଶାଳେ ପଛେ ଚୁଲି ନ ଜଳୁ ଏ ବିଧିରେ ବ୍ୟତିକ୍ରମ କଳ୍ପନାତୀତ । ଦାଣ୍ଡସାହାଲା ଘରର ଏ ପ୍ରକାର ବ୍ୟବହାର ପ୍ରାୟ ସମସ୍ତଙ୍କ ଘରେ ସମାନ । ଯାହାର ଘର ଆତୟନ ଆହୁରି କ୍ଷୁଦ୍ର, ତାର ଗୋଟିଏ ଘରେ, ସବୁ ଚଳେ, ପୂଜା, ଖାଇବା ଶୋଇବା ଓ ବସା ଉଠା । ସେଥିରେ ନା ଥାଏ ସଙ୍କୋଚ ନା ଅସୁବିଧା । ମନୁଷ୍ୟର ଚାହିଦା କେତେ ଅଳ୍ପ ପରିସର ମଧ୍ୟରେ ଓ

Digitized by srujanika@gmail.com

କେତେ ସହଜରେ ମେଣ୍ଟି ଯାଇପାରେ ତାହା ଆମ ପୂର୍ବପୁରୁଷ କେବଳ ଜାଣି ନ ଥିଲେ, ଆୟତ୍ତ ମଧ କରିଥିଲେ । ଚାହିଦା ମେଳାଇଲେ, ତାହା ଅସରନ୍ତି ।

ଆମ ଦାଣ୍ଡ ସାହାଲା ପରେ ମଝି ସାହାଲାରେ ବଖରେ ଘର ଓ ତଳ ସାହାଲାକୁ ଯିବା ପାଇଁ ବାଟ ଗଳି । ସେ ଘରେ ଦଦେଇ ରହନ୍ତି । ଖଣ୍ଡିଏ ଖଟ ଓ ଗୋଟିଏ ଛୋଟ କାଠ ଆଲମାରୀରେ ଆସବାବ ଶେଷ । ଆଲମାରୀରେ ଓଡ଼ିଆ ବହି, ଆଲମାରୀ ଉପରେ ସାଧା କାଗଜର ଖାତା ଓ ଆଳି ମାଳିକା । ନନା ପୁରୀରେ ମାଷ୍ଟର ଥିଲାବେଳେ ଜାତୀୟ ଆନ୍ଦୋଳନପନ୍ଥୀ ସଭାସମିତି ପ୍ରଭୃତିରେ ମୁକ୍ତାର ରାମଚନ୍ଦ୍ର ଦାଶଙ୍କ ନେତୃତ୍ୱରେ ସମ୍ପର୍କ ରଖିଥିଲେ । ସେହି ସୂତ୍ରରୁ ଅନେକ ଗୁଡିଏ ଜାତୀୟତାବୋଧ ଦୁହା, କାନ୍ଥରେ ମାଇଲା ପରି ଅଣଓସାରିଆ ମୋଟା କାଗଜରେ ବଡ ଅକ୍ଷରରେ ଛପା ହୋଇ ସେ ଆଲମାରୀରେ ଥିଲା । କେତୋଟି ମନେ ପଡୁଛି— ''ମାତୃଭାଷା, ମାତୃଭୂମି, ଉଭୟେ ଜନନୀ'', ''ବାବୁ ପଣିଆ ଚୂଲୀକୁ ଯାଉ ଦେଶର କଉଡି ଦେଶରେ ରହୁ'', ''ଫୁଲ ବଉଳ ବେଣୀ'' ଚଟୀବହି ଥାକେ ଥିଲା । ନୀଳମଣି ବିଦ୍ୟାରତ୍ନଙ୍କ ରଚିତ ଆଉ ଥାକେ ଛୋଟ ବହି ''ରତ୍ନରେଣୁ'' ନାମର କେତେଗୁଡିଏ ବହି ସେ ଆଲମାରୀରେ ଥିଲା । ମୋ ଚୋରି ଅର୍ଥାତ୍ ଲୁଚାଇକରି ନେବା, ଆରମ୍ଭ ସେହିଠାରୁ । ଗାଁରୁ ଯେଉଁ ପିଲାମାନେ ସତ୍ୟବାଦୀ ସ୍କୁଲକୁ ଯାଉଥିଲେ, ତାଙ୍କ ଭିତରେ ସିଦ୍ଧ, ସୋମନାଥ ଦି'ଭାଇ ଥିଲେ । ମାମୁଁ ଘର ତାଙ୍କର ଆମ ଆଗଦୁଆରି । ସିଦ୍ଧ ଆଗୁଆ ପିଲା, ଆମ ସମସ୍ତଙ୍କର ନେତା ପରି । ଆମ ଘର ଆଲମାରୀରୁ ଛପାବହି, ସାଧା କାଗଜ ଆଣିବାକୁ ମତେ କହନ୍ତି, ମୁଁ ଦଦେଇ ନ ଥିବାବେଳେ, ଓରଉଣ୍ଡି, ପଟା ମଲାଟଥିବା ଖାତା ଭିତରୁ କେତେ ପୃଷ୍ଠା ଚିରି କାଗଜ ନେଇ ତାକୁ ଦେଇଆସେ । ସିଦ୍ଧ ପିଲାଙ୍କ ଭିତରେ ବାଣ୍ଟିଦିଏ । ମୋର ଖାତିର ବଢ଼ିଲା; ଚୋରି ମଧ ଅଧିକ ଚାଲିଲା । ଛପାବହି ସେହିପରି ଅନ୍ତର୍ଦ୍ଧାନ ହେବାକୁ ଲାଗିଲା । ଏତିକି ମୋର ହେତୁ ହେଲାନାହିଁ ଯେ, ନେଲାବେଳେ ସିନା କେହି ଦେଖୁନାହାନ୍ତି, ପରେ, ବହିଥାକଶୂନ୍ୟ ଖାତାଶୂନ୍ୟ ହୋଇଗଲେ, ସବୁକଥା ଅକ୍ଳେଶରେ ଧରାପଡିଯିବ । ବିରାଡି ଆଖିବୁଜି ଦୁଧପିଏ, ଭାବେ ଅନ୍ୟ କେହି ଦେଖୁନାହାଁନ୍ତି, ତେଣୁ ସେ ଧରା ପଡିବ ନାହିଁ । ପଛରୁ ଠେଙ୍ଗା ବାଜିଲେ ଅକଲଆସେ । ଦିନେ ଦଦେଇ କିଛି ଲେଖିବା ପାଇଁ କାଗଜ ଆଣିବାକୁ ଯାଇ ଦେଖିଲେ ଖାତାର ଦୁଇପଟେ ମଲାଟ ଅଛି, ଅନ୍ତଃଶୂନ୍ୟ । ଆଲମାରୀ କବାଟ ଖୋଲିଲାବେଳକୁ, ବହି ମଧ ବିରଳ । କ୍ରୋଧରେ ଗର୍ଜି ଉଠିଲେ । ସେ ରାଗିଲେ, ଘରେ ସମସ୍ତଙ୍କ ପିଳେହି ପାଣି । ମୁଁ ସେତେବେଳେ ହାବୁଡେ ପଡିଥିଲେ

Digitized by srujanika@gmail.com

ମୋର ଦଶା ଶେଷ ହୋଇ ଥାଆନ୍ତା । ରାଗିଲାବେଳେ ହାତ ଚଳେଇବା, ଫିଙ୍ଗା ଫୋପଡା କରିବା ମାମୁଲି ଘଟନା ଥିଲା । ଆମେ ସବୁ ଆତଙ୍କରେ ଯେ ଯୁଆଡେ ଲୁଚିଯାଉ । ତାଙ୍କର ସେତେବେଳେ ଗୋଟିଏ ଝିଅ ଥିଲା; ଶିରିଆ ନାନୀର ମୋ ପ୍ରତି ଭାରି ଶରଧା । ମତେ ମାଡରୁ ବଞ୍ଚାଇବା ପାଇଁ, ଆପେ ନିଜକୁ ଆଡୁଆଳ କରି, ଚାପଡେ, ବିଧେ, ଖାଇଲେ ସେ ପରୁଆ କରେ ନାହିଁ, ଦଦେଇଙ୍କ ରାଗ ତାଳପତ୍ର ନିଆଁ ପରି । ଉଠେ ଯେପରି, ଯାଏ ସେପରି । ସେହି ଅଳ୍ପ ବେଳତକ ସମ୍ଭାଳି ନେବା ଥିଲା ଆମ ଘର ଲୋକଙ୍କର ଅଭ୍ୟାସ । ଦେଠେଇ ଓ ଶିରିଆ ନାନୀଙ୍କର ଅକାଳ ମୃତ୍ୟୁ ପରେ ଦଦେଇ ବଦଳି ଗଲେ । ରୂଢ଼ତା ଉଭେଇ ଗଲା । ପୁନର୍ବିବାହ ପରେ ସେ ହେଲେ ଗୁଣବନ୍ତ, ଯଶଃସ୍ୱୀ, ପୁତ୍ରମାନଙ୍କର ଜନକ । ଜ୍ୟେଷ୍ଠପୁତ୍ର ଗଙ୍ଗାଧର ପୁରୀର ପ୍ରଖ୍ୟାତ ଓକିଲ, ଓଡିଶାର ମନ୍ତ୍ରୀମଣ୍ଡଳର ପୁନଃ ପୁନଃ ସଦସ୍ୟ । ଅନ୍ୟ ପୁତ୍ର ଚନ୍ଦ୍ରଶେଖର, ସାମ୍ବାଦିକ, ସାହିତ୍ୟକ,'ପ୍ରଜାତନ୍ତ୍ର' କାଗଜର ସମ୍ପାଦକ, ଅନ୍ୟ ପୁତ୍ର ଶଶୀ ଶେଖର, ରାଜକିଶୋର ଅନ୍ୟ କର୍ମକ୍ଷେତ୍ରରେ ପ୍ରତିଭାବାନ୍ ଓ ପ୍ରତିଷ୍ଠିତ । ଦଦେଇ (ଦାମୋଦର) ଥିଲେ ବେଲ, ଓପର ଟାଣ, ଭିତର ରସାପ୍ଲୁତ ।

ଏତେ କାଗଜ, ବହି ଆଲମାରୀରୁ କିଏ ନେଲା, ଏକଥା ତାଙ୍କୁ ଯେତେ ନ ବାଧିଲା, ସେ ସେଘରେ ଚଳ ବିଚଳ ହୋଇ, କିଛି ଏତେ ଦିନ ଯେ ନ ଜାଣି ପାରିଲେ, ସେଥିରେ ସେ ବୋଧହୁଏ ଟିକିଏ ଲଜ୍ଜିତ ବୋଧକଲେ, କାରଣ ଆଉ ସେ ବିଷୟରେ ବେଶି ଉଚ୍ଚବାଚ୍ୟ ନକରି, କଥାଟା ଚୁପ୍ ପଡିଗଲା । କିନ୍ତୁ ପ୍ରକୃତ ଦୋଷୀ ଶିରିଆନାନୀ ଓ ମଣିନାନୀଙ୍କର ଅଜଣା ରହିଲା ନାହିଁ । ମୁଁ ଚୋର ପଟିଆ ହୋଇ, ଦଦେଇଙ୍କଠାରୁ ଲୁଚି ଲୁଚି କେତେଦିନ କଟାଇଲା ପରେ, ପୁଣି ସ୍ୱାଭାବିକ ଅବସ୍ଥା ଫେରି ଆସିଲା । ଆଉ ଆଲମାରୀରେ ହାତ ଦେଇନାହିଁ । କିନ୍ତୁ ଦୋଷର କ୍ଷାଳନ ବୋଧହୁଏ ହେଲା ନାହିଁ, ଦଣ୍ଡର ଅଭାବରୁ ।

ସେହି ସମୟରେ ଥରେ ବୋଉ ଓ ମୁଁ ଖୋର୍ଦ୍ଧା ଯାଇଥିଲୁ । ବଡ ମାମୁଁ ରଘୁନାଥ ମିଶ୍ରେ ମାଟ୍ରିକ୍ ନ ପଢ଼ିଥିଲେ ମଧ୍ୟ, ସରକାରୀ ଖାସ ମାହାଲ ଅଫିସରେ କିରାଣୀ ଥାଆନ୍ତି । ଆକାରରେ ଲମ୍ବା, ଚଉଡା । ଦେବୀ ଭକ୍ତ । ଆୟ ଅଳ୍ପ, ବ୍ୟୟରେ ସୁପୃଣ । କଚେରୀ ପାଖରେ ଗୋଟିଏ ଘରେ ବସା କରିଥାଆନ୍ତି । ମାମୁଁ ମାଇଁ ଦି ପ୍ରାଣୀ । ପିଲାପିଲି ନ ଥିଲେ । ମାଇଁ ଡାହାଳିଆ, କଥାବାର୍ତ୍ତାରେ ନିପୁଣା । ସ୍ନେହୀ ପ୍ରକୃତି । ବୋଉ ପ୍ରତି ପ୍ରସନ୍ନା । ମୋର କାଛୁ ହେଉଥାଏ ବୋଲି ବୋଉ ଯାଇଥିଲା ଚିକିତ୍ସା କରାଇବା ପାଇଁ । ମାମୁଁ ଡାକ୍ତର ଡାକିଲେ, ଔଷଧ କଲେ । ଦଶବାର

Digitized by srujanika@gmail.com

ଦିନରେ କାନ୍ଦୁ ଭଲହେଲା । ବାକୀ ଦଶବାର ଦିନ ରହିଲୁ ମନ ଖୁସିରେ । ବଡ ମାମୁଁ, ବଡ ମାଛର ପ୍ରିୟ । ଖାଇବା ଥିଲା, ପ୍ରଧାନ କାର୍ଯ୍ୟ ଘରର । ମାଛ ଆସେ ଦେବୀଙ୍କର ପୂଜା ପାଇଁ, ସେ ବାହାନାକୁ ସମସ୍ତେ ପ୍ରଶୟ ଦେବା ସ୍ୱାଭାବିକ । ବରୁଣେଇ ପାହାଡକୁ ଗଲୁ ବରୁଣେଇଙ୍କ ପୂଜା ପାଇଁ । ବଡମାମୁଁ ଅଫିସରୁ ଫେରିଲେ, ମୁଁ ତାଙ୍କ ଅର୍ଦଳୀ ଅପର୍ତ୍ତି ସାଙ୍ଗରେ ଯାଏ କଚେରୀ ପାଖ ବଜାରକୁ । ଅପର୍ତ୍ତି ସଉଦା କରେ, ମୁଁ କାବା ହୋଇ ଦେଖୁଥାଏ ରାସ୍ତା ପାଖ ଏସ୍.ଡି.ଓ ହତାରେ ଟେନିସ୍ ଖେଳ । ଖେଳୁଥାନ୍ତି ମାତ୍ର ଦୁଇଜଣ । ଜଣେ ସାହେବ, ଜଣେ ମେମ୍ । ସାହେବ ଦେଖିବା ମୋର ସେଇ ପ୍ରଥମ । ହର୍‌ସଫିଲ୍‌ଡ ଆଇ.ସି.ଏସ୍, ଏସ୍.ଡି.ଓ । ଖେଳ କିଛି ବୁଝୁ ନ ଥାଏ; ଖେଳାଳିଙ୍କୁ ଦେଖିବା ଚମତ୍କାର ଲାଗୁଥାଏ । କିଏ କହିବ, ସେଠାରେ ସାହେବିଆନାର ମୋହ ମତେ ଗ୍ରାସ ନ କଲାବୋଲି । ଆଉ ଯେତେ ଦିନ ଖୋର୍ଦ୍ଧାରେ ରହିଲୁ, ଅପର୍ତ୍ତି ଯାଉ ବା ନଯାଉ, ମୁଁ ଯାଉଥାଏ ସେ ଖେଳୁଆଡଙ୍କୁ ଟେନିସ କୋର୍ଟରେ ଦେଖିବାକୁ ।

ବଡ ମାମୁଁ ଧୋତି, କମିଜ ପିନ୍ଧି ଅଫିସକୁ ଯାଆନ୍ତି । ରୂପା ବୋତାମ କମିଜରେ ଲଗାନ୍ତି । ହପ୍ତାରେ ଥରେ କମିଜ ପଡେ ଧୋବାଘରେ । ଆମେ ଖୋର୍ଦ୍ଧାରୁ ଫେରିବା ପୂର୍ବଦିନ ଧୋବା ଆସିବାରୁ କମିଜରୁ ରୂପା ବୋତାମ ବାହାର କରି ମାଇଁ କାନ୍ଥକୁରାରେ ରଖି କାମିଜ ଧୋବାକୁ ଦେଲେ । ଆଉ ଯେ ବୋତାମ ପୁଣି ଆରଦିନ ସକାଳେ ଲୋଡାହେବ ସେ ଖିଆଲ ମୋର ହେଲା ନାହିଁ । ମୁଁ ଚୁପ୍ କରି ବୋତାମ ଚାରୋଟି ଗୁନ୍ଥା ସୂତାଟିକୁ ଆଣି ମୋ ଅଣ୍ଟାରେ ଖୋସି ଦେଲି । ରାତିଯାକ ଛଟପଟ ବୋତାମ କେମିତି ମୋ କାମିଜରେ ଲଗାଇବି । । କାମିଜରେ ବୋତାମ ଲଗାଇବାର କଣା ନଥାଏ । ମାଇଁଙ୍କ ପାନ ପେଡିରୁ ଗୁଆକାତି ଆଣି ମୋ କାମିଜରେ କଣା କରିବାର ଚେଷ୍ଟା କରି ସଫଳକାମ ହେଲାବେଳକୁ, ବୋତାମଠାରୁ କଣା ବଡ ହୋଇଗଲା । ଛାତିଗଲା, ପେଟ ପୂରିଲା ନାହିଁ । ଲୋଭ କିନ୍ତୁ ନ ଛାଡେ । ଗାଁକୁ ଆଣିଲେ ଯାହାହେବ ବୋଲି ବୋତାମତକ ରଖିଥାଏ । ତା ପରଦିନ ସକାଳୁ ଶଗଡରେ ଜଟଣୀ ଷ୍ଟେସନକୁ ଆସିବାର କଥା । ଆମେ ବାହାରିଲା ବେଳକୁ ବୋତାମ ଖୋଜାହେଲା । ମାମୁଁ ପଚାରିଲେ ମାଇଁକି; ମାଇଁ ପଚାରିଲେ ଅପର୍ତ୍ତିକୁ । କୁଳାଙ୍ଗାର ଭଣଜାକୁ କିଏ କାହିଁକି ସନ୍ଦେହ କରିବ । ସେ ଖୋଜା ଖୋଜି ଚାଲିଥାଏ, ଆମେ ଅପର୍ତ୍ତି ସାଙ୍ଗରେ ଶଗଡରେ ବସିଲୁ । ଜଟଣୀ ଷ୍ଟେସନ ପାଖ ହେଲାବେଳକୁ ମୋ ମନ ଅସ୍ଥିର । ବୋତାମ ପାଖରେ । ବୋଉ ଜାଣିନାହିଁ । କାଳେ ବୋଉକୁ ମାମୁଁ,

Digitized by srujanika@gmail.com

ମାଇଁ ସନ୍ଦେହ କରିବେ, ଏଇ କଥା ମତେ ଘାରୁଥାଏ । ଶେଷରେ, ଶଗଡରୁ ଷ୍ଟେସନ୍‌ରେ ଓହ୍ଲାଇଲାବେଳେ, ଅପର୍ତ୍ତିକୁ ବୋତାମତକ ଦେଇଦେଲି । କଅଣ ମିଛ କଇଫିୟତ୍ ଦେଲି ମନେ ନାହିଁ, ଅପର୍ତ୍ତି ନେଇ ମାଇଁକୁ ଦେଲା କି ନାହିଁ, ବା ଦେଇ କ'ଣ କହିଲା, ଜାଣେ ନାହିଁ । କିନ୍ତୁ ପରେ, ମାମୁଁ ମାଇଁ ଗାଁକୁ ଆସିଛନ୍ତି । ପୂର୍ବର ସ୍ନେହ ପାଇଛି । ବୋତାମ କଥା କିଛି ଉଠିନାହିଁ । ବୋଧହୁଏ, ଅପର୍ତ୍ତିପାଖରେ ବୋତାମ ରହିଲା, ମାମୁଁ ମାଇଁ ସେ ନେଲାବୋଲି ସନ୍ଦେହ କରି ଚୁପ୍ ରହିଥିବେ । ପରବର୍ତ୍ତୀ କାଳରେ ବହୁ ସମୟରେ ବହୁ ପଦାର୍ଥ ଓ ଅର୍ଥ ମୋର ଓ ଆମ ଘରୁ ଚୋରି ଯାଇଛି (ଏବେ ବି ଯାଉଛି) । ପିଲାଦିନର ସେହି ଦୁଇଟି ଘଟନା ମୋର ମନେ ପଡେ । ମୁଁ କେବଳ ଥରେ ଥରେ ସମସ୍ତଙ୍କୁ ପଚାରି ତୁନି ରହେ । ଏ ପ୍ରକାର ଚୋରି ଘଟନା ଆମ ଜଣାଶୁଣା ମହଲରେ ଏତେ ଜଣା ଯେ ମୋର ମଝିଆ ବୋହୁ, ତା ପୁଅ କଟକକୁ କଲେଜରେ ପଢ଼ିବା ପାଇଁ ଆସିବା ପରେ ପରେ, ତାକୁ ଚିଠି ଲେଖିଲା, ''ଚାନ୍ଦନୀଚଉକରେ ଘରୁ ଚୋରି ବହୁତ ହୁଏ, ସାବଧାନରେ ଥିବୁ ।'' ଚୋର ମା କାନ୍ଦେ ନାହିଁ, କାନ୍ଦିଲେ ଦୁଆର ଦେଇ କାନ୍ଦେ ।

ଆମ ମଝି ସାହାଲା ପରେ ବାଡି ଆଡକୁ ତଳ ସାହାଲାରେ ଦୁଇଟି ନୁଆଣିଆ ଚାଳଘର । ଗୋଟିଏ ଦୁଇ ଭାଗରେ ବିଭକ୍ତ । ଗୋଟିଏ ପଟରେ ଚୂଲୀ, ଆରପଟେ ତେଙ୍ଗଡା । ରନ୍ଧାସରିଲେ ହାଣ୍ଡି ଯାଏ ତେଙ୍ଗଡା ଉପରକୁ । ତା ଭିତରକୁ କାହାରି ପ୍ରବେଶ ନ ଥାଏ । ହାଣ୍ଡି ମାରାହେବା ଭୟ ସମସ୍ତଙ୍କୁ ଦୂରେଇ ରଖେ । ଯେ ରାନ୍ଧେ, ତାହାରି କେବଳ ଅଧିକାର ତେଙ୍ଗଡାରୁ ହାଣ୍ଡି ଆଣିବା ଓ ରଖିବା । ହାଣ୍ଡି ଚକିରେ ପଖାଳ ଗଣ୍ଡିଏ ଯାହା ଥାଏ, ତାହା ଭୋକିଲା ପେଟର ଆକ୍ରମଣରୁ ସୁରକ୍ଷିତ ହେବାର ଏହାଠୁ ବଳି ଆଉ ସହଜ ପନ୍ଥା କଅଣ ହୁଅନ୍ତା । ହାଣ୍ଡିଶାଳକୁ ଲାଗି ଅନ୍ୟ ଘରଟିରେ ଢ଼ିଙ୍କି ପଡିଥାଏ, ବାଡି ଆଡକୁ ଯିବାପାଇଁ ଦୁଆର ଥାଏ । ଏଇଟା ବୟସ୍କ ମାଇପିଙ୍କର ବୈଠକଖାନା । ହାଣ୍ଡିଶାଳ, ବାଡିଘର, ଏଇ ଦୁଇଥିରେ ମାଇପିଙ୍କର ସମୟ ସବୁ କଟେ, ଶୋଇବା ସମୟ ଛଡା । ଢ଼ିଙ୍କି କୁଟିବା, ବୋହୂମାନଙ୍କର, ଢ଼ିଙ୍କି ମୁହଁରେ ଧାନ ପୂରାଇବା, ଚାଉଳ କାଢ଼ିବା, ଚଷୁ ପାଛୋଡିବା, ଶାଶୁ ନଣନ୍ଦଙ୍କ ତକ । ବୟସ ଅନୁପାତରେ ସୁନ୍ଦର କର୍ମ ବିଭାଗ । ଅଳସ ନାହିଁ କି କଳମସ ନାହିଁ । ଘରର ସବୁକାମ ଚାଲେ, ବୋହୂମାନଙ୍କର ବିନା କଥା କହିବାରେ । ଏବେ କେହି କଳନା କରି ପାରିବକି, ମୋ ବୋଉ, ଦେଠେଇ ବର୍ଷ ବର୍ଷ ଧରି ପାଟି ଫିଟାଇ କଥା କହିବାର ଯୁ ନଥିଲା । ପିଲାଙ୍କୁ କହିବା ଅତି ସାମାନ୍ୟ ଏବଂ ତାହା ଫୁସ୍‌ଫୁସ୍‌ରେ,

Digitized by srujanika@gmail.com

ଅନ୍ୟମାନେ ଯେପରି ନ ଶୁଣନ୍ତି । ବୟସ୍କାମାନଙ୍କ ଆଗରେ ନିଜ ପିଲାଙ୍କୁ ଆଦର କରିବା ବା ଡିଆରିବା ଲଜ୍ଜାକର ମଣୁଥିଲେ । ବୋହୂ ଯାହା କହିବାର କଥା, ବୟସ୍କାମାନଙ୍କୁ ତାହା ତୁଣ୍ଡର ଚୁଁ ଚାଁ ଶବ୍ଦ ଓ ହାତର ବିଭିନ୍ନ ମୁଦ୍ରା ଦ୍ୱାରା ପ୍ରକାଶିତ ହେଉଥିଲା । ମୁଁ ଦେଖିଛି, ମୋ ବୋଉର ଏ ଅବସ୍ଥା ଚାଲିଥିଲା ଘରର ଅନ୍ୟ ମାଇକିନିଆ ମୁରବୀଶୂନ୍ୟ ହେବା ପର୍ଯ୍ୟନ୍ତ । ମୋ ମାଆଙ୍କର (ପିତାମହୀ) ପରଲୋକ ହୁଏ ମୋର ଅତି ପିଲାଦିନେ । ତାପରେ ମୋ ବାଳୁତ ବିଧବା ପିଇସିନାନୀ ଘରର ମୁରବୀ । ସେ ଗଲେ ୧୯୨୩ରେ ମୁଁ ଆଇ.ଏ ପଢ଼ିଲାବେଳେ । ସେ ପର୍ଯ୍ୟନ୍ତ ବୋଉ ଥିଲା, ବୋହୂ ପୁତ୍ର କନ୍ୟାମାନଙ୍କର ବାକ୍‌ଶବ୍ଦହୀନା ମାତା ।

ଘରର ଚଳଣିରେ ପିଲାଙ୍କର ପାଠପଢ଼ା ଥିଲା ଅତି ଗୌଣ । ସମୟ କଟାଇବାର ଏକ ପନ୍ଥା ସ୍କୁଲ ଯିବା । ପାଠପଢ଼ା ହେଲା, ନ ହେଲା, କି ପିଲାର ସୁବିଧା, ଅସୁବିଧା କଅଣ ହେଉଛି, ସେଥିପ୍ରତି ମନଯୋଗ ଦେବା ଘର ଚଳଣିର ଆବଶ୍ୟକ ଗଣ୍ଡିର ବାହାରେ । ନନାଙ୍କର ଦୃଷ୍ଟିଥିଲା ଭିନ୍ନ । ସେ ପୂଜା ଛୁଟିରେ ଗାଁକୁ ଆସନ୍ତି । ଦେଖନ୍ତି ଓ ବୁଝନ୍ତି ମୋର ଦୈନନ୍ଦିନ ଦୀର୍ଘ ପଥ ଯାତାୟାତର କଷ୍ଟ । ଦରମା ତିରିଶି ହେଉପଛେ ଗାଁର ସେ ହେଲେ ବଡ ସରକାରୀ ଚାକିରିଆ । ତାଙ୍କ ପୁଅ ବୋର୍ଡିଂରେ ରହିଲେ ତାଙ୍କ ମର୍ଯ୍ୟାଦା ଉପଯୋଗୀ ହେବ ଏବଂ ପୁଅର ଦୈହିକ କଷ୍ଟ ମଧ ମେଣ୍ଟିବ । ଖର୍ଚ୍ଚ କେତେ ହେବ, ସେହି ଏକ ବାଧା । ନନା ସ୍କୁଲକୁ ଯାଇ ବୁଝିଲେ । ବୋଧହୁଏ ଖର୍ଚ୍ଚ କରାୟତ୍ତ ଦେଖି ହଷ୍ଟେଲରେ ମୁଁ ରହିବାର ସ୍ଥିର କରି ଆସିଲେ । ଗାଁର ମୁଁ ଏକମାତ୍ର ପିଲା, ସର୍ବ କନିଷ୍ଠ ହେଲେ ମଧ, ବୋର୍ଡିଂକୁ ଯାଉଛି, ଏହା ହେଲା କେତେଦିନ ଗ୍ରାମର ପ୍ରଧାନ ଆଲୋଚ୍ୟ ବିଷୟ । ଘରେ ବୋଉ, ନାନୀର ବହୁ ଆପତ୍ତି । ବୋର୍ଡିଂଙ୍ଗରେ ଏକୁଟିଆ ମୁଁ ଚଳିବି କିପରି, ଭଲ, ମନ୍ଦ, କିଏ ଦେଖିବ । ଏ ଦ୍ୱନ୍ଦରେ ମାସେ କଟିଲା । ବର୍ଷାକାଳ ପୂର୍ବରୁ ମୁଁ ଯାଇ ରହିଲି 'ଏ' ବ୍ଲକ୍ ହଷ୍ଟେଲର ୩ ନମ୍ବର ଘରେ ।



Digitized by srujanika@gmail.com

# ହଷ୍ଟେଲ

ବୋର୍ଡିଂଙ୍ଗକୁ ଯିବା ଦିନ ଘରେ ତୁମୁଳ କାଣ୍ଡ । କାଞ୍ଚିବିଜୟ ଯୁଦ୍ଧଯାତ୍ରାରେ ଗଜପତି ରାଜା ବାହାରିଲାବେଳେ ବୋଧହୁଏ ରାଜନବରରେ ଏତେ ଆଲୋଡନ ହୋଇ ନଥିବ । ମୋ ଲୁଗା ପଟା, ବହିପତ୍ର ସଂଗ୍ରହ କରି ସଜାଡିବା ପାଇଁ ବୋଉ ଓ ମଣିନାନୀଙ୍କର ବ୍ୟସ୍ତତା କହିଲେ ନ ସରେ । ଲୁଗା ବୋଇଲେ, ୩ ଖଣ୍ଡିରୁ ମୁଁ ପିନ୍ଧିଥାଏ ଖଣ୍ଡିଏ, ବାକୀ ଦୁଇ; ପଟା ବୋଇଲେ, ଗାମୁଛା ଖଣ୍ଡିଏ, ଚାଦର ଖଣ୍ଡିଏ, କାମିଜ ଖଣ୍ଡିଏ । ଗେଞ୍ଜି ଖଣ୍ଡକ ମୋ ଦେହରେ ଥାଏ । ଲୁଗା, ବହି ଖାତା ରହିଲା ଗୋଟିଏ ଛୋଟ ବାଉଁଶ ପେଡିରେ । ଏ ଧୂମ୍‌ଧାମ୍ ସରିଲା ବେଳକୁ ଦିନ ଦିପହର ଗଡି ଯାଇଥିଲା । ଭୋବନା ବାଉରୀ ପେଡି ମୁଣ୍ଡାଇଲା, ମୁଁ ନନାଙ୍କ ସାଙ୍ଗେ ଚାଲିଲି । ନାନୀ ବାହାରିଲା, ସେ ବାହାରୁ ଦେଖିଆସିବ କେଉଁଘରେ ମୁଁ ରହିବି । ମୁଁ ବୋର୍ଡିଂକୁ ଗଲେ, ତାକୁ ଗାଁରେ ଘର ଶୂନ୍ ଲାଗିବ ବୋଲି ତା ଆଖିରେ ଲୁହ ଧରୁ ନଥାଏ । ଏତେ କାନ୍ଦ ଦେଖି ମୋ ମନ ଫିକାପଡି ଯାଉଥାଏ । ବୋର୍ଡିଙ୍ଗକୁ ଯିବାର ଉତ୍ସାହ ଆଉ ମୋଟେ ନଥିଲା । କିନ୍ତୁ, ଉପାୟହୀନ ଭାବରେ ଯିବାକୁ ହେଲା । ହଷ୍ଟେଲରେ ପହଞ୍ଚିଲା ବେଳକୁ, ହରିବାବୁ 'ଏ' ବ୍ଲକ ବାରଣ୍ଡା ମୁଣ୍ଡରେ ଚୌକିରେ ବସିଥାଆନ୍ତି । ନନାଙ୍କୁ ଦେଖି ବହୁତ ମାନ୍ୟ କଲେ, ପାଖରେ ବସାଇଲେ । ମୋ ମୁଣ୍ଡରେ ହାତ ବୁଲାଇ , ୩ ନମ୍ବର ଘରକୁ ନେଇଗଲେ । ଦୁଆର ସିଧା, ଝରକା ତଳକୁ, କାନ୍ଥ ମୂଳକୁ ମୋ ରହିବା ଜାଗା ଠିକ୍ କରି, ରୁମ୍ ମନିଟରଙ୍କୁ (ଚନ୍ଦ୍ରଶେଖର ମିଶ୍ର) କହିଲେ, ଇୟେ ନୂଆ, ଇୟା କଥା ବୁଝିବୁ । କାଲଠାର କାଳ ମା ଜାଣେ । ଚନ୍ଦ୍ର ଉପର କ୍ଲାସ ପିଲା, ମଡେଲ ପିଲା ରୂପେ ମାଷ୍ଟ୍ରମାନଙ୍କ ଦ୍ୱାରା ଚିହ୍ନଟ ହେବା ପାଇଁ ଲାଗିଥାଆନ୍ତି । ମଡେଲ ପିଲାଙ୍କ ଲକ୍ଷଣ ଥିଲା, ଲୁଖୁରା ବାଳ, ମଇଳା ଲୁଗା, ଫୁଙ୍ଗୁଳା ଦେହ, କୁସ୍ତି କସରତ ପାଇଁ ଆଗଭର, ହସ ବିବର୍ଜିତ ମୁହଁ ଓ ଖଚକୁହା । ପଞ୍ଚେପିଲା ବାହାରି ଥାଆନ୍ତି ଏପରି ମଡେଲ ପ୍ରତିଯୋଗିତାରେ । ସେହି ମଡେଲ

Digitized by srujanika@gmail.com

ଦୃଶ୍ୟ ପିଲାଙ୍କ ଭିତରୁ ରୁମ୍ ମନିଟର, ମେସ ମନିଟର ବଛାଯାଉଥିଲେ । ବିଳାସହୀନ, କର୍ମଠ, ଶୃଙ୍ଖଳିତ, ତ୍ୟାଗପୂତ ଜୀବନ, ସ୍କୁଲ ଛାତ୍ରମାନଙ୍କ ପାଇଁ ଆଦର୍ଶ ଥିଲା । ତାହାର ଅଭ୍ୟାସ ପାଇଁ ହଷ୍ଟେଲ ଥିଲା ପରୀକ୍ଷାଗାର । ମୂଳରୁ ପ୍ରଣବ ବୋଧହୁଏ ଅଶୁଦ୍ଧ ହୋଇଗଲା । ନିୟମ ପାଳନରେ ମନିଟରମାନଙ୍କ ଭୂମିକା ଉପରେ କର୍ତ୍ତୃପକ୍ଷଙ୍କର ବିଶେଷ ଗୁରୁତ୍ୱ ଆରୋପ ଫଳରେ, ପିଲାମାନଙ୍କର ମନରେ ପ୍ରଚ୍ଛନ୍ନ ବିଦ୍ରୋହ, ବିଦ୍ୱେଷ ଜାତ ହେଉଥିଲା । ମନିଟର ଭାବୁଥିଲେ, ପିଲାଙ୍କର ଯେତେ ବେଶି ଦୋଷ ସୁପରିଣ୍ଟେଣ୍ଡେଣ୍ଟଙ୍କୁ ଦେଖାଇପାରିବେ, ସେତେ ବେଶି ପାରଙ୍ଗମ ମନିଟର ଓ ଆଦର୍ଶବାଦୀ ଛାତ୍ରବୋଲି ସେ ସାବ୍ୟସ୍ତ ହେବେ । ସେଥିପାଇଁ ମିଥ୍ୟା ଓ ଛଳନାର ଆଶ୍ରୟ ନେବାରେ ତାଙ୍କ ଭିତରୁ ଅନେକଙ୍କର କୁଣ୍ଠା ନ ଥିଲା । ମନିଟରମାନେ ଅନ୍ୟ ପିଲାଙ୍କଠାରୁ ପୃଥକ ନ ଥିଲେ । ପ୍ରାୟ ଏକା ବୟସର ଓ ଏକାକାଟର । ମନିଟର ହୋଇଯିବାରୁ, ଅନ୍ୟମାନଙ୍କୁ ଅଧସ୍ତନ ମନେକଲେ ଓ ତାଙ୍କର ଗୁପ୍ତଚର ଆଚରଣ ଅନେକାଂଶରେ ମାଷ୍ଟରମାନଙ୍କଠାରୁ ଉତ୍ସାହ ପାଇଲା । 'ଇୟେ ନୂଆ, ଇୟାକୁ ଦେଖିବୁ' ବୋଲି କହି ମତେ ମନିଟରଙ୍କର ଜିମାନାମା କରିବାର ତାତ୍ପର୍ଯ୍ୟ ମୁଁ ପରେ ବୁଝିଲି ।

ଗାଁରୁ ଛୋଟ ବାଉଁଶ ପେଡିଟିଏ ଆଣିଥିଲି । ମଶିଣା ସାଙ୍ଗରେ ନ ଥିଲା । ଚନ୍ଦ୍ରବାବୁ ମନିଟର ପଚାରିଲେ, ଶୋଇବୁ କେଉଁଥିରେ ? ମୁଁ ନିରବ । ରୁମ୍‌ର ଅନ୍ୟ ପିଲେ ଟିକିଏ ହସିବାରୁ, ମନିଟର କଟମଟ ଚାହିଁଲେ ତାଙ୍କ ଆଡକୁ । ସମସ୍ତେ ଚୁପ୍ । ମତେ ମାଟି ଚଟାଣରେ ବସିବାକୁ କୁହା ହେଲା । ଏହି ସମୟରେ ହରିବାବୁ ପୁଣି ଥରେ ଆସିଲେ ସେ ରୁମ୍‌କୁ । ତାଙ୍କ ରହଣିରୁମ୍ ଏକନମ୍ବର । ସେ ଶୁଅନ୍ତି ସେ ଘର ଭିତରେ । ବାକୀ ସବୁ ସମୟ ବସନ୍ତି ତାଙ୍କ ରୁମ୍ ବାରନ୍ଦା ଶେଷ ଅଂଶରେ । ସେଠାରେ ଖଣ୍ଡିଏ ଚୌକି ଓ ଗୋଟିଏ ଡେସ୍କଥାଏ । ସେଠାରୁ ପୂରା 'ଏ', 'ବି' ଓ 'ସି' ବ୍ଲକ ଦେଖାଯାଏ । ସେ ହଷ୍ଟେଲର ସୁପରିଣ୍ଟେଣ୍ଡେଣ୍ଟ, ଆଚାର୍ଯ୍ୟ । ଆମ ରୁମ୍ ୩ ନମ୍ବର, ତାଙ୍କ ରୁମ୍‌ଠାରୁ ଗୋଟିଏ ଛଡା । ସେ ଆମ ରୁମ୍‌କୁ ଆସି ଦେଖିଲେ, ମୁଁ ତଳେ ବସିଛି । ମନିଟରଙ୍କୁ କହିଲେ, 'କିରେ, ସେ ମଶିଣା ଯଦି ନ ଆଣିଛି, ଖଣ୍ଡିଏ ଖଜୁରୀ ପଟି ଦଉନ ତାକୁ ? ନୂଆ ହୋଇ ଯେ ଆସିଛି ତାକୁ ସବୁ ବତେଇବା, ବୁଝାଇବା ଦରକାର' । ସେ ବଜାରରୁ ଖଣ୍ଡିଏ ଖଜୁରି ପଟି ଅଣାଇ ମତେ ଦେଲେ । ମନିଟର ଅପ୍ରସ୍ତୁତ ହୋଇଗଲେ । 'ଇୟେ ନୂଆ, ୟାକୁ ଦେଖିବୁ' ର ଅର୍ଥ ମନିଟର ନୂଆକରି ବୁଝିଲେ । ଆଉ ପିଲାଙ୍କ ପରି ମତେ ହଇରାଣ କଲେ ନାହିଁ । ବୋଧହୁଏ ଭାବିଲେ, ନୂଆକୁ ମଣାଇ ନେବା ଭଲ । ହଷ୍ଟେଲ ରୁମ୍ ଗୁଡିକ ସବୁ ସମାନ ।

Digitized by srujanika@gmail.com

ଗୋଟିଏ ଦୁଆର ଗୋଟିଏ ଝରକା ଗୋଟିଏ କାନ୍ଥରେ । ଅପରପଟ କାନ୍ଥରେ ଦୁଇଟି ଝରକା । ମନିଟରଙ୍କ ଜାଗା ଦୁଆରପଟ ଝରକା ତଳକୁ । ମୋର ସ୍ଥାନ ପଡିଲା, ଦୁଆର ସିଧା ଝରକା ତଳକୁ । ଗୋଟିଏ ରୁମ୍ ଯେତେଖଣ୍ଡି ସପ ବା ପଟି ପଡିପାରିବ, ସେତେଜଣ ପିଲା ରହନ୍ତି । ମନିଟରଙ୍କୁ ଛାଡି, ଛଅ । ବେଳେବେଳେ, ଅକୁଳାନ ପଡିଲେ ଆଉଜଣେ ଜାକିଜୁକି ହୋଇ ରହିବାକୁ ପଡେ । ଶେଜ କ୍ୱଚିତ୍ ପିଲାଙ୍କର ଥିଲା । କାହାରି, କାହାରି କନ୍ଥାଥାଏ । ତକିଆ ଅଳ୍ପ ପିଲାଙ୍କର । ଅନ୍ୟମାନେ ହାତ ଓପରେ ମୁଣ୍ଡରଖି ଶୁଅନ୍ତି । ଆଉ କେହି କେହି, ଯେ ମଡେଲ ଅନୁକରଣ ପସନ୍ଦ କରନ୍ତି, ଇଟା ଆଣି ମୁଣ୍ଡତଳେ ରଖନ୍ତି । କଷ୍ଟ କଲେ ଇଷ୍ଟ ମିଳେ । ଥିଲାଘର, ସହରିଆ ବାପା ମା'ଙ୍କ ପିଲେ ଶେଜ, ଗଦି ଆଣିଥିଲେ ସେ ସବୁ ବନ୍ଧା ହୋଇ ରହିଲା । ଅଳ୍ପ ଅଂଶ ବ୍ୟବହାରରେ ଲାଗିଲା । ଗଞ୍ଜାମର ମଦନ ମୋହନ ମହାପାତ୍ର, ପୁରୀର ଜଗବନ୍ଧୁ ସିଂହଙ୍କ ପୁତୁରା ସତ୍ୟବାଦୀ ସିଂହ, ମେଦିନାପୁରର ନଗେନ୍ଦ୍ରନାଥ ମହାପାତ୍ର, ପ୍ରଭୃତି ସେହି ଶ୍ରେଣୀର ଥିଲେ । ସେମାନଙ୍କ ଚଳଣି ପୃଥକ୍ ଥିଲା । ଲୁଗାପଟା, ଅନ୍ୟମାନଙ୍କଠାରୁ ଭିନ୍ନ । ତାଙ୍କ ଜଳଖିଆ ସାକ୍ଷୀଗୋପାଳଙ୍କ କୋଠ ଭୋଗରୁ ଆସେ, ଛତୁଆ, ଡାଲିମ୍ୱ, କାକରା ବା ସରପୁଳି । ଆମ ଜଳଖିଆ ମୁଢ଼ି । ତା'ବି ସମସ୍ତଙ୍କର ନୁହେଁ । କେତେକ ଘରୁ ଚୁଡା ଆଣିଥାଆନ୍ତି ଜଳଖିଆ ପାଇଁ । ଅଧଲାକର (ଏକଟଙ୍କା = ୬୪ ପଇସା =୧୨୮ ଅଧଲା =୧୯୨ ପାହୁଲା ଥିଲା ।) ମୁଢ଼ି ସାଙ୍ଗକୁ ଅଧଲାକର ଉଖୁଡା ମଧବିତ୍ତ ଛାତ୍ରଙ୍କର ଜଳଖିଆ । ବହୁ ଛାତ୍ର କେବଳ ମୁଢ଼ିରେ ସନ୍ତୁଷ୍ଟ ରହନ୍ତି । ଆଉ କେତେକ ବିନା ଜଳଖିଆରେ ଅପେକ୍ଷା ରଖନ୍ତି ଦିବେଳା ମେସ୍‌ରେ ଖାଇବା ପାଇଁ । ଚୁଡା ଯେ ଆଣି ରଖିଥାଆନ୍ତି, ସେ ଗିନାରେ ଚୁଡା ପାଣିରେ ବତୁରାଇ କ୍ଷୁଧା ଶେଷ କରନ୍ତି । ଆମ ଆଖିରେ ଚମକ ଲାଗୁଥିଲା ଆଠଦଶ ଜଣ ପିଲାଙ୍କର ଆୟୋଜନ ଦେଖି । ତାଙ୍କ ପେଟରାରେ ଚୁଡା, ଗୁଆଘିଅ, ନବାତ, ନଡିଆ, ଥାଏ । ବେଳେବେଳେ ସେମାନେ ତାହାର ସଦବ୍ୟବହାର କରନ୍ତି । କେତେବେଳେ କେହି ଘରୁ ଆସିଥିବା ଚୁଡାଘଷା ବା ପିଠା ବାହାର କରନ୍ତି । ପିଲାଙ୍କ ଘରର ଆର୍ଥିକ ଅବସ୍ଥା ଜଳଖିଆ ରୂପ ଓ ପରିମାଣରୁ ଜଣାପଡେ । ହଷ୍ଟେଲ ଚଳଣିରେ ସକାଳ ଜଳଖିଆ ନଥିଲା । ସ୍କୁଲ ଶେଷରେ ବ୍ୟାୟାମ ପୂର୍ବରୁ ମୁଢ଼ି, ଉଖୁଡା ପସରାବାଲା ବୋର୍ଡିଂକୁ ଆସେ ।

ଚାରିପାଞ୍ଚଜଣ ବଡଲୋକ ପିଲାଙ୍କୁ ଛାଡିଦେଲେ, ବାକୀ ସମସ୍ତେ ହଷ୍ଟେଲରେ ଏକା ଚଳଣିରେ ଚଳୁଥିଲେ ସୁରୁଖୁରୁରେ । ଅସୁବିଧା ବା କଷ୍ଟ ଯାହା

Digitized by srujanika@gmail.com

ହେଉଥିଲା, ତାହା ଶୃଙ୍ଖଳାର ଭିତ ଭିତରେ ଚପି ଯାଉଥିଲା । ମାଷ୍ଟରମାନେ ନିୟମ ରକ୍ଷାରେ ଆଗଭର ହେଉଥିବାରୁ, ପିଲାଏ ଆପେ ଆପେ ଉତ୍ସାହ ପାଉଥିଲେ । ଗୋଟିଏ ବଡ ଓ ଭଲକାମରେ ସମସ୍ତେ ଲାଗିଛନ୍ତି, ଏପରି ଏକ ପ୍ରଚ୍ଛନ୍ନ ଧାରଣା ମନରେ ଥିଲା । କଅଣ ସେ ବଡ଼ କାମ, ଆମେ ଠିକ୍ ଜାଣୁ ନଥିଲୁ । ଘରେ ବିବାହ କି ବ୍ରତ ହେଲେ, ଯେପରି ସମସ୍ତେ ଧୁମ୍ ଧାମ୍‌ରେ ମାତନ୍ତି, ପିଲାଏ ମଧ ସେପରି ମାତନ୍ତି । ବ୍ରତର ଅର୍ଥ କିଛି ନବୁଝିଲେ ମଧ, ଉତ୍ସାହର କମ୍‌ତି ନ ଥାଏ ।

ସତ୍ୟବାଦୀ ଚାରିପଟେ ଷୋଳ ଶାସନ, ବତିଶ କରବାଡ ବ୍ରାହ୍ମଣ ବସତି । ସ୍କୁଲ ଆରମ୍ଭ ହବାରେ, ସେଠାରୁ ପିଲାଏ ଆସିଲେ ଇଂରେଜୀ ପଢ଼ିବାକୁ । ଆଖପାଖରୁ ପ୍ରତିଦିନ ଚାଲିକରି ଆସୁଥିଲେ, ଯାଉଥିଲେ । ସତ୍ୟବାଦୀ ଓ ଶ୍ରୀରାମଚନ୍ଦ୍ରପୁର ମଝିରେ ଥିବା ପଟନାୟିକିଆ ସାହିରୁ ଦୁଇଟି ପିଲା ଆସନ୍ତି । ସତ୍ୟବାଦୀ ବଜାରର ଦୋକାନୀଙ୍କର କେହି କେହି ପିଲା ଆସୁଥିଲେ । ଏସବୁ ବ୍ରାହ୍ମଣ, କରଣ, ବୈଶ୍ୟ ପରିବାରର । ଶୁଦ୍ର ବୋଇଲେ ଯାହା ବୁଝାଉଥିଲା, ସେ ଶ୍ରେଣୀର କେହି ସ୍କୁଲକୁ ଭରସି ଆସୁନଥିଲେ, କିମ୍ବା ତାଙ୍କୁ ଆଣିବାକୁ ବିଶେଷ ଚେଷ୍ଟା ହୋଇ ନଥିଲା । ହଷ୍ଟେଲ ତିଆରି ହେଲା ପରେ ଛାତ୍ର ସଂଖ୍ୟା ହୁ ହୁ ବଢ଼ିଲା । 'ଏ' ପଛକୁ 'ବି', ତା ପଛକୁ 'ସି' ଏବଂ ତାପରେ 'ଡି' ଏପରି ଗୋଟିକ ପରେ ଗୋଟିଏ ନୂଆ ହଷ୍ଟେଲ ତୋଳା ହେଲା,— ପିଲାଙ୍କ ସଂଖ୍ୟା ବୃଦ୍ଧି ସଙ୍ଗେ । ତଥାପି, ସ୍ଥାନ ଅକୁଳାନ । କିନ୍ତୁ ଆଉ ନୂଆ ହଷ୍ଟେଲ ପାଇଁ ଜାଗା ନଥିଲା । 'ଡି' ବ୍ଲକ ତୋଳିଲାବେଳକୁ ଅନ୍ୟ ହଷ୍ଟେଲମାନଙ୍କ ପାଖରୁ ଦୂରରେ ଯାଇ ସ୍ଥାନ ନିଆଗଲା । ହଷ୍ଟେଲକୁ, ଗଡଜାତ, ମୋଗଲବନ୍ଦୀ, ସିଂହଭୂମି, ମେଦିନାପୁର, ଗଞ୍ଜାମ, ଜୟପୁର, ଚିକିଟି ପ୍ରଭୃତିରୁ ଛାତ୍ର ଆସିଲେ । ସମଗ୍ର ଓଡିଆ ଭାଷୀ ଅଞ୍ଚଳରୁ ଗୋଟିଏ ସ୍କୁଲରେ ଛାତ୍ର ରୁଣ୍ଡ ହେବା ଅଦ୍ୱିତୀୟ କଥା । ସମସ୍ତଙ୍କ ଦୃଷ୍ଟି ଏ ଦିଗରେ ପଡିବା ସ୍ୱାଭାବିକ୍ । ଆପେ ଆପେ ଏକ ଜାତୀୟତାବୋଧ ଜାଗିଲା । ଶିକ୍ଷକ, ଛାତ୍ରଙ୍କ ମନରେ ଆଞ୍ଚଳିକ ଭାବ ଉଠିବାର ଅବକାଶ ନଥିଲା । ଜାତିଗତ ଚିନ୍ତା ରହନ୍ତା କିପରି । ଶୁଦ୍ର ପିଲା ଅଳ୍ପ କିଛି ଯେତେବେଳେ ଆସିଲେ ବୋର୍ଡିଙ୍ଗରେ ରହିବାକୁ, ନା ପିଲେ, ନା ମାଷ୍ଟ୍ରେ କେହି କିଛି ଅସ୍ୱାଭାବିକ ମଣିଲେ ନାହିଁ । ଅଛୁଆଁ ଶ୍ରେଣୀର (ପରବର୍ତ୍ତୀ କାଳରେ ହରିଜନ ନାମରେ ପରିଚିତ) ପିଲା ତାପରେ ଆସିଲାବେଳେ ଟିକିଏ ଫୁଟରୁ ଫାଟର ଶୁଣାଗଲା । ବୀର ହରେକୃଷ୍ଣପୁରର ହଳଧର ମହାପାତ୍ରେ ସ୍କୁଲର ଶିକ୍ଷକ ଓ ହଷ୍ଟେଲ ଏକ ଅଂଶରେ ସହକାରୀ ତତ୍ତ୍ୱାବଧାରକ ରୂପେ ବୋର୍ଡିଙ୍ଗରେ ବାସ କରୁଥିଲେ । କଣି

Digitized by srujanika@gmail.com

ଗୋଦର ପାଦରେ ଖଡମ ପିନ୍ଧି କ୍ଲାସକୁ ଆସନ୍ତି । ପିଲାଙ୍କ ପ୍ରତି ନିର୍ଦ୍ଦୟତା ଦେଖାରେ ଶିକ୍ଷକତାର ମାନ ବୃଦ୍ଧିରେ ତାଙ୍କର ବିଶ୍ୱାସ । ଗାଁରେ ବ୍ରାହ୍ମଣ ଚଳଣିରେ ଯେପରି ନିଷ୍ଠାବାନ, ବୋର୍ଡିଙ୍ଗରେ ସେହିପରି ରକ୍ଷଣଶୀଳ । କେବେ ପଂକ୍ତିରେ ଭୋଜନ କରନ୍ତି ନାହିଁ । ନିଜ ସପ ମଶିଣାରେ କିଏ କାଳେ ବସିବ ବୋଲି, ଶୋଇବା ଛଡା ଆଉ କେତେବେଳେ ସପ ପକାନ୍ତି ନାହିଁ । ଖଣ୍ଡିଏ ଚଟେଇରେ ରୁମ୍‌ରେ ବସି କାମ କରନ୍ତି । ପାଣିଛୁଆଁ ଜାତିର ପିଲା ହଷ୍ଟେଲରେ, ମେସ୍‌ରେ ଏକାଠି ରହିବା, ଖାଇବା, ଚଳିବାକୁ, ଆଖିକାନ ବୁଜି କୌଣସିମତେ ସମ୍ଭାଳି ନେଇଥିଲେ, ଯଦିଓ ନିଜକୁ ଅଲଗା ଅଲଗା ରଖି, ପାରୁ ପର୍ଯ୍ୟନ୍ତ ଚଳୁଥାଆନ୍ତି । ଅଛୁଆଁ ପିଲାଏ ଆସିଲାବେଳକୁ ଆଉ ସମ୍ଭାଳି ପାରିଲେ ନାହିଁ । ତାଙ୍କ ବିଦ୍ରୋହ ଚିହ୍ନା ପଡ଼ିଲା । ତାଙ୍କ ସମର୍ଥକ ଶିକ୍ଷକ କେତେଜଣ ଅସ୍ୱଷ୍ଟ ରହିଲେ । କୁଳୀନ ବ୍ରାହ୍ମଣ ପିଲା କେହି କେହି ଅତର୍କିତ ଭାବରେ ହରିବାବୁଙ୍କୁ (ପରବର୍ତ୍ତୀ କାଳରେ ଆଚାର୍ଯ୍ୟ ମହାଶୟ) ଯାଇ କହିଲେ, ତାଙ୍କ ପଇତା ମାରାହେଲେ, ସେମାନେ ଗାଁକୁ ଗଲେ ହଇରାଣରେ ପଡିବେ । ଏସବୁର ସମାଧାନ ହୋଇଗଲା, ଅତି ସହଜ ଓ ଅଦୃଷ୍ଟ ଭାବରେ—ଗୋପବନ୍ଧୁ ବାବୁଙ୍କ ଗୋଟିଏ ବାକ୍ୟରେ । ଦୁଆରକୁ ଭିକ ମାଗିବାକୁ ଯେ ଆସେ, ତା ଜାତି ପଚାରି କଅଣ ଭିକ୍ଷା ଦିଆଯାଏ ? ଶିକ୍ଷାଭିକ୍ଷା ପାଇଁ ଯେ ଆସୁଛନ୍ତି, ତାଙ୍କ ଜାତି କାହିଁକି ପଚାରୁଛ ? ସମସ୍ତେ ଚୁପ୍ ପଡିଲେ । ହଳଧର ମହାପାତ୍ରେ ନିଜ ଗାଁକୁ ଗଲେ । ଅସହଯୋଗ ଜାଗରଣ, 'ହରିଜନ' ପତ୍ରିକା ପ୍ରକାଶନ, ଅସ୍ପୃଶ୍ୟତା ନିବାରଣ ଆନ୍ଦୋଳନର ଦଶବର୍ଷ ପୂର୍ବରୁ ଏ ଘଟନା, ଯାହା ସତ୍ୟବାଦୀ ସ୍କୁଲ ଓ ବୋର୍ଡିଙ୍ଗରେ ଘଟିଥିଲା, ତାହାର ପଟାନ୍ତର ଭାରତବର୍ଷର ଅନ୍ୟ କେଉଁଠି ନଥିଲା । ପଛକଥା ଭାବି, ଏବେ ମନେ ପଡୁଛି, ଆମେ ପିଲାଏ ସେହି ବାଳୁତ ବୟସରେ କିପରି ଏକ ମହାଯଜ୍ଞରେ ଭାଗନେଲା ପରି ମନରେ ପ୍ରଫୁଲ୍ଲତା ଓ ଗର୍ବ ଅନୁଭବ କରୁଥିଲୁ । ଜାତି ପ୍ରୀତି ଓ ଜାତୀୟ ସଂହତିର ମୂଳଭିତ୍ତି ସେହିଠାରେ । ତାହାହେଲା ମୌଳିକ, ପାଠପଢ଼ା ଥିଲା ଗୌଣ । ବୋର୍ଡିଙ୍ଗ ହେଲା ମୂଳ ପୀଠ, ସ୍କୁଲ ତାହାର ଆଧାରିତ ।

ଲାବୋରେଟାରିରେ ପରୀକ୍ଷା ହେଲାପରି, ବୋର୍ଡିଙ୍ଗରେ କେତେ ପ୍ରକାର ପରୀକ୍ଷା ହେଉଥିଲା । ଯାହା ପରୀକ୍ଷା ଉତୁରିଲା, ବ୍ୟାପକ ଭାବରେ ବାହାରେ ପ୍ରଶଂସା ପାଉଥିଲା । ପରମ୍ପରାର ସାରବତ୍ତା ରକ୍ଷା କରି ଆଧୁନିକତାକୁ ଉପେକ୍ଷା ନକରି, ଶିକ୍ଷା ଓ ବୟସ ଉପଯୋଗୀ ଶୃଙ୍ଖଳା ବୋର୍ଡିଙ୍ଗରେ ପ୍ରଚଳନ କରାଯାଉ ଥିଲା । ସ୍କୁଲରେ ଯୋଉ ତିନିଜଣଙ୍କର ପ୍ରାଧାନ୍ୟ ଅଟଳ ଥିଲା, ସେମାନଙ୍କ ମୌଳିକ

Digitized by srujanika@gmail.com

ଦୃଷ୍ଟିକୋଣରେ ଭିନ୍ନତା ଥାଏ । ଗୋପବନ୍ଧୁ ବାବୁ ଆଧ୍ୟାତ୍ମିକ ଭାବାପନ୍ନ, ପୁରାତନପନ୍ଥୀ । ନୀଳକଣ୍ଠବାବୁ ତାତ୍ତ୍ୱିକ, ଯୌକ୍ତିକ । ରକ୍ଷଣଶୀଳତା, ବୈଜ୍ଞାନିକତା, ଆସ୍ତିକତା, ନାସ୍ତିକତାର ତଉଲ ତାଙ୍କ ପାଖରେ ଏକପ୍ରକାର । ଗୋଦାବରୀଶବାବୁ ଆଧୁନିକତାର ଅଭିଳାଷୀ । ପ୍ରାଚୀନତାରେ ଅନଭିଜ୍ଞତା ତାଙ୍କ ନିକଟରେ ମାର୍ଜନୀୟ ଥିଲା । ନିତାନ୍ତ ଅଗ୍ରହଣୀୟ ନ ହେଲେ, ଗୋପବନ୍ଧୁଙ୍କ ପରାମର୍ଶ ନିର୍ଦ୍ଦେଶ ରୂପେ କାର୍ଯ୍ୟତଃ ଏମାନେ ସମସ୍ତେ ପାଳନ କରୁଥିଲେ । ସେଥିପାଇଁ ଏ ତିନିଜଣଙ୍କ ବିଭିନ୍ନ ମୌଳିକତା ବାହାରେ ସ୍ପଷ୍ଟ ପ୍ରକାଶ ପାଉନଥିଲା । ଗୋଟିଏ ସଙ୍ଘବଦ୍ଧ ଅନୁପ୍ରାଣିତାର ମୁଖ୍ୟଭୂମିକାର ଅବଲମ୍ବନରେ ସମସ୍ତେ ଚାଲୁଥିଲେ । ସ୍କୁଲର ଆଦ୍ୟ ଅବସ୍ଥାରେ ଏହା ଯେପରି ଥିଲା, କ୍ରମଶଃ ସେଥିରେ ସ୍ୱାଭାବିକ ବ୍ୟାହତ ଉପୁଜିଲା ଏବଂ ସ୍କୁଲର ଶେଷ ପର୍ଯ୍ୟାୟରେ ମତାନ୍ତର ଓ କେତେକ ମନାନ୍ତର ମଧ୍ୟ ଦେଖାଦେଲା ।

ବୋର୍ଡିଙ୍ଗ ଆରମ୍ଭ ହେବାବେଳକୁ ତିନୋଟି କଥା ଉପରେ ଜୋର ଦିଆଯାଉଥିଲା । (୧) ଅତି ଭୋରରୁ ସମସ୍ତେ ଉଠିବେ । ଆଚାର୍ଯ୍ୟଙ୍କ ଘର (ହରିବାବୁ) ପିଣ୍ଡାରେ ଝୁଲୁଥିବା ଘଣ୍ଟା ପ୍ରଥମେ ମୃଦୁ, ପରେ କ୍ଷିପ୍ର ଏବଂ ଶେଷରେ ତୀବ୍ର ରୂପରେ ତିନି ମିନିଟ୍ ଧରି ବାଜେ । ମନିଟରଙ୍କର ପ୍ରଥମ କାର୍ଯ୍ୟ, ଯେ ନ ଉଠିଲା , ତାକୁ ଡାକିବା ଏବଂ ଆବଶ୍ୟକ ମନେକଲେ, ମାଠିଆରୁ ପାଣି ମୁନ୍ଦେ ନେଇ ତା ଉପରକୁ ଛାଟିବା । କେହି ଦେହ ଭଲ ଲାଗୁନାହିଁ କହି, କିଛି ସମୟ ଅଧିକା ଶୋଇ ନେବାର ବାଟ ନଥିଲା । ଯଦି ଦେହ ବ୍ୟସ୍ତ, ସିକ୍ ରୁମ୍‌କୁ ଯାଅ । ସେଥିକି ସବୁରି ଡର । ତେଣୁ ଘଣ୍ଟା ବାଜିଲେ, ସମସ୍ତେ ଧଡ ପଡ ଟଣାଟଣି ହୋଇ ଉଠିବାକୁ ହୁଏ । ସାଙ୍ଗେ ସାଙ୍ଗେ ମଶିଣା, ଖଜୁରୀ ପଟି, ଯାହାର ଯାହାଥାଏ, ଉଠାଇ ଗୁଡାଇ ଘର କୋଣରେ ବା ନିଜ ପେଟରା ପାଖରେ ରଖିଦେଇ ଗାମୁଛା ଧରି ବାହାରକୁ ଯିବାକୁ ହୁଏ, ନିତ୍ୟକର୍ମ ସାରିବାକୁ । ଦାନ୍ତକାଠି ହୁଏ ଜୁରୀଅନା ଡାଙ୍ଗ, ପାଇଖାନା ପାଇଁ ବ୍ୟବହୃତ ନ ହେଉଥିବା ବକୁଳବନ ବା କେତକୀଝେର ପୋଖରୀର ଜଙ୍ଗଲିଆ ହୁଡାତଳ । ରାତିଅନ୍ଧାର ପୂରା ନ ଫିଟିଥିବାରୁ, ଯେ ଯେଉଁଠି ପାରିଲା କାମସାରି, ଦେଉଳ ପାଖ ପୋଖରୀ ଶ୍ୟାମ କୁଣ୍ଡ ବା ଚନ୍ଦନ ପୋଖରୀକୁ ଯାଆନ୍ତି ଗାଧୋଇବା ପାଇଁ । ତେଲ, ସାବୁନ୍‌ର ବ୍ୟବହାର ନ ଥିଲା । ପାନିଆ ଦର୍ପଣ ରଖିବା ଦୂଷଣୀୟ ମନେ ହେଉଥିବାରୁ, କେହି ରଖୁନଥିଲେ । ଯାହାର ଥାଏ ସେ ଲୁଚାଇଥାଏ ଏବଂ କାଁ ଭାଁ ଆଇନାରେ ମୁହଁ ଦେଖେ, ଅନ୍ୟମାନଙ୍କ ଅଦେଖାରେ । ମୁଣ୍ଡବାଳ କୁଣ୍ଡାଇବା ବାରଣ । ସୌଖୀନତାର ଦୂରରେ ପିଲେ ରହିବା କଥା ।

Digitized by srujanika@gmail.com

ଗତିରେ ସମସ୍ତେ ଚଞ୍ଚଳ, କାରଣ ଦ୍ୱିତୀୟ ଘଣ୍ଟା ପଡିବା ପୂର୍ବରୁ ଯେ ଯାହା ରୁମ୍‌କୁ ଫେରିବାକୁ ହେବ । ଡେରି ହେଲେ ଗୃହପ୍ରବେଶ ନିଷେଧ । ହରିବାବୁଙ୍କ ପାଖରେ ହାଜରା ଦେଇ ବିଳମ୍ବର କୈଫିୟତ ଜଣାଇ, ଅନୁମତି ପାଇଲେ, ନିଜ ସିଟ୍‌କୁ ଯିବାକୁ ହୁଏ । ଏକାଧିକ ଦିନ ବିଳମ୍ବ ଘଟିଲେ,'ବଗୁଲିଆ' ବୋଲି ଗାଳି ଶୁଣିବାକୁ ହୁଏ । ବୋର୍ଡିଙ୍ଗରେ ଶହ ଶହ ପିଲା, କିନ୍ତୁ ଗାଧୋଇ ବିଳମ୍ବରେ ଫେରିବା ପିଲା ସବୁଦିନ ନ ଥାନ୍ତି । ଜଣେ ଦିଜଣ ରହିଯାଆନ୍ତି ପଛକୁ । ବିଳମ୍ବରେ ରୁମ୍‌କୁ ଫେରିବା ଅପାରଗତାର ଚିହ୍ନରୂପେ ଗଣ୍ୟ ହେଉଥିବାରୁ, ସବୁ ପିଲେ ସେଥିରୁ ମୁକ୍ତ ରହିବାକୁ ଚେଷ୍ଟାରେ ଥାଆନ୍ତି । ଦନ୍ତମାର୍ଜନା, ମଳତ୍ୟାଗ, ସ୍ନାନ ସମସ୍ତଙ୍କର କରଣୀୟ । ଯଦି କେହି ସେଥିରୁ କୌଣସିଟାର ଖିଲାପ କରେ, ତେବେ ମନିଟରଙ୍କର ତାହା ଆଚାର୍ଯ୍ୟଙ୍କର ଦୃଷ୍ଟିକୁ ଆଣିବାର କଥା । ସେ ଖବର ସେ ପାଆନ୍ତି ଅନ୍ୟ ସାଙ୍ଗ ପିଲାଙ୍କଠାରୁ । ମନିଟରଙ୍କର ଜଣେ ଅଧେ ଗୁଇନ୍ଦା (ସ୍ପାଇ) ଥାଆନ୍ତି । ବିନା ଗୁପ୍ତଚରରେ ଶାସନ ନ ଚାଲେ କେଉଁଠି ! ଏ ନିୟମର କାରଣ ଥିଲା ନିତ୍ୟକର୍ମରେ ବିଚ୍ୟୁତି, ଅସୁସ୍ଥତାର ନିଦର୍ଶନ ବା ପୂର୍ବାଭାସ କି ନୁହେଁ, ଜାଣିବା । କିନ୍ତୁ କାର୍ଯ୍ୟତଃ, ଦୋଷାରୋପର ଏକ ଉଚ୍ଚୁହାତ ରୂପେ ପ୍ରୟୋଗର ଡର ପିଲାଙ୍କର ହୋଇଗଲା । ତେଣୁ, ବାହାରକୁ ନିତ୍ୟକର୍ମର ତିନି ପର୍ଯ୍ୟାୟ ପାଳନରେ ସମସ୍ତେ ତତ୍ପର ଥାଆନ୍ତି, ନିତାନ୍ତ ଅଚଳ ବା ଅବଶ ନ ହେବାଯାଏ । ମୋର ଅଣ୍ଟାରେ କାଛୁ ହୋଇଥିଲା । ପ୍ରକାଶ କଲେ, ସିକ୍‌ରୁମ୍‌କୁ କାଳେ ଯିବାକୁ ପଡିବ, ସେହି ଭୟରେ, ମୁଁ ତା ଉପରେ ବ୍ଲଟିଙ୍ଗ କାଗଜ ପକାଇ, ଲୁଗା ପିନ୍ଧୁଥିଲି । ପୋଖରୀରେ ଥଣ୍ଡା ପାଣିରେ ଗାଧୋଇବା ଅସ୍ୱସ୍ତିକର ହେଲେ ମଧ, କାହାକୁ କିଛି କହିବାକୁ ଭରସି ପାରୁ ନଥିଲି । ମାତ୍ରାଧିକ ଏ ଯନ୍ତ୍ରଣା ଭୋଗ କରିଛି । କିନ୍ତୁ ସତତ ଚେଷ୍ଟା କରିଛି ଦ୍ୱିତୀୟ ଘଣ୍ଟା ବାଜିବା ପୂର୍ବରୁ ସିଟ୍‌କୁ ଫେରିବା ପାଇଁ ।

ଶୀତ ଦିନରେ ଏତେ ସକାଳୁ ଗାଧୋଇବା ପାଇଁ ଦେହ ଓ ମନ ଅମଙ୍ଗ ହେଲେ, କେହି କେହି, ଗାମୁଛା ପାଇଟି ଲୁଗାଧୋଇ, ସ୍ନାନ କାର୍ଯ୍ୟ ସମାପ୍ତିର ଚିହ୍ନ ରୂପେ ଓଦାଲୁଗା ଶୁଖାନ୍ତି । ଖଚକୁହା କେହି ଗାଧୋଇ ନାହିଁ ବୋଲି କହିଦେଲେ, ପଚରା ପଚରିରେ, ଅଗାଧୁଆ ପିଲା ଧରା ପଡିଯାଏ । ପରେ ଅମଙ୍ଗ ମନକୁ ମଙ୍ଗାଇବାକୁ ବାଧ ହୁଏ । (୨) ଦ୍ୱିତୀୟ ଘଣ୍ଟାର ଅଳ୍ପପରେ ତୃତୀୟ ଘଣ୍ଟା ବାଜେ, ଉପାସନା ପାଇଁ । ସମସ୍ତେ ନିଜ ନିଜ ସିଟ୍‌ରେ ଚକା ପକାଇ ବସି ପ୍ରାର୍ଥନା କରନ୍ତି । ଗୋଟିଏ ଛୋଟ ଉପାସନା ବହି ଛପାହୋଇ, ସମସ୍ତଙ୍କୁ ଦିଆ ହୋଇଥାଏ । ନୀଳକଣ୍ଠ ବାବୁ ତାକୁ ସଂକଳନ କରିଥିଲେ । ଅଧିକାଂଶ ପିଲା ପାଟିକରି ସେ ବହିପଢ଼ି ପ୍ରାର୍ଥନା

Digitized by srujanika@gmail.com

ଶେଷ କରନ୍ତି । କେହି କେହି ବଡ଼ ପିଲା ପ୍ରାଣାୟାମ କରନ୍ତି । ଜଣେ ଅଧେ ଗୀତା ପାଠ କରନ୍ତି । ଚତୁର୍ଥ ଘଣ୍ଟା ବାଜିବା ପର୍ଯ୍ୟନ୍ତ ଉପାସନାରତ ରହିବାକୁ ହୁଏ । ଏହି ସମୟରେ, କେତେବେଳେ ହରିବାବୁ, କେତେବେଳେ ବାସୁବାବୁ ବୁଲି ଦେଖନ୍ତି, ଉପାସନା କିପରି ଚାଲିଛି । ସନ୍ଧ୍ୟା ସମୟରେ ମଧ୍ୟ ଉପାସନା ଘଣ୍ଟା ବାଜେ ।

ଏ ପ୍ରକାର ଅଭ୍ୟାସ ଜୀବନ ଦର୍ଶନର ବିକାଶରେ ସହାୟକ ହୋଇଛି । କ୍ରମଶଃ ଉପାସନାର ଅର୍ଥବୋଧ ଚିନ୍ତାର ଉଦ୍ରେକ କରିଛି । ସେ ଅଭ୍ୟାସ କେବଳ ମୋଠାରେ ସୀମାବଦ୍ଧ ହୋଇନାହିଁ । ମତେ ଦେଖି, ମୋ ପିଲାଏ ଆପେ ଆପେ ସେ ଅଭ୍ୟାସ ଗ୍ରହଣ କରିଛନ୍ତି । ତାଙ୍କ ପିଲାଏ ମଧ୍ୟ ସେହି ପଥଗାମୀ ହେବାର ଦେଖୁଛି । ଏଥିରେ କିଞ୍ଚିତ ଶୃଙ୍ଖଳା ଜୀବନର ଭିତ୍ତି ହୁଏ । (୩) ପ୍ରତ୍ୟୁଷ ଶଯ୍ୟାତ୍ୟାଗ, ଉପାସନା ପରି ଅନ୍ୟ ଏକ କଥାରେ ଗୁରୁତ୍ୱ ଦିଆ ଯାଉଥିଲା । ପଂକ୍ତି ଭୋଜନ ।

ଉପାସନା ଶେଷ ପାଇଁ ଘଣ୍ଟା ପଡୁଥିଲା । ତା'ପରେ ପଢ଼ା ପଢ଼ି ପଞ୍ଚମ ଘଣ୍ଟା ବାଜିବା ପର୍ଯ୍ୟନ୍ତ । ପଢ଼ା ଶେଷରେ, ମେସ୍‌କୁ ଯିବାକୁ ହୁଏ ଖାଇବା ପାଇଁ । ସମସ୍ତେ ଖାଇବା ହଲରେ ବସନ୍ତି ଜାତି, ବର୍ଣ୍ଣ ନିର୍ବିଚାରରେ । ଏଥିପାଇଁ ପାର୍ଶ୍ୱବର୍ତ୍ତୀ ବ୍ରାହ୍ମଣ ଗ୍ରାମମାନଙ୍କରେ ବିରୋଧ ଚହଳ ପଡିଥିଲା । ପୁରୀ ମୁକ୍ତିମଣ୍ଡପ ସଭାରେ ତାହାର ପ୍ରତିଧ୍ୱନି ତୀବ୍ରସ୍ୱର ଗ୍ରହଣ କରିଥିଲା । ପଣ୍ଡିତ ସଦାଶିବ ମିଶ୍ର ତାହାର କର୍ଣ୍ଣଧାର ରୂପେ ସତ୍ୟବାଦୀ ଦଳ ଧର୍ମହାନୀ ଘଟାଉଥିବାର ପ୍ରଚାର ପ୍ରକାଶ୍ୟରେ ଆରମ୍ଭ କରିଦେଲେ । ସେମାନଙ୍କୁ ଜାତି ବାସନ୍ଦ କରିବାର ଅପଚେଷ୍ଟା ମଧ୍ୟ ଚାଲିଲା । ନୀଳକଣ୍ଠବାବୁ ତାହାର ପ୍ରତ୍ୟକ୍ଷ ମୁକାବିଲା କରିବାକୁ ବାହାରିଲେ । ଇନ୍ଧନରେ ଘୃତ ସଂଯୋଗ ଅଗ୍ନି ଅନିବାର୍ଯ୍ୟ । ପଣ୍ଡିତ ସଦାଶିବ ମିଶ୍ରଙ୍କର ସରକାରୀ ମହଲରେ କଦର ଥାଏ । ସେ ତାହାର ସୁଯୋଗ ନେଇ ସତ୍ୟବାଦୀ ସ୍କୁଲ ବିରୋଧରେ ସରକାରୀ କର୍ତ୍ତୃପକ୍ଷଙ୍କୁ ଚିହାଇଲେ । ତାଙ୍କର ଏକମାତ୍ର ଯୁକ୍ତି ଧର୍ମହାନି । ବ୍ରିଟିଶ ସରକାରଙ୍କର ଧର୍ମ ଅନୁଚିନ୍ତା ପ୍ରଖର ନ ଥିବାରୁ, ମିଶ୍ରଙ୍କର କାଟେଣି ସରକାରୀ ଦପ୍ତରରେ ଚଳିଲା ନାହିଁ । ସେ ଚାଲିଲେ ଜାତିଆଣ ପୀଠର ପୃଷ୍ଠଭୂମିକୁ । ସେ ପ୍ରତିରୋଧ-ସଭା ଡାକିଲାବେଳକୁ ନୀଳକଣ୍ଠବାବୁ ସେଠାରେ ହାଜର ପ୍ରତିଯୁକ୍ତି ବାଢ଼ିବା ପାଇଁ । ଉଦ୍ଦାମ ଯୌବନର ସାହସ, ଜ୍ଞାନର ଦୀପ୍ତି, ଆଦର୍ଶର ତାଡ଼ନାରେ ନୀଳକଣ୍ଠ ବାବୁ ପ୍ରଜ୍ୱଳିତ । ତାଙ୍କର ଜ୍ୱାଳାମୟୀ ବାଗ୍ମିତାର ସମ୍ମୁଖୀନ ହେବା ଜାତିଜ୍ଞାନସର୍ବସ୍ୱ ପଣ୍ଡିତମାନଙ୍କ ପକ୍ଷରେ ଯେପରି ଅସୁବିଧାଜନକ ହେଲା, ସେହିପରି ଗୌରବମୟ ନ ହେବାର ଆଶଙ୍କା ସୃଷ୍ଟି କଲା । ପୁରୀ ନିକଟବର୍ତ୍ତୀ ବ୍ରାହ୍ମଣ ଶାସନମାନଙ୍କ ଉପରେ ସର୍ବାଧିକ

Digitized by srujanika@gmail.com

ନିର୍ଭର କରିଥିଲେ କାବ୍ୟକଣ୍ଠ ସଦାଶିବ ମିଶ୍ରେ ଓ ତାଙ୍କ ସହଯୋଗୀ ପ୍ରତିବାଦୀ ପଣ୍ଡିତମାନେ । ବାସ୍ତବ ପରିସ୍ଥିତିର ଅନୁଧ୍ୟାନ ବୋଧହୁଏ କରି ନଥିଲେ । ଶାସନମାନଙ୍କର ଅଧିକାଂଶ ପରିବାରର ପିଲାମାନେ ସ୍କୁଲକୁ ପଢ଼ିବାକୁ ଆସି ସାରିଥିଲେ । ସେମାନଙ୍କର ମୁରବୀମାନେ ସ୍କୁଲର ପ୍ରକାଶ୍ୟ ବିରୋଧରେ ଅଂଶଗ୍ରହଣ କରିବା ପାଇଁ ପଶ୍ଚାତପଦ ହେବା ସ୍ୱାଭାବିକ । ତେଣୁ ଯେଉଁ ବ୍ୟାପକ ସମର୍ଥନ କାବ୍ୟକଣ୍ଠ ପ୍ରଭୃତି ଆଶା କରି ପଦାକୁ ବାହାରିଥିଲେ, ତାହା ମିଳିଲା ନାହିଁ । ହାବେଳୀ ବାଣରେ ବାରୁଦ ଭର୍ତ୍ତି କଲେ କଅଣ ହେବ, ବାରୁଦ ନ ଖୁନ୍ଦିଲେ, ନ ବାଡେଇଲେ, ହାବେଳୀ ଉପରକୁ ଉଠେ ନାହିଁ । ପଣ୍ଡିତେ ବାରୁଦ ଯୋଗାଡ ସିନା କଲେ, ଖୁନ୍ଦିବାକୁ ଲୋକ ପାଇଲେ ନାହିଁ । ହାବେଳୀ ପଦାଡ଼ରେ ପଡିରହିଲା । ଆକାଶରେ ଅଗ୍ନି ଉତ୍ସବ ଦେଖାଇ ପାରିଲେ ନାହିଁ । ବୋର୍ଡିଙ୍ଗରେ ପଂକ୍ତିଭୋଜନ ଅବ୍ୟାହତ ରହିଲା ।

ଖାଇବା ଥିଲା ଅତି ସାଧାରଣ । ପ୍ରାୟ  ସମସ୍ତେ ଗରିବ ଘର ପିଲା । ସେହି ଅନୁଯାୟୀ ସବୁ ବ୍ୟବସ୍ଥା । ଦୁଇଓଳି ମୋଟାଭାତ, ଡାଲି ଓ ଗୋଟିଏ ତିଅଣ (ତରକାରୀ) ।  ପରିବା ଥିଲା ବାଇଗଣ, ସାରୁ, କଖାରୁ, କଦଳୀ । ଶେଷଟା ଅଳ୍ପ, ବେଳେବେଳେ । ମାସେ ଦି'ମାସରେ ଥରେ ଅଧେ ଲୁଣି ଚିଙ୍ଗୁଡି ଆସିଲେ ମହୋତ୍ସବର ବାତାବରଣ ହୁଏ । ସ୍ୱାଦ ପ୍ରୀତିକର ପାଇଁ ତେନ୍ତୁଳି, କଖାରୁ ଗୁଡରେ ସାକରା ମେନେଜରଙ୍କ ମରଜି ଉପରେ ନିର୍ଭର କରି ବହୁଦିନ ଅନ୍ତରରେ ପତ୍ରକୁ ଆସେ । ଡାଲି ଜଳୀୟ ହେବାକୁ ବାଧ, ଏତେ ଲୋକଙ୍କର ଏତେ ଭାତକୁ ଆଚ୍ଛାଦନ କରିବା ପାଇଁ । ସେତେବେଳେ ଥରେ ସେ ଡାଲିର  ବର୍ଣ୍ଣନା ମୁଁ କଟକରେ କରି କିଛି ପରାଭାବ ପାଇଥିଲି । ଲୋକନାଥ ପଟ୍ଟନାୟକ କଟକରେ ସବ୍‌ଇନ୍‌ସପେକ୍ଟର ଥାଆନ୍ତି । ତାଙ୍କ ପୁତୁରା ବୈକୁଣ୍ଠ (ପରବର୍ତ୍ତୀ କାଳର ପ୍ରଖ୍ୟାତ କବି ବୈକୁଣ୍ଠନାଥ ପଟ୍ଟନାୟକ) ସତ୍ୟବାଦୀ ସ୍କୁଲକୁ ପଢ଼ିବାକୁ ଯିବା ପାଇଁ ଇଚ୍ଛୁକ ଥିଲା । ମୋ ପିତା ସ୍କୁଲ ଆସିଷ୍ଟାଣ୍ଟ ସବ୍‌ଇନସ୍‌ପେକ୍ଟର ଥିଲେ । ସେ କଟକ ଆସିଥିଲେ ସାଲତମାମୀ (Annual Return) କାମ ପାଇଁ । ମୁଁ ଆସିଥାଏ ତାଙ୍କ ପାଖକୁ କଟକ ଦେଖିବା ପାଇଁ । ଦିନେ ସନ୍ଧ୍ୟାବେଳେ ନନାଙ୍କ ସାଙ୍ଗରେ ଯାଉଥିଲି ମହମ୍ମଦିଆ ବଜାରରୁ ନୟାସଡକ । ଚାନ୍ଦନୀଚୌକ ପୋଷ୍ଟ ଅଫିସ ସାମନାରେ ଲୋକନାଥ ବାବୁ ରହୁଥିଲେ ଗୋଟିଏ ଭଡାଘରେ । ଘର ବାହାରେ ରାସ୍ତାକଡରେ ଖଣ୍ଡିଏ ଛୋଟ ବେଞ୍ଚ ଉପରେ ବସିଥାଆନ୍ତି । ନନା ତାଙ୍କ ପାଖକୁ ଗଲେ । ମୁଁ ସତ୍ୟବାଦୀରେ ପଢୁଛି ଶୁଣି, ବୈକୁଣ୍ଠକୁ ଘରୁ ଡାକି ବୋର୍ଡିଙ୍ଗ ଖବର ସବୁ ବୁଝିଲେ । ଖାଇବା କଥା  ପଚାରନ୍ତେ, ମୁଁ କହିଲି ଆମ ମେସ୍‌ରେ

Digitized by srujanika@gmail.com

ଯେଉଁ ଡାଲି ହୁଏ ସେଥିରେ କାନରେ ତେଲ ପକାଇ ବୁଡିଲେ ଅବା ଫାନେ ଡାଲି ମିଳିବ । ଶୁଣି ସମସ୍ତେ ହସିଉଠିଲେ । ବୈକୁଣ୍ଠଙ୍କ ଉତ୍ସାହ ସେଥିରେ କମିଯାଇ ନଥିଲା । ତାର କେତେଦିନ ପରେ ସେ ଯାଇ ବୋର୍ଡିଙ୍ଗରେ ରହିଲେ । କିନ୍ତୁ ସତ୍ୟବାଦୀ ଆର୍ଦ୍ର ଜଳବାୟୁ ତାଙ୍କୁ ସୁହାଇଲା ନାହିଁ । ଜ୍ୱର ହୋଇ, ନିମୋନିଆ ହୋଇଗଲା । ଆଗରୁ ପରିଚୟ ହୋଇଥିଲା ବୋଲି, ଆମେ ଦୁହେଁ ବନ୍ଧୁ ହୋଇଗଲୁ । ସେ ବନ୍ଧୁତା ସ୍କୁଲ ପରେ, କଲେଜରେ, ତା ପରେ ସବୁଜ ସମିତିରେ ଓ ଜୀବନର ସବୁ ସ୍ତରରେ ଅକ୍ଷତ ରହି ଆସିଲା ।

ଲୋକନାଥବାବୁ ଗୋପବନ୍ଧୁବାବୁଙ୍କର ସହପାଠୀ ଓ ସହୃଦୟ ବନ୍ଧୁ ଥିଲେ । ସତ୍ୟବାଦୀ ଦଳ ତାଙ୍କୁ ସମ୍ମାନ ଓ ଭକ୍ତି କରୁଥିଲେ । ସେମାନେ କଟକ ଆସିଲେ ତାଙ୍କୁ ସାକ୍ଷାତ୍ କରନ୍ତି । ମୁଁ ତାଙ୍କୁ ଡାଲି କଥା କହିବାର ଦୁଇ ଚାରିଦିନ ପରେ ସତ୍ୟବାଦୀରୁ ହରିବାବୁ କଟକ ଆସିଥିଲେ । ଲୋକନାଥ ବାବୁଙ୍କ ସଙ୍ଗେ ଦେଖାହେବାରେ ସେ ମୋ ପ୍ରତି ପ୍ରସନ୍ନତା ଦେଖାଇ ମୋ ଡାଲି ମନ୍ତବ୍ୟଟି ତାଙ୍କୁ କୌତୁକରେ କହିଥିଲେ । ହରିବାବୁ କଟକରୁ ଫେରି ମତେ ହଷ୍ଟେଲରେ ଦେଖି କହିଲେ, 'କିରେ କଟକ ଯାଇଥିଲୁ ପରା, କଅଣ ସବୁ ହେଲା ?' ସେ କଥା ଶୁଣି ମୋ ପିଳେହାପାଣି । ଭୟରେ କେତେଦିନ ହରିବାବୁଙ୍କୁ ଲୁଚି ଲୁଚି ରହିଲି । କଟକରେ କେଉଁ କାର୍ଯ୍ୟଟି ମୋର ଗର୍ହିତ ହୋଇଛି ଭାବୁଥାଏ । ନୟାସଡକରୁ ଜି. ନାୟକଙ୍କ ଦୋକାନରୁ ହଳେ ଜୋତା ଏକଟଙ୍କା ଚାରିଅଣାରେ (ଏବର ପଚିଶ ପଇସା) ନନା କିଣିଦେଇ ଥାଆନ୍ତି । ସେଇଟା କାଳେ ଦୋଷାବହ ହୋଇଥିବ ଭାବି, ବହିଥାକ ତଳକୁ ଲୁଚେଇ ଦେଲି । ସ୍କୁଲରେ କିମ୍ବା ବୋର୍ଡିଙ୍ଗରେ ଜୋତା ପିନ୍ଧିବାର ମଉକା ନ ଥିଲା । ଗାଁକୁ ରବିବାର ଦିନ ଗଲା ବେଳକୁ ପିନ୍ଧିବାର ସଉକ ଥାଏ । କିନ୍ତୁ ତାହା ଗର୍ହିତ କାର୍ଯ୍ୟ ହେବ ବୋଲି ମୁଁ ଜାଣିନଥିଲି । ଏହିପରି ମନରେ ଦ୍ୱନ୍ଦ ଥାଇ, ଭୟ ଭୟରେ ହରିବାବୁଙ୍କ ଠାରୁ ଲୁଚି ଲୁଚି ଚଳିବାର ଚେଷ୍ଟା ବ୍ୟର୍ଥ ହୋଇଗଲା, ଦିନେ ଡ୍ରିଲ କରିବା ପାଇଁ ଗଲାବେଳେ ତାଙ୍କ ସାମ୍ନା ସାମ୍ନି ହୋଇଯିବାରେ । ନୀଳକଣ୍ଠବାବୁ ତାଙ୍କ ପାଖରେ ଥିଲେ । ହରିବାବୁ କହି ଉଠିଲେ, 'କଣ୍ଠ ଜାଣିଚୁନା, ହରି କଟକ ଯାଇ କଅଣ କରିଛି । ଲୋକନାଥ ପଟ୍ଟନାୟକଙ୍କୁ କହିଛି, ଆମ ଏଠା ଡାଲିରେ ତେଲ ଲଗାଇ ବୁଡ ପକାଇଲେ ଫାଙ୍କେ ଡାଲି ମିଳିବା ମୁସ୍କିଲ୍' । ସମସ୍ତେ ହସିଲେ । ନୀଳକଣ୍ଠବାବୁ କହିଲେ, 'ଏତେ ପାଣିଆ ଡାଲି କାହିଁକି କରୁଛ ?' କଥା ଛିଣ୍ଡିଗଲା, ଆମୋଦ କୌତୁକରେ । ମୋର ଅକାରଣ ଭୟ କଟିଗଲା ।

Digitized by srujanika@gmail.com

ଡାଲି କିନ୍ତୁ ରହିଲା ପୂର୍ବପରି । ମେସ୍‌ଖର୍ଚ୍ଚ ଆମକୁ ପଡୁଥିଲା ମାସିକ ତିନିଟଙ୍କା ଆଠଅଣା (ପଚାଶ ପଇସା ଏବ ହିସାବରେ) । ସେଥିରେ ଡାଲି ଆଉ କେତେ ବହଳିଆ ହୁଅନ୍ତା । ଏ ହେଉଛି ବିଂଶ ଶତାବ୍ଦୀର ଦ୍ୱିତୀୟ ଦଶକ । ଏବେ ଓଳିକରେ ଭାତ, ଡାଲି, ପରିବା ତରକାରୀ, ତିନିଟଙ୍କାରେ ହେବା କଷ୍ଟ । ଆମ ଭିତରୁ ଯେ ଘରୁ ଚାଉଳ ଆଣି ମେସ୍‌ରେ ଜମା ଦେଇ ପାରୁଥିଲେ, ସେ ମେସ୍‌ଖର୍ଚ୍ଚରୁ ଆଂଶିକ ରିହାତି ପାଉଥିଲେ । ଅତି ଗରିବ ପିଲାଙ୍କୁ ମେସ୍ ଖର୍ଚ୍ଚରୁ ପୂରା ଛାଡ ମିଳୁଥିଲା ।

ବୋର୍ଡିଙ୍ଗରେ ବହୁ ପିଲାଙ୍କର କୁଣ୍ଡିଆ, କାଛୁ ହୁଏ । ବୋଧହୁଏ ପୁଷ୍ଟିହୀନ ଖାଦ୍ୟ ତାହାର କାରଣ । ସେବେ ଭିଟାମିନ୍ ବଟିକା ବାହାରି ନଥିଲା । ସତ୍ୟବାଦୀ ଡାକ୍ତରଖାନାର ହୀରାଲାଲ ବାବୁ ଡାକ୍ତର ଥିଲେ ସେ ଅଞ୍ଚଳର ଧନ୍ୱନ୍ତରୀ । ଗୌରବର୍ଣ୍ଣ, କ୍ଷୁଦ୍ରକାୟ, ପୃଥୁଳ ଦେହ । ପ୍ୟାଣ୍ଟ କୋଟ୍ ପରିହିତ, ସୁନାଘଡିଚେନ ଶୋଭିତ । ଏଲ୍.ଏମ୍.ପି. (ଲାଇସେନ୍‌ସିଅଟ ମେଡିକାଲ ପ୍ରାକ୍‌ଟିସ୍‌ନର) ପାସ୍ । ମିଷ୍ଟଭାଷୀ । ସେ କାଳକୁ ବଡ ଡାକ୍ତର । ବୋର୍ଡିଙ୍ଗକୁ କେବେ ଆସିଲେ, ଆମେ ଆତଙ୍କିତ ହେଉ, କଅଣ ରୋଗ, ଦୁର୍ଘଟନା ହେଲା । କୁଣ୍ଡିଆ, କାଛୁପାଇଁ, କାରବଲିକ୍ ସାବୁନ ଗରମ ପାଣିରେ ନିର୍ଦ୍ଦୟ ଧୁଆ ଓ ହଳଦିଆ ଗନ୍ଧ ମଲମ ଲଗାଥିଲା ଏକମାତ୍ର ଚିକିତ୍ସା । ଚିକିତ୍ସା ଯନ୍ତ୍ରଣା ରୋଗର ଯନ୍ତ୍ରଣାକୁ ବଳିପଡେ । ତେଣୁ ରୋଗ ଲୁଚାଉ ଯେତେ ପାରୁ ସେତେ ।

ମେସ୍ ଖାଇବାରେ ଆମେ ଅତୃପ୍ତ ନଥିଲୁ । ଏତେପିଲା ଏକାଠି ବସି ଖାଇବାରେ ଆମୋଦ ଥିଲା । ପିଲାଙ୍କ ଭିତରୁ ମେସ୍ କମିଟି ବଛା ହୁଏ । ବୟସ୍କ ବଳିଷ୍ଠ ପିଲା ବାହାରନ୍ତି ପରଷିବା ପାଇଁ ଭଲଣ୍ଟିଆର ହୋଇ । ସ୍ୱାୟତ୍ତ ଶାସନର ଉପକ୍ରମଣିକା । ମାସକେ ଦିନେ ଫିଷ୍ଟ । ଖେଚଡି, ଡାଲମା, ଖଟା । ଥରେ ଅଧେ ଚାଉଳଖିରୀ ହର୍ଷମୁଖର କରେ ଫିଷ୍ଟ ଭୋଜନକୁ ।

ବୋର୍ଡିଙ୍ଗରେ ଦୁଇବେଳା ଉପାସନା ଓ ପଢ଼ା ଯେପରି ବାଧ୍ୟତାମୂଳକ, ସ୍କୁଲ ପରେ ବ୍ୟାୟାମ ସେହିପରି ଅପରିହାର୍ଯ୍ୟ । ବୋର୍ଡିଙ୍ଗର ଅଗଣା ପ୍ରଶସ୍ତ । ଦଣ୍ଡ ବୈଠକ, କୁସ୍ତି, କସରତ, ପାରାଲେଲ୍ ବାର୍, ଡ୍ରିଲ୍, ମାର୍ଚିଙ୍ଗ ଓ ଦୌଡପାଇଁ ପିଲେ ଭାଗ ଭାଗ ହୁଅନ୍ତି । ବାସୁବାବୁ (ବାସୁଦେବ ମହାପାତ୍ରେ) ସବୁର କାପ୍ତାନ୍ । ତାଙ୍କ ତତ୍ତ୍ୱାବଧାନରେ ଆଉ କେତେକ ମାଷ୍ଟର ଓ ବର୍ଷିୟାନ ଛାତ୍ର ତାଲିମ ଦିଅନ୍ତି ପିଲାଙ୍କୁ । ଏହି ବ୍ୟାୟାମ ସାଙ୍ଗକୁ ଡୁ ଡୁ ଖେଳ ମଧ ଥାଏ । ବ୍ୟାୟାମ ଘଣ୍ଟାକରେ ଭାରି ଫୁର୍ତ୍ତି

Digitized by srujanika@gmail.com

ବାହାରେ । ହୁଇସିଲ୍ ବାଜେ ବାରମ୍ବାର । ବଳ କଳ ଅର୍ଜନ କରିବା ପାଇଁ ପିଲାଏ ମାତନ୍ତି ଉତ୍ସାହରେ । ବାସୁବାବୁଙ୍କ ପାଇକଛାମରା ଅଙ୍ଗ ସୌଷ୍ଠବ ଏବେ ମତେ ଦିଶିଯାଉଛି । ଆମେ ଛୋଟପିଲାଏ ତାଙ୍କ ପ୍ରଚଣ୍ଡ ପ୍ରେରଣାର ବାହାରେ ଥିଲୁ ।

ସାପ୍ତାହିକ ଶନିବାର ସନ୍ଧ୍ୟାରେ ଶ୍ଳୋକାନ୍ତ ମ୍ୟାଚ ଥିଲା ବୋର୍ଡିଂର ଅନ୍ୟ ଏକ ବିଶେଷତ୍ୱ । ପିଲାଙ୍କ ସାଙ୍ଗରେ ବୋର୍ଡିଂରେ ରହୁଥିବା ଶିକ୍ଷକମାନେ ଏକତ୍ର ବସନ୍ତି । ପିଲାଙ୍କ ଭିତରୁ ଜଣେ ଗୋଟିଏ ସଂସ୍କୃତ ଶ୍ଳୋକ ଆବୃତ୍ତି କରେ । ସେ ଶ୍ଳୋକର ଶେଷ  ଶବ୍ଦକୁ ଆଦ୍ୟ ଶବ୍ଦରୂପେ ବ୍ୟବହାର କରି ଅନ୍ୟ ଶ୍ଳୋକ ଗାୟନ କରିବା ପ୍ରତିପକ୍ଷର ଦାୟିତ୍ୱ । ଯେଉଁ ପକ୍ଷ ଯେତେବେଳେ ସେ ପ୍ରକାର ପ୍ରତ୍ୟୁତ୍ତର ଶ୍ଳୋକ ପରିବେଷଣରେ ଅକ୍ଷମ ହୁଏ, ତାହାର ପରାଜୟ ସେତେବେଳେ ସାବ୍ୟସ୍ତ ହୁଏ । ଏହି ପ୍ରତିଯୋଗିତା, ହଷ୍ଟେଲର ବ୍ଲକମାନଙ୍କ ମଧ୍ୟରେ ହେଉଥିଲା । ହଷ୍ଟେଲରେ ରହୁଥିବା ପୃଥକ କ୍ଲାସ ଛାତ୍ରମାନଙ୍କ ମଧ୍ୟରେ ଶ୍ଳୋକାନ୍ତ ମ୍ୟାଚ ବେଳେବେଳେ ହୁଏ । ଏଥିପାଇଁ ପିଲାଙ୍କୁ ଶ୍ଳୋକ ସଂସ୍କୃତ ପଣ୍ଡିତଙ୍କ ସହାୟତାରେ ସଂଗ୍ରହ କରି ଘୋଷି ମନେ ରଖିବାକୁ ହୁଏ । କିଏ କେଉଁ ଶ୍ଳୋକ ଘୋଷୁଛି ତାହା ଯତ୍ପରୋନାସ୍ତି ଗୋପନୀୟ ରଖାଯାଏ । ଜଣେ ଦୁଇଜଣ ଛାତ୍ର ଥିଲେ, ଅତି ଧୁରନ୍ଧର ଓ ଧୂର୍ତ୍ତ । ତାଙ୍କ ଭିତରୁ ଜଣେ  ନାରାୟଣ ମହାପାତ୍ର । ପେଟ ଢ଼ୋଲ, ମୁହଁ ଗୋଲ ।  ପାଟିରୁ ସଂସ୍କୃତ ବାହାରେ ଖଇ ଫୁଟିଲା ପରି । ଅତି ଜୋର୍‌ରେ ଉଚ୍ଚ ଗଳାରେ ସେ ଆବୃତ୍ତି କଲାବେଳେ କେହି ବୁଝିପାରନ୍ତି ନାହିଁ, କଅଣ ବୋଲାହେଲା । କେବଳ ଶ୍ଳୋକର ଶେଷ ଶବ୍ଦଟିର ଶେଷ ଅକ୍ଷର ସେ ସ୍ପଷ୍ଟ କରି ଛିଞ୍ଚାଡି ଦିଏ । ଥରେ ସଂସ୍କୃତ ପଣ୍ଡିତେ ବସିଥିଲେ ଶ୍ଳୋକାନ୍ତ ମ୍ୟାଚରେ । ନାରାୟଣକୁ ସେ କଥା ମାଲୁମ ନଥିଲା । ସେ ଦୁଇ ଚାରିଥର ତାର ସ୍ୱାଭାବିକ ଢ଼ଙ୍ଗ ପ୍ରକାଶ କଲା ପରେ, ପଣ୍ଡିତେ ପାଟିକରି ଉଠିଲେ, 'ହଇରେ କଅଣ ଭାଣ୍ଡାମି କରୁଛୁ ? ତୋ ଶ୍ଳୋକରେ ଶବ୍ଦ ନାହିଁ କି ଅର୍ଥ ନାହିଁ । ଖାଲି ଗର୍ଜନ । ବୋଲ ଦେଖି ଆଉଥରେ ଯାହା ବୋଲିଥିଲୁ ।' ନାରାୟଣ ଚୁପ୍ । ତା'ର ଭୁରୁଡ ଧରା ପଡିଯିବାଠାରୁ ସେ ଆଉ ଶ୍ଳୋକାନ୍ତରେ ବାହାଦୁରୀ ଦେଖାଇଲା  ନାହିଁ । ବେଳେବେଳେ, ଆଗନ୍ତୁକ କେହି ଥିଲେ, ଶ୍ଳୋକାନ୍ତରେ ମଧ୍ୟ ଭାଗ ନିଅନ୍ତି । ମନେ ଅଛି, ଗୋଦାବରୀଶବାବୁଙ୍କର ପୁତୁରା କି ଭଣଜା ଲେଖା ଜଣେ ଯୁବକ ଅନେକ ଥର ଆସି ଅତି ସୁନ୍ଦର ସ୍ୱରରେ ବିଚକ୍ଷଣ ଆବୃତ୍ତି କରନ୍ତି । ନାମ ଥିଲା ପ୍ରଭାକର ।

ପ୍ରତି ରବିବାର ସକାଳଓଳା ବୋର୍ଡିଂ ପିଲାଙ୍କ ଭିତରେ ପୃଥକ ପୃଥକ କ୍ଲାସ ଅନୁଯାୟୀ (debating society) ତର୍କସଭା ବସେ । ପାଳିକରି, ଥରେ

Digitized by srujanika@gmail.com

ଓଡିଆ, ଥରେ ଇଂରେଜିରେ ବକ୍ତୃତା ହୁଏ । ଆମ କ୍ଲାସରେ ଦୟାନିଧି ମିଶ୍ରଙ୍କର ଓଡିଆ ବକ୍ତୃତାରେ ପଟୁତା ପ୍ରକାଶ ପାଉଥିଲା । ମାଟ୍ରିକ ପରେ ସେ କଣ୍ଟ୍ରାକ୍ଟରୀ କରି ବହୁତ ଅର୍ଜ୍ଜନ କରିଥିଲେ । ମାସକେ ଅନ୍ତତଃ ଥରେ ସନ୍ଧ୍ୟାରେ ବୋର୍ଡିଙ୍ଗରେ ସାଧାରଣ ସଭା ଡାଇନିଙ୍ଗ ହଲ୍‌ରେ ବସେ । ସେଥିରେ ଗୋପବନ୍ଧୁ ବାବୁ ଥରେ ଥରେ ଆସି ବକ୍ତୃତା ଦିଅନ୍ତି । ଅନ୍ୟଥା, ନୀଳକଣ୍ଠବାବୁ ବା ଅନ୍ୟ କେହି ଶିକ୍ଷକଙ୍କ ଭାଷଣ ଶୁଣୁ । ତାକୁ ନମୁନା କରି ଆମେ ରଖୁ ମନେ ମନେ, ଆମ ତର୍କସଭାରେ କହିଲାବେଳେ । ଆମ କ୍ଲାସ ଜଗନ୍ନାଥ ରଥ, ନୀଳକଣ୍ଠବାବୁଙ୍କୁ ଅନୁକରଣ କରି, ମୁହଁକୁ ବାଁପଟକୁ, ମୁଣ୍ଡକୁ ଡାହାଣ ପଟକୁ ବଙ୍କେଇ, ଓଠକୁ ମେଲାଇ କହିବାର ଚେଷ୍ଟା, ଏବେ ମନେ ପଡିଲେ, କୌତୁକ ଲାଗେ । ସ୍କୁଲ ଛାଡିଲା ପରେ, କଂଗ୍ରେସ ଆନ୍ଦୋଳନରେ ଗରିଷ୍ଠ ଭୂମିକା ନେଇ ବହୁ ସଭାରେ କହିଲାବେଳକୁ ତାଙ୍କର ସେ ଅଭ୍ୟାସ ଆଉ ଧରା ପଡୁନଥିଲା । କିନ୍ତୁ ଦୃଢ଼ତା ଓ ବିନୟ ସେ ନୀଳକଣ୍ଠବାବୁଙ୍କ ଅନୁକରଣରେ ନିଜସ୍ୱ କରି ପାରିଥିଲେ । ଶ୍ଳୋକାନ୍ତ ଅପେକ୍ଷା ତର୍କସଭାରେ ମୋର ଅଧିକ ଆଗ୍ରହ ଥିଲା । କୌଣସି ଶ୍ରେଷ୍ଠତ୍ୱର ପରିଚୟ ମୁଁ ଦେଇପାରି ନଥିଲି ।

ବୋର୍ଡିଙ୍ଗରେ ଅନୁକରଣର ବହୁ ଚଳନ ଥିଲା । ମାଷ୍ଟରମାନେ ଖଡମ ପିନ୍ଧୁଥିବାରୁ, ପିଲେ ଅନେକ ଆରମ୍ଭ କଲେ ଖଡମ ବ୍ୟବହାର । ଖଡମ ହଳକୁ ଥିଲା ସେତେବେଳେ ଛଅ ପଇସା । ଶିଙ୍ଗର ତୁଡିଥିଲେ, ଆଠ ପଇସା । ହରିବାବୁ (ଆଚାର୍ଯ୍ୟ ମହାଶୟ) ଖଡମ ପିନ୍ଧାରେ ସବୁଠାରୁ ବେଶି ଦୋରସ୍ତ । ଖଡମ ପିନ୍ଧି ସାଇକେଲ ପେଡାଲ କରି ସାତମାଇଲ ବାଟଯାଇ ଦାମୋଦରପୁର ବଜାରରୁ (ଚନ୍ଦନପୁର) ମାଛ ଆଣୁଥିଲେ ନୀଳକଣ୍ଠବାବୁ ଖାଇବା ପାଇଁ ।

ପିଲାଙ୍କର ଦ୍ୱିତୀୟ ଅନୁକରଣ ଥିଲା, ମାଷ୍ଟରଙ୍କ ପରି ଦେହରେ ଗାମୁଛା ପକାଇବା । କ୍ଲାସ ଛଡା, ଅନ୍ୟ ସମୟରେ ସମସ୍ତଙ୍କ ଦେହ ଫୁଙ୍ଗୁଳା । ରୁମ୍ ବାହାରକୁ ବାହାରିଲେ, ବେଳେବେଳେ, କିଏ କାନ୍ଧରେ, କିଏ ପିଠିରେ ଗାମୁଛା ପକାଇ ବାହାରନ୍ତି । ସେଥିରେ ଅନୁକରଣ ହୁଏ, ହରିବାବୁଙ୍କୁ, ଗୋଦାବରୀଶବାବୁଙ୍କୁ ବା ବାସୁବାବୁଙ୍କୁ । କେତେ ପିଲା ଅନୁକରଣ କଲେ, ଗୋଦାବରୀଶବାବୁଙ୍କ ଲୁଗାପିନ୍ଧାକୁ, ଅଧା କଛା, ଅଧା ଫେର । ମୁଁ ଥିଲି ଗୋଦାବରୀଶପନ୍ଥୀ ।

ତୃତୀୟ ଅନୁକରଣ ଥିଲା, ସୌଖୀନ, ବିଳାସ ବ୍ୟସନ ବର୍ଜନ । ସେ ଦିଗରେ ମାଷ୍ଟରମାନେ ଯେପରି, ପିଲାମାନେ ସେପରି ବା ପାଦେ ଅଧିକା ହେବାକୁ ଚେଷ୍ଟାରେ ଥାଆନ୍ତି । ମୁଣ୍ଡବାଳ କେହି କୁଣ୍ଡାଉ ନ ଥିଲେ, ଓସାରିଆ ଲୁଗା କେହି ପିନ୍ଧୁ

Digitized by srujanika@gmail.com

ନଥିଲେ । ଧୋବ ଫର ଫର ଗେଞ୍ଜି କି ସାର୍ଟ କେହି ପିନ୍ଧୁ ନଥିଲେ । ଦେହରେ ତେଲ ଲଗାଇ ଗାଧୋଇବାର ଏକ ପ୍ରକାର ବାରଣ ଥିଲା । ମୁଣ୍ଡରେ ତେଲ ନ ଲଗାଇ, ଶୁଖିଲା, ଫୁରୁ ଫୁରୁ, ଛୋଟବାଳ ରଖିବାରେ ବାହାଦୂରୀ ଥିଲା । ନିରାଡମ୍ବର ଚଳଣି ଆଦର୍ଶ ରୂପେ ଗୃହୀତ ହୋଇଥିବାରୁ, ଆର୍ଥିକ ଦୂରବସ୍ଥାରେ ଆମେ ବିବ୍ରତ ହେଉ ନଥିଲୁ ।

ଚତୁର୍ଥ ଅନୁକରଣ, ଶ୍ରମ ସ୍ୱୀକାର । ଗାଁ ଗାଁ ବୁଲି ମୁଠିଚାଉଳ ସଂଗ୍ରହ, ରୋଗୀସେବା, ଘରପୋଡି ନିଆଁ ଲିଭାଇବାରେ ମାଠିଆ ମାଠିଆ ପାଣିବୁହା, ବୋର୍ଡିଙ୍ଗ, ସ୍କୁଲହତା ନଡିଆଚଅଁର ବା ଖଡିକାମୁଠାରେ ଓଳାଇବା, ମାଟି ଗୋବରରେ ବୋର୍ଡିଙ୍ଗ ଘର, ପିଣ୍ଡା ଲିପା, ମେସ୍‌ର ପିତଳହଣ୍ଡା, ହାଣ୍ଡିମଜା, ଇତ୍ୟାଦି କାମରେ ପିଲାଙ୍କର ଆପତ୍ତିହୀନ ଅଂଶଗ୍ରହଣରେ ପ୍ରଥମରୁ ଆମର ଉତ୍ସାହ ନଥିଲା । କ୍ରମଶଃ ପ୍ରତିଯୋଗିତା ଭାବ ମନକୁ ଆସିଲା । ପଢ଼ାର ଏକ ଆନୁସଙ୍ଗିକ ଅଧ୍ୟାୟ ରୂପେ ତାହା ଧରି ନିଆହେଲା । ମାଷ୍ଟରମାନେ ଏ ସବୁ କାର୍ଯ୍ୟରେ ଆଗୁଆ ଥାଆନ୍ତି, ଆମେ ତାଙ୍କୁ ଅନୁସରଣ କରୁ ।

ସ୍କୁଲର ଖ୍ୟାତି ବଢୁଥାଏ ହଷ୍ଟେଲ ଯୋଗୁ । ବାହାରୁ ଯେ ଆସନ୍ତି, ଚମତ୍କୃତ ହୁଅନ୍ତି, ହଷ୍ଟେଲ ପିଲାଙ୍କ ଚଳଣି ଦେଖି । ଗଛମୂଳେ ସ୍କୁଲ, ମାଟିଘରେ ହଷ୍ଟେଲ ଏ ଦୁହେଁଥିଲେ ପରସ୍ପରର ପରିପୂରକ ।



Digitized by srujanika@gmail.com

# ସନ୍ଦେହ ଦୃଷ୍ଟି

ସ୍କୁଲକୁ ପରିଦର୍ଶକ ଆସୁଥିଲେ ଅନେକ । ଶିକ୍ଷା ବିଭାଗର ଇନ୍‌ସପେକ୍ଟର, ଡିରେକ୍ଟରଙ୍କ ଛଡା ବେସରକାରୀ ଲୋକ ମଧ ଆସନ୍ତି । ସେତେବେଳେ ପୁରୀ ଜିଲ୍ଲା ମାଜିଷ୍ଟ୍ରେଟ୍ ଓ କଲେକ୍‌ଟର ଥିଲେ, ପଣ୍ଡିତ ରମାବଲ୍ଲଭ ମିଶ୍ର । ଡେପୁଟୀ ପାହ୍ୟାରୁ ଉଠି ଜିଲ୍ଲା କଲେକ୍ଟର ହୋଇଥିଲେ । ଉତ୍ତର ପ୍ରଦେଶର ଅଧିବାସୀ ବୋଧହୁଏ ଥିଲେ । ଥରେ ବାର୍ଷିକ ପ୍ରାଇଜକୁ ସେ ଆସିଥିଲେ । ହୃଷ୍ଟପୁଷ୍ଟ, ସୌମ୍ୟ ବଦନ । ବୋର୍ଡିଙ୍ଗ ଫାଟକ ପାଖେ ଛାମୁଣ୍ଡିଆ ବନ୍ଧାହୋଇ ସଭା ହେଲା । କେତେ ବିଶିଷ୍ଟ ଲୋକ ପୁରୀରୁ, ଆଖପାଖ ଗାଁରୁ ଆସିଥିଲେ । ଆବୃତ୍ତିରେ ଅଂଶ ଗ୍ରହଣ ଓ ଖଣ୍ଡିଏ ଖାତା ଉପହାର ପାଇଥିବା ମନେ ଅଛି । ତା'ଠାରୁ ବେଶି ମନେ ପଡୁଛି, କିଛି ନ ବୁଝି ତାଳିମାରିବା । ସଭାପରେ, ସବୁ ପିଲା ବସିଲେ ଡ୍ରିଲ କସରତ ହେବା ଖୋଲା ପ୍ରାଙ୍ଗଣରେ ଚୁଡାଘଷା, ମଇଦାଖିରୀ ଖାଇବାକୁ । କଲେକ୍ଟର ବୁଲୁଥାଆନ୍ତି ଗୋପବନ୍ଧୁ ବାବୁଙ୍କ ସାଙ୍ଗରେ ପିଲାଙ୍କ ଧାଡି ଧାଡି ମଝିରେ । ଗୋରା ହାକିମଙ୍କ ବିଷଦୃଷ୍ଟି କଟିଗଲା, ରମାବଲ୍ଲଭଙ୍କ ସ୍କୁଲ, ହଷ୍ଟେଲ ପରିଦର୍ଶନ ଟିପ୍‌ପଣୀରେ । ଆଖିଦୃଶିଆ କୋଠାବାଡି, ଛଇ ଛଟକ ପିଲା, ପଟାଟୋପ ମାଷ୍ଟ୍ରେ ନଥାଇ ଗୋଟେ ଇଂରେଜୀ ପଢ଼ା ସ୍କୁଲ ଚାଲିବା, ସାଧାରଣ ଓ ସରକାରୀ କଳନା ବାହାରେ ରହିବା ସ୍ୱାଭାବିକ । ତେଣୁ ସନ୍ଦେହ ହେଉଥିଲା, ଆଉ କିଛି ଗୁପ୍‌ଚୁପିଆ କଥା ସ୍କୁଲ ବାହାନାରେ ବୋଧହୁଏ ହେଉଛି । ବଙ୍ଗଳା ପ୍ରଦେଶରେ ବଙ୍ଗବିଚ୍ଛେଦ ପରଠାରୁ ସରକାର ବିରୋଧରେ ବିଦ୍ରୋହ, ନାନା ରୂପରେ ପ୍ରଘଟ ହେଉଥିଲା । ବଙ୍ଗ ପ୍ରଦେଶ ଭିତରେ ଓଡିଶା ସାମିଲ ଥିଲା ୧୯୧୨ ପର୍ଯ୍ୟନ୍ତ । ତା ପରେ ବିହାର ସଙ୍ଗେ ଗୁନ୍ଥା ହୋଇ ବିହାର ଓଡିଶା ସ୍ୱତନ୍ତ୍ର ପ୍ରଦେଶ ହୋଇ ବଙ୍ଗ ପ୍ରଦେଶରୁ ବିଚ୍ଛିନ୍ନ ହେଲେ ମଧ, ବିହାର ଅପେକ୍ଷା ଅଧିକ ବଙ୍ଗ ସହିତ ଓଡିଶାର ଭାଷା, ଧର୍ମ, ସଂସ୍କୃତି ଓ ରୁଚିଗତ

Digitized by srujanika@gmail.com

ସମାନତା ଓ ସମ୍ପର୍କ ରହିଥିବାରୁ, ବଙ୍ଗ ଦେଶର ଘଟନା ଓ ଭାବଗତ ବିସ୍ଫୋରଣ ଓଡିଶାକୁ ବ୍ୟାପିବା ସ୍ୱାଭାବିକ । ୧୯୧୨ ରୁ ୧୯୩୬, ଚବିଶବର୍ଷ ବିହାର ସଙ୍ଗେ ଶାସନ ବନ୍ଧନ ଓଡିଶାର ରହିବା ସତ୍ତ୍ୱେ ବଙ୍ଗ ଓଡିଶା ଘନିଷ୍ଠତାରେ କୌଣସି ବ୍ୟାଘାତ ଘଟି ନଥିଲା । ବଙ୍ଗ ବିଚ୍ଛେଦ (୧୯୦୫) ୧୯୪୭ ମସିହାରେ ଭାରତ ବିଭାଗର ପୂର୍ବାଭାସ । ଉଭୟ ଉଦିଷ୍ଟ ଥିଲା ଭାରତର ଜାତୀୟତା ବୃଦ୍ଧିରେ ଅନ୍ତରାୟ ସୃଷ୍ଟି କରିବା ପାଇଁ । ବ୍ରିଟିଶ ସାମ୍ରାଜ୍ୟର ଦୀପ୍ତି ୧୯୦୫ରେ ଅଭୂତପୂର୍ବ ଥାଏ । ବଙ୍ଗଦେଶରେ ଦେଶାତ୍ମବୋଧ ସେତେବେଳେ ଗୌରବ ଉଜ୍ଜ୍ୱଳ । 'What Bengal thinks today. India thinks tomorrow' ଉକ୍ତି ସର୍ବ ସ୍ୱୀକୃତି ଲାଭ କରିଥାଏ । ବିଦେଶୀ ଶାସନ ବଙ୍ଗକୁ ଖର୍ବ କରିବା ପାଇଁ ତାକୁ ଦୁଇଭାଗ କରିବାକୁ ଅଧ୍ୟାଦେଶ ଜାରୀହେଲା । ତାହା ବିରୋଧରେ ମୁଣ୍ଡ ଟେକିଲା ଜନବିକ୍ଷୋଭ । ବଙ୍ଗଳା ଉପନ୍ୟାସରେ, ନାଟକରେ—ବଙ୍କିମ ଚନ୍ଦ୍ର ଚାଟାର୍ଜିଙ୍କର ଆନନ୍ଦ ମଠ, ମୃଣାଳିନୀ, ଚନ୍ଦ୍ରଶେଖର ପ୍ରଭୃତିରେ—ରାଜଦ୍ରୋହର ସ୍ଫୁଲିଙ୍ଗ ଅଗ୍ନି ସଂଚାର କଲା ଜନମତ ଓ ଗଣ ଚେତନାରେ । ସଂତ୍ରାସ ଆନ୍ଦୋଳନରେ, ଯୁବକ ଯୁବତୀ ତତ୍ପର ହୋଇ ରାଜଦୁର୍ଗକୁ ଭୀତିଗ୍ରସ୍ତ କରି ପକାଇଲେ । ବଙ୍ଗଳାରୁ ବିହାର ଓ ଓଡିଶାକୁ ବିଦ୍ରୋହ ବାତ୍ୟା ବ୍ୟାପିଲା କିଛି କିଛି । ସେହି କାରଣରୁ ସତ୍ୟବାଦୀ ସ୍କୁଲ ଉପରେ ସନ୍ଦେହ ଉପୁଜିଲା ।

ସ୍କୁଲ ଆରମ୍ଭରୁ ତାହାର ନାମ ଥିଲା ଭିକ୍ଟୋରିଆ ମହାରାଣୀଙ୍କ ନାମ ଅନୁକ୍ରମରେ ଭିକ୍ଟୋରିଆ ଏମ୍.ଇ.ସ୍କୁଲ । ଗୋପବନ୍ଧୁ ଓ ସହଯୋଗୀମାନଙ୍କର ସରକାର ସହିତ କୌଣସି ଅସହଯୋଗ ବା ବିରୋଧ ସେତେବେଳେ ନ ଥିଲା । ବରଂ ନାମକରଣରୁ ବିପରୀତ ମନୋଭାବ ସୂଚିତ ହୁଏ, ତଥାପି ସରକାରଙ୍କର ସନ୍ଦେହ, ଛୁରୀଅନା କୁଞ୍ଜରେ କାଳେ ବୋମା ତିଆରି ହେଉଥିବ । ମଣିଷ ବୋମା ଯେ ଅଲକ୍ଷିତରେ ତିଆରି ହେଉଥିଲା, ତାହା ସରକାର ଭାବିପାରି ନଥିଲେ । ମହାତ୍ମାଗାନ୍ଧିଙ୍କ ଆହ୍ୱାନରେ, ଅସହଯୋଗ ଆନ୍ଦୋଳନରେ ସ୍କୁଲକୁ ଯେ ଆହୂତି ଦିଆହେଲା ଏବଂ ପ୍ରାୟ ସବୁ ଶିକ୍ଷକ ଓ ବହୁ ଛାତ୍ର ଯେ ଝାସଦେଲେ, ତାହା ସ୍କୁଲର ଶିକ୍ଷା ଓ ଚଳଣିର ଏକ ଅନୁରୂପକ ପରିଣତି ।

୧୯୦୯ରେ ମାଇନର ସ୍କୁଲ, ୧୯୧୨ରେ ହାଇସ୍କୁଲ ଆରମ୍ଭରୁ କିଛିନା କିଛି ସନ୍ଦେହ ଲାଗି ରହିଥିଲା । ପ୍ରଥମେ ସନ୍ଦେହ କଲେ ସତ୍ୟବାଦୀ ଚାରିପଟର ବ୍ରାହ୍ମଣମାନେ ଯେ ନିଶରଖି, ଛୁଆଁ ଅଛୁଆଁ ନ ବାରି ଜାତି ବୁଡ଼ାଇବାକୁ ସ୍କୁଲ

Digitized by srujanika@gmail.com

ବସାଇଛନ୍ତି । ଦ୍ୱିତୀୟ ସନ୍ଦେହ ଆସିଲା, ମୁକ୍ତିପଣ୍ଡପ, ପଣ୍ଡିତ ସଦାଶିବ ମିଶ୍ର କାବ୍ୟକଣ୍ଠ ପ୍ରଭୃତିଙ୍କ ସାମାଜିକ ପ୍ରଭୁତ୍ୱ ଖଣ୍ଡିତ ହୋଇଯିବ । ତୃତୀୟ ସନ୍ଦେହ ଜନ୍ମିଲା, ସ୍କୁଲକୁ ଯେପରି ହୁ ହୁ ହୋଇ ଚାରିଆଡୁ ପିଲେ ଆସିଲେ, ସରକାରୀ ହାଇସ୍କୁଲ, ବିଶେଷ କରି ପୁରୀ ଜିଲ୍ଲାସ୍କୁଲର ମର୍ଯ୍ୟାଦାହାନି ଘଟିବ । ଚତୁର୍ଥ ସନ୍ଦେହ ଉପୁଜିଲା, ସର୍ବୋଚ୍ଚ ଶିକ୍ଷା ଲାଭ କରି, ସର୍ବନିମ୍ନ ଭତ୍ତାରେ କାର୍ଯ୍ୟ କରିବା ସଂଗେ ଗାଁ ଗଣ୍ଡା ଲୋକଙ୍କ ଭିତରେ ନାନାବିଧ ସେବା କାର୍ଯ୍ୟ କରି ଲୋକପ୍ରିୟତା ବୃଦ୍ଧି ଯୋଗୁ ସରକାର, ସରକାର ସହଯୋଗୀ ବେସରକାରୀ ଲୋକଙ୍କର (ଜମିଦାର, ମହନ୍ତ ଓ ବାବୁ ଗୋଷ୍ଠୀ ) ମାନ ମ୍ଳାନ ହୋଇଯିବ । ଏହି ଶେଷୋକ୍ତ ଶ୍ରେଣୀର ଲୋକଙ୍କର ଦଉଡ ଥିଲା, ସବ୍‌ଡିଭିଜନ ଅଫିସରଙ୍କ ପର୍ଯ୍ୟନ୍ତ । ସେତେବେଳେ ସେ ଥିଲେ ଇଲାକାର ସର୍ବାଧିକ ହାକିମ । ଏବେ ସିନା ବହୁ ବଡ ଅଫିସର ଗହଳିରେ ସେ ନିର୍ବାପିତ ପ୍ରଦୀପ, ସେତେବେଳେ ସେ ଥିଲେ ଇଂରେଜ ଶାସନର ପ୍ରବଳ ପ୍ରତାପୀ ମୂଳପିଣ୍ଡ । ସତ, ମିଛ, ଯାହା କହିବେ, ଯାହା ଲେଖିବେ ସେଇହେବ ବେଦର ଗାର । ଜିଲ୍ଲା କଲେକ୍ଟରଙ୍କର ସେ ହୁଅନ୍ତି କାନକୁହା । କଲେକ୍ଟର ବୋଇଲେ ଇଂରେଜ ସାହେବ । କାଁ ଭାଁ ଜଣେ ଅଧେ ଦେଶୀଲୋକ କେତେମାସ ପାଇଁ କେଉଁଠି ମୁଣ୍ଡ ଟେକନ୍ତି ନାମକୁ ମାତ୍ର । ଇଂରେଜ ସାହେବ ଗହରିଆ କଥା ବୁଝନ୍ତି କମ୍, ଓପର ଠାଉରିଆ ରିପୋର୍ଟ କରନ୍ତି ବେଶି । ତାଙ୍କ ହାତ ବାରେସି ଏସ୍.ଡି.ଓ. ଯାହାଙ୍କୁ ମନ ମରଜି ଖବର ଯୋଗାନ୍ତି ପୁଲିସ । ଆଜିକାଲି, କଥା କଥାକେ ରାଷ୍ଟ୍ରପତିଙ୍କୁ ଟେଲିଗ୍ରାମ । ସେବେ କିଲଟରଙ୍କ ଛାଇ ଦେଖିବା ଦୁଷର ଥିଲା । ଇଂରେଜ ଆଇ.ସି.ଏସ୍.ଚାକିରି ଆରମ୍ଭ କରନ୍ତି ଏସ୍.ଡି.ଓ ହୋଇ ଅଳ୍ପକାଳ । ସବ୍‌ଡିଭିଜନ ମହକୁମାରେ ଯେ ସିନିଅର ଡେପୁଟି ଥାଆନ୍ତି ସେ ହୁଅନ୍ତି ତାଙ୍କର ମହାବାହୁ, ଅସଲ ଗୁଇନ୍ଦା, ସବୁବେଳେ ଦେଶୀଲୋକ, ସ୍ୱଦେଶବାସୀଙ୍କ ବିରୋଧରେ । ସରକାରଙ୍କର ଖଇରଖାଁ ଦଳେ ସବୁବେଳେ ସର୍ବତ୍ର ଥାଆନ୍ତି । ଅହେତୁକ ଖୋସାମଦରେ ତାଙ୍କର ଦକ୍ଷତା । ସତ୍ୟବାଦୀ-ଗୋଷ୍ଠୀ ସେ ଦଳ ବାହାରେ ଥିବାରୁ, ସିନିଅର ଡେପୁଟି ବା ଏସ୍.ଡି.ଓଙ୍କ ପତଳା କାନରେ ସନ୍ଦେହମୂଳକ ସନ୍ଦେଶ ସତର୍କ ତ୍ୱରିତ ହୋଇ ପ୍ରବେଶ କରେ । ଯେତିକି ଯେତିକି ଉପରକୁ ଯାଏ, ଅସମର୍ଥିତ ଭୀତି ସୂଚନା ସେତିକି ବଢୁଥାଏ ।

ଏହାର ଉପଚାର ଗୋପବନ୍ଧୁ କଲେ ଭିନ୍ନ ପ୍ରକାରେ । ମହନ୍ତଙ୍କ ମଧରେ ମୁଖ୍ୟ ଏମାର ମଠ ଅଧିପତି ହେଲେ ସ୍କୁଲର ଜୟଗୀତିର ବାହକ । ପୁରୀ ଜିଲ୍ଲାରେ

Digitized by srujanika@gmail.com

ଥିଲା ତାଙ୍କର ଏକମାତ୍ର ମଟର ଗାଡି । ଇନ୍‌ସପେକ୍ଟର, ଡିରେକ୍ଟର ଆସିଲେ ସ୍କୁଲକୁ ସେହି ମଟରରେ । କଟକର ମଧୁ ବାରିଷ୍ଟର (ମଧୁସୂଦନ ଦାସ) ହେଲେ ସ୍କୁଲ ପ୍ରଶଂସାରେ ଶତମୁଖ । ଉତ୍କଳ ସମ୍ମିଳନୀ ୧୯୧୩ ଡିସେମ୍ବର ମାସରେ, ପୁରୀ ଅଧିବେଶନରେ ବାଲେଶ୍ୱରର ଫକୀରମୋହନ ସେନାପତି, କଟକର ବ୍ରଜସୁନ୍ଦର ଦାସ ଓ କନିକାର ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓଙ୍କ ଯଥାକ୍ରମେ ପ୍ରସ୍ତାବ, ଅନୁମୋଦନ ଓ ସମର୍ଥନରେ ସତ୍ୟବାଦୀ ସ୍କୁଲର ପ୍ରତିଷ୍ଠା ଓ ପରିଚାଳନାର୍ ପ୍ରଶଂସା ଅଭିବ୍ୟକ୍ତି ସର୍ବସମ୍ମତିକ୍ରମେ ଗୃହୀତ ହେଲା । ପ୍ରସ୍ତାବର ସେହି ତିନିରଥୀ ସରକାରଙ୍କର ଶୁଭଦୃଷ୍ଟି ଅନ୍ତର୍ଗତ ଥିଲେ । ସର୍ବୋପରି, ଦୈବକ୍ରମେ ଆସିଲେ ପଣ୍ଡିତ ରମାବଲ୍ଲଭ ମିଶ୍ର ପୁରୀ କଲେକ୍ଟର ହୋଇ । ସେ ଛାପ ଥାପିଲେ ସ୍କୁଲ ସପକ୍ଷରେ । ସରକାରୀ ସନ୍ଦେହ ମଉଳିଗଲା । ଆଉ ଧାପେ ଉପରକୁ ସ୍କୁଲ ଉଠିଲା, ଗୋପବନ୍ଧୁ ବାବୁ ବିହାର ଓଡିଶା କାଉନସିଲକୁ ନିର୍ବାଚିତ ହେବା ପରେ । ଯେଉଁଦିନ ନିର୍ବାଚନ ଫଳ ଜଣାଗଲା, ସେହିଦିନ ଓପରଓଳା ଗୋପବନ୍ଧୁଙ୍କ ସହଚର ରାମା ଗୋଛେ ଧଳା ଲଫାପା ଧରି ବୋର୍ଡିଙ୍ଗ ବାରନ୍ଦାରେ ଡାକି ଘରକୁ ଗଲାବେଳେ, ଆମେ ଆଚମ୍ବିତ ହୋଇ ତାକୁ ପଚାରିଲୁ, ଏତେ ଚିଠି କୁଆଡେ ଯାଉଛି । ସେ ହସି ହସି କହିଲା, ବାବୁପରା କାଉନସିଲର ମେମ୍ବର ହେଲେ, ଜାଣି ନାହଁ ? ରାମାର ସେ ହସ ମୋ ଆଖିରେ ଏବେ ଦିଶିଯାଉଛି । ସେ ଦିନର ମାଷ୍ଟରମାନଙ୍କ ଉଲ୍ଲାସ ଦେଖେ କିଏ ? ଆମେ ପିଲେ ନିର୍ବାଚନର ଗୁରୁତ୍ୱ କିଛି ବୁଝିନଥିଲୁ । ସ୍କୁଲର ସର୍ବାଧିକ ବଢ଼ତିବେଳକୁ ମୁଁ ଅନ୍ତର ହୋଇଗଲି ଅନ୍ୟ ଏକ ସ୍କୁଲକୁ– ଚାଇବାସା ଜିଲ୍ଲା ସ୍କୁଲ–୧୯୧୬ ।



Digitized by srujanika@gmail.com

# ଚାଇବାସା

ନନା ବାଲେଶ୍ୱର ଜିଲ୍ଲା ବାସୁଦେବପୁର, ସୋରରେ ସ୍କୁଲ ଆସିଷ୍ଟାଣ୍ଟ ସବଇନ୍‌ସପେକ୍ଟର ହୋଇ କାମ କଲାବେଳେ, ପରିବାରକୁ ତାଙ୍କ କାର୍ଯ୍ୟସ୍ଥଳୀକୁ ନେଇଥିଲେ । ତା ପରେ ତାଙ୍କର ବଦଳିହେଲା ଗଡଜାତକୁ । ଆମେ ମୋଗଲବନ୍ଦୀଆ । ଓଡିଆଭାଷୀ ଛବିଶ ଗଡଜାତ ଶାସନ ମେଖଳାରେ ମୋଗଲବନ୍ଦୀଠାରୁ ପୃଥକ । ପ୍ରତି ଗଡଜାତରେ ଜଣେ ରଜା । ତାଙ୍କ ଶାସନାଧୀନ ସେ ରାଜ୍ୟର ପ୍ରଜାମାନେ । ସେମାନେ (ରଜାମାନେ) ଶାସନମୁଖ୍ୟ ହେଲେ ମଧ, ସବୁ ଗଡଜାତକୁ ସଜାଡ଼ି ଚଳାଉଥିଲେ, ଜଣେ ପଲିଟିକାଲ ଏଜେଣ୍ଟ । ତାଙ୍କର କର୍ତ୍ତୃତ୍ୱ ରଜାମାନଙ୍କର ଶିରୋଧାର୍ଯ୍ୟ । ପଲିଟିକାଲ ଏଜେଣ୍ଟଙ୍କ ଅଧୀନରେ ଶିକ୍ଷାବିଭାଗ ପାଇଁ ଜଣେ ଏଜେନ୍ସି ଇନ୍‌ସପେକ୍ଟର, ବନବିଭାଗ ପାଇଁ, ଏଜେନ୍ସି କନ୍‌ଜରଭେଟର, ପୂର୍ତ୍ତବିଭାଗ ପାଇଁ, ଏଜେନ୍ସି ଇଞ୍ଜିନିଅର ଥାଆନ୍ତି, ସବୁ ଗଡଜାତର ତଦାରଖ କରିବା ପାଇଁ । ମୋଗଲବନ୍ଦୀ ଶାସନ ଯନ୍ତ୍ର ଠାରୁ ଗଡଜାତ ଶାସନ ପୃଥକ ଥିଲା । ସାଧାରଣରେ ଗଡଜାତକୁ ଅନ୍ଧାରିମୂଲକ କୁହାଯାଉଥିଲା । ନନା, ବୌଦ, ଆଠମଲ୍ଲିକ, ପାଲଲହଡା ରାଜ୍ୟମାନଙ୍କରେ କାମ କଲାବେଳେ ପରିବାରକୁ ସେଠାକୁ ନେଇ ନଥିଲେ । ସେଠାରୁ ଛୁଟିରେ ଗାଁକୁ ଆସିଲେ ଘରେ, ଗାଁରେ ଗଡଜାତ କଥା, ସେଠା ଚଳଣି, ରଜାମାନଙ୍କ ଖାମଖିଆଲି, କର୍ମଚାରୀମାନଙ୍କ କାର୍ଯ୍ୟବିଧି ବିଷୟରେ କହନ୍ତି । ଜଙ୍ଗଲଜାଗା, ବାଟଘାଟ ବିପଦସଙ୍କୁଳ । ସେ ପାଦରେ ଚାଲି, ଘୋଡାରେ ଚଢ଼ି ପ୍ରାଇମେରୀ ସ୍କୁଲ ସବୁ ଦୂର ଦୂରାନ୍ତରେ ଦେଖିବାକୁ ଯାଉଥାଆନ୍ତି । ଗାଁକୁ ଆସିଲାବେଳେ, ମହୁଲ, ମହୁ ଆଣିଥାଆନ୍ତି । ଘରେ ପିଠାହୁଏ ମହୁଲ ମିଶାଇ । ଗାଁରେ ମାମୁଁ, ମଉସାଙ୍କ ଘରକୁ ମହୁଲପିଠା ଯାଏ । ସରୁଚକୁଳି, ଛୁଞ୍ଚିପତର ମହୁସାଙ୍ଗରେ ଖାଇବା ମନେଅଛି । ଏବେ ଓଡିଆଘର ପିଠା ସପନ ହେଲାଣି । ଆରିସା, ମଣ୍ଡା, ଇଣ୍ଡୁରି, ଚିତଉ, ଗଇଁଠା, ପୁଳି, ପୁରଚକୁଳି, କାନ୍ତିଅମାଲୁ, ପୁରକାକରା କେତେରକମର ପିଠା,

Digitized by srujanika@gmail.com

ପଣା ହେଉଥିଲା । ବର୍ଷସାରା ପୁନିଅପର୍ବ ଲାଗି ରହିଥାଏ । ସେଥିରେ ପିଠା ତ ହବାର କଥା । ତା ଛଡା ଖାଲି ଦିନରେ ମଧ ହୁଏ । ଏବେ ପର୍ବପର୍ବାଣିରେ ବଜାରରୁ ସିଙ୍ଗଡା, ମିଠାଇ ଆଣି ଗୃହିଣୀମାନେ କାମ ଫତେକରି ଦେଉଛନ୍ତି । ଚାଉଳ ବିରି ବଟୁରା, ପିଠଉବଟା, ଅଥାରବସା ପାଠୋଇ ମାଇପିଙ୍କୁ ଜଣାନାହିଁ । ତାଙ୍କ ଦେଖାରେ ଗାଉଁଲି ଝିଅମାନେ ମଧ ବାଟ ଭୁଲିଲେ । ଜଗନ୍ନାଥଙ୍କର କୋଠଭୋଗ ନ ଥିଲେ, ଓଡିଆଙ୍କ ପିଠା ନାମ ସବୁ କେହି ଜାଣନ୍ତେ ନାହିଁ । ଭିନ୍ନ ଭିନ୍ନ ପ୍ରକାରର ବଡି, ଆଚାର ଯାହା ଓଡିଆ ଘରକରଣାର ପରିପାଟୀ ଥିଲା, ଝିଅ ବୋହୂଙ୍କର ପ୍ରଶଂସା ଅର୍ଜିବାର କୌଶଳ ଥିଲା, ଘର ଭାଡିରେ ହାଣ୍ଡିରେ ଆଉ ଦିଶୁନାହିଁ । ବଜାରରୁ ଠୁଙ୍ଗା ବା ବୋତଲରେ ଆସି ରୋଷାଇଘର (ହାଣ୍ଡିଶାଳ ଆଉ ନାହିଁ) ଆଲମାରିରେ ରହୁଛି । ନନା ଗାଁକୁ ଆସିଲାବେଳକୁ ତାଙ୍କୁ ସ୍ୱାଗତ କରିବା ପାଇଁ ରହିଥାଏ ବଡି, ଆମ୍ବୁଲ, ଆଚାର ଓ ଆମ୍ବସଡା ।

ଗପ କଲାବେଳେ ଥରେ ନନାଙ୍କଠାରୁ ଶୁଣିଥିଲୁ, ଦୋଳବେଳକୁ ପାଲଲହଡା ରଜା ରଙ୍ଗ ଖେଳନ୍ତି ସବୁ କର୍ମଚାରୀଙ୍କ ସଂଗେ । ଦିପହରଯାଏ ରଙ୍ଗ ଖେଳ ଚାଲେ । ତା ପରେ ସମସ୍ତେ ଯାଆନ୍ତି ରଜାଙ୍କ ପୋଖରୀକୁ ସ୍ନାନପାଇଁ । ପ୍ରତ୍ୟେକଙ୍କ ପାଇଁ ବାସନା ତେଲ ଶିଶିଏ, ସାବୁନ ଖଣ୍ଡିଏ, ଗାମୁଛା ଗୋଟେ ଦିଆଯାଏ । ସ୍ନାନ ପରେ ସମସ୍ତଙ୍କର ନୂଆ ଧୋତି ଚାଦର ପିନ୍ଧି ଠାକୁର ପ୍ରସାଦ ସେବା । ପ୍ରଜାଙ୍କ ବେଠି କଥା କହିଲେ ନସରେ । ଗସ୍ତରେ ଗଲେ, ଜିନିଷପତ୍ର ବୁହାଇବେ ବେଠିଆ । ଘୋଡାରେ ଗଲେ, ଘାସ ଯୋଗାଇବେ ବେଠିଆ । ରାଜାଙ୍କ ପାରିଧିକୁ ପ୍ରଜାକୁଳଙ୍କ ବେଠି ଆଗଥୁଆ । ଧନୀପ୍ରଜା ଧନ ଦେବେ, ମାନୀ ମାନ ଦେବେ, ଅନ୍ୟମାନେ ଦେବେ ପ୍ରାଣମୂର୍ଚ୍ଛା ଶ୍ରମ । ଗଡଜାତ ଚାକିରିରେ ଦରମା ଟିକିଏ ବେଶି ଥିବାରୁ ନନା ଯାଇଥିଲେ । ବର୍ଷେ ନ ପୁରୁଣୁ ଚାଲିଆସିବାକୁ ଇଚ୍ଛା କଲେ କିନ୍ତୁ ରହିବାକୁ ପଡିଲା ପ୍ରାୟ ଛଅବର୍ଷ । ନନାଙ୍କ କଥା ଶୁଣି ଶୁଣି ମୋର ଧାରଣା ହୋଇଥିଲା, ମୋଗଲବନ୍ଦୀଆଙ୍କୁ ଗଡଜାତ ମହାଅଡୁଆ । ପରବର୍ତ୍ତୀ କାଳରେ ଗଡଜାତ ଆନ୍ଦୋଳନ ଓ ଗଡଜାତ ମିଶ୍ରଣବେଳେ ପିଲାଦିନର ସେହି ଧାରଣା ମନରେ ଉଠୁଥାଏ । ଗଡଜାତ ମିଶ୍ରଣ ପାଇଁ ଯେ କିଛି ସାମାନ୍ୟ ଅଂଶ ମୋ ଦ୍ୱାରା ହେବ, ଏ କଥା କିଏବା ଭାବିଥିଲା ସେତେବେଳେ ।

ଗଡଜାତରୁ ନନାଙ୍କର ବଦଳି ହେଲା ୧୯୧୬ ମସିହାରେ, ବୋଧହୁଏ ଆଦ୍ୟଭାଗରେ ସିଂହଭୂମି ଜିଲ୍ଲାର ଜିଲ୍ଲା ମହକୁମା ଚାଇବାସା । ଚାଇବାସା ପାଖାପାଖି

Digitized by srujanika@gmail.com

ଦୁଇ ପ୍ରଧାନ ଓଡିଆଭାଷୀ କରଦରାଜ୍ୟ ଷଢ଼େଇକଳା, ଖରସୁଆଁ । କେରା ଏକ ଓଡିଆ ଜମିଦାରୀ ତା ପାଖରେ । ପୋଡାହାଟର ଓଡିଆ ରାଜା ରାଜ୍ୟ ହରାଇ ଥାଆନ୍ତି । ଏସବୁ ଅଞ୍ଚଳରେ ସମସ୍ତେ ଓଡିଆ ଆଦିବାସୀ ହୋ ମାନଙ୍କୁ ଛାଡି । ସିଂହଭୂମି ଜିଲ୍ଲାର କୋହ୍ଲାଣ ଅଂଶ ହୋ ବସତି । ତାଙ୍କ କଥା କିଛି ଓଡିଆ ମିଶା । ସେ ଜିଲ୍ଲାର ଧଳଭୂମି ପୂରା ଓଡିଆ । ଧଳବଂଶୀୟ ରାଜାଙ୍କର ସେ ରାଜ୍ୟ ଥିଲା । ସିଂହଭୂମିର ପ୍ରାଧାନ୍ୟ ଥିଲା ଟାଟା କମ୍ପାନୀର ଜାମସେଦପୁରରେ ଲୁହାକାରଖାନା ଯୋଗୁ । ଜିଲ୍ଲା ମଧ୍ୟରେ ଏକ ମାତ୍ର ହାଇସ୍କୁଲ ଥିଲା ଚାଇବାସାରେ । ସେଠାରେ ଛାତ୍ରମାନଙ୍କ ମଧ୍ୟରୁ ଅଧିକାଂଶ ଥିଲେ ଓଡିଆ । କିନ୍ତୁ ସେଠାରେ ପଢ଼ା ହେଉଥାଏ ହିନ୍ଦି ଓ ବଙ୍ଗଳା । ଧଳଭୂମିର ଓଡିଆ ପିଲାଏ ପଢୁଥାଆନ୍ତି ବଙ୍ଗଳା, ଅନ୍ୟ ଓଡିଆ ପିଲାଏ ହିନ୍ଦି । ଓଡିଆ ଶିକ୍ଷା ପ୍ରଥମ କରି ଚାଇବାସା ଜିଲ୍ଲା ସ୍କୁଲରେ ଆରମ୍ଭ କରିବା ସ୍ଥିର ହେବାରୁ ଗୋପବନ୍ଧୁ ବାବୁଙ୍କ ପରାମର୍ଶକ୍ରମେ ନନା ସେଠାକୁ ଗଲେ ଓଡିଆ ପଣ୍ଡିତ ହୋଇ । ସିଂହଭୂମି ଓଡିଆଙ୍କର ଏହା ଏକ ଗତବିଜୟ । ସେଥିପାଇଁ କେତେ ସାଧନା, ସାଧ, ଦରଖାସ୍ତ, ଡେପୁଟେସନ୍ କରିବାକୁ ପଡିଥିଲା, ତାହା ପରେ ଆମେ ଜାଣିଲୁ । ନନା ଚାଇବାସା ଜିଲ୍ଲା ସ୍କୁଲରେ କାର୍ଯ୍ୟରେ ଯୋଗଦେଲା ପରେ ଠିକ୍ କଲେ ପରିବାରକୁ ସେଠାକୁ ନେବାକୁ । ପରିବାର ବୋଇଲେ ବୋଉ, ମୋ ପିଇସୀନାନୀ, ମୁଁ ଓ ମୋ ଭଉଣୀ କ୍ଷେତ୍ରମଣି ।

ଲମ୍ବା ଟ୍ରେନ୍‌ଯାତ୍ରା ସେଇ ପ୍ରଥମ । ସାକ୍ଷୀଗୋପାଳ ଷ୍ଟେସନ୍‌ରୁ ପାସେଞ୍ଜର ଗାଡିରେ ଖଡଗପୁର, ସେଠାରେ ଓଳିଏ ଉପରେ ମୁସାଫିର ଖାନାରେ ରହି, ଅନ୍ୟ ଏକ ପାସେଞ୍ଜର ଗାଡିରେ ଗଲୁ ଚକ୍ରଧରପୁର ଷ୍ଟେସନ୍ । ଏ ଦୀର୍ଘ ପଥ ଯିବାପାଇଁ ଦୁଇଦିନରୁ ଅଧିକ ଲାଗିଲା । ଥାର୍ଡକ୍ଲାସ ଡବାରେ ଅଣଓସାରିଆ କାଠବେଞ୍ଚ ଉପରେ ଦିନରାତି କଟାଇବା କିଛି ବାଧକା ଲାଗୁନଥାଏ । ପ୍ରତି ଷ୍ଟେସନରେ ଲୋକ ଓହ୍ଲାଇବା, ଉଠିଲାବେଳର କୋଳାହଳ, ପ୍ଲାଟଫରମର ଚଞ୍ଚଳତା, ବିଶ୍ୱନାଥପୁର-ସତ୍ୟବାଦୀ ମଧ୍ୟରେ ଆବଦ୍ଧଥିବା ମନକୁ ନୂତନ ଜୀବନ୍ୟାସ ଦେଉଥାଏ । ଖଡଗପୁରରେ ପହଞ୍ଚିଲାବେଳକୁ ମୁସାଫିରଖାନାରେ ଲୋକଗହଳି । କିଏ ବସିଛି, କିଏ ଶୋଇଛି, କିଏ ଯା ଆସ କରୁଛି । ନନା ଏପଟ ସେପଟ ହୋଇ ଆମପାଇଁ ଅଳ୍ପ ଜାଗା କଲାବେଳକୁ ସମସ୍ତେ କ୍ଳାନ୍ତ । ଆମ ଚାରିପଟରେ ଥିବାଲୋକେ ସବୁ କଥାବାର୍ତ୍ତା ହେଉଥାନ୍ତି ହିନ୍ଦି, ବଙ୍ଗଳା ତେଲୁଗୁରେ । ଆମେ ବଲବଲ ହୋଇ ଚାହୁଁଥାଉ, ଶୁଣୁଥାଉ– କିଛି ବୁଝୁ ନଥାଉ । ନନା ତା ପୂର୍ବରୁ ଚାଇବାସା ଦୁଇଥର ଯା ଆସ କରିଥିବାରୁ

Digitized by srujanika@gmail.com

ତାଙ୍କୁ ଅସୁବିଧା ଲାଗୁନଥାଏ । ଆମର ଅସ୍ୱସ୍ଥିକର ପରିସ୍ଥିତିରେ ଆମେ ଅପେକ୍ଷା ରଖିଥାଉ ଅନ୍ୟ ଏକ ଟ୍ରେନକୁ ଯାହା ଆମକୁ ଗନ୍ତବ୍ୟ ସ୍ଥାନକୁ ନେବ । ଖଡଗପୁରରେ ପ୍ରାୟ ସବୁବେଳେ ଟ୍ରେନ ଆସୁଥାଏ, ଯାଉଥାଏ, ଷ୍ଟେସନ ଘଣ୍ଟା ବାଜୁଥାଏ, ହୁଇସିଲ ଶୁଭୁଥାଏ, ମୁସାଫିରଖାନାରୁ ଲୋକ ଯାଉଥାନ୍ତି, ଲୋକ ଆସୁଥାନ୍ତି, କୁଲିଙ୍କ ଯା ଆସ, ପାଟିତୁଣ୍ଡ ଲାଗିଥାଏ । ଆମେ ଭାବୁଥାଉ, ଆମ ଟ୍ରେନ ଆସିଗଲା କି ? ଏତେ ଲୋକ, ଏତେ ଗହଳି, ଏତେ ଚଞ୍ଚଳତା, ଲୋକ ଓ ଜିନିଷ ପତ୍ରର ଏତେ ବିଭିନ୍ନତା, ଆମପକ୍ଷରେ ନୂଆ । ତା ପୂର୍ବରୁ ଆମେ ଦେଖିଥିଲୁ ସାକ୍ଷୀଗୋପାଳ, ପୁରୀ, ସୋର, ମାରକୁଣା ରେଲଷ୍ଟେସନ, ଟ୍ରେନ୍ ଆସିବା ଯିବା ପରେ, ନିଶୂନ ପ୍ଲାଟଫର୍ମ ।·ପୁରୀରେ ଯେତେବେଳେ ଯାତ୍ରୀ ଭିଡହୁଏ, ଆମେ ସେଠାରେ ନ ଥାଉ । ତେଣୁ ଆମ ପାଇଁ ଖଡଗପୁର ଜଙ୍କସନ୍ ଷ୍ଟେସନ ଅତି ବୃହତ, ଅତି ବିଭିନ୍ନ, ଅତି ଅପରିଚିତ । ନନା ଖାଇବାର ଯୋଗାଡ କଲେ । ନାନୀ ବିଧବା, ସେ ସାକ୍ଷୀଗୋପାଳ ମନ୍ଦିରରୁ ଆଣିଥିବା ଛତୁଆ ଦିମୁଠା ଖାଇ, ତା ଡ଼ାଳରେ ଥିବା ପାଣିମୁନ୍ଦିଏ ପିଇ ରହିଲା । ଆମେ ଖାଉଲାବେଳେ, ଅପରିଚିତ ବହୁଲୋକ ଦେଖୁଥିବାରୁ, ଆମକୁ ସଂକୋଚ ଲାଗୁଥାଏ । କିନ୍ତୁ ସେଠାରେ କେହି କାହାକୁ ଲକ୍ଷ୍ୟ କରିବାର ଅବସ୍ଥା ନଥାଏ । ସମସ୍ତେ ନିଜ ଆୟୋଜନରେ ବ୍ୟସ୍ତ । ଚାହୁଁଥାନ୍ତି, ଦେଖୁନଥାନ୍ତି, ଶୁଣୁଥାନ୍ତି, ବୁଝୁନଥାନ୍ତି । ଖଡଗୁପରର ଭୌଗଳିକ ଅବସ୍ଥା ଆମକୁ ଜଣା ନଥାଏ । ଟ୍ରେନରୁ କାହିଁକି ଓହ୍ଲାଇଲୁ ମୁଁ ବୁଝିପାରୁ ନଥାଏ । ଅନ୍ୟ ଟ୍ରେନକୁ କାହିଁକି ଅପେକ୍ଷା ତାହା ମଧ୍ୟ ବୁଝିବା ଦୁରୂହ । ଟ୍ରେନ୍ ଟ୍ରେନ୍ ଭିତରେ ଗନ୍ତବ୍ୟ ସ୍ଥାନ ନେଇ କିପରି ଓ କାହିଁକି ବିଭିନ୍ନତା, ତାହା ବୁଝିବା ବା ସେ ବିଷୟରେ କୌଣସି ପ୍ରଶ୍ନ ପଚାରିବା ମୋର ସାଧାତୀତ ଥିଲା । ମୁଁ ପଚାରିପାରିଥିଲେ, ନନା ବୁଝାଇ ଦେଇଥାଆନ୍ତେ । କିନ୍ତୁ ସେ ପଚାରିବାର ପ୍ରବୃତ୍ତି ସତ୍ୟବାଦୀ ସ୍କୁଲ ପଢ଼ାରେ ଜାଗ୍ରତ ହୋଇନଥିଲା । ସେଠାରେ ପ୍ରଣାଳୀ ଥିଲା, ମାନିନେବା, ମନର ଦ୍ୱନ୍ଦ ମନରେ ମାରିଦେବା ।

କୁଲିଙ୍କଠାରୁ ଖବର ନେଇ, ନନା ଆମକୁ ଉଠାଇଲେ, ଆମ ଟ୍ରେନ୍ ଧରିବାକୁ । କୋଳାହଳ ଅବସ୍ଥା ମଧ୍ୟରେ କୁଲିଙ୍କ ସାହସ ଓ ସହାୟତା ଉପରେ ଏକାନ୍ତ ନିର୍ଭର ରଖି ଆମେ ଟ୍ରେନ୍‌ରେ କୌଣସି ମତେ ଉଠିଲୁ । ଅଧିକ ପଇସା ଦେଇ ଉପର ଶ୍ରେଣୀ ଡବାରେ ଯାଇହୁଏ, ଏକଥା ନନା ଅବଶ୍ୟ ଜାଣିଥିବେ । ଆମକୁ ଜଣା ନଥିଲା । ଜାଣିଥିଲେ ବି ଅବସ୍ଥାରେ କିଛି ପରିବର୍ତ୍ତନ ଘଟି ନଥାନ୍ତା । ଯେତେ ଚୂନାକୁ ସେତେପିଠା । ସେତେବେଳର ସମ୍ବଳକୁ ଚାହିଁ ଥାର୍ଡକ୍ଲାସ ଆମକୁ

Digitized by srujanika@gmail.com

ସ୍ୱର୍ଗ । ଭବିଷ୍ୟତରେ ଏୟାର କଣ୍ଡିସନ ବା ଏରୋପ୍ଲେନରେ ଯା ଆସ କଲାବେଳେ ବହୁତଥର ମନେପକାଇଛି ସେ ଥାର୍ଡକ୍ଲାସ ଯାତ୍ରାର ଶୀହରଣ । ନନା, ବୋଉଙ୍କୁ ଯେଉଁଦିନ ପ୍ରଥମଥର ଫାଷ୍ଟକ୍ଲାସରେ ତୀର୍ଥଯାତ୍ରା କରିବାକୁ ନେଇଯାଇଥିଲି, ବୋଉର ତୃପ୍ତି, ନନାଙ୍କର ଅବ୍ୟକ୍ତ ଆନନ୍ଦ ସେମାନଙ୍କ ମୁଖମଣ୍ଡଳରେ ଦେଖି ମୁଁ କୃତ୍ୟକୃତ୍ୟ ହୋଇଥିଲି । ନନା କେବଳ ପଚାରିଥିଲେ, ଟିକଟ କେତେଟଙ୍କା ପଡିଲା ?

ଟ୍ରେନ୍ ଚକ୍ରଧରପୁର ଷ୍ଟେସନରେ ପହଞ୍ଚିଲାବେଳକୁ ଦିନ ଦିପହର । ଆମେ ଅଗାଧୁଆ ଓ ପ୍ରାୟ ଅଖିଆ । ସେ ଷ୍ଟେନ୍ ମଧ ବଡ, ମୁସାଫିରଖାନା ପ୍ରଶସ୍ତ । ତାହା ଆମ ଗନ୍ତବ୍ୟ ସ୍ଥାନର ଶେଷ ଷ୍ଟେସନ ବୋଲି, ଯାତ୍ରାର ପ୍ରଥମ ଷ୍ଟେସନ ସାକ୍ଷୀଗୋପାଳ ପରି, କେତେଟା ନିଜସ୍ୱଭାବ ମନରେ ଆପେ ଆପେ ଆସିଲା । ସୁତରାଂ ଦୋଷତ୍ରୁଟି ଆଖିରେ ନ ପଡିବାର କଥା । ଖଡଗପୁର ଷ୍ଟେସନ ଓ ମୁସାଫିରଖାନା ଅପେକ୍ଷା ଚକ୍ରଧରପୁର ଅଧିକ ଅପରିଚିତ ମନେ ହେଲା । ଆମର ପୂର୍ବର ଜଣାଶୁଣା ଷ୍ଟେସନରେ ଅଚିହ୍ନା ଲୋକ ଥାଆନ୍ତି, ଅଜଣା ଭାଷା କାନକୁ ଆସେ ନାହିଁ । ଏଠାର ଲୋକ ଓ ଭାଷା, ଉଭୟ ଅଚିହ୍ନା ଓ ଅଜଣା । ହିନ୍ଦି ସମସ୍ତଙ୍କ ମୁହଁରେ, କେବଳ ଆମ ମୁହଁ ବଲ ବଲ । ନା ବୁଝୁ ନା କହିପାରୁ । ଜିନିଷପତ୍ର ପରି ଆମେ ଚାରିଜଣ— ବୋଉ, ନାନୀ, ଭଉଣୀ ଓ ମୁଁ । ଜୀବନ୍ତ ବୁକୁଚା ପରି ନନାଙ୍କ ପିଛା ଧରିଥାଉ । କିଛି ସମୟ ପରେ ଯାହା ଘଟିଲା ତାହା ଆମକୁ ଆହୁରି ଆଚମ୍ବିତ କଲା ।

ଚକ୍ରଧରପୁରଠାରୁ ଚାଇବାସା ୧୬ ମାଇଲ । ସେତେବେଳେ ବସ୍ ନଥାଏ । ଏକମାତ୍ର ଯାନ ପୁସ୍‌ପୁସ୍ ମଣିଷଟଣା ଗାଡି, ତାଳପତ୍ର ବାଉଁଶରେ ବଦଳଗାଡି ଆମେ ଦେଖିଥିଲୁ । କିନ୍ତୁ କାଠରେ ଡବାପରି ତିଆରିଗାଡି, ମଣିଷ ଦୁଇଜଣ ଆଗରେ ରହି ଟାଣିବେ ଓ ପଛରୁ ଦୁଇଜଣ ଠେଲିବେ, ଏହାଦେଖି ଆମକୁ ଆଶ୍ଚର୍ଯ୍ୟ ଲାଗିଲା । ପରେ ବୁଝିଲି ଗାଡିର ନାମ push, push ରୁ ପୁସ୍ ପୁସ୍ ହୋଇଛି । ତାର ବହୁବର୍ଷ ପରେ, ପୁରୀ ଷ୍ଟେସନ୍‌ରୁ ସହରକୁ ଯିବାପାଇଁ ମଣିଷଟଣା, ବଳଦହୀନ ବଳଦଗାଡି ବ୍ୟବହାର ଦେଖି, ପୂର୍ବର ପୁସ୍ ପୁସ୍ ଗାଡି କଥା ମନେ ପଡୁଥିଲା । ପ୍ରଥମ ଥର ମଣିଷଟଣା ରିକ୍‌ସା କଲିକତାରେ ଦେଖିଲାବେଳେ, ପୁସ୍‌ପୁସ୍ କଥା ମନକୁ ଆସିଲା । ବାହକ ଓ ବାହିତ ଉଭୟ ମଣିଷ, କେବଳ ବିଭିନ୍ନ ଅବସ୍ଥାର । ସହରମାନଙ୍କରେ ମଳତ୍ୟାଗୀ ଓ ମଳବାହକ ଉଭୟ ମଣିଷ ଦେହସୁହା କଥା । କିନ୍ତୁ, ଭାବିଲାବେଳକୁ ଦେହ ଶୀତାଏ । ସମାଜବାଦୀ ଖୋଳପା ଭିତରେ ଦାସବୃତ୍ତି ଏବେ ସୁଦ୍ଧା ସବୁ ସଭ୍ୟ ଶାସନରେ ଗୁପ୍ତ ସ୍ୱୀକାର ଲାଭ କରିଚାଲିଛି । ଆମ ଦେଶରେ ଜାତିପ୍ରଥା

Digitized by srujanika@gmail.com

ତାକୁ ଅଧିକନ୍ତୁ ଧାର୍ମିକ ଆଚ୍ଛାଦନରେ ଗୌରବାନ୍ୱିତ କରେ । ବିଜ୍ଞାନ ଓ କାରିଗରୀ କୌଶଳରେ ଅପ୍ରତ୍ୟାଶିତ ଅଗ୍ରଗତିରେ ଧନର ଅସମ ବଣ୍ଟନ ଅଧିକ ଦୃଢ଼ୀଭୂତ ହେଉଛି । ଦାସର ଦାସ୍ୟତା ସେହି ଅନୁପାତରେ ଅପରିହାର୍ଯ୍ୟ ହେଉଛି । ସମସ୍ତେ ଦେଖି ନ ଦେଖିଲାପରି, ଜାଣି ନ ଜାଣିଲାପରି ରହୁଛନ୍ତି । କଥା ପଡିଲେ, ଧର୍ମ ଗୁରୁ କହନ୍ତି, ଈଶ୍ୱର ସୃଷ୍ଟିରେ ବରଗଛ, ଦୁବଘାସ ଏକତ୍ର ଦେଖାଯାଏ; ମନୁଷ୍ୟ ସମାଜରେ ବଡ ଓ ସାନ, ଶ୍ରେଷ୍ଠ ଓ ହୀନ ଏକତ୍ର ରହିବା ଓ ଚଳିବା ଅସ୍ୱାଭାବିକ କଣ ? ଯୁକ୍ତି ଯୋଗ ଓ ବିୟୋଗ ଉଭୟ କରିପାରେ ।

ନନା ଗୋଟିଏ ପୁସ୍ ପୁସ୍ ଗାଡି ଭଡା ସ୍ଥିରକରି ଆମକୁ ନେଇ ବସାଇଲେ । ଗାଡିଚାଲିଲା ୧୬ ମାଇଲ, ମଣିଷ ଭିତରେ, ମଣିଷ ତଳେ । ଚାଇବାସାରେ ପହଞ୍ଚିଲାବେଳକୁ ରାତି । ସହରରେ ପଶିଲା ଆଗରୁ ଗୋଟିଏ ନଈପୋଲ । ନଦୀର ନାମ ରଡ । ତୁଣ୍ଡକୁ ଅଡୁଆ, କାନକୁ ଅଡୁଆ । ଆଦିବାସୀ ଭାଷାରେ ନଈର ନାମ ମିଳିଛି । ପୋଲତଳକୁ ସହର ଆରମ୍ଭ ଭାଗର ନାମ ବଡିବଜାର । ଆଉ ଏକ ଅପ୍ରୀତିକର ନାମ । ନନାଙ୍କ ବସାଘର ସେହି ଅଞ୍ଚଳରେ । ମୁଖ୍ୟ ସଦର ରାସ୍ତାରୁ ରଡ ନଈକୁ ଯିବା ଏକ ଅଣଓସାରିଆ ପାଦଚଲା ବାଟରେ, ଅଳ୍ପ ଦୂରରେ, ବାଁହାତି ଏକ କାଠ ଫାଟକ ପାଖରେ ଆମର ସମସ୍ତ ଅପରିଚୟ କ୍ଷାଳିତ ହେଲା । ସ୍ୱଗୃହ ପ୍ରବେଶରେ କ୍ଲାନ୍ତି ମଧ ଅପସରି ଗଲା ।

ହତାଟି ପ୍ରଶସ୍ତ, ଘାସଗୁଳ୍ମ ପରିପୂର୍ଣ୍ଣ । ଘରର ଖପରଲି ଚାଳ । ଗୋଟିଏ ଅଂଶ ଆମର, ଅନ୍ୟ ଅଂଶରେ ଚାଇବାସା ଜିଲ୍ଲା ସ୍କୁଲର ଅନ୍ୟ ଏକ ଶିକ୍ଷକ (ଗଣିତ) ପଦ୍ମଲୋଚନ ନାୟକଙ୍କ ରହଣି । ତାଙ୍କ ଘର ବାଲେଶ୍ୱର ଜିଲ୍ଲା ଜଳେଶ୍ୱର ପାଖ ଏକ ଗ୍ରାମରେ । ଏଫ୍. ଏ. ପାଶ୍ । ପ୍ରଥମ ଚାକରିରେ ଆସିଥାନ୍ତି ଜିଲ୍ଲା ସ୍କୁଲକୁ । ସହକର୍ମୀ ଓ ସହଭାଷୀ, ସେ ଓ ନନା ଏକତ୍ର ଏହି ଘରଟି ଭଡା ନେଇଥାଆନ୍ତି । ଉଭୟ ଅଂଶରେ ଗୋଟିଏ ମୁଖ୍ୟ ବଖରା, ଗୋଟିଏ ଛୋଟ ବଖରା, ଗୋଟିଏ ବାରଣ୍ଡା ଓ ରୋଷାଇଘର । ଆମ ପଟରେ ଅଧିକା କାଠ ଜାଲିଘେରା ଆଉ ଗୋଟିଏ ଛୋଟ ବାରନ୍ଦା ସାମନା ପଟକୁ, ଦାଣ୍ଡ ପାହାଚ ଉପରକୁ । ପଦ୍ମଲୋଚନବାବୁ ଥାଆନ୍ତି ଏକକ । ତାଙ୍କର କନିଷ୍ଠ ଭାଇ ପୁଲିନବିହାରୀ ତାଙ୍କ ପାଖରେ ଥାଏ । ତାଙ୍କ ପରିବାର ଗାଁରେ ଥାଆନ୍ତି ।

ଆମେ ପହଞ୍ଚିବାର ଅଳ୍ପ ସମୟ ଭିତରେ ପ୍ରତିବେଶୀର ଘନିଷ୍ଠ ଆତ୍ମୀୟତା ମିଳିବା ଯେପରି ଅପ୍ରତ୍ୟାଶିତ, ସେହିପରି ଆନନ୍ଦଦାୟକ ହେଲା । ମୋର ଅଧିକ

Digitized by srujanika@gmail.com

ସୌଭାଗ୍ୟ ହେଲା, ଓଡିଆଭାଷୀ ସହପାଠୀ ପୁଲିନକୁ ପାଇ । ଅଚିହ୍ନା ରାଜ୍ୟରେ, ପୁଲିନ ହେଲା ମୋର ପଥପ୍ରଦର୍ଶକ, ଦିଗଦର୍ଶକ । ମୋଠାରୁ ଆକୃତିରେ ଲମ୍ବା; ବର୍ଣ୍ଣରେ ଶ୍ୟାମଳ, ସଙ୍ଗୀ ମେଳାପୀ ।

ଆମ ବସାଘର ହତାରେ ବା ପାଖରେ କୂଅ ନଥାଏ । ପାଣି ଜଣେ ସ୍ତ୍ରୀଲୋକ ସକାଳେ, ସନ୍ଧ୍ୟାରେ ଆଣି ଦେଇଯାଏ । ନନା ଓ ମୁଁ ଗାଧୋଇବା ପାଇଁ ରଡ ନଈକୁ ଯିବାକୁ ହେବ, ପହଞ୍ଚିବା ପରଦିନଠାରୁ ଜାଣିଲି । ନଈଗାଧୁଆ ମୋର ପ୍ରଥମ । ପଥର ମୁଣ୍ଡିଆ ନଈ ଭିତରେ । ପାଣି ନିର୍ମଳ କାଚକେନ୍ଦୁପରି । ସାରାଦିନ ଲୋକଭରା । ପ୍ରଥମ ଦିନ ଦେଖିଲି, ସ୍ତ୍ରୀଲୋକ, ଝିଅପିଲା ମୁଣ୍ଡରେ ମାଟିବୋଳି ଗାଧୋଉଛନ୍ତି । କଳାମାଟି ନୁହେଁ, ଧଳାମାଟି । ତାହା ସାବୁନପରି କାମ ଦିଏ । ନଈକୁ ଯେ ଆସନ୍ତି, ବଡ ବଡ ମାଟିହଣ୍ଡାରେ ପାଣିନେଇ ଯାଆନ୍ତି ମୁଣ୍ଡରେ । ଗାଧୋଇବାରେ ଭୟ ଓ ସଙ୍କୋଚ ପ୍ରଥମ ଦିନ ଅତିମାତ୍ରାରେ ଥିଲା । କ୍ରମଶଃ ତାହା କେବଳ ଦୂରହେଲା ନାହିଁ, ନଦୀପ୍ରତି ଆଗ୍ରହ ଅଧିକରୁ ଅଧିକତର ହେଲା । ରଡନଦୀର ଆକର୍ଷଣର ଅନ୍ୟ ଏକ କାରଣ ଥିଲା, ସହରର ଅନ୍ୟ ଉପକଣ୍ଠରେ ସେହି ନଦୀକୂଳରେ ଏକ ଶିବମନ୍ଦିର । ଜନବସତିଶୂନ୍ୟ ନିର୍ଜନ ସ୍ଥାନ । ସୂର୍ଯ୍ୟାସ୍ତର ଅତି ମନୋରମ ଶୋଭା ନଦୀର ପ୍ରସ୍ତର ଶଯ୍ୟା ଉପରେ ଅଗଭୀର ଜଳଉପରେ ପ୍ରତିବିମ୍ବିତ ହୋଇ ତରଙ୍ଗାୟିତ ହେଉଥାଏ । ସ୍କୁଲ ଛାତ୍ର କ୍ୱଚିତ୍ ଯାଆନ୍ତି । ମୁଁ ବହୁଥର ଯାଉଥିଲି ସେଠାକୁ, ସେ ଦୃଶ୍ୟ ଦେଖିବାକୁ ।

ପ୍ରଥମ ଦିନ ପୁଲିନ ସାଙ୍ଗରେ ଯାଇ ରଡନଦୀରେ ଗାଧୋଇ ଫେରିଲା ବେଳକୁ ନନା ସ୍କୁଲକୁ ଯିବାକୁ ଅପେକ୍ଷା କରୁଥାଆନ୍ତି । ମୋର ବିଳମ୍ବ ହୋଇଥିବାରୁ ଅସନ୍ତୁଷ୍ଟ ଥିଲେ ମଧ୍ୟ କିଛି ପ୍ରକାଶ କଲେ ନାହିଁ । ତରତରରେ ଭାତଖାଇ ତାଙ୍କ ସାଙ୍ଗରେ ଗଲି ସ୍କୁଲରେ ନାମ ଲେଖାଇବାକୁ ।



Digitized by srujanika@gmail.com

ତାକୁ ଅଧିକନ୍ତୁ ଧାର୍ମିକ ଆଚ୍ଛାଦନରେ ଗୌରବାନ୍ୱିତ କରେ । ବିଜ୍ଞାନ ଓ କାରିଗରୀ କୌଶଳରେ ଅପ୍ରତ୍ୟାଶିତ ଅଗ୍ରଗତିରେ ଧନର ଅସମ ବଣ୍ଟନ ଅଧିକ ଦୃଢ଼ୀଭୂତ ହେଉଛି । ଦାସର ଦାସ୍ୟତା ସେହି ଅନୁପାତରେ ଅପରିହାର୍ଯ୍ୟ ହେଉଛି । ସମସ୍ତେ ଦେଖି ନ ଦେଖିଲାପରି, ଜାଣି ନ ଜାଣିଲାପରି ରହୁଛନ୍ତି । କଥା ପଡିଲେ, ଧର୍ମ ଗୁରୁ କହନ୍ତି, ଈଶ୍ୱର ସୃଷ୍ଟିରେ ବରଗଛ, ଦୁବଘାସ ଏକତ୍ର ଦେଖାଯାଏ; ମନୁଷ୍ୟ ସମାଜରେ ବଡ ଓ ସାନ, ଶ୍ରେଷ୍ଠ ଓ ହୀନ ଏକତ୍ର ରହିବା ଓ ଚଳିବା ଅସ୍ୱାଭାବିକ କଣ ? ଯୁକ୍ତି ଯୋଗ ଓ ବିୟୋଗ ଉଭୟ କରିପାରେ ।

ନନା ଗୋଟିଏ ପୁସ୍ ପୁସ୍ ଗାଡି ଭଡା ସ୍ଥିରକରି ଆମକୁ ନେଇ ବସାଇଲେ । ଗାଡିଚାଲିଲା ୧୬ ମାଇଲ, ମଣିଷ ଭିତରେ, ମଣିଷ ତଳେ । ଚାଇବାସାରେ ପହଞ୍ଚିଲାବେଳକୁ ରାତି । ସହରରେ ପଶିଲା ଆଗରୁ ଗୋଟିଏ ନଈପୋଲ । ନଦୀର ନାମ ରଡ । ତୁଣ୍ଡକୁ ଅଡୁଆ, କାନକୁ ଅଡୁଆ । ଆଦିବାସୀ ଭାଷାରେ ନଈର ନାମ ମିଳିଛି । ପୋଲତଳକୁ ସହର ଆରମ୍ଭ ଭାଗର ନାମ ବଡିବଜାର । ଆଉ ଏକ ଅପ୍ରୀତିକର ନାମ । ନନାଙ୍କ ବସାଘର ସେହି ଅଞ୍ଚଳରେ । ମୁଖ୍ୟ ସଦର ରାସ୍ତାରୁ ରଡ ନଈକୁ ଯିବା ଏକ ଅଣଓସାରିଆ ପାଦଚଲା ବାଟରେ, ଅଳ୍ପ ଦୂରରେ, ବାଁହାତି ଏକ କାଠ ଫାଟକ ପାଖରେ ଆମର ସମସ୍ତ ଅପରିଚୟ କ୍ଷାଳିତ ହେଲା । ସ୍ୱଗୃହ ପ୍ରବେଶରେ କ୍ଳାନ୍ତି ମଧ ଅପସରି ଗଲା ।

ହତାଟି ପ୍ରଶସ୍ତ, ଘାସଗୁଳ୍ମ ପରିପୂର୍ଣ୍ଣ । ଘରର ଖପରଲି ଚାଳ । ଗୋଟିଏ ଅଂଶ ଆମର, ଅନ୍ୟ ଅଂଶରେ ଚାଇବାସା ଜିଲ୍ଲା ସ୍କୁଲର ଅନ୍ୟ ଏକ ଶିକ୍ଷକ (ଗଣିତ) ପଦ୍ମଲୋଚନ ନାୟକଙ୍କ ରହଣି । ତାଙ୍କ ଘର ବାଲେଶ୍ୱର ଜିଲ୍ଲା ଜଳେଶ୍ୱର ପାଖ ଏକ ଗ୍ରାମରେ । ଏଫ୍. ଏ. ପାଶ୍ । ପ୍ରଥମ ଚାକରିରେ ଆସିଥାନ୍ତି ଜିଲ୍ଲା ସ୍କୁଲକୁ । ସହକର୍ମୀ ଓ ସହଭାଷୀ, ସେ ଓ ନନା ଏକତ୍ର ଏହି ଘରଟି ଭଡା ନେଇଥାଆନ୍ତି । ଉଭୟ ଅଂଶରେ ଗୋଟିଏ ମୁଖ୍ୟ ବଖରା, ଗୋଟିଏ ଛୋଟ ବଖରା, ଗୋଟିଏ ବାରଣ୍ଡା ଓ ରୋଷାଇଘର । ଆମ ପଟ୍‌ରେ ଅଧିକା କାଠ ଜାଲିଘେରା ଆଉ ଗୋଟିଏ ଛୋଟ ବାରନ୍ଦା ସାମନା ପଟକୁ, ଦାଣ୍ଡ ପାହାଚ ଉପରକୁ । ପଦ୍ମଲୋଚନବାବୁ ଥାଆନ୍ତି ଏକକ । ତାଙ୍କର କନିଷ୍ଠ ଭାଇ ପୁଳିନବିହାରୀ ତାଙ୍କ ପାଖରେ ଥାଏ । ତାଙ୍କ ପରିବାର ଗାଁରେ ଥାଆନ୍ତି ।

ଆମେ ପହଞ୍ଚିବାର ଅଳ୍ପ ସମୟ ଭିତରେ ପ୍ରତିବେଶୀର ଘନିଷ୍ଠ ଆତ୍ମୀୟତା ମିଳିବା ଯେପରି ଅପ୍ରତ୍ୟାଶିତ, ସେହିପରି ଆନନ୍ଦଦାୟକ ହେଲା । ମୋର ଅଧିକ

Digitized by srujanika@gmail.com

ସୌଭାଗ୍ୟ ହେଲା, ଓଡିଆଭାଷୀ ସହପାଠୀ ପୁଲିନଙ୍କୁ ପାଇ । ଅଚିହ୍ନା ରାଜ୍ୟରେ, ପୁଲିନ ହେଲା ମୋର ପଥପ୍ରଦର୍ଶକ, ଦିଗଦର୍ଶକ । ମୋଠାରୁ ଆକୃତିରେ ଲମ୍ବା; ବର୍ଣ୍ଣରେ ଶ୍ୟାମଳ, ସଙ୍ଗୀ ମେଳାପୀ ।

ଆମ ବସାଘର ହତାରେ ବା ପାଖରେ କୂଅ ନଥାଏ । ପାଣି ଜଣେ ସ୍ତ୍ରୀଲୋକ ସକାଳେ, ସନ୍ଧ୍ୟାରେ ଆଣି ଦେଇଯାଏ । ନନା ଓ ମୁଁ ଗାଧୋଇବା ପାଇଁ ରଡ ନଈକୁ ଯିବାକୁ ହେବ, ପହଞ୍ଚିବା ପରଦିନଠାରୁ ଜାଣିଲି । ନଈଗାଧୁଆ ମୋର ପ୍ରଥମ । ପଥର ମୁଣ୍ଡିଆ ନଈ ଭିତରେ । ପାଣି ନିର୍ମଳ କାଚକେନ୍ଦୁପରି । ସାରାଦିନ ଲୋକଭରା । ପ୍ରଥମ ଦିନ ଦେଖିଲି, ସ୍ତ୍ରୀଲୋକ, ଝିଅପିଲା ମୁଣ୍ଡରେ ମାଟିବୋଳି ଗାଧୋଉଛନ୍ତି । କଳାମାଟି ନୁହେଁ, ଧଳାମାଟି । ତାହା ସାବୁନପରି କାମ ଦିଏ । ନଈକୁ ଯେ ଆସନ୍ତି, ବଡ ବଡ ମାଟିହଣ୍ଡାରେ ପାଣିନେଇ ଯାଆନ୍ତି ମୁଣ୍ଡରେ । ଗାଧୋଇବାରେ ଭୟ ଓ ସଙ୍କୋଚ ପ୍ରଥମ ଦିନ ଅତିମାତ୍ରାରେ ଥିଲା । କ୍ରମଶଃ ତାହା କେବଳ ଦୂରହେଲା ନାହିଁ, ନଦୀପ୍ରତି ଆଗ୍ରହ ଅଧିକରୁ ଅଧିକତର ହେଲା । ରଡନଦୀର ଆକର୍ଷଣର ଅନ୍ୟ ଏକ କାରଣ ଥିଲା, ସହରର ଅନ୍ୟ ଉପକଣ୍ଠରେ ସେହି ନଦୀକୂଳରେ ଏକ ଶିବମନ୍ଦିର । ଜନବସତିଶୂନ୍ୟ ନିର୍ଜ୍ଜନ ସ୍ଥାନ । ସୂର୍ଯ୍ୟାସ୍ତର ଅତି ମନୋରମ ଶୋଭା ନଦୀର ପ୍ରସ୍ତର ଶଯ୍ୟା ଉପରେ ଅଗଭୀର ଜଳଉପରେ ପ୍ରତିବିମ୍ବିତ ହୋଇ ତରଙ୍ଗାୟିତ ହେଉଥାଏ । ସ୍କୁଲ ଛାତ୍ର କ୍ୱଚିତ୍ ଯାଆନ୍ତି । ମୁଁ ବହୁଥର ଯାଉଥିଲି ସେଠାକୁ, ସେ ଦୃଶ୍ୟ ଦେଖିବାକୁ ।

ପ୍ରଥମ ଦିନ ପୁଲିନ ସାଙ୍ଗରେ ଯାଇ ରଡନଦୀରେ ଗାଧୋଇ ଫେରିଲା ବେଳକୁ ନନା ସ୍କୁଲକୁ ଯିବାକୁ ଅପେକ୍ଷା କରୁଥାଆନ୍ତି । ମୋର ବିଳମ୍ବ ହୋଇଥିବାରୁ ଅସନ୍ତୁଷ୍ଟ ଥିଲେ ମଧ୍ୟ କିଛି ପ୍ରକାଶ କଲେ ନାହିଁ । ତରତରରେ ଭାତଖାଇ ତାଙ୍କ ସାଙ୍ଗରେ ଗଲି ସ୍କୁଲରେ ନାମ ଲେଖାଇବାକୁ ।



Digitized by srujanika@gmail.com

# ଜିଲ୍ଲାସ୍କୁଲ

ସତ୍ୟବାଦୀ ବନ ବିଦ୍ୟାଳୟରୁ ଚାଇବାସା ଜିଲ୍ଲାସ୍କୁଲକୁ ପରିବର୍ତ୍ତନ ଏକ ଅଭିନବ ଅନୁଭୂତି । ଗୋଟିଏ କ୍ଷୁଦ୍ର ପାହାଡ ମୁଣ୍ଡିଆ ଉପରେ ବିସ୍ତୃତ H ଆକାରର ପକ୍କାକୋଠା । ପାଖକୁ ହେଡମାଷ୍ଟରଙ୍କ କ୍ୱାଟରସ୍ । ଅଳ୍ପ ଦୂରରେ ଦୁଇଟି ପକ୍କା ଛାତ୍ରାବାସ । ସହର ବାହାରେ ଅଥଚ ନିକଟବର୍ତ୍ତୀ ମୁଣ୍ଡିଆର ଏକ ପାର୍ଶ୍ୱରେ ଚାଷଜମି । ପରେ ସେହିବାଟେ ରେଳଲାଇନ୍ ଆସିଲା ।

ସ୍କୁଲରେ ପହଞ୍ଚି, ହେଡମାଷ୍ଟର ଜଗଦୀଶ ଚନ୍ଦ୍ର ସେନଗୁପ୍ତାଙ୍କ ପାଖକୁ ନନା ମତେ ନେଇଗଲେ । ଜିଲ୍ଲାସ୍କୁଲ ହେଡମାଷ୍ଟର ସେତେବେଳେ ଜଣେ ଉଚ୍ଚପଦର ସରକାରୀ କର୍ମଚାରୀ, ସହରର କତିପୟ ବିଶିଷ୍ଟ ବ୍ୟକ୍ତିମାନଙ୍କ ମଧ୍ୟରେ ଅନ୍ୟତମ । ସରକାରୀ, ବେସରକାରୀ ମହଲରେ ପ୍ରତିଷ୍ଠାବାନ୍ ରୂପେ ଆଦୃତ । କୌଣସି ପିଲା ନାମ ଲେଖାଇବାକୁ ଆସିଲେ, ଅଫିସ୍ କିରାଣୀଙ୍କ ସହିତ ତାର ସଂପର୍କ, ସ୍କୁଲ ଶିକ୍ଷକଙ୍କର ପୁତ୍ର ହୋଇଥିବାରୁ ବିଶେଷତଃ ଦୂରାନ୍ତରୁ ଆସିଥିବାରୁ ହେଡମାଷ୍ଟରଙ୍କର ସସ୍ନେହ ଦୃଷ୍ଟି ପ୍ରଥମରୁ ମୋ ଉପରେ ପଡିଲା ଏବଂ ମୋ ଜୀବନର ଗୋଟିଏ ନୂଆ ମୋଡ ସୃଷ୍ଟି ହେଲା । ହେଡମାଷ୍ଟର ବଙ୍ଗଳାରେ ପଚାରିଲେ, ତୋମାର ନାମ କି ? ବଙ୍ଗଳା ପ୍ରତ୍ୟକ୍ଷ ଭାବରେ ଶୁଣିବା ମୋର ପ୍ରଥମ । ନାମ ବତାଇବାରେ କୌଣସି ଭାଷାର ଆବଶ୍ୟକ ହେଲାନାହିଁ । ଦ୍ୱିତୀୟ ପ୍ରଶ୍ନ, କବେ ଏଲେ ? ର ଉତ୍ତର ବଙ୍ଗଳାରେ ଦେବା ମୋ ସାଧ୍ୟାତୀତ । ମୁଁ କହିଲି, Last night । କଥୋପକଥନରେ ଇଂରେଜୀ କହିବା ତାହା ମୋର ପ୍ରଥମ । ନିରୁପାୟ ଅବସ୍ଥାରେ ସହାୟ ସ୍ୱରୂପ ଯାହାର ହଠାତ୍ ଆଶ୍ରୟ ନେଲି, ତାହା ଜୀବନର ବହୁଳ କ୍ଷେତ୍ରରେ ସ୍ୱାତନ୍ତ୍ର୍ୟର ଏକ ପ୍ରଲେପ ରୂପେ ଦେଖାଦେଇଛି । ମାଟ୍ରିକୁଲେସନ୍ ଚତୁର୍ଥ କ୍ଲାସରେ (ଆଜିକାଲିର ଅଷ୍ଟମ) ନାମ ଚଢ଼ିଲାପରେ, ମୁଁ କ୍ଲାସକୁ ଗଲି । ସେଠାରେ ମୋର ଏକ ଅଣ୍ଡାଳିବା ଅବସ୍ଥା । ଶିକ୍ଷାର ମାଧ୍ୟମ ହିନ୍ଦି । କିଏ କଅଣ କହୁଛି, ମୁଁ ବୁଝିପାରେ ନାହିଁ । କେତେକ ବଙ୍ଗାଳି

Digitized by srujanika@gmail.com

ଶିକ୍ଷକ ଥାଆନ୍ତି । ସେମାନଙ୍କ ହିନ୍ଦି ବଙ୍ଗଳା ମିଶ୍ରିତ । ମତେ ଶିକ୍ଷକ ବା ଛାତ୍ର କିଛି ହିନ୍ଦି ବା ବଙ୍ଗଳାରେ ପଚାରିଲେ । ମୁଁ ଅର୍ଥ କିଛି ଠଉରାଇ, ଉତ୍ତର ଦେବାକୁ ଚେଷ୍ଟା କଲି, ଅନଭ୍ୟସ୍ତ ଅତିଅଳ୍ପ ଜଣା, ଅସଂପୂର୍ଣ୍ଣ ଇଂରାଜୀ ବାକ୍ୟରେ । ନିଶ୍ଚୟ ବହୁତ ଭୁଲ କହୁଥିବି । କ୍ଲାସରେ ଓଡିଆ ଛାତ୍ର କେତେକ ଥିଲେ । ସେମାନେ ଷଡ଼ାଇକଳା, ଖରସୁଆଁ, କେରା, ଇଚା, ଧଳଭୂମି, ରାଜବଂଶର; ଆଉ କେତେକ ସେହି ଅଞ୍ଚଳମାନଙ୍କର ମଧ୍ୟବିତ୍ତ ପରିବାରରୁ ଆସିଥାଆନ୍ତି । ସେମାନେ ଯେଉଁ ଓଡିଆ କହିଲେ, ଅଦ୍ଭୁତ କିସମର । ଜଣେ କହିଲା, ଆମ କଥା ନାହିଁ ବୁଝ । ବୁଝିଲି ଠିକ୍, କିନ୍ତୁ କାନକୁ ଅତୁଆ ଲାଗିଲା । ସେ ଓଡିଆ ପିଲାମାନେ ହିନ୍ଦି, ବଙ୍ଗଳାରେ କଥା କହିବାରେ ଅଭିଜ୍ଞ ଓ ଅଭ୍ୟସ୍ତ । ସ୍କୁଲରେ ସେପରି ଓଡିଆ ଛାତ୍ରଙ୍କ ସଂଖ୍ୟା ନଗଣ୍ୟ ନଥିଲା । କାରଣ, ଆଦିବାସୀଙ୍କୁ ଛାଡିଦେଲେ, ସିଂହଭୂମିର ମୂଳବାସିନ୍ଦା ସର୍ବାଧିକ ସଂଖ୍ୟା ଓଡିଆ । ହିନ୍ଦି, ବଙ୍ଗଳା ଭାଷୀ ଯେ ଅଳ୍ପସଂଖ୍ୟକ ଅଧିବାସୀ, ସେମାନେ ବିହାର ଓ ବଙ୍ଗଳାରୁ ଆଗନ୍ତୁକ । କିନ୍ତୁ ସରକାରୀ ଚାକିରୀ, ବୃତ୍ତି ଓ ବ୍ୟବସାୟରେ ସେମାନେ ପ୍ରତିଷ୍ଠିତ ଓ ଅଗ୍ରଣୀ । ଓଡିଆଙ୍କର ସେଥିରେ ସ୍ଥାନ ଦୂରର କଥା, ପ୍ରବେଶର ସୁଦ୍ଧା ସମ୍ଭାବନା ନ ଥାଏ । ଓଡିଆଛାତ୍ର ଘରେ ଓଡିଆ ସ୍କୁଲରେ ହିନ୍ଦି ବା ବଙ୍ଗଳା ମାତୃଭାଷା ରୂପେ ପଢୁଥିଲେ ବାଧହୋଇ । ସେମାନଙ୍କୁ ସ୍କୁଲରେ ଓଡିଆ ମାତୃଭାଷା ରୂପେ ପଢ଼ାଇବା ପାଇଁ ପ୍ରଥମ ହୋଇ ବ୍ୟବସ୍ଥା ହେବାରୁ, ନନା ଯାଇଥିଲେ ପ୍ରଥମ ଓଡିଆ କ୍ଲାସ ସବୁ ଶ୍ରେଣୀ ପାଇଁ ଆରମ୍ଭ କରିବାକୁ । ସ୍କୁଲର ସବୁ ଶ୍ରେଣୀରେ ଓଡିଆପିଲା ସଂଖ୍ୟା ନ୍ୟୂନ । ହିନ୍ଦିପିଲା ବେଶି, ବଙ୍ଗାଳୀ ସଂଖ୍ୟାରେ ତା ତଳକୁ, କିନ୍ତୁ ପ୍ରାଧାନ୍ୟରେ ଓପରକୁ । ମୋର ଭାବ ବେଶିହେଲା ବଙ୍ଗାଳୀ ଓ ଓଡିଆ ପିଲାଙ୍କ ସାଙ୍ଗେ । ବଙ୍ଗାଳୀ ଶିକ୍ଷକମାନଙ୍କଠାରୁ ଅନୁଗ୍ରହ ଦୃଷ୍ଟି ମଧ୍ୟ ମିଳିଲା । ଇଂରାଜୀ, ଗଣିତ, ଇତିହାସ, ଭୁଗୋଳର ଶିକ୍ଷକ ସମସ୍ତେ ବଙ୍ଗାଳୀ । ଓଡିଆ ଓ ବଙ୍ଗାଳୀ ଛାତ୍ର ବଙ୍ଗଳା ଭଲ ବୁଝୁଥିବାରୁ, ସେହି ଶିକ୍ଷକମାନେ ଅଧିକାଂଶ ସମୟରେ ଓ ଅଧିକାଂଶସ୍ଥଳେ ବଙ୍ଗଳାରେ କହନ୍ତି । ହିନ୍ଦି ଓ ଉର୍ଦ୍ଦୁ ପିଲାଏ ନିଜକୁ ନିମ୍ନସ୍ତରର ଭାବି, ମୁଣ୍ଡ ତୁଙ୍ଗାରି ନିରବ ରହନ୍ତି । ଜିଲ୍ଲାସ୍କୁଲରେ ଓଡିଆ ଭାଷାର କ୍ଲାସ ଖୋଲିବାରେ ଓଡିଆ ଛାତ୍ରଙ୍କର ଟିକିଏ ମାନ ବଢ଼ିଥାଏ । ନିଜର ମାତୃଭାଷା ଶିକ୍ଷାକ୍ଷେତ୍ରରେ ଅଚଳ ହେବା, ଅତି ଲଜ୍ଜାକର । ତାଠାରୁ ଅଧିକ ଲଜ୍ଜାକର ହୁଏ ଯେତେବେଳେ ସେହି ଭାଷାର ମୂଳ ଅଧିବାସୀ ବହୁଳ ଜିଲ୍ଲାରେ ତାହା ଘଟେ ।

Digitized by srujanika@gmail.com

ସିଂହଭୂମି ୧୯୧୨ ପୂର୍ବରୁ ଓଡିଶାର ଅନ୍ୟ ଜିଲ୍ଲାମାନଙ୍କ ପରି ବଙ୍ଗ ପ୍ରଦେଶ ଅନ୍ତର୍ଭୁକ୍ତ ଥିଲା । ବିହାର ଓଡିଶା ପ୍ରଦେଶ ହେଲା ପରେ, ସେଥିକୁ ଆସିଲା, କିନ୍ତୁ ଓଡିଶା ଡିଭିଜନରେ ନରହି, ରାଞ୍ଚି ପ୍ରଭୃତି ଜିଲ୍ଲା ସହିତ ଛୋଟ ନାଗପୁର ଡିଭିଜନରେ ରହିଲା । ତେଣୁ ବିହାର ଅଞ୍ଚଳର ଅନ୍ୟ ଜିଲ୍ଲା ପରି ତାହା ସରକାରୀ ମହଲରେ ପରିଗଣିତ ହେଉଥାଏ । ଫଳରେ, ଗାଁ ପ୍ରାଇମେରୀ ସ୍କୁଲଠାରୁ ଜିଲ୍ଲାସ୍କୁଲ ପର୍ଯ୍ୟନ୍ତ କେଉଁଠାରେ ଓଡିଆ ଭାଷାର ସ୍ଥାନ ନ ଥାଏ । କେବଳ ଷଢ଼ାଇକଳା, ଖରସୁଆଁ କରଦ ରାଜ୍ୟ ଥିବାରୁ, ସେଠାର ଓଡିଆ ରାଜବଂଶଙ୍କ ନିର୍ଦ୍ଦେଶ ଓ ପ୍ରେରଣାରେ ଅଳ୍ପ କେତୋଟି ଓଡିଆ ପ୍ରାଇମେରୀ ସ୍କୁଲ ଥାଏ । ମିଡିଲ୍ ସ୍କୁଲ, ହାଇସ୍କୁଲରେ ଓଡିଆ ଶିକ୍ଷାର ସୁବିଧା ନଥାଏ । ଏହି ନିମ୍ନତମ ଓ ସାମାନ୍ୟ ସୁବିଧା ପାଇଁ ଦୀର୍ଘକାଳ ଆନ୍ଦୋଳନ ଓ ଅନୁଗ୍ରହ ପ୍ରାର୍ଥନା କଲାପରେ, ଜିଲ୍ଲାସ୍କୁଲରେ ଓଡିଆ କ୍ଲାସ ଖୋଲିଲା । ଏହି କ୍ରମାଗତ ପ୍ରଚେଷ୍ଟାରେ ଗୋପବନ୍ଧୁ ଦାସ, ଖରସୁଆଁର ପଣ୍ଡିତ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ, ଚାଇବାସାର ଏକମାତ୍ର ଓଡିଆ ଓକିଲ ପୂର୍ଣ୍ଣଚନ୍ଦ୍ର ତ୍ରିପାଠୀ, ଚକ୍ରଧରପୁରର କାହ୍ନୁକିଶୋର ପାଣି, କେରାର ଜମିଦାରଙ୍କର ଭୂମିକା ଗୁରୁତ୍ୱପୂର୍ଣ୍ଣ ଥିଲା ଏବଂ ତାହା ସିଂହଭୂମିରେ ଓଡିଆ ଆନ୍ଦୋଳନର ପ୍ରଥମ ସୋପାନ ।

ଆମ କ୍ଲାସରେ ଆଦିବାସୀ ପିଲା ମଧ୍ୟ ଥିଲେ । ସିଂହଭୂମିର ଆଦିବାସୀ ହୋ ଓ ଓଡିଆ । ହୋଙ୍କ ଭାଷା ଓଡିଆ ମିଶାହେବା ସ୍ୱାଭାବିକ । ସେମାନଙ୍କର ସ୍ୱତନ୍ତ୍ର ଲିପି ନଥିବାରୁ, ସ୍ୱାଭାବିକ ଭାବରେ ସେମାନେ ଓଡିଆ ପଢ଼ିବାର କଥା ମାତ୍ର ବିହାରୀ କର୍ତ୍ତାମାନଙ୍କ ପ୍ରଭାବରୁ ହିନ୍ଦି ଭାଷା ମୂଳ ସ୍କୁଲରୁ ତାଙ୍କ ଉପରେ ଲଦା ହେଉଥିଲା । ଜିଲାସ୍କୁଲରେ ସେମାନେ ପ୍ରାୟ ଏକଘରିଆ ଥାଆନ୍ତି । ନିଜ ନିଜ ଭିତରେ ହୋ ଭାଷାରେ କଥାବାର୍ତ୍ତା ହୁଅନ୍ତି । ଅନ୍ୟମାନଙ୍କ ସାଙ୍ଗେ କ୍ୱଚିତ୍ କଥାହେଲେ, ହିନ୍ଦି ଅବଲମ୍ବନ କରନ୍ତି । କ୍ଲାସରେ ପ୍ରାୟ ଏକାଠି ସେମାନେ ବସନ୍ତି । ଅନ୍ୟମାନଙ୍କ ସଙ୍ଗେ ମିଶନ୍ତି କମ୍ । ହାଇସ୍କୁଲକୁ ଆସିଲା ବେଳକୁ ସେମାନଙ୍କ ସଂଖ୍ୟା ହୁଏ ଅତି ଅଳ୍ପ । ମାଟ୍ରିକ୍ ଓପର ଦୁଇଶ୍ରେଣୀରେ କେହି ନଥାନ୍ତି । ଆମ କ୍ଲାସରେ ଥିଲେ ମାତ୍ର ତିନି ଜଣ । ବର୍ଷକ ପରେ ସେମାନେ ସ୍କୁଲ ଛାଡିଦେଲେ । ହୋ ପିଲାଏ ଥିଲେ, ପଢ଼ାରେ ଦୁର୍ବଳ, ଖେଳରେ ଆଗୁଆଳ । ତାଙ୍କପାଇଁ ଗୋଟିଏ ଛାତ୍ରାବାସ ଅଲଗା ଥିଲା । ଘଟନା ଚକ୍ରରେ ପ୍ରଥମ ଦିନରୁ ସ୍କୁଲରେ ମୁଁ ଚିହ୍ନଟ ହୋଇଗଲି । ସୌଭାଗ୍ୟକୁ, ପ୍ରଥମ ତ୍ରୈମାସିକ ପରୀକ୍ଷାରେ ପ୍ରଥମ ସ୍ଥାନ ପାଇବାରୁ, କ୍ଲାସରେ ଆଗୁଆପିଲା

Digitized by srujanika@gmail.com

ରୂପେ ଆପେ ଆପେ ସ୍ୱୀକୃତ ହୋଇଗଲି । ପରୀକ୍ଷାରେ ମୋର ନିକଟତମ ପ୍ରତିଦ୍ୱନ୍ଦୀ ଥିଲା ପଶୁପତି ସରକାର । ଆମେ ଦୁହେଁ ଟକ୍କର ଦେଇ ଚାଲିଲୁ ମାଟ୍ରିକୁଲେସନ୍ ପରୀକ୍ଷା ପର୍ଯ୍ୟନ୍ତ । କେତେବେଳେ ସେ ପ୍ରଥମ, ମୁଁ ଦ୍ୱିତୀୟ, କେଉଁ ପରୀକ୍ଷାରେ ମୁଁ ପ୍ରଥମ ସେ ଦ୍ୱିତୀୟ । ସେ' ଓ ତା ବଡଭାଇ ନରେନ୍ଦ୍ର ଏକା କ୍ଲାସରେ । ବଡଭାଇ ପଢ଼ାଶୁଣାରେ ପଛକୁ ପଡେ । ତାଙ୍କ ପିତା ଥିଲେ ଓକିଲ । ଆମକୁ ଚାହିଁ ସେ ବହୁତ ବଡଲୋକ । ପଶୁପତି ଓ ମୋର ସଖ୍ୟତା, ମାଟ୍ରିକୁଲେସନ୍ ପରେ ରେଭେନ୍‌ସା କଲେଜରେ ବି.ଏ ପାଠଶେଷ ପର୍ଯ୍ୟନ୍ତ ଅକ୍ଷତ ରହିଥିଲା । ମୁଁ ପାଟନାକୁ ଏମ୍.ଏ ପଢ଼ିବାକୁ ଗଲି, ପଶୁପତି ସବ୍‌ଡେପୁଟି ଚାକିରିରେ ପଶିଲା । ସେହିଠାରୁ ଛାଡବାଡ ହୋଇଗଲା । ମୁଁ ପାଟନା ହାଇକୋର୍ଟକୁ ଜଜ୍ ହୋଇ ଯିବାପରେ ଥରେ ପଶୁପତି ଅତି ସନ୍ତର୍ପଣରେ ଆମକୋଠୀକୁ ଆସୁଥିବା ମୁଁ ଓପର ମହଲାରୁ ଦେଖି, ତଳକୁ ଦୌଡିଆସି ଫାଟକ ପାଖରୁ ଅଧାବାଟରୁ କୁଣ୍ଢାଇ ନେଇ ଆସିବାରେ ଆମ ଦୁହିଁଙ୍କର ପୂର୍ବସ୍ମୃତି ଉଦ୍‌ବେଳିତ ହୋଇଉଠିଲା । ଫେରିଯାଇ ସେ ଖଣ୍ଡିଏ ଚିଠି ଲେଖିଲା । ପଢ଼ିଲାବେଳେ ଆମ ଭିତରେ ପାର୍ଥକ୍ୟ ନଥିଲା । ଜୀବିକାରେ ବହୁ ପାର୍ଥକ୍ୟ ଘଟିଛି । ତମେ ହାଇକୋର୍ଟକୁ ଆସିବା ପରେ କେତେଥର ମୁଁ ପାଟନା ଯାଇଥିଲି । କିନ୍ତୁ ତମ ସହିତ ସାକ୍ଷାତ କରି ହେବ କି ନାହିଁ ଏହି ସନ୍ଦେହ ଓ ଦ୍ୱିଧାରେ ଯିବାକୁ ସାହସ କରିନଥିଲି । ମୋର ଚାକରିରେ ଅବସର ନେବା ସମୟ ହୋଇଗଲାଣି । ଆଉ ପାଟନା ଯିବାର ସୁଯୋଗ ମିଳିବ ନାହିଁ । ତେଣୁ ଶେଷଥର, ସାହସ ବାନ୍ଧି ଗଲି । କୃତାର୍ଥ ହୋଇ ଫେରିଲି । You are still the same Harihar.

ଷଢ଼େଇକଳା ରାଜବଂଶର ହିମାଂଶୁ ପ୍ରତାପ ସିଂହଦେଓ ଓ ତାଙ୍କ ବଡଭାଇ ନଗେନ୍ଦ୍ର ପ୍ରତାପ, ଧଳଭୂମ ରାଜବଂଶର ହାରାଧନ ଧବଳ ଦେଓ, ରାଧିକା ଧବଳ ଦେଓ, ଧଳଭୂମିର ତାରାପଦ ଷଡଙ୍ଗୀ, ଦେବେନ୍ଦ୍ରନାଥ ଦାଶ ସହପାଠୀଙ୍କ ସଙ୍ଗେ ବନ୍ଧୁତା ଜନ୍ମିଲା । ତାରାପଦ ବି.ଏ.ପାଶ୍ କରିସାରି କୌଣସି ଚାକିରି ବା ବୃତ୍ତି ଭିତରକୁ ନଯାଇ, ନିଜ ଘରଧନ୍ଦା ବୁଝିଲେ ଓ ସିଂହଭୂମିରେ ଓଡିଆଙ୍କ ସ୍ୱାର୍ଥରକ୍ଷା ଦିଗରେ ବ୍ରତୀ ରହିଲେ । ତାଙ୍କର ଅକାଳ ବିୟୋଗ ପର୍ଯ୍ୟନ୍ତ ବନ୍ଧୁତା, ଯୋଗାଯୋଗ ଓ ପତ୍ରାଳାପ ରହିଥିଲା । ତାଙ୍କ ଘର ଖଣ୍ଡମୌଜା । ତାଙ୍କର ପୁତ୍ର ଦୀନେଶ ଷଡଙ୍ଗୀ ଉଦୀୟମାନ ଡାକ୍ତର, ଦେଶପ୍ରେମୀ, ଉତ୍ସାହୀ ଯୁବନେତା, ସିଂହଭୂମି ଉତ୍କଳ ସଭାର ଏକ ମୁଖ୍ୟ ସଞ୍ଚାଳକ । ମୋର ଦୁଃଖ ରହିଲା ଯେ, ତାରାପଦଙ୍କୁ ବହୁବାର ପ୍ରତିଶ୍ରୁତି

Digitized by srujanika@gmail.com

ଦେଇଥିଲି, ତାଙ୍କ ଘରକୁ ଯିବାପାଇଁ କିନ୍ତୁ ତାହା ରକ୍ଷାକରି ପାରିଲି ନାହିଁ । ତାଙ୍କ ଉଦ୍ୟମରେ ସେଠାରେ ଏକ ହାଇସ୍କୁଲ ଚାଲିଛି । ତାଙ୍କ ବିୟୋଗରେ ଓଡିଆ ଆନ୍ଦୋଳନର ଏକ ସ୍ତମ୍ଭ ଭାଙ୍ଗିଯାଇଛି । ଦେବେନ୍ଦ୍ର ଜାମସେଦପୁରରେ ଆଇନ ବୃତ୍ତିରେ ରହିଲେ । ତାଙ୍କ ସହିତ ଆଉ ଯୋଗାଯୋଗ ରହିପାରି ନାହିଁ ।

ମୁଁ ଜିଲ୍ଲା ସ୍କୁଲକୁ ଯିବାର ଅବ୍ୟବହିତ ପୂର୍ବରୁ ଯୋଗେନ୍ଦ୍ର ନାରାୟଣ ଆଚାର୍ଯ୍ୟ (ପଣ୍ଡିତ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟଙ୍କର ପୁତ୍ର) ଓଡିଆ ମାତୃଭାଷା ରୂପେ ଗ୍ରହଣ କରି ଚାଇବାସା ସ୍କୁଲରୁ ପ୍ରଥମ ପରୀକ୍ଷାର୍ଥୀ ଭାବେ ମାଟ୍ରିକ ପରୀକ୍ଷା ଦେଇଥାନ୍ତି । ମୋ ଯିବାର ଅଳ୍ପ କେତେଦିନ ପରେ ସେ ସ୍କୁଲକୁ ଆସିଥିଲେ ଶିକ୍ଷକମାନଙ୍କ ସଙ୍ଗେ ଦେଖା କରିବାକୁ । ସୁନ୍ଦର ଚେହେରା, ସୁଗଠିତ ବପୁ, ଧୋତି, କାମିଜ, ଖୋଲାକଲର କୋଟ ସାଙ୍ଗକୁ ମୋଜା, ଜୋତା ପିନ୍ଧି ସେ ଯେତେବେଳେ ସ୍କୁଲ ବାରନ୍ଦାରେ ଯାଉଥିଲେ, ସବୁପିଲାଙ୍କ ସମ୍ଭ୍ରମ ଦୃଷ୍ଟି ଆକୃଷ୍ଟ ହେଉଥିଲା । ସେ ଦୃଶ୍ୟପଟ ମୋ ମାନସପଟରେ ଛାପା ରହିଛି । ମୋଜାରେ ଗାର୍ଟର ପିନ୍ଧା ତାଙ୍କଠାରେ ସେଦିନ ମୁଁ ପ୍ରଥମ ଦେଖିଥିଲି । ତାର ୧୧ ବର୍ଷ ପରେ ମୁଁ ଯେଉଁଦିନ ମୋଜା ଗାର୍ଟର ପିନ୍ଧିଲି, ଯୋଗେନବାବୁଙ୍କ କଥା ମନେ ପଡୁଥାଏ । ଯୋଗେନବାବୁ ଚାଇବାସାରେ ଓକିଲାତି କଲେ ଏବଂ ସିଂହଭୂମି ଉତ୍କଳ ସଭାର ନେତୃତ୍ୱ ଗ୍ରହଣ କରି, ପ୍ରଥମ ବେସରକାରୀ ଓଡିଆ ହାଇସ୍କୁଲ ସେଠାରେ ସ୍ଥାପନ କରିବାରେ ସାହାଯ୍ୟ ଦେଲେ ।

ଆମ ଓପର କ୍ଲାସରେ ଦୁଇଜଣ ଓଡିଆ ଛାତ୍ରଙ୍କ ସହିତ ମୋର ଘନିଷ୍ଠତା ଜନ୍ମିଥିଲା । ସାଧାରଣତଃ ଓପରକ୍ଲାସ ପିଲାଙ୍କଠାରୁ ସସମ୍ମାନ ଦୂରତ୍ୱ ରକ୍ଷା ସେ ସମୟର ରୀତି ଥିଲା । ମୋ ସହପାଠୀ ରାଧିକାଙ୍କ ବଡଭାଇ ଧନପତି ଧବଳ ଦେଓ ବଡ ସ୍ନେହଶୀଳ ଥିଲେ । ପଢ଼ା ଅପେକ୍ଷା ଫୁର୍ତ୍ତିରେ ତାଙ୍କର ଖ୍ୟାତି ଥାଏ । ବେକରେ ସୁନାମାଳି ପକାଇ, ମୁଣ୍ଡରେ ମଝିରୁ ଟେରିପକାଇ, ସୌକିନ ଲୁଗାକୁର୍ତ୍ତା ପିନ୍ଧି ସେ କ୍ଲାସକୁ ଆସନ୍ତି । ସ୍କୁଲ ଡେଇଁ ତାଙ୍କର ପଢ଼ା ଆଉ ହେଲାନାହିଁ । ଅନ୍ୟଜଣକ ଥିଲେ କାଞ୍ଚୀପ୍ରସନ୍ନ କବି । ସଞ୍ଜାରେ କବି, ଯଥାର୍ଥରେ କବି । ଷଢ଼େଇକଳା ଗଡର ପଦ୍ମନାଭ କବି ପରିବାର ପ୍ରଖ୍ୟାତ । ଜ୍ଞାନାଲୋକ ସେ ପରିବାରରେ ପୁରୁଷାନୁକ୍ରମେ ପ୍ରଜ୍ୱଳିତ । କାଞ୍ଚୀପ୍ରସନ୍ନ କଥା କହିବାରେ ଯେପରି ଧୂରନ୍ଧର, ଓଡିଆ କବିତା, କାବ୍ୟ ରଚନାରେ ସେହିପରି ସିଦ୍ଧହସ୍ତ । ତାଙ୍କ ପାଖକୁ ଗଲେ ବୁହାଏ ନିଜ ରଚନାରୁ ନ ଶୁଣାଇ ସେ ଛାଡନ୍ତି ନାହିଁ । ସେ ମଧ ସ୍କୁଲ ପରେ ଆଉ ପଢ଼ିଲେ ନାହିଁ । କିନ୍ତୁ ସାରାଜୀବନ

Digitized by srujanika@gmail.com

ସାହିତ୍ୟ ଚର୍ଚ୍ଚା ଓ ରଚନାରେ କଟାଇଲେ । ବହୁ ପୁସ୍ତକ ମଧ୍ୟ ପ୍ରକାଶ କଲେ । କବିତା ଲେଖା ଲୋଭ ମୁଁ ତାଙ୍କଠାରୁ ପାଇଥିଲି । କ୍ଷୁଦ୍ର ଇଂରାଜୀ କବିତାର ଓଡିଆ ଅନୁବାଦ କରି ତାଙ୍କୁ ଦେଖାଇବାରେ ବହୁତ ଉତ୍ସାହ ସେ ଦେଲେ ଏବଂ ମୋର ପ୍ରଥମ କବିତା ତୁଳସୀକୁ ଆବୃତ୍ତି କରି ପ୍ରଶଂସା କରିବା ମନେ ପଡୁଛି । ସ୍କୁଲକାଳ ଭିତରେ ମୋର ରଚନା ଅତି ଅଳ୍ପ । ସାତ ଆଠରୁ ବେଶି ନୁହେଁ । ତାହା କିପରି ଥିଲା ମନେନାହିଁ ।

କାଳୀପଦ, ସନ୍ତୋଷ, ଗୌରାଙ୍ଗ ଅନ୍ୟ ତିନି ବଙ୍ଗୀୟ ସହପାଠୀ ବନ୍ଧୁମେଳର ଅନ୍ତର୍ଗତ ଥିଲେ । ସ୍କୁଲପାଠ ପରେ କାଳୀପଦ ହେଲା ଡାକ୍ତର, ସନ୍ତୋଷ କଣ୍ଟ୍ରାକ୍ଟର, ଗୌରାଙ୍ଗ ଶିକ୍ଷକ । ଆଉଜଣେ ବନ୍ଧୁ ମୁସ୍ତାଫିର ଲମ୍ବା ଚୌଡାରେ କ୍ଲାସରେ ଅଗ୍ରସ୍ଥାନୀୟ । ଖେଳ ଛୁଟିରେ ଏହି ବନ୍ଧୁମାନେ ସ୍କୁଲ ନିକଟ ବିକ୍ଷିପ୍ତ ପଥର ମୁଣ୍ଡିଆ ଉପରେ, ଗଛତଳେ ଏକାଠି ହୁଅନ୍ତି । ଦିନେ ଦିନେ ବୋର୍ଡିଙ୍ଗରେ ରହୁଥିବା ସହପାଠୀ ତାରାପଦଙ୍କ ରୁମ୍‌କୁ ଯାଉ ।

ସତ୍ୟବାଦୀ ବନ ବିଦ୍ୟାଳୟରେ ଫୁଙ୍ଗୁଳା ଦେହରେ କ୍ଲାସକୁ ଯିବାରେ ବାଧା ନଥିଲା । ଜିଲ୍ଲାସ୍କୁଲରେ ତାହା ଅଚଳ । ସମସ୍ତେ ଲୁଗା, କାମିଜ ବା କୋଟ ପିନ୍ଧି ଆସନ୍ତି । ପଞ୍ଜାବୀର ଚଳନ ଆସି ନଥିଲା । କେହି କେହି ଗେଞ୍ଜି ଉପରେ ବେକପଟି ପିନ୍ଧି ତା ଉପରେ ଖୋଲା କଳାର କୋଟ୍ ପିନ୍ଧନ୍ତି । ମୋର ପରିଚ୍ଛଦ ଥିଲା, ଧୋତି, କାମିଜ ନଗ୍ନପାଦ । ଖଣ୍ଡିଏ କୋଟ ଥାଏ । ବେଳେବେଳେ ଓ କ୍ୱଚିତ ପିନ୍ଧେ । ପ୍ରଥମ ବାର୍ଷିକ ପରୀକ୍ଷାରେ ସେ କୋଟ୍ ପିନ୍ଧୁଥିଲି । ସେଥିରେ ପ୍ରଥମ ସ୍ଥାନ ପାଇବାରୁ ସେ କୋଟଟି ପ୍ରତି ମୋର ମମତା ଏପରି ହେଲା ଯେ, ପ୍ରତି ଥର ପରୀକ୍ଷାକୁ ଏବଂ ମାଟ୍ରିକ୍ ପରୀକ୍ଷାକୁ ଗଲାବେଳେ ମଧ୍ୟ ସେହି କୋଟ୍ ପିନ୍ଧୁଥାଏ । ଚାରିବର୍ଷ ଭିତରେ କୋଟର ହାତ ଛୋଟ ହୋଇଗଲା, ଛାତି କସ୍ ହେଲା, ଲମ୍ବ ମଧ୍ୟ ଛୋଟ । ତଥାପି, ସେହି କୋଟ ପରୀକ୍ଷାବେଳକୁ ପିନ୍ଧେ । ନ ପିନ୍ଧିଲେ କାଳେ ପରୀକ୍ଷାରେ ଭଲ ଫଳ ହେବ ନାହିଁ, ଏହି ଭୟ ହୁଏ । ପଢ଼ାଯୋଗୁ ନୁହେଁ, କୋଟଯୋଗୁ, ପରୀକ୍ଷାରେ ପ୍ରଥମ ବା ଦ୍ୱିତୀୟ ସ୍ଥାନ ମିଳିବାର ବିଶ୍ୱାସ ନିଶ୍ଚୟ ହାସ୍ୟାସ୍ପଦ । କିନ୍ତୁ ଜୀବନରେ ଏହିପରି କେତେକ ଅନ୍ଧବିଶ୍ୱାସରେ ଭରସା ମିଳିଥାଏ । ହୁଏତ ଦୁର୍ବଳ ପୁରୁଷାକାରର ସଙ୍କେତ । ପରୀକ୍ଷା ପୂର୍ବରୁ, କିଏ ବିଭୂତି ମୁଣ୍ଡରେ ମାରନ୍ତି, କିଏ ଦିଅଁଙ୍କ ତୁଳସୀ ପକେଟରେ ନିଅନ୍ତି, କିଏ ଉତ୍ତର ଖାତାରେ ପ୍ରଥମରୁ 'ଓଁ' ବା ସେହିପରି କିଛି ଲେଖନ୍ତି । ଆମମାନଙ୍କ ଗୃହସ୍ଥଳୀ ଓ ସମାଜରେ ଶୁଭ ଅନୁକୂଳ ପାଇଁ ଅନୁରାଗ ଅତି

Digitized by srujanika@gmail.com

ଦୃଢ଼ । ଦିନ ବାର, ତିଥି, ବେଳ, ଦିଗ, ଯାତ୍ରା ବା କାର୍ଯ୍ୟ ପାଇଁ, ଅନୁକୂଳ କରିବା ପାଇଁ ପାଞ୍ଜି ଲୋଡ଼ା ହୁଏ । ଯଥାବିଧି ଅନୁକୂଳ କରି ରେଳ ଷ୍ଟେସନରେ ଦୁଇଘଣ୍ଟାରୁ ଉର୍ଦ୍ଧ୍ୱ ଅପେକ୍ଷା କରି ବସିରହିବା ଉଚ୍ଚଶିକ୍ଷିତ ଲୋକଙ୍କୁ ମୁଁ ଦେଖିଛି । ଜଣେ ଜର୍ମାନୀରୁ ଉପାଧିପ୍ରାପ୍ତ ପ୍ରଖ୍ୟାତ ବ୍ୟକ୍ତି କୌଣସି କାର୍ଯ୍ୟରେ ଘରୁ ବାହାରିବା ପୂର୍ବରୁ ଦାଣ୍ଡଦୁଆରେ ବା ଦୁଆର ପାଖରେ କେହି ଅବାଞ୍ଛିତ ଲୋକ ଉପସ୍ଥିତ ନ ଥିବାର ନିଶ୍ଚିତ ଖବର ଆବଶ୍ୟକ କରନ୍ତି । ତାଙ୍କଠାରୁ ଶୁଣିଛି, ବାର ଦୋଷରେ ବାହାରି ସେ ବିଫଳ ମନୋରଥ ହୋଇଛନ୍ତି । ଘରୁ ବାହାରିଲାବେଳେ ପଞ୍ଜିକା ଦୋଷାରୂଢ଼ ବ୍ୟକ୍ତି ଯେଉଁଦିନ ତାଙ୍କର ଦୃଷ୍ଟିଗୋଚର ହୁଏ, ସେ ଦିନ ତାଙ୍କର କାର୍ଯ୍ୟ ସବୁ ବିଫଳ ହେବାର ସେ ଲକ୍ଷ୍ୟ କରିଛନ୍ତି । ପିଲାଦିନୁ ଶୁଣିଛି; ଉତ୍ତର, ପଶ୍ଚିମ ଦିଗକୁ ମୁଣ୍ଡକରି ଶୋଇବା ଅବିଧି, ଯେପରି ଶନିବାର ଉତ୍ତରକୁ ଯାତ୍ରା ଅଶୁଭ । ଜଣେ ଅବସରପ୍ରାପ୍ତ ପୁଲିସ ସୁପରିଣ୍ଟେଣ୍ଡେଣ୍ଟ (ଶ୍ରୀଯୁକ୍ତ ଲକ୍ଷ୍ମଣ ମିଶ୍ର) ଆୟୁର୍ବେଦ ଚିକିତ୍ସାରେ ବହୁ ପାରଦର୍ଶିତା ଲାଭ କଲାପରେ, ପରୀକ୍ଷା କରି ଦେଖିଲେ ଯେଉଁଦିନ ପୋଇଶାଗ ଖାଇବା ପଞ୍ଜିକାରେ ନିଷିଦ୍ଧ, ସେଦିନ ପୋଇଶାଗରେ ବହୁ ଦୂଷିତ ଜୀବାଣୁ ଦେଖାଯାଏ; ଅନ୍ୟଦିନ ତାହା ନଥାଏ । ଘରେ ଓ ସମାଜରେ ପ୍ରଚଳିତ ବହୁ ଅନୁକୂଳ ନିର୍ଦ୍ଦେଶ ଓ ଲୋକାଚାରର ସାକ୍ଷାତ ପ୍ରାମାଣିକତା ଦୃଶ୍ୟମାନ ନହେଲେ ମଧ୍ୟ, ତାହାର ପଶ୍ଚାତରେ ଅନୁଶୀଳନ ଓ ପର୍ଯ୍ୟବେକ୍ଷଣ ପ୍ରସୂତ ସ୍ଥିରତା ଯେ ନାହିଁ, ତାହା ନୁହେଁ । ସମାଜତତ୍ତ୍ୱର ଅଧିକାଂଶ ଶରୀରତତ୍ତ୍ୱ ଉପରେ ନିବିଷ୍ଟ । ଅନେକ ସ୍ଥିରୀକୃତ ତଥ୍ୟ ଦୈନନ୍ଦିନ ଲୋକାଚାରରେ ପରିଣତ ହୋଇଥାଏ । ଗୁରୁତ୍ୱପୂର୍ଣ୍ଣ ଆଉ କେତେକ ତଥ୍ୟ ଧର୍ମାଚରଣରେ ସ୍ଥାନ ପାଇଛି । ଯେଉଁ ସମାଜ, ଯେଉଁ ଧର୍ମ, ଯେଉଁ ସଭ୍ୟତା ଯେତେ ପୁରାତନ, ସେଠାରେ ଏହି ପ୍ରକ୍ରିୟା ସେତେ ଦୃଢ଼ । ଏବେ ଅତି ନିକଟରେ ବୈଜ୍ଞାନିକ ଗବେଷଣାରେ ନିଶ୍ଚିତ ହୋଇଥିବାର ପ୍ରକାଶ ପାଇଛି ଯେ, ଯଜ୍ଞ ହୋମ ଦ୍ୱାରା ଅନ୍ତରୀକ୍ଷ ମଣ୍ଡଳରେ ବାୟୁ ଓ ବୃଷ୍ଟିର ସମୀକରଣ ସାଧିତ ହୋଇ, ବାତ୍ୟା, ଅନାବୃଷ୍ଟି, ବହୁବୃଷ୍ଟି ପ୍ରଶମିତ ରହେ । ନିମ, ଶାହାଡ଼ା, ବଉଳଡାଙ୍ଗରେ ଦାନ୍ତ ମାର୍ଜନା କରିବା, ସଦ୍ୟତୁଳସୀ, ବେଲପତ୍ର ଆହାର ଶୂନ୍ୟ ଉଦରରେ ସେବନ କରିବା, ପ୍ରତ୍ୟୁଷରେ ମୁକ୍ତ ଆକାଶ ତଳେ ଅବଗାହନ କରିବା ଇତ୍ୟାଦିର ଉପାଦେୟତା ଏବେ ପୁନର୍ବାର ଗବେଷଣାରେ ସ୍ୱୀକୃତ ହୋଇଛି । ଲୋକାଚାର, ଧର୍ମାଚାରର ଭିତ୍ତି ଅନିଶ୍ଚିତ ନୁହେଁ, ଯଦିଓ କେତେକ ସ୍ଥଳରେ ଅପଭ୍ରଂସତା ତାକୁ ଦୂଷିତ କରିଛି ବା

Digitized by srujanika@gmail.com

କଳୁଷ ଆବରଣରେ ଆଚ୍ଛାଦନ କରି ପକାଇଛି । ଏସବୁ ସତ୍ତ୍ୱେ ଚାରିବର୍ଷର ସବୁ ପରୀକ୍ଷା ବେଳକୁ ଏକା କୋଟ, ଏକା କଲମ, ବାସ୍ତବ ବିଚାରହୀନ ଭାବରେ ବ୍ୟବହାର କରିଥିବା କେତେ ବୁଦ୍ଧିଶୂନ୍ୟ, ଏବେ ଭାବି ହସ ଲାଗୁଛି । ପଢ଼ାରେ ନିଜର ଦକ୍ଷତା ଉପରେ ବିଶ୍ୱାସ ଥିଲେ, ଖଣ୍ଡିଆ ପୁରୁଣା କୋଟ ଖଣ୍ଡିକ ଉପରେ ଏତେ ଆଶ୍ରା କରିବାକୁ ପଡିନଥାନ୍ତା । ଯାହାବଳରେ ହେଉ, ପ୍ରତି ବାର୍ଷିକ ପରୀକ୍ଷାରେ ଟେକ ପାଞ୍ଚବର୍ଷ ରହିଗଲା ଏବଂ ଶେଷରେ ୧୯୨୧ ମାଟ୍ରିକୁଲେସନ୍ ପରୀକ୍ଷାରେ ମଧ୍ୟ ପାଟନା ବିଶ୍ୱବିଦ୍ୟାଳୟରୁ ବିହାର ଓଡ଼ିଶା ମଧ୍ୟରେ ଦ୍ୱିତୀୟ ସ୍ଥାନ ପାଇ ପ୍ରଥମ ଡିଭିଜନରେ ବୃତ୍ତି ଲାଭ କରି ପାଶ୍ କରିଗଲି । ତାପରେ, ସେ କୋଟ୍ ଓ କଲମ କୁଆଡେ ଗଲା ମନେ ନାହିଁ । ବୁଦ୍ଧି ଥିଲେ, ତାକୁ ସ୍ମାରକୀ କରି ରଖିପାରି ଥାଆନ୍ତି । ସବୁବେଳେ ମୁଁ ପଛ ବୁଦ୍ଧିଆ ।

ସ୍କୁଲର ଓପର ଦୁଇଶ୍ରେଣୀରେ ସେତେବେଳେ ଗୋଟିଏ ଇଚ୍ଛାଧୀନ ବିଷୟ ଅଧିକା ପଢ଼ିବାକୁ ହେଉଥିଲା । ନୂଆହୋଇ, Mechanics କ୍ଲାସ ଖୋଲା ହୋଇଥାଏ । କ୍ଲାସରେ ମୁଁ ଏକୁଟିଆ ତାକୁ ଗ୍ରହଣ କରିବାରୁ, ବୃଥାରେ ଅନେକ ଭାବିଲେ ମୁଁ ଜଣେ ପ୍ରତିଭାବାନ୍ ପିଲା । ଗଣିତ ପରି, ମେକାନିକ୍ସରେ ଉଚ୍ଚ ନମ୍ବର ରଖିବା ସହଜ ଥିଲା । ବୋଧହୁଏ ମାଟ୍ରିକ୍ ପରୀକ୍ଷାରେ ଉଚ୍ଚସ୍ଥାନ ପାଇବାରେ ତାହା ସାହାଯ୍ୟ କରିଥିବ ।

ସ୍କୁଲରେ ପ୍ରତି ମଙ୍ଗଳବାର ସକାଳ କ୍ଲାସ ହୁଏ, କାରଣ ସେଦିନ ସହରରେ ହାଟପାଳି । ଜେଲଖାନା ଆଗକୁ ବିସ୍ତୃତ ପଡିଆରେ ହାଟ ବସେ । ଶାଗଠାରୁ ଛେଳି, ମେଣ୍ଢା, କୁକୁଡା ପର୍ଯ୍ୟନ୍ତ ସବୁ ଆସେ ବିକ୍ରି ପାଇଁ । ଆଣନ୍ତି ଆଦିବାସୀ ହୋ ମାଇପେ ବେଶୀ । ଝିଅ, ଭୁଆସୁଣୀ, ବୁଢ଼ୀ, ସମସ୍ତେ କରଞ୍ଜ ତେଲ ଗର ଗର ବାଳ ସାଉଁଳାଇ ଗନ୍ଧହୀନ ପଳାସ, କେନାଫୁଲ ଗଭାରେ ଖୋସି ପସରା ମେଲାଇ ଥାଆନ୍ତି । ହାଟଦିନ ସଉଦା ନକଲେ, ସାତଦିନ ଖିଲାଫ ପଡେ । ଯାହାର ଯାହା ଦରକାର, ସମସ୍ତେ ଅପେକ୍ଷା ରଖନ୍ତି ହାଟପାଳିକୁ । ଏତେ ହାଟ ମୁଁ ଆଗରୁ ଦେଖିନଥିଲି । ସକାଳ ସ୍କୁଲରୁ ଫେରିଲା ବେଳକୁ ହାଟ ଗର୍ଜୁଥାଏ । ଆମ ବସାରୁ ସ୍କୁଲକୁ ହାଟ ଦେଇ ଯିବାକୁ ହୁଏ । ଅନ୍ୟଦିନ ଫାଙ୍କା ପଡିଆ, ହାଟଦିନ ଅସୁମାରି ମଣିଷ, ବିପଣୀ । ହାଟ ସକାଳୁ ସନ୍ଧ୍ୟାଯାଏ ଚାଲେ । ଆମେ ସକାଳ ସ୍କୁଲ ପରେ, ହାଟରେ ପରସ୍ତେ ଖୁସିବାସିରେ ବୁଲୁ । ନନା ଓ ପଦ୍ମଲୋଚନବାବୁ ହାଟ ସଉଦା କରନ୍ତି । ଚାଉଳ

Digitized by srujanika@gmail.com

ପ୍ରଭୃତି ହାଟରେ ଶସ୍ତାରେ ମିଳେ । କେତେ ରକମର ଓ ରଙ୍ଗର ମାଟିହାଣ୍ଡି ସେଠାକୁ ଆସେ, ଦେଖିଲେ ତାଟକା ଲାଗେ । ଅତି କମନୀୟ ଗଠନ ସେ ସବୁ । ମାଠିଆ ଭଳିଆ ଚିକ୍କଣ ଦେହରେ ସ୍ୱାସ୍ଥ୍ୟ ଓ ସୌଷ୍ଠବତା ପୂରି ରହିଥାଏ ହୋ ପୁରୁଷ, ନାରୀମାନଙ୍କର । ସ୍ତ୍ରୀ ଲୋକଙ୍କର ସ୍ୱର ଅତି ମିଷ୍ଟ । ପୁରୁଷମାନଙ୍କ ଚାହାଣୀରେ ସମ୍ଭ୍ରମ । ହାଟ ଫେରନ୍ତା କି କାମ ଫେରନ୍ତା ହୋ ମାଇପେ ଦଳବାନ୍ଧି ଗୀତ ଗାଇ ଯାଉଥିଲା ବେଳେ, କାନ ଆପେ ଡେରି ହୋଇଯାଏ । ତା ସାଙ୍ଗକୁ, ମଝିରେ ମଝିରେ ଉଚହସ ଝଙ୍କାର ତୋଳିଦିଏ । ବୋଧହୁଏ ଗୀତର କୌଣସି ଅଂଶର ରୋମାଞ୍ଚ ସଙ୍କେତରେ ଗାୟିକାଙ୍କର ମନ ଆଶା ଆକାଂକ୍ଷାରେ ଉତ୍‌ଫୁଲ୍ଲ ହୋଇଉଠେ । ହସରେ ପରସ୍ପରକୁ ସଂଖୋଳି ପକାନ୍ତି । ହୋ ମରଦ, ମାଇପଙ୍କ ନାଚ ଏକ ଅଭୁଲା ଦୃଶ୍ୟ । ବର୍ଷକେ ଥରେ ସହରରେ ଖେଳ ପ୍ରତିଯୋଗିତା ହୁଏ । ଡେପୁଟି କମିଶନର, ସୁପରିଣ୍ଟେଣ୍ଡେଣ୍ଟ, ଫରେଷ୍ଟ ଅଫିସର, ଇଞ୍ଜିନିଅର, ପାଦ୍ରୀ ପ୍ରଭୃତି (ସମସ୍ତେ ଇଂରାଜୀ ସାହେବ) ସସ୍ତ୍ରୀକ ସେଠାକୁ ଆସନ୍ତି । ଖେଳ ଅପେକ୍ଷା ତାଙ୍କୁ ସବୁ ଦେଖିବାକୁ ଲୋକଙ୍କର ବେଶି ଆଗ୍ରହ । ଅନ୍ୟ ଅଫିସର, ଆମ ହେଡମାଷ୍ଟର ସରକାରୀ ଓକିଲ ପ୍ରଭୃତି ମଧ୍ୟ ସେଠାକୁ ନିମନ୍ତ୍ରିତ ହୁଅନ୍ତି । ପୁଲିସବାଲା ନାନା ଖେଳ ଦେଖାନ୍ତି । ହୋ'ମାନଙ୍କ ଧନୁଶର ବ୍ୟବହାରରେ ବିଭିନ୍ନ ନିପୁଣତା ଦେଖାଇଲାବେଳେ ସମସ୍ତେ ତାଳିମାରନ୍ତି । ସେଠା ଧନୁଶର ଦେଖି ମୋର ପିଲାଦିନର ଏକ ଘଟନା ମନେ ପଡିଲା । ନନା ବୌଦ ଆଠମଲ୍ଲିକ ଗଡ଼ଜାତରେ କାମ କରୁଥିବାବେଳେ ଥରେ ଗାଁକୁ ଆସିଲାବେଳକୁ ଗୋଟିଏ ଧନୁ ଓ ଭିନ୍ନ ଭିନ୍ନ ରକମର କେତୋଟି ଶର ଆଣିଥିଲେ । ଗୋଟିକରେ ଲୁହା ମୁନ ନଥାଇ, କାଠ ଟୋପି ଥିଲା । ଆମ ଗାଁ ଘର ବାଡିଆଡେ ମୁଁ ସେ ଧନୁଶର ନେଇ ଖେଳେ । ଦିନେ କାଠଟୋପିଦିଆ ଶର ମାରିଲା ବେଳେ, ଆମ ଘରଠାରୁ ପୂର୍ବକୁ ତିନିଘର ଛଡା ବାଡିଦୁଆରେ ଗଙ୍ଗା ବୋଉ ବୁଢ଼ୀ ବସିଥିଲେ । ଶର ଯାଇ ତାଙ୍କ ଦେହରେ ବାଜିଲା । ସେ ସାଙ୍ଗେ ସାଙ୍ଗେ ରାଗରେ ଗର୍ଜିଉଠି ମତେ ଭର୍ତ୍ସନା କଲେ ଏବଂ ଶରଟିକୁ ମୋଡି ମାଡି ପକାଇଦେଲେ । ମୋ କାନ୍ଦ କିଏ ଦେଖେ । ଗାଳିପାଇଁ ନୁହେଁ, ଶରଟିକୁ ଭାଙ୍ଗି ଦେବା ଯୋଗୁ ମୋର କୋହ ଉଠିଲା । ନାନୀ କେତେ ବୁଝାଇଲା । ଭଙ୍ଗା ଶରଟିକୁ ଧରି ମତେ ଘର ଭିତରକୁ ନେଇଗଲା । ସେ ସ୍ନେହ ମନେ ପଡିଲେ, ଆଖିକୁ ଲୁହ ଆସେ । ସନ୍ଧ୍ୟାବେଳକୁ ହୋ'ମାନଙ୍କ ନାଚହୁଏ ଖେଳ ପଡିଆରେ । ସପ୍ତାହରେ ହାଟ ଦିନକୁ ଅପେକ୍ଷା କଲାପରି,

Digitized by srujanika@gmail.com

ବର୍ଷରେ ଏହି ଦିନକୁ ସମସ୍ତେ ଚାହିଁ ଥାଆନ୍ତି । ମୁଁ ମୂଳରୁ ଶେଷଯାଏ ଦେଖୁଥାଏ । ଭୋକ ଶୋଷ ଲାଗେ ନାହିଁ ।

ମୁଁ ଗଲି ଚାଇବାସାକୁ ୧୯୧୬ରେ । ପ୍ରଥମ ମହାସମର ଆରମ୍ଭ ହୋଇ ଯାଇଥିଲା ୧୯୧୪ରୁ । ଆମ ସ୍କୁଲରେ ଶନିବାର ହାଫ ଛୁଟି ହୁଏ । କିନ୍ତୁ ତା ପୂର୍ବରୁ ଶେଷ ପିରିଅଡ କ୍ଲାସ ନହୋଇ, ହଲ୍‌ରେ ସମସ୍ତେ ଏକାଠି ହୁଅନ୍ତି । ହେଡ୍‌ମାଷ୍ଟର ବଡ଼ ମାନଚିତ୍ର ଟଙ୍ଗାଇ ହାତରେ ଲମ୍ବା ବାଡିଧରି ସେଥିରେ ବିଭିନ୍ନ ସ୍ଥାନ ଦେଖାଇ, ଯୁଦ୍ଧ କିପରି, କେଉଁଠାରେ ଚାଲିଛି ବୁଝାଇ କହନ୍ତି । ୧୯୧୮ରେ ସମର୍ ଶେଷ ପର୍ଯ୍ୟନ୍ତ , ଏହି ସାପ୍ତାହିକ ବକ୍ତୃତା ଚାଲିଥାଏ । ସବୁ ଶିକ୍ଷକ, ଛାତ୍ରଙ୍କ ଉପସ୍ଥିତି ବାଧ୍ୟତାମୂଳକ ଥିଲା । ହେଡମାଷ୍ଟର ବଙ୍ଗାଳୀ । ହିନ୍ଦିରେ ଅପାରଗ । ଇଂରାଜୀରେ ବକ୍ତୃତା ଦିଅନ୍ତି । ମୁଁ ତାଙ୍କ ଇଂରାଜୀ କଥାକୁ ଅତି ଆଗ୍ରହରେ ଶୁଣୁଥାଏ । ଯୁଦ୍ଧକଥା କିଛି ବୁଝିପାରୁ ନଥାଏ । ଅନ୍ୟପିଲେ ଶୁଣନ୍ତି ନାହିଁ କି ବୁଝନ୍ତି ନାହିଁ, ଖାଲି ମାନଚିତ୍ରକୁ ଚାହିଁଥାଆନ୍ତି । ଥରେ ଏ ଯୁଦ୍ଧ ବକ୍ତୃତାକୁ ଇନ୍‌ସପେକ୍‌ଟର ସାହେବ ଆସିଥିଲେ । ସେଦିନ ସେ ମାନଚିତ୍ର ଦେଖାଇ ସବୁ କହିଲେ । ତାଙ୍କ ଉଚ୍ଚାରଣ ଭଙ୍ଗୀ, ଠିଆ ଠାଣି, ହାସ୍ୟରେଖା ଦେଖି ମୋର ବନବିଦ୍ୟାଳୟର ଗୋଦାବରୀଶବାବୁଙ୍କ କଥା ମନେପଡିଲା । ମୋ ମନ ହେଉଥାଏ, ମୁଁ ସେପରି ଇଂରେଜୀ କହିପାରନ୍ତି କି । ଆକାଶ କୁସୁମ କେବଳ ଇଚ୍ଛାରେ ସିନା ରହେ !!

ବର୍ଷର ଆଉ ଗୋଟିଏ ସ୍ମରଣୀୟ ଦିନ, ବାର୍ଷିକ ପ୍ରମୋସନ । ସେଦିନ, ହେଡମାଷ୍ଟର କେତେବେଳେ ଅଫିସରୁ ବାହାରିବେ, ଆମେ ଅପେକ୍ଷା କରି ବସିଥାଉ । ଅତି ବୃହତ୍ ମାର୍କ ଖାତାଧରି ସେ ଆସନ୍ତି । ତାଙ୍କ ସାଙ୍ଗରେ ଥାଆନ୍ତି ଆସିଷ୍ଟାଣ୍ଟ ହେଡମାଷ୍ଟର ଥାକ୍‌ହରିବାବୁ, ଲମ୍ବା, ଗୋରା, ଚନ୍ଦା । ପ୍ରତି କ୍ଲାସରେ କ୍ଲାସ ମାଷ୍ଟର ରହି ଥାଆନ୍ତି । ଉପର କ୍ଲାସ ଆଡୁ ଆରମ୍ଭ କରନ୍ତି । ପାସ୍ କରିଥିବା ପିଲାଙ୍କ ନାମ, ଯେ ଯେତେ ମୋଟ ନମ୍ବର ପାଇଥାଏ, ସେହି ସେହି ପିଲା, ତିନି ମାଷ୍ଟରଙ୍କୁ ତିନି ନମସ୍କାର କରି ପୁରୁଣା କ୍ଲାସ ଛାଡି ଓପର କ୍ଲାସକୁ ଯାଏ । ଫେଲ୍ ହୋଇ ଯେ ରହନ୍ତି, ସେମାନେ ହେଡମାଷ୍ଟର ଯିବା ସଂଗେ ସଂଗେ କ୍ଲାସରୁ ବାହାରି ଯାଆନ୍ତି । ତାଙ୍କ ମଧ୍ୟରୁ ଅଧିକାଂଶ ପଢ଼ା ଛାଡି ଦିଅନ୍ତି । ଅନ୍ୟମାନେ, ନୂଆ ପିଲାଙ୍କ ସଂଗେ ପୁରୁଣା କ୍ଲାସରେ ଜାନୁୟାରୀ ମାସରୁ ପୁଣି ଆରମ୍ଭ କରନ୍ତି ଆଉ ବର୍ଷକର ପାଠ । ପଶୁପତି ଓ ମୁଁ ଦକ୍ ଦକ୍ ଛାତିରେ ଚାହିଁଥାଉ, କାହା ନାମ ଆଗ ହେଡମାଷ୍ଟର

Digitized by srujanika@gmail.com

ଡାକିବେ । କି ଉତ୍‌କଣ୍ଠା ! ବର୍ଷେ ମୋ ନାମ ଆଗ ଡକାହେଲା କିନ୍ତୁ 'ଫାଷ୍ଟ' ବୋଲି କୁହାଗଲା ନାହିଁ । ପଶୁପତି ନାମ ତାପରେ ଡକାଯାଇ 'ବ୍ରାକେଟେଡ୍ ଫାଷ୍ଟ' ବୋଲି କୁହାଗଲା । ପଶୁପତି, ମୁଁ ବଲ ବଲ କରି ପରସ୍ପରକୁ ଚାହିଁବାରୁ ହେଡମାଷ୍ଟର କହିଲେ 'ବୋଥ ଫାଷ୍ଟ', ଆମେ ଦୁହେଁ ମହାଖୁସି । 'ବ୍ରାକେଟେଡ୍' ଅର୍ଥ ବୁଝିବା ପାଇଁ ସେତେବେଳେ ତର ନଥିଲା । ମୋଟରେ ଦୁହେଁ ଏକା ନମ୍ବର କିପରି ପାଇଲୁ, ପରେ ଜଣା ପଡିଲା । ପଶୁପତି ଅପେକ୍ଷା ମୋର ଟୋଟାଲ ନମ୍ବର ଅଧମାର୍କ କମ୍ ଥିଲା । ହେଡ୍‌ମାଷ୍ଟର ଆଉ ଅଧମାର୍କ ମିଶାଇ ସମାନ କରିଦେଲେ । ମୋ ସଂଜ୍ଞାନାମ M ରୁ ଆରମ୍ଭ ଥିବାରୁ ମୋ ନାମ ଆଗ ଡକାହେଲା; ପଶୁପତିର ସଂଜ୍ଞା (ସରକାର) 'S' ଯୋଗୁ ପରେ ଡକାହେଇ, ବ୍ରାକେଟେଡ୍ ଫାଷ୍ଟ କୁହାଗଲା । ପ୍ରକୃତରେ ସେ ପ୍ରଥମ, ମୁଁ ଦ୍ୱିତୀୟ ଥିଲୁ ସେ ବର୍ଷ । ଅନ୍ୟ ଦୁଇ ବର୍ଷ, ୩ ଓ ୫ ନମ୍ବର ପାର୍ଥକ୍ୟରେ ମୁଁ ପ୍ରଥମ, ସେ ଦ୍ୱିତୀୟ ହେଲୁ । ୧୯୨୧ ମାଟ୍ରିକ୍ ପରୀକ୍ଷାରେ ସେ ଓ ମୁଁ ଉଭୟ ପ୍ରଥମ ଶ୍ରେଣୀରେ ଦ୍ୱିତୀୟ ସ୍ଥାନ ପାଇଲୁ । ସେଥିରେ କାହାର ଅଧାମାର୍କ, ପୁରାମାର୍କ ହୋଇଥିଲା କି ନାହିଁ ତାହା ଜାଣି ନାହିଁ । ଆମେ ଦୁହେଁ ବୃତ୍ତି ପାଇଲୁ ଦୁଇ ବର୍ଷ ପାଇଁ ।

ପ୍ରାଇଜ୍ ଦିନ ସ୍କୁଲରେ ଭାରି ଉତ୍ସାହ । ଛୋଟ ସହରରେ ଜିଲ୍ଲା ସ୍କୁଲ ପ୍ରାଇଜ୍ ଏକ ବିଶିଷ୍ଟ ଘଟନା । ଏବେ ସିନା ସବୁଠାରେ ହାଇସ୍କୁଲ, କଲେଜ । ସେତେବେଳେ ପଚାଶ କୋଶରେ ଗୋଟେ ହାଇସ୍କୁଲ ମଧ୍ୟ ନଥିଲା । ସିଂହଭୂମ ଜିଲ୍ଲାଠାରେ ଏକମାତ୍ର ହାଇସ୍କୁଲ, ଚାଇବାସା ଜିଲ୍ଲାସ୍କୁଲ । ସହରର ବହୁତ ଲୋକ ଆସନ୍ତି । ମହକୁମାର ସାହେବ ଅଫିସରମାନେ, ମେମ୍ ସାହେବମାନେ ଆସନ୍ତି । ସବୁମାଷ୍ଟ୍ର ତାଙ୍କ ବଛା ବଛା ଲୁଗା, କମିଜ କୋଟ ପିନ୍ଧନ୍ତି । ହେଡମାଷ୍ଟ୍ରେ ଚୋଗା ଚପକନରେ ବାହାରନ୍ତି । ପିଲାଙ୍କ ଭିତରୁ ଯେ ଆବୃତ୍ତି ବା ଅଭିନୟ କରିବାର କଥା ସେ ପାତ୍ର ଉପଯୋଗୀ ବେଶ ଯୋଗାଡ କରି ଆସେ । ଥରେ ମୁଁ ନେଇଥିବା ପାର୍ଟ ପାଇଁ ପ୍ୟାଣ୍ଟ, କୋଟ, ଟାଇ ଦରକାର ଥିଲା । ଆମ ବସାଘରର ଏକ ଅଂଶରେ ରହୁଥିବା ଶିକ୍ଷକ ପଦ୍ମଲୋଚନବାବୁ (ନାୟକ) ତାଙ୍କର ଏକମାତ୍ର ପ୍ୟାଣ୍ଟ, କୋଟ, ଟାଇ ଦେଲେ ମତେ ପିନ୍ଧିବାକୁ । ସେ ସବୁ ମୋ ପାଇଁ ୩ଗୁଣ ଅଧିକା ଲମ୍ବା । କିପରି ତାକୁ ପିନ୍ଧି ପ୍ରାଇଜକୁ ଗଲି ଓ କି ଦୟନୀୟ ଦୃଶ୍ୟ ହୋଇଥିବ ଭାବି ପାରୁନାହିଁ ।

ଆବୃତ୍ତି ଓ ଅଭିନୟ ପାଇଁ ପ୍ରାଇଜ୍‌ରେ କେବଳ ଇଂରେଜୀ ବହି ପୁରସ୍କାର ଦିଆଯାଉଥିଲା । ଓଡ଼ିଆ ବିଭାଗ ପ୍ରାଇଜ୍‌ରେ ଅନେକ ଓଡ଼ିଆ ବହି ମିଳୁଥିଲା ।

Digitized by srujanika@gmail.com

ଘରକୁ ଆସିଲାବେଳକୁ ଥାକେ ବହି । ଏବେ ଦେଖୁଛି ପ୍ରାଇଜ୍‌ରେ ସାବୁନ୍, ସ୍ନୋ, ପାଉଡର, ପାଣିବୋତଲ ଟିଫିନ୍‌ଡବାରେ ଟେବୁଲ ଭର୍ତ୍ତି ।

ଥରେ ପ୍ରାଇଜ୍‌କୁ ଇନ୍‌ସପେକ୍ଟର ହୁଇଟ୍‌ମୁର ସାହେବ ଆସିଥିଲେ । ସେଦିନ ସ୍କୁଲଘର ସଫାସୁତରା କହିଲେ ନ ସରେ । ସମସ୍ତଙ୍କର ପରିଚ୍ଛଦରେ ଅଧିକ ପରିପାଟୀ । ହୁଇଟ୍‌ମୁର ସାହେବ ରାଞ୍ଚିରୁ ଆସିବାର କଥା । ସେ ଖଣ୍ଡିଏ ପୁରୁଣା ମଟରଗାଡି ଚଳାଇ ଆସୁଥିଲେ । ଚାଇବାସାଠାରୁ ୧୩ ମାଇଲ୍ ପୂର୍ବରୁ ଗାଡି ଅଚଳ ହୋଇଯିବାରୁ, କାହାଠାରୁ ଗୋଟିଏ ସାଇକେଲ ଯୋଗାଡ କରି ସେଥିରେ ଆସି ସ୍କୁଲରେ ଯଥା ସମୟରେ ପହଞ୍ଚିଲେ । କାମରେ କି ନିଷ୍ଠା, ସମୟ ଉପରେ କି ନଜର । ଏବର ଉପର ହାକିମମାନଙ୍କର ବେପରୁଆ ଢ଼ଙ୍ଗ ଦେଖି, ତଳବାଲା ତାଙ୍କ କାମରେ ଢ଼ିଲମ ଢ଼ିଲା ।

ଖେଳରେ ମୁଁ ନଦାରଦ । ସେଥିରେ ମୋର ପ୍ରାଇଜ୍ ନ ଥାଏ । ପରୀକ୍ଷା ଫଳ, ଆବୃତ୍ତି, ଡିବେଟ୍ ପାଇଁ ଯାହା ପୁରସ୍କାର ମିଳେ । ପଶୁପତିର ମଧ୍ୟ ସେଇଆ । ଭଲ ପଢୁଆ ପିଲା, ଖେଳ ପ୍ରଭୃତିରେ ମନ ନ ଦେବା ସେତେବେଳର ରୀତି ଥିଲା । ଖେଳୁଆଡଙ୍କ ପ୍ରାଇଜ୍ ଥାଏ, ସୁଦୃଷ୍ଟି ନ ଥାଏ । ଜୀବନସାରା ଖେଳ ବିଷୟରେ ମୁଁ ଏତେ ଅପଟୁ ରହିଲି ଯେ, କ୍ରିକେଟ୍, ଫୁଟବଲ ମ୍ୟାଚ୍ ବାରବାଟୀ ଷ୍ଟାଡିଅମରେ ହଜାର ହଜାର ଦର୍ଶକଙ୍କୁ ଟାଣିଲାବେଳେ, ମୁଁ ନିସ୍ପୃହ ରହେ । ନାତି ମ୍ୟାଚ୍ ବିଷୟରେ ଶତମୁଖ ହୋଇ ସମୀକ୍ଷା କଲେ, ମୁଁ ପ୍ରାୟ ବୋକାଙ୍କ ପରି ଶୁଣେ । ଅନୁଭୂତିର ଏକ ବିରାଟ ଅଂଶ ମୋର ଫାଙ୍କା ରହିଗଲା । ଯାହା ସ୍କୁଲରେ ନୋହିଲା, କଲେଜରେ ମଧ୍ୟ ସୁଧୁରିଲା ନାହିଁ । ଏବେ ସ୍କୁଲ, କଲେଜରେ ସ୍ପୋର୍ଟସ ଡେକୁ ମୁଁ ଅତିଥି ହୋଇ ଗଲାବେଳେ, ଭିତରେ ଲଜ୍ଜା, ମୁହଁରେ ହସ ରଖି ପ୍ରାଇଜ୍ ବାଣ୍ଟେ ।

ସ୍କୁଲ ପାଞ୍ଚ ବର୍ଷ ପ୍ରାୟ ଭଲରେ କଟିଲା । ଭଲ ପରୀକ୍ଷାଫଳ ଦିଗରୁ ।



Digitized by srujanika@gmail.com

# ଚାଇବାସାରେ ପାଞ୍ଚ ବରଷ

ବଡ଼ିବଜାରରେ ଆମ ବସା କେବଳ ଆବାସସ୍ଥଳ ନଥିଲା । ଜିଲ୍ଲା ସ୍କୁଲରେ ଓଡ଼ିଆ କ୍ଲାସ ଖୋଲିବା, ସିଂହଭୂମିରେ ଓଡ଼ିଆ ସ୍ୱାର୍ଥରକ୍ଷା ଆନ୍ଦୋଳନର ଏକ ପ୍ରଧାନ ପଦକ୍ଷେପ ଥିଲା । ନନା ତାହା ଖୋଲିବାକୁ ଯାଇଥିବାରୁ, ସେ ସେହି ଆନ୍ଦୋଳନରେ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ଜଡିତ ହେବା ସ୍ୱାଭାବିକ । ଯେଉଁମାନେ ସେହି ଆନ୍ଦୋଳନରେ ଅଂଶଗ୍ରହଣ କରୁଥିଲେ, ସେମାନେ ଆମ ବସାକୁ ଆସନ୍ତି । ନନାଙ୍କ ସଂଗେ ଆଲୋଚନା, ପରାମର୍ଶ କରିବା ପାଇଁ । ପଣ୍ଡିତ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟ (ଖରସୁଆଁ), କାହ୍ନୁ କିଶୋର ପାଣି (ଚକ୍ରଧରପୁର), ପଦ୍ମନାଭ କବି(ଷଢ଼େଇକଳା), ପୂର୍ଣ୍ଣଚନ୍ଦ୍ର ତ୍ରିପାଠୀ (ଓକିଲ, ଚାଇବାସା), ବ୍ରଜମୋହନ ତ୍ରିପାଠୀ (କାଠ ବ୍ୟବସାୟୀ) ନିଜ ନିଜ ସୁବିଧା ମତେ ଆସୁଥାଆନ୍ତି । ଦାଣ୍ଡପଟ ଛୋଟ ବାରନ୍ଦାଟିର ପଦାକୁ କାଠ ଜାଲି ଥିବାରୁ ଘର ପରି ହୋଇଥାଏ । ସେଥିରେ ଖଣ୍ଡିଏ ଦଉଡିଆ ଖଟିଆ ଥାଏ । ତଳେ ପତଳା କେରପାଲରେ ମୁଁ ପଢ଼ାପଢ଼ି କରେ । ନନା ଖଟିଆ ଉପରେ ବସି ତାଙ୍କ କାମ କରନ୍ତି । ଆଗନ୍ତୁକମାନେ ସେହି ଖଟିଆ ଉପରେ ବସନ୍ତି । ଆମ ଘରେ ଚୌକି, ବେଞ୍ଚ ନ ଥିଲା । ଆଗନ୍ତୁକ ସଙ୍ଗେ କିଶୋର, ତରୁଣ କର୍ମୀ ଆସିଲେ, ମୋ କେରପାଲରେ ତାଙ୍କୁ ସ୍ଥାନ ଦିଆଯାଏ । ଓଡ଼ିଆ ସ୍ୱାର୍ଥ ସଂକ୍ରାନ୍ତ ଆଲୋଚନାରେ ମୋର ଭାଗ ନେବାର ଅଧିକାର ବା ଯୋଗ୍ୟତା ନଥିଲେ ମଧ୍ୟ ମୁଁ ଅତି ଆଗ୍ରହରେ ସବୁ ଶୁଣେ । ସେଠାରେ ମୋର ଉପସ୍ଥିତି ନନା ପସନ୍ଦ କରୁନଥିଲେ । ତାଙ୍କର ଇଚ୍ଛା ମୁଁ ପଢ଼ାପଢ଼ି କରେ । କିନ୍ତୁ ତା କ'ଣ ସମ୍ଭବ ? କ୍ରମେ ଆନ୍ଦୋଳନ ଚର୍ଚ୍ଚାର ନିରବ ଅଂଶଗ୍ରାହୀ ମୁଁ ହୋଇଗଲି । ଏପରି ସୁଯୋଗ କ୍ୱଚିତ୍ ସ୍କୁଲପିଲାଙ୍କୁ ମିଳେ । ସାଧାରଣ କାର୍ଯ୍ୟରେ (Public life) ମୋର ନିବିଡ ଆଗ୍ରହ ସେହିଦିନୁ ଅଳ୍ପ ବୟସରୁ ସୃଷ୍ଟି ହେଲା ।

ମନେ ଅଛି, ପ୍ରଥମ ଯେଉଁଦିନ ପଣ୍ଡିତ କୃଷ୍ଣଚନ୍ଦ୍ର ଆଚାର୍ଯ୍ୟେ ଆସିଲେ, ମୁଁ ତଳେ ବସି ପଢୁଥିବାର ଦେଖି, ପଚାରିଲେ, 'ପଣ୍ଡିତ ମହାଶୟ ଅଛନ ?' ମୁଁ

Digitized by srujanika@gmail.com

ନମସ୍କାର ଜଣାଇ ଉତ୍ତର ଦେବାରୁ ମୋ ନାମ ପଚାରିଲେ । ଉତ୍ତରରେ କେବଳ 'ହରିହର' କହିବାରୁ, ମନ୍ତବ୍ୟ କଲେ, 'ଖାଲି ହରିହର' ? ମୁଁ ନିବେଦନ କଲି, 'ଆପଣ ତ ନନାଙ୍କ ସଂଜ୍ଞା ଜାଣନ୍ତି, ମୁଁ ମୋ ନାମରେ ମହାପାତ୍ର କାହିଁକି କହିବି ?' ଅତି ତୁଷ୍ଟ ହୋଇ (ନନା ଘର ଭିତରୁ ଆସିଲାପରେ) ନନାଙ୍କୁ କହିଲେ, 'ଏ ପିଲା ଚାଲାକ' । ଏ କ୍ଷୁଦ୍ର ଘଟନାଟି ଆଚାର୍ଯ୍ୟ ମହାଶୟଙ୍କର ବହୁଦିନ ମନେ ଥିଲା । ମୁଁ କଟକରେ ଓକାଲତି କଲାବେଳେ ସେ ଆମ ଘରକୁ ଏକାଧିକବାର ଆସିଛନ୍ତି ଏବଂ ଏକାଧିକବାର ସେହି କ୍ଷୁଦ୍ର ଘଟନାଟିକୁ କୌତୁକରେ ଅନ୍ୟମାନଙ୍କ ସମକ୍ଷରେ ସ୍ମରଣ କରାଇଛନ୍ତି । ତାଙ୍କ ପରିବାର ସହିତ ଆମର ଘନିଷ୍ଠ ପରିଚୟ ଓ ବନ୍ଧୁତା ଗଢ଼ିଉଠିଲା । ଜ୍ୟେଷ୍ଠପୁତ୍ର ପ୍ରସନ୍ନ ଆଚାର୍ଯ୍ୟ ଡେପୁଟୀ ମାଜିଷ୍ଟ୍ରେଟ୍ ହୋଇ ବଡିବଜାର ଲଗା ସେଣ୍ଟୋଲାରେ (ସେନ୍-ଟୋଲା) ବସା କଲା ପରେ, ଆମେ ସେଠାକୁ ଯାଉଥିଲୁ । ଦ୍ୱିତୀୟ ପୁତ୍ର ସୁରେନ୍ଦ୍ର ଆଚାର୍ଯ୍ୟ କଟକରେ ଡାକ୍ତର ହେଲେ । ତୃତୀୟ ପୁତ୍ର ଯୋଗେନ୍ଦ୍ର ନନାଙ୍କର ଓଡିଆ କ୍ଲାସର ପ୍ରଥମ ଛାତ୍ର । ନାତି (ପ୍ରସନ୍ନବାବୁଙ୍କ ପୁଅ) ସଚ୍ଚିଦାନନ୍ଦ କଟକରୁ ଓକାଲତି କରିବାକୁ ଆସି ହାଇକୋର୍ଟର ଜଜ ହେଲେ । ପଣ୍ଡିତ କୃଷ୍ଣଚନ୍ଦ୍ର ସମାଜ ସେବାରେ ସାରାଜୀବନ କଟାଇ, ପୁରୀରେ ଦେହତ୍ୟାଗ କଲେ । ଯଶସ୍ୱୀ ପରିବାର । ଚକ୍ରଧରପୁରର କାହ୍ନୁକିଶୋର ପାଣି, ଓଡିଆ ଆନ୍ଦୋଳନର ଅନ୍ୟ ଏକ ମୂଳପୁରୋଧା । ତାଙ୍କ ବଂଶର ବିଜୟ ପାଣି କଂଗ୍ରେସ ରାଜନୀତିରେ, ରମା ପାଣି ବ୍ୟବସାୟ କ୍ଷେତ୍ରରେ ଓଡିଶାରେ ସୁପରିଚିତ । ସେହିପରି ଷଢ଼େଇକଳାର ପଦ୍ମନାଭ କବିଙ୍କ ବଂଶଜମାନେ ଶିକ୍ଷା ଓ ସଂସଦୀୟ ରାଜନୀତିରେ ପ୍ରତିଷ୍ଠା ଲାଭ କରିଅଛନ୍ତି ।

ଆମ ବସା କ୍ରମଶଃ ଓଡିଆ ଆନ୍ଦୋଳନର ଏକ ପରୋକ୍ଷ କେନ୍ଦ୍ର ହେଲା । ସେତେବେଳେ ରାଧାନାଥ ବାବୁ ('ସମାଜ' ସମ୍ପାଦକ ରାଧାନାଥ ରଥ) ଫରେଷ୍ଟ ଅଫିସରେ କିରାଣୀ କାର୍ଯ୍ୟରେ ଯୋଗ ଦେବାପାଇଁ ଚାଇବାସା ଯାଇଥାନ୍ତି । ସୁନ୍ଦର, ସୁଢ଼ଳ, ତରୁଣ ଆକୃତି ଉଜ୍ଜଳ ଚକ୍ଷୁ, ବୌଦ୍ଧିକ ଆଭା ମୁଖମଣ୍ଡଳ, ଯେଉଁଦିନ ଆମ ଦାଣ୍ଡ ଦୁଆରେ ଦେଖିଥିଲି, ତାହାର ସ୍ମୃତି ଅମଳିନ ରହିଛି । ବୟସର ନ୍ୟୂନତା ଯୋଗୁଁ ମୁଁ ବୋଧହୁଏ ତାଙ୍କ ଦୃଷ୍ଟିରେ ପଡି ନ ଥିବି । କିନ୍ତୁ ମୁଁ କଟକକୁ ଆଇନ ବୃତ୍ତି ଅବଲମ୍ବନ କରିବାକୁ ଆସିବା ଦିନ ଠାରୁ ତାଙ୍କ ସହିତ ସୌହାର୍ଦ୍ଦ୍ୟ ଅତି ନିବିଡ ହେଲା । 'ସମାଜ' ଅନୁଷ୍ଠାନ ସଙ୍ଗେ ସମ୍ପର୍କ ସେବଠାରୁ ନିରବଚ୍ଛିନ୍ନ । ଆମ ଦୁଇ ପରିବାରର ସ୍ନେହବନ୍ଧନ ମତେ ଅତି ଆପ୍ୟାୟିତ କରିଛି । କଟକ ପୁରୁଣା କଲେଜ ଗଳିରେ ଆମ ବସାରେ ଖଟିଆ ଉପରେ ଏକ ସଙ୍ଗେ ବସି ମୁଢ଼ି, ଚୁଡାଭଜା ଚୋବାଇ ଦେଶର ନାନା ବିଷୟ ଓ ସମସ୍ୟାର ଆଲୋଚନା କରି ବହୁଦିନ ଦୀର୍ଘ ସମୟ

Digitized by srujanika@gmail.com

କଟାଇଛୁ । ଯେତେବେଳେ, ସେତେବେଳେ ତାଙ୍କ ବସାକୁ ଗଲେ ମିଷ୍ଟାନ୍ନ ଜଳଯୋଗ ଓ ସଜାଗ ସମ୍ବାଦ ସଂଗ୍ରହ ମୋର ଅପୂର୍ବ ଅନୁଭୂତି । ତାଙ୍କ ସହିତ ସମ୍ବନ୍ଧ, ବନ୍ଧୁତା ଅତିକ୍ରମ କରି, ପାରିବାରିକ ହେଲା । ଆମ ପରିବାରର ଶୋକାତୁର ଘଟନାବେଳେ ତାଙ୍କର ଆଶ୍ୱାସନା, ଅକପଟ ସ୍ନେହ ମତେ ସାନ୍ତ୍ୱନା ଦେଇଛି । ସାଧାରଣ କ୍ଷେତ୍ରରେ କିଛି କାର୍ଯ୍ୟ ମଧ ଏକତ୍ର କରିଛୁ । ସମାଜ ଓ ସତ୍ୟବାଦୀ ଗୋଷ୍ଠୀ ଉପରେ ପ୍ରଚ୍ଛନ୍ନ ରାଜନୈତିକ ଆକ୍ରମଣ ବେଳେ ସହୃଦୟ ପରାମର୍ଶ ପାଇଁ ସାନିଧ ଲୋଡିଛୁ । ଏ ପ୍ରକାର ନିକଟତା ଆମ ଭିତରେ ୧୯୩୨ ଶେଷାଂଶରୁ ନିକଟତର ହୋଇଥିଲା । ୧୯୫୨ରେ ମନ୍ତ୍ରୀ ହେବାପରେ ରାଧାନାଥ ବାବୁ ଦୂରେଇ ଯାଇଥିବାର ଅନୁଭବ କରି ମୁଁ ଆଶ୍ଚର୍ଯ୍ୟ ଓ ଦୁଃଖିତ ହୋଇଛି । କିନ୍ତୁ ମୋର ଶ୍ରଦ୍ଧା ଓ ଗୁଣାଦରରେ ହ୍ରାସ ଘଟିନାହିଁ ।

ସିଂହଭୂମିର ହୋଙ୍କ ଛଡା ମୁଖ୍ୟ ଅଧିବାସୀ ଓଡିଆ । ଅଥଚ ତାଙ୍କ ପିଲାଏ ଓଡିଆରେ ଅ, ଆ ଶିଖିବା ସମ୍ଭବ ନଥାଏ । ପ୍ରାଇମେରୀ ସ୍କୁଲ ସଂଖ୍ୟା ଅତି ଅଳ୍ପ । ଯାହା ଥିଲା ସେଥିରେ ହିନ୍ଦୀ ଶିକ୍ଷା ଚାଲିଥାଏ । ସରକାରୀ ଚାକିରିରେ ଓଡିଆଙ୍କ ସ୍ଥାନ ନଥିଲା, ବୃତ୍ତି ବା ବ୍ୟବସାୟ ତ ଦୂରର କଥା । ନିଜ ଘରେ ନିଜେ କୁଣିଆପରି ସଙ୍କୋଚ ଓ ହୀନାବସ୍ଥାରେ ଥାଆନ୍ତି । ତାହାର ଅପନୋଦନ ନିମନ୍ତେ ଯେଉଁ ପ୍ରଚେଷ୍ଟା ଆରମ୍ଭ ହୋଇଥିଲା, ତାହାର ଅଗ୍ରଭୂମିକା ନେଇଥିଲେ ଗୋପବନ୍ଧୁ ଦାସ । ସେ ଥାଆନ୍ତି ବିହାର ଓଡିଶା କାଉନସିଲର ନିର୍ବାଚିତ ସଭ୍ୟ । (୧୯୧୭-୧୯୨୦) । ପାଟନାରେ ସଭାସାରି ଚାଇବାସା ବାଟେ ସତ୍ୟବାଦୀ ଫେରନ୍ତି । ଚାଇବାସାରେ ଦୁଇ ଚାରିଦିନ ରହନ୍ତି, ପୂର୍ଣ୍ଣଚନ୍ଦ୍ର ତ୍ରିପାଠୀ ଓକିଲଙ୍କ ଘର ସାମନାରେ ଗୋଟିଏ ଘରେ । ସମସ୍ତେ ସେଠାରେ ରୁଣ୍ଡ ହୁଅନ୍ତି । ନନାଙ୍କ ସାଙ୍ଗରେ ମୁଁ ମଧ ଯାଏ ସେଠାକୁ । ଅର୍ବାଚୀନ, ଅପାଂକ୍ତେୟ ଭାବରେ ମୁଁ ବସି ଆଲୋଚନା ଶୁଣେ । ମଝିରେ, ମଝିରେ ଗୋପବନ୍ଧୁ ବାବୁଙ୍କ ଥଟ୍ଟା ପରିହାସ ବଡ ଆମୋଦ ଦିଏ ସମସ୍ତଙ୍କୁ । ଥରେ କଥା ଉଠିଲା, ଗୋପବନ୍ଧୁ ବାବୁ ଡେପୁଟି କମିଶନରଙ୍କ ସଙ୍ଗେ ସାକ୍ଷାତ କରିବାକୁ ଗଲାବେଳେ, ତାଙ୍କ ନାମଲେଖା କାର୍ଡ (ଭିଜିଟିଂକାର୍ଡ) କିପରି କାହାଦ୍ୱାରା ଆଗ ପଠାଯାଇ ପାରିବ । ଡେପୁଟି କମିଶନର କୋଠି ରାସ୍ତା ଫାଟକଠାରୁ ବହୁ ଦୂରରେ । ଘୋଡାଗାଡିରେ ଗୋପବନ୍ଧୁ ବାବୁ ଯିବେ ଫାଟକ ପର୍ଯ୍ୟନ୍ତ । ତାପରେ କୋଠିକୁ ଚାଲିକରି ଯିବେ । ସମସ୍ତଙ୍କ ଇଚ୍ଛା; ସେ ଗାଡ଼ିରେ ବସି ଥାଆନ୍ତେ; କାର୍ଡ ପଠାନ୍ତେ; ଡାକରା ହେଲେ ଗାଡିରୁ ଓହ୍ଲାଇ ଯାଆନ୍ତେ ବା ସାହେବଙ୍କ ମରଜି ହେଲେ, ଗାଡି ଭିତରକୁ ଯାଆନ୍ତା । ଘୋଡାଗାଡିର ବନ୍ଦୋବସ୍ତ ପୂର୍ଣ୍ଣବାବୁ କରି ଥାଆନ୍ତି । ସମସ୍ତଙ୍କୁ

Digitized by srujanika@gmail.com

ଅପମାନଜନକ ବୋଧ ହେଉଥାଏ ଯେ ଓଡ଼ିଆଙ୍କ ନେତା; କାଉନସିଲ ମେମ୍ବର ସାହେବଙ୍କ କୋଠି ବାରନ୍ଦାକୁ ଯାଇ ଚପରାସୀ ହାତରେ କାର୍ଡ ପଠାଇ ଠିଆ ହୋଇ ଅପେକ୍ଷା କରିଥିବେ ଡକରା ପାଇଁ । ଗୋପବନ୍ଧୁବାବୁଙ୍କ ସଙ୍ଗରେ ଜଣେ କିଏ ଯାଇପାରିଲେ; ସେ କାର୍ଡ ନେଇ ଯାଆନ୍ତା । ସେପରି ଲୋକ ମିଳୁ ନଥାନ୍ତି । ସବୁ ଶୁଣି ଶୁଣି ଶେଷକୁ ଗୋପବନ୍ଧୁ ବାବୁ କହିଲେ; ଏତେକଥା କାହିଁକି; ମୁଁ ପ୍ରଥମେ ଚପରାସୀ ହୋଇ ଗାଡ଼ିରୁ ଓହ୍ଲାଇ ସାହେବଙ୍କ ଚପରାସୀକୁ କାର୍ଡ ଦେଇ ଫେରି ଆସି ଗାଡ଼ିରେ ବସିଥିବି । ଡକରା ଆସିଲେ କାଉନସିଲର ହୋଇ ପୁଣି ଓହ୍ଲାଇ ମୁଲାକାତକୁ ଯିବି । ସମସ୍ତେ ହସି ଉଠିଲେ । ତାପର ଦିନ ସକାଳେ କିପରି ଦେଖା କରିବାକୁ ଗଲେ; କହିପାରିବି ନାହିଁ ।

ଦିନେ ଆମ ସ୍କୁଲରେ ହେଡମାଷ୍ଟରଙ୍କ ନୋଟିସ ଆସିଲା, କ୍ଲାସ ଟିଚର ପ୍ରତି କ୍ଲାସରେ ଓଡ଼ିଆ ଭାଷୀ ଛାତ୍ର କେତେ, ସେମାନଙ୍କ ମଧ୍ୟରୁ କେତେଜଣ ଓଡ଼ିଆ କ୍ଲାସରେ ପଢ଼ନ୍ତି ଓ କେତେ ଅନ୍ୟଭାଷା ଯଥା– ହିନ୍ଦି ବା ବଙ୍ଗଳା ପଢ଼ନ୍ତି, ତା'ର ଗଣନା କରି ଲେଖି ଅଫିସକୁ ପଠାଇବେ । କାହିଁକି ଏ ଗଣନା, ସମସ୍ତେ ପଚରା ପଚରି ହେଲେ । ଶୁଣାଗଲା କାଉନସିଲ ମେମ୍ବର ଗୋପବନ୍ଧୁ ଦାସ, ତା ପରିଦିନ ସ୍କୁଲ ପରିଦର୍ଶନରେ ଆସିବେ ଏବଂ ଏ ଗଣନା ସେ ମଗାଇଛନ୍ତି । ପରଦିନ ୧୧ ଟା ବେଳକୁ ଗୋପବନ୍ଧୁ ବାବୁ ଆସିଲେ । ହେଡମାଷ୍ଟର ତାଙ୍କୁ ପ୍ରତ୍ୟେକ କ୍ଲାସକୁ ନେଇଗଲେ । ଗୋପବନ୍ଧୁବାବୁଙ୍କର ସେ ଦିନର ଚେହେରା ମୋ ମନରେ ଲାଖି ରହିଛି । ଗୌରକାନ୍ତି, କୃଷ୍ଣଶ୍ମଶ୍ରୁ ମୋହିତ ସହାସମୁଖ, କଳାପ୍ୟାଣ୍ଟ, ଚୋଗା, ଚପକନ ସାଙ୍ଗକୁ ମୁଣ୍ଡରେ କଳାପଗଡ଼ି । ସବୁକଳା ମଧ୍ୟରେ ଗୋରା ମୁହଁଟି ଝଲକୁଥାଏ । ହେଡମାଷ୍ଟର ଇନ୍‌ସପେକ୍ଟର ସାହେବଙ୍କୁ ଯେପରି ସମ୍ମାନ କରନ୍ତି, ସେହିପରି ସମ୍ଭ୍ରମ ସହିତ ଗୋପବନ୍ଧୁ ବାବୁଙ୍କୁ ଅଗ୍ରସ୍ଥାନ ଦେଇ କ୍ଲାସ; ଅଫିସ, ହଲ, ପ୍ରଭୃତି ବୁଲାଇ ଦେଖାଉ ଥାଆନ୍ତି । ଏ ଦୃଶ୍ୟରେ ଆମ ଓଡ଼ିଆ ପିଲାଙ୍କ ଛାତି ଫୁଲି ଉଠୁଥାଏ । ସ୍କୁଲରେ ସେଦିନ ଖୁବ୍ ଚହଳ । ସବୁକୁ ଟପିଗଲା, ଗୋପବନ୍ଧୁଙ୍କ ଖାତିରରେ ସ୍କୁଲ ଦିନେ ଛୁଟି ହେବ ବୋଲି ଘୋଷଣା ହେଲା ।

ଥରେ ଗୋପବନ୍ଧୁ ବାବୁ ଚାଇବାସା ଆସିଥିଲାବେଳେ ସ୍ଥିର ହେଲା ଯେ ରାଧାନାଥବାବୁ ସରକାରୀ କାର୍ଯ୍ୟ ଛାଡ଼ି, ଗୋପବନ୍ଧୁଙ୍କ ପାଖେ କାମ କରିବାକୁ ସତ୍ୟବାଦୀ ଯିବେ । ସେହି ଅନୁସାରେ ୧୯୧୯ ଅକ୍ଟୋବର ମାସରେ ରାଧାନାଥ ବାବୁ ଯାଇ ଗୋପବନ୍ଧୁଙ୍କ ନିର୍ଦ୍ଦେଶରେ ସତ୍ୟବାଦୀ ପ୍ରେସରେ ଯୋଗଦେଲେ । ସେହି ମାସ ୪ ତାରିଖରେ (୪/୧୦/୧୯୧୯) 'ସମାଜ' ସାପ୍ତାହିକ ଭାବରେ ଗୋପବନ୍ଧୁଙ୍କ

Digitized by srujanika@gmail.com

ସମ୍ପାଦନାରେ ପ୍ରକାଶ ପାଇଥାଏ । ସତ୍ୟବାଦୀ ପ୍ରେସ ଓ 'ସମାଜ' ସଙ୍ଗେ ରାଧାନାଥବାବୁ, ସତ୍ୟବାଦୀରୁ ପୁରୀ, ପୁରୀରୁ କଟକ ଆସିଲେ; ପ୍ରେସ ପରିଚାଳନାରୁ ପ୍ରେସ ମ୍ୟାନେଜର, ତାପରେ 'ସମାଜ' ର ସମ୍ପାଦକ ହେଲେ । 'ସମାଜ' କଟକରୁ ପ୍ରକାଶ ପାଇଲା ୧୯୨୭ ଜୁଲାଇ ଦୁଇ ତାରିଖରୁ ।

ଦିନେ ମୁହଁ ସଞ୍ଜବେଳେ ଆମ ଫାଟକ ପାଖେ ପ୍ୟାଣ୍ଟ କୋଟପିନ୍ଧା ଜଣେ ଲୋକ ପହଞ୍ଚିଲେ । ମୁଁ ଫାଟକ ଏପଟେ । ସେ ପଚାରିଲେ, Is this Kashinath Babu's house ? ମୁଁ ହଁ ଭରିଲାରୁ, ପ୍ରଶ୍ନ କଲେ How are you related to him ? Son ? ମୁଁ ହଁ କହି ଜଣାଇଲି ଯେ ନନା ଘରେ ନାହାନ୍ତି । ତାଙ୍କୁ ଭିତରକୁ ଆସିବାକୁ ଅନୁରୋଧ କରି ଫାଟକ ଖୋଲିଲି, କିନ୍ତୁ ସେ ବାହାର ପଟରେ ଠିଆ ରହିଲେ । ଇଂରାଜୀରେ ଅନ୍ୟାନ୍ୟ ପ୍ରଶ୍ନ ପଚାରିଲେ । What do you want to be in life ? ମୋ ଉତ୍ତର, I want to be a lawyer. ପୁଣି ପ୍ରଶ୍ନ, Why not a doctor ? ଇତ୍ୟାଦି କଥୋପକଥନ ପରେ ସେ ଫେରିଯିବା ପୂର୍ବରୁ କହିଗଲେ, ନନାଙ୍କୁ କହିବ ବି.ଏନ୍. ମିଶ୍ର ବାରିଷ୍ଟର (B.N. Mishra, Barrister) ଆସିଥିଲେ । ମୋ ଆଖି କପାଳରେ ଖୋସି ହୋଇଗଲା । ଏଡେ ବଡ ପ୍ରଖ୍ୟାତ ଲୋକଙ୍କୁ ଦେଖିବା, କଥା କହିବା କମ୍ ଭାଗ୍ୟର କଥା ନୁହେଁ । ଗୋପବନ୍ଧୁ ବାବୁଙ୍କ ପରି ଓକିଲ, କାଉନସିଲ ମେମ୍ବର ହେବାପାଇଁ ମନ ଭିତରେ ଯେ ଅଭିଳାଷ ଜନ୍ମିଥିଲା, ତାହା ପ୍ରଥମଥର ମୋର ମୁହଁରୁ ସେଦିନ ବାହାରି ପଡିଲା, ଓକିଲାତି କଅଣ, କାଉନସିଲ କିପରି, ମୋର କିଛି ଧାରଣା ନଥିଲା । ତଥାପି, ଆଶାକୁ ବାଟ ଓଗାଳିବ କିଏ ? ଘଟନାଚକ୍ରରେ ପରେ ଓକିଲ ହେଲି ଏବଂ କଟକରେ ସେହି ବି.ଏନ୍.ମିଶ୍ରଙ୍କ (ବିଶ୍ୱନାଥ ମିଶ୍ର) ସଙ୍ଗେ ଏକା ଟେବୁଲ ପାଖେ ଓକିଲ ଖାନାରେ (High court Bar Association) କିଛି କାଳ ଏକାଠି ବସିବାର ସୁଯୋଗ ଘଟିଲା । ସେହି ସମୟରେ ଚାଇବାସା ଘର ଫାଟକ ପାଖ ଘଟନା ସ୍ମରଣ କରି ଉଭୟ ଆମୋଦ ଲାଭ କରିଥିଲୁ । ସେହି କ୍ଷୁଦ୍ର ଘଟନାର ଅନୁଭୂତି ଏବେ ସୁଦ୍ଧା ଏତେ ସ୍ପଷ୍ଟ ଯେ ସେ ଦିନର ବାକ୍ୟାଳାପ ଅକ୍ଷତ ସ୍ମୃତିରେ ରହିଛି ।

ଚାଇବାସାରେ ସ୍ଥାୟୀ ଓଡିଆ ପରିବାର କେହି ନଥିଲେ । ଜଣେ କାଠ ବ୍ୟବସାୟୀ ବ୍ରଜମୋହନ ତ୍ରିପାଠୀ ସପରିବାର ଆସି ରହିଲେ, ସହରର ଅନ୍ୟପ୍ରାନ୍ତ ସାହେବ ବନ୍ଧ (ପୋଖରୀ) ପାଖରେ । ତାଙ୍କ ପୁତ୍ରକୁ ଘରେ ପଢ଼ାଇବା ପାଇଁ ନନା ଯାଆନ୍ତି । ଟିଉସନ ପାଇଁ କେତେଟଙ୍କା ଦେଉଥିଲେ ମନେ ନାହିଁ । ଆର୍ଥିକ ଅଭାବ ଘଟିଲେ ନନା ତାଙ୍କଠାରୁ ଅଗ୍ରୀମ ଟଙ୍କା ଆଣନ୍ତି । ତ୍ରିପାଠୀଙ୍କର ସ୍ତ୍ରୀ ଅତି ସ୍ନେହ

Digitized by srujanika@gmail.com

ପରାୟଣା ଥିଲେ । ମୁଁ ତାଙ୍କଠାରୁ ବହୁତ ଆଦର ପାଇଛି । ତାଙ୍କ ଘରକୁ ଗଲେ, ନ ଖୁଆଇ ଛାଡନ୍ତି ନାହିଁ । ଓଡିଆ ଆନ୍ଦୋଳନରେ ତ୍ରିପାଠୀ ମହାଶୟଙ୍କର ଆର୍ଥିକ ସହାୟତା ବରାବର ଥିଲା । ଅନ୍ୟ ଓଡିଆ ପରିବାର ପୂର୍ଣ୍ଣଚନ୍ଦ୍ର ତ୍ରିପାଠୀ । ଓକିଲାତି ଉପଲକ୍ଷେ ଆସିଥାଆନ୍ତି । ଅନ୍ୟ ବାସିନ୍ଦାମାନେ ବାହାରୁ ଆସିଥିବା ବିହାରୀ, ବଙ୍ଗାଳୀ । ବାଟରେ ହାଟରେ, ଦୋକାନ ବଜାରରେ, ଓଡିଆ ଶବ୍ଦ କାନରେ ପଡେ ନାହିଁ । ଓକିଲ, ଡାକ୍ତର, କଣ୍ଟ୍ରାକ୍ଟର ସମସ୍ତେ ବଙ୍ଗାଳୀ । ଦୋକାନୀ ବିହାରୀ । ଚାଇବାସାକୁ ଦେଖିଲେ, ସିଂହଭୂମିକୁ କେହି ଓଡିଆ ଅଞ୍ଚଳ ବୋଲି ନ ଭାବିବା ସ୍ୱାଭାବିକ । ସହର ଟପି ଗ୍ରାମାଞ୍ଚଳକୁ ଗଲେ, ସବୁଠାରେ ଓଡିଆ । ହୋ' ମାନେ ଓଡିଆରେ ମଧ ଅଭ୍ୟସ୍ତ, ଏହି ପ୍ରତିକୂଳ ପରିସ୍ଥିତିରେ ମୋର ଚାଇବାସାରେ ପାଞ୍ଚବର୍ଷ କୁମାର ଅବସ୍ଥାରେ କଟିବା ଜୀବନରେ ଏକ ଆହ୍ୱାନ ପରି କାର୍ଯ୍ୟ କରିଛି ଏବଂ କିଛିଟା ଆତ୍ମବିଶ୍ୱାସ ସୃଷ୍ଟି କରିଥିଲା ପରି ମନେ ହୁଏ ।

ସହରରେ ଚାରୋଟି 'ଡେରା' ଥିଲା । ଡେରା ମାନେ ବସାଘର— ବିଶିଷ୍ଟ ବସାଘର ଡେରା ନାମରେ ପରିଚିତ । ଷଢ଼େଇକଳା ଡେରା, ଖରସୁଆଁ ଡେରା, ଇଚା ଡେରା, ଚକ୍ରଧରପୁର ଡେରା । ସେ ସବୁ ସେହି ସେହି ରାଜବଂଶର ତିଆରି । ସେମାନଙ୍କ ପରିବାର ବା କର୍ମଚାରୀ ଆସିଲେ ସେଠାରେ ରହନ୍ତି । ଚକ୍ରଧରପୁର ଡେରାକୁ ଛାଡିଦେଲେ, ଅନ୍ୟ ତିନି ଡେରାରେ ରାଜବଂଶର ପିଲାମାନେ ରହି ଜିଲ୍ଲା ସ୍କୁଲରେ ପଢୁଥାଆନ୍ତି । ଧଳଭୂମିର ଡେରା ନଥିବାରୁ ସେଠା ରାଜଘର ପିଲାଏ ବୋର୍ଡିଙ୍ଗରେ ରହୁଥାଆନ୍ତି । ହିଂମାଂଶୁପ୍ରତାପ, ନଗେନ୍ଦ୍ରପ୍ରତାପ, ସୁଧାଂଶୁ ପ୍ରତାପ, କାଳୀପ୍ରସନ୍ନ କବି ଷଢ଼େଇକଳା ଡେରାରେ ରହୁଥିବାରୁ ମୁଁ ସେଠାକୁ ସମୟ ସମୟରେ ଯାଉଥାଏ । ସେମାନଙ୍କ ସହିତ ବନ୍ଧୁତ୍ୱ ଥିବାରୁ ବର୍ଷେ ମକର ସଂକ୍ରାନ୍ତିକୁ ହିଂମାଂଶୁ ମତେ ଷଢ଼ାଇକଳା ସାଙ୍ଗରେ ନେଇ ଯାଇଥିଲେ । ସେଥିପାଇଁ ନନାଙ୍କର ଅନୁମତି ସହଜରେ ମିଳିନଥିଲା । ମକର ସଂକ୍ରାନ୍ତି ସେଠାରେ ପ୍ରଧାନ ପର୍ବ । ସମସ୍ତେ ହଳଦିବୁଡା ଲୁଗା ପିନ୍ଧନ୍ତି । ଗୀତ, ବାଦ୍ୟ, ନୃତ୍ୟ ରାଜପୁରୀରେ ଚାଲେ । ରାଜବାଟୀ ଓ ନଈକୂଳେ ଭୋଜି ହୁଏ । ମୁଁ ଦୁଇଦିନ ପାଇଁ ଯାଇ, ଚାରିଦିନ ପରେ ଫେରିବାରୁ ନନାଙ୍କର ବିରକ୍ତି ମନରୁ ଯାଇନାହିଁ ।

ଚକ୍ରଧରପୁର ଡେରା ହୀନ ଅବସ୍ଥାରେ ଥାଏ । ଚକ୍ରଧରପୁର ରାଜା ବିଦ୍ରୋହ କରିଥିବାରୁ ଇଂରେଜ ସରକାର ଦ୍ୱାରା ଗାଦିଚ୍ୟୁତ ହୋଇ ସେ ବଂଶ ହୀନପ୍ରଭ ହୋଇ ଯାଇଥାଏ । ସେ ଡେରା ବଡିବଜାରରେ ଆମ ଘରଠାରୁ ଅଳ୍ପ ଦୂର । ଜଣେ ବୁଢ଼ୀ ସେଠାରେ ଥାଇ, ମୁଢ଼ି ବିକୁଥାଏ । ସବୁଦିନ ସକାଳେ ଯାଏ

Digitized by srujanika@gmail.com

ପଇସାକର ମୁଢ଼ି ଆଣିବାକୁ । ସକାଳ ଓ ଓପରଓଳି ଜଳଖିଆ ପାଇଁ କିଛିତ ଗୁଡ ସାଙ୍ଗରେ ତାହା ଯଥେଷ୍ଟ ହୁଏ । ଚକ୍ରଧରପୁର ଡେରାର ପଛକୁ ଏକ ପ୍ରାନ୍ତର ଓ ତାହା ପରେ ରଡନଈ । ସେଠାରେ ବୁଲି ସୂର୍ଯ୍ୟାସ୍ତ ଦେଖିବା ମନେ ପଡିଲେ ପୁଲକ ଆସେ ।

ମହମ୍ମଦ ଇବ୍ରାହିମ ନାମରେ ଜଣେ ଶିକ୍ଷକ ସ୍କୁଲରେ ଯୋଗଦେଲେ । ଓଡିଶାର ମୁସଲମାନ । ବି.ଏ.ପାସ୍ । ପ୍ରଥମ ଚାକିରୀ । ମିଷ୍ଟଭାଷୀ, ସ୍ନେହଶୀଳ । ପ୍ରଥମ ଦିନରୁ ନନାଙ୍କ ସହିତ ବନ୍ଧୁତ୍ୱ । ଅନେକ ସମୟରେ ଆମ ବସାକୁ ଆସନ୍ତି । ଫଇମୁଲ ହକ ନାମରେ ଜଣେ ଯୁବକ ସବ୍‌ଡେପୁଟି ହୋଇ ପ୍ରଥମ ଅବସ୍ଥାପିତ ହେଲେ ଚାଇବାସାରେ । ସେ କଟକ ପାଖ ସାଲେପୁର ଅଞ୍ଚଳର । ଅଳ୍ପ ସ୍ଥୂଳକାୟ ଗୋରା ଦପ ଦପ ଚେହରା । ସେ ଆସିବାର ୪/୫ ଦିନ ପରେ ଆମ ବସାକୁ ରବିବାର ସକାଳବେଳା ଆସିଲେ । କଥା କହିଲେ ହସ ମୁହଁରେ ଧରେ ନାହିଁ । ପ୍ରଥମରୁ ହିନ୍ଦିରେ ଆରମ୍ଭ କରି, ପ୍ରାଞ୍ଜଳ ଓଡିଆରେ ସମସ୍ତଙ୍କୁ ଆପଣାର କରିନେଲେ । ଆମ ବସାଠାରୁ ବେଶି ଦୂର ନୁହେଁ, ଗୋଟିଏ ନୂଆ ତିଆରି ହେଉଥିବା ଘର ଭଡା ନେଇ ରହିଲେ । ଅଧିକାଂଶ ସମୟ ଗସ୍ତରେ ଯାଆନ୍ତି । ଫେରିଲେ ବରାବର ଆମ ବସାକୁ ଆସନ୍ତି । ବେଳେବେଳେ କଦଳୀ, ଅମୃତଭଣ୍ଡା ମଫସଲରୁ ଆଣିଥିଲେ, ଆମକୁ ଦିଅନ୍ତି । କିଛି ଦିନ ତାଙ୍କ ପାଖକୁ ଇଂରେଜୀ ପଢ଼ିବାକୁ ମୁଁ ଯାଇଥିଲି । ବୋଉ ପ୍ରଭୃତି ଆମ ଗାଁରେ ଥିଲାବେଳେ, ଫଇମୁଲ ହକ୍ ଛୁଟିରେ ତାଙ୍କ ଗାଁକୁ ଯାଇଥିଲେ । ଦିନେ ଅପ୍ରତ୍ୟାଶିତ ଭାବରେ ଓପରବେଳା ୪ଟା ବେଳେ ଟ୍ରେନ୍‌ରେ ଯାଇ ଆମ ଘରେ ଗାଁରେ ଉପସ୍ଥିତ ହେଲେ । ନନା ଓ ମୁଁ ସେତେବେଳେ ଚାଇବାସାରେ ଥାଉ । ବୋଉ ଓ ନାନୀ ବ୍ୟସ୍ତ ହୋଇପଡ଼ିବା ସ୍ୱାଭାବିକ । ବ୍ରାହ୍ମଣ ଶାସନରେ ମୁସଲମାନ କୁଣିଆ ଅଜଣା, ଅଶୁଣା କଥା । ମୋ ଭଉଣୀ କ୍ଷେତ୍ରମଣି ଘରେ ଥିବାରୁ ଅତିଥିଙ୍କ ସଙ୍ଗେ କଥାବାର୍ତ୍ତା, ରାତିରେ ତାଙ୍କର ଆହାର ଓ ଶୟନ ବ୍ୟବସ୍ଥା କୌଣସି ମତେ ହେଲା । ମୁସଲମାନ ଅଇଁଠା ଉଠାଇବ କିଏ ? ଆମ ଘରେ ସାମୟିକ ସାହାଯ୍ୟ ପାଇଁ ଥିବା ଚାଷୁଣୀଝିଅ ଅମଙ୍ଗ ହେଲା, ବାଡିଆଡ ପାଖରେ ଥିବା ବାଉରୀ ମଧ ନାହିଁକଲା । କ୍ଷେତ୍ରମଣି ସେତେବେଳକୁ ଶୋଇପଡିଥାଏ । ନାନୀ ବିଧବା । ବୋଉ ଗାମୁଛା ପାଲଟି ଅତିଥିଙ୍କ ଆହାର ପାତ୍ର ଉଠାଇ ନେଇ ମାଜିଦେଲା । ଅତିଥି ଏହି ପରିସ୍ଥିତିର କୌଣସି ସୁରାକ ପାଇ ନଥିଲେ । ତା ପରଦିନ ସକାଳେ ଲୁଙ୍ଗିପିନ୍ଧି ବାଲିପୋଖରୀକୁ ଗାଧୋଇବାକୁ ଯିବାରେ ଆଉ ଏକ ପରିସ୍ଥିତି ଉପୁଜିଲା । ପୋଖରୀ ତୁଠରେ, ଦେଉଳ ପାଖରେ, ବ୍ରାହ୍ମଣଙ୍କ ସଙ୍ଗରେ ନିଃସଂକୋଚରେ ମୁସଲମାନ ସ୍ନାନ କରିବାରେ ବହୁତ ଫୁଟୁର ଫାଟର ହେଲା । ବ୍ରାହ୍ମଣେ ଶଙ୍କିଯାଇ ଆଡେଇ ହୋଇଗଲେ । ମୁସଲମାନ

Digitized by srujanika@gmail.com

ଜଣକ ସୁକାନ୍ତି ଓ ଡେପୁଟି ହାକିମ ଥିବାରୁ କେହି କିଛି ଭରସି ଓପରେ କହିଲେ ନାହିଁ କିନ୍ତୁ ଅସନ୍ତୋଷ ଅସ୍ପଷ୍ଟ ରହିଲା ନାହିଁ । ଫଇମୁଲ ହକ ଫେରି ଯିବାପରେ ଅନେକ ଦିନ ପର୍ଯ୍ୟନ୍ତ କଥାଟା ଆମଘର ବିରୋଧରେ ଗାଁରେ କୁହାକୋହି ହେଲା । ଇଏ ଷାଠିଏ ବର୍ଷ ତଳର ଘଟନା, ଏବେ ଶାସନର ଘରେ ଘରେ ଲୁଙ୍ଗି । ମୋଗଲ ଖାନା ମଧ ଅଚଳ ନୁହେଁ । କିନ୍ତୁ ସେଦିନ ବୋଉ, ନାନୀ ଯେପରି ମୁସଲମାନ୍ ଅତିଥିଙ୍କୁ ନେଇଆଣି ଥୋଇଲେ, ସେଥିପାଇଁ ତାଙ୍କୁ ବାହାଦୁରୀ ଦବାର କଥା । ଉପରେ ରକ୍ଷଣଶୀଳତା ଯେତେ ଥାଉ, ହିନ୍ଦୁଙ୍କର ଉଦାରତା ମଜ୍ଜାଗତ । ହକ୍ ସାହେବ ଚାଇବାସା ଫେରି ଆମ ଗାଁକୁ ଯାଇଥିବା କଥା ନନାଙ୍କୁ ଖୁବ୍ ଆନନ୍ଦରେ କହିଲେ । ଆମେ ଶୁଣି କାବା ହେଲୁ ଏବଂ ବୋଉ, ନାନୀଙ୍କ ଅବସ୍ଥା କଅଣ ହୋଇଥିବ ଭାବିଲୁ । ମହମ୍ମଦ ଇବ୍ରାହିମ ଓ ଫଇମୁଲ ହକ ବଦଳି ହୋଇଯିବା ପରେ ଓଡିଆ ପରିସର ପୂର୍ବବତ୍ ସଙ୍କୁଚିତ ହୋଇଗଲା ।

ମୋ ରହିବାର ଶେଷ ଅଂଶକୁ ଆହେଦ୍ ସାହେବ ଡେପୁଟି ମାଜିଷ୍ଟ୍ରେଟ୍ ଚାଇବାସାକୁ ଆସିଲେ । ପୁରୁଖା ଅଫିସର । ଦୀର୍ଘକାୟ, ବଳିଷ୍ଠ, କର୍ମତତ୍ପର । କଟକ ସହରର ଲୋକ ନ ହୋଇଥିଲେ, ତାଙ୍କ ପାହ୍ୟାର ହାକିମ ଆମ ସାଙ୍ଗେ ପରିଚିତ ହେବା ସମ୍ଭବ ହୋଇନଥାନ୍ତା । ଆହେଦ ସାହେବ ଏତେ ମେଳାପୀ ଯେ, ମୁଁ ଚାନ୍ଦିନିଚଉକରେ ଘର କଲା ପରେ, ବହୁଥର ଆସି ସଙ୍ଖୋଳି ଯାଇଛନ୍ତି । ମୁଁ ଜଜ୍ ହେବାରେ ସେ ବହୁ ଆନନ୍ଦ ଓ ବଧେଇ ପ୍ରକାଶ କରିଥିଲେ । କଟକଚଣ୍ଡୀ ପାଖରେ ତାଙ୍କର ବିରାଟ ଘର ଥିଲା । ସରକାର ତାକୁ ମହିଳା କଲେଜ ପାଇଁ ନେଇଛନ୍ତି । ମୃତ୍ୟୁ ପର୍ଯ୍ୟନ୍ତ ସେ ତାର ବିରୋଧ କରୁଥିଲେ । ସେ ଚାଇବାସାରେ ଚାକିରୀ କଲାବେଳେ ଗାରେଟ୍ ସାହେବ ଡେପୁଟି କମିଶନର ଥିଲେ । ପୂର୍ବରୁ ସେ ଓଡିଶାରେ (ବୋଧହୁଏ ପୁରୀରେ) କଲେକ୍ଟର ହୋଇଥିବାରୁ କିଛି ଓଡିଆ ଜାଣୁଥିଲେ ଏବଂ ଓଡିଆଙ୍କ ପ୍ରତି ସମ୍ବେଦନଶୀଳ ଥିଲେ । ଆହେଦ ସାହେବ ତାଙ୍କର ପ୍ରିୟ ଓ ବିଶ୍ୱାସଭାଜନ ଥିବାରୁ ଓଡିଆ ସ୍ୱାର୍ଥରକ୍ଷା ଦିଗରେ କେତେକ ପଦକ୍ଷେପ ନେବାପାଇଁ ଗାରେଟ୍ ସାହେବଙ୍କୁ ପ୍ରବର୍ତ୍ତାଇ ପାରିଥିଲେ । ତାଙ୍କ ପୂର୍ବରୁ ଡେପୁଟି କମିଶନର ସ୍କଟ ସାହେବଙ୍କ ବିମୁଖତା ଯୋଗୁ ଯାହା ହୋଇପାରୁ ନଥିଲା, ଗାରେଟ୍ ସାହେବଙ୍କ ବେଳେ ତାହା ସମ୍ଭବ ହେଲା ।

ଏହି ସମୟରେ (୧୯୧୮) ଗୋଦାବରୀଶବାବୁ (ପଣ୍ଡିତ ଗୋଦାବରୀଶ ମିଶ୍ର) ବନବିଦ୍ୟାଳୟରୁ ଗୋପବନ୍ଧୁବାବୁଙ୍କର ପ୍ରରୋଚନାରେ ଚକ୍ରଧରପୁର ଆସିଲେ ଓଡିଆ ହାଇସ୍କୁଲ ଗୋଟିଏ ଆରମ୍ଭ କରିବା ପାଇଁ । ସେ ସମୟରେ ସ୍କୁଲ କରିବା ଓ

Digitized by srujanika@gmail.com

ଚଳାଇବା ଅତି କଷ୍ଟସାଧ୍ୟ ଥିଲା । ବିହାରୀ ପ୍ରତିରୋଧର ସମ୍ମୁଖୀନ ହେବା ଅଧିକ କଷ୍ଟକର ହେବାବେଳେ ଜଣେ ବିହାରୀ ବ୍ୟବସାୟୀ ଦୀନନାଥ ପାଣ୍ଡେ ଗୋଦାବରୀଶବାବୁଙ୍କ ପ୍ରତି ଆକୃଷ୍ଟ ହୋଇ ତାଙ୍କ ଦୋମହଲା କୋଠାରେ ସ୍କୁଲ ଆରମ୍ଭ କରିବା ପାଇଁ ଛାଡିଦେଲେ । ଗୋଦାବରୀଶବାବୁ ସ୍ଥାୟୀଭାବରେ ସିଂହଭୂମିକୁ ଆସିଥିବାରୁ ଓଡିଆଙ୍କ ଉତ୍ସାହ ଓ ସାହସ ଯେ ବଢ଼ିଲା, ସନ୍ଦେହ ନାହିଁ । କିନ୍ତୁ ଗୋଦାବରୀଶବାବୁଙ୍କ ଦୁର୍ଦ୍ଦଶା କହିଲେ ନସରେ । ଅର୍ଥ ଅନାଟନ ଓ ପ୍ରତ୍ୟକ୍ଷ ସହଯୋଗର ଅଭାବରେ ସେ ବହୁ ଅସୁବିଧାରେ ପଡିଲେ । ସେ ଚକ୍ରଧରପୁର ଆସିବା ସଙ୍ଗେ ସଙ୍ଗେ ତାଙ୍କ ସହିତ ଆମର ଯୋଗାଯୋଗ ସ୍ଥାପନ କରିବା ସ୍ୱାଭାବିକ ଥିଲା ।

୧୯୨୦ ଡିସେମ୍ବର ମାସରେ ସମ୍ମିଳନୀ ଚକ୍ରଧରପୁରରେ ବସିବା ସ୍ଥିର ହୋଇଥିଲା । ସେତେବେଳେ ଉତ୍କଳ ସମ୍ମିଳନୀ ଅଧିବେଶନ ପରେ ପରେ ସେହି ମଣ୍ଡପରେ ଉତ୍କଳ ଛାତ୍ର ସମ୍ମିଳନୀ ବସୁଥାଏ । ତେଣୁ ଉଭୟ ପାଇଁ ଅଭ୍ୟର୍ଥନା ସମିତି ଦୁଇଟି ଗଢ଼ାଗଲା । ଗୋଦାବରୀଶବାବୁ ମତେ ଖଣ୍ଡିଏ ପୋଷ୍ଟକାର୍ଡ ଲେଖିଲେ, ଛାତ୍ରସମ୍ମିଳନୀ ପାଇଁ କିଛି ଅର୍ଥ ସଂଗ୍ରହ କରିବା ପାଇଁ । ମୁଁ ଉତ୍ସାହରେ ଗୋଟିଏ ଖାତାରେ ପ୍ରଥମେ ଓଡିଆ ଛାତ୍ରମାନଙ୍କଠାରୁ ଚାନ୍ଦା ଆଦାୟ କରିବା ଆରମ୍ଭ କଲି । ଅଣଓଡିଆ ଛାତ୍ର କେହି କେହି କିଛି କିଛି ଦେବାପାଇଁ ପ୍ରତିଶ୍ରୁତ ହୋଇ ନାମ ଲେଖିଦେଲେ । ଟଙ୍କାନେଇ ହାତଲେଖା ରସିଦ ଦେଉଥାଏ । ଏ କଥାଟା ହେଡମାଷ୍ଟରଙ୍କ କାନକୁ ଗଲା । କଂଗ୍ରେସ ଆନ୍ଦୋଳନ ଦେଶରେ ଆରମ୍ଭ ହୋଇଯାଇଥାଏ । ସବୁ ସଭା, ସମ୍ମିଳନୀରେ ରାଜଦ୍ରୋହ ରୀତି ସରକାରଙ୍କୁ ଯେତେ ନ ଘାରୁଥାଏ, ସରକାରୀ କର୍ମଚାରୀଙ୍କୁ ତାଠାରୁ ବେଶି ଚେତାଉଥାଏ । ସରକାରୀ ସ୍କୁଲରେ, ସରକାରୀ ଶିକ୍ଷକ ଜଣଙ୍କର ପୁଅ ଏ ପ୍ରକାର ଏକ ରାଜନୈତିକ ସମ୍ମିଳନୀ ପାଇଁ ଖୋଲାଖୋଲି ଚାନ୍ଦା ସଂଗ୍ରହ କରିବା ଯେ ଅତି ଦୋଷାବହ ଏବଂ ସ୍କୁଲ ପକ୍ଷରେ ଏକ ବିପଦଜନକ ଘଟଣା, ଏଥିରେ ହେଡମାଷ୍ଟରଙ୍କର ତିଳେହେଲେ ସନ୍ଦେହ ହେଲା ନାହିଁ । ସେ ନନାଙ୍କୁ ଡାକି ତାଗିଦ୍ କଲେ । ନନା ମଧ୍ୟ ବିସ୍ମିତ ହେଲେ, କାରଣ ମୁଁ ସେପରି ଚାନ୍ଦା ଉଠାଇଥିବା ସେ ଜାଣିନଥିଲେ । ସେଦିନ ରାତିରେ ଘରେ ନନା ମତେ ପଚାରିବାରୁ ମୁଁ ଗୋଦାବରୀଶ ବାବୁଙ୍କ କାର୍ଡ, ଚାନ୍ଦା ଆଦାୟ ଖାତା, ରସିଦ୍ ଖାତା, ଦେଖାଇଲି । ନନା ଇତଃସ୍ତତରେ ପଡିଲେ । ଏକଆଡେ ମୋ କାର୍ଯ୍ୟରେ ଅନ୍ତରରେ ସମର୍ଥନ, ଅନ୍ୟଆଡେ ହେଡମାଷ୍ଟରଙ୍କ ବିରୋଧ । ସରକାରୀ ହେଉ, ବେସରକାରୀ ହେଉ, ଚାକିରିରେ ମୁନିବର ପ୍ରାଧାନ୍ୟ । ପରଦିନ ସ୍କୁଲ ଆରମ୍ଭରେ ହେଡମାଷ୍ଟର ମତେ

Digitized by srujanika@gmail.com

ଅଫିସ୍‌କୁ ଡକାଇ, 'ନେତା ହୟେଛନା ?' କହି ତାଙ୍କ ବିନାଅନୁମତିରେ ଚାନ୍ଦା କାହିଁକି ଓ କିପରି ସଂଗ୍ରହ କରୁଛି ବୋଲି ଭର୍ତ୍ସନା କଲେ । ତାର ଦୁଇଦିନ ପରେ ପୁଣି ଅଫିସକୁ ଡକାଇ ମୋଠାରୁ ଚାନ୍ଦାଖାତା, ରସିଦଖାତା, ଆଦାୟ ଟଙ୍କା ଛଡାଇ ନେଇ, ମୋ କାନମୋଡ଼ି ବିଦାୟ କରିଦେଲେ । ଯେଉଁ ପିଲାମାନେ ଚାନ୍ଦା ଦେଇଥିଲେ, ସେମାନଙ୍କୁ ଜଣ ଜଣ କରି ଡକାଇ ଗାଳି ଦେଇ ଚାନ୍ଦା ଫେରାଇଦେଲେ । ମତେ ଅତି ଅପମାନ ଲାଗିଲା ଏବଂ ପିଲାଙ୍କ ପାଖରେ ଅପ୍ରସ୍ତୁତ ହୋଇଗଲି । ସେଦିନ ଖେଳଛୁଟିବେଳେ ଆମେ ସଂପୃକ୍ତ ପିଲାଏ ଏକାଠି ହେଲୁ ଏବଂ ଫେରସ୍ତ ହୋଇଥିବା ଚାନ୍ଦାସବୁ ଏକାଠିକରି (ମାତ୍ର ୩୭ ଟଙ୍କା) ଗୋଦାବରୀଶବାବୁଙ୍କ ପାଖକୁ ମନିଅର୍ଡର କରିବା ପାଇଁ ଆମ କ୍ଲାସର ଫୁର୍ତ୍ତିବାଲା ପିଲା କାଳୀପଦ ଦେକୁ ଦେଇଦେଲୁ । ମୋ ଖାତିର ପୁଣି ବଢ଼ିଗଲା । ଘରକୁ ଫେରି ଘଟନା ସବୁ ଲେଖି ଗୋଦାବରୀଶବାବୁଙ୍କୁ ଜଣାଇଦେଲି । ମନିଅର୍ଡର କଥା ନନା ବା ହେଡମାଷ୍ଟର ଜାଣିଲେ ନାହିଁ । ସେ ପରିସ୍ଥିତିରେ ମୋର ଚକ୍ରଧରପୁର ଛାତ୍ର ସମ୍ମିଳନୀ ବା ଉତ୍କଳ ସମ୍ମିଳନୀକୁ ଯିବା ସମ୍ଭବ ନଥିଲା । ଡିସେମ୍ବର ୩୧ ତାରିଖରେ (୧୯୨୦) ଉତ୍କଳ ସମ୍ମିଳନୀ ଚକ୍ରଧରପୁରରେ ପୁରୀର ଓକିଲ, ସମାଜସେବୀ, ସାହିତ୍ୟିକ ଓ ପରବର୍ତ୍ତୀ କାଳର କଂଗ୍ରେସ ନେତା ଜଗବନ୍ଧୁ ସିଂହଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହେଲା । ଜାତୀୟ କଂଗ୍ରେସର ନାଗପୁର ଅଧିବେଶନରୁ ଫେରି ଗୋପବନ୍ଧୁ ଦାସ ଓ ତାଙ୍କ ସହଯୋଗୀମାନେ ସମ୍ମିଳନୀରେ କଂଗ୍ରେସରେ ନିର୍ଦ୍ଧାରିତ ଅସହଯୋଗ ଆନ୍ଦୋଳନ ସମର୍ଥନରେ ପ୍ରସ୍ତାବ ବହୁ ମତରେ ପାଶ୍ କରାଇନେଲେ । ବିଶ୍ୱନାଥ କର ପ୍ରଭୃତି ତାହାର ବିରୋଧ କରି ସଭାମଞ୍ଚ ତ୍ୟାଗକରି ଉଠିଗଲେ । ସେହି ସମ୍ମିଳନୀ ଅନୁଯାୟୀ ଛାତ୍ର ସମ୍ମିଳନୀ ମଧ୍ୟ ସମାହିତ ହେଲା । ମୁଁ ସେତେବେଳେ ସ୍ୱପ୍ନରେ ସୁଦ୍ଧା ଭାବିନଥିଲି ଯେ ଏକ ସମୟରେ ମତେ ଉତ୍କଳ ସମ୍ମିଳନୀରେ ବାରମ୍ବାର ଅଂଶଗ୍ରହଣ କରିବାକୁ ହେବ ବା ଏକାଧିକ ବର୍ଷ ୧୯୪୫ ଡିସେମ୍ବର ୨୮-୨୯ ଜୟପୁର ଅଧିବେଶନ ପର୍ଯ୍ୟନ୍ତ ଉତ୍କଳ ସମ୍ମିଳନୀର ସଂପାଦକ ଦାୟିତ୍ୱ ବହନ କରିବାକୁ ପଡିବ ବା ଉତ୍କଳ ଛାତ୍ରସମ୍ମିଳନୀର ୧୯୩୬ ମସିହା ବାର୍ଷିକ ଅଧିବେଶନରେ କଟକରେ ସଭାପତିତ୍ୱ କରିବାକୁ ହେବ । ଘଟନାଚକ୍ରରେ ଅଘଟନ ମଧ୍ୟ ଘଟେ ।

ପଢ଼ା ଓ ରାଜନୈତିକ ଚେତନା ସାଙ୍ଗକୁ ଆଧ୍ୟାତ୍ମିକ ଦିଗରେ କିଛି ଆଭାସ ମିଳିବାର ସୁଯୋଗ ମିଳିଥିଲା, ପ୍ରାଇଜ ଭାବରେ ମିଳିଥିଲା ରାମକୃଷ୍ଣ ପରମହଂସ, ବିବେକାନନ୍ଦ ସଂକ୍ରାନ୍ତ ପୁସ୍ତକାବଳୀରୁ । ଆଗ୍ରହରେ ସେସବୁ ପଢ଼େ ଏବଂ ସେହି ଆଦର୍ଶ ଯେ ଗ୍ରହଣୀୟ ଏଥିରେ ବିଶ୍ୱାସ ଜନ୍ମୁଥାଏ । ପଢ଼ାସାରି ରାମକୃଷ୍ଣ ମିଶନ୍‌ରେ

Digitized by srujanika@gmail.com

ଯୋଗଦେବାର ଅଭିଳାଷ ମନରେ ଆସିଥିଲା । ଘରକାନ୍ଥରେ ପ୍ରଥମ ଛବି ମାରିଥିଲି ପରମହଂସଙ୍କର ।

ସ୍କୁଲ ପଢ଼ାର ଶେଷବର୍ଷରେ ହେଡମାଷ୍ଟରଙ୍କର ବଦଳି ହେଲା । ଜଗଦୀଶ ସେନଗୁପ୍ତଙ୍କ ସ୍ଥାନରେ ଆସିଲେ ଜଣେ ମୁସଲମାନ ସୌଖୀନ ବ୍ୟକ୍ତି । ଖରାଦିନେ ତାଙ୍କ ବିଛଣାରେ ମଲ୍ଲିଫୁଲ ବିଛାହୋଇଥାଏ । ସନ୍ଧ୍ୟାପରେ ଫୁଲବାସରେ ସେ ଶୁଅନ୍ତି । ପରିଚ୍ଛଦରେ ସେ ସର୍ବଦା ସମ୍ଭ୍ରାନ୍ତ । ସ୍କୁଲରେ ଶୃଙ୍ଖଳା ଉପରେ ତାଙ୍କର କଡା ନଜର । ପିଲାଙ୍କ ପ୍ରତି ଭଦ୍ର ଓ ଅନୁରାଗୀ । ତାଙ୍କ କ୍ୱାଟରସବୁ ସ୍କୁଲକୁ ଆସିବାକୁ ଆମ କ୍ଲାସ ପ୍ରଥମ ଅତିକ୍ରମ କରିବାକୁ ହୁଏ । ଦିନେ ସ୍କୁଲ ଆରମ୍ଭ ହେବା ପୂର୍ବରୁ ଆମ କ୍ଲାସରେ ଆମେ କେତେଜଣ ପିଲା ମାଷ୍ଟରଙ୍କ ଟେବୁଲ ପାଖରେ କଥାବାର୍ତ୍ତା ହେଉଥିଲୁ । ମୁଁ ମାଷ୍ଟରଙ୍କ ଚଉକିରେ ବସିଥାଏ । ହେଡମାଷ୍ଟର ତାଙ୍କ ଘରୁ ଆସୁଥିବାର ଆମେ ଲକ୍ଷ୍ୟ କରିପାରୁ ନଥିଲୁ । ସେ ବାରନ୍ଦାରେ ଗଲାବେଳେ ଆମକୁ ଦେଖି କ୍ଲାସରୁମ୍ ଭିତରକୁ ଆସିଲେ । କହିଲେ, 'ମହାପାତ୍ର First deserve, then desire' ଏତିକି କହି ଚାଲିଗଲେ । ମତେ ମହାପାତ୍ର ବୋଲି ଡାକୁଥିଲେ । ତାଙ୍କ ସେ କଥା ପଦକ ମୋ ମନରେ ଲାଖିରହିଲା ଏବଂ ତାହା ମୋର ସାରାଜୀବନରେ ଆଦର୍ଶ ପଟିପରି କାର୍ଯ୍ୟ କରିଛି । ମାଷ୍ଟର ହେବାର ଯୋଗ୍ୟତା ନଥାଇ ମାଷ୍ଟରଙ୍କ ପ୍ରତି ଅଭିପ୍ରେତ ଚୌକିରେ ବସିବାର ଇଚ୍ଛାର ଅସମୀଚୀନତା କେଡେ ସୁନ୍ଦର ଓ ସରଳ ଭାବରେ ପଦକରେ ସେ ସୂଚାଇ ଦେଇଗଲେ ! ସମାଜରେ ବହୁ ବିବାଦ, ବିଶୃଙ୍ଖଳାର କାରଣ ହୋଇଛି ଆମେ ଯୋଗ୍ୟତା ହାସଲ ନକରି ପ୍ରତିଷ୍ଠା ଲାଭ କରିବା ପାଇଁ ମାଡିବସିବାର ଅପଚେଷ୍ଟା କରିବା ।

ଚାଇବାସାରେ ରହଣି ଶେଷ ହେଲା, ୧୯୨୧ ଫେବୃଆରୀରେ ପୁରୁଲିଆରେ ମାଟ୍ରିକ ପରୀକ୍ଷା ଦେଇ ଫେରିବା ପରେ । ଚାଇବାସା ଜିଲ୍ଲାସ୍କୁଲର ନିକଟତମ ପରୀକ୍ଷା କେନ୍ଦ୍ର ଥିଲା ପୁରୁଲିଆ । ଆମେ ପୁରୁଲିଆ ଜିଲ୍ଲାସ୍କୁଲ ହଷ୍ଟେଲରେ ରହିଥିଲୁ । ସେଠା ହେଡମାଷ୍ଟର ପ୍ରିୟନାଥ ସେନ (ହୁଏତ ନାମ ଭୁଲ କଲି) ସେଣ୍ଟର ସୁପରିଣ୍ଟେଣ୍ଡେଣ୍ଟ । ପ୍ରତିଦିନ ସକାଳୁ ହଷ୍ଟେଲର ପ୍ରତିରୁମ୍‌କୁ ଆସି ଆମ ଭଲ ମନ୍ଦ ବୁଝନ୍ତି । ଅତି ଅମାୟିକ ଲୋକ । ଦିନେ ଆମ ରୁମ୍‌ରେ କହିଲେ, ଭଗବାନ ହେଉଛନ୍ତି ସଚ୍ଚିଦାନନ୍ଦ । ତମେ ସତ୍‌ଚିତ୍ତରେ ଆନନ୍ଦ କରି କାମ କରିଯାଅ । ଫଳ ଈଶ୍ୱରଙ୍କ ହାତରେ ଛାଡିଦିଅ । ଏ ପଦକ କଥାର ସାରବତ୍ତା ମତେ ସେହି ଦିନଠାରୁ ପ୍ରେରଣା ଦେଇ ଆସିଛି ଏବଂ ସେଥିରୁ ବହୁ ଆଶ୍ୱାସ ଓ ଉପକାର ପାଇଛି । ପ୍ରିୟବାବୁ ପରେ ଚାକିରୀ ଛାଡି କଂଗ୍ରେସରେ ଯୋଗଦେଇ ଜଣେ ଆଦର୍ଶବାନ ନେତା ଭାବରେ ପ୍ରତିଷ୍ଠା

Digitized by srujanika@gmail.com

ଲାଭ କରିଥିଲେ । ପୁରୁଲିଆରେ ପ୍ରଥମ ବିସ୍କୁଟ ଖାଇବାକୁ ମିଳିଲା । ନନା ଖର୍ଚ୍ଚ ପାଇଁ ଯେଉଁ ଟଙ୍କା ଦେଇଥିଲେ, ସେଥିରୁ ଯାହା ବଳିଲା, ସେଥିରେ ଗୋଟିଏ ଖୁର, ଗୋଟିଏ ପାନିଆ କିଣିଲି । ସେ ପର୍ଯ୍ୟନ୍ତ ମୁଁ ମୁଣ୍ଡ କୁଣ୍ଡାଉ ନ ଥାଏ । ବନବିଦ୍ୟାଳୟରେ କେଶ ପ୍ରସାଧନ ବାରଣ ଥିଲା । ନନାଙ୍କ ଚକ୍ଷୁରେ ତାହା ମଧ୍ୟ ଛାତ୍ରପଣରେ ଅଶୋଭନୀୟ ବିଳାସର ସଙ୍କେତ ଥିଲା । ନନା ସର୍ବଦା ପରିଷ୍କାର, ପରିଚ୍ଛନ୍ନ । ନିଜ ହାତରେ କ୍ଷୌର ହୁଅନ୍ତି, ଅବଶ୍ୟ ବାର, ତିଥି ବିଚାରରେ । କେଶ ପ୍ରସାଧନ କରନ୍ତି । ବିଳାସିତା ନଥାଏ, ପରିଚ୍ଛନ୍ନତାରେ ଅବହେଳା କରନ୍ତି ନାହିଁ । ମତେ ଗାଳି କ୍ବଚିତ୍ ଦେଇଛନ୍ତି । ତାଙ୍କର ଅସନ୍ତୋଷ ପ୍ରକାଶ ପାଏ ତାଙ୍କ ନିରବତାରେ । ତେଣୁ ମୁଁ ବହୁତ ଡରି ଡରି ଚଳୁଥାଏ, କାଳେ ସେ ବିରକ୍ତ ହେବେ ।

ପୁରୁଲିଆରୁ ଟ୍ରେନ୍‌ରେ ଆସି ଚକ୍ରଧରପୁରରୁ ବସ୍‌ରେ ଆସିଲୁ ଚାଇବାସାକୁ । ପୁସ୍‌ପୁସ୍ ଗାଡି ଥାଏ, ମାତ୍ର ବସଚଳା ଆରମ୍ଭ ହୋଇଥିବାରୁ ଲୋକେ ତାକୁ ଅଧିକ ପସନ୍ଦ କରନ୍ତି । ବଡିବଜାର ପାଖରେ ରାତି ୮ଟା ବେଳକୁ ବସ୍ ପହଞ୍ଚିଲାବେଳକୁ ନନା ଅପେକ୍ଷା କରିଥିଲେ । ଦୁହେଁ ବସାକୁ ଆସିଲୁ । ସେ ରାତିରେ ଅନ୍ୟତ୍ର ଭୋଜନର ନିମନ୍ତ୍ରଣ ଥିବାରୁ ନନା ମତେ ସଙ୍ଗରେ ନେଇ ସେଠାକୁ ଗଲେ । ବୋଉ ପ୍ରଭୃତି ସେତେବେଳେ ଗାଁରେ ଥିଲେ । ପାଞ୍ଚବର୍ଷ ମଧ୍ୟରେ ଅନେକ ସମୟରେ ନନା ଓ ମୁଁ ଏକୁଟିଆ ଚାଇବାସାରେ ରହୁଥିଲୁ । ଇକ୍‌ମିକ୍ କୁକରରେ ଅଧିକାଂଶ ଦିନ ରାନ୍ଧିକରି ଖାଉ । ନନା କୁକର ବସାଇ ଦେଇ ଟିଉସନକୁ ଯାଆନ୍ତି । ବେଳେବେଳେ ମୁଁ ତାହା କରେ, ଯଦି ନନା ଘରୁ ଅନୁପସ୍ଥିତ ଥାଆନ୍ତି । ପିଲାଦିନୁ ମୁଁ ଘର ଗହଳରୁ ପ୍ରାୟ ବଞ୍ଚିତ ହୋଇ ଆସିଛି । ମୋର ଲାଜକୁଳା ସ୍ୱଭାବର ତାହା ଏକ କାରଣ ।

ନିମନ୍ତ୍ରଣରୁ ସେ ରାତିରେ ଫେରିଲାବେଳକୁ ପ୍ରାୟ ଦଶଟା । ପାଞ୍ଚବର୍ଷ ମଧ୍ୟରେ ବାହାରକୁ ଖାଇବାକୁ ଯିବା (ମକର ସଂକ୍ରାନ୍ତିରେ ଷଢ଼େଇକଳା ଯିବା ଛଡା) ଆଉକେବେ ହୋଇ ନଥିଲା । କୁର୍ତ୍ତା ବାହାର କରି ଶୋଇବାକୁ ଗଲାବେଳେ ନନା ହଠାତ୍ କାନ୍ଦିଉଠି କହିଲେ,'ହରି କ୍ଷେତ୍ରମଣି ଚାଲିଗଲା' । ମତେ ଆକାଶରୁ ପଡିଗଲା ପରି ଲାଗିଲା । ଭଉଣୀ କ୍ଷେତ୍ରମଣୀ ମୋଠାରୁ ସାନ । ଅତି ସୁଶ୍ରୀ, ସ୍ୱାସ୍ଥ୍ୟ ଭଲ, ବିବାହ ହୋଇ ମାତ୍ର ବର୍ଷକ ପୂର୍ବରୁ ଶାଶୁ ଘରକୁ ଯାଇଥାଏ ବୀର ପୁରୁଷୋତ୍ତମପୁର । ଶ୍ୱଶୁର କୃଷ୍ଣ ମିଶ୍ରେ ବୋହୂକୁ ନେଇଥିଲେ ବହୁ ଆଶା କରି । ସ୍ୱାମୀ ନୀଳକଣ୍ଠ ଗାଁରେ ରହି ଚାଷବାସ କଥା ବୁଝୁଥିଲେ । ଚଳନ୍ତି ଘର । ହଠାତ୍ କଲେରା ପରି ଝାଡା ହୋଇ ଦିନକ ଭିତରେ କ୍ଷେତ୍ରମଣି ଚାଲିଗଲା । ଏ ଖବର ମୁଁ ପୁରୁଲିଆ ଯିବା ପରେ ଆସିଥିଲା । ନନା ମତେ ବୋଧ ଦେବାର ବୃଥା ଚେଷ୍ଟା କଲେ । ତାକୁ ବା ମୁଁ କଣ

Digitized by srujanika@gmail.com

କହିବି ? ଉଭୟ କାନ୍ଦି, କାନ୍ଦି, ନିଜ ନିଜକୁ ସମ୍ଭାଳିଲୁ । ଚାଇବାସାରେ ମୋର ଶେଷଦିନ ଏପରି ଶୋକାବହ ହେବ ବୋଲି କିଏ ଭାବିଥିଲା; ପରଦିନ ଗାଁକୁ ଯିବାକୁ କହିବାରୁ ମୁଁ ବସ୍ ଧରି ଚକ୍ରଧର ପୁର ଆସିଲି । ତା ପୂର୍ବରୁ କୌଣସି ବନ୍ଧୁଙ୍କୁ ଭେଟିପାରିଲି ନାହିଁ । ବହୁ ପ୍ରିୟସ୍ଥଳୀ ଶିବ ମନ୍ଦିରକୁ ଯାଇପାରିଲି ନାହିଁ । କୌଣସି ମାଷ୍ଟରଙ୍କ ପାଖରୁ ସସ୍ନେହ ବିଦାୟ ଆଶୀର୍ବାଦ ଭିକ୍ଷା କରିବାର ସୁଯୋଗ ଘଟିଲା ନାହିଁ । ବସରେ ଚଢ଼ି ନନାଙ୍କ ନିଷ୍ପନ୍ଦ ଚକ୍ଷୁକୁ ଚାହିଁ ଶୋକାକୁଳ ହୃଦୟରେ ବିଫଳ ମନୋରଥ ହେଲା ପରି ଚାଇବାସା ଛାଡିଲି । ରଡନଈ ପୋଲ ଉପରେ ବସ୍ ଆସିଲାବେଳେ ନଦୀର ଶେଷ ଦର୍ଶନ ମନକୁ ବ୍ୟାକୁଳ କଲା । ପାଞ୍ଚବର୍ଷର ସବୁ ଆନନ୍ଦ ଉତ୍ସାହ ଏକାବେଳକେ ମଉଳିଗଲା ।



Digitized by srujanika@gmail.com

# ବିବାହ

ଚାଇବାସାରେ ପଢ଼ିଲାବେଳେ ଏ ଗୁରୁ ଘଟନା ଅତି ଲଘୁଭାବରେ ହୋଇଗଲା । ପନ୍ଦର ବର୍ଷରେ ନଅ ବର୍ଷର ଝିଅକୁ ବିବାହ ବର୍ତ୍ତମାନ କଳ୍ପନାତୀତ । ସେତେବେଳେ ତା' ଠାରୁ କମ୍ ବୟସରେ ମଧ ବିବାହ ସମ୍ପନ୍ନ ହେଉଥିଲା । ଝିଅକୁ ସାତଆଠ ବର୍ଷ ବେଳୁ ବାପ ବର ଖୋଜନ୍ତି । କୂଳ ଅନୁସାରେ ପାତ୍ର ଲୋଡା ହୁଏ । ଶୁଣିଥିଲି, ବୀରପ୍ରତାପପୁରରୁ, ଶ୍ରୀ ରାମଚନ୍ଦ୍ରପୁରରୁ ମୋ ପାଇଁ ପ୍ରସ୍ତାବ ନନାଙ୍କ ପାଖକୁ ଆସିଥିଲା । ଯେଉଁ ଝିଅଙ୍କ ପାଇଁ ପ୍ରସ୍ତାବ ଥିଲା, ତାଙ୍କୁ ମୋ ବିବାହ ପରେ ଦେଖିଛି । ସେ ଦୁଇ ପ୍ରସ୍ତାବ ବେଳକୁ ଅନ୍ୟ ଏକ ପ୍ରସ୍ତାବ ଆସିଲା, ଭିଙ୍ଗାରପୁର ଚୌଧୁରୀ ବଂଶର ନରହରି ଚୌଧୁରୀଙ୍କ ଜ୍ୟେଷ୍ଠ କନ୍ୟାପାଇଁ । ତାଙ୍କ ଘର ଆମ ଗାଁରେ ଆମ ଆଗଦୁଆରୀ ବନ୍ଧୁ କରିସାରି ଥାଆନ୍ତି । ନରହରି ଚୌଧୁରୀଙ୍କର ଦୁଇଭଉଣୀ, ମାଣିକ ଓ ନିଶା ବିବାହ ହୋଇଥିଲେ ଆମ ଜ୍ଞାତି ମଧରେ ଜଗନ୍ନାଥ ମହାପାତ୍ର, ବଳଭଦ୍ର ମହାପାତ୍ର ଦୁଇଭାଇଙ୍କୁ । ସେହି ନାନୀମାନେ ବାପଘରେ ଭାଇଙ୍କୁ ମୋ ସନ୍ଧାନ ବୋଧହୁଏ ଦେଇଥିବେ । ଆମ କୂଳ ଅନୁସାରେ ଚୌଧୁରୀ ଘରେ ବନ୍ଧୁ କରିବା ଅସମୀଚୀନ ଓ ତାହା ଜାତି ଦୃଷ୍ଟିରୁ ଗାଁ ସମାଜରେ ନିନ୍ଦାବହ । ଏହାସତ୍ତ୍ୱେ ନନା ଓ ମୋ କାଳିଆ ମାମୁଁ (ବିଶ୍ୱନାଥ ମିଶ୍ର) ପରାମର୍ଶ କରି ଚୌଧୁରୀଙ୍କର ପ୍ରସ୍ତାବରେ ରାଜିହେଲେ । ମୋ ଅଜା ଘର ଆମ ଗାଁରେ । କୂଳ ତୁଳନାରେ ତାଙ୍କର ନିମ୍ନତର । ଗାଁରେ ଅଜାଙ୍କ ପିତା ପିଣ୍ଡିକ ମିଶ୍ର ଯଜ୍ଞ କରି ତାଙ୍କ କୂଳକୁ ମର୍ଯ୍ୟାଦାବନ୍ତ କରାଇଥିଲେ । ତେଣୁ ମୋ ନନାଙ୍କ ବିବାହ ତାଙ୍କଘରେ ହୋଇପାରିଥିଲା । ମୋ ପାଇଁ, ବୀରପ୍ରତାପପୁର, ଶ୍ରୀରାମଚନ୍ଦ୍ରପୁର ଛାଡି ଭିଙ୍ଗାରପୁର ଯିବାର ପ୍ରଧାନ କାରଣ ଥିଲା, ନରହରି ଚୌଧୁରୀଙ୍କର ଏକାଧିକବାର ନନାଙ୍କ ସହିତ ସାକ୍ଷାତ ଓ ସନ୍ନିବନ୍ଧ ଅନୁରୋଧ ଓ ଆବଶ୍ୟକ ହେଲେ, ମୋ ଉଚ୍ଚଶିକ୍ଷା ପାଇଁ ଆର୍ଥିକ ସାହାଯ୍ୟର ପ୍ରତିଶ୍ରୁତି । ଏ ପ୍ରସ୍ତାବ ଆମ ଘରେ ଆଲୋଚିତ ହେଉଥିଲାବେଳେ ମୋ କାନରେ ପଡୁଥାଏ ।

Digitized by srujanika@gmail.com

ଝିଅନାମ ହରିପ୍ରିୟା ଶୁଣି ମୁଁ ଭାବିନେଇଥିଲି ଏ ସମ୍ବନ୍ଧ ନିଶ୍ଚିତ । ଏପରି ନାମ ମେଳ କ୍ୱଚିତ ମିଳେ । ଜାତକ ମେଳରେ ଶୁଣିଥିଲି ରାଜଯୋଟକ ହେଲା । ଝିଅର ଜାତକରେ ଭବିଷ୍ୟତ ସଙ୍କେତ କଅଣ ଥିଲା ଶୁଣି ନଥିଲି । ଝିଅମାନଙ୍କ ପାଇଁ କେତେ ଜାଗାରେ ପ୍ରସ୍ତାବ ପଡେ । କୁଳଜୁଟିଲେ, ଜାତକ ଜୁଟେ ନାହିଁ । ଜାତକ ଜୁଟିଲେ କନ୍ୟା ପସନ୍ଦ ହୁଏ ନାହିଁ । ବରଘର ଚଳିଲାବାଲା ନଥିଲେ, କଥା ଭାଙ୍ଗିଯାଏ । ଏହିପରି କେତେ ସ୍ଥାନରେ ଖୋଜା ଖୋଜିହୋଇ, ଆଖରକୁ ବର ଓ ବିଚାର ସ୍ଥିର ହୁଏ । ଚୌଧୁରୀଙ୍କ ଏ ଝିଅ ପାଇଁ ପ୍ରଥମ ପ୍ରସ୍ତାବରେ ପ୍ରଜାପତି ପ୍ରସନ୍ନ ହୋଇଗଲେ । କନ୍ୟାର ଭାଗ୍ୟ ନା ବରର ଭାଗ୍ୟ ନା ବରକନ୍ୟାଙ୍କ ପିତାମାତାଙ୍କ ଭାଗ୍ୟରୁ ଏହା ହେଲା କିଏ କହିବ ? ୧୯୧୯ ଗ୍ରୀଷ୍ମ ଛୁଟିରେ ଆମେ ଗାଁକୁ ଆସିଥିଲାବେଳେ ସବୁ ଠିକ୍‌ଠାକ୍ ହୋଇ ବିବାହ ହୋଇଗଲା । ବୟସ କନ୍ୟାର ୯, ବରର ୧୫ । ସେ ଦୁହିଁଙ୍କର ଭୂମିକା ଏପରି ବିବାହରେ ଅତି ଗୌଣ । ବିବାହ ଦୁଇପରିବାର ମଧରେ । ପିତା, ବନ୍ଧୁ, ବାନ୍ଧବ ଉଭୟ ପକ୍ଷର ଯାହା କହିବେ ବା ଚାହିଁବେ, ତାହା ହୁଏ ।

ବିବାହ ପୂର୍ବଦିନ ମତେ ପାଲିଙ୍କିରେ ବସାଇ ନନା, ଦଦେଇ, ମାମୁଁ ଓ ଅନ୍ୟମାନେ ଶଗଡରେ ବସି ବାହାରିଲୁ । ବାଟରେ ଦାଣ୍ଡମୁକୁନ୍ଦପୁରଠାରେ ଗାଧୁଆ, ଖା'ପିଆ କରି ପୁଣି ଚାଲିଲେ ଭିଙ୍ଗାରପୁର । ସେଠାରେ ରାତି ରହଣି ଅନ୍ୟତ୍ର କରି, ସକାଳୁ ବାହାରିଲୁ ବିବାହ ବେଦୀକୁ । ସବୁ କୋଳାହଳ ମଧରେ ମତେ କିଛି ଗୁରୁତ୍ୱବୋଧ ହେଉନଥାଏ । ଜୀବନବ୍ୟାପୀ ଏକ ଅଧ୍ୟାୟର ଯେ ଆରମ୍ଭ ହେଉଛି, ଏହାର ସୂଚନା ମନକୁ ଆଦୌ ସ୍ପର୍ଶ କରୁ ନଥାଏ । ବିବାହ ବାସି ସକାଳୁ ଫେରନ୍ତା ଯାତ୍ରା । ପାଲିଙ୍କିରେ ମୁଁ ଓ କନ୍ୟା । ସରଦେଇପୁରରେ ଦିପହରରେ ଆହାର କରି ପୁଣି ଯାତ୍ରା । ଗାଁରେ ପହଞ୍ଚିଲାବେଳକୁ ରାତି ଦଶ । ନିଦବାଉଳା କନ୍ୟା, ବାପଘରୁ ପାଇଥିବା ତାଳଦା ଅନୁଯାୟୀ ତାକୁ ଘେରି ଯାଇଥିବା ମାଇପଙ୍କ ଭିତରେ ମୁଣ୍ଡ ପୋତି କାଠ ପିତୁଳା ପରି ଠିଆ ହୋଇଥିବା ଦୃଶ୍ୟ ମୋର କିଛି କିଛି ମନେଅଛି । ବାଟରେ କନ୍ୟାକୁ କଥା କହିବାକୁ ମୁଁ ଚେଷ୍ଟା କରିଥିଲି । ବାପଘରୁ ବାରଣ ଥିବାରୁ ତାର ପାଟି ଫିଟିନଥିଲା । ମୋ ପିଇସି ମଣିନାନୀ ମୋ ପ୍ରତି ଯେପରି ସ୍ନେହଶୀଳା, ନବାଗତା ପ୍ରତି ସେହିପରି ସ୍ନେହମୁଖର ହୋଇପଡିଲା । ଝିଅକୁ କୋଳକୁ ନେଇ ମୁକୁଟ, ପାଟଭାରରୁ ମୁକ୍ତ କରି, ଓଢ଼ଣା ଟେକି କନ୍ୟାର କଅଁଳ ସୁନ୍ଦର ମୁହଁକୁ ସମସ୍ତଙ୍କୁ ଜଣ ଜଣ କରି ଦେଖାଉଥାଏ । ବିବାହ ସାତମଙ୍ଗଳା ପରେ, ଅଷ୍ଟମଦିନ

Digitized by srujanika@gmail.com

ଯକାକୁ ବୋହୂଗଲେ, ଆମ ଆଗଦୁଆରୀ ତାଙ୍କ ପିଇସୀନାନୀଙ୍କ ଘରେ ମୁହଁ ଲୁଚାଇବା ପାଇଁ । ଆମ ଘରର କେହି ସେଦିନ ବୋହୂ ମୁହଁ ଦେଖିବା ନିଷେଧ । ତା ପର ଦିନ ଆମ ଘରକୁ ଫେରି ଗୋଟିଏ ଦିନ ରହି, ଭିଙ୍ଗାରପୁର ପ୍ରତ୍ୟାବର୍ତ୍ତନରେ ବିବାହପର୍ବ ଶେଷ ହେଲା । ଦ୍ୱିରାଗମନ କଲେ ୧୩ ବର୍ଷ ବୟସରେ ୧୯୨୩ ଗ୍ରୀଷ୍ମକାଳରେ, ମୁଁ କଟକରେ, ଆଇ.ଏ.ଦ୍ୱିତୀୟ ବର୍ଷ ପଢ଼ିଲାବେଳେ । ସେତେବେଳକୁ ଆମେ ପରସ୍ପର ପ୍ରତି ସଚେତନ ।

ଘରେ ବୋହୂହେବା କେତେ କଷ୍ଟକର ଯେ ଭୋଗିଛି ସେ ଜାଣିଛି । ଏବେ ବିବାହ ପରେ ଆଗ ସ୍ତ୍ରୀ, ପରେ ବୋହୂ । ଆମବେଳେ ଥିଲା ଠିକ୍ ଓଲଟା । ଦିନବେଳେ ସାକ୍ଷାତ ଘଟିବା—କଥା କହିବା ଦୂରର କଥା—ଅସଙ୍ଗତ ଓ ନିନ୍ଦନୀୟ ଥିଲା । ସେଥିରେ ବୋହୂର ଲଜ୍ଜାହୀନତା ଓ ପୁଅର ବେହିଆପଣ ପ୍ରକାଶିତ ହେବାର ଭୟ ଏତେ ବେଶି ଥିଲା ଯେ କେହି ତାହାର ବିରୁଦ୍ଧାଚରଣ କରିବାକୁ ସାହସ କରୁ ନଥିଲେ । ବୋହୂ ସୂର୍ଯ୍ୟାଲୋକରେ ବାହାରକୁ ବାହାରିବା କିମ୍ବା କୌଣସି ଗୁରୁଜନଙ୍କୁ ଦେଖାଦେବା ପ୍ରାୟ ବାରଣ ଥିଲା । ସୂର୍ଯ୍ୟ ଉଦୟ ପୂର୍ବରୁ ଘର ଲିପାପୋଛା ସାରି, ସ୍ନାନ ନିତ୍ୟାକର୍ମାଦି ପରେ ରନ୍ଧନ ଇତ୍ୟାଦି କାର୍ଯ୍ୟପାଇଁ ଗୃହକର୍ତ୍ତୀଙ୍କର ନିର୍ଦ୍ଦେଶ ପାଇଁ ପ୍ରସ୍ତୁତ ରହିବାକୁ ପଡେ । ଆମ ଘରେ ଗୃହକର୍ତ୍ତୀ ବୋଉ ହେଲେ ମଧ, ପିଇସୀନାନୀ ଘର ମୁରବୀ । ସେ ବାଳୁତ ବିଧବା ଦିନୁ ଆମ ଘରେ ରହିଆସିଛି ଏବଂ ତାର ସାଧୁଆଚରଣ, ସ୍ନେହଶୀଳତା କର୍ମ ତତ୍‌ପରତା ଯୋଗୁ ସେ ନିର୍ବିବାଦରେ ସମସ୍ତଙ୍କର ଶ୍ରଦ୍ଧା ଓ ସମ୍ମାନ ପାଉଥିଲା । ନୂଆବୋହୂ ପ୍ରତି ସେ ପ୍ରସନ୍ନ ଥିବାରୁ, ବେଶି କଟକଣାରୁ ବୋହୂ ସହଜରେ ନିସ୍ତାର ପାଇଗଲା । ତଥାପି ସାଧାରଣ ବାରଣ ମାନି ଚଳିବାର କଥା । ପୁଅ କଲେଜ ପଢୁଆ ହେଲେ ମଧ ରୋଜଗାରିଆ ନ ଥିବାରୁ, ବୋହୂର କୌଣସି ଟାଣ ନ ରହିବା ସ୍ୱାଭାବିକ ।

ଚୌଧୁରୀ ଘରେ ବନ୍ଧୁ ବାନ୍ଧିବା ଯୋଗୁ ବିବାହବେଳେ ଗାଁରେ କିଛି ସମାଲୋଚନା ହେଉଥିବାବେଳେ, ଚୌଧୁରୀ ମହାଶୟଙ୍କର ଭଣଜା, ଯେ ଆମ ଗାଁର ପ୍ରଥମ ଏମ୍.ଏ. ପଢ଼ିବାବାଲା (ଲୋକନାଥ ମହାପାତ୍ର), ବିବାହ ସପକ୍ଷରେ ଦୃଢ଼ତାର ସହିତ କହୁଥିଲେ । ଦ୍ୱିରାଗମନ ସମୟରେ ତାଙ୍କର ଭୂମିକା ବଦଳିଗଲା । ପ୍ରୀତିଭୋଜନକୁ ନନା ଅନ୍ୟମାନଙ୍କ ମଧରେ ପଣ୍ଡିତ ନୀଳକଣ୍ଠ ଦାସ, ଆଚାର୍ଯ୍ୟ ହରିହର ଦାସ, ବାସୁଦେବ ମହାପାତ୍ର (ଶିକ୍ଷକ), ସତ୍ୟବାଦୀର ଡାକ୍ତର, ଥାନା

Digitized by srujanika@gmail.com

ଅଫିସର, ଷ୍ଟେସନ ମାଷ୍ଟର ପ୍ରଭୃତିଙ୍କୁ ନିମନ୍ତ୍ରଣ କରି ଆସିଥିଲେ । ଗାଁ ଲୋକେ ତ ଆସିବାର କଥା ଆସିଥିଲେ । ସତ୍ୟବାଦୀରୁ ଆସିଥିବା ବ୍ୟକ୍ତିମାନେ ଗୋଟିଏ ଘରେ ବସି ଭୋଜନ କଲାବେଳେ, ଅନ୍ୟମାନେ ଅନ୍ୟତ୍ର ଭୋଜନ କଲେ । ପରଶୁଣି ଉଭୟ ଆଡେ ଭୋଜ୍ୟ ପରିବେଷଣ କରୁଥାଆନ୍ତି । ସତ୍ୟବାଦୀ ଭଦ୍ରଲୋକଙ୍କ ମଧ୍ୟରେ ଦୁଇଜଣ ଅବ୍ରାହ୍ମଣ (କରଣ) ଥିଲେ । ଭୋଜିର ପରଦିନ ସକାଳେ ଗାଁରେ କଥା ଉଠିଲା ଯେ ଅବ୍ରାହ୍ମଣଙ୍କ ସଂଗେ ଗାଁ ବ୍ରାହ୍ମଣମାନଙ୍କୁ ଏକାଠି ବସାଇ ଆମେ ଅତି ଗର୍ହିତ କାର୍ଯ୍ୟ କରିଛୁ ଏବଂ ସେଥିଯୋଗୁ ବ୍ରାହ୍ମଣମାନଙ୍କ ପଇତାମାରା ହୋଇଗଲା । ସତ୍ୟବାଦୀଦଳ ଅଲଗା ବସିଥିବାର ଯୁକ୍ତି କଲାବେଳେ, କୁହାଗଲା ଯେ ଏକା ପରଶୁଣି ଏକା ପାତ୍ରରେ ସେମାନଙ୍କୁ ଓ ବ୍ରାହ୍ମଣମାନଙ୍କୁ ଖାଦ୍ୟ ଦେଇଥିଲେ । ଆମେ ଦୁଃଖର ସହିତ ଜାଣିଲୁ ଯେ ଚୌଧୁରୀ ମହାଶୟଙ୍କର ନିଜ ଭଣଜା ସତ୍ୟବାଦୀ ଦଳରେ ଅବ୍ରାହ୍ମଣ ଥିବା ଏବଂ ସେଥିଯୋଗୁ ପଇତାମାରା ହୋଇଥିବା କଥା ଗାଁରେ ପ୍ରଥମ ଆରମ୍ଭ କରି ଅନ୍ୟମାନଙ୍କୁ ପ୍ରବର୍ତ୍ତାଇଲେ । ଆମମାନଙ୍କୁ ଅପମାନିତ କରିବା ପାଇଁ, ଆମେ ଦେଖିଲାଭଳି ସେ ନିଜେ ଓ ଅନ୍ୟମାନେ ଦାଣ୍ଡଦୁଆରମାନଙ୍କରେ ନୂଆ ପଇତା ସଜାଡି ଗ୍ରହଣ କରିବା ଆରମ୍ଭ କରିଥିଲେ । ଆମ ଘରକୁ ଧୋବା, ଭଣ୍ଡାରୀ ବାସନ୍ଦ କରିବା ପାଇଁ ସେ ବା ଅନ୍ୟ କେହି ଉଠାଇଥିଲେ କିନ୍ତୁ ସେଥିରେ ସମର୍ଥନ ନ ମିଳିବାରୁ ତାହା ହେଲା ନାହିଁ । ପରେ ଯେ ଅଣଓଡିଆ, ଅବ୍ରାହ୍ମଣ କନ୍ୟା ଲୋକନାଥ ମହାପାତ୍ରଙ୍କ ଘରକୁ ବୋହୂହୋଇ ଆସିଲା, ତାହା ସେ କଳ୍ପନା କରି ନଥିବେ କିମ୍ବା ଗାଁବାଲା କେହି ଭାବିନଥିବେ ଯେ ଭିଙ୍ଗାରପୁରରୁ ଆସିଥିବା ବୋହୂଙ୍କର ପୁଅ ନାତିମାନେ ନିର୍ଦ୍ୱନ୍ଦରେ ବଙ୍ଗାଳୀ, ଖ୍ରୀଷ୍ଟିଆନ, କାୟସ୍ଥ ଘର କନ୍ୟାମାନଙ୍କୁ ବିବାହ କରିବେ । ରକ୍ଷଣଶୀଳତାରେ ସମାଜ ଯେପରି ସଙ୍କୁଚିତ ହୋଇଥିଲା, ବହିର୍ଜଗତ ସହିତ ପ୍ରସାରିତ ସମ୍ପର୍କ ଯୋଗୁ ସେହିପରି ସମାଜ ଉଦାର ହୋଇ ଆସିଲା ।

ଶ୍ୱଶୁରଙ୍କର ଚାରିକନ୍ୟା, ହରିପ୍ରିୟା, କୃଷ୍ଣପ୍ରିୟା, ଲକ୍ଷ୍ମୀପ୍ରିୟା, ଅବନ୍ତୀ । ପୁତ୍ର ନ ଥିଲେ । ଦ୍ୱିତୀୟା କନ୍ୟାଙ୍କୁ କାଶୀପୁର, ତୃତୀୟାଙ୍କୁ ଶ୍ରୀପୁରୁଷୋତ୍ତମପୁର ଓ ଚତୁର୍ଥଙ୍କୁ ବୀରନରସିଂହପୁରରେ ବିବାହ ଦେଇଥିଲେ । ସେହି ଜାମାତାମାନେ ବିଶେଷ ଶିକ୍ଷିତ ନ ଥିଲେ । କୁଳ ଦେଖି ସମ୍ବନ୍ଧ ସ୍ଥିର ହୋଇଥିଲା । ଜ୍ୟୋଷ୍ଠ କନ୍ୟା ବିବାହର ବର୍ଷକ ମଧ୍ୟରେ ପତ୍ନୀ ବିୟୋଗ ଘଟିବାରୁ ନିଜ ବୃଦ୍ଧାମାତାଙ୍କୁ ଛାଡି, ଝିଅମାନଙ୍କର ଯତ୍ନ ନେବାକୁ ଘରେ କେହି ନଥିଲେ । ତେଣୁ ହରିପ୍ରିୟା ନିଜେ ଅତି ଅଳ୍ପ ବୟସ୍କା

Digitized by srujanika@gmail.com

ଥିଲେ ମଧ, ପିତାମହୀଙ୍କ ତତ୍ତ୍ୱାବଧାନରେ ତିନି ଭଗିନୀଙ୍କର ଓ ଘରର ଦାୟିତ୍ୱ ନେବାକୁ ପଡିଲା । ପିତାମହୀଙ୍କର ପୂଜା, ଆରାଧନାର ସମସ୍ତ ଆୟୋଜନର ଭାର ମଧ ତାଙ୍କ ଉପରେ ରହିଲା । ଏହି ପୂଜା ଆୟୋଜନର ଅଭ୍ୟାସରେ ନିଜେ ଗଭୀର ଭାବରେ ଈଶ୍ୱର ବିଶ୍ୱାସୀ ଓ ଶ୍ରୀରାମ ଭକ୍ତ ହେବାର ସୁଯୋଗ ମିଳିଲା । ତାଙ୍କର ସେହି ବିଶ୍ୱାସ ଅବଲମ୍ବନରେ ଆମ ପରିବାରର ସମସ୍ତେ ସେହି ପଥଗାମୀ ହୋଇଛନ୍ତି ।

ଶ୍ୱଶୁର ମହାଶୟ ନିଜ କନିଷ୍ଠ ଭାଇର ଦ୍ୱିତୀୟ ପୁତ୍ରକୁ ପୋଷ୍ୟପୁତ୍ର କରିଥିଲେ । ପରେ ଦ୍ୱିତୀୟ ବିବାହ କଲେ । ଦୁଇ ଝିଅ ଓ ଏକ ପୁଅ ଜାତ ପରେ ୧୯୩୩ ମସିହା ଡିସେମ୍ବର ମାସରେ ତାଙ୍କର ମୃତ୍ୟୁ ଘଟିଲା । ସେ ବିଦ୍ୟା ଅନୁରାଗୀ ଓ ଜାତୀୟ କଂଗ୍ରେସ ସହଯୋଗୀ ଥିଲେ । ବଙ୍ଗଳା ସମ୍ବାଦପତ୍ର ପଢ଼ିବା, ଘରେ ଘରେ ଅରଟ ଚଳାଇବା, ସାଧାରଣ କାର୍ଯ୍ୟରେ କିଛି ଅର୍ଥଦାନ କରିବା ହେତୁ ଚୌଧୁରୀ ବଂଶରେ ସେ ଜଣେ ପ୍ରଗତିଶୀଳ ବ୍ୟକ୍ତି ରୂପେ ପରିଚିତ ଥିଲେ । ନିଜ ଜମିଦାରୀ ବୁଝିବାରେ ସେ ପାରଙ୍ଗମ ଥିଲେ । ଚୌଧୁରୀମାନଙ୍କର ନିଜ ନିଜ ଜମିଦାରୀ ଛଡା, ଇଜମାଲି ବିସ୍ତୃତ ଜମିଦାରୀ ଥିଲା ଏବଂ ତାହା କଟକ ଜିଲ୍ଲା ଜଜଙ୍କ ଅଧୀନରେ ଜଣେ କମନ୍ ମାନେଜରଙ୍କ ଦ୍ୱାରା ପରିଚାଳିତ ହେଉଥିଲା । ବନବିହାରୀ ପାଳିତ ବହୁକାଳ କମନ ମାନେଜର ଥିଲେ । ଇଜମାଲି ଜମିଦାରୀ ବଣ୍ଟନ କରିବା ପାଇଁ ନରହରି ଚୌଧୁରୀ କଟକ ସବ୍‌ଜଜ୍ କୋଟରେ ଏକ ମକଦ୍ଦମା ଦାଏର କରିଥିଲେ । କଟକ କଚେରୀର ତାହା ଏକ ପ୍ରସିଦ୍ଧ ମକଦ୍ଦମା ଏବଂ ଅନେକ ବର୍ଷ ଚାଲିବା ପରେ ୧୯୩୬ ରେ (ବୋଧହୁଏ) ତାହାର ସମାପ୍ତ ଘଟିଲା । ଚୌଧୁରୀବଂଶଙ୍କର ଇଜମାଇଲ ଭାବରେ ପୁରୀ, ଭୁବନେଶ୍ୱର, ପ୍ରୟାଗ (ଏହ୍ଲାବାଦ) ମଥୁରା ଆଦି ତୀର୍ଥସ୍ଥଳରେ କୋଠା ରହିଥିଲା । ଓଡିଶାର ଅନ୍ୟ କାହାରି ସେପରି ସଙ୍ଗତି ଥିବାର ଜଣାନାହିଁ । ପରିଚାଳନାର ତ୍ରୁଟି ଓ ଅନ୍ତର୍ବିବାଦ ଯୋଗୁ ପ୍ରୟାଗ ଓ ମଥୁରାର କୋଠା ସେଠାର ପଣ୍ଡାଙ୍କ ହସ୍ତଗତ ହୋଇଯାଇଛି । ପୁରୀ କୋଠା ଜୀର୍ଣ୍ଣ ଓ ଭଗ୍ନ ଅବସ୍ଥାରେ । ଭୁବନେଶ୍ୱର ଘରର ଚିହ୍ନ ଆଉ ନାହିଁ । ଓଡିଶାର ଏକ ବିଖ୍ୟାତ ଓ ବିରାଟ ଜମିଦାର ବଂଶର ଚାରିଜଣ (ଚାରିଅଂଶ) ମାତ୍ର ସ୍ୱଚ୍ଛଳ ଅବସ୍ଥାରେ ଅଦ୍ୟାପି ଅଛନ୍ତି । ଅନ୍ୟମାନଙ୍କର ଅବସ୍ଥା ଦୟନୀୟ । ଜମିଦାରୀ ଉଚ୍ଛେଦ ପରେ ସେମାନେ କ୍ରମଶଃ ନିମ୍ନଗାମୀ ହୋଇଗଲେ । ସେହି ବଂଶ ମଧ୍ୟରୁ ଦୁଇଭାଇ ଜଗନ୍ନାଥ ଦାଶ ଚୌଧୁରୀ,

Digitized by srujanika@gmail.com

ବ୍ରଜନାଥ ଚୌଧୁରୀ ଜର୍ମାନୀ ଓ ୱେଲସ୍‌ରେ ସ୍ଥାୟୀ ବାସିନ୍ଦା ହୋଇ ରହିଥିଲେ । ଜଗନ୍ନାଥ ଦର୍ଶନ ଶାସ୍ତ୍ରରେ ଅଧ୍ୟୟନ ସାରି ଅଳ୍ପ ସମୟ ପରେ ପରଲୋକଗତ ହେଲେ । ବ୍ରଜନାଥ ଡାକ୍ତର । ସେ ସେଠା ସହରର ମେୟର ହୋଇଥିଲେ । ତାଙ୍କ ପୁତ୍ର ମଧ୍ୟ ଡାକ୍ତର ହୋଇ ସେଠାର ବର୍ତ୍ତମାନ ବାସିନ୍ଦା । ସେ ବଂଶର ଦୁଇଜଣ ଡେପୁଟି ମାଜିଷ୍ଟ୍ରେଟ୍ ହୋଇଥିଲେ, ବାମଦେବ ଚୌଧୁରୀ, ଯଦୁନାଥ ଚୌଧୁରୀ । ଗଂଗାଧର ଚୌଧୁରୀ ଜିଲ୍ଲା ବୋର୍ଡର ମେମ୍ବର ଥିଲେ । ନୀଳକଣ୍ଠ ଚୌଧୁରୀ ସାହିତ୍ୟିକ ଓ କଂଗ୍ରେସ ଆନ୍ଦୋଳନରେ ଜଣେ ଅଗ୍ରଣୀ ଥିଲେ । ବର୍ତ୍ତମାନ ସେ ବଂଶର କେତେଜଣ ଯୁବକ (ବ୍ରଜସୁନ୍ଦରଙ୍କ ତିନିପୁତ୍ର ସମେତ) ଇଞ୍ଜିନିଅରିଂ ପ୍ରଭୃତିରେ ଉଚ୍ଚଶିକ୍ଷା ଲାଭ କରି ଉଚ୍ଚ ପଦବୀରେ କାର୍ଯ୍ୟ କରି ଯଶ ଅର୍ଜ୍ଜନ କରୁଅଛନ୍ତି । ସେମାନଙ୍କ ମଧ୍ୟରୁ କେତେକ ଜମିଦାରୀର ସଙ୍କେତ ଚୌଧୁରୀ ଉପାଧି ପରିତ୍ୟାଗ କରି ଶିକ୍ଷା ଉପାଧିରେ ପରିଚିତ ହେବା ଅଧିକ ଗୌରବଜନକ ବୋଧ କରିଅଛନ୍ତି । କାଳରେ କୁଳ ହୀନ-ପ୍ରଭ ହେଲା ।



Digitized by srujanika@gmail.com

# କଟକ ଯାତ୍ରା

ଚାଇବାସାରେ ପଢ଼ିଲାବେଳେ ଗ୍ରୀଷ୍ମ ଓ ପୂଜା ଛୁଟିରେ ଗାଁକୁ ଆସୁ । ସେ ସମୟତକ ମୋର ବେଶି ଭାଗ କଟେ ମଧୁମାମୁ (ମଧୁସୂଦନ ମିଶ୍ର) ଓ ଜଇ ଭାଇନାଙ୍କ ସଙ୍ଗରେ । ଜଇ ଭାଇନା ମୋ ମାଉସୀପୁଅ ଭାଇ । ମଧୁମାମୁଁ କବିତା ଲେଖୁଥିଲେ । ଆମେ ତିନିହେଁ ଓଡିଆ ବହି ସଂଗ୍ରହ କରି ପଢୁ । ମୁଁ କଲେଜରେ ପଢ଼ିଲାବେଳେ ମଧୁମାମୁଁଙ୍କର ନିମୋନିୟାରେ କାଳ ହୋଇଗଲା । ସେ ଦିନ ସକାଳେ ମୁଁ ପୁରୀ ଯାଇ କବିରାଜ ପୂର୍ଣ୍ଣଚନ୍ଦ୍ର ରଥଙ୍କୁ ଘୋଡାଗାଡି ଭଡାକରି ଗାଁକୁ ଆଣିଥିଲି, ମାମୁଁଙ୍କୁ ଦେଖିବା ପାଇଁ । ସେହି ଗାଡିରେ କବିରାଜଙ୍କ ସାଙ୍ଗରେ ପୁରୀ ଫେରି ତାଙ୍କଠାରୁ ଔଷଧ ଆଣି ଟ୍ରେନରେ ସାକ୍ଷୀଗୋପାଳରେ ପହଞ୍ଚିଲା ବେଳକୁ ମଧୁମାମୁଁ ଆଉ ନଥିଲେ । ଅତି ଦୁଃଖ ଓ ନିରାଶରେ କେତେଦିନ କଟିଲା । ଜଇ ଭାଇନାଙ୍କର ମଧ ସେହିପରି ଅକାଳ ବିୟୋଗ ହେଲା ବଜ୍ରାଘାତରେ ବଣାଇରେ । ସେଠାକୁ ସେ ଗୋଟିଏ ଛୋଟ ଚାକିରୀରେ ଯାଇଥିଲେ । ଏ ଦୁହିଁଙ୍କ ଛଡା ଗାଁରେ ମୋର ଆଉ ଜଣେ ସଙ୍ଗୀ ଥିଲେ  ଗଙ୍ଗାପାଣି– ପଡିଶା ଘରର ଭୁବନେଶ୍ୱର ବାହିନୀପତିଙ୍କର ଏକମାତ୍ର ସନ୍ତାନ । ସେ ଗାଁ ପାଠସାରି 'ସମାଜ'ପ୍ରେସରେ କାର୍ଯ୍ୟ କରି ଅବସର ଗ୍ରହଣ କରିଛନ୍ତି । ଗାଁରେ ଅନ୍ୟ ସମବୟସୀ ଓ ସତ୍ୟବାଦୀରେ ପଢୁଥିବା ଛାତ୍ରମାନଙ୍କୁ ନେଇ ଗୋଟିଏ ସମିତି ଗଢ଼ା ଯାଇଥିଲା ଏବଂ ହାତଲେଖା ଦ୍ୱିମାସିକ ପତ୍ରିକା 'ପଲ୍ଲି ପ୍ରସୂନ' ନାମରେ ବାହାରୁଥିଲା । ସମିତିର ବୈଠକ ପ୍ରତି ସପ୍ତାହରେ ବସେ; ନିର୍ଦ୍ଦିଷ୍ଟ ବିଷୟ ଉପରେ ଆଲୋଚନା ବକ୍ତୃତା ହୁଏ । ଖେଳ, ବୁଲାବୁଲି ଅପେକ୍ଷା ସମିତି ଓ ପତ୍ରିକାରେ ମୋର ଆଗ୍ରହ ଓ ଅଂଶ ଗ୍ରହଣ ବୟସ୍କମାନଙ୍କ ଶୁଭ ଦୃଷ୍ଟିକୁ ଆସିଥିଲା । ଉତ୍କଳ ଦୀପିକା, ସମାଜ, ହିତୈଷିଣୀ ପ୍ରଭୃତି ସମ୍ବାଦପତ୍ର, ଉତ୍କଳ  ସାହିତ୍ୟ, ମୁକୁର ପ୍ରଭୃତି ମାସିକ ପତ୍ର ନନାଙ୍କ ପାଖକୁ ଆସୁଥିବାରୁ ମୁଁ ନିୟମିତ ସେ ସବୁ ପଢ଼େ । ସେ ସୁବିଧା ଅନ୍ୟ ପିଲାଙ୍କର ନ ଥିଲା । ତେଣୁ ସାଧାରଣଜ୍ଞାନ ଓ ସମ୍ବାଦ ସମୀକ୍ଷାରେ ମୁଁ

Digitized by srujanika@gmail.com

ଅଗ୍ରଣୀ ଥିଲି । ଦିନେ ବିଭିନ୍ନ ସମ୍ବାଦ ଉପରେ ମୋର ଟିପ୍ପଣୀ ଶୁଣି ପଣ୍ଡିତ କୃପାସିନ୍ଧୁ ହୋତା ମୋ ପିଠିରେ ଯେଉଁ ପ୍ରଶଂସାସୂଚକ ହାତ ବୁଲାଇଥିଲେ, ତାହା ସେତେବେଳେ ଆନନ୍ଦ ଦେଇଥିବାର ମନରେ ରହିଛି । ଛୁଟିରେ ଗାଁରେ ଥିଲାବେଳେ ପୁରୀ ମଝିରେ ମଝିରେ ଯାଏ ନନା ବା ଦଦେଇଙ୍କ ସଙ୍ଗରେ । ସକାଳୁ ଯାଇ ସନ୍ଧ୍ୟାକୁ ଫେରୁ ।

ମାଟ୍ରିକ ପରୀକ୍ଷା ଦେବା ପରେ ଫଳ ଅପେକ୍ଷାରେ ଗାଁରେ ୪ ମାସ ରହିବାକୁ ହେଲା । ନନା ସେ ସମୟରେ ଚାଇବାସାରେ ରହୁଥିବାରୁ, ଘରେ ସ୍ୱାଧୀନତା ମତେ ମିଳିଲା । ସତ୍ୟବାଦୀ ସ୍କୁଲକୁ ବୁଲିବାକୁ ଯାଏ । ପୂର୍ବ ସହପାଠୀ ମାନେ ଚାଇବାସା ସମ୍ବନ୍ଧରେ ଜାଣିବାକୁ ଚାହିଁଲେ ମୁଁ ଯାହା ସବୁ କହେ ସେମାନେ ଶୁଣି ପ୍ରାୟ ଆଶ୍ଚର୍ଯ୍ୟ ହୁଅନ୍ତି । ସେହି ସମୟରେ ମହାତ୍ମାଗାନ୍ଧି ଓଡିଶାକୁ ଆସିବାର ଖବର ବାହାରିଲା । ସବୁଆଡେ ଉତ୍ସାହ ଓ କୌତୁହଳ ତାଙ୍କୁ ଦେଖିବାକୁ । ଅସହଯୋଗ ଆନ୍ଦୋଳନର ସେ ଥିଲେ ଉଦ୍ଗାତା ଓ ପ୍ରବର୍ତ୍ତକ । ସାପ୍ତାହିକ 'ସମାଜ' ପତ୍ରିକାରେ ଆନ୍ଦୋଳନ ବିଷୟରେ ବହୁତ ସମ୍ବାଦ ପ୍ରକାଶ ପାଉଥାଏ । ୧୯୨୧ ମାର୍ଚ୍ଚ ମାସ ୨୬ ତାରିଖରେ ଗାନ୍ଧିଜୀ ସତ୍ୟବାଦୀ ଆସିଲେ । ତା ପୂର୍ବଦିନ କଟକ ଆସି ଥାଆନ୍ତି । ଗୋପବନ୍ଧୁବାବୁଙ୍କ ସଙ୍ଗରେ ସାକ୍ଷୀଗୋପାଳ ଷ୍ଟେସନରେ ସକାଳ ଟ୍ରେନ୍‌ରେ ଓହ୍ଲାଇଲା ବେଳେ ଆମେ ଅପେକ୍ଷା କରିଥାଉ । ସେଠାରୁ ସେ ସ୍କୁଲକୁ ଗଲେ । ଆମେ ଯାଇ ସେଠାରେ ପହଞ୍ଚିଲୁ । ଦିପହରେ ବଜାରରେ ସାମାନ୍ୟ ଜଳଖିଆ କରି ଓପରଓଳା ୩ଟା ବେଳ ପାସେଞ୍ଜରକୁ ଷ୍ଟେସନକୁ ଆସିଲୁ ଗାନ୍ଧିଜୀଙ୍କ ସଙ୍ଗେ ପୁରୀ ଯିବାପାଇଁ । ସେଦିନ ସନ୍ଧ୍ୟାରେ ଗୁଣ୍ଡିଚାଘର ଶରଧା ବାଲିରେ ସଭା ହେବାର ଥାଏ । ଲୋକଭିଡ଼ ଏତେ ହେଲା ଯେ ଗୋପବନ୍ଧୁ ବାବୁ ଗାନ୍ଧିଜୀଙ୍କୁ ନେଇ ଟ୍ରେନ୍‌କୁ ଉଠିବା କଷ୍ଟସାଧ୍ୟ ହେଲା । ଆମେ ବିନା ଟିକଟରେ ସେହି ଟ୍ରେନ୍‌ରେ ଚାଲିଲୁ ପୁରୀ । ସେଠାରେ ପହଞ୍ଚିଲା ବେଳକୁ ପୁରୀ ଷ୍ଟେସନ ଲୋକାରଣ୍ୟ । ପ୍ଲାଟଫର୍ମ ଗେଟ୍ ବାଟରେ ଏତେଲୋକ ବାହାରିବା ଅସମ୍ଭବ । ଲୁହାବାଡ ଡେଇଁ ଅଧିକାଂଶ ଗଲେ । ମତେ ଜଣେ ଏପଟରୁ ଅଧାଟେକି, ଆରପଟରେ ଅଧାଧରି ପାର କରାଇଲାବେଳେ ମୋର ନୂଆହୋଇ ପିନ୍ଧିଥିବା ଚଟିରୁ ପଟେ ପଡିଗଲା । ଖୋଜିବାର ସମ୍ଭାବନା ସେ ଗହଳିରେ ନଥିଲା । ସୁତରାଂ ଆରପଟକ ହଜିଲାପଟକୁ ଖୋଜିବାକୁ ଛାଡିଦେଇ ଗଲି ଶରଧାବାଲି ସଭାକୁ । ଏକ ଅପୂର୍ବ ଅନୁଭୂତି । ତାହା ପୂର୍ବରୁ ସାଧାରଣ ସଭା ମୁଁ ଦେଖି ନଥିଲି । ଖଣ୍ଡିଏ ପ୍ରଟାଖଟ ଉପରେ ଗୋଟିଏ ଚୌକିରେ ଗାନ୍ଧିଜୀ ବସି ଥାଆନ୍ତି । ପହରଣରେ

Digitized by srujanika@gmail.com

ଧୋତି, କୁର୍ତ୍ତା, ମୁଣ୍ଡରେ ଧଳାଟୋପି । ଗୋପବନ୍ଧୁ ବାବୁ ବସିଥାଆନ୍ତି ଖଟଧାରକୁ । ଲୁଗା କମିଜ ସେ ପିନ୍ଧିଥାନ୍ତି । ଆଖିଆଗରେ ସେ ଚିତ୍ର ଦିଶିଯାଉଛି । ଗୋପବନ୍ଧୁ ପ୍ରଥମରୁ ବକ୍ତୃତା ଆରମ୍ଭ କରି ଗାନ୍ଧିଜୀଙ୍କୁ 'ହୃଦୟର ବଡଲାଟ' ବୋଲି କହିଲେ । ସେ ସମୟରେ ଲାଟ, ବଡଲାଟ ସର୍ବଶ୍ରେଷ୍ଠ ବ୍ୟକ୍ତି ବୋଲି ଲୋକଙ୍କର ଧାରଣା । ଗାନ୍ଧିଜୀଙ୍କର ଶ୍ରେଷ୍ଠତ୍ୱ ଲୋକଙ୍କୁ ବୁଝାଇବା ପାଇଁ ତାଙ୍କୁ କେବଳ ବଡଲାଟ ନୁହେଁ, ହୃଦୟର ବଡଲାଟ ବୋଲି ବର୍ଣ୍ଣନା କଲାବେଳେ, ଲୋକେ କରତାଳି, ହରିବୋଲରେ ଗଗନ ଫଟାଇ ଦେଲେ । ତାପରେ ଗାନ୍ଧିଙ୍କର ହିନ୍ଦୀରେ ବକ୍ତୃତା । କଅଣ କହିଲେ ମନେ ନାହିଁ । ଲୋକେ ବ୍ୟାକୁଳ ଥିଲେ ତାଙ୍କୁ ଦେଖିବା ପାଇଁ, ଶୁଣିବା ପାଇଁ ନୁହେଁ । ହିନ୍ଦି ବକ୍ତୃତା ସେତେବେଳେ ସାଧାରଣ ଲୋକେ ବୁଝିବାକୁ ସମର୍ଥ ନଥିଲେ । ସଭା ସରିଲାବେଳକୁ ସନ୍ଧ୍ୟା ହୋଇଗଲା । ଅସହଯୋଗ ଆନ୍ଦୋଳନର ଏକ ପ୍ରଥମ ସଭା ଏବଂ ଗାନ୍ଧିଜୀ ଓ ଗୋପବନ୍ଧୁଙ୍କୁ ଏକତ୍ର ଦେଖିବା ଓ ଶୁଣିବାର ସୌଭାଗ୍ୟ ମତେ ଅଭିଭୂତ କରିଥିଲା । କଲେଜରେ ନପଢ଼ି ଆନ୍ଦୋଳନରେ ଯୋଗଦେବା ଶ୍ରେୟସ୍କର ବୋଲି ମନେହେଲା । କିନ୍ତୁ ତାହା ଶ୍ମଶାନ ବୈରାଗ୍ୟ ପରି ଅଭିଭାବକଙ୍କ ଅଳ୍ପ ପ୍ରରୋଚନାରେ ଉଭେଇଗଲା ।

ମେ ମାସ ଶେଷକୁ ପରୀକ୍ଷା ଫଳ ବାହାରିଲା । ପ୍ରଥମ ଡିଭିଜନରେ ଦ୍ୱିତୀୟ ସ୍ଥାନ ପାଇଥିବାରୁ ଗାଁରେ ଓ ସତ୍ୟବାଦୀ ଅଞ୍ଚଳରେ ପ୍ରଶଂସା ମିଳିଲା । ପରିବାର ମଧ୍ୟରେ ଆନନ୍ଦ ପ୍ରକାଶ ପାଇବା ସ୍ୱାଭାବିକ । କିନ୍ତୁ ତାହା ସଙ୍ଗେ ସଙ୍ଗେ ବିଚାର ପଡିଲା କଲେଜରେ ପଢ଼ିବା ପାଇଁ କି ବ୍ୟବସ୍ଥା କରାଯିବା ସମ୍ଭବ ହେବ । ଆମ ଗାଁର ଲୋକନାଥ ମହାପାତ୍ରେ ସେତେବେଳେ କଲିକତାରେ ଓଡିଆରେ ଏମ୍.ଏ.ପଢୁଥାନ୍ତି । ସେ ଗାଁର ପ୍ରଥମ ଏମ୍.ଏ । ସେତେବେଳେ ସେ ଛୁଟିରେ ଘରକୁ ଆସିଥାଆନ୍ତି । ଭିଙ୍ଗାରପୁର ନରହରି ଚୌଧୁରୀଙ୍କର ସେ ନିଜ ଭଣଜା । ଚୌଧୁରୀଙ୍କର ଘରେ ମୋର ବିବାହ ହୋଇଥିବାରୁ ସେ ଆମ ସହିତ ଅଧିକ ଲଗ୍ନିକ ହେବାର କଥା । ଆଗରୁ ମଧ ସେ ଆମ ଜ୍ଞାତି ଅନ୍ତର୍ଗତ । ଏ ସବୁ ଛଡା, ଯଦିଓ ମୁଁ ବୟସରେ ତାଙ୍କ ଠାରୁ ବହୁ କନିଷ୍ଠ ସେ ମୋ ସହିତ ଘନିଷ୍ଠତା ରଖିଥାଆନ୍ତି । କଲିକତାରୁ ଚିଠି ଲେଖୁଥିଲେ । ଅନେକ ସମୟରେ ତାଙ୍କ ପିଣ୍ଡାରେ ବସି କଲିକତା ବିଶ୍ୱବିଦ୍ୟାଳୟ, ପଞ୍ଚାନନ ଲେନ୍ ଓଡିଆ ମେସ୍, ତାଙ୍କର ବନ୍ଧୁ ଲୋକନାଥ ପଟ୍ଟନାୟକ ଯେ ଓକିଲାତି ପଢୁଥିଲେ ଏବଂ ସୁଜାତା ନାମ୍ନୀ ଏକ ଧନାଢ଼୍ୟ କନ୍ୟାକୁ ଟିଉସନ କରୁଥିଲେ, ଇତ୍ୟାଦି

Digitized by srujanika@gmail.com

ବିଷୟରେ ତାଙ୍କଠାରୁ ଶୁଣେ । ଲୋକନାଥ ପଟ୍ଟନାୟକ, ଲୋକନାଥ ମହାପାତ୍ରଙ୍କୁ ଯେଉଁ ପତ୍ରମାନ ଲେଖୁଥିଲେ, ତାହା ମୁଁ କୌତୁକର ସହ ପଢୁଥିଲି । ପଟ୍ଟନାୟକଙ୍କ ହସ୍ତଲେଖା ବୃହଦାକାର ଓ ସୁନ୍ଦର । ସେ ଓକିଲାତି ପାସ୍ କରି ପୁରୀରେ ଦେଓ୍ୱାନୀ ଆଇନରେ ପ୍ରଶଂସିତ ଓକିଲ ଓ ଆକାଶବାଣୀରେ ବିଶିଷ୍ଟ ସଂଗୀତ ରଚକ ହୋଇଥିଲେ । ମୁଁ ଭଲରେ ମାଟ୍ରିକ ପାଶ୍ କଲାରୁ ଲୋକନାଥ ମହାପାତ୍ରେ ତାଙ୍କ ମାମୁଁଙ୍କୁ ଜଣାଇ ମାସିକ ତିରିଶ ଟଙ୍କାର ସାହାଯ୍ୟ ମୋ ପାଇଁ ସ୍ଥିର କରାଇଥିଲେ । ସେଥିପାଇଁ ତାଙ୍କ ନିକଟରେ ମୁଁ କୃତଜ୍ଞ । ଭଗବାନଙ୍କ ଦୟାରୁ ମୋର ବୃତ୍ତି ହୋଇଯିବାରୁ ସେ ସାହାଯ୍ୟର ଆବଶ୍ୟକତା ରହିଲା ନାହିଁ । ମୁଁ ଆଇ.ଏ.ପଢ଼ିଲାବେଳେ ସେ (ଲୋକନାଥ ମହାପାତ୍ର) ଓଡିଆରେ ରିସର୍ଚ୍ଚ କରିବା ପାଇଁ କଟକ କଲେଜ ହଷ୍ଟେଲରେ ରହୁଥିଲେ । ପରେ ଭବାନୀପାଟଣା ହାଇସ୍କୁଲ ହେଡମାଷ୍ଟର, ଏହ୍ଲାବାଦରେ କଳାହାଣ୍ଡି ରାଜବଂଶର ଅଭିଭାବକ ଶିକ୍ଷକତା କରି ସୁଖ୍ୟାତିର ସହିତ ଅବସର ଗ୍ରହଣ କରିଛନ୍ତି । ତାଙ୍କର ପୁତ୍ରମାନେ ଓ ଜାମାତାମାନେ ସୁପ୍ରତିଷ୍ଠିତ । ଜ୍ୟେଷ୍ଠପୁତ୍ର ଉମାକାନ୍ତ ସାମରିକ ବିଭାଗରେ, ଦ୍ୱିତୀୟ ରମାକାନ୍ତ ଆଇ.ଏ.ଏସ୍. ତୃତୀୟ ସୀତାକାନ୍ତ ଉଚ୍ଚକୋଟୀର ଯାନ୍ତ୍ରିକ ଉତ୍ପାଦନକାରୀ ଓ କଣ୍ଟ୍ରାକ୍ଟର, ଚତୁର୍ଥ ଛାୟାକାନ୍ତ ଜଣେ ଡାକ୍ତର, ପଞ୍ଚମ ଶ୍ରୀକାନ୍ତ ବ୍ୟବସାୟୀ । ଜାମାତା ଦିବ୍ୟସିଂହ ତ୍ରିପାଠୀ ମଧ୍ୟ ଆଇ.ଏ.ଏସ୍ । ଲୋକନାଥବାବୁ ମୋର ମାମୁଁ ଝିଅ ଭଉଣୀକୁ ବିବାହ କରିଥିବାରୁ ପାରିବାରିକ ଘନିଷ୍ଠତା ରହିବା ସ୍ୱାଭାବିକ । ସେ ଓଡିଶାରେ ପ୍ରଥମ ଓଡିଆରେ ଏମ୍.ଏ.ପାସ୍ କରିଥିଲେ ଏବଂ ପଣ୍ଡିତ ନୀଳକଣ୍ଠ ଦାସ ଅଳ୍ପ କେତେ ମାସ କଲିକତା ବିଶ୍ୱବିଦ୍ୟାଳୟରେ ଓଡିଆ ଅଧ୍ୟାପକ ଥିଲାବେଳେ ସେ ଏମ୍.ଏ. ପଢୁଥିଲେ । ସାହିତ୍ୟିକ ସମାଲୋଚନାରେ ତାଙ୍କର ପଟୁତା ଲକ୍ଷ୍ୟ କରିବାର କଥା । ଦୁଃଖର ବିଷୟ ଯେ ତାଙ୍କର ଯୋଗ୍ୟତା ଅନୁଯାୟୀ ସେ ସୁଯୋଗ ପାଇପାରି ନାହାନ୍ତି ।

ମାଟ୍ରିକ ଫଳ ବାହାରିବା ପରେ ସ୍ଥିର ହେଲା ମୁଁ ରେଭେନ୍ସା କଲେଜରେ ଆଇ.ଏ. ପଢ଼ିବି । ଓଡିଶାରେ ତାହା ଏକମାତ୍ର କଲେଜ ଥିଲା । ମୋର ମାମୁଁ ଗୋପୀନାଥ ମିଶ୍ର ସେତେବେଳେ ମଧୁସୂଦନ ଦାସଙ୍କ ଉତ୍କଳ ଟାନେରୀରେ ମାନେଜର ଭାବରେ କଟକରେ ରହୁଥାଆନ୍ତି । ତାଙ୍କ ପାଖରେ ଥିଲେ ମାମୁଁ ଅଜା, ଅର୍ଥାତ୍ ଗୋପ ମାମୁଁଙ୍କର ବଡ଼େଇ, ଦିବ୍ୟସିଂହ ମିଶ୍ର । ସେ ଜଣେ ପ୍ରଖ୍ୟାତ ପୁରୁଷ । ଗୋପବନ୍ଧୁ ଦାସଙ୍କର ସେ ଶିକ୍ଷକ ଥିଲେ । ସମ୍ବଲପୁର ଜିଲ୍ଲାସ୍କୁଲରେ ହେଡମାଷ୍ଟର

Digitized by srujanika@gmail.com

ହୋଇ ଅବସର ଗ୍ରହଣ କରିଥାଆନ୍ତି । ବଡ ନୀତିବାନ୍, ସ୍ୱାଧୀନଚେତା, ମିତବ୍ୟୟୀ । ଅସହଯୋଗ ଆନ୍ଦୋଳନ ସମୟରେ ଗୋପବନ୍ଧୁ ବାବୁ ସମାଜ କାଗଜରେ ୪/୮/ ୧୯୨୩ ତାରିଖରେ 'ସତ୍ୟ ହୋଇଥିଲେ ସାଙ୍ଘାତିକ' ଶିରୋନାମାରେ ବେଗୁନିଆଥାନା ପୁଲିସ ଅଫିସରଙ୍କ ସଂକ୍ରାନ୍ତ ଏକ ସମ୍ବାଦ ଓ ମନ୍ତବ୍ୟ ପ୍ରକାଶ କରିଥିବାରୁ ତାଙ୍କ ବିରୁଦ୍ଧରେ ଫୌଜଦାରୀ ମକଦ୍ଦମା ହୋଇ ଖୋର୍ଦ୍ଧାରେ ସୁବାସଚନ୍ଦ୍ର ବୋଷଙ୍କ ଜ୍ୟେଷ୍ଠଭ୍ରାତା ସୁରେଶଚନ୍ଦ୍ର ବୋଷ ଡେପୁଟି ମାଜିଷ୍ଟ୍ରେଟଙ୍କ ଦ୍ୱାରା ବିଚାର ହୋଇଥିଲା । ସରକାର ତରଫରୁ ପ୍ରକାଶ ପାଉଥିବା ତତ୍ପରତାରୁ ସମସ୍ତେ ଆଶଙ୍କା କରିଥିଲେ ପ୍ରତିଶୋଧମୂଳକ ଭାବରେ ଗୋପବନ୍ଧୁ ବାବୁଙ୍କୁ ଅନ୍ତତଃ ଆର୍ଥିକ ଦଣ୍ଡ ଓ ତାହା ନହେଲେ, ଜେଲଦଣ୍ଡ ହୋଇଯିବ । ରାୟ ପ୍ରକାଶ ପାଇଲା ଦିନ ମୋ ମାମୁଁ ଅଜା ଦିବ୍ୟସିଂହ ମିଶ୍ରେ ଗୋଟିଏ ଥଳିରେ ଯଥେଷ୍ଟ ଟଙ୍କା (ପାଞ୍ଚଶତ) ଧରି ଖୋର୍ଦ୍ଧା କଚେରୀରେ ଉପସ୍ଥିତ ଥିଲେ । ଅର୍ଥଦଣ୍ଡ ହେଲେ, ସେ ତାହା ପଇଠକରି ଗୋପବନ୍ଧୁ ବାବୁଙ୍କୁ ମୁକୁଳାଇ ଆଣିବେ । ଏହିପରି ମହାନୁଭବ ବ୍ୟକ୍ତି ସେ ଥିଲେ । ଖୋର୍ଦ୍ଧାରେ ରାୟ ବାହାରିଲାବେଳକୁ କଚେରୀ ହତା ଲୋକାରଣ୍ୟ । ମାଜିଷ୍ଟ୍ରେଟ ଇଜଲାସକୁ ଆସିବା ପାଇଁ ବାଟ ସହଜରେ ପାଇଲେ ନାହିଁ । ରାୟ ହେଲା ବେକସୁର ଖଲାସ । ଗାନ୍ଧିଜୀ କି ଜୟ, କଂଗ୍ରେସ କି ଜୟ ଧ୍ୱନି ମଧ୍ୟରେ ଗୋପବନ୍ଧୁ କାଠଗଡାରୁ ବାହାରି ତାଙ୍କର ପୂର୍ବତନ ଶିକ୍ଷକ ଦିବ୍ୟସିଂହ ମିଶ୍ରଙ୍କୁ ନମ୍ର ନମସ୍କାର କଲାବେଳେ ଉଭୟଙ୍କର ଅଶ୍ରୁଳ ନିରବତା ଲୋକଙ୍କୁ ଚକିତ କରିଥିଲା । ସୁରେଶବାବୁ ତାପରେ ସରକାରୀ କାର୍ଯ୍ୟରୁ ଇସ୍ତଫା ଦେଲେ ।

ମାମୁଁ ଅଜା ଅତି ଶିକ୍ଷା ଅନୁରାଗୀ ଥିଲେ । ମୋ ମାଟ୍ରିକ ଫଳ ଶୁଣି ସେ ନନାଙ୍କୁ ଚିଠି ଲେଖିଲେ ଯେ ମୁଁ କଟକ ଆସିଲେ ପ୍ରଥମେ ତାଙ୍କ ବସାରେ ରହିବି ଏବଂ କଲେଜ ଓ ହଷ୍ଟେଲରେ ନାମଲେଖା ସାରି ସବୁ ବନ୍ଦୋବସ୍ତ ହେବା ପର୍ଯ୍ୟନ୍ତ ତାଙ୍କ ବସାରୁ ଯାଆସ କରିବି । ସେହି ଅନୁସାରେ ମୁଁ ଦିନ ୧୦ଟା ବେଳେ ପାସେଞ୍ଜର ଟ୍ରେନ୍‌ରେ କଟକ ଷ୍ଟେସନ୍‌ରେ ପହଞ୍ଚିଲାବେଳକୁ ମାମୁଁ ଅଜା ଅପେକ୍ଷା କରିଥାଆନ୍ତି । ସେହି ଟ୍ରେନ୍‌ରେ ଗୋପବନ୍ଧୁବାବୁ ମଧ୍ୟ କଟକ ଆସିଥିଲେ । ସେ ନମସ୍କାର କଲାପରେ, ମାମୁଁଅଜା ମତେ ଦେଖାଇ ଅତି ଆନନ୍ଦରେ ତାଙ୍କୁ କହିଲେ ଯେ ମୁଁ ପ୍ରଥମ ଡିଭିଜନରେ ଦ୍ୱିତୀୟ ହୋଇ ପାସ୍ କରିଛି । ମୁରକି ହସି, ମୋ ମୁଣ୍ଡରେ ହାତରଖି, ଗୋପବନ୍ଧୁ ମନ୍ତବ୍ୟ କଲେ, ଆଗକଥା ଥିଲେ Congratulation କରି ଥାଆନ୍ତି । ମାମୁଁଅଜାଙ୍କ

Digitized by srujanika@gmail.com

ମୁହଁ କିଛିତ ମଳିନ ହେବା ମୁଁ ଲକ୍ଷ୍ୟ କଲି । ଗୋପବନ୍ଧୁ ବାବୁ ଅବସ୍ଥା ବୁଝିପାରି, ଆଉଟିକିଏ ହସି କହିଲେ, ଏବେ ଆମେ ପିଲାଙ୍କୁ କହୁଛୁ ସ୍କୁଲ, କଲେଜ ଛାଡିବା ପାଇଁ । ସେ ଧୀରେ ଧୀରେ ସେଠାରୁ ଚାଲିଗଲେ । ମାମୁଁଅଜା ଓ ମୁଁ ଉତ୍କଳ ଟାନେରୀ ହତାକୁ ଷ୍ଟେସନ୍ ପଛପଟକୁ ଗଲୁ । ତା'ଭିତରେ ମାମୁଁଘର ବସା । ଗୋପବନ୍ଧୁଙ୍କ ମନ୍ତବ୍ୟରେ ଗୁଣ୍ଡିଚାଘର ଶରଧାବାଲି ଗାନ୍ଧିଜୀଙ୍କ ସଭା ପରେ କଲେଜରେ ନ ପଢ଼ିବା ପାଇଁ ଯେଉଁ ଧାରଣା ହୋଇଥିଲା; ତାହା ସଜାଗ ହେଲା । ମାମୁଁଅଜାଙ୍କୁ ସେ କଥା ଉଲ୍ଲେଖ କରିବାରୁ ସେ ଦୃଢ଼ ନିଷ୍ପତ୍ତି ଭାବରେ କହିଲେ— ଆଗ ପଢ଼ାସାର, ପରେ ଦେଶସେବା କରିବୁ । ଗୋପମାମୁଁଙ୍କର ମଧ୍ୟ ସେହି ମତ । ସେ ଆଉ ଧାପେ ଆଗକୁଗଲେ, କହିଲେ— ନନା କଲେଜକୁ ପଠାଇଛନ୍ତି । ସେଥିରେ ହେଳା କରନା । ମୋ ମନରେ ସେତେ ଟାଣ ନ ଥାଏ । ମୁଁ ନରମିଗଲି, କିନ୍ତୁ ମନେହେଲା କଟକ ଆସିବା ଅନୁକୂଳରେ ବିଘ୍ନ ଘଟିଲା ।



Digitized by srujanika@gmail.com

# ରେଭେନ୍ସା କଲେଜ

ସେହିବର୍ଷ (୧୯୨୧ ଜୁଲାଇ) ନୂଆ ହୋଇ ରେଭେନ୍‌ସା କଲେଜ ଚାଉଳିଆଗଞ୍ଜ ଚକ୍ରପଡିଆରେ ତିଆରି ହୋଇଥିବା ଦ୍ୱିତଳ ବିସ୍ତୃତ କୋଠାକୁ ଆସିଥାଏ । କଲେଜର ଦୁଇମୁଣ୍ଡରେ ଦୁଇ ହଷ୍ଟେଲ । ଫିଜିକସ୍, କେମେଷ୍ଟ୍ରି ପାଇଁ ଦୋତାଲା, ବଟାନୀକ୍ଲାସ ଓ ଲାଇବ୍ରେରୀ ପାଇଁ ଏକତାଲା କୋଠା । ପ୍ରକାଣ୍ଡ ଖେଳପଡିଆ । ଦୁଇ ହଷ୍ଟେଲରେ ସୁପରିଣ୍ଟେଣ୍ଡେଣ୍ଟ, ସହକାରୀ ସୁପରିଣ୍ଟେଣ୍ଡେଣ୍ଟ ରହିବା ପାଇଁ କ୍ୱାଟରସ୍ ଲାଗିରହିଥାଏ । ଦୁଇ ହଷ୍ଟେଲରେ ଦୁଇ ଓ୍ୟାର୍ଡନ୍‌ଙ୍କ ପାଇଁ ପ୍ରଶସ୍ତ ବାସସ୍ଥାନ । କଟକ ସହରର ସର୍ବବୃହତ କୋଠାଘର ଓଡିଶାର ଏକମାତ୍ର କଲେଜ ପାଇଁ ତିଆରି ହେବା ଯୁକ୍ତିଯୁକ୍ତ ଥିଲା ।

ମୁଁ ଆସିବା ପରଦିନ କଲେଜକୁ ଗଲି । ଆଇ.ଏ.ଶ୍ରେଣୀ ଓ ଇଷ୍ଟ (ପୂର୍ବପଟ) ହଷ୍ଟେଲରେ ଏକ ନମ୍ବର ଘରେ ସ୍ଥାନ ମିଳିଲା । ନାମ ଲେଖାଇବା ଓ ହଷ୍ଟେଲ ଘର ମିଳିବା ପାଇଁ ଚାରିଦିନ ବିଳମ୍ବ ହେଲା । ବନବିଦ୍ୟାଳୟ ବୋର୍ଡିଙ୍ଗ ଓ ମେସକୁ ଚାହିଁଲେ, ଆକାଶ ପାତାଳ ପ୍ରଭେଦ । ଏକ ନମ୍ବର ରୁମ୍‌ରେ ପୁରୀ ଜିଲ୍ଲାସ୍କୁଲରୁ ପାସ୍ କରି ଆସିଥିବା ଗୋପାଳଚନ୍ଦ୍ର ଦାସ ଓ ମୁଁ ରହିଲୁ । ଚାଇବାସାରୁ ଛୁଟିରେ ଆସି ପୁରୀ ଯାଉଥିବାବେଳେ ଗୋପାଳକୁ ଚିହ୍ନିଥିଲି ଏବଂ ତାଙ୍କ ସଙ୍ଗେ ପତ୍ରାଳାପ ରହିଥିଲା । ଆମେ ଦିହେଁ ସଙ୍ଗାତ, ମିତ, ବଉଳ, ବସିଲା ପରି, ହେନା (ଫୁଲ) ବସିଥିଲୁ ଏବଂ ସେହି ନାମରେ ପରସ୍ପରକୁ ଡାକୁଥିଲୁ । ଆମ ହଷ୍ଟେଲର ସୁପରିଣ୍ଟେଣ୍ଡେଣ୍ଟ ଆର୍ତ୍ତବଲ୍ଲଭ ମହାନ୍ତି ସଂସ୍କୃତ ଅଧ୍ୟାପକ । ତାଙ୍କ ସହକାରୀ ଥିଲେ ନାରାୟଣ ମିଶ୍ର, ଫିଜିକ୍ସ ଅଧ୍ୟାପକ । ଓ୍ୱାଡେନ୍ ଥିଲେ ତ୍ରିପାଠୀ ସାହେବ । ଶ୍ୟାମଚନ୍ଦ୍ର ତ୍ରିପାଠୀ I.E.S. ଫିଜିକ୍ସରେ କେମ୍ବ୍ରିଜରୁ ପାସ୍ କରି ଆସିଥାଆନ୍ତି । କେତେମାସ ପରେ ନାରାୟଣବାବୁ ଓ୍ୱେଷ୍ଟ (ପଶ୍ଚିମ ପଟ) ହଷ୍ଟେଲକୁ ସୁପରିଣ୍ଟେଣ୍ଡେଣ୍ଟ ହୋଇ ଯିବାରୁ ତାଙ୍କ ସ୍ଥାନରେ ଲକ୍ଷ୍ମୀକାନ୍ତ ଚୌଧୁରୀ ଆମ ହଷ୍ଟେଲକୁ ଆସିଲେ । ହଷ୍ଟେଲରେ ପ୍ରଥମରୁ

Digitized by srujanika@gmail.com

କମନ୍ ମେସ୍ ନଥିଲା । କେତେଗୁଡିଏ ରୁମ୍କୁ ନେଇ ଗୋଟିଏ ଗୋଟିଏ ମେସ୍ ଥାଏ । ପ୍ରତି ମେସ୍ ପାଇଁ ଛାତ୍ରଙ୍କ ମଧ୍ୟରୁ ଜଣେ ମାନେଜର ବଛାଯାଆନ୍ତି । ମେସ୍‌ରେ ଜଣେ ପୂଜାରୀ, ଜଣେ ଚାକର ରହି ମାନେଜରଙ୍କ ବରାଦମତେ ଦୁଇବେଳା ଆହାର ଆୟୋଜନ କରନ୍ତି । ପ୍ରତି ମେସ୍‌ରେ ୨୦/୨୫ ଛାତ୍ରଙ୍କର ବ୍ୟବସ୍ଥା ହୁଏ । କୌଣସି କୌଣସି ମେସ୍‌ରେ ଓପରଓଳି ଜଳଖିଆର ବନ୍ଦୋବସ୍ତ ଥାଏ । ଆମ ମେସ୍‌ରେ ତାହା ନଥିଲା । ଛାତ୍ରଙ୍କ ଆର୍ଥିକ ଅବସ୍ଥା ଅନୁଯାୟୀ ମେସ୍‌ର ମାସକ ଖର୍ଚ୍ଚ ସୀମା ଧାର୍ଯ୍ୟ ରହେ । ସାଧାରଣତଃ ଭାତ, ଡାଲି, ପରିବାତରକାରୀ, ସାମୟିକ ମାଛ, ମାସକେ ଥରେ ମାଂସ, ମେସ୍‌ରେ ମିଳେ । ମାସକୁ ହାରାହାରି ବାରଟଙ୍କା ଜଣକୁ ପଡୁଥିଲା । କୌଣସି କୌଣସି ମେସ୍‌ରେ ଖର୍ଚ୍ଚ ୧୭/୧୮ ଟଙ୍କାକୁ ଯାଏ । ସେପରି ମେସ୍ ଆମ ହଷ୍ଟେଲରେ ଦୁଇଟି ଥିଲା । ସମ୍ବଲପୁରରୁ ଆସିଥିବା ଛାତ୍ରମାନେ ଆମ ହଷ୍ଟେଲ୍‌ର ଓପର ମହଲାରେ ରହିଥିଲେ । ସେମାନଙ୍କର ସ୍ୱତନ୍ତ୍ର ମେସ୍ କରିଥିଲେ—ସମ୍ବଲପୁର ମେସ୍ । ପୁରୀରୁ ଯାଇଥିବା ପିଲାଏ ଏକ ମେସ୍ କଲେ ପୁରୀ ମେସ୍ । ମୁଁ ଓ ଗୋପାଳ ସେଥିରେ ନଥିଲୁ । ଆମ ଦୁହିଁଙ୍କ ଛଡା ପୁରୀ ଜିଲ୍ଲାର ଅନ୍ୟ ଅଧିକାଂଶ ପିଲା ଓପର ମହଲାରେ ରହୁଥିଲେ । ଗୋପାଳ ଓ ମୋର ଜଳଖିଆ ଓ ଅନ୍ୟାନ୍ୟ ଖର୍ଚ୍ଚ ଏକ ସଙ୍ଗେ କରୁଥିଲୁ । ସେତେବେଳେ ଚାରିପଇସାକୁ ଯେଉଁ ରସଗୋଲା ମିଳୁଥିଲା, ଏବେ ତାହା ଏକଟଙ୍କା । ହଷ୍ଟେଲକୁ ଇଲେକ୍‌ଟ୍ରିକ ଲାଇନ ଆସିଲା ତିନିବର୍ଷ ପରେ ।

ନୂଆ ସ୍ଥାନରେ ନୂଆ କୋଠାକୁ କଲେଜ ଆସିଥିବାରୁ ଅଧ୍ୟାପକ, ଛାତ୍ର ସମସ୍ତଙ୍କର ବିପୁଳ ଉତ୍ସାହ । ଲାମ୍ବର୍ଟ ସାହେବ, ପ୍ରିନ୍ସପାଲ । ପ୍ରଫେସର ମାନଙ୍କ ମଧ୍ୟରେ ହୁଇଟ୍‌ଲକ୍ ସାହେବ, ତ୍ରିପାଠୀ ସାହେବ, ବାଓ୍ୱାକର୍ତ୍ତାର ସିଂହ (କେମେଷ୍ଟ୍ରି), କୃତ୍ତିବାସ ସାମନ୍ତରାୟ (ଇଂରେଜୀ), ଶାରଦାକାନ୍ତ ଗାଙ୍ଗୁଲି (ଗଣିତ), କାଶୀନାଥ ଦାସ (ସଂସ୍କୃତ), ବରଦା କାନ୍ତ ଚାଟାର୍ଜୀ (ଇଂରାଜୀ), ଗୋପାଳ ଚନ୍ଦ୍ର ଗାଙ୍ଗୁଲି (ଇଂରାଜୀ), ଯଦୁନାଥ ସରକାର (ଇତିହାସ), ସୁରେଶ ବର୍ଦ୍ଧନ (ଇକନମିକ୍‌ସ), ମୋହିନୀ ମୋହନ ସେନାପତି (ଦର୍ଶନ) ଥିଲେ । ଅନ୍ୟମାନେ ଥିଲେ ଲେକ୍‌ଚରର୍ । ଆଇ.ଇ.ଏସ୍. (Indian Education Service) କାଡର ଆଇ.ସି.ଏସ୍. (Indian Civil Service) ପରି ଥିଲା । ସେଥିରେ ପ୍ରିନସ୍‌ପାଲ, ହୁଇଟ୍‌ଲକ ସାହେବ, ତ୍ରିପାଠୀ ସାହେବ, ବାଓ୍ୱାକର୍ତ୍ତାର ସିଂହ, ଯଦୁନାଥ ସରକାର ଥିଲେ । କେତେମାସ ପରେ

Digitized by srujanika@gmail.com

ପରିଜା ସାହେବ (ପ୍ରାଣକୃଷ୍ଣ ପରିଜା) କେମ୍ବ୍ରିଜରୁ ବଟାନିରେ ପାଶ୍ ଓ ରିସର୍ଚ୍ଚ କରିଆସି ସେହି କାଡରରେ ବଟାନିର ଅଧ୍ୟାପକ ହେଲେ । ସେ ସମସ୍ତେ ଥିଲେ ଜଣେ ଜଣେ ଧୁରନ୍ଧର । ପ୍ରାଦେଶିକ କାଡରରେ ଅନ୍ୟ ପ୍ରଫେସରମାନେ ମଧ୍ୟ କୃତବିଦ୍ୟ ଥିଲେ ନିଜ, ନିଜ ବିଭାଗରେ । ତା ନିମ୍ନକୁ ଲେକ୍‌ଚରରମାନେ । ସେମାନେ ବୟସରେ କନିଷ୍ଠ, ଉତ୍ସାହରେ ଅଧିକ ଅଗ୍ରଗାମୀ । ପିଲାମାନଙ୍କ ସହିତ ତାଙ୍କର ଯୋଗାଯୋଗ ବେଶି ରହୁଥିଲା । ପାଣ୍ଡିତ୍ୟ, ସ୍ନେହଶୀଳତା ଅନୁପାତରେ ଛାତ୍ରମାନେ ଆକୃଷ୍ଟ ହୁଅନ୍ତି ।

କଲେଜରେ ଛାତ୍ରୀ ବା ଶିକ୍ଷୟିତ୍ରୀ କେହି ନ ଥିଲେ । ପରଦା ପ୍ରଥା ଘୁଞ୍ଚିନଥାଏ । କେବଳ ବାଓ୍ୱାକର୍ତ୍ତାର ସିଂହ ବିବାହ ହୋଇ ତାଙ୍କ ସ୍ତ୍ରୀଙ୍କୁ ଆଣିବା ପରେ ବୁଲିଗଲାବେଳେ ତାଙ୍କୁ ସାଙ୍ଗରେ ନେଇ ବାହାରୁଥିଲେ । ସେମାନେ ଶିଖ । କର୍ତ୍ତାର ସିଂହଙ୍କ ମୁଣ୍ଡରେ ପଗଡି, ମୁହଁରେ ଦାଢ଼ୀ । ସେ ସସ୍ତ୍ରୀକ କଲେଜ ପରେ ବୁଲି ବାହାରିଲେ ପିଲାଏ ଫୁସ୍ ଫୁସ୍ ହୋଇ କହନ୍ତି —ଦସ୍ୟୁ ନିଗୃହିତା ବାଳିକା । ପରିଜା ସାହେବ ଆସି ପଶ୍ଚିମ ହଷ୍ଟେଲରେ ଓ୍ୱାର୍ଡନ୍ ହେଲେ । ବିବାହ ପରେ ସେଠାରେ ସସ୍ତ୍ରୀକ ରହିଲେ । ତାଙ୍କ ସ୍ତ୍ରୀ ଗଲାବେଳେ ଘୋଡାଗାଡିର ଦରଜା ବନ୍ଦ ଥାଏ । ମନେଅଛି, ପ୍ରଥମଥର ତାଙ୍କ ସ୍ତ୍ରୀ ପିଲାଙ୍କ ସାମନାକୁ ବାହାରିଲେ ଯେଉଁଦିନ ସନ୍ଧ୍ୟାରେ କଟକ ଜିଲ୍ଲା ଜଜ୍ ଧାବଲେ ସାହେବ ସସ୍ତ୍ରୀକ କଲେଜ ପ୍ରାଙ୍ଗଣକୁ ଆସି ଛାତ୍ରମାନଙ୍କ ସମାବେଶରେ ଦୂରବୀକ୍ଷଣ ଯନ୍ତ୍ରରେ ଗ୍ରହ, ନକ୍ଷତ୍ର ଦେଖାଉଥାନ୍ତି । ଧାବଲେ ସାହେବ ପରିଜା ସାହେବଙ୍କର ବନ୍ଧୁ, କେମ୍ବ୍ରିଜ ପାଶ୍ । ସେ ଲବ୍ଧପ୍ରତିଷ୍ଠ ନେତା ଗୋପାଳକୃଷ୍ଣ ଗୋଖଲେଙ୍କ ଜାମାତା । ପରେ ସେ ପାଟନା ହାଇକୋର୍ଟ ଜଜ୍ ହୋଇ ଅବସର ଗ୍ରହଣ କରି ପୁନାରେ ପରଲୋକଗତ ହେଲେ । ପରଦା କେତେବର୍ଷ ପରେ ଭାଙ୍ଗିଲା । ପରିଜା ସାହେବଙ୍କ ସହଧର୍ମିଣୀ ସୁନ୍ଦରମଣି ପରିଜା ବହୁ ସମାଜ ସେବା କାର୍ଯ୍ୟରେ ରତ ଥାଇ ପ୍ରତିଷ୍ଠା ଅର୍ଜନ କରିଥିଲେ । ମୁଁ ସେ ଦୁହିଁଙ୍କର ସ୍ନେହଭାଜନ ଥିଲି । ମୋ ଜ୍ୟୋଷ୍ଠପୁତ୍ର ପ୍ରଭାତକୁମାରର ବ୍ରତୋପଯନବେଳେ ଶ୍ରୀମତୀ ପରିଜା ତାଙ୍କ ଦୁଇକନ୍ୟାଙ୍କୁ ସାଙ୍ଗରେ ନେଇ ଆମ ଗ୍ରାମ ବିଶ୍ୱନାଥପୁରକୁ ଯାଇ ଆମ୍ଭମାନଙ୍କୁ ବାଧିତ କରିଥିଲେ ।

ପରିଜା ସାହେବ ବିଲାତରୁ ଆସି କଲେଜରେ ଯୋଗଦେବା ପରେ ଛାତ୍ରମାନଙ୍କର, ବିଶେଷତଃ ହଷ୍ଟେଲରେ ରହୁଥିବା ଛାତ୍ରମାନଙ୍କର ଆକର୍ଷଣ କେନ୍ଦ୍ର ହୋଇଉଠିଲେ । ଫିଜିକ୍ସ ଥିଏଟରରେ ସନ୍ଧ୍ୟାରେ Lantern Lecture ଆରମ୍ଭ

Digitized by srujanika@gmail.com

ଦ୍ୱଲେ । ବିଲାତ, କେମ୍ବ୍ରିଜ ସମ୍ବନ୍ଧରେ ଧାରାବାହିକ ବକ୍ତୃତା ପଶ୍ଚିମ ହଷ୍ଟେଲ୍ କମନ୍ ରୁମ୍‌ରେ ରବିବାର ପୂର୍ବାହ୍ନରେ ଦେଉଥାନ୍ତି । ଅନେକ ଗରିବ ଛାତ୍ର ତାଙ୍କଠାରୁ ଆର୍ଥିକ ସାହାଯ୍ୟ ପାଉଥିଲେ । ସାଧାରଣ ଓ ସାମାଜିକ କାର୍ଯ୍ୟରେ ତାଙ୍କର ଆଗ୍ରହ ଥାଏ । ଅଧିକାଂଶ ପିଲାଙ୍କ ନାମ ତାଙ୍କ ମନରେ ଥାଏ । ଭାରତବର୍ଷ ଓ ବାହାରେ ବୈଜ୍ଞାନିକ କ୍ଷେତ୍ରରେ ତାଙ୍କର ସୁଖ୍ୟାତି ଜନ୍ମିଲା । କଲିକତା, ବନାରସ, ଲକ୍ଷ୍ନୌ, ଏହ୍ଲାବାଦ, ବିଶ୍ୱବିଦ୍ୟାଳୟର ବଡାନିରେ ପରୀକ୍ଷକ ହୋଇ ବାହାରକୁ ଅନେକଥର ଯାଉଥିଲେ । ପାଟନା ବିଶ୍ୱିଦ୍ୟାଳୟର ସିନେଟ, ସିଣ୍ଡିକେଟ୍ ସଭ୍ୟଥାଇ ମୁଖ୍ୟ ଭୂମିକା ଗ୍ରହଣ କରୁଥିଲେ । ଥରେ ସେ ବନାରସ ଯିବା ବାଟରେ ହାଓଡା ଷ୍ଟେସନ୍‌ରେ ହଠାତ୍ ଅସୁସ୍ଥ ହୋଇ ପଡିଲେ । ଅଣ୍ଟାରେ ଏପରି ବ୍ୟଥା ହେଲା ଯେ ଉଠିବା ବା ବସିବା ଅତି କଷ୍ଟପ୍ରଦ ହେଲା । ମୁଁ ସେ ଦିନ ସକାଳେ ଓକାଲତି କାର୍ଯ୍ୟରେ ପାଟନା ଯିବାପାଇଁ କଟକରୁ ହାଓଡାରେ ପହଞ୍ଚି ଦେଖେ ତ ପରିଜା ସାହେବ ଫାଷ୍ଟକ୍ଲାସ ବିଶ୍ରାମାଗାରରେ ଗୋଟିଏ ବେଞ୍ଚରେ ନିର୍ବେଦ ଶୋଇଛନ୍ତି । ପାଖକୁ ଯାଇ ତାଙ୍କ କଷ୍ଟକଥା ଜାଣିଲି । ସୁଭାଷ ବୋଷଙ୍କ ଭ୍ରାତା ସୁନୀଲ ବୋଷ ଡାକ୍ତର ତାଙ୍କର ବନ୍ଧୁ । ତାଙ୍କୁ ଆଣିବା ପାଇଁ ମୁଁ ଏଲ୍‌ଗିନ୍ ରୋଡ ଯାଇ ଦେଖା ନ ପାଇ, ଅନ୍ୟ ଜଣେ ଡାକ୍ତରଙ୍କ ପରାମର୍ଶମତେ ଔଷଧ ଆୟୋଜନ କରି, ଔଷଧ ଖାଇବାକୁ ଦେଇ, ଅଣ୍ଟାରେ ମାଲିସ ଔଷଧ ବହୁକ୍ଷଣ ଘଷି, ଗରମପାଣି ସେକ ଦେବାରେ ଦିନ ପ୍ରାୟ ଦୁଇଟାବେଳକୁ ସେ ଅଳ୍ପ ସୁସ୍ଥ ବୋଧକଲେ । ତାଙ୍କୁ ଧରି ଗାଧୁଆ ଘରକୁ ନେଲାବେଳେ ସେ ଅତି କଷ୍ଟ ଅନୁଭବ କରୁଥିଲେ । ଗରମସୁପ୍, ଟୋଷ୍ଟ ଆଣି ଦେବାରେ ସେ ଆହାର କଲେ । କଟକ ଫେରିଯିବା ପାଇଁ ମୁଁ କହିଲି । ମାତ୍ର ସନ୍ଧ୍ୟାବେଳକୁ ସୁସ୍ଥ ଲାଗିବାରୁ ସେ ଟ୍ରେନ୍‌ରେ ବନାରସ ଗଲେ । ସେଠାରୁ ମୋ ପାଇଁ ଦୁଇଗୋଟି ମିନା କାମକରା ପିତଳ ଫୁଲଦାନୀ ଆଣିଥିଲେ । ଏପର୍ଯ୍ୟନ୍ତ ତାହା ଅତୁଲ୍ୟ ଦାତାଙ୍କର ଅମୂଲ୍ୟ ଦାନ ରୂପେ ମୁଁ ସାଇତି ରଖିଛି । ତାଙ୍କ ଶୃଙ୍ଖଳିତ ଜୀବନଧାରା ମତେ ଆକର୍ଷଣ କରିଥିଲା ଯେ ମୁଁ ତାଙ୍କୁ କଲେଜରେ ପଢ଼ିବାକାଳରୁ ଆଦର୍ଶ ରୂପେ ଗ୍ରହଣକରି ଆସିଛି । ଚାନ୍ଦିନିଚଉକରେ ମୁଁ ଘର ତିଆରି କଲାବେଳେ ଅର୍ଥ ଅନଟନ ହେବାରୁ ତାଙ୍କଠାରୁ ଏକହଜାର ଟଙ୍କା ମାଗିଲା ମାତ୍ରକେ ଧାର ଆଣିଥିଲି । ତାଙ୍କ କନ୍ୟା ବିବାହବେଳେ ତାହା ପରିଶୋଧ କଲି । ପରିଜା ସାହେବ କଲେଜ ପ୍ରିନ୍ସପାଲ୍ ଥାଇ ଉତ୍କଳ ବିଶ୍ୱବିଦ୍ୟାଳୟର ପ୍ରଥମ ଭାଇସ୍ ଚାନ୍‌ସେଲର ହେଲେ । ବିଶ୍ୱବିଦ୍ୟାଳୟ ଆରମ୍ଭରୁ

Digitized by srujanika@gmail.com

ତାଙ୍କ ସହିତ ଦୀର୍ଘ କାଳ ସିନେଟ୍, ସିଣ୍ଡିକେଟ୍, ଏକାଡେମୀକ୍ କାଉନ୍‌ସିଲରେ କାର୍ଯ୍ୟ କରିବାର ମତେ ଯେ ସୁଯୋଗ ମିଳିଥିଲା ସେଥିରେ ମୁଁ ଆନନ୍ଦ ଓ ସନ୍ତୋଷ ଲାଭ କରିଛି । ମୋ ଉପରେ ତାଙ୍କର ନିର୍ଭରତା ଥିବା ଲକ୍ଷ୍ୟ କରି ମୋ ଦାୟିତ୍ୱ ସମ୍ପାଦନରେ ମୁଁ ସର୍ବଦା ସତର୍କ ଓ ତତ୍ପର ରହୁଥିଲି ।

ତ୍ରିପାଠୀ ସାହେବ ଥିଲେ ଅନ୍ୟ ପ୍ରକାରର । ତାଙ୍କ ପାଖକୁ କେହିଗଲେ ତାଙ୍କ ଉଦାରତାରେ ମୁଗ୍ଧ ହୋଇ ଆସେ । ସେ ଭଗବଦ୍ ବିଶ୍ୱାସୀ, ଜ୍ୟୋତିଷିରେ ଆସ୍ଥାବାନ୍ । ତାଙ୍କ ପିତା ଚିନ୍ତାମଣି ତ୍ରିପାଠୀ ପୁରାତନ ସାହିତ୍ୟରେ ପାରଙ୍ଗମ ଥିଲେ । ପୁତ୍ରଙ୍କ ପାଖକୁ ଯେତେବେଳେ ଆସୁଥିଲେ, ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ସଙ୍ଗେ ସାହିତ୍ୟ ଆଲୋଚନାରେ ସମୟ କଟାଉଥିଲେ । ତ୍ରିପାଠୀ ସାହେବଙ୍କ ଚେଷ୍ଟାରେ ମୟୁରଭଞ୍ଜ ମହାରାଜା କଲେଜର ଇଲେକ୍‌ଟ୍ରିସିଟି ବ୍ୟବସ୍ଥା ପାଇଁ ଏକଲକ୍ଷ ଟଙ୍କା ଦାନ କରିଥିଲେ । ମହାରାଜା ତାଙ୍କର ଘନିଷ୍ଠ ବନ୍ଧୁ ଥିଲେ । ଇୟୁରୋପୀୟ ଉଚ୍ଚ ଅଫିସରମାନଙ୍କ ସଙ୍ଗେ ତ୍ରିପାଠୀ ସାହେବଙ୍କର ଯେପରି ସୌହାର୍ଦ୍ଦ୍ୟ ଥିଲା, ଅନ୍ୟ କାହାରି ନଥିଲା । ସେଥିପାଇଁ ଅନେକ କଥାରେ ଅଲକ୍ଷିତରେ ସେ ସେମାନଙ୍କ ଦ୍ୱାରା ଅନ୍ୟମାନଙ୍କୁ ସାହାଯ୍ୟ କରାଇ ପାରୁଥିଲେ । ଫିଜିକ୍‌ସ ବିଭାଗର ବହୁ ଉନ୍ନତି ସେ କରାଇ ପାରିଥିଲେ । କଲେଜର ପ୍ରଥମ ଓଡିଆ ପ୍ରିନ୍ସପାଲ ଏବଂ ଓଡିଶାର ପ୍ରଥମ ଓଡିଆ ଡିରେକ୍ଟର (D.P.I ) ହେବା ପରେ ଇୟୁନିଅନ ପବ୍ଲିକ ସର୍ଭିସ କମିଶନ (U.P.S.C)ର ମେମ୍ବର ଓ ତାହା ପରେ ରାଜସ୍ଥାନ ପବ୍ଲିକ ସର୍ଭିସ କମିଶନର ଅଧ୍ୟକ୍ଷ ଥିବା ସମୟରେ ୮/୮/ ୧୯୫୧ ରେ ଜୟପୁରରେ (ରାଜସ୍ଥାନ) ତାଙ୍କର ହଠାତ୍ ମୃତ୍ୟୁ ଘଟିଲା । ତାଙ୍କ ପୁତ୍ର ନୀଳମଣିଙ୍କୁ (ସେତେବେଳେ ଡେପୁଟି ମାଜିଷ୍ଟ୍ରେଟ୍ ଥିଲେ) ସଙ୍ଗରେ ନେଇ ଜୟପୁର ଯାଇ ତାଙ୍କର ଶେଷକ୍ରିୟା ସେଠାରେ ସମ୍ପନ୍ନ କରିବା ପାଇଁ ଡଃ ବଳଭଦ୍ର ପ୍ରସାଦ, ଭି ରାମନାଥନ (I.C.S) ଚିନ୍ତାମଣି ଆଚାର୍ଯ୍ୟ, ବିପିନବିହାରୀ ରାୟ ପ୍ରଭୃତିଙ୍କ ପରାମର୍ଶରେ ମୁଁ (ଓକିଲାତି କରୁଥିଲି) ଯାଇଥିଲି । ଦିଲ୍ଲୀରେ ସେତେବେଳେ ହରେକୃଷ୍ଣ ମହତାବ କେନ୍ଦ୍ରମନ୍ତ୍ରୀ ଥିଲେ । ଦିଲ୍ଲୀରୁ ଆମେ ଜୟପୁର ଯିବାପାଇଁ ସେ ମଟରଗାଡି ବନ୍ଦୋବସ୍ତ କରିଦେବାରୁ ତାଙ୍କ ନିକଟରେ କୃତଜ୍ଞ ହେଲୁ । ଘଟନାଚକ୍ରରେ କାହା ଉପରେ କେତେବେଳେ କେଉଁ ଦାୟିତ୍ୱ ଆସି ପଡେ, କହିହୁଏ ନାହିଁ । ଓଡିଶାରେ ଉଚ୍ଚ ଶିକ୍ଷାର ବିସ୍ତାର ପଇଁ କଲେଜ, ହାଇସ୍କୁଲର ସଂଖ୍ୟା ଯେ ବଢ଼ିଲା, ତାହା ତ୍ରିପାଠୀ ସାହେବ D.P.I. ଥିବା ବେଳର ଦୂରଦୃଷ୍ଟି ଓ ଚେଷ୍ଟାର ଫଳ । ଉତ୍କଳ

Digitized by srujanika@gmail.com

ବିଶ୍ୱବିଦ୍ୟାଳୟର ପ୍ରତିଷ୍ଠାରେ ତାଙ୍କର ଅବଦାନ ଅବିସ୍ମରଣୀୟ । ବିଶ୍ୱବିଦ୍ୟାଳୟ ସ୍ଥାପନର ବିଚାର ପାଇଁ କମିଟି ବସିଥିଲା ପଣ୍ଡିତ ନୀଳକଣ୍ଠ ଦାସଙ୍କ ଅଧ୍ୟକ୍ଷତାରେ । ରିପୋର୍ଟ ବାହାରିଲା । ପଣ୍ଡିତ ଗୋଦାବରୀଶ ଶିକ୍ଷାମନ୍ତ୍ରୀ ଥିଲାବେଳେ ଆସେମ୍ବ୍ଲିରେ ସେଥିପାଇଁ ଆଇନ ହେଲା । କିନ୍ତୁ ଦେଶୀୟ ରାଜ୍ୟ ଗଡଜାତ ସବୁ ଏହି ବିଶ୍ୱବିଦ୍ୟାଳୟ ସହିତ ସ୍ୱଇଚ୍ଛାରେ ସଂପୃକ୍ତ ନ ହେଲେ, କେବଳ ଓଡିଶା ପ୍ରଦେଶର ପରିସର ମଧ୍ୟରେ ତାହାର ପରିଚାଳନା ବ୍ୟୟ ତୁଲାଇବାର ସମ୍ଭାବନା ନଥିଲା । ତେଣୁ ମୁଖ୍ୟମନ୍ତ୍ରୀ ପାରଳାଖେମୁଣ୍ଡିର ମହାରାଜାଙ୍କ ଅନୁରୋଧରେ ତ୍ରିପାଠୀ ସାହେବ, ମୟୂରଭଞ୍ଜ, ସୋନପୁର, ବଲାଙ୍ଗୀର, କଳାହାଣ୍ଡିର ମହାରାଜାଙ୍କ ପାଖକୁ ଯାଇ ସେମାନଙ୍କୁ ପ୍ରବର୍ତ୍ତାଇ ସେମାନଙ୍କର ଲିଖିତ ସ୍ୱୀକୃତି ଆଣିଲେ । ତ୍ରିପାଠୀ ସାହେବ ଦୁଇମାସ ଛୁଟିନେଇ ବିଲାତ ଯିବାପାଇଁ ବାହାରିବାର ମାତ୍ର ପୂର୍ବଦିନ ସନ୍ଧ୍ୟାରେ ପାରଳା ମହାରାଜା ତ୍ରିପାଠୀଙ୍କୁ ଡକାଇ ଏହି ଅନୁରୋଧ ଜଣାଇବାରେ, ସେ ବିଲାତଯାତ୍ରା ପରିତ୍ୟାଗ କରି ଏହି ଗୁରୁତ୍ୱପୂର୍ଣ୍ଣ କାର୍ଯ୍ୟରେ ଲାଗିଲେ ।

ପରିଜା ସାହେବ, ତ୍ରିପାଠୀ ସାହେବଙ୍କ ପରେ ଛାତ୍ରପ୍ରିୟ ଥିଲେ ଗୋପାଳ ଗାଙ୍ଗୁଲି, ଆର୍ତ୍ତବଲ୍ଲଭ ମହାନ୍ତି, ରତ୍ନାକର ପତି, ସୁରେଶ ବର୍ଦ୍ଧନ ଅଧ୍ୟାପକମାନେ । ଗୋପାଳବାବୁଙ୍କ ସେକ୍ସପିୟର ପଢ଼ାଇବାରେ ତନ୍ମୟତା, ଆର୍ତ୍ତବାବୁଙ୍କର ଯଦୃଚ୍ଛା ଗାଳି, ସୁରେଶବାବୁଙ୍କ ଛାତ୍ରବତ୍ସଳତା, ରତ୍ନାକରବାବୁଙ୍କ ନିଷ୍ଠାପରତା ପିଲାଙ୍କ ମଧ୍ୟରେ ସର୍ବଦା ଆଲୋଚିତ ହେଉଥାଏ । ମହାମହୋପାଧ୍ୟାୟ ଜଗନ୍ନାଥ ମିଶ୍ର, ଇଂରେଜୀ ଅନଭିଜ୍ଞ ଥାଇ ମଧ୍ୟ ସଂସ୍କୃତ ଲେକ୍‌ଚରର ଥାଆନ୍ତି । ସରଳ, ଶାନ୍ତ । ତାଙ୍କର କୌଣସି ଅସୁବିଧା ବା ମନକଷ୍ଟ ନ ହେବା ପାଇଁ ତାଙ୍କ କ୍ଲାସରେ ସମସ୍ତେ ଧୀରସ୍ଥିର ହୋଇ ବସିଥାନ୍ତି । ଗାମ୍ଭୀର୍ଯ୍ୟ ସହ ଦୂରତ୍ୱ ରକ୍ଷାକରି ପଢ଼ାଉଥିଲେ, ଯଦୁନାଥ ସରକାର, ଶାରଦାକାନ୍ତ ଗାଙ୍ଗୁଲି, ବରଦାକାନ୍ତ ଚାଟାର୍ଜୀ । ଲାମ୍ବର୍ଟ ସାହେବ, ହୁଇଟ୍‌ଲକ୍ ସାହେବ ତ ସହଜେ ସାହେବ, ପିଲାଏ ତାଙ୍କ ପାଖକୁ ଭରସି ଯାଇ ପାରନ୍ତି ନାହିଁ । ପରେ ଆଉ ଦୁଇଜଣ ସାହେବ ଆସିଲେ । ଉଷ୍ଟାନ ସ୍ମିଥ (ଇତିହାସ), ଅକ୍ସରଲୋନି (ଇଂରେଜୀ) । ସ୍ମିଥ ସବୁବେଳେ ଉର୍ଦ୍ଧ୍ୱମୁଖ, କଥା କହନ୍ତି ଅଳ୍ପ ଓ ଧୀର । ଅକ୍ସରଲୋନି ପ୍ରଗଳ୍ଭ । ଜିରାରୁ ଶିରା ବାହାର କରି ଇଂରେଜୀ କବିତା ବୁଝାନ୍ତି । ସେ ଆମ ହଷ୍ଟେଲର ୱାର୍ଡନ ହେଲେ, ତ୍ରିପାଠୀ ସାହେବ ପାଟନା D.D.P.I. ହୋଇଯିବା ପରେ । ମୋ ପ୍ରତି ତାଙ୍କର ପ୍ରସନ୍ନତା କ୍ଲାସରେ, ହଷ୍ଟେଲରେ ଓ ବାହାରେ ପ୍ରକାଶ ପାଉଥିଲା ।

Digitized by srujanika@gmail.com

ଆଉ ଜଣେ ବିଜ୍ଞ ଅଧ୍ୟାପକ ଆସିଲେ ଭାଡିଡ଼ା ସାହେବ । ସିନ୍ଧିଲୋକ । ଇକନମିକସ୍‌ର ସେ ପ୍ରଫେସର । ବିଲାତ ଫେରନ୍ତା ଅଧ୍ୟାପକମାନଙ୍କ ଚଳଣି ଭିନ୍ନ ଥିଲା । ପିଲାଙ୍କ ଖାତିର ସେମାନଙ୍କ ପ୍ରତି ବେଶି । ସବୁ ପ୍ରଫେସର, ଲେକ୍‌ଚରର ପ୍ୟାଣ୍ଟ କୋଟ ପିନ୍ଧି କ୍ଲାସକୁ ଆସନ୍ତି । ଛାତ୍ର ସମସ୍ତେ ଧୋତି, କମିଜ ପିନ୍ଧନ୍ତି । କେବଳ ଜଣେ ଛାତ୍ର ଇଂରାଜୀ ଅଧ୍ୟାପକ ଜନାର୍ଦ୍ଦନ ମହାନ୍ତିଙ୍କ ଶାଳକ ଆସାମ ସିଲଙ୍ଗ ଅଞ୍ଚଳରୁ ଆସିଥାଏ । ସେ ପ୍ୟାଣ୍ଟସାର୍ଟ ପିନ୍ଧେ । ଛାତ୍ରମାନଙ୍କ ମଧ୍ୟରୁ ଅଧିକାଂଶ ନଗ୍ନପାଦ । ଟାଉନ ଭିତରୁ ଯେଉଁମାନେ ଆସନ୍ତି, ତାଙ୍କ ମଧ୍ୟରୁ ଅଳ୍ପ ସାଇକେଲ୍‌ରେ ଆସନ୍ତି । ଅନ୍ୟମାନେ ଚାଲିକରି ଆସନ୍ତି । ଟାଉନରୁ ଆସୁଥିବା ଅଧ୍ୟାପକମାନେ ଭଡା ଘୋଡାଗାଡିରେ ଆସନ୍ତି । ଚାରିଜଣ ଲେଖାଏ ଗୋଟିଏ ଗାଡିରେ ଆସନ୍ତି । ଟାଉନର ଏକମାତ୍ର ଯାନ ଥିଲା ଘୋଡାଗାଡି । କେବଳ ସୁକାନ୍ତ ରାଓ (ଫିଜିକ୍‌ସ) ନିଜେ ନିଜର ଫିଟନ ଗାଡି ଚଳାଇ ଆସୁଥିଲେ । କିପରି ଓ କାହିଁକି ମୁଁ ସମସ୍ତଙ୍କ ନିକଟରେ ପ୍ରଥମରୁ ଚିହ୍ନଟ ହୋଇଗଲି, କହିପାରିବି ନାହିଁ ।



Digitized by srujanika@gmail.com

# ନୂତନ ବନ୍ଧୁତ୍ୱ

କଲେଜ ପ୍ରଥମ ବର୍ଷ କ୍ଳାସରେ ଦିନେ ବୈକୁଣ୍ଠଙ୍କୁ (ବୈକୁଣ୍ଠନାଥ ପଟ୍ଟନାୟକ) ଦେଖିଲି । ସତ୍ୟବାଦୀ ସ୍କୁଲରେ କିଛିକାଳ ସହାଧ୍ୟାୟୀ ଥିଲୁ । ପୂର୍ବ ସଖ୍ୟତା ପୁଣି ଜାଗିଲା । ଅନ୍ନଦାଙ୍କ (ଅନ୍ନଦା ଶଙ୍କର ରାୟ) ସହିତ ତାଙ୍କର ଢେଙ୍କାନାଳ ସ୍କୁଲରୁ ପରିଚୟ ଥାଏ । ଅନ୍ନଦାଙ୍କ ସହିତ ସେ ମୋତେ ନେଇ ଚିହ୍ନାଇ ଦେଲେ । ଅନ୍ନଦାଙ୍କର ପୂର୍ବ ପରିଚିତ କାଳିନ୍ଦୀ (କାଳିନ୍ଦୀ ଚରଣ ପାଣିଗ୍ରାହୀ) ଆମ ହଷ୍ଟେଲରେ ପୁରୀ ମେସ୍‌ରେ ରହୁଥାନ୍ତି । ଅନ୍ନଦାଙ୍କ ଜରିଆରେ ତାଙ୍କ ସହିତ ଜଣାଶୁଣା ହେଲା । ତାପରେ ପରିଚୟ ଶରତ୍‌ଙ୍କ (ଶରତଚନ୍ଦ୍ର ମୁଖାର୍ଜୀ) ସଙ୍ଗେ । କେଉଁ ସୂତ୍ରରେ ତାହା ଘଟିଲା ମନେ ନାହିଁ । ବୋଧହୁଏ ଅନ୍ନଦାଙ୍କ ଯୋଗୁ । ଶରତ୍ ଟାଉନରୁ ଯା ଆସ କରୁଥିଲେ । ବୈକୁଣ୍ଠ ରହୁଥିଲେ କଲେଜ ନିକଟବର୍ତ୍ତୀ ରାଣୀହାଟ ପଶୁ ଡାକ୍ତରଖାନା ଅଫିସର ଏକ କ୍ଷୁଦ୍ର କୋଠରୀରେ । ସେଠାର ଡାକ୍ତର ତାଙ୍କର ଆତ୍ମୀୟ ଥିଲେ । ଅନ୍ନଦା ହଷ୍ଟେଲରେ । ପାଞ୍ଚଜଣ କିପରି ପରସ୍ପର ପ୍ରତି ଘନିଷ୍ଠ ଭାବରେ ଆକୃଷ୍ଟ ହେଲୁ ମନେ ନାହିଁ । ଇଂରାଜୀ କ୍ଳାସରେ ଏକତ୍ର ହେବାକୁ ହୁଏ । ଗିରିଜା ଶଙ୍କର ରାୟ ଇଂରାଜୀ ଅଧ୍ୟାପକ ଆମମାନଙ୍କର ଅତି ପ୍ରିୟ ଥିଲେ । କେବଳ ପିଲାଙ୍କ ଆବଶ୍ୟକତା ଅନୁଯାୟୀ ସେ ପଢ଼ାଉ ନଥିଲେ । ଅନ୍ୟାନ୍ୟ ଇଂରେଜୀ, ବଙ୍ଗଳା ବହିର ସଙ୍କେତ ସେ ଦେଉଥିଲେ । କ୍ଳାସ ବାହାରେ ଆମେ ପାଞ୍ଚଜଣ ଏକାଠି ହେଲେ, ଅନ୍ୟ ବହି, ମାସିକ ପତ୍ରିକା ସମ୍ବନ୍ଧରେ ଆଲୋଚନା ହୁଏ । ପ୍ରତିଦିନ ପ୍ରାୟ ତାହା ଘଟୁଥିଲା । ରବୀନ୍ଦ୍ରନାଥ ଠାକୁର ସେତେବେଳେ ବଙ୍ଗ ସାହିତ୍ୟରେ ସର୍ବୋଜ୍ଜ୍ୱଳ ତାରକା । ରାମାନନ୍ଦ ଚାଟାର୍ଜୀଙ୍କ ସମ୍ପାଦିତ ଇଂରାଜୀ ମାସିକ ପତ୍ରିକା (Modern Review) 'ମଡର୍ଣ୍ଣ ରିଭିଉ', ବଙ୍ଗଳା ମାସିକ 'ପ୍ରବାସୀ' ଯୁଗ ପ୍ରବର୍ତ୍ତକ ପରି ହୋଇଥାଏ । ବଙ୍ଗ ସାହିତ୍ୟରେ ରେନେସାଁ ତାହା ପୂର୍ବରୁ ଆରମ୍ଭ ହୋଇ ସାରିଥାଏ । ରାଜା ରାମମୋହନ ରାୟ ୧୮୩୩ ସେପ୍‌ଟେମ୍ବର ୨୭ ତାରିଖରେ ପରଲୋକ ଗତ

Digitized by srujanika@gmail.com

ହୋଇଥିଲେ, କିନ୍ତୁ ସେ ଆରମ୍ଭ କରିଥିବା ସଂସ୍କାର ହାଓ୍ୱା ଅବ୍ୟାହତ ରହିଥାଏ । କେଶବ ଚନ୍ଦ୍ର ସେନ୍, ବଙ୍କିମ ଚନ୍ଦ୍ର ଚାଟାର୍ଜୀ, ଈଶ୍ୱର ଚନ୍ଦ୍ର ବିଦ୍ୟାସାଗର ପ୍ରଭୃତିଙ୍କର ସ୍ପନ୍ଦନ ଅମଳିନ ଥିଲା । ଶରତ ଚନ୍ଦ୍ର ଚାଟାର୍ଜୀଙ୍କ ଉପନ୍ୟାସ ବଙ୍ଗଳା ସାହିତ୍ୟରେ ନୂତନ ମୋଡ ଦେଉଥିଲା । ଏକ ଯୁବଗୋଷ୍ଠୀ ରବୀନ୍ଦ୍ର ସାହିତ୍ୟ ପ୍ରେରଣାରେ ଆନ୍ତର୍ଜାତିକ ଦୃଷ୍ଟି ସାହିତ୍ୟରେ ପୂରାଉଥିଲେ । ଇଂରେଜୀ ସାହିତ୍ୟରେ ସମସାମୟିକ ସାମାଜିକ ଚେତନାରେ କବି, ଔପନ୍ୟାସିକ ମାନଙ୍କର ତତ୍ପରତା ପୃଥିବୀର ସବୁ ଦେଶକୁ ପ୍ରଭାବିତ କରୁଥିଲା । ଆମ ମନ ଇଂରେଜୀ ଓ ବଙ୍ଗଳା ସାହିତ୍ୟରେ ଚଞ୍ଚଳ ହେଲା । ନୂତନ ନୂତନ ବହି, ମାସିକ ପ୍ରତିକା ସଂଗ୍ରହ କରିବା କଷ୍ଟକର ହେଲେ ମଧ ସମ୍ଭବ ହେଲା । କାଳିନ୍ଦୀ, ବୈକୁଣ୍ଠ, ଅନ୍ନଦାଙ୍କ କବିତା ଲେଖା ଆରମ୍ଭ ହୋଇଥାଏ । ତାଙ୍କ ସାଙ୍ଗେ ବାଇ ହୋଇ ମୋର ଖଣ୍ଡିଉଡା ଚାଲିଥାଏ ।

'ଉତ୍କଳ ସାହିତ୍ୟ' ସେତେବେଳର ଓଡିଶାରେ ସର୍ବପ୍ରଧାନ ମାସିକ ପତ୍ର । ବିଶ୍ୱନାଥ କର ତାହାର ପ୍ରବୀଣ ସମ୍ପାଦକ । ସବୁ ସାହିତ୍ୟରଥୀଙ୍କର ତାହା ମୁଖପତ୍ର ଥିଲା । ଆମେ ଅର୍ବାଚୀନ କଲେଜ ଛାତ୍ର । ସାହିତ୍ୟ କ୍ଷେତ୍ରରେ ପ୍ରବେଶାଧିକାର ଆଦୌ ନଥିଲା । ଦୁଃସାହସର ସହିତ ବିଶ୍ୱନାଥ କରଙ୍କ ଦ୍ୱାରସ୍ଥ ହୋଇ ଆମର ଯତ୍‌କିଞ୍ଚିତ ସାହିତ୍ୟାନୁରାଗ ତାଙ୍କ ନିକଟରେ ନିବେଦନ କରିବାରେ ସେ ଅପ୍ରତ୍ୟାଶିତ ସ୍ନେହ ଓ ଉତ୍ସାହରେ ଆମକୁ ଅନୁପ୍ରାଣିତ କଲେ । ତାଙ୍କ ସହିତ ଯୋଗାଯୋଗ ଆମ ପକ୍ଷରେ ଆନ୍ତର୍ଜାତିକ ପାସ୍‌ପୋଟ୍ ପରି କାର୍ଯ୍ୟ କଲା । ଆମର ସେତେବେଳେ କି ଆନନ୍ଦ କହି ହେବନାହିଁ । ବିଶ୍ୱନାଥ ବାବୁ ଅତି ସୁରୁଚିସମ୍ପନ୍ନ ବ୍ୟକ୍ତି । ଓଡିଶାର ବ୍ରାହ୍ମସମାଜର ଅଧିନାୟକ । ସ୍ତ୍ରୀ ଶିକ୍ଷାରେ ତାଙ୍କ ପରିବାର ଅଗ୍ରଣୀ । ଦୁଇ କନ୍ୟା ନର୍ମଦା, ସୁପ୍ରଭା ବି.ଏ ପାସ୍ । ଅନ୍ୟ କନ୍ୟା ପ୍ରତିଭା ଆଇ.ଏ.ପାସ୍ । ନର୍ମଦା ବଙ୍ଗ ଦେଶରେ ଜଣେ ମୁନସଫଙ୍କ ସଙ୍ଗେ ବିବାହିତା । ଅନ୍ୟ ଦୁଇକନ୍ୟା ଅବିବାହିତା, ମହିଳା ହାଇସ୍କୁଲରେ ଶିକ୍ଷୟିତ୍ରୀ । ଘରେ ସମ୍ଭ୍ରାନ୍ତବଂଶର ଚାଲିଚଳଣି, ଅନେକଟା ବଙ୍ଗୀୟ ଢାଞ୍ଚାରେ । ରାମାନନ୍ଦ ଚାଟାର୍ଜୀ, ଜ୍ଞାନାଞ୍ଜନ ନିୟୋଗୀ ପ୍ରଭୃତିଙ୍କ ସଙ୍ଗେ ତାଙ୍କର ଘନିଷ୍ଠତା ଥାଏ । ସେ ଆମକୁ ତାଙ୍କ ପରିବାରଭୁକ୍ତ ପରି ମନେ କଲେ । ଆମ ଲେଖା 'ଉତ୍କଳ ସାହିତ୍ୟ' ରେ ପ୍ରକାଶ ପାଇବା ସଙ୍ଗେ ସଙ୍ଗେ, 'ମୁକୁର' 'ସହକାର' ପତ୍ରିକାରେ ମଧ ସ୍ଥାନ ପାଇବାରୁ ମନରେ ଅଧିକ ଉତ୍ସାହ ଜାତ ହେଲା । ଆମେ ସ୍ଥିର କଲୁ ଖଣ୍ଡିଏ ହସ୍ତଲେଖା ସାହିତ୍ୟ ପତ୍ରିକା ଆରମ୍ଭ କରିବାକୁ । ତାହା

Digitized by srujanika@gmail.com

ହେଲା । ନାମ ମୁଁ ଦେଲି ଅବକାଶ— ଚାରିବନ୍ଧୁଙ୍କ ନାମର ପ୍ରଥମ ଅକ୍ଷରକୁ ନେଇ– ଅ (ଅନ୍ନଦା) ବ (ବୈକୁଣ୍ଠ) କା (କାଳିନ୍ଦୀ) ଶ (ଶରତ୍) । କେତେମାସ ପରେ ବନ୍ଧୁମାନେ ମୋ ନାମ ବାଦ ପଡିବାରୁ ପତ୍ରିକାର ନାମ ବଦଳାଇ ଦେଲେ — 'ଶକ୍ତି ସାଧନା' । ପତ୍ରିକାରେ ଓଡିଆ, ଇଂରାଜୀ, ବଙ୍ଗଳାରେ ଲେଖା ଯାଉଥିଲା । ଆମ ବନ୍ଧୁତ୍ୱର ମିଳିତ ନାମ ଦିଆ ହୋଇଥିଲା Nonsense Club । ଆମର ସେତେବେଳେ ପଢ଼ାହେଉଥିବା କୁପର (Couper ) ଙ୍କ ବହିରୁ ବୋଧହୁଏ ସେ ନାମ ଆମ ମନକୁ ଆସିଥିଲା । ହରିଶ୍ଚନ୍ଦ୍ର ବଡାଳ, ହରିହର ମିଶ୍ର, ଦୁହେଁ ଆମର ସହପାଠୀ । ହରିଶ ପୂର୍ବପଟେ, ହରି ମିଶ୍ର, ପଶ୍ଚିମ ପଟେ ହଷ୍ଟେଲରେ ରହୁଥିଲେ । ସେ ଦୁହିଁଙ୍କ ସଙ୍ଗେ ଆମର ବନ୍ଧୁତା ହେଲା । ହରି ମିଶ୍ରେ ଭିକ୍ଟୋରିଆ ସ୍କୁଲରେ ଶରତର ପରିଚିତ ଥିଲେ । ଆଇ.ଏ. ଦୁଇବର୍ଷ ଆମେ ପାଞ୍ଚବନ୍ଧୁ ଗୋଟିଏ ସଂସ୍କାର ମନୋଭାବରେ ଚିନ୍ତା, ଆଲୋଚନା ଓ ଭବିଷ୍ୟତ କଳ୍ପନାରେ କଟାଇଲୁ ।

ସରଳାଦେବୀ ସେତେବେଳେ ନାରୀ ପ୍ରଗତିର ଅଗ୍ରଦୂତ ଭାବରେ ବାହାରି ଥାଆନ୍ତି । ଆମରି ବୟସର ବିବାହିତା ଝିଅ । ଜମିଦାର ବଂଶର କନ୍ୟା, ଜମିଦାର ବଂଶର ବୋହୂ । ପାଠୋଇ ନୁହଁନ୍ତି । ବାସୁଦେବ କାନୁନଗୋଙ୍କ ପୁତ୍ରୀ, ବାଳମୁକୁନ୍ଦ କାନୁନ୍‌ଗୋ ମାଜିଷ୍ଟ୍ରେଟଙ୍କର ପାଳିତା । ଚାଟରାର ଭାଗୀରଥି ମହାପାତ୍ରଙ୍କ ପତ୍ନୀ । ସ୍କୁଲରେ ପାଠ ପଢ଼ି ନଥିଲେ, କିନ୍ତୁ ବିଦୁଷୀ ଓ ସୁଲେଖିକା ହୋଇଥିଲେ । ଓଡିଆ, ବଙ୍ଗଳାରେ ବହୁପାଠୀ । ସେ ପରଦା ଭାଙ୍ଗି ସମାଜସେବା କରିବା ପାଇଁ କିପରି ଓ କେଉଁଠାରୁ ପ୍ରେରଣା ଓ ସାହସ ପାଇଲେ କେଜାଣି । ତୁମୁଳ ସାମାଜିକ ବିଘ୍ନ, ପାରିବାରିକ ବାଧା ଅତିକ୍ରମ କରି କଂଗ୍ରେସ ଆନ୍ଦୋଳନରେ ଭାଗ ନେବାପାଇଁ ବାହାରି ଥାଆନ୍ତି । ଆମର ତାଙ୍କ ସହିତ ପରିଚୟ ଘଟିଲା ସାହିତ୍ୟ ସୂତ୍ରରେ । ବାଖରାବାଦ ବାଳମୁକୁନ୍ଦ କାନୁନ୍‌ଗୋଙ୍କ ଘରେ ରହୁଥାଆନ୍ତି ସେ । ସଦର କୋଠା ସଙ୍ଗରେ ଗୋଟିଏ ଚାଳଘର ଖଞ୍ଜା ଥାଏ । ଆମ ପାଞ୍ଚଜଣଙ୍କ ମଧ୍ୟରୁ କେହି କେହି ସେହି ଖଞ୍ଜାକୁ ଯାଇ କଥାବାର୍ତ୍ତା କରୁ । କଲେଜ ଛାଡିବା ପରେ ବହୁ କ୍ଷେତ୍ରରେ ତାଙ୍କ ସହିତ କାର୍ଯ୍ୟ କରିବାର ସୁଯୋଗ ମୁଁ ପାଇଛି । ସାହିତ୍ୟ ଆଭିମୁଖ୍ୟରେ ଆମ୍ଭମାନଙ୍କର ମେଳ ଥିବାରୁ ତାଙ୍କ ସହିତ ବନ୍ଧୁତା ଅଗ୍ରସର ହେଲା ।

ଆଇ.ଏ ପରୀକ୍ଷାରେ ଅନ୍ନଦା, ଶରତ ପ୍ରଥମ ଡିଭିଜନରେ ପାସ୍ କଲେ, ଅନ୍ୟ ତିନିଜଣଙ୍କର ତୃତୀୟ ଡିଭିଜନ ହେଲା, ସେ ଦୁହେଁ ବି.ଏ. ପଢ଼ିବା ପାଇଁ

Digitized by srujanika@gmail.com

ପାଟନା କଲେଜକୁ ଗଲେ । ସେହି ସମୟରେ ମସୁଧା ହେଲା, ସମସ୍ତେ ମିଶି ଗୋଟିଏ ଉପନ୍ୟାସ ଲେଖିବା । ଗଳ୍ପର ଖସଡା ଅନ୍ନଦା, କାଳିନ୍ଦୀ କଲେ । ଭିନ୍ନ ଭିନ୍ନ ଲେଖକଙ୍କଠାରୁ ଖସଡା ଅନୁଯାୟୀ ଲେଖା ଆଣି ଉପନ୍ୟାସ ସମ୍ପାଦନାର ଭାର କାଳିନ୍ଦୀ ନେଲେ । ବଙ୍ଗଳାରେ ସେହିପରି ଏକ ଉପନ୍ୟାସ ବାହାରିଥାଏ । ଆମର ପ୍ରସ୍ତାବ ବିଶ୍ୱନାଥ କର ମହାଶୟ ଅନୁମୋଦନ କଲେ ଏବଂ ଉଦାରତାର ସହିତ ଉତ୍କଳ ସାହିତ୍ୟରେ ଧାରାବାହିକ ପ୍ରକାଶ କରିବା ପାଇଁ ସମ୍ମତ ହେଲେ । ଆମେ Nonsense Club ବନ୍ଧୁଙ୍କ ଛଡା, ସରଳାଦେବୀ, ସୁପ୍ରଭା କର, ବୈଷ୍ଣବ ଚରଣ ଦାସ, ମୁରଲୀଧର ମହାନ୍ତି ସେଥିରେ ଅଂଶ ଲେଖା ଦେଲେ । ଓଡିଆ ସାହିତ୍ୟରେ ଏହି ଅଭିନବ ଉଦ୍ୟମ ଚହଳ ସୃଷ୍ଟି କରିଥିଲା ।

ବିଶ୍ୱନାଥବାବୁଙ୍କ ସାହାଯ୍ୟ ନ ପାଇଥିଲେ ଆମେ ତାହା କରିପାରି ନଥାନ୍ତୁ । ବି.ଏ.ପଢ଼ା ଦୁଇବର୍ଷ ମଧ୍ୟରେ ଏହା ଚାଲିଥିଲା । କାଳିନ୍ଦୀ, ବୈକୁଣ୍ଠ, ମୁଁ ରେଭେନ୍ସା କଲେଜରେ ବି.ଏ.ପଢୁଥାଉ । ବନ୍ଧୁତ୍ୱ, ଲେଖାଲେଖି, ଆଲୋଚନା ପୂର୍ବପରି ଅବ୍ୟାହତ ରହିଥାଏ । ସେତେବେଳେ ମୋର କେତେ ଗୁଡିଏ କବିତା ବୈକୁଣ୍ଠ ନେଇ 'ମୁକୁର' ପତ୍ରିକାରେ 'ବନଫୁଲ' ଛଦ୍ମନାମରେ ପ୍ରକାଶ କରାଇଥିଲେ ।



Digitized by srujanika@gmail.com

# ଭୋଟର ତାଲିକା

କଟକରେ ସେତେବେଳେ ମ୍ୟୁନିସିପାଲିଟି ନିର୍ବାଚନ ପାଇଁ ଭୋଟର ତାଲିକା ପ୍ରସ୍ତୁତ ହେଉଥାଏ । ହଷ୍ଟେଲରେ ରହୁଥିବା ଛାତ୍ରମାନଙ୍କର ଭୋଟର ହେବାର ଯୋଗ୍ୟତା ଥାଏ କିନ୍ତୁ ତାଙ୍କ ନାମ ଭୋଟର ତାଲିକାରେ ନଥାଏ । ପୂର୍ବ ନିର୍ବାଚନରେ ମଧ୍ୟ ସେହି ଅବସ୍ଥା ଥିଲା । ମୁଁ ହଷ୍ଟେଲରେ ଏହି କଥା ଉଠାଇବାରୁ ପ୍ରଥମରୁ କେହି ଗ୍ରାହ୍ୟ କଲେ ନାହିଁ । ମୁଁ ସେହି ବିଷୟରେ ହାତରେ ଏକ ଦରଖାସ୍ତ ଲେଖି ମ୍ୟୁନିସିପାଲଟିର ଚେୟାରମ୍ୟାନ୍ ଶ୍ରୀଯୁକ୍ତ ରାମଶଙ୍କର ରାୟଙ୍କ (ଓକିଲ, ଔପନ୍ୟାସିକ, ନାଟ୍ୟକାର) ପାଖକୁ ଗଲି । ସେ ତାଙ୍କର ଚୌଧୁରୀ ବଜାର ଘରେ ଗୋଟିଏ ଘରେ ଚଟାଣରେ ମଶିଣା ପକାଇ ଡେସ୍କ ଥୋଇ ବସିଥାଆନ୍ତି । ମହକିଲମାନେ ଓ ତାଙ୍କ ମୋହରୀର ମଧ୍ୟ ଚଟାଣରେ ମଶିଣାରେ ବସିଥାନ୍ତି । ମୁଁ ଯାଇ ଠିଆ ହେବାର ଅନେକ କ୍ଷଣ ପରେ ମୁଁ କାହିଁକି ଯାଇଛି ବୋଲି ପଚାରିଲେ । ବୋଧହୁଏ ଭାବିଥିଲେ କୌଣସି କେସ୍ ବିଷୟରେ ଯାଇଛି । ମୋ ବକ୍ତବ୍ୟ କହି ଦରଖାସ୍ତ ତାଙ୍କ ହାତକୁ ଦେଲାପରେ, ସେ ଚଷମାପିନ୍ଧି ଦରଖାସ୍ତ ପଢ଼ି, ହୋ ହୋ ହୋଇ ହସିଉଠିଲେ ଓ ତାଙ୍କ ଜୁନିଅରଙ୍କ ହାତକୁ ମୋ ଦରଖାସ୍ତଟି ବଢ଼ାଇଦେଲେ । ଦୟାପରବଶ ହୋଇ ମତେ ତାଙ୍କ ସପ ମଶିଣା ନିକଟରେ ବସିବାକୁ କହି, ମୋ ନାମ, ପଢ଼ାପଢ଼ି ଇତ୍ୟାଦି କଥା ପଚାରିଲେ । କ୍ଷୀଣକାୟ, ପକ୍ୱଶ୍ମଶ୍ରୁ ନେଇ ଏକ ଶାନ୍ତ ମୂର୍ତ୍ତି ପରି ବସିଥାଆନ୍ତି । ଜୁନିଅରଙ୍କୁ ଚାହିଁ କହିଲେ,— ଏ ଗୋଟେ ନୂଆ କଥା । ହଷ୍ଟେଲ ଛାତ୍ର ଭୋଟର ହେବେ କିପରି ? ସେମାନେ କଅଣ ସ୍ଥାୟୀ ବାସିନ୍ଦା ? ମୁଁ ଉତ୍ତରରେ ନିବେଦନ କଲି- ଭୋଟର କେବଳ ବାସିନ୍ଦା ହେବା ଦରକାର । ସ୍ଥାୟୀ ବାସିନ୍ଦା ନ ହେଲେ ବି ଭୋଟର ହୋଇପାରିବ । ମ୍ୟୁନିସିପାଲଟି ଆକ୍ଟ ବାହାର କରି ଦେଖିଲେ । ତା' ପରେ ପଚାରିଲେ — ତମକୁ ଏ ସବୁକଥା କିଏ କହିଛି ? ମୁଁ ଉତ୍ତର ଦେଲି– କେହି ନାହିଁ । ଆମେ ଭୋଟର ହେବାପାଇଁ ଚାହୁଁଛୁ । କଂଗ୍ରେସ ଆନ୍ଦୋଳନ— ବେଳ । ତାଙ୍କର ଆଶଙ୍କା

Digitized by srujanika@gmail.com

ହେଲା, କଂଗ୍ରେସିଆ ବୋଧହୁଏ ନିର୍ବାଚନକୁ ଭଣ୍ଡୁର କରିବା ପାଇଁ ଆମକୁ ମତାଇଛନ୍ତି । ଶେଷକୁ ଓକାଲତି ପେଞ୍ଚରେ ମତେ ପକାଇ ଦେଲେ । କହିଲେ, ଅନ୍ୟମାନଙ୍କ ତରଫରୁ ଦରଖାସ୍ତ ଦାଖଲ କରିବାପାଇଁ ତମର କ'ଣ ଅଧିକାର ଅଛି ? ମୁଁ ନିରୁତ୍ତର ହେଲି । ନିବେଦନ କଲି— ସବୁପିଲା ଏଥିରେ ଦସ୍ତଖତ କରିଛନ୍ତି । ସେ କହିଲେ— ତମର Power of attorney (କ୍ଷମତା ପତ୍ର) କାହିଁ ? ଦରଖାସ୍ତଟି ମତେ ଫେରାଇ ଦେଇ ନିଜ କାମରେ ଲାଗିଲେ । କ୍ଷମତାପତ୍ର କଅଣ ମୁଁ ଜାଣି ନଥିଲି । ମୋର ଝୁଙ୍କ ଆହୁରି ବଢ଼ିଲା । ମୁଁ ଚାଲିଲି ଡଗରପଡା ବିଚିତ୍ରାନନ୍ଦ ଦାସ ଓକିଲଙ୍କ ଘରକୁ । ସେ ତେଲ ମାଲିସ ହେଉଥାନ୍ତି ଗାଧୋଇବା ପାଇଁ । ପ୍ରାୟ କାନ୍ଦ କାନ୍ଦ ଅବସ୍ଥାରେ ଘଟଣା ବର୍ଣ୍ଣନା କଲାପରେ, ସେ ଆର୍ଦ୍ରଚକ୍ଷୁରେ ମତେ ଅପେକ୍ଷା କରିବାକୁ କହି ସ୍ନାନକୁ ଗଲେ । ପରେ ଆସି, ମୋ ଚେଷ୍ଟାର ପ୍ରଶଂସା କରି, କ୍ଷମତାପତ୍ର ତିଆରି କରି ମତେ ଦେଲେ ଏବଂ ତାହା ଷ୍ଟାମ୍ପ କାଗଜରେ ଲେଖି ସବୁପିଲାଙ୍କର ଦସ୍ତଖତ କରାଇବା ପାଇଁ ଉପଦେଶ ଦେଇ ବିଦାୟ କଲେ । ଅଜ୍ଞାତସାରରେ ଓକିଲାତିର ପୂର୍ବାଭାସରେ ପଶିଲି । ଦୈବାତ, ଥରେ ମୁଁ ଗାଁରୁ କଲେଜକୁ ଆସୁଥିଲାବେଳେ, ଟ୍ରେନ୍‌ରେ ବିଚିତ୍ରାନନ୍ଦ ଦାସ ଯେଉଁ ଇଣ୍ଟରକ୍ଲାସ ଡବାରେ ପୁରୀରୁ କଟକ ଆସୁଥିଲେ, ସେଥିରେ ସାକ୍ଷୀଗୋପାଳ ଷ୍ଟେସନ୍‌ରେ ମୁଁ ଉଠିଲି । ଛାତ୍ରମାନେ ସାଧାରଣତଃ ଥାର୍ଡକ୍ଲାସରେ ଯା' ଆସ କରନ୍ତି । କଲେଜର ଜଣେ ତରୁଣ ଛାତ୍ର ଇଣ୍ଟରକ୍ଲାସରେ ବସିବାର ଦେଖି ବୋଧହୁଏ କୌତୂହଳବଶତଃ ବିଚିତ୍ରାନନ୍ଦ ବାବୁ ମୋ ପରିଚୟ ଖୋଜିଲେ । ସହୃଦୟତା ଦେଖାଇ କେତେ କଥା ପଚାରିଲେ । ତାପରେ ଥରେ ଅଧେ ପରିଜା ସାହେବଙ୍କ ଓ୍ୟାର୍ଡନ୍ କୋଠୀକୁ ଆସିବାର ତାଙ୍କୁ ଦେଖି ସାମାନ୍ୟ କଥାବାର୍ତ୍ତା ହୋଇଥିଲି । ତେଣୁ ଓକିଲଙ୍କ ସାହାଯ୍ୟ ଆବଶ୍ୟକ ହେବାରୁ, ତାଙ୍କର ଦ୍ୱାରସ୍ଥ ହେଲି । ଆଉ କୌଣସି ଓକିଲକୁ ଚିହ୍ନି ନଥିଲି ।

ଦୁଇଦିନ ପରେ କ୍ଷମତାପତ୍ର ଧରି, ପୂର୍ବ ଦରଖାସ୍ତ ନେଇ ହାଜର ହେଲି ରାମଶଙ୍କରବାବୁଙ୍କ ପାଖରେ । ମତେ ଦେଖି ଅସନ୍ତୋଷ ତାଙ୍କ ମୁଖମଣ୍ଡଳରେ ପ୍ରକାଶ ପାଇଲା । କାଗଜ ମୋଠାରୁ ନେଇ ତନ୍ନ ତନ୍ନ କରି ଦେଖିଲେ । ପଚାରିଲେ, ଭୋଟର ହେଲେ କାହାକୁ ଭୋଟ ଦେବ ? ଉତ୍ତରରେ କହିଲି— ପ୍ରାର୍ଥୀ ଦେଖି ବିଚାର କରିବୁ । ଏଥିରେ ସେ ଅସନ୍ତୁଷ୍ଟ ନ ହୋଇ, ଧୀର ଭାବରେ କହିଲେ, ଆଚ୍ଛା ହେଉ, ଭୋଟର ତାଲିକାରେ ତମମାନଙ୍କର ନାମ ରହିବ । କିନ୍ତୁ ଏ ସବୁଥିରେ

Digitized by srujanika@gmail.com

ଏବଠୁ ନମାଡି, ପଢ଼ାପଢ଼ିରେ ମନ ଦିଅ । ଆମ ଦାବୀ ଗୃହୀତ ହେବାରେ ଯେଉଁ ଆନନ୍ଦ, ସେଥିରେ ଉପଦେଶ ଶୁଣିବାପାଇଁ ଫୁରସତ ନଥିଲା । ହଷ୍ଟେଲକୁ ଫେରି ସୁସମ୍ବାଦ ରଟାଇଦେଲି । ଆର୍ତ୍ତବାବୁ ପ୍ରଭୃତି ଯେଉଁମାନେ ମୂଳରୁ ହସି ଉଡାଇ ଦେଉଥିଲେ, ବାହାବା କଲେ । ସେମାନେ ଅଧାପକମାନଙ୍କ ନାମ ଭୋଟର ତାଲିକା ଅନ୍ତର୍ଭୁକ୍ତ କରିବା ପାଇଁ ଇଚ୍ଛା କଲାବେଳକୁ ତାଲିକା ସଂଶୋଧନର ସମୟ ବିତିଯାଇଥିଲା । ଛାତ୍ରମାନେ ହେଲେ ଭୋଟର, ଅଧାପକମାନେ ରହିଲେ ନିରବଦ୍ରଷ୍ଟା ନିର୍ବାଚନରେ । ମୁଁ କଲେଜରେ ମାର୍କାମରା ହୋଇଗଲି ।।



Digitized by srujanika@gmail.com

# କମନ ରୁମ୍

ଦୁଇ ହଷ୍ଟେଲରେ ଦୁଇଟି ଲେଖାଏଁ ପ୍ରଶସ୍ତ ଘରଥାଏ ତଳ ମହଲାରେ । ଗୋଟିଏ ଉଦ୍ଦିଷ୍ଟ ଥିଲା କମନରୁମ୍ ପାଇଁ, ଅନ୍ୟଟି କମନ ମେସ୍ ପାଇଁ । ତାହା ଫାଙ୍କା ପଡିଥାଏ । ଛୋଟ ଛୋଟ ମେସ୍ ଚାଲୁଥିବାରୁ, ପିଲାମାନେ ମେସ୍ ବାରନ୍ଦାରେ ଖାଆନ୍ତି । ମୁଁ ଚେଷ୍ଟା ଆରମ୍ଭ କଲି କମନ୍‌ରୁମକୁ ଚାଲୁ କରିବା ପାଇଁ । ତ୍ରିପାଠୀ ସାହେବଙ୍କୁ କହିବାରୁ ସେ ଉତ୍ସାହ ଦେଲେ । ଆର୍ତ୍ତବାବୁ ହଁ କଲେ ନାହିଁ କି ନାହିଁ କଲେ ନାହିଁ । ଲକ୍ଷ୍ମୀକାନ୍ତବାବୁ (ଚୌଧୁରୀ) କହିଲେ, କର ଦେଖିବା । ଛାତ୍ରାବାସରେ ପିଲାମାନଙ୍କର ମଧ୍ୟ ଉଦାସୀନତା । ଗୋଟିଏ ନୋଟିସ୍‌ରେ ତ୍ରିପାଠୀ ସାହେବଙ୍କ ଦ୍ୱାରା approved ଲେଖାଇ ଓ୍ୱାଡ ସରଭାଣ୍ଟ ବୁଦ୍ଧିଆ ହାତରେ ହଷ୍ଟେଲରେ ବୁଲାଇ ଏକ ରବିବାର ସକାଳ ୯ଟା ସମୟରେ ସଭା ଡକାହେଲା । ଆର୍ତ୍ତବାବୁ, ଲକ୍ଷ୍ମୀକାନ୍ତବାବୁ ଉପସ୍ଥିତ ହେଲେ । ପ୍ରାୟ ୫୦ ଜଣ ହଷ୍ଟେଲବାସୀ (ମୋଟ ସଂଖ୍ୟାର ଅର୍ଦ୍ଧେକରୁ କମ୍) ଯୋଗ ଦେଇ ଥାଆନ୍ତି । କମନରୁମ୍ ଆରମ୍ଭ କରିବା ପ୍ରସ୍ତାବ ଉପରେ ଆଗ ଅସୁବିଧା କଥା ସବୁ ଉଠିଲା । ତାହା ମଧ୍ୟରେ ଅର୍ଥାଭାବ ପ୍ରଧାନ । ମୁଁ କହିଲି ପ୍ରତିମେସ୍ ମାସକୁ ଦଶଟଙ୍କା ଓ ପ୍ରତି ଛାତ୍ର ମାସକୁ ଏକଟଙ୍କା କରି ଦିଅନ୍ତୁ । ହଁ, ନାହିଁ ମଧ୍ୟରେ ତାହା ଗୃହୀତ ହେଲା । ଆର୍ତ୍ତବାବୁ ସଭାପତି, ଲକ୍ଷ୍ମୀକାନ୍ତବାବୁ ଉପସଭାପତି ଓ ମୁଁ ସମ୍ପାଦକ ହେବା ସ୍ଥିର ହୋଇ ସଭା ଭାଙ୍ଗିଲା । ମେସ୍ ଓ ପିଲାଙ୍କଠାରୁ ଟଙ୍କା ଆଦାୟ କରିବା ପାଇଁ ମତେ ୨୦ ଦିନରୁ ଅଧିକ ସମୟ ଲାଗିଲା । ସେ ଟଙ୍କା ଦେଖାଇ, ପ୍ରିନ୍‌ସିପାଲଙ୍କଠାରୁ କିଛି ସାହାଯ୍ୟ ଆଣିଲି । ତ୍ରିପାଠୀ ସାହେବ ଶହେଟଙ୍କା ଦେଲେ । ଏପରି ୧୬୦୦ ଟଙ୍କାରେ କମନରୁମ୍ ପାଇଁ ସମ୍ବାଦପତ୍ର, ମାସିକ ପତ୍ରିକା (ଓଡିଆ, ବଙ୍ଗଳା, ଇଂରେଜୀ) ହାରମୋନିୟମ, କ୍ୟାରମ୍ ପ୍ରଭୃତି ଯୋଗାଡ କରି, ଅନ୍ୟ ଏକ ରବିବାରରେ ତ୍ରିପାଠୀ ସାହେବଙ୍କ ଦ୍ୱାରା କମନରୁମ୍ ଉଦ୍‌ଘାଟନ କରାଗଲା । ଗୋଟିଏ କାର୍ଯ୍ୟ ଆରମ୍ଭ ହେଲେ ଉତ୍ସାହ, ସମର୍ଥନର ଅଭାବ ଘଟେ ନାହିଁ । ଆରମ୍ଭ

Digitized by srujanika@gmail.com

ପୂର୍ବରୁ ଅଧିକାଂଶ ନିରୁତ୍ସାହିତ, ଚେଷ୍ଟା କରିବାକୁ ପଶ୍ଚାତପଦ୍ । କମନରୁମ୍ ଆରମ୍ଭ ହେବାରେ ପ୍ରଶଂସା ମତେ ମିଳିଲା । ବି.ଏ. ପରୀକ୍ଷା ଦେଇ କଲେଜ ଛାଡିବା ପର୍ଯ୍ୟନ୍ତ, ପ୍ରତିଦିନ ସନ୍ଧ୍ୟାରେ ଓ ରବିବାର ସମସ୍ତ ଦିନ କମନରୁମ୍ ଖୋଲାଇବା ଏବଂ କିଛି ସମୟ ତାହାର ବନ୍ଦୋବସ୍ତ କରିବା ମୋର ଦାୟିତ୍ୱ ଥିଲା । ପ୍ରତିମାସରେ ଦୁଇ ରବିବାରରେ ହଷ୍ଟେଲ ବାସୀଙ୍କର ଆଲୋଚନା ସଭା ହୁଏ । ଖଣ୍ଡିଏ ହାତଲେଖା ତ୍ରୈମାସିକ ସାହିତ୍ୟ ପତ୍ରିକା 'ଜାଗରଣ' ବାହାର କରାଗଲା । କାଳିନ୍ଦୀ ତାହାର ପ୍ରଥମ ସମ୍ପାଦକ ହେଲେ । କାଳିନ୍ଦୀ ଧୀରସୁସ୍ଥି ବାଲା । ତାଙ୍କ ପାଇଁ ଯୋଗାଡ କରିଦେବା ଦରକାର । ଆଲୋଚନା ସଭା, ସାହିତ୍ୟ ପତ୍ରିକାରେ ଛାତ୍ରମାନଙ୍କର ବହୁତ ଉତ୍ସାହ ମିଳିଲା । ଶନିବାର ସନ୍ଧ୍ୟାରେ ସଂଗୀତ ଆସର ବସେ । ଲକ୍ଷ୍ମୀକାନ୍ତବାବୁଙ୍କର ସେଥିରେ ଖୁବ୍ ତତ୍ପରତା । ତାସ, ପଶା, କ୍ୟାରମ୍ ପ୍ରଭୃତି କେତେଜଣଙ୍କର ଏକଚାଟିଆ ଥାଏ । ପରବର୍ତ୍ତୀକାଳରେ କେତେଥର ଏହି ହଷ୍ଟେଲର ବାର୍ଷିକ ଉତ୍ସବରେ ମୁଖ୍ୟ ଅତିଥିଭାବରେ ଯୋଗଦେଇ ପୂର୍ବସ୍ମୃତି ଚାରଣ କରି ଆନନ୍ଦ ଲାଭ କରିଛି ଏବଂ ବୁଢିଆକୁ ଦେଖି ତାକୁ ପାରିତୋଷିକ ଦେଇଛି ।

କଲେଜରେ ଛାତ୍ର କମନରୁମ୍ ଥିଲା ଯେଉଁଠାରେ ଆଜିକାଲି କଲେଜ ଅଫିସ ସେଠାରେ ହେଉଛି । ଟେବୁଲ, ବେଞ୍ଚ ଚୌକି ଥାଏ । ବ୍ୟବହାର କିଛି ନଥାଏ । ମୋଠାରୁ ଦୁଇବର୍ଷ ଓପର କ୍ଲାସର ଜଣେ ବଙ୍ଗୀୟ ଛାତ୍ର ପ୍ରଣବଚନ୍ଦ୍ର ରାୟ ଚୌଧୁରୀ ସେହି କମନରୁମ୍‌ରେ ଥରେ ତର୍କ ସଭା (Debating Society) ଆୟୋଜନ କଲେ । ହ୍ୱିଟଲକ ସାହେବ ସଭାପତି । ବକ୍ତା ପ୍ରଣବବାବୁ, ସୁନିଲବାବୁ (ପାଲିତ, ପ୍ରଣବଙ୍କର ସହପାଠୀ) ପ୍ରଭୃତି । ବିଲୁଆ ସାଙ୍ଗେ ଓଧ ବାଇ ହେଲାପରି ମୁଁ ଠିଆ ହୋଇଗଲି । ପ୍ରଣବଙ୍କର ଅନ୍ୟଜଣେ ସାଥୀ ହରିଚରଣ ମୁଖାର୍ଜୀ ମୋ କହିବାର ପ୍ରଶଂସା କରିବାରୁ ଡିବେଟିଂରେ ମୁଁ ସବୁଥର ଭାଗ ନେଲି । ପ୍ରଣବବାବୁଙ୍କ ସଙ୍ଗେ ମୋର ସେହି ସୂତ୍ରରେ ପରିଚୟ ହୋଇ ପରେ ବନ୍ଧୁତା ହେଲା । ତାଙ୍କ ଘର ଥାଏ ତୁଳସୀପୁରରେ । ତାଙ୍କ ପିତା କ୍ଷୀରୋଦଚନ୍ଦ୍ର ରାୟଚୌଧୁରୀ ଜଣେ ପ୍ରଖ୍ୟାତ ଲୋକ ଥିଲେ । Star of Utkal ଇଂରେଜୀ ସାପ୍ତାହିକ ପତ୍ର ସମ୍ପାଦନ କରୁଥିଲେ । ତାଙ୍କର ମୃତ୍ୟୁ ଘଟିଯାଇଥାଏ । ପ୍ରଣବଙ୍କର ବିଧବା ମାତା, ଦୁଇକନ୍ୟା, ଦୁଇପୁତ୍ରଙ୍କୁ ନେଇ ରହୁଥାଆନ୍ତି । ପ୍ରଣବଙ୍କ ସାନଭାଇ ରୁଣୁ ଆମ କ୍ଲାସରେ ପଢୁଥିଲେ । ତାଙ୍କର ଅନ୍ୟ ଦୁଇ ଜ୍ୟେଷ୍ଠଭାଇ କଲିକତାରେ ପଢୁଥିଲେ । ମୁଁ ତାଙ୍କ ତୁଳସୀପୁର ଘରକୁ ଅନେକଥର

Digitized by srujanika@gmail.com

ଯାଉଥିଲି । ପ୍ରଣବଙ୍କ ସାନଭଉଣୀ ବେଲାଙ୍କୁ ମୁଁ 'ଆପନି' କହିବାରୁ ତାଙ୍କ ଘରେ ହାସ୍ୟରୋଳ ଉଠିଲା । ତାଙ୍କ ମା ଓ ପ୍ରଣବ ବେଲାଙ୍କୁ କହିଲେ— ଯାହା ହଉ ତତେ ଆପଣ କହିବାର ଜଣେ ଲୋକ ମିଳିଗଲା । ସେହି ବେଲା ପରବର୍ତ୍ତୀ କାଳରେ ହରିଚରଣ ମୁଖାର୍ଜୀଙ୍କୁ ବିବାହ କଲେ । ପ୍ରଣବବାବୁ ଏମ୍.ଏ.ପାସ୍ ପରେ ଡେପୁଟି ମାଜିଷ୍ଟ୍ରେଟ୍ ହୋଇ ବିହାରରେ କାର୍ଯ୍ୟ କଲେ । ପ୍ରଚାର (Publicity ) ଦୃଷ୍ଟିରୁ କୌଣସି ବିଷୟ ଲେଖିବାରେ ତାଙ୍କର ସବୁବେଳେ ଦକ୍ଷତା ରହି ଆସିଛି । ବିହାରର ଜିଲ୍ଲା ଗେଜେଟ୍ ସବୁ ପୁନର୍ବାର ଲେଖିବାର ଦାୟିତ୍ୱ ସେ ସୁଚାରୁ ରୂପେ ତୁଲାଇଛନ୍ତି । ଗାନ୍ଧି ଫାଉଣ୍ଡେସନ୍‌ରେ କେତେକାଳ ଦିଲ୍ଲୀରେ କାର୍ଯ୍ୟ କରିଥିଲେ । କଲେଜରେ ପଢ଼ିଲାବେଳେ ଛୁଟିରେ ଦୁଇଥର ଆମ ଗାଁକୁ ସେ ଯାଇଥିଲେ । ଏ ପର୍ଯ୍ୟନ୍ତ ତାଙ୍କ ସହିତ ଗଭୀର ସୌହାର୍ଦ୍ଦ୍ୟ ରହି ଆସିଛି । ତାଙ୍କ ସଙ୍ଗେ ମିଶି କଲେଜ କମନରୁମ୍‌କୁ ସମ୍ବାଦପତ୍ର, ମାସିକ ପତ୍ରିକା, ପ୍ରଚାର ପୁସ୍ତିକା ପ୍ରଭୃତି ଆଣି ସଚଳ ଓ ଛାତ୍ରପ୍ରିୟ କରିବାରେ ମୁଁ ଅନେକ ସମୟ କଟାଇଥିଲି । ପ୍ରତି ଶନିବାର ଡିବେଟିଙ୍ଗ ସଭା ଚାଲିଲା । ଜଳଖିଆବାଲା କୁଞ୍ଜ କମନରୁମ୍ ଦୁଆର ପାଖରେ ଠିଆ ହେବାରୁ, ପିଲାଙ୍କ ଆଗ୍ରହ ଆହୁରି ବଢ଼ିଲା ।



Digitized by srujanika@gmail.com

# ସଭା ସମିତି

ନାନା ପ୍ରକାର ସଭା ସେତେବେଳେ କଟକ ଟାଉନ ହଲରେ ହେଉଥାଏ । ଉତ୍କଳ ସାହିତ୍ୟ ସମାଜର ଶ୍ରୀରାମଚନ୍ଦ୍ର ଭବନରେ କେବଳ ସାହିତ୍ୟ ସମ୍ପର୍କିତ ସଭାହୁଏ । କଂଗ୍ରେସ ଓ ଅସହଯୋଗ ଆନ୍ଦୋଳନର ବଡବଡ ସଭାମାନ କାଠଯୋଡି ନଈବାଲିରେ ହେଉଥିଲା । ସେ ସବୁ ସାଧାରଣ ସଭାରେ ଯୋଗଦେବାରେ ମୋର ଆଗ୍ରହ ଥାଏ । ହଷ୍ଟେଲରୁ ସଭାସ୍ଥଳ ପ୍ରାୟ ତିନି ମାଇଲ । ଘୋଡାଗାଡିରେ ଆସିବାର ସମ୍ବଳ ମୋର ନଥିଲା । ଚାଲିକରି ଆସେ । ମନର ଉତ୍ସାହରେ ଦେହର କ୍ଳାନ୍ତି ବାଧେ ନାହିଁ । ମୋ ସାଥୀମାନେ କେହି ବାହାରନ୍ତି ନାହିଁ, ତଥାପି ମୁଁ ଆସେ । ସଭା ଦେଖୁ ଦେଖୁ ସଭାରେ ଅଂଶଗ୍ରହଣ କରିବାକୁ ଆରମ୍ଭ କଲି । ଫଳରେ ସେ ସମୟରେ ସାଧାରଣ କ୍ଷେତ୍ରରେ କାର୍ଯ୍ୟ କରୁଥିବା ବ୍ୟକ୍ତିମାନଙ୍କ ସଙ୍ଗେ ପରିଚିତ ହେବାର ସୁଯୋଗ ମିଳିଲା । ଲକ୍ଷ୍ମୀନାରାୟଣ ସାହୁ, ଗୋପବନ୍ଧୁ ଚୌଧୁରୀ, ସତ୍ୟନାରାୟଣ ସେନଗୁପ୍ତ, ବିଚିତ୍ରାନନ୍ଦ ଦାସ, ବି. ଦାସ, ବ୍ରଜସୁନ୍ଦର ଦାସ, ଭିକାରୀ ଚରଣ ପଟ୍ଟନାୟକ, ଶଶିଭୂଷଣ ରାୟ, ଚିନ୍ତାମଣି ଆଚାର୍ଯ୍ୟ, ରାଜକୃଷ୍ଣ ବୋଷ, ନବକୃଷ୍ଣ ଚୌଧୁରୀ, ଯଦୁମଣି ମଙ୍ଗରାଜ, ଗୋବିନ୍ଦ ଚନ୍ଦ୍ର ମିଶ୍ର, ରେଭରେଣ୍ଡ ବ୍ରଜାନନ୍ଦ ଦାସ, ଖାଁ ବାହାଦୂର ଆହମଦ୍ ବକ୍ସ ପ୍ରମୁଖ ଛାତ୍ରମାନଙ୍କ ତରଫରୁ କହିବା ପାଇଁ ମତେ ପ୍ରାୟ ପ୍ରତି ସଭାରେ (ମୁଁ ଉପସ୍ଥିତ ଥିଲେ ) ଡାକୁଥିଲେ । କୌଣସି କୌଣସି ସଭା ପୂର୍ବରୁ ମତେ ଆସିବା ପାଇଁ ହଷ୍ଟେଲକୁ ଖବର ଦେଉଥିଲେ । ସତ୍ୟନାରାୟଣବାବୁ, ବିଚିତ୍ରାନନ୍ଦବାବୁ, ଗୋପବନ୍ଧୁ ଚୌଧୁରୀ, ନବ ଚୌଧୁରୀ, ଯଦୁମଣି ମଙ୍ଗରାଜ, ଗୋବିନ୍ଦ ମିଶ୍ର କଂଗ୍ରେସପନ୍ଥୀ ଥିଲେ । ଅନ୍ୟମାନେ ସରକାର ସହଯୋଗୀ । ଲକ୍ଷ୍ମୀନାରାୟଣ ସାହୁ ଥିଲେ ମଝି ମଝିଆ । ସବୁ ସଭାକୁ ସେ ଯାଇପାରନ୍ତି । ତାଙ୍କ ଆୟୋଜିତ ସଭାକୁ ସମସ୍ତେ ଆସିପାରନ୍ତି ନାହିଁ । ବୟୋଜ୍ୟେଷ୍ଠମାନଙ୍କ ମଧ୍ୟରେ ସେ ଏକମାତ୍ର ବ୍ୟକ୍ତି ଥିଲେ ଯେ କନିଷ୍ଠ, ବିଶେଷତଃ ଛାତ୍ରମାନଙ୍କ ସହିତ ଅତି ଖୋଲାଖୋଲି ମିଶି

Digitized by srujanika@gmail.com

ପାରୁଥିଲେ । ଆମ ହଷ୍ଟେଲକୁ ମୋ ପାଖକୁ ଅନେକ ଥର ଆସୁଥିଲେ । ଦିନେ ଦିନେ ସକାଳୁ ଆସି ସନ୍ଧ୍ୟା ପର୍ଯ୍ୟନ୍ତ ରହିଯାଆନ୍ତି । ମୁଁ କଲେଜକୁ ଗଲେ, ସେ ରୁମ୍‌ରେ ରହି ଥାଆନ୍ତି । ତାଙ୍କ ସହିତ ମୋର ପ୍ରଥମ ଆଳାପ ହେଲା ଟିକିଏ ଅନ୍ୟ ପ୍ରକାରେ । ମାଟ୍ରିକ ପରୀକ୍ଷା ପରେ ଗାଁରେ ଥିବାବେଳେ Star of Utkal କୁ ଗୋଟିଏ ଇଂରେଜୀ ଲେଖା ପଠାଇଥିଲି । ଲକ୍ଷ୍ମୀନାରାୟଣବାବୁ ସେତେବେଳେ ତାହାର ସମ୍ପାଦକ । ଲେଖାଟି ପ୍ରକାଶ କଲେ । ଜୁଲାଇ ମାସରେ କଲେଜ ଆରମ୍ଭ ହେବା ପରେ କଲେଜକୁ ଆସି ମତେ (ମୋ ନାମ ଧରି) ଖୋଜିଲେ । ସେହିଦିନଠାରୁ ତାଙ୍କର ବିୟୋଗ ପର୍ଯ୍ୟନ୍ତ ଅତି ସୌହାର୍ଦ୍ଦ୍ୟ ରହି ଆସିଥିଲା ।

ଛାତ୍ର ସମ୍ମିଳନୀ ଏହା ମଧ୍ୟରେ ଥରେ ପୁରୀରେ ହୋଇଥିଲା । ସାର୍ ଦେବପ୍ରସାଦ ସର୍ବାଧିକାରୀ ସେତେବେଳେ ପୁରୀ ବୁଲି ଆସିଥିବାରୁ ତାଙ୍କୁ ସଭାପତି ରୂପେ ପାଇ ସମସ୍ତେ ଉତ୍ସାହିତ ହୋଇଥିଲେ । ମୁଁ ଯାଇଥିଲି ଯୋଗଦେବା ପାଇଁ ଏବଂ ସଭାପତିଙ୍କ ନାମ ପ୍ରସ୍ତାବ କରିବାର ଭାର ମୋ ଉପରେ ଥିଲା । ସର୍ବାଧିକାରୀଙ୍କ ପୂର୍ବପୁରୀ ଯାଜପୁରରୁ ବଙ୍ଗଦେଶକୁ ଯାଇଥିଲେ । ସେ ଓଡ଼ିଆ ଏବଂ ସେଥିପାଇଁ ତାଙ୍କର ଗର୍ବ ରହିଛି ବୋଲି ମୁଁ କହିଲାବେଳେ ପୁରୀ ଜିଲ୍ଲାସ୍କୁଲ ହଲ (ସେଠାରେ ସମ୍ମିଳନୀ ହେଉଥିଲା) ଆନନ୍ଦ କରତାଳିରେ କମ୍ପି ଉଠିଥିଲା । ବନ୍ଧୁ ଶରତ ମୁଖାର୍ଜୀ ମୋ ପ୍ରସ୍ତାବ ଅନୁମୋଦନ କରି ବକ୍ତୃତା ଦେଇଥିଲେ । ସଭା ପରେ ମତେ କହିଲେ – 'ହରି ତୁ କହିଲାବେଳେ ତୋ ତୁଣ୍ଡରେ ଇଂରେଜୀ ଖଇ ଫୁଟୁଥିଲା । ତୋ ମାମୁଁ (ଗୋପୀନାଥ ମିଶ୍ର) ଏବଂ ଅନ୍ୟମାନେ କି ଉତ୍‌ଫୁଲ୍ଲ ହେଉଥାନ୍ତି ।' ସତ ହେଉ ବା ନ ହେଉ ଏପରି କଥା ଶୁଣିଲେ ମନରେ ଉତ୍ସାହ ଆସିବାର କଥା । ଓଡ଼ିଶା ଛାତ୍ର ସମ୍ମିଳନୀ ପରବର୍ତ୍ତୀ ଅଧିବେଶନକୁ କଟକକୁ ଆମନ୍ତ୍ରଣ କରାଗଲା । ସେତେବେଳକୁ ଶରତ ପାଟନା ଚାଲିଯାଇଥାଏ । ସୁତରାଂ ମୋ ଉପରେ ଦାୟିତ୍ୱ ପଡ଼ିଲା ।

ମୋର କଲେଜରେ ତୃତୀୟବର୍ଷ ୧୯୨୩-୨୪ । ଇଂରେଜୀ ଅନର୍ସ, ଦର୍ଶନ, ଇକ୍‌ନମିକ୍‌ସ ମୁଁ ନେଇଥାଏ । ପରୀକ୍ଷା ଦେଲାବେଳକୁ ଜଣାଗଲା, ବିଶ୍ୱବିଦ୍ୟାଳୟରେ ଫିଲସଫି ଓ ଇକ୍‌ନମିକ୍‌ସ ନେଇ ପରୀକ୍ଷାର୍ଥୀ ଏକମାତ୍ର ମୁଁ । ତାହା ପରବର୍ଷଠାରୁ ସେ କମ୍ବିନେସନ ଉଠିଗଲା । ଛାତ୍ର ସମ୍ମିଳନୀ କରିବା ପାଇଁ ଅଭ୍ୟର୍ଥନା ସମିତି ଗଠନ କରିବା ପ୍ରଥମରୁ ଆବଶ୍ୟକ ଏବଂ ଖର୍ଚ୍ଚ ତୁଲାଇବା ପାଇଁ

Digitized by srujanika@gmail.com

ଅର୍ଥ ଆୟୋଜନ କରିବା ଦରକାର । ମୁଁ ପରିଜା ସାହେବଙ୍କ ଦ୍ୱାରସ୍ଥ ହେଲି । ସେ ଅଭ୍ୟର୍ଥନା ସମିତିର ଅଧ୍ୟକ୍ଷ ହେବା ପାଇଁ ସମ୍ମତ ହେଲେ । ଭିଖାରୀ ଚରଣ ପଟ୍ଟନାୟକ Poor Cottage Industries ନାମକ ଏକ ସଂସ୍ଥାଗଢ଼ି ଅନ୍ୟ ବ୍ୟବହାର ଅନୁପଯୋଗୀ ଛିଣ୍ଡା କାଗଜ, କନାରେ ଅଭଙ୍ଗା କୁଣ୍ଢେଇ, ମାଟି, ତାଳ ପତ୍ର, କାଇଁସରେ ନାନାପ୍ରକାର ପଦାର୍ଥ ଗରିବ, ନିରକ୍ଷର ପୁରୁଷ, ସ୍ତ୍ରୀ ଲୋକ, ପିଲାମାନଙ୍କ ଦ୍ୱାରା ପ୍ରସ୍ତୁତ କରାଉଥିଲେ । ଏଣ୍ଡିପୋକ ସଂଗ୍ରହ କରି ଟସର ସୂତା ଓ ସେ ସୂତାରେ ଧୋତି, ଚାଦର, କୋଟକନା ବୁଣାଉଥିଲେ । ଏସବୁ କାର୍ଯ୍ୟର ସେତେବେଳେ ସୁଖ୍ୟାତି ଥିଲା ଏବଂ ଭିଖାରୀବାବୁ ସେଥିପାଇଁ ରାୟସାହେବ ଉପାଧି ପାଇଥିଲେ । ତାଙ୍କ ଘର ଟାଉନହଲ ପାଖରେ । ଘରର ଏକ ଅଂଶରେ କୁଟୀର ଶିଳ୍ପ ଚାଲିଥାଏ । କେହି କେହି, ତାଙ୍କ ପଛରେ ତାଙ୍କୁ ଏଣ୍ଡିପୋକ ରାୟ ସାହେବ ବୋଲି କହୁଥିଲେ । ତାଙ୍କୁ ଅଭ୍ୟର୍ଥନା ସମିତିର ଉପସଭାପତି କରାହେଲା । ଲକ୍ଷ୍ମୀନାରାୟଣ ସାହୁ ସମ୍ପାଦକ, ଯଦୁମଣି ମଙ୍ଗରାଜ ଓ ମୁଁ ଯୁଗ୍ମ ସହସମ୍ପାଦକ ହେଲୁ । ଅନ୍ୟ କେତେଜଣଙ୍କୁ ସଭ୍ୟ କରାଗଲା । ଅଭ୍ୟର୍ଥନା ସମିତିର ସବୁ ବୈଠକ ଭିଖାରୀ ବାବୁଙ୍କ ଘରେ ବସୁଥିଲା । ପରିଜା ସାହେବ ପ୍ରତ୍ୟେକଟିକୁ ଯାଉଥିଲେ । ସେ କଲେଜ ହତାରୁ ଘୋଡା ଗାଡ଼ିରେ ଗଲାବେଳେ ମୁଁ ଅନେକ ଥର ତାଙ୍କ ସଙ୍ଗେ ଯାଉଥିଲି ଓ ଫେରୁଥିଲି । ଅଭ୍ୟର୍ଥନା ସମିତିର ଅଫିସ ଆମ ହଷ୍ଟେଲର ଗୋଟିଏ ରୁମ୍‌ରେ ଖୋଲିବା ପାଇଁ ୱାର୍ଡେନ୍ ଅକ୍ରଲୋନି ସାହେବଙ୍କ ଠାରୁ ଅନୁମତି ନେଇଥିଲି । ସେ ପ୍ରିନ୍‌ସପାଲ୍‌ଙ୍କୁ କିଛି ନ ଜଣାଇ ଅନୁମତି ଦେଇଥିଲେ । ସମ୍ମିଳନୀର ସଭାପତି ପଣ୍ଡିତ ଗୋଦାବରୀଶ ମିଶ୍ର ହେବା ସ୍ଥିର ହେଲା । ସବୁ ଆୟୋଜନ ଚାଲି ସମ୍ମିଳନୀ କଲେଜ ହଲରେ ହେବା ପାଇଁ ଚାରିଦିନ ବାକୀ ଥାଏ, ସରକାରଙ୍କର କୋପଦୃଷ୍ଟି ଆମ ଉପରେ ପ୍ରକାଶ ପାଇଲା । ତାହାର କାରଣ କଂଗ୍ରେସର ଜଣେ ନେତୃସ୍ଥାନୀୟ ବ୍ୟକ୍ତି ଗୋଦାବରୀଶବାବୁଙ୍କୁ ସଭାପତି କରିବା ଏବଂ ସମ୍ପାଦକ ଭାବରେ କଂଗ୍ରେସର ଜଣେ ଯୁବନେତା ଯଦୁମଣି ମଙ୍ଗରାଜ ଓ ଅନେକ ସମୟରେ ସରକାରର ବିରୋଧପନ୍ଥୀ ଲକ୍ଷ୍ମୀନାରାୟଣ ସାହୁ ସମ୍ପାଦକ ହେବା । ସମ୍ମିଳନୀ ବନ୍ଦ କରିଦେବା ପାଇଁ ସରକାରୀ ମହଲରେ ନିଷ୍ପତ୍ତି ହେବାର ଆମେ ଜାଣିପାରି ଅତି ବିଚଳିତ ହେଲୁ । ସେତେବେଳକୁ ଓଡିଶା ଓ ଓଡିଶା ବାହାରୁ ଛାତ୍ର ପ୍ରତିନିଧିମାନେ କଟକରେ ପହଞ୍ଚିବା ଆରମ୍ଭ ହୋଇ ଯାଇଥାଏ । ଗୋଦାବରୀଶବାବୁ ସମ୍ମିଳନୀ ପୂର୍ବଦିନ ପହଞ୍ଚିବେ ବୋଲି ଜଣାଇ ଥାଆନ୍ତି । ସେ ପରିଜା ସାହେବଙ୍କ ଘରେ ଅତିଥି ହେବାର କଥା ।

Digitized by srujanika@gmail.com

କଟକ ଜିଲ୍ଲାପାଳ ଥାଆନ୍ତି ବେଲ୍ ସାହେବ । ସେ ଓ କମିସନର ମଧ ଇଂରେଜ । ପୁଲିସ ସାହେବ ମଧ ଇଂରେଜ । କଂଗ୍ରେସବାଲାଙ୍କୁ ନେଇ କଲେଜ ହଲରେ ସମ୍ମିଳନୀ କରିବା ଏବଂ ହଷ୍ଟେଲରେ ସେଥିପାଇଁ ଅଫିସ ଖୋଲିବା ଅତି ଗର୍ହିତ ବ୍ୟାପାର ବୋଲି ସେମାନଙ୍କର ମନେହେଲା । ପ୍ରିନ୍‌ସପାଲ ଲାମ୍ବର୍ଟ ସାହେବ, ଓ୍ୱାର୍ଡେନ ଅକ୍ସରଲୋନି ସାହେବଙ୍କୁ କୁହାଗଲା, ସେମାନେ ସେମାନଙ୍କ ଅନୁମତି ପ୍ରତ୍ୟାହାର କରି ନିଅନ୍ତୁ । ସାହେବ ସାହେବ ଭିତରେ ବାଦାନୁବାଦ । କୌଣସି ଦୋଷାବହ କାରଣ ନଥାଇ ସେମାନେ ଅନୁମତି ଫେରାଇନେଲେ ଛାତ୍ର ମାନଙ୍କ ନିକଟରେ ନିନ୍ଦନୀୟ ହୋଇଯିବେ ବୋଲି କହି ଅମଙ୍ଗ ହେଲେ । ପରିଜା ସାହେବ ମଧ ଅଭ୍ୟର୍ଥନା ସଭାର ସଭାପତିତ୍ୱ ଶେଷ ମୂହୂର୍ତ୍ତରେ ପରିତ୍ୟାଗ କଲେ ତାଙ୍କ ମର୍ଯ୍ୟାଦା କ୍ଷୁର୍ଣ୍ଣହେବ ବୋଲି କହିଲେ । ଗୋଟିଏ ସମାଧାନର ବାଟ ସ୍ୱରୂପ ମତେ କହିଲେ, ଲକ୍ଷ୍ମୀନାରାୟଣ ସାହୁ, ଯଦୁମଣି ମଙ୍ଗରାଜଙ୍କୁ ସମ୍ପାଦକ ଦାୟିତ୍ୱରୁ ଇସ୍ତଫା ଦେବାକୁ ଅନୁରୋଧ କରିବାକୁ । ମୁଁ ସେ ଚେଷ୍ଟାରେ ବାହାରିଲି । ଲକ୍ଷ୍ମୀନାରାୟଣ ବାବୁ ସଙ୍ଗେ ସଙ୍ଗେ ରାଜିହେଲେ ଏବଂ ଇସ୍ତଫା ପତ୍ର ଲେଖିଦେଲେ । ସେ ଓ ମୁଁ ଗଲୁ ମଙ୍ଗରାଜଙ୍କ ପାଖକୁ । ସେ ତ ଅଗ୍ନିସ୍ଫୁଲିଙ୍ଗ । ଅସହଯୋଗ ଡାକରାରେ କଲେଜ ଛାଡିଥାନ୍ତି । ଜ୍ୱାଳାମୟୀ ବାଗ୍ମିତାରେ ପ୍ରସିଦ୍ଧ । ସେ ଇସ୍ତଫା ଦେବାକୁ ରାଜିହେଲେ ନାହିଁ । ସେ ସ୍ୱରାଜ୍ୟ ଆଶ୍ରମରେ ରହୁଥାନ୍ତି । ରାତି ୧୨ଟା ପର୍ଯ୍ୟନ୍ତ ଲକ୍ଷ୍ମୀନାରାୟଣବାବୁ, ମୁଁ ଓ ଅନ୍ୟମାନେ ତାଙ୍କ ସାଙ୍ଗେ ଲାଗି ଶେଷକୁ ସେ ଇସ୍ତଫା ଲେଖିଦେଲେ । ଅତି ପ୍ରତ୍ୟୁଷରେ ସେ ଦୁଇ ଇସ୍ତଫା ପତ୍ର ନେଇ ପରିଜା ସାହେବଙ୍କୁ ଦେଲି । ମୁଁ ଏକମାତ୍ର ସମ୍ପାଦକ ହେଲି । ଏ ବ୍ୟବସ୍ଥାରେ କମିଶନର ସାହେବ ଶାନ୍ତ ପଡିଲେ । ବାକି ରହିଲା ଗୋଦାବରୀଶବାବୁଙ୍କ କଥା । ପରିଜା ସାହେବ ମତେ ସାଙ୍ଗରେ ନେଇ କଲେକ୍ଟର ବେଲ ସାହେବଙ୍କ ପାଖକୁ ଗଲେ । ଆୟୋଜନର ସମସ୍ତ ବିବରଣୀ ମୁଁ ଜଣାଇଲି । । କଂଗ୍ରେସର ଏ ସମ୍ମିଳନୀ ସହିତ କୌଣସି ସମ୍ପର୍କ ନଥିବା ମୁଁ ବୁଝାଇବାର ଚେଷ୍ଟା କଲି । ପରିଜା ସାହେବ ପ୍ରକାରାନ୍ତରେ କହିଲେ, ଗୋଦାବରୀଶବାବୁ ସରକାର ବିରୋଧ ପ୍ରସଙ୍ଗ ଛାତ୍ର ସମ୍ମିଳନୀରେ ଉତ୍‌ଥାପନ କରିବାର ଆଶଙ୍କା ନାହିଁ । କଲେକ୍ଟର ପୁଲିସ ସାହେବଙ୍କୁ ଜଣାଇଦେଲେ, ସମ୍ମିଳନୀକୁ ବାଧା ନ ଦେବା ପାଇଁ ।

ଯେଉଁଦିନ ସମ୍ମିଳନୀ ଆରମ୍ଭ ହେଲା, ସରକାରଙ୍କ ପକ୍ଷରୁ ବାଧା ହୋଇଥିବା କାରଣରୁ, ପିଲାଙ୍କ ମଧରେ ଉତ୍ତେଜନା ପ୍ରକାଶ ପାଇଲା । ଅଭ୍ୟର୍ଥନା

Digitized by srujanika@gmail.com

ସମିତିର ସଭାପତି ରୂପେ ପରିଜା ସାହେବଙ୍କ ବକ୍ତୃତାରେ ଯଥେଷ୍ଟ ଉଷ୍ମତା ପୂରିଥାଏ । କ୍ରୋଧ ତାଙ୍କ ମୁଖମଣ୍ଡଳରେ ଦେଖା ଯାଉଥାଏ । ଯେଉଁ ସ୍ୱାଧୀନ ଚେତନା ସେ ଦିନ ସେ ପ୍ରକାଶ କଲେ, ତାହା ଅନ୍ୟ ଅଧ୍ୟାପକମାନଙ୍କୁ ବିଚଳିତ କରିଥିଲା । ମୋ କଥା ସେ ଏକାଧିକବାର ତାଙ୍କ ବକ୍ତୃତାରେ ପ୍ରକାଶ କଲେ । ସେ ଦିନର ଦୃଶ୍ୟ ମୋ ମାନସ ପଟରେ ଅମଳିନ ରହିଛି । କଲେଜ କମ୍‌ମେମୋରେସନ ଓ କଲେଜ ପୁରାତନ ଛାତ୍ରସଂଘ ପକ୍ଷରୁ ୧୯୭୭ (?) ଜାନୁୟାରୀ ମାସରେ ପରିଜା ସାହେବଙ୍କୁ ସମ୍ବର୍ଦ୍ଧନା ଜ୍ଞାପନ କରାଗଲାବେଳେ, ମୁଁ ଅନୁଷ୍ଠାନର ସଭାପତି ରୂପେ ଭାଷଣ ଦେଇ ୧୯୨୪ ମସିହାର ଛାତ୍ର ସମ୍ମିଳନୀରେ ତାଙ୍କର ଭୂମିକା ବିଷୟ କହିଲାବେଳେ, ସଭାମଞ୍ଚରେ ପରିଜା ସାହେବଙ୍କ ଆଖି ଛଳ ଛଳ ହେବାର ଦେଖାଯାଇଥିଲା । ଗୋଦାବରୀଶବାବୁ ସମ୍ମିଳନୀରେ ତାଙ୍କ ବକ୍ତୃତାରେ ସମସ୍ତଙ୍କୁ ମୁଗ୍ଧ କରିଥିଲେ । ପଦେ ସରକାର ବିରୋଧରେ ନ କହି,ଏପରି କଟାକ୍ଷ ମନ୍ତବ୍ୟମାନ ଦେଲେ ଯେ,C.I..D. ରିପୋର୍ଟରମାନେ ମୁରକିହସା ଦେଇ ପେନ୍‌ସିଲ ଚଳାଇବା ବନ୍ଦ ରଖିଲେ । ଏହି ଦୁଇ ବକ୍ତୃତା ପରେ ମୁଁ ପ୍ରସ୍ତାବ ଆଣିଲି ଯେ ଛାତ୍ରମାନଙ୍କ ସମ୍ମିଳନୀରେ ସରକାର ତରଫରୁ ଅହେତୁକ ବାଧା ଦିଆଯିବାର ଚେଷ୍ଟା ହୋଇଥିବାରୁ, ତାହାର ପ୍ରତିବାଦ ସ୍ୱରୂପ ସମ୍ମିଳନୀର ଅନ୍ୟ ସମସ୍ତ କାର୍ଯ୍ୟ ବନ୍ଦ ରଖାଯାଉ । ଏହି ପ୍ରସ୍ତାବ ଗୃହୀତ ହୋଇ ସମ୍ମିଳନୀ ସାଙ୍ଗହେଲା । କଂଗ୍ରେସ ବାହାରେ ଏପରି ପ୍ରତ୍ୟକ୍ଷ ପ୍ରତିବାଦ ପ୍ରସ୍ତାବ ସରକାରୀ କଲେଜ ହଲରେ ସରକାରୀ କର୍ମଚାରୀମାନଙ୍କ ଉପସ୍ଥିତିରେ ଗୃହୀତ ହେବାରେ ଅନେକ ଦିନ ପର୍ଯ୍ୟନ୍ତ ତାହାର ଆଲୋଚନା ବିଭିନ୍ନ ସ୍ତରରେ ଚାଲିଲା । ମୁଁ ସରକାର ବିରୋଧୀ ବୋଲି ଚିହ୍ନଟ ହେଲି । ମୋର ମନେପଡିଲା ୧୯୨୦ ମସିହା ଚକ୍ରଧରପୁର ଛାତ୍ର ସମ୍ମିଳନୀ ପାଇଁ ଚାଇବାସାରେ ମୋର ଅକୃତକାର୍ଯ୍ୟ ଆୟୋଜନ । କଟକ ସମ୍ମିଳନୀ ପାଇଁ ମଧ ସେହିପରି ସରକାରୀ ବାଧାରେ ଅକୃତକାର୍ଯ୍ୟ ହେଲି । ବିଫଳତାରେ ମଧ କିଛି ସଫଳତା ମିଳେ । ତାହାହିଁ ଦିଏ କିଛି ଆଶ୍ୱାସନା ।



Digitized by srujanika@gmail.com

# ଶିକ୍ଷକତା

୧୯୨୫ ବି.ଏ ପରୀକ୍ଷା ଦେଇ ଗାଁକୁ ଆସି ଶୁଣିଲି ଆଚାର୍ଯ୍ୟ ମହାଶୟ (ହରିହର ଦାସ) ଖବର ପଠାଇଛନ୍ତି ଦେଖା କରିବା ପାଇଁ । ଏହି ପ୍ରଥମ ନାନୀ ନଥାଇ ଘରକୁ ଆସିବା । ମୁଁ କଟକରେ ଥିଲାବେଳେ ନାନୀ ପରଲୋକଗତ ହୋଇଗଲା । ଘରର ସର୍ବଶ୍ରେଷ୍ଠ ଆକର୍ଷଣ ମୋ ପାଇଁ ଶୂନ୍ୟ ହୋଇ ଯାଇଥିଲା । ମଧୁମାମୁଁ ମଧ ଚାଲିଯାଇଥିଲେ । ଜୟୀଭାଇନା ଆଉ ନଥିଲେ । ଲୋକନାଥ ମହାପାତ୍ରେ ଚାକିରିରେ ତାଙ୍କ କର୍ମସ୍ଥଳୀରେ । ସବୁଆଡୁ ମତେ ସଙ୍ଗହୀନ ଲାଗିଲା । ବୋଉ ଗାଁରେ ଥାଏ । ନନା ଚାଇବାସାରୁ ବଦଳି ହୋଇ ନିମାପଡା ଟ୍ରେନିଂ ସ୍କୁଲରେ ହେଡପଣ୍ଡିତ ହୋଇ ଥାଆନ୍ତି । ପରୀକ୍ଷାଫଳ ବାହାରିବା ଯାଏ ଗାଁରେ ରହିବାକୁ ହେବ । ଫଳ ବାହାରିଲେ, ତାପରେ କଅଣ ହେବ ସ୍ଥିରତା ନଥାଏ । କଲେଜର ଚାରିବର୍ଷ ପାଠପଢ଼ା ଛଡା ହାତରେ ସବୁବେଳେ କିଛି ନା କିଛି କାମ ଥାଏ । କେତେଖଣ୍ଡ ବହି କଟକରୁ ଆଣିଥାଏ । ସେଥିରେ ସମୟ କଟାଇବାର ଇଚ୍ଛା ଥିଲା । ଆଚାର୍ଯ୍ୟ ମହାଶୟଙ୍କର ଡାକରା ପାଇ ଗାଁକୁ ଆସିବା ପରଦିନ ତାଙ୍କୁ ସାକ୍ଷାତ କରିବାକୁ ଗଲି ।

୧୯୨୧ରୁ ସତ୍ୟବାଦୀ ହାଇସ୍କୁଲ (ବନବିଦ୍ୟାଳୟ) ଜାତୀୟ ସ୍କୁଲରେ (ବିଦ୍ୟାପୀଠ) ପରିଣତ ହୋଇଥିଲା, କଂଗ୍ରେସ ଆନ୍ଦୋଳନର ପ୍ରଥମ ପଦକ୍ଷେପ ରୂପେ ଓଡିଶାରେ । ୧୯୨୩ରେ ତାହା ଜାତୀୟ କଲେଜ କରାଗଲା । ନାମକୁ ମାତ୍ର କଲେଜ । ୧୯୨୫ ବେଳକୁ କାର୍ଯ୍ୟତଃ ମାଟ୍ରିକ ପରୀକ୍ଷା ପାଇଁ ପିଲାଙ୍କୁ ପ୍ରସ୍ତୁତ କରାଯାଉ ଥିଲା । ଆଚାର୍ଯ୍ୟ ମହାଶୟଙ୍କ ସଙ୍ଗେ ଦେଖା ହେବାରେ, ସେ କହିଲେ, 'ତୋର ତ ପରୀକ୍ଷା ସରିଯାଇଛି । ତୁ ଆସି ସ୍କୁଲରେ ପଢ଼ା । ଏଇ ସ୍କୁଲରୁ ତ ଯାଇଥିଲୁ ପୁଣି ଏ ସ୍କୁଲକୁ ଆ ।' ଏଥିରେ ହଁ ଛଡା ଅନ୍ୟ ଉତ୍ତର ମୋର ଦବାର ନଥିଲା । ମୁଁ ଏପରି ପ୍ରସ୍ତାବ ବା ସମ୍ଭାବନା ଚିନ୍ତା କରିନଥିଲି । କୃପାସିନ୍ଧୁ ବାବୁ (ମିଶ୍ର) ସେତେବେଳେ ସେଠାର ଅଧକ୍ଷ । ଆଚାର୍ଯ୍ୟ ମହାଶୟ ମତେ ସଙ୍ଗରେ ଧରି

Digitized by srujanika@gmail.com

ତାଙ୍କ ପାଖକୁ ଗଲେ ଏବଂ ନିଷ୍କରିମୂଳକ ଭାବରେ କହିଲେ, "କୃପାସିନ୍ଧୁ, ହରି ଆଜିଠାରୁ ସ୍କୁଲରେ ଜଏନ୍ କରୁ ।" ମୋ ବିଷୟର ଦାୟିତ୍ୱ ସେମାନେ ଆଗରୁ ସ୍ଥିର କରିଥିଲେ ବୋଲି ଶୁଣିଲି । ଆଜ୍ଞା ସଙ୍ଗେ ସଙ୍ଗେ ପାଳନ ରୂପେ, ଅତି ସନ୍ତର୍ପଣରେ କ୍ଲାସକୁ ଗଲି । ଇଂରେଜୀ ପଢ଼ାଇବାର କଥା । କ୍ଲାସ ସାରି ଗାଁକୁ ଆସିବା ପୂର୍ବରୁ ଗାଁରେ ପ୍ରଘଟ ହୋଇ ଯାଇଥିଲା ଯେ ମୁଁ ସ୍କୁଲରେ ମାଷ୍ଟର ହୋଇଯାଇଛି । କେତେ ଦରମା, ତାହା ବୁଝିବାକୁ କେବଳ ବାକିଥାଏ । ଦରମା କଥା ହରିବାବୁ କିମ୍ବା କୃପାସିନ୍ଧୁ ବାବୁ କିଛି କହି ନଥିଲେ । ମୁଁ ତ ଉଠାଇବାର ନଥିଲା । ସେମାନେ ଅର୍ଦ୍ଧଭକ୍ଷ ଅବସ୍ଥାରେ ଥାଆନ୍ତି । ମୋ ଉପରେ କିଛି ନିର୍ଭରତା ଥିଲା ବୋଲି ମତେ ଡାକିଲେ । ସେଥିରେ ମୋର ଗୌରବ, ତାଙ୍କର ଉଦାରତା । ବେତନ ପାଇଁ ମୁଁ ଯାଇ ନଥିଲି କିମ୍ବା ନିଯୁକ୍ତି ପାଇଁ ସେ ନେଇ ନଥିଲେ । ଏକ ପ୍ରକାର ଆବଶ୍ୟକତା ପୂରଣ ଉଭୟ ପକ୍ଷର ଥିଲା । ବନବିଦ୍ୟାଳୟର ଛାତ୍ର ରୂପେ କିଞ୍ଚିତ ଋଣ ପରିଶୋଧ କରିବାର ଅପ୍ରତ୍ୟାଶିତ ସୁଯୋଗ ପାଇ ମୁଁ ଆନନ୍ଦ ପାଇଲି ।

ସେତେବେଳେ ସକାଳବେଳା ସ୍କୁଲ ହେଉଥାଏ । ସକାଳୁ ଉଠି ଗାଁରୁ ତିନିମାଇଲ ଚାଲିକରି ଯାଇ ସ୍କୁଲରେ ପଢ଼ାଇ ଦିପହରକୁ ଫେରେ । ୧୯୧୬ ପୂର୍ବରୁ ଛାତ୍ର ହୋଇ ଯାହା କରୁଥିଲି, ନଅ ବର୍ଷ ପରେ ଶିକ୍ଷକ ହୋଇ ତା ପୁଣି ଆରମ୍ଭ ହେଲା । ସେତେବେଳକୁ ଗାଁ ରାସ୍ତାର କିଛି ଉନ୍ନତି ଘଟିଥିଲା । ସାଇକେଲର ଚଳଣି ମଧ୍ୟ ହୋଇଥାଏ । କିନ୍ତୁ ମୋର ବା ଆମ ଗାଁରେ କାହାର ସାଇକେଲ ନ ଥାଏ । ସ୍କୁଲରେ କାର୍ଯ୍ୟ କରିବାରେ କିଛି ଜାତୀୟ କାର୍ଯ୍ୟ କରାଯାଉଛି ବୋଲି ମନେ ହେଉଥିଲା । କାର୍ଯ୍ୟରେ ଆଗ୍ରହ ଓ ସନ୍ତୋଷ ଥାଏ ।

ମୁଁ ନୂଆ ହୋଇ କଲେଜରୁ ଆସିଥିବାରୁ ଲୁଗାପଟା ସଫା ସୁତରା ପିନ୍ଧି ଯାଉଥିଲି । ଜୋତା ମଧ୍ୟ ପିନ୍ଧୁଥିଲି । ହପ୍ତାରେ ଦୁଇଥର କ୍ଷୌର ହେଉଥିଲି । ଏ ସବୁ ପିଲାଙ୍କ ନଜରରେ ପଡିବା କଥା । ସେତେବେଳେ ସ୍କୁଲରେ ତିନିଜଣ ହରିହର ହୋଇଗଲେ । ଆଚାର୍ଯ୍ୟ ହରିହର (ଦାସ), ଗଣିତ ଶିକ୍ଷକ ହରିହର (ମହାପାତ୍ର), ଆଉ ମୁଁ ହରିହର । ପିଲାଏ ତିନିଙ୍କୁ ତିନିପ୍ରକାରେ ଚିହ୍ନଟ କରିଦେଲେ ସହଜରେ । ଜଣେ ବଡ ହରିବାବୁ (ଆଚାର୍ଯ୍ୟ ମହାଶୟ), ଜଣେ ମାଥମେଟିକ୍ସ ହରିବାବୁ, ବାକୀ ଜଣକ ଛାଁଟିସ୍ ହରିବାବୁ, ଅର୍ଥାତ୍ ମୁଁ । ପରେ ଜାଣିଲି ଭଗବତୀ ପାଣିଗ୍ରାହୀ, ଉଦୟନାଥ ଷଡଙ୍ଗୀ ପ୍ରଭୃତି ଏହି ପୃଥକୀକରଣ କରିଥିଲେ । ସେମାନେ ସ୍କୁଲ ଛାତ୍ର

Digitized by srujanika@gmail.com

ଥିଲେ । ତାଙ୍କର ସହପାଠୀ ସଦାଶିବ ମିଶ୍ର ମଧ୍ୟ ଥିଲେ । ତାଙ୍କ କ୍ଲାସରେ ମୁଁ ଇଂରେଜୀ ପଢ଼ାଉଥିଲି । ଶୁଣିଛି ମୋର ଚଞ୍ଚଳ କଥା କୁହା ସଙ୍ଗେ କୃପାସିନ୍ଧୁ ବାବୁଙ୍କର ଲମ୍ବିତ କହିବା ଭଙ୍ଗୀ ଅନୁକରଣ କରି ତାହାର ବ୍ୟଙ୍ଗ ତୁଳନାରେ ଭଗବତୀ ସହପାଠୀମାନଙ୍କୁ ଆମୋଦ ଦେଉଥିଲେ । ସେ ବଡ ହାସ୍ୟ ପ୍ରିୟ, ଅନୁକରଣ ପଟୁ; ଯାହା ସେତେବେଳେ ଥିଲା, ଅକାଳ ବିୟୋଗ ପର୍ଯ୍ୟନ୍ତ ସେହିପରି ରହିଥିଲା ।

ଜୁନ୍ ମାସରେ ପରୀକ୍ଷା ଫଳ ବାହାରିଲା । ଅନର୍ସ ଦ୍ୱିତୀୟ କ୍ଲାସ ସହିତ ପାସ୍ କରିଥାଏ । ସମସ୍ତଙ୍କର ଆନନ୍ଦ କିନ୍ତୁ ନନାଙ୍କର ଚିନ୍ତା । ମୋର ଇଚ୍ଛାଥିଲା, Servants of India Society ରେ ଯୋଗ ଦେବାପାଇଁ । ଲକ୍ଷ୍ମୀନାରାୟଣ ସାହୁ ସଭ୍ୟ ଥାଆନ୍ତି । ମୁଁ ଯୋଗ ଦେବାରେ ଅସୁବିଧା ହେବ ନାହିଁ ବୋଲି କହିଥିଲେ । ଆଉ ଏକ ଇଚ୍ଛା ହେଉଥିଲା, ପୂର୍ବ ଆଦର୍ଶରେ ସତ୍ୟବାଦୀ ସ୍କୁଲରେ ଶିକ୍ଷକତା କରିବା ପାଇଁ । ଏ ଦୁଇ ଇଚ୍ଛା ପଶ୍ଚାତରେ କେତେକାଂଶରେ ଥିଲା ଏମ୍.ଏ. ପଢ଼ିବାର ଆର୍ଥିକ ଅସମର୍ଥତାର ଆଶଙ୍କା । ନନା ଏମ୍.ଏ.କ୍ଲାସରେ ନାମ ଲେଖାର ବନ୍ଦୋବସ୍ତ କରିବାକୁ କହିବାରୁ ଆଉ ଇତଃସ୍ତତା ରହିଲା ନାହିଁ । କଟକରେ ଏମ୍.ଏ. କ୍ଲାସ ଇଂରେଜୀରେ ଥାଏ । ତେଣୁ କଟକ ଆସିଲି ବୁଝାବୁଝି କରିବା ପାଇଁ । ସ୍କୁଲର ଶିକ୍ଷକତା ଶେଷ ହେଲା । ଆଚାର୍ଯ୍ୟ ମହାଶୟଙ୍କୁ କହି, ଅନ୍ୟମାନଙ୍କଠାରୁ ବିଦାୟ ନେଇ ଆସିଲି । ଶିକ୍ଷକତାର ଯୋଗ ଆଉଥରେ ଘଟିଲା ୧୯୪୦ ମସିହାରେ କଟକ 'ଲ' କ୍ଲାସର ପାର୍ଟଟାଇମ୍ ଲେକଚରର୍ ହେବାରେ । ଓକାଲତି ସାଙ୍ଗରେ ପାଞ୍ଚ ବର୍ଷରୁ ଊର୍ଦ୍ଧ୍ୱ ତାହା ଚାଲିଥିଲା ।



Digitized by srujanika@gmail.com

# ମାୟାମୃଗ

ବି.ଏ ପରୀକ୍ଷା ୧୯୨୫ ମସିହାରେ ଦେବାପାଇଁ କଲେଜରେ ଟେଷ୍ଟ ପରୀକ୍ଷା ହୋଇଗଲା । ସେଥିରେ ଉତ୍ତୀର୍ଣ୍ଣ ହେବା ମାମୁଲି କଥା । ତାହା ପରେ ଏବଂ ୟୁନିଭରସିଟି ପରୀକ୍ଷା ହେବା ପର୍ଯ୍ୟନ୍ତ ଯେଉଁ ଦୁଇମାସ ସମୟ ମିଳେ, ସେତକ ପଢ଼ାପଢ଼ିରେ କଟାଇବାର କଥା । କିନ୍ତୁ ହଷ୍ଟେଲରେ ସେହି ସମୟରେ ସିନିୟର ପିଲା ବୋଲି ଗଣ୍ୟ ହେଉଥିବାରୁ, ଛାତ୍ରାବାସର ସାମୂହିକ ଦାୟିତ୍ୱ ଅଳ୍ପ ବହୁତ୍ ମୁଣ୍ଡ ଉପରକୁ ଆସୁଥିବାରୁ  ମୁଁ ଠିକ୍ କଲି ଯେ ପ୍ରତିଦିନ ସକାଳ ଓଳିଟା ଚୁପ୍ ହୋଇ କଲେଜ ବିଲ୍‌ଡିଂକୁ ଚାଲିଯିବି, ଗୋଟିଏ କ୍ଲାସ ରୁମ୍‌ରେ ନିରୋଳାରେ ତିନିଘଣ୍ଟା ଖଣ୍ଡେ ପଢ଼ିପାରିବି । ଏମିତି କିଛି ଦିନ କଟିବା ପରେ, ଦିନେ ଗୋଟିଏ ଘଟଣା ଘଟିଲା, ଯାହାର ତାତ୍ପର୍ଯ୍ୟ ସେତେବେଳେ କିଛି ମତେ ଜଣା ପଡି ନଥିଲା, ମାତ୍ର ତାହାର ଅଲକ୍ଷିତ ପ୍ରଭାବରେ ଭବିଷ୍ୟତ ଜୀବନ ଧନ୍ଦି ହୋଇଥିଲା । ଏବେ ପଶ୍ଚାତଦୃଷ୍ଟିରେ ଦେଖୁଛି, ମନରେ କେତେ  ସହଜରେ  ଆଶାର ସଞ୍ଚାର ହୋଇପାରେ ଏବଂ ସେହି ଆଶାର କୁହୁକରେ ମରୀଚିକା ପଛରେ ଧାଇଁବାକୁ ହୁଏ ।

ଯେଉଁ ଘଟଣା କଥା କହୁଥିଲି ତାହାର ନାୟକ ଭାଥିଜା ସାହେବ । ସେ ଇକନମିକ୍‌ସର ପ୍ରଫେସର ଥାଆନ୍ତି ରେଭେନ୍‌ସା କଲେଜରେ । ଆଇ.ଇ.ଏସ୍. (Indian Educational Service) ଅଫିସର । ପ୍ରତିଷ୍ଠାରେ ଯେପରି ଜାଜ୍ଜ୍ୱଲ୍ୟମାନ, ଦେଖିବାକୁ ସେହିପରି ସୁପୁରୁଷ । ପିଲାଙ୍କର ଖୁବ୍ ଖାତିର । ମୁଁ କଲେଜର ଦୋତାଲରେ ଗୋଟିଏ ଛୋଟ ଟ୍ୟୁଟୋରିଆଲ ରୁମ୍‌ରେ ବସି ପଢୁଥାଏ । ପ୍ରାୟ ସକାଳ ୮ଟା ବେଳ । ପିଲାଙ୍କ ବେଞ୍ଚ ଡେସ୍କରେ ନ ବସି ପ୍ରଫେସର ବସିବା ଚୌକିରେ ବସି ତାଙ୍କ ଟେବୁଲ ଉପରେ ବହିଖାତା ରଖି ପଢୁଥାଏ । ଭାଥିଜା ସାହେବ ବାରନ୍ଦାରେ ଯାଉ ଯାଉ ମତେ ଦେଖି ଘର ଭିତରକୁ ଆସି ପଚାରିଲେ ମୁଁ କାହିଁକି ଅସମୟରେ କଲେଜରେ ବସିଛି । ଠିଆ ଠିଆରେ କିଛି ସମୟ କଥାବାର୍ତ୍ତା ହେଉ ହେଉ ମୁଁ ବି.ଏ ପରୀକ୍ଷା

Digitized by srujanika@gmail.com

ପାଇଁ, ଫିଲସଫି ଓ ଇକନମିକ୍ସ ସାଙ୍ଗରେ ଇଂରେଜୀ ଅନର୍ସ ପରୀକ୍ଷା ଦେବାର କଥା ଇତ୍ୟାଦି ଜାଣି ସାରିଲା ପରେ, ହଠାତ୍ କହିଲେ, 'ପରୀକ୍ଷା ପରେ ଷ୍ଟେଟ୍ ସ୍କଲରସିପ୍ (State Scholarship) ପାଇଁ ଚେଷ୍ଟା କର, ଭଲ ହେବ ।' କଥାଟାର ଗୁରୁତ୍ୱ ମୋ ମନରେ ସେତେବେଳେ ପ୍ରବେଶ କରି ନଥିଲା । ମୁଣ୍ଡ ଉପରେ ପରୀକ୍ଷା, ଆଗ ସେ ବୋଝରୁ ଖଲାସ ମିଳୁ । ତାପରେ କଣ ହେବ ଦେଖାଯିବ ।

ପରୀକ୍ଷା ସରିଲା, ଫଳ ବାହାରିଲା, ପାଶ୍ ହେଲା, ଅନର୍ସ ମିଳିଲା କିନ୍ତୁ ସେକେଣ୍ଡ କ୍ଲାସ । ସେ ବର୍ଷ (୧୯୨୫) ପାଟନା ୟୁନିଭରସିଟିରେ ବି.ଏ. ପରୀକ୍ଷାରେ ଫିଲସଫି, ଇକ୍ନମିକ୍ସ ଗ୍ରୁପ୍ ଦେଇଥିବା ପରୀକ୍ଷାର୍ଥୀ ଏକମାତ୍ର ମୁଁ ଥିଲି । ସେଥିପାଇଁ କେତେକ ବନ୍ଧୁ ଓ ଦୁଇ ତିନି ଜଣ ପ୍ରଫେସରଙ୍କର ଟିକିଏ ଆଗ୍ରହ ଥାଏ ମୋ ପାଶ୍ ଉପରେ । ଫଳ ବାହାରିବାର କିଛି ଦିନ ପରେ ଦିନେ ଗାଁରୁ ଆସିଲି କଲେଜକୁ । ସେତେବେଳେ କଲେଜ ବନ୍ଦ ଥାଏ ଗ୍ରୀଷ୍ମଛୁଟି ଯୋଗୁ । ମୁଁ ଆସିଥାଏ ଟିକିଏ ବୁଝାବୁଝି କରିବା ପାଇଁ, କିପରି ବା କଅଣ କିଛି ସୁବିଧା କରିହେବ ଏମ୍.ଏ.ପଢ଼ିବା ପାଇଁ । ଘରର ଆର୍ଥିକ ଅବସ୍ଥା ଅସ୍ୱଚ୍ଛଳ । ସେତେବେଳେ ରେଭେନ୍ସା କଲେଜରେ ଏମ୍.ଏ. ପଢ଼ିବା ପାଇଁ ଗୋଟିଏ ୫୦ ଟଙ୍କାର ପୋଷ୍ଟଗ୍ରାଜୁଏଟ୍ ସ୍କଲରସିପ୍ ମିଳୁଥାଏ । ବି.ଏ.ପରୀକ୍ଷାରେ ଯେଉଁମାନେ ପାଶ୍ କରିଥାଆନ୍ତି; ତାଙ୍କ ଭିତରେ ଯେ ସର୍ବାଧିକ ନମ୍ବର ପାଏ, ତାକୁ ସେ ବୃତ୍ତି ମିଳିବାର କଥା । ଅସ୍ୱଚ୍ଛଳ ଅବସ୍ଥାର ଏମ୍.ଏ.ପଢ଼ା ଆଶାୟୀ ଛାତ୍ରଙ୍କ ପାଇଁ ତାହା ଏକ ଅପୂର୍ବ ସୁଯୋଗ । ସେତେବେଳେ ମାସିକ ପଚାଶ ଟଙ୍କାରେ କୌଣସି ପ୍ରକାରେ କଲେଜରେ ପଢ଼ା ଚଳିଯାଉଥିଲା । ଏବର ପିଲାଙ୍କୁ ତାହା ଅସମ୍ଭବ ଲାଗୁଥିବ ।

ଗାଁରୁ କଲେଜ ହଷ୍ଟେଲକୁ ଆସିଲି ସକାଳ ଟ୍ରେନ୍‌ରେ । ପହଞ୍ଚିଲି ଦିନ ଦିପହରେ । ଓପରଓଳି ପ୍ରାୟ ୪ଟା ବେଳେ ଦେଖାହେଲା ତ୍ରିପାଠୀ ସାହେବଙ୍କ ସାଙ୍ଗରେ । ଫିଜିକ୍ସ ପ୍ରଫେସର ଏସ୍.ସି.ତ୍ରିପାଠୀ ଆଇ.ଇ.ଏସ୍ । ସେ ଆମ ହଷ୍ଟେଲର (ପୂର୍ବ ଛାତ୍ରାବାସ) ୱାର୍ଡେନ ଥାଆନ୍ତି । ଅତି ସ୍ନେହଶୀଳ ଲୋକ; ଅମାୟିକ ବ୍ୟବହାର, ଉଚ୍ଚମନା, ଧୀରଭାଷୀ । ଦେଖିବା ମାତ୍ରେ ଦୂରରୁ ଡାକି କହିଲେ, 'ହରିହର, ତମର ବୋଧହୁଏ ପୋଷ୍ଟ ଗ୍ରାଜୁଏଟ୍ ସ୍କଲରସିପ୍ ହେବ । ମାର୍କସିଟ୍ ଆସିଯାଇଛି । ତମେ ଯାଅ, ଅଫିସରେ ଜଗନ୍ନାଥ ବାବୁଙ୍କଠାରୁ ବୁଝିଯିବ ।' ଆକାଶରୁ ଚନ୍ଦ୍ର ବାମନ ହାତରେ ପଡିଲା ପରି ଲାଗିଲା । ଗ୍ରୀଷ୍ମ ଛୁଟିରେ ଲାମ୍ବର୍ଟ (Lambert) ସାହେବ

Digitized by srujanika@gmail.com

ପ୍ରିନ୍ସପାଲ କଟକରେ ନ ଥିବାରୁ ତ୍ରିପାଠୀ ସାହେବ କଲେଜ ଦାୟିତ୍ୱରେ ଥାଆନ୍ତି । ତେଣୁ ଅଫିସ କାଗଜପତ୍ର ଦେଖିବା କଲେଜର ଅନ୍ୟାନ୍ୟ କାର୍ଯ୍ୟ ମଧ୍ୟରେ ତାଙ୍କର ପରିସରଭୁକ୍ତ । ସେହି ଅନୁସାରେ ସେ ୟୁନିଭରସିଟିରୁ ଆସିଥିବା ମାର୍କଲିଷ୍ଟ ଦେଖିଥାଆନ୍ତି । ମୋ ପ୍ରତି ଟିକିଏ ଅନୁଗ୍ରହ ଦୃଷ୍ଟି ଥିବାରୁ ସେ ମାର୍କଲିଷ୍ଟରୁ ଲକ୍ଷ୍ୟ କରିଥିଲେ ମୁଁ ବି.ଏ. ପାଶ୍ କରିବା ପିଲାଙ୍କ ମଧ୍ୟରେ ସବୁଠାରୁ ମୋଟରେ ଅଧିକ ନମ୍ବର ପାଇଛି ବୋଲି । ତାଙ୍କ ମୁହଁରୁ ଏକଥା ଶୁଣିବା ମାତ୍ରକେ ମୁଁ ଏବଂ ଆଉଜଣେ (ସେ ମଧ୍ୟ ସେଥର ବି.ଏସ୍‌ସି. ପାଶ୍ କରିଥାଆନ୍ତି) ଗଲୁ କଲେଜ ଅଫିସକୁ । ଜଗନ୍ନାଥବାବୁ (ଜଗନ୍ନାଥ ମିଶ୍ର) ଥାଆନ୍ତି କ୍ଲର୍କ ସତ, ମାତ୍ର ଠାଣି ଓ ବ୍ୟବହାରରେ ପ୍ରିନ୍ସପାଲ୍‌ଙ୍କୁ ବଳନ୍ତି । ଆଖିରେ ସବୁବେଳେ କଳାଚଷମା, ମୁହଁରେ ଫ୍ରେଞ୍ଚ୍ ଦାଢ଼ୀ, କଥା କହନ୍ତି ଓଜନଦାର ଭଙ୍ଗୀରେ, ବିଶେଷ କରି ପିଲାଙ୍କ ସାଙ୍ଗରେ । ସବୁବେଳେ ତଫାତ୍ ରଖି ଚଳନ୍ତି, ତେଣୁ ଶଙ୍କି କରି ତାଙ୍କ ପାଖକୁ ଯିବାକୁ ପଡେ । ତ୍ରିପାଠୀ ସାହେବ ତ କହି ଥାଆନ୍ତି, ଖାଲି ଟିକିଏ ସଠିକ୍ ବୁଝିଯିବାର କଥା ଅଫିସରୁ । ମୋର ବିଶେଷ ଇଚ୍ଛା ଥାଏ କେତେ ଟୋଟାଲ ମାର୍କ ପାଇଛି ଜାଣିବାକୁ । କଲେଜ ଅଫିସ ଝରକା ପାଖରେ ଠିଆହୋଇ ଅପେକ୍ଷା କଲି ଜଗନ୍ନାଥବାବୁଙ୍କ ଦୃଷ୍ଟି କେତେବେଳେ ପଡିବ । ସେ ଜାଣିଲେ, କିନ୍ତୁ ନ ଜାଣିଲା ପରି ମୁହଁ ଝରକାଆଡକୁ କରିଥାଆନ୍ତି । ମୋ' ସାଙ୍ଗରେ ଥିବା ବନ୍ଧୁ ଅଭିମାନରେ ଚାଲିଗଲେ । ମୋର ତ ଗରଜ, ଅପେକ୍ଷା ନ କରି ଚାରା କ'ଣ । ଅଫିସ ଘର ଭିତରକୁ ପଶିବାକୁ ସଙ୍କୋଚ ଲାଗୁଥାଏ, କାଳେ ଜଗନ୍ନାଥବାବୁ କଣ କହି ଦେବେ । ଅଫିସ ଭିତରେ ଆଉଜଣେ କିରାଣୀ ଥାଆନ୍ତି । ସେ କିଛି ସମୟ ପରେ ନୂଆ ବି.ଏ.ପାଶ୍ କରିବା ପିଲାଙ୍କୁ ଟିକିଏ ମାମୁଲି ଭଦ୍ରତା ଦେଖାଇବା ପାଇଁ ଝରକା ପାଖକୁ ଆସି ମତେ ଟିକିଏ ସଙ୍ଖୋଳିଲେ ଏବଂ ମୋଠାରୁ ମୋ ଉଦ୍ଦେଶ୍ୟ ବୁଝି ସାରିଲା ପରେ ଜଗନ୍ନାଥବାବୁଙ୍କୁ ଯାଇ କହିଲେ । ଜଗନ୍ନାଥବାବୁଙ୍କ ମୁହଁ ଟିକିଏ ବୁଲିଲା ଏହି ଗରିବ କୃପାଭିକ୍ଷୁଆଡକୁ । ତାଙ୍କର କୌଣସି ଅନୁଗ୍ରହ ପ୍ରାର୍ଥୀ ହୋଇଛି ଏବଂ ସେଥିପାଇଁ ବାରନ୍ଦାରେ ଅପେକ୍ଷା କରି ଠିଆ ରହିଛି,ଏଥିରେ ତାଙ୍କ ମନରେ ସନ୍ତୋଷ ହେବାର କଥା । ଅନୁକମ୍ପା ହୁଏତ ଜଣା ପଡିଥାଆନ୍ତା ସ୍ମିତହାସ୍ୟ ବା ସ୍ନିଗ୍ଧ ଚାହାଣିରେ । କିନ୍ତୁ ଫ୍ରେଞ୍ଚ୍ ନିଶଦାଢ଼ୀ ଓ କଳାଚଷମାର ବ୍ୟବଧାନ ଅତିକ୍ରମ କରିବା ମୋ ପକ୍ଷରେ ସମ୍ଭବ ହେଲା ନାହିଁ । ପଚାରିଲେ, 'କଅଣ ଚାହୁଁଛ ?' କହିଲି, 'ମାର୍କସିଟ୍ ଆସିଛି, କେତେମାର୍କ ଟିକିଏ ଜାଣନ୍ତି ।' ପୁଣି ପ୍ରଶ୍ନ, 'କାହିଁକି,

Digitized by srujanika@gmail.com

କଣ ଦରକାର ?' ଉତ୍ତରରେ କହିପକାଇଲି, 'ପୋଷ୍ଟ ଗ୍ରାଜୁଏଟ୍ ସ୍କଲରସିପ୍ ପାଇଁ ।' ଆଉ ଯାଏ କୁଆଡେ । ଫଁ କରି କହିଉଠିଲେ, 'ତମର ପୋଷ୍ଟ ଗ୍ରାଜୁଏଟ୍ ସ୍କଲରସିପ୍ ହବନାହିଁ ।' ମାର୍କଲିଷ୍ଟ କାଢ଼ିଲେ ନାହିଁ, ଦେଖାଇବା ତ ଦୂରର କଥା । ଯେପରି ନିଷ୍ପତ୍ତିସୂଚକ ଭାବରେ କହିଲେ, ସେଥିରେ ମୁଁ ଅତି ଅପ୍ରତିଭ ହୋଇଗଲି । ତଥାପି ଶେଷ ଚେଷ୍ଟାରେ କହିଲି ଯେ ତ୍ରିପାଠୀ ସାହେବ କହିଛନ୍ତି ସ୍କଲରସିପ୍ ହେବା ମାର୍କ ପାଇଛି ବୋଲି ଏବଂ ସେ କହିଥିଲେ ଅଫିସ୍‌କୁ ଆସି ବୁଝିଯିବା ପାଇଁ । ଭାବିଥିଲି, ପ୍ରିନ୍‌ସିପାଲ ଚାର୍ଜରେ ଥିବା ତ୍ରିପାଠୀ ସାହେବଙ୍କ ନାମ ନେଲେ ହୁଏତ ଟିକିଏ କୋହଳ ଧରିବ । ମାତ୍ର ଫଳ ହେଲା ବିପରୀତ । ଗର୍ଜନ ନୁହେଁ କିନ୍ତୁ ଦୃଢ଼ଭାବରେ ଜଗନ୍ନାଥବାବୁ କହିଲେ, 'ତ୍ରିପାଠୀ ସାହେବ କଅଣ କହିବେ ? ମୁଁ ତ କହୁଛି ତମର ପୋଷ୍ଟ ଗ୍ରାଜୁଏଟ୍ ସ୍କଲରସିପ୍ ହୋଇନାହିଁ ବୋଲି ।' ଏହା ଉପରେ ଆଉ କଣ କହି ହୁଅନ୍ତା ମାର୍କଲିଷ୍ଟ ଦେଖାଇବାକୁ ? ସାପ ଫଣାରେ ଆଘାତ ପାଇ ଭୂମିରେ ଲୋଟିଲା ପରି, ଅପମାନରେ ମ୍ରିୟମାଣ ହୋଇ ତଳକୁ ମୁହଁପୋତି ଫେରି ଆସିଲି । ଗାଁକୁ ନିରାଶରେ ଫେରିବାକୁ ହେବ । ଭାବିଲି, ହୁଏତ ତ୍ରିପାଠୀ ସାହେବଙ୍କର ମାର୍କଲିଷ୍ଟ ଦେଖିବାରେ କିଛି ଭୁଲ ହୋଇଥିବ । ତାହା ନ ହେଲେ ଜଗନ୍ନାଥବାବୁ ଏତେ ଦମ୍ଭରେ ମନା କରି ଦିଅନ୍ତେ ! ମନର ଦ୍ୱନ୍ଦ କଟି ଯାଇଥାଆନ୍ତା ମାର୍କ ଲିଷ୍ଟଟା ଦେଖି ପାରିଥିଲେ । କିନ୍ତୁ ସେ ତ ମୋ ହାତର କଥା ନୁହେଁ । ଜଗନ୍ନାଥବାବୁ ତ ମୂଳରୁ କାଟିଦେଲେ । ଆଶା ନିଆଁରେ ଉତ୍ସାହ ଘିଅ ପଡ଼ିଲେ ସିନା ଜଳିଉଠେ, ହେୟ ପାଣି ଝାପଟାରେ କେତେ ଆଉ ବଢ଼ିବ ? ଏବେ ଭାବୁଛି, ପରେ ମଧ୍ୟ କେତେଥର ବିଚାରିଥିଲି , କାହିଁକି ଆଉ ଟିକିଏ ଜିଦ୍ କଲି ନାହିଁ ସେ ଦିନ ମାର୍କଲିଷ୍ଟ ଦେଖାଇବା ପାଇଁ । ଆଜିକାଲି କଲେଜ ପିଲା ଏକଥା ଶୁଣିଲେ ହସିବେ, କହିବେ ସାମାନ୍ୟ କିରାଣୀ ଜଣକ ଆଗରେ ଏପରି ନତମସ୍ତକ ହୋଇ ଯେଉଁ ବି.ଏ. ପାଶ୍ କଲେଜ ପିଲା ହଟିଆସେ, ସେ କୃପାର ପାତ୍ର ଛଡା ଆଉ କ'ଣ ହୋଇପାରେ ? କଥାଟା ଅନେକାଂଶରେ ସତ ।

ଆମ କଲେଜ ପଢ଼ାବେଳର ହାୱା ଭିନ୍ନ ରକମର ଥିଲା । ୧୯୨୧, ମହାତ୍ମାଗାନ୍ଧୀଙ୍କର ଅସହଯୋଗ ଆନ୍ଦୋଳନ ଆରମ୍ଭ ବେଳକୁ ଆମର କଲେଜରେ ପ୍ରବେଶ । ସମସ୍ତ ଛାତ୍ର ସ୍ୱଦେଶପ୍ରୀତିରେ ଉଦ୍‌ବୁଦ୍ଧ, ଯଦିଓ ଅସହଯୋଗ ଡାକରାରେ କଲେଜ ଛାଡିବାର ସାହସ, ସୁବିଧା ଓ ସୁଯୋଗ ସମସ୍ତଙ୍କର ନଥିଲା । ଯେ ପଢ଼ା ଛାଡି କଂଗ୍ରେସ କାର୍ଯ୍ୟକ୍ରମକୁ ଧରିଲେ ସେ ଆମ ଆଖିରେ ତେଜସ୍ୱୀ ପୁରୁଷ, ଗୌରବର

Digitized by srujanika@gmail.com

ଅଧିକାରୀ । ସେମାନଙ୍କ ସଙ୍ଗେ ଆମର ସମ୍ପର୍କ ରହୁଥାଏ କଲେଜ ବାହାରେ, ସଭା ସମିତିରେ ଓ ଛାତ୍ର ସଙ୍ଗଠନ କ୍ଷେତ୍ରରେ । ସେମାନେ ଗଣ୍ୟ ହେଉଥାଆନ୍ତି ତାତ୍କାଳୀକ ନେତୃତ୍ୱ ପରିସର ମଧ୍ୟରେ । କଲେଜରେ ରହି ଆମ ମନରେ ଯେ ଆତ୍ମ ଅଭିମାନ ନଥିଲା ତାହା ନୁହେଁ, ଆମେ ଭାବୁଥାଉ, ଭବିଷ୍ୟତରେ ସାମାଜିକ ଓ ରାଜନୈତିକ ନେତୃତ୍ୱ ଆସିବ, ଆମପରି ପାଠପଢ଼ା କୃତିତ୍ୱ ସମ୍ପନ୍ନ ବ୍ୟକ୍ତିଙ୍କ ଉପରକୁ ଏବଂ ସେତେବେଳକୁ ହେବ ଆମ ସ୍ତର ପଢ଼ାଛାଡ ସ୍ତରଙ୍କ ଉପରେ । ଏହି ଚିନ୍ତାଧାରାର ପିଛିଳ ପାବଚ୍ଛ ଉପରେ ଆମ କଲେଜ ଯାତ୍ରା ନିବିଷ୍ଟ ଥାଏ । କେତେବେଳେ ଗୋଡ ଖସେ ଅସହଯୋଗ ଧକ୍କାରେ, ପୁଣି ଭାର ସମ୍ଭାଳି ନେଉ ଭବିଷ୍ୟତର ସମୁଜ୍ଜ୍ୱଳ ଚିତ୍ରର ଆକର୍ଷଣରେ । ଖଦଡ ପିନ୍ଧିଲେ ଦେଶସେବା ହୋଇଯିବ ଏବଂ ଗାନ୍ଧିଜୀଙ୍କ ଆନ୍ଦୋଳନରେ ଅଂଶଗ୍ରହଣ କରାହେବ, ଏହି ବିଚାରରେ କିଛି ଦିନ ଖଦଡ ଲୁଗା ପିନ୍ଧା ଚାଲେ । ବିଲାତଫେରନ୍ତା ଉଚ୍ଚପାହ୍ୟାରେ ଅଭିଷିକ୍ତ ପ୍ରଫେସରମାନଙ୍କୁ, ବିଶେଷ କରି ପରିଜା ସାହେବ ଓ ତ୍ରିପାଠୀ ସାହେବଙ୍କୁ ଦେଖିଲେ ତାଙ୍କ ଚଳଣିକୁ ଆଦର୍ଶ ରଖିବା ପାଇଁ ପୁଣି ମନରେ ଅଭିଳାଷ ଜନ୍ମେ, ଖଦଡପିନ୍ଧା ତୁଛ ମନେ ହୁଏ । ଆମେ ଦେଖୁଥାଉ, କଂଗ୍ରେସରେ ଯେଉଁମାନେ ସେତେବେଳେ ଅଗ୍ରଣୀ, ସେମାନଙ୍କ ମଧ୍ୟରୁ ଅନେକ ପରିଜା, ତ୍ରିପାଠୀ ସାହେବଙ୍କ ପାଖକୁ ବେଳେ ବେଳେ ଆସୁଥାଆନ୍ତି, ଲୁଚାଛପାରେ ସାହାଯ୍ୟ (କେବଳ ଆର୍ଥିକ ନୁହେଁ) ନେଉଥାନ୍ତି । ଆମେ ଲକ୍ଷ୍ୟ କରୁଥାଉ ସେମାନଙ୍କର ଖାତିର କଂଗ୍ରେସବାଲାଙ୍କ ପାଖରେ କମ୍ ନୁହେଁ । ଉଚ୍ଚ ଶିକ୍ଷା, ଉଚ୍ଚ ଚାକିରୀ, ଉଚ୍ଚ ଆୟ ସମାଜଚକ୍ଷୁରେ ଉଚ୍ଚ ସ୍ଥାନରେ ରହିଥାଏ । ସାହେବ ପ୍ରିନ୍‌ସିପାଲ (Lambert), ପ୍ରଫେସର (Whitlock) ଙ୍କ ତଳକୁ ଓଡିଆ ପ୍ରଫେସରଙ୍କ ଭିତରେ କେବଳ ଥାଆନ୍ତି ପରିଜା, ତ୍ରିପାଠୀ ସାହେବ ବିଲାତଫେରନ୍ତା ଓ I.E.S.ପାହ୍ୟାର । ସେଥିପାଇଁ ତାଙ୍କୁ ପରିଜା ସାହେବ, ତ୍ରିପାଠୀ ସାହେବ ବୋଲି ସମସ୍ତେ କହୁ ଥାଆନ୍ତି । ବାକୀ ସବୁ ପ୍ରଫେସର 'ବାବୁ' ଆଖ୍ୟା ମଧ୍ୟରେ । ଯଥା, ନାରାୟଣବାବୁ (ନାରାୟଣ ମିଶ୍ର, ଫିଜକ୍‌ସ), ଆର୍ତ୍ତବାବୁ (ଆର୍ତ୍ତବଲ୍ଲଭ ମହାନ୍ତି, ସଂସ୍କୃତ), କାଶୀବାବୁ (କାଶୀନାଥ ଦାସ, ସଂସ୍କୃତ) କୃତିବାସବାବୁ (କୃତିବାସ ସାମନ୍ତରାୟ, ଇଂରେଜୀ) ଇତ୍ୟାଦି । ଅଣ ଓଡିଆ I.E.S. ପାହ୍ୟାର ଯେଉଁ ୩ ଜଣ ପ୍ରଫେସର ଥିଲେ, ସେମାନେ ହେଉଛନ୍ତି ବାବା କର୍ତ୍ତାର ସିଂହ (କେମେଷ୍ଟ୍ରି), ଏଚ.ଆର.ଭାଥିଜା (ଇକନମିକ୍‌ସ) ଯଦୁନାଥ ସରକାର (ଇତିହାସ) । ତାଙ୍କ ଭିତରେ

Digitized by srujanika@gmail.com

କର୍ତ୍ତାର ସିଂହ ଓ ଭାଥିଜା ବିଲାତରୁ ପାଶ୍ କରି ପ୍ରଥମରୁ I.E.S. ହୋଇଥାଆନ୍ତି । ତେଣୁ ନିର୍ଦ୍ୱନ୍ଦ୍ୱରେ ସାହେବ ପଦବାଚ୍ୟ ଥିଲେ । ଯଦୁନାଥ ସରକାର ପ୍ରଖ୍ୟାତବାନ୍ ଐତିହାସିକ । ମୋଗଲ ସମୟର ଭାରତ ଇତିହାସ, ବିଶେଷ କରି ଆଉରଙ୍ଗଜେବଙ୍କ ଉପରେ ସନ୍ଦର୍ଭ ଓ ପୁସ୍ତକ ଲେଖି ପ୍ରତିଷ୍ଠା ଅର୍ଜନ କରିବା ପରେ I.E.S. ପାହ୍ୟାକୁ ଗଲେ । କିନ୍ତୁ ବିଲାତ ନଯାଇଥିବାରୁ ଓ ଭାରତ ବାହାର ବିଶ୍ୱବିଦ୍ୟାଳୟରୁ କୌଣସି ଡିଗ୍ରୀ ହାସଲ ନ କରିଥିବାରୁ ସେ 'ସାହେବ' ବୋଲି ଚିହ୍ନିତ ହେଉ ନଥିଲେ; ଯଦିଓ ବିଦ୍‌ବତ୍ତା ଓ ଅଧ୍ୟାପନାରେ ତାଙ୍କର ଅସାଧାରଣ କୃତିତ୍ୱ ସର୍ବବାଦୀସମ୍ମତ ଥିଲା । କଲେଜ ବାହାରେ କଂଗ୍ରେସର ଅସହଯୋଗ ଢ଼କ୍କା, ଗୋପବନ୍ଧୁ ଦାସ, ନୀଳକଣ୍ଠ ଦାଶ, ଗୋଦାବରୀଶ ମିଶ୍ର, ଗୋପବନ୍ଧୁ ଚୌଧୁରୀ, ଆଚାର୍ଯ୍ୟ ହରିହର ଦାସ, ଭାଗୀରଥି ମହାପାତ୍ର ପ୍ରଭୃତିଙ୍କ ତ୍ୟାଗ ଓ ସେବାରେ ପ୍ରଜ୍ଜ୍ୱଳିତ ଦେଶପ୍ରୀତି; କଲେଜ ଭିତରେ ପରିଜା, ତ୍ରିପାଠୀ ସାହେବଙ୍କର ଅସାମାନ୍ୟ ପ୍ରତିଷ୍ଠା ଓ ସମାଜର ସବୁ ଶ୍ରେଣୀରେ ତାଙ୍କର ଅତୁଳନୀୟ ଆଦର । ପାଖାପାଖି ଏହି ଦୁଇଚିତ୍ରର ଆକର୍ଷଣରେ ମୁଁ ଓ ମୋ ପରି ଅନେକ ପିଲା ଦୋଦୁଲ୍ୟମାନ ହେଉଥାଉ । ଆଦର୍ଶଗତ ମୌଳିକ ବିଚାରରେ ସ୍ଥିରତା ଆସୁ ନଥାଏ । ସତ୍ୟବାଦୀ ସ୍କୁଲରେ କେତେବର୍ଷ କଟାଇଥିବାରୁ ଏବଂ ଦେଶାତ୍ମବୋଧ ଓ ସମାଜ ସଂସ୍କାରର ସେ ସମୟର ମୂଳ ପୀଠ ସତ୍ୟବାଦୀ ପାଖ ଗାଁରୁ ଆସିଥିବାରୁ ମୋ ମନ ସେହିଆଡକୁ ଢ଼ଳିବା ସ୍ୱାଭାବିକ ଏବଂ ବେଶି ଢ଼ଳୁଥାଏ ମଧ୍ୟ । କିନ୍ତୁ ଅନ୍ୟ ଆକର୍ଷଣକୁ ଏଡାଇବା ପାଇଁ ତାହା ଯଥେଷ୍ଟ ଜୋର ପାଉ ନଥାଏ । ତାହାର ପ୍ରଧାନତଃ ଦୁଇଟି କାରଣ ଥିଲା । ୧୯୨୧ ମସିହା ଜୁଲାଇ ମାସଠାରୁ, ଆମେ ଯେତେବେଳେ ପ୍ରଥମ ହୋଇ କଲେଜକୁ ଆସିଲୁ, ରେଭନ୍‌ସା କଲେଜ କଟକ ଟାଉନ ଭିତରୁ ଚାଉଳିଆଗଞ୍ଜ ରେଳଷ୍ଟେସନ ପାଖ ଚକ୍ରପଡିଆରେ ନୂଆ ତୋଳା ହୋଇଥିବା ଦ୍ୱିତଳ କୋଠାକୁ ଚାଲିଆସିଥାଏ । ହଷ୍ଟେଲ ମଧ୍ୟ କଲେଜ କୋଠାର ଦୁଇ ପାର୍ଶ୍ୱରେ ଏକା ହତା ଭିତରେ । ପଢ଼ା ଓ ବସତି ଟାଉନଠାରୁ ସଂପୂର୍ଣ୍ଣ ବିଚ୍ଛିନ୍ନ । ପ୍ରାୟ ତିନିମାଇଲ ତଫାତ୍ । ସହର ସରିଥାଏ ଏକରକମ ବକ୍ସିବଜାର, ତେଲେଙ୍ଗାବଜାର, ଚାନ୍ଦିନୀଚୌକ୍ ସୀମା ମଧ୍ୟରେ । ଗତାଗତ ପାଇଁ ନଥାଏ ରିକ୍‌ସା ନା ବସ୍ । ଏକମାତ୍ର ଯାନବାହନ ଥିଲା ଘୋଡାଗାଡି । ତା ମଧ୍ୟ ବ୍ୟୟ ବହୁଳ, ଥରେ ଆସିବାକୁ ପ୍ରାୟ ଅର୍ଦ୍ଧ ଟଙ୍କା । ପାଠକ ହସୁଛନ୍ତି କି ? ଟଙ୍କେ ବୋଇଲେ, ବହୁ ସମ୍ବଳ ସେତେବେଳେ । କ୍ୱଚିତ ପିଲା କଲେଜରେ ଥିଲେ, ଯେ ସେପରି ବ୍ୟୟ

Digitized by srujanika@gmail.com

ବହନ କରିବା ପାଇଁ ସମର୍ଥ । ସାଇକେଲର ବ୍ୟବହାର ଅତି ଅଳ୍ପ ଥିଲା । ପନ୍ଦର କୋଡ଼ିଏଜଣ ଯାହାଙ୍କର ସାଇକେଲ ଥିଲା ଏବଂ କଲେଜକୁ ଯିବା ଆସିବା କରୁଥିଲେ, ସେମାନେ ବିଭବଶାଳୀ ପଂକ୍ତିରେ ଗଣ୍ୟ ହେଉଥିଲେ । ଏପରି ଅବସ୍ଥାରେ କଲେଜ ଚାଉଳିଆଗଞ୍ଜକୁ ଚାଲିଯିବାରୁ, କଲେଜ ପିଲାଏ ଏକାବେଳକେ ବିଚ୍ଛିନ୍ନ ହୋଇଗଲେ ସହରରୁ ଏବଂ ସହରର ନାଗରିକ ଜୀବନ ସ୍ପନ୍ଦନ ତାଙ୍କୁ ଆଉ ପୂର୍ବ ପରି ପ୍ରଭାବିତ କରୁନଥାଏ । ଅସହଯୋଗ ପ୍ରଥମ ପର୍ଯ୍ୟାୟରେ ଯେଉଁ ଛାତ୍ରମାନେ ଦେଶର ଆହ୍ୱାନରେ କଲେଜ ଛାଡ଼ି ଆସିଥିଲେ, ସେମାନେ ସମସ୍ତେ ଥିଲେ, ଚାଉଳିଆଗଞ୍ଜକୁ ଉଠିଆସିବା ପୂର୍ବର କଲେଜ ଛାତ୍ର । କାଠଯୋଡ଼ି କୂଳ ସ୍ୱରାଜ୍ୟ ଆଶ୍ରମ ପାଖାପାଖି ଥିଲା ସେତେବେଳେ କଲେଜ ଏବଂ କଲେଜ ହଷ୍ଟେଲ । ରାଜନୈତିକ ସବୁ ଚହଳ ଆଗ ବାଜୁଥିଲା ପିଲାଙ୍କ କାନରେ । କାଠଯୋଡ଼ି ବାଲିରେ ଯେତେ କଂଗ୍ରେସ ସଭା, ସେଥିରେ ସଂଖ୍ୟାବହୁଳ ଥିଲେ କଲେଜଛାତ୍ର । ସଭାପରର ଚର୍ଚ୍ଚା ଅଧିକ ଉଦ୍ଦୀପନାମୟ ହେଉଥିଲା କଲେଜ ହଷ୍ଟେଲ ଓ ମେସ୍‌ରେ । ସେ ସବୁ ବନ୍ଦ ହୋଇଗଲା, କଲେଜ କଚେରୀହତା ପାଖରୁ ରେଳଷ୍ଟେସନ୍ ପାଖକୁ ଉଠିଆସିବା ପରଠାରୁ । ଏକାବେଳକେ ବନ୍ଦ ନହେଲେ ମଧ୍ୟ ନାଗରିକ ଜୀବନ ସଙ୍ଗେ ସାନ୍ନିଧ୍ୟ ଓ ସଂଯୋଗ ଅତିମାତ୍ରାରେ ଶିଥିଳ ହୋଇଗଲା । ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ, ଯଦୁମଣି ମଙ୍ଗରାଜ, ରାଜକୃଷ୍ଣ ବୋଷଙ୍କ ପରି ଆଉ କୌଣସି ତେଜସ୍ୱୀ ଛାତ୍ର ୧୯୨୧ ରେ କଲେଜ ସ୍ଥାନ ପରିବର୍ତ୍ତନ ପରେ ସ୍ୱରାଜ୍ୟ ଆନ୍ଦୋଳନରେ ପ୍ରତ୍ୟକ୍ଷ ଭାଗନେଇ କଲେଜ ତ୍ୟାଗ କଲେ ନାହିଁ । ସେମାନେ ଛାଡ଼ିଥିଲେ ତା ପୂର୍ବରୁ । ମୁକ୍ତି ସଂଗ୍ରାମର ନୈବେଦ୍ୟ ଆବଦ୍ଧ ରହିଲା କଲେଜ ପିଲାଙ୍କ ବାହାରେ ଅଗଣିତ ଜନମାନସ ମଧ୍ୟରେ ।

ଦ୍ୱିତୀୟ କାରଣ ଆସିଥିଲା ସାହିତ୍ୟକ ଚର୍ଚ୍ଚା ଓ ପ୍ରଭାବରୁ । କଲେଜକୁ ଆସି ରବୀନ୍ଦ୍ରନାଥ, ରୋମାଁ ରୋଲାଁ, ଟଲଷ୍ଟୟ ପ୍ରଭୃତିଙ୍କ ଉଚ୍ଚାଙ୍ଗ ଲେଖା ପଢ଼ିବାର ସୁବିଧା ମିଳିଲା ଏବଂ ଫଳତଃ ସେହି ଦିଗରେ ଆଲୋଡ଼ନରେ ମାନସିକ ଅନୁଶୀଳନ ଓ ଜୀବନ ଆଦର୍ଶ ରଞ୍ଜିତ ହେବାର ଉପକରଣ ବନ୍ଧୁ ମେଳରେ ଠୁଳ ହେଉଥାଏ । ରାଜନୈତିକ ଧସ୍ତାଧସ୍ତି ଠାରୁ ବୈପ୍ଲବିକ ଚିନ୍ତାଶାଣିତ ସାହିତ୍ୟ ସୃଷ୍ଟି ଦେଶମାତୃକାର ପୂଜା ପାଇଁ ସଫଳ ସାମଗ୍ରୀ ହେବ ବୋଲି ମନରେ ଧାରଣା କ୍ରମଶଃ ସ୍ପଷ୍ଟ ହେଉଥାଏ । କଲେଜ ପଢ଼ା ଆରମ୍ଭରୁ ଦୈବ କ୍ରମେ ଅନ୍ନଦାଶଙ୍କର ରାୟ, ଶରତଚନ୍ଦ୍ର ମୁଖାର୍ଜୀ, ବୈକୁଣ୍ଠ ପଟ୍ଟନାୟକ, କାଳିନ୍ଦୀଚରଣ ପାଣିଗ୍ରାହୀ ସହପାଠୀଙ୍କ ସଙ୍ଗେ ଘନିଷ୍ଠତା ଆରମ୍ଭ

Digitized by srujanika@gmail.com

ହୁଏ । ସେମାନେ ଉଚ୍ଚକୋଟିର ଚିନ୍ତକ, ପାଠକ ଓ ଲେଖକ; Politics ଅପେକ୍ଷା Ideology ରେ ଅଧିକ ଆଗ୍ରହୀ । କଳ୍ପନା-ବିଳାସରେ ଚିତ୍ତ ଓ ଚେତନାରୁ ରସ ସଞ୍ଚୟନ ପାଇଁ ପ୍ରାଚ୍ୟ, ପାଶ୍ଚାତ୍ୟ; ଦେଶ, ବିଦେଶ; କନିଷ୍ଠ, ବୟସ୍କର; କୌଣସି ପାର୍ଥକ୍ୟ ସେମାନଙ୍କ ଦୃଷ୍ଟିରେ ନ ଥାଏ । ଏକା ଗୋଷ୍ଠୀ ଅନ୍ତର୍ଭୁକ୍ତ ହେବାରୁ ସେହି ଛାପ ମୋ ମନ ବୋହିବାର କଥା । ସାମାନ୍ୟ ଲେଖାଲେଖି ଆରମ୍ଭ କରିଥାଏ; କିଛି କିଛି ସାହିତ୍ୟ ପତ୍ରିକାମାନଙ୍କରେ ପ୍ରକାଶ ମଧ ହେଉଥାଏ । ସେହି ସମ୍ପର୍କରେ 'ଉତ୍କଳ ସାହିତ୍ୟ' ସମ୍ପାଦକ ଖ୍ୟାତନାମା ସାହିତ୍ୟିକ ବିଶ୍ୱନାଥ କର, 'ମୁକୁର' ସମ୍ପାଦକ ବ୍ରଜସୁନ୍ଦର ଦାସ, ଭାରତ ସେବକ ସମାଜର (Servant of India Society) ଆଜୀବନ ସଭ୍ୟ ଲକ୍ଷ୍ମୀନାରାୟଣ ସାହୁଙ୍କର ସସ୍ନେହ ସାନିଧ ମିଳିଲା । ସେମାନେ ବୟସ ଓ ପ୍ରତିଷ୍ଠାରେ ଆମଠାରୁ ବହୁ ଉପରେ ଥିଲେ । କିନ୍ତୁ ସେ ସମସ୍ତେ ଗାନ୍ଧିଜୀଙ୍କ ଅସହଯୋଗର ବିରୁଦ୍ଧ ପନ୍ଥୀ ଏବଂ ସରକାରଙ୍କ ସହିତ ସହଯୋଗ ରଖି ଅନ୍ତତଃ ପକ୍ଷେ ସରକାରଙ୍କ ସହିତ ପ୍ରତ୍ୟକ୍ଷ ବିରୋଧ ନକରି ପର୍ଯ୍ୟାୟକ୍ରମରେ ଦେଶର ସ୍ୱାଧୀନତା ଲାଭପାଇଁ ପ୍ରୟାସ କରିବା ସେମାନଙ୍କ ରାଜନୀତିର ମୁଖ୍ୟ ସୀମା ଥାଏ । ସେମାନଙ୍କ ସହିତ ସମ୍ପର୍କରେ ବେଶି ଆସୁ ଥିବାରୁ ସେମାନଙ୍କର କୋହଳ ନୀତି ଅପ୍ରତ୍ୟକ୍ଷ ଭାବରେ ମୋ ମନରେ କଂଗ୍ରେସ ଦୁନ୍ଦୁଭି ତାନର ପ୍ରତି କମ୍ପରେ କ୍ଷୀଣତା ସଞ୍ଚାର କରୁଥାଏ ।

ଏହିପରି ଦ୍ୱନ୍ଦ୍ୱଭୁକ୍ତ ମନରେ କୌଣସି ସମସ୍ୟାର ସମ୍ମୁଖୀନ ହେବାପାଇଁ ଅନ୍ତର୍ବଳର ଅଭାବ ଘଟିବା ସ୍ୱାଭାବିକ । ସେଥିପାଇଁ ଜଗନ୍ନାଥ ବାବୁଙ୍କର ଗୋଟିଏ ନାସ୍ତିବାଣୀରେ ହତୋତ୍ସାହ ହୋଇପଡିଲି । ମାର୍କଲିଷ୍ଟ ଦେଖିବା ପାଇଁ ଜିଗର କରିବାକୁ ସାହସ ପାଇଲି ନାହିଁ । ମାଟ୍ରିକୁଲେସନ ପରୀକ୍ଷାରେ ବୃତ୍ତି ପାଇଥିଲି ବୋଲି, ବି.ଏ. ପରୀକ୍ଷାରେ ପୋଷ୍ଟ ଗ୍ରାଜୁଏଟ୍ ସ୍କଲରସିପ୍ ମିଳିଛି ବୋଲି ତ୍ରିପାଠୀ ସାହେବଙ୍କଠାରୁ ଶୁଣିଲା ବେଳୁ ମନରେ ନିଶ୍ଚିତ ଆଶା ହୋଇ ଯାଇଥିଲା । କିନ୍ତୁ କଲେଜ ଅଫିସରେ ତାହାର ସାର୍ଥକତାରେ କୁଠାରାଘାତ କରିଦେଲେ ଜଗନ୍ନାଥବାବୁ । ପରବର୍ତ୍ତିକାଳରେ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠିତ ହେବା ପରେ ମୁଁ ସିଣ୍ଡିକେଟ୍, ସିନେଟ୍ ପ୍ରଭୃତିର ମେମ୍ବର ଥାଇ ବହୁବର୍ଷ ବିଶ୍ୱବିଦ୍ୟାଳୟ କାର୍ଯ୍ୟରେ ଘନିଷ୍ଠ ଓ ସକ୍ରିୟ ଅଂଶଗ୍ରହଣ କରୁଥିବାରୁ ଜଗନ୍ନାଥବାବୁ ଯେତେବେଳେ ବିଶ୍ୱବିଦ୍ୟାଳୟ ଅଫିସର ମ୍ୟାନେଜର ନିଯୁକ୍ତ ହେଲେ, ତାଙ୍କ ସହିତ ନିକଟ ସମ୍ପର୍କରେ ଆସିବାର ଅନେକ ଅବକାଶ ମିଳିଲା ।

Digitized by srujanika@gmail.com

କେବେହେଲେ ମୋ ପ୍ରତି ତାଙ୍କର କୌଣସି ଦ୍ୱିଧା ବା ଅସମ୍ମାନ ଲକ୍ଷ୍ୟ କରିନାହିଁ; ବରଂ ସବୁବେଳେ ସମ୍ଭ୍ରମର ସହିତ ସହଯୋଗ ତାଙ୍କ ଠାରୁ ପାଇଛି । ଅନ୍ୟମାନଙ୍କ ଆଗରେ ଓ ମୋ ପଶ୍ଚାତ୍‌ରେ ମୋର ସୁଖ୍ୟାତି କରୁଥିବାର ଖବର ମଧ୍ୟ ଶୁଣିଛି । କେତେଥର ମନରେ ପ୍ରଶ୍ନ ଉଠିଛି, ଏହି ସେହି ଜଗନ୍ନାଥବାବୁ ଯେ ୧୯୨୫ ମସିହାରେ ଗୋଟିଏ ବିଳମ୍ବିତ ଅପରାହ୍ନରେ ଗୋଟିଏ ପଦ ଟାଣ କଥାରେ ମୋର କେତେ ଆଶା ବୃଥାରେ ଭଗ୍ନର କରି ଦେଇଥିଲେ । 'ବୃଥାରେ' କହିବାର ଅର୍ଥ ହେଉଛି ଯେ ସେଦିନ ସେ ଯେଉଁ କହିଲେ ଯେ ମୋର ସର୍ବାଧିକ ମୋଟ ନମ୍ବର ହୋଇ ନାହିଁ ବୋଲି, ତାହା ସତ ନଥିଲା । କଥାଟା ଖୋଲି କହେ । ମନରେ ସେଥିପାଇଁ କୌଣସି କ୍ଷୋଭ ନାହିଁ କିମ୍ବା ଜଗନ୍ନାଥବାବୁଙ୍କ ପ୍ରତି କୌଣସି ଅସୂୟା ଭାବ ନାହିଁ, ବରଂ ତାହା ଦୈବ ଅଭିପ୍ରେତ ବୋଲି ମୋ ମନରେ ବଦ୍ଧ ଧାରଣା ହୋଇଛି ।

ପୋଷ୍ଟ ଗ୍ରାଜୁଏଟ୍ ସ୍କଲରସିପ୍ ହେଲା ନାହିଁ ଜାଣି ଏମ୍.ଏ. ପଢ଼ିବା ଆଶା ଛାଡ଼ିଲି ଏବଂ ଗାଁକୁ ଫେରିଲି । ବି.ଏ. ପରୀକ୍ଷା ଦେବା ପରଠାରୁ ସତ୍ୟବାଦୀ ସ୍କୁଲରେ ଆଚାର୍ଯ୍ୟ ମହାଶୟଙ୍କ (ଆଚାର୍ଯ୍ୟ ହରିହର ଦାସ) କହିବା ଅନୁସାରେ ଶିକ୍ଷକତା କରୁଥାଏ । ମନରେ ଭାଥିଜା ସାହେବ କହିଥିବା କଥା (State Scholarship)ବାରମ୍ବାର ଉଙ୍କି ମାରୁଥାଏ । ଏମ୍.ଏ. ପଢ଼ିଲେ ସେ ବିଷୟରେ ବା କଅଣ ହୁଅନ୍ତା କିନ୍ତୁ ଏମ୍.ଏ.କଥା ଯେତେବେଳେ ଅସମ୍ଭବ ହେଉଛି ଷ୍ଟେଟ୍ ସ୍କଲରସିପ୍ ଆଉ ମନରେ ଉଠୁଛି କାହିଁକି ? ଏହିପରି ମନକୁ ବୋଧଦେଇ ଦିନ କାଟୁଥାଏ, ଗାଁରୁ ପ୍ରତିଦିନ ସତ୍ୟବାଦୀ ସ୍କୁଲକୁ ତିନିମାଇଲ ବାଟ ଯା ଆସ କରୁଥାଏ । ଜୁନ୍ ମାସ ଶେଷକୁ, ଏମ୍.ଏ.ପଢ଼ିବା ପାଇଁ ଅଯାଚିତ ଭାବରେ କିଛି ଆର୍ଥିକ ସାହାଯ୍ୟର ସୂଚନା ମୋର ଶ୍ୱଶୁରଙ୍କଠାରୁ ମିଳିଲା । ତାଙ୍କୁ କଟକରେ ତାଙ୍କର ଓକିଲ ଶ୍ରୀଯୁକ୍ତ ଶରତ୍ ଚନ୍ଦ୍ର ପାଲ କେଉଁଠୁ ଖବର ପାଇ କହିଥାଆନ୍ତି ଯେ ମତେ ପୋଷ୍ଟ ଗ୍ରାଜୁଏଟ୍ ସ୍କଲରସିପ୍‌ରୁ ଚକ୍ରାନ୍ତ କରି ବଞ୍ଚିତ କରାହୋଇଛି । ସେ କହି ପଠାଇଲେ ଯେ ୫୦ ଟଙ୍କା ଯାହା ବୃତ୍ତି ମିଳିଥାଆନ୍ତା, ସେହି ଟଙ୍କା ସେ ଦୁଇବର୍ଷ ପାଇଁ ଯୋଗାଇବାର ବନ୍ଦୋବସ୍ତ କରିବେ, ଯଦି ମୁଁ ଏମ୍.ଏ. ପଢ଼ିବା ପାଇଁ ନିତାନ୍ତ ଆଗ୍ରହୀ ଥାଏ । ତାଙ୍କର ବାସ୍ତବ ଇଚ୍ଛା ଥିଲା ଯେ ମୁଁ କୌଣସି ଚାକିରୀର ସନ୍ଧାନ କରେ । ତାହାହେଲେ ଆମ ଅକୁଳାନ ପରିବାରରେ ତାଙ୍କ କନ୍ୟା ଚଳିବାର ଅଧିକ ସୁବିଧା ହୋଇ ପାରିବ । ସେ କଥା ଭାବିବା ଅପେକ୍ଷା ମୁଁ ବେଶି ଭାବୁଥିଲି ଯେଉଁ ସୂଚନା ଭାଥିଜା ସାହେବ

Digitized by srujanika@gmail.com

ଦେଇଥିଲେ । ସ୍ତ୍ରୀ ଘରକୁ ଆସିଥାଆନ୍ତି ସତ, ମାତ୍ର ବର୍ଷର ଅଧିକାଂଶ ସମୟ ଅତିବାହିତ ହେଉଥାଏ ତାଙ୍କର ପିତୃଗୃହରେ । ତେଣୁ ତାଙ୍କର ଚଳିବା ବିଷୟରେ ସୁବିଧା ଅସୁବିଧାର ଗୁରୁତ୍ୱ ମତେ ସ୍ପର୍ଶ କରୁନଥିଲା । ଆର୍ଥିକ ସାହାଯ୍ୟର ସ୍ୱୀକୃତି ମିଳିଲା ପରେ ଠିକ୍ କଲି ପାଟନା ଯାଇ ଏମ୍.ଏ. ଓ ଲ ପଢ଼ିବି । ରେଭେନ୍ସା କଲେଜ ଉପରୁ ମନ ଛାଡି ଯାଇଥାଏ । ବନ୍ଧୁ ଶରତ ଚନ୍ଦ୍ର, ଅନ୍ନଦାଶଙ୍କର ସେତେବେଳକୁ ପାଟନାରେ ପଢୁଥାଆନ୍ତି । ପୋଷ୍ଟ ଗ୍ରାଜୁଏଟ ସ୍କଲରସିପ୍ ମିଳିଥିଲେ, ରେଭେନ୍ସା କଲେଜରେ ପଢ଼ିବାର କଥା । ତା ତ ହେଲା ନାହିଁ, ଆଉ କଟକ କାହିଁକି ? ପାଟନା ଯିବା ବରଂ ଭଲ । ସେଠାରୁ ଏମ୍.ଏ.ପିଲାଏ ଷ୍ଟେଟ୍ ସ୍କଲରସିପ୍ ପାଇ ପାରୁଛନ୍ତି ବୋଲି ଖବର ପାଇଥାଏ । ପାଟନା କଲେଜରେ ପଢ଼ିବାକୁ ହେଲେ କଟକ କଲେଜ ପ୍ରିନ୍ସପାଲଙ୍କଠାରୁ ସାର୍ଟିଫିକେଟ୍ ନେବାକୁ ହେବ । କଲେଜ ଖରାଛୁଟି ପରେ ଖୋଲିଲାବେଳକୁ ଗଲି କଟକ । ଲାମ୍ବର୍ଟ ସାହେବ ପ୍ରିନ୍ସିପାଲଙ୍କ ସଙ୍ଗେ ସାକ୍ଷାତ କରି ସାର୍ଟିଫିକେଟ୍ ମାଗିଲାବେଳେ ପୁଣି ଏକ ସମସ୍ୟା । ମତେ ପଚାରିଲେ, କଟକରେ ନ ପଢ଼ି ପାଟନା କାହିଁକି ଯାଉଛ ? ଇଂରେଜୀରେ ଅନର୍ସ ନେଇ ପାଶ୍ କରିଥିବାରୁ ସେ ଧରିନେଲେ ଇଂରେଜୀରେ ମୁଁ ଏମ୍.ଏ.ପଢ଼ିବି । ରେଭେନ୍ସା କଲେଜରେ ଇଂରେଜୀରେ ଏମ୍.ଏ. କ୍ଲାସ ଖୋଲା ହୋଇଥାଏ । ଆଉ କୌଣସି ବିଷୟରେ ଏମ୍.ଏ. କ୍ଲାସ ନଥାଏ । ପାଟନା ୟୁନିଭରସିଟି ଅଧୀନରେ ଓଡିଶାରେ ଏକମାତ୍ର କଲେଜ ରେଭେନ୍ସା କଲେଜ ଏବଂ ସେଥିରେ ଏକମାତ୍ର ପୋଷ୍ଟ ଗ୍ରାଜୁଏଟ୍ କ୍ଲାସ ଇଂରେଜୀ । ଛାତ୍ରସଂଖ୍ୟା ଆଶାନୁରୂପ ନ ହେଲେ ଅନ୍ୟ ବିଷୟରେ ପୋଷ୍ଟ ଗ୍ରାଜୁଏଟ୍ କ୍ଲାସ ଖୋଲିବା ପାଇଁ ବିଶ୍ୱବିଦ୍ୟାଳୟ ଓ ସରକାରଙ୍କର ମଞ୍ଜୁରୀ ମିଳିବା କଷ୍ଟକର ହେବା ସ୍ୱାଭାବିକ । ତେଣୁ ପ୍ରିନ୍ସପାଲ ଚାହୁଁଥାଆନ୍ତି ତାଙ୍କ କଲେଜରୁ ବି.ଏ.ଛାତ୍ର ଯେଉଁମାନେ ଇଂରେଜୀରେ ଏମ୍.ଏ. ପଢ଼ିବେ ଅନ୍ତତଃ ସେମାନେ କଟକରେ ପଢ଼ନ୍ତୁ । ଏହି ପରିପ୍ରେକ୍ଷୀରେ କଅଣ ଉତ୍ତର ଦେଇ ପ୍ରିନ୍ସପାଲଙ୍କର ବିରାଗଭାଜନ ନ ହେବି ଭାବୁଥାଏ । କହିଲି, ମୁଁ ଏମ୍.ଏ. ରେ ଇକନମିକ୍ସ ନେବି । ଲ ପଢ଼ିବା କଥା କିଛି କହିଲି ନାହିଁ । କଟକ କଲେଜରେ ଲ କ୍ଲାସ ଥାଏ । ଲାମ୍ବର୍ଟ ସାହେବ ଲମ୍ବା ମୁହଁ ବାଙ୍କ ଚାହାଣିରେ ଟିକିଏ ବିସ୍ମୟ ପ୍ରକାଶ କଲେ, କହିଲେ, ଏଠା କଲେଜରେ ପଢ଼ିଲେ ହୁଏତ ଭଲ ହୋଇଥାଆନ୍ତା (It would have been perhaps better for you to take English here.) ଏ କଥାର ଇଙ୍ଗିତ ପୂରା ଧରିପାରିଲି ନାହିଁ ।

Digitized by srujanika@gmail.com

ସେ ଯେ ପୋଷ୍ଟଗ୍ରାଜୁଏଟ୍ ସ୍କଲରସିପକୁ ଲକ୍ଷ୍ୟ କରି ଏ କଥା କହିଲେ, ତା ବା କେମିତି ବୁଝନ୍ତି ? ସେ ବିଷୟରେ ତ ମୋ ମନରେ ପୂର୍ଣ୍ଣଚ୍ଛେଦ ପଡିଯାଇଥାଏ, ଜଗନ୍ନାଥଙ୍କବାବୁଙ୍କ ନାସ୍ତିବାଣୀ ଶୁଣିଲା ଦିନୁ । ପଛଘୁଞ୍ଚା ବୁଦ୍ଧି ଜୀବନରେ କେତେ ଅଡୁଆ ନ ଆଣିଛି । ଆଉ ଟିକିଏ ପ୍ରୟାସ କରିଥିଲେ ହୁଏତ ପ୍ରିନ୍‌ସିପାଲଙ୍କଠାରୁ ସଠିକ ଜାଣିପାରି ଥାଆନ୍ତି ସ୍କଲରସିପ୍ ମିଳିବା କଥା । ସେଥିରେ ତୁଟି ଯାଇଥାନ୍ତା ଭବିଷ୍ୟତର ଏକ ମହାନ୍ ଦ୍ୱନ୍ଦ୍ୱ, ଆଉ ରକ୍ଷା ମିଳିଥାଆନ୍ତା ଇକନମିକ୍‌ସରେ ଏମ୍.ଏ. ପଢ଼ିବା ମିଛ କହି ଅବ୍ୟାହତି ପାଇବାରୁ । ପ୍ରିନ୍‌ସିପାଲ ସାହେବ ଲୋକ, ଗମ୍ଭୀର ପ୍ରକୃତି । ଚାରିବର୍ଷ ପଢ଼ିବା ମଧ୍ୟରେ ହସିବାର ତାଙ୍କୁ କେବେ ଦେଖି ନ ଥିଲୁ । କଥା କହନ୍ତି ଅଳ୍ପ, ଚାହାନ୍ତି ବେଶି ତଳକୁ । ତାଙ୍କର ବା କି ଗରଜ ଥିଲା ମତେ ଆଉଟିକିଏ ବଳେଇବା ପାଇଁ ବା ସ୍କଲରସିପ୍ କଥା ଖୋଲାଖୋଲି କହି ପ୍ରଲୋଭନ ଦେଖାଇବାକୁ । ଭାରତବର୍ଷରେ ସବୁ ଇଂରେଜ ଲୋକ ଭାବୁଥିଲେ ସେମାନେ ଶାସକ ଜାତି ଏବଂ ସବୁ କ୍ଷେତ୍ରରେ ଦେଶୀ ଲୋକଙ୍କଠାରୁ ବ୍ୟବଧାନ ରଖିବାରେ ସେମାନଙ୍କ ଅଭିମାନ ନ୍ୟସ୍ତ ଥିଲା । ଅପରିଚିତ ହେଲେ ମଧ, ଉଚ୍ଚସ୍ଥଳ ଅଧିକାରୀ ନିଜ ଦେଶ ଲୋକଙ୍କ ଠାରୁ ସହାନୁଭୂତି ମିଳିବା ସହଜସାଧ । ବିଦେଶୀ ଲୋକ, ବିଶେଷ କରି ପ୍ରଶାସନିକ ଇଂରେଜ ଲୋକଙ୍କର ସାନିଧ ପାଇବା ପ୍ରାୟ ଅସମ୍ଭବ । ଆମ ସୁଖ ଦୁଃଖରେ ଭାଗୀ ହେବାର ମନୋବୃତ୍ତି ବା ତାଙ୍କର କାହିଁକି ହୁଅନ୍ତା । ଶାସକ, ଶାସିତଙ୍କର ଦୁଇ ସୋପାନ ସର୍ବତ୍ର ଓ ସର୍ବଦା ଭିନ୍ନ । ସୁତରାଂ ଲାମ୍ବର୍ଟ ସାହେବ ପ୍ରିନ୍‌ସିପାଲ ଯେତିକି କହିଲେ ନଚଳେ ସେତିକିରେ ତୁନି ରହିଲେ ଏବଂ ମୋ ଭାଗ୍ୟ ମୁଁ ଆଦରିବାକୁ ଛାଡିଦେଇ ସାର୍ଟିଫିକେଟ୍ ହାତରେ ଲେଖିଦେଲେ ।

କଥା କିନ୍ତୁ ସେଥିରେ ସରିଲା ନାହିଁ । ପାଟନା ଯାଇ ପାଟନା କଲେଜରେ ଇଂରେଜୀ ଏମ୍.ଏ.କ୍ଲାସରେ ନାମ ଲେଖାଇ ହଷ୍ଟେଲରେ ରହିବାର ପ୍ରାୟ ମାସାଧିକ କାଳ ପରେ ଖଣ୍ଡିଏ ପୋଷ୍ଟକାର୍ଡ ପାଇଲି । ଚିଠିଟି ରେଭେନ୍‌ସା କଲେଜରୁ ଗାଁ ଠିକଣାରେ ଯାଇ ପାଟନା ଆସିଥାଏ । ଦସ୍ତଖତ ପ୍ରିନ୍‌ସିପାଲ ଲାମ୍ବର୍ଟ ସାହେବଙ୍କର । ଲେଖାଥାଏ, ତମକୁ ପୋଷ୍ଟ ଗ୍ରାଜୁଏଟ୍ ସ୍କଲରସିପ୍ ମିଳିଛି । ତମେ ଏମ୍.ଏ. କ୍ଲାସରେ କେବେ ଜଏନ କରିବ ଶୀଘ୍ର ଜଣାଇବ । ଚିଠିପାଇ ମୁଁ ଅବାକ୍ । ମନରେ ଯେଉଁ ଅପମାନର ବୋଝ ଲୁଚି ରହିଥିଲା, ସବୁ ମିଳେଇଗଲା । ତା'ହେଲେ ତ୍ରିପାଠୀ ସାହେବଙ୍କ କଥା ସତ, ଜଗନ୍ନାଥ ବାବୁ ମିଛରେ ଧୂଆଁ ବାଣ ମାରିଥିଲେ । ଏତେବେଳେ ବୁଝିଲି

Digitized by srujanika@gmail.com

ଲାମ୍ବର୍ଟ ସାହେବ କାହିଁକି କହିଥିଲେ କଟକରେ ଏମ୍.ଏ.ପଢ଼ିଲେ ମତେ ସୁବିଧା ମିଳି ପାରନ୍ତା । ଜଗନ୍ନାଥ ବାବୁ ମତେ ଭୁଆଁ ବୁଲାଇଲେ କାହିଁକି ? ମୋ ଉପରେ ଦାଉସାଧିବାର ତ କିଛି କାରଣ ନଥିଲା । କଲେଜ ପଢ଼ିବା ସମୟ ମଧ୍ୟରେ ତାଙ୍କ ସଙ୍ଗେ କେବେହେଲେ ଖଟକା ଲାଗୁନଥିଲା । ଆମ ହଷ୍ଟେଲ ସୁପରିଣ୍ଟେଣ୍ଡେଣ୍ଟ ଆର୍ତ୍ତବାବୁଙ୍କ (ଆର୍ତ୍ତବଲ୍ଲଭ ମହାନ୍ତି, ସୁ ବିଖ୍ୟାତ ପ୍ରାଚୀନ ଓଡିଆ ସାହିତ୍ୟ ଗବେଷକ) ସଙ୍ଗେ ତାଙ୍କର ବିଶେଷ ବନ୍ଧୁତ୍ୱ ଥାଏ, ତାଙ୍କ ପାଖକୁ ଅନେକ ସମୟରେ ସେ ଆସୁଥାଆନ୍ତି । ବିଶେଷ କରି ପ୍ରତି ରବିବାର ଦ୍ୱିପହରକୁ ଆର୍ତ୍ତବାବୁଙ୍କ ବାରନ୍ଦାରେ (ଆମ ହଷ୍ଟେଲ ଉପର ମହଲାରେ) ପଶା ଖେଳର ଆସର ବସେ । ସେଥିରେ ନିୟମିତ ଯୋଗ ଦେଉଥିଲେ ପ୍ରଫେସର କୃତ୍ତିବାସ ବାବୁ (ସାମନ୍ତରାୟ), ପ୍ରଫେସର ବିପିନବିହାରୀ ରାୟ, ଆଉ ଜଗନ୍ନାଥବାବୁ । ତେଣୁ କଲେଜ ଛଡା, ବେଳେବେଳେ ହଷ୍ଟେଲରେ ତାଙ୍କ ସଙ୍ଗେ ଦେଖାହୁଏ, ଭଲମନ୍ଦ ପଚାରନ୍ତି । ଛାତ୍ର ମହଲରେ କିଛି ଆଗଚଲା ନେତାଗିରି ହାସଲ କରିଥିବାରୁ ଓପର ମହଲରେ ଅଜଣା ନଥିଲି । ପଢ଼ାପଢ଼ିରେ ଅଧମ, ବ୍ୟବହାରରେ କଳିହୁଡା ନଥାଇ ସମସ୍ତଙ୍କ ପାଖରେ କିଛି ସୁଖ୍ୟାତି ଯେ ନଥିଲା ତାହା ନୁହେଁ । ଭବିଷ୍ୟତରେ ଯେଉଁ ପିଲାମାନଙ୍କର ଭଲ କରିବାର ଆଶା ଅର୍ଥାତ୍ ପ୍ରଫେସର ହୋଇପାରିବାର ସମ୍ଭାବନା ଥାଏ, ସେପରି ପିଲାଙ୍କ ପ୍ରତି କଲେଜ ଅଫିସ ଷ୍ଟାଫ୍ ବେଖାତିର ବା ଅବହେଳା କରୁ ନଥାନ୍ତି, ବିଶେଷତଃ ବି.ଏ.ର ଶେଷବର୍ଷ ଆଡକୁ । ଏ ସବୁ ଭାବି, ମୁଁ ଧନ୍ଦାରେ ପଡୁଥାଏ ଜଗନ୍ନାଥବାବୁ କାହିଁକି ମତେ ମୂଳରୁ ନାହିଁ କରିଦେଇ ଏତେ ହରବରରେ ପକାଇଲେ । ଯାହା ହେଉ ବର୍ତ୍ତମାନ ପ୍ରିନ୍ସପାଲଙ୍କ ପୋଷ୍ଟକାର୍ଡ ଆସିଯିବାରୁ ମନର ଓରମାନ କଟିଗଲା ଏବଂ ସଙ୍ଗେ ସଙ୍ଗେ ବିନମ୍ର ଜବାବ ଲେଖିଲି ଯେ ମୋର ଆର୍ଥିକ ଅବସ୍ଥା ସ୍ୱଚ୍ଛଳ ନୁହେଁ; ମୁଁ କଷ୍ଟର ସହିତ ଅନ୍ୟର ସାହାଯ୍ୟ ଉପରେ ନିର୍ଭର କରି ପାଟନା କଲେଜରେ ଇଂରେଜୀ ଏମ୍.ଏ.ରେ ଯୋଗ ଦେଇଛି । ମତେ ଏଠାରେ (ପାଟନାରେ) ସ୍କଲରସିପ୍ ବ୍ୟବହାର କରିବା ପାଇଁ ଦିଆଯାଉ । ଯଦି ଆବଶ୍ୟକ ମନେ କରାଯାଏ, ମୁଁ କଟକ ଯାଇ କଲେଜରେ ଏମ୍.ଏ. ପଢ଼ାରେ ଯୋଗ ଦେବାପାଇଁ ଇଚ୍ଛୁକ ଓ ପ୍ରସ୍ତୁତ ଅଛି । ଉତ୍ତର ପଠାଇ, ଅପେକ୍ଷା କରି ରହିଲି ପ୍ରତ୍ୟୁତ୍ତର ପାଇଁ । ପାଟନାରେ ବନ୍ଧୁମାନେ ଜାଣିଗଲେ ମୋର ପୋଷ୍ଟ ଗ୍ରାଜୁଏଟ୍ ସ୍କଲରସିପ୍ କଥା । ସେ ସମୟରେ ୫୦ ଟଙ୍କା କେବଳ ଆଖିଦୃଶିଆ ନଥାଏ, ମର୍ଯ୍ୟାଦା ସେଥିରେ ମଧ୍ୟ ଅଙ୍ଗୀଭୂତ ।

Digitized by srujanika@gmail.com

ସପ୍ତାହ ବିତିଲା, ମାସ ଗଡିଲା, କିଛି ଖବର ଆଉ ଆସିଲା ନାହିଁ । ଚତୁରତା ମୋର ଅଭାବ ଥିଲା । ନଚେତ୍ ପାଟନା କଲେଜ ପ୍ରିନ୍‌ସିପାଲ ଜ୍ୟାକେସନ୍ ସାହେବଙ୍କୁ ଧରିଥିଲେ, ସେ ସାହାଯ୍ୟ କରିପାରି ଥାଆନ୍ତେ— ତାଙ୍କ କଥା ଲାମ୍ବର୍ଟ ସାହେବ ରକ୍ଷାକରି ପାଟନା କଲେଜରେ ମତେ ବୃତ୍ତିଟି ଦେଇ ଥାଆନ୍ତେ । ଏହି ସମ୍ଭାବନା ପରେ ଜଣାପଡିଲା ଇଂରାଜୀ ପ୍ରଫେସର ଅକ୍ରୁରଲନି ସାହେବଙ୍କ କଥାରୁ । ସେତେବେଳକୁ ହାତଗୁଡ କହୁଣୀକୁ ଗଡିଯାଇଥାଏ । ପଛବୁଦ୍ଧିଆର ଭାଗ୍ୟ ସବୁବେଳେ ହୀନିମାନ । ମାସକ ଉପରେ ଆଶାର ଅପେକ୍ଷାରେ ପ୍ରତି-ଉତ୍ତରକୁ ଚାହିଁ କଟାଇଲା ପରେ ପୂଜା ଛୁଟି ଆସିଲା । ପାଟନାରୁ ଗାଁକୁ ଫେରିବା ବାଟରେ କଟକରେ ଓହ୍ଲାଇଲି– କଅଣ ହେଲା ବୁଝିବାକୁ ।

ଫିଜିକ୍‌ସ ପ୍ରଫେସର ନାରଣବାବୁଙ୍କ (ନାରାୟଣ ମିଶ୍ର) ପାଖକୁ ଯାଇ ସବୁକଥା କହି ତାଙ୍କ ସାହାଯ୍ୟ ପ୍ରାର୍ଥୀ ହେଲି । ସେ ପଶ୍ଚିମ ପଟ ଛାତ୍ରାବାସର ସୁପରିଣ୍ଟେଣ୍ଡେଣ୍ଟ ଥାଆନ୍ତି । ପିଲାମାନଙ୍କ ପ୍ରତି ସବୁବେଳେ ତାଙ୍କର ସ୍ନେହ, ସହାନୁଭୂତି । ସାହାଯ୍ୟ କରିବାରେ ଅକୁଣ୍ଠ । ଅଭାବ ଅସୁବିଧାରେ ଯେ କେହିପିଲା ତାଙ୍କ ପାଖରେ ଠିଆ ହେଲେ ସେ ଯତ୍‌ପରୋନାସ୍ତି ସାହାଯ୍ୟ କରିଥାଆନ୍ତି । ମୁଁ ଯେତେବେଳେ ପ୍ରଥମେ କଲେଜରେ ନାମ ଲେଖାଇ ପୂର୍ବ ପଟ ହଷ୍ଟେଲରେ ରହିଲି, ସେତେବେଳେ ନାରଣବାବୁ ଆମ ହଷ୍ଟେଲରେ ଆସିଷ୍ଟାଣ୍ଟ ସୁପରିଣ୍ଟେଣ୍ଡେଣ୍ଟ ଥିଲେ ଏବଂ ତଳ ମହଲାରେ ଆମ ରୁମ୍‌କୁ (ଏକନମ୍ବର) ଲାଗି ରହୁଥିଲେ । ଏକେ ସ୍ନେହଶୀଳ ଲୋକ, ଦ୍ୱିତୀୟରେ ଭଲ ଜଣାଶୁଣା ଥିଲା । ତେଣୁ ତାଙ୍କ ପାଖକୁ ଯିବାକୁ ମନରେ ଦ୍ୱିଧା ନଥିଲା । କଲେଜ ଅଫିସର ଖବର ବୁଝି ମତେ ସନ୍ଧ୍ୟାବେଳକୁ କହିବେ ବୋଲି ଭରସା ପାଇ ମୁଁ ସେହି ଅପେକ୍ଷାରେ ଦିନଟି କଟାଇ ପୁଣି ତାଙ୍କ ପାଖରେ ପହଞ୍ଚିଲି । ଯାହା ଶୁଣିଲି ତାହା ବିଚିତ୍ର ।

ସେ ବର୍ଷ ରେଭେନ୍‌ସା କଲେଜରୁ ବି.ଏ. ପରୀକ୍ଷା ପାଶ୍ କରିଥିବା ଛାତ୍ରମାନଙ୍କ ମଧ୍ୟରେ ମୋର ସର୍ବାଧିକ ସର୍ବମୋଟ ନମ୍ବର ଥିଲା । ତା ତଳକୁ ଥିଲା ସହପାଠୀ ନଟବର ସାହୁଙ୍କର । ତୃତୀୟ ସ୍ଥାନରେ ଥିଲେ ହରିହର ମିଶ୍ର । କୌଣସି କାରଣରୁ ନଟବର ସାହୁଙ୍କ ପ୍ରତି ଜଗନ୍ନାଥବାବୁଙ୍କର କରୁଣା ଦୃଷ୍ଟି ଥିଲା । ନଟବର ବି.ଏ.ପାଶ୍ ପରେ ଉପାର୍ଜନ ପାଇଁ କୌଣସି କାର୍ଯ୍ୟର ସନ୍ଧାନ ନେବା ସ୍ଥିର କରିଥିଲେ । ଆଉ ଅଧିକ ପଢ଼ିବାର ସ୍ପୃହା ବା ସୁବିଧା ନ ଥିଲା । ଜଗନ୍ନାଥବାବୁଙ୍କର ଇଚ୍ଛା

Digitized by srujanika@gmail.com

ହେଲା, ଯଦି ପୋଷ୍ଟ ଗ୍ରାଜୁଏଟ୍ ସ୍କଲରସିପ୍ ତାଙ୍କର ହୋଇପାରେ, ତେବେ ନଟବର ଏମ୍.ଏ. ପଢ଼ିପାରନ୍ତେ । କିନ୍ତୁ ପ୍ରଥମ ସ୍ଥାନରେ ଥିବା ଛାତ୍ର କୌଣସି କାରଣରୁ ବୃତ୍ତି ପାଇବାରୁ କଟି ନଗଲେ, ଦ୍ୱିତୀୟ ଛାତ୍ର ବା ପାଇବ କିପରି ? ଜଗନ୍ନାଥବାବୁଙ୍କର ଧାରଣା ଥିଲା ମୋ ପକ୍ଷରେ ସ୍କଲରସିପ୍ ସେତେ ଜରୁରୀ ନୁହେଁ; ନ ହେଲେ ମଧ ମୋର ଚଳିଯିବ ଏବଂ ଏମ୍.ଏ. ପଢ଼ାରେ ବାଧା ଘଟିବ ନାହିଁ । ଏ ଭ୍ରମଧାରଣା ତାଙ୍କର କିପରି ହେଲା କହିପାରିବି ନାହିଁ । ଏପରି ଅନୁମାନ ଅନ୍ୟ କାହାରି କାହାରି ମଧ ଥିଲା ବୋଲି ମୁଁ ପରେ ଜାଣିଲି । ଏବେ ଜଣେ ଘନିଷ୍ଠ ବନ୍ଧୁ ଦିନେ କହିଲେ ଯେ ପ୍ରଥମେ ସେ ମୋତେ ଯେତେବେଳେ କଲେଜ ଫାଷ୍ଟ ଇଅରରେ ଦେଖନ୍ତି ତାଙ୍କର ଧାରଣା ହୋଇଥିଲା ଯେ ମୁଁ କୌଣସି ସ୍ୱଚ୍ଛଳ ପରିବାରରୁ ଆସିଛି । ଜଗନ୍ନାଥ ବାବୁଙ୍କର ସେହିପରି ଅହେତୁକ ଧାରଣା ହୁଏତ ହୋଇଥିଲା । ସେ ଯାହାହେଉ, ମୋ ପ୍ରତି କୌଣସି ବିଦ୍ୱେଷ ରଖି ନୁହେଁ, କେବଳ ନଟବରଙ୍କୁ ଅଯାଚିତ ସାହାଯ୍ୟ କରିବା ଉଦ୍ଦେଶ୍ୟରେ ମତେ ସେ ପ୍ରଥମରୁ ହୁରୁଡାଇ ଦେଇଥିଲେ । କିନ୍ତୁ ବୃତ୍ତି ମିଳିପାରିବ ବୋଲି ଚିଠି କଲେଜ ଅଫିସରୁ ମୋ ପାଖକୁ ଯାଇଥିଲା ଗତାନୁ ଗତିକ ଭାବରେ । ତାକୁ ଅଟକାଇବା ବା ବଦଳାଇବା ପ୍ରିନ୍ସିପାଲଙ୍କ ବିନା ସମ୍ମତିରେ ସମ୍ଭବ ହୁଅନ୍ତା ନାହିଁ । ତେଣୁ ରେଜେଷ୍ଟରୀ ଚିଠି ଯାଇଥିଲା ମୋ ଠିକଣାରେ । ପାଟନା କଲେଜରେ ଇଂରାଜୀ ଏମ୍.ଏ.କ୍ଲାସରେ ଯୋଗଦେଇ ସାରିଛି ବୋଲି ଯେତେବେଳେ ମୋ ଉତ୍ତରରୁ ଜଣାପଡିଲା, ଅଫିସ ନୋଟ ସହିତ ମୋ ଉତ୍ତର ପ୍ରିନ୍ସପାଲଙ୍କ ପାଖରେ ଦିଆଗଲା । ସେଥିରେ ଉଲ୍ଲେଖ ହେଲା ଯେ ମୁଁ ନିଜ ସମ୍ବଳରୁ ଏତେ ଦୂରବାଟ ପାଟନା କଲେଜକୁ ଯେତେବେଳେ ଯାଇ ପାରିଛି ଏବଂ ଅଧିକନ୍ତୁ କଟକରେ ଇଂରାଜୀରେ ଏମ୍.ଏ.କ୍ଲାସ ଥିବା ସତ୍ତ୍ୱେ, ସେହି ବିଷୟ ପଢ଼ିବା ପାଇଁ ପାଟନାକୁ ଯାଇଛି, ମୋ ପକ୍ଷରେ ସ୍କଲରସିପ୍‌ର ଆବଶ୍ୟକତା ନାହିଁ । ଦ୍ୱିତୀୟ ସ୍ଥାନ ଅଧିକାରୀଙ୍କୁ ସେ ବୃତ୍ତି ଦେବା ବାଞ୍ଛନୀୟ ହେବ । ଲାମ୍ବର୍ଟ ସାହେବ ସେଥିରେ ସ୍ୱୀକୃତି ଦେଲେ । ବୋଧହୁଏ ତାଙ୍କ ମନେ ପଡିଥିବ ତାଙ୍କ ଠାରୁ ସାର୍ଟିଫିକେଟ୍ ନେବା ବେଳର କଥା । ସେ ଧରି ନେଇଥିବେ ଯେ ତାଙ୍କର ସୂଚନା ଗ୍ରାହ୍ୟ ନ କରି ମୁଁ କଟକ କଲେଜକୁ ଉପେକ୍ଷା କରି ପାଟନା ଚାଲିଯାଇଥିଲି । ମୋ ଉତ୍ତରରେ ମୁଁ ଯେ ଲେଖିଥିଲି ଅନ୍ୟର ସାହାଯ୍ୟ ଉପରେ ନିର୍ଭର ରଖି ମୁଁ ପାଟନା ଆସିଛି, ସେ କଥା କାହାରି ଦୃଷ୍ଟିକୁ ଆସିଲା ନାହିଁ ।

Digitized by srujanika@gmail.com

ନଟବର ସାହୁ କିନ୍ତୁ ଶେଷରେ ସ୍ଥିର କଲେ ଏମ୍.ଏ.ପଢ଼ିବେ ନାହିଁ, ଚାକିରୀର ସନ୍ଧାନ ନେବେ ଖାଲି 'ଲ'କ୍ଲାସରେ ନାମ ଲେଖାଇ । ପାଇଲେ ମଧ । କାନୁନଗୋ, ସବ୍‌ଡେପୁଟି ମାଜିଷ୍ଟ୍ରେଟ୍, ପରେ ଆଇ.ଏ.ଏସ୍. ପାହିଆରେ ସେଟେଲମେଣ୍ଟ ଅଫିସର ରୂପେ କାର୍ଯ୍ୟକରି ଅବସର ଗ୍ରହଣ କରିଥିଲେ । ମୋ ସହିତ ସହୃଦୟତା କଲେଜବେଳୁ ଅବିଚ୍ଛିନ୍ନ ରହିଥିଲା । ଏକା ହଷ୍ଟେଲରେ, ଏକା ମେସରେ, ଏକା କ୍ଲାସରେ ଚାରିବର୍ଷ କଟାଇବା ପରେ ଯେଉଁ ସୌହାର୍ଦ୍ଦ୍ୟ ଜନ୍ମିଥିଲା, ତାହା ପର ପଚାଶବର୍ଷରେ ମଧ ମଳିନ ହୋଇ ନଥିଲା, ତାଙ୍କ ବିୟୋଗ ପର୍ଯ୍ୟନ୍ତ ।

ନଟବରଙ୍କ ପଛକୁ ଥିଲେ ବନ୍ଧୁବର ହରିହର (ମିଶ୍ର) । ସେ ଏମ୍.ଏ. କ୍ଲାସରେ ଯୋଗ ଦେଇଥାଆନ୍ତି । ସ୍କଲରସିପ୍ ମିଳିଲା ତାଙ୍କୁ । ଚେଷ୍ଟା ହେଲା କାହାପାଇଁ, ମିଳିଲା କାହାକୁ ! ମୁଁ ରହିଗଲି ଶୂନ୍ୟରେ । ଆମେ ଦୁଇ ହରିହର ପରସ୍ପରର ଅତି ପ୍ରିୟ । 'ମିତ' ଡକାଡକି ହେଉ । ମତେ ସ୍କଲରସିପ୍ ନ ମିଳିବାର କୌଣସି ଅପଚେଷ୍ଟା ସେ କରି ନଥିଲେ । ମୋ ପକ୍ଷରେ ଯାହା ହେଲା ମାୟାମୃଗ, ତାଙ୍କର ସେ ହେଲା ସହଜ ଶିକାର ।



Digitized by srujanika@gmail.com

# ପାଟନା କଲେଜ

ପୋଷ୍ଟ ଗ୍ରାଜୁଏଟ ବୃତ୍ତି ପାଇବାରେ ନିରାଶ ହେବାରୁ ପାଟନା ଗଲି । ସେଠାରେ ଇଂରେଜୀରେ ଏମ୍.ଏ.କ୍ଲାସରେ ନାମ ଲେଖାଇଲି । ଇକ୍‌ନମିକ୍‌ସରେ ପଢ଼ିବାର ଇଚ୍ଛା ଥିଲା । ମାତ୍ର ଅକ୍‌ରଲୋନି ସାହେବ ସେତେବେଳକୁ କଟକରୁ ପାଟନା କଲେଜକୁ ବଦଳି ହୋଇ ଯାଇଥିବାରୁ ଏବଂ ସେ କହିବାରୁ ଇଂରେଜୀ ନେଲି । ଆର୍ମର ସାହେବ, ନିରଞ୍ଜନ ନିୟୋଗୀ ଇଂରାଜୀର ଅନ୍ୟ ଅଧ୍ୟାପକ ଥାଆନ୍ତି । ଆଉ ଜଣେ ସାହେବ—ଦିଲ୍ ସାହେବ ପରେ ଆସିଲେ । ପ୍ରଥମରୁ ହଷ୍ଟେଲରେ ସ୍ଥାନ ମିଳିଲା ନାହିଁ । କଲେଜ ନିକଟରେ ଗୋଟିଏ ଭଡାଘରେ ଗୋପାଳ (ଗୋପାଳଚନ୍ଦ୍ର ଦାସ), ପଦାରବିନ୍ଦ ମହାନ୍ତି ଓ ମୁଁ ରହିଲୁ । ଗୋପାଳ କେବଳ ଲ' ପଢ଼ିଲେ । ପଦାରବିନ୍ଦ ଫିଜିକ୍‌ସ ନେଲେ । କିଛି ଦିନ ପରେ ପାଟନା କଲେଜ ମହମିଡାନ ହଷ୍ଟେଲରେ ମତେ ଗୋଟିଏ ରୁମ୍ ମିଳିବାରୁ ସେଠାକୁ ଚାଲିଗଲି । ଗୋପାଳ ଓ ପଦାରବିନ୍ଦ ଭଡାଘରେ ରହିଲେ । ପାଟନା କଲେଜର ଦୁଇଟି ହଷ୍ଟେଲ ଥାଏ । ମିଣ୍ଟୋ ହିନ୍ଦୁ ହଷ୍ଟେଲ, ମିଣ୍ଟୋ ମହମିଡାନ ହଷ୍ଟେଲ । ଦୁଇଟି ପାଖାପାଖି । ବିହାରରେ ଜାତିଆଣ ରକ୍ଷଣଶୀଳତା ବେଶି । ମହମିଡାନ୍ ହଷ୍ଟେଲରେ ହିନ୍ଦୁ ରହିପାରୁଥିଲେ, କିନ୍ତୁ ମୁସଲମାନ ଛାତ୍ର ହିନ୍ଦୁ ହଷ୍ଟେଲରେ ରହିବା ସମ୍ଭବ ନଥିଲା । ମହମିଡାନ ହଷ୍ଟେଲରେ ଆମେ ପାଞ୍ଚଜଣ ହିନ୍ଦୁ ଥିଲୁ । ସମସ୍ତେ ଓଡିଶାର । ଅନ୍ନଦା ସେଠାରେ ଆଗରୁ ରହୁଥିଲେ ବି.ଏ. ପଢ଼ିବା ସମୟରୁ । କୃପାସିନ୍ଧୁ ମିଶ୍ର ମଧ୍ୟ ଥିଲେ । ମୋ ଯିବା ବର୍ଷ ପ୍ରାଣକୃଷ୍ଣ ନନ୍ଦ, ହରିଶଚନ୍ଦ୍ର ବଡାଳ କେମେଷ୍ଟ୍ରିରେ ଏମ୍.ଏସ୍‌ସି. ରେ ନାମ ଲେଖି ସେହି ହଷ୍ଟେଲରେ ରହିଲେ । ଅନ୍ନଦା ନାମକୁ ମାତ୍ର ଏମ୍.ଏ. କ୍ଲାସରେ ନାମ ଲେଖାଇ, ଆଇ.ସି.ଏସ୍ ପାଇଁ ପ୍ରସ୍ତୁତ ହେଉଥାନ୍ତି । ଶରତ (ମୁଖାର୍ଜୀ) ହିନ୍ଦୁ ହଷ୍ଟେଲରେ ବି.ଏ.ବେଳୁ ରହୁଥିଲେ । ସେ ଇକ୍‌ନମିକ୍‌ସରେ ପ୍ରଥମ କ୍ଲାସ ଅନର୍ସ ବି.ଏ.ରେ ପାଇ, ସେହି ବିଷୟରେ ଏମ୍.ଏ.ରେ ନାମ ଲେଖାଇ ଥାଆନ୍ତି । ସେହିବର୍ଷ ଡେପୁଟି ଚାକିରୀ ମିଳିବାରୁ ଏମ୍.ଏ.ପଢ଼ା ଛାଡିଦେଲେ । ଆମେ ମହମିଡାନ ହଷ୍ଟେଲରେ

Digitized by srujanika@gmail.com

ରହୁ, ଖାଉ ହିନ୍ଦୁ ହଷ୍ଟେଲ ମେସ୍‌ରେ । ଆମ ହଷ୍ଟେଲର ସୁପରିଣ୍ଟେଣ୍ଡେଣ୍ଟ ଥାଆନ୍ତି ଆର୍ମର ସାହେବ । ଆସିଷ୍ଟାଣ୍ଟ ସୁପରିଣ୍ଟେଣ୍ଡେଣ୍ଟ ଥିଲେ ଜଣେ ମୁସଲମାନ ପର୍ଶିଆନ ଲେକ୍‌ଚରର । ବିମଳ ରାଏ, ଯେ ପରେ କଟକର ପୁଲିସ ସୁପରିଣ୍ଟେଣ୍ଡେଣ୍ଟ ହେଲେ, ପରେ ଆସିଲେ ସେହି ହଷ୍ଟେଲକୁ ।

ଜାକ୍‌ସନ୍ ସାହେବ ଥିଲେ କଲେଜର ପ୍ରିନ୍‌ସପାଲ । ଇକ୍‌ନମିକ୍‌ସର ଅଧ୍ୟାପକ ହର୍ଣ୍ଣ ସାହେବ ଓ କେମିଷ୍ଟ୍ରିର ଅଧ୍ୟାପକ କଲଡୱେଲ ସାହେବ, ଏ ସମସ୍ତେ ରହୁଥିଲେ କଲେଜ ହଷ୍ଟେଲର ପାଖାପାଖି କଲେଜ କମ୍ପାଉଣ୍ଡରେ । ପାଟନା କଲେଜ ଗଙ୍ଗା କୂଳରେ । ଦରଭଙ୍ଗା ମହାରାଜଙ୍କ କୋଠି କଲେଜକୁ ଲାଗିଥାଏ । ସେଠାରେ ଏକ କାଳୀମନ୍ଦିର ଥାଏ । ପରୀକ୍ଷାବେଳେ ପିଲାଙ୍କର ଭିଡ ଜମେ କାଳୀଙ୍କ ପାଖରେ । ଜିମନାସିଅମ, ଖେଳପଡିଆ କଲେଜ ହତାରେ । ଯଦୁନାଥ ସରକାର କଟକରୁ ଚାଲି ଆସିଥାଆନ୍ତି ପାଟନା । ସେ ବାହାରେ କଲେଜ ନିକଟରେ ଭଡାଘରେ ରହୁଥାଆନ୍ତି । ତାଙ୍କ ନିକଟରେ ପ୍ରଣବ ରାୟ ଚୌଧୁରୀ ଥାଇ କଲେଜରେ ଇତିହାସରେ ଏମ୍.ଏ.ପଢୁଥିଲେ । ସେହି ବର୍ଷ ପରୀକ୍ଷା ଦେଲେ ଓ ଡେପୁଟି ଚାକିରୀରେ ମୁକରୀର ହୋଇ ପାଟନା ଛାଡିଲେ ।

ମୁଁ ଲ' କଲେଜରେ ମଧ ନାମ ଲେଖାଇଥିଲି । ସକାଳ ଓ ସନ୍ଧ୍ୟାବେଳେ ଲ କ୍ଲାସ ହୁଏ । ମୁଁ ସନ୍ଧ୍ୟାବେଳ ବ୍ୟାଚରେ ଥିଲି । ସେଠାରେ ପ୍ରିନ୍‌ସପାଲ ଥିଲେ ଆଲାମ ସାହେବ, ଯେ ପୂର୍ବରୁ କଟକ ଲ କ୍ଲାସରେ ପଢ଼ାଉ ଥିଲେ । ଭାଇସ୍ ପ୍ରିନ୍‌ସପାଲ ସେରିଫ୍ ସାହେବ, ବାରିଷ୍ଟର । ସେ ଓକାଲତି ନ କରି, ପୂରା ସମୟ ଚାକିରୀ ନେଇଥିଲେ । ଅନ୍ୟ ସମସ୍ତ ଲେକ୍‌ଚରର ପାର୍ଟଟାଇମ୍ । ସେମାନେ ହାଇକୋର୍ଟରେ ଓକାଲତି କରନ୍ତି । ସେମାନଙ୍କ ମଧରେ ଥିଲେ, ବି.ପି.ସିହ୍ନା ଯେ ପରେ ହାଇକୋର୍ଟର ଜଜ୍, ସୁପ୍ରିମ କୋର୍ଟର ଚିଫ୍ ଜଷ୍ଟିସ ହୋଇ ଅବସର ଗ୍ରହଣ କରିଛନ୍ତି । ବି.ପି. ଜାମୁଆର, ଶିବେଶ୍ୱର ଦୟାଲ, ନବଲ କିଶୋର ପ୍ରସାଦ, ଭଗବତୀ ସିହ୍ନା ପ୍ରମୁଖ ଅନେକ ପ୍ରଖ୍ୟାତ ଓକିଲ, ବାରିଷ୍ଟର ପଢ଼ାଉ ଥିବାରୁ, ଲ କ୍ଲାସ ସହିତ ହାଇକୋର୍ଟରେ ଏକ ପରୋକ୍ଷ ସମ୍ପର୍କ ରହିଥିଲା । ସମୟ ପାଇଲେ ମୁଁ ଅନେକ ଦିନ ହାଇକୋର୍ଟକୁ ଯାଉଥିଲି । ଜଜ୍‌ମାନଙ୍କୁ ଓ ସାର ଆଲିଇମାମ୍, ହାସନଇମାମ, ସାର ସୁଲତାନ, ମାନୁକ ସାହେବ ପ୍ରମୁଖ ଅତି ଲବ୍ଧପ୍ରତିଷ୍ଠ ବାରିଷ୍ଟରମାନଙ୍କୁ ଲକ୍ଷ୍ୟ କରି ମନରେ ଆନନ୍ଦ ଓ ପ୍ରେରଣା ମିଳୁଥିଲା । ଜଜମାନଙ୍କ ମଧରେ ଅନେକ ଇଂରେଜ ସାହେବ ଥିଲେ । ସେମାନଙ୍କ ଗାମ୍ଭୀର୍ଯ୍ୟ, ସଂଯତ କଥା, ନିଷ୍ଠାପର କାର୍ଯ୍ୟ, ରୁଚିବନ୍ତ ବ୍ୟବାହାର

Digitized by srujanika@gmail.com

ମତେ ଅଭିଭୂତ କରୁଥିଲା । ସେହି ହାଇକୋର୍ଟର ମୁଁ ଜଜ ହେବି କଳ୍ପନା କରି ନଥିଲି । ଜଜ୍ ହେଲା ପରେ ସେ ପୂର୍ବ ଜଜ୍ ମାନଙ୍କ ଆଦର୍ଶ ବରାବର ଅନୁସରଣ କରିବାର ଚେଷ୍ଟା କରିଛି । ଲ' କଲେଜର ମୁଁ ଏକମାତ୍ର ଛାତ୍ର ଯେ ହାଇକୋର୍ଟ ଯାଇ କାର୍ଯ୍ୟ ଲକ୍ଷ୍ୟ କରୁଥିଲି । ହାଇକୋର୍ଟରେ ଓଡିଆ ଓକିଲ ଦୁଇଜଣ ଥାଆନ୍ତି, ଗଜେନ୍ଦ୍ର ପ୍ରସାଦ ଦାସ ଓ ତାଙ୍କ ଜୁନିଅର ପୀତାମ୍ବର ମିଶ୍ର । ଓକାଲତିରେ ଦୁଇ ଶ୍ରେଣୀ ଥିଲା । ବାରିଷ୍ଟର, ଭକିଲ । ବି.ଏଲ୍.ପାଶ୍ କଲେ ଓକିଲ (Pleader) ହେଉଥିଲେ । ସେମାନଙ୍କର ହାଇକୋର୍ଟରେ କାର୍ଯ୍ୟ କରିବାର ଅଧିକାର ନଥିଲା । ଭକିଲ ପରୀକ୍ଷା ହାଇକୋର୍ଟରେ ଦେଇ ସଫଳକାମ ହେଲେ, ଭକିଲ ହେଉଥିଲେ ଏବଂ ହାଇକୋର୍ଟ ଓ ତଳ କୋର୍ଟରେ ଓକିଲାତି କରିବାର ଅଧିକାର ମିଳୁଥିଲା । ବାରିଷ୍ଟରଙ୍କୁ ସବୁକୋର୍ଟ ଉନ୍ମୁକ୍ତଥିଲା । ପରେ ଭକିଲମାନଙ୍କୁ ଆଡ୍‌ଭୋକେଟ୍ କୁହାଗଲା । ସ୍ୱାଧୀନତା ଲାଭ ପରେ Advocates Act ଅନୁସାରେ ଓକିଲାତି ବୃତ୍ତି ଅବଲମ୍ବନ କରୁଥିବା ସମସ୍ତଙ୍କୁ ଏକଶ୍ରେଣୀ ଓ ଆଡ୍‌ଭୋକେଟ୍ ରୂପେ ନାମିତ କରାଯାଇ ଅଛି । ଲ କଲେଜର ମୋର ଦୁଇଜଣ ସହାଧ୍ୟାୟୀ, ମୁଁ ଜଜ୍ ହେଲାବେଳେ, ଜଜ୍ ହୋଇଥିଲେ— କମଳା ସହାୟ, କାମେଶ୍ୱର ଦୟାଲ । କମଳା ପ୍ରଥମରୁ ହାଇକୋର୍ଟରେ ଓକାଲତି କରି, ଜିଲ୍ଲାଜଜ୍ ଚାକିରିକୁ ଗଲେ ଏବଂ ପ୍ରମୋଶନ ପାଇ ଜଜ୍ ହୋଇଥିଲେ । ଅବସର ନେବାର ଅଳ୍ପକାଳ ପରେ ତାଙ୍କର ଓ କାମେଶ୍ୱରଙ୍କର କାଳ ହୋଇ ଯାଇ ଅଛି । ଦୁଇ ବର୍ଷରେ B.L ପାଠ ସାଙ୍ଗ ହେଲା । କିନ୍ତୁ ଘଟଣା ସ୍ରୋତରେ ମୁଁ ପରୀକ୍ଷା ଦେଲି ଚାରିବର୍ଷ ପରେ ୧୯୩୧ ରେ । ସେ ଚାରି ବର୍ଷ କିପରି ଭୁଆଁ ବୁଲିଛି ପରେ କହିବି ।

ପାଟନା କଲେଜର ପାଠପଢ଼ା ଉଚ୍ଚକୋଟୀର ଥିଲା । ଡିବେଟିଙ୍ଗ ସୋସାଇଟି ମଧ୍ୟ ଜାକଜମକରେ ଚାଲେ । ମୁଁ ସେଥିରେ ଭାଗ ନେଉଥିଲି । ଥରେ ବିଚାରର ବିଷୟ ଥିଲା, ଓଡିଆ ଭାଷୀ ଅଞ୍ଚଳର ଏକତ୍ରୀକରଣ । ସପକ୍ଷରେ ମୋର କହିବା କଥା । ବିପକ୍ଷରେ ଉଠିଲେ କାଳିକିଙ୍କର ମିତ୍ର, ରାଞ୍ଚିର । ଦୀର୍ଘ ସମୟ ଆଲୋଚନା ପରେ ଭୋଟ ନିଆଗଲା । ମୋ ସପକ୍ଷରେ ଅଧିକ ଭୋଟ ମିଳିଲା । ସ୍ଥାନୀୟ ସମ୍ବାଦପତ୍ରରେ ତାହା ପ୍ରକାଶ ପାଇଥିଲା । କାଳୀବାବୁ ପରେ ଡେପୁଟି ହେଲେ । ମୁଁ ପାଟନାରେ ଜଜ୍ ଥିଲାବେଳେ ସେ ରାଜସ୍ୱ ସେକ୍ରେଟାରୀ ହୋଇ ଆମ ଘର ସାମନାରେ ରହୁଥିଲେ । ତାଙ୍କ ସ୍ତ୍ରୀ ମୋ ସ୍ତ୍ରୀଙ୍କ ପାଖକୁ ଆସୁଥିଲେ । କାଳୀବାବୁ ମଝିରେ ମଝିରେ ଆସନ୍ତି । ପାଟନା କଲେଜ୍ ଡିବେଟ୍ କଥା ସେ ସ୍ମରଣ କରାନ୍ତି ।

Digitized by srujanika@gmail.com

କଲେଜରେ ମୋର କେତେଜଣଙ୍କ ସହିତ ବିଶେଷ ବନ୍ଧୁତା ଜମିଲା, ଯଥା, କୃପାନାଥ ମିଶ୍ର, ଭବାନୀ ଭଟ୍ଟାଚାର୍ଯ୍ୟ, ମିଥିଲେଶ ସିହ୍ନା, ବିଲଗ୍ରାମୀ, ମକ୍ବୁବ ଆଲି। ଭବାନୀ ଇଂରେଜୀରେ ସାମ୍ବାଦିକତା ଓ ଗଳ୍ପ, ଉପନ୍ୟାସ ଲେଖାରେ ସୁପ୍ରତିଷ୍ଠିତ । ସେ ନାଗପୁରରେ ରହନ୍ତି। P.E.N. (Playrights, Editors, Novelists) ସଂସ୍ଥାରେ ଜଣେ ସକ୍ରିୟ ସଭ୍ୟ । ତାଙ୍କ ପିତା ଜିଲ୍ଲା ଜଜ ହୋଇ ଅବସର ନେଇଥିଲେ । ପୁରୀ ସମୁଦ୍ରକୂଳ ପାଖରେ ଘର କରି ଅନେକ ସମୟରେ ରହୁଥିଲେ । ଭବାନୀ ସେଠାକୁ ଆସନ୍ତି । ଏବେ ସେ ଘର ବିକ୍ରୀ ହୋଇ ଯାଇଛି । ମିଥିଲେଶ I.P.ହୋଇ ବିହାରର ପୁଲିଶ ଇନ୍ସପେକ୍ଟର ଜେନେରାଲ ରୂପେ ଅବସର ନେଇ ପାଟନା ଦାନାପୁରରେ ଘର କରି ଅଛନ୍ତି । ତାଙ୍କ ପିତା ଏ.କେ. ସିହ୍ନା ଭାରତବର୍ଷରେ ପ୍ରଥମ ଭାରତୀୟ ପୁଲିସ ଇନ୍ସପେକ୍ଟର ଜେନେରାଲ ହୋଇଥିଲେ । ମିଥିଲେଶଙ୍କ ପୁତ୍ର Lt. General S.K. Sinha ପ୍ରତିରକ୍ଷା ବିଭାଗରେ ସର୍ବଶ୍ରେଷ୍ଠ ଦ୍ୱିତୀୟ ପଦବୀରେ ଅବସ୍ଥିତ । କୃପାନାଥ ଇଂରାଜୀ ଅଧ୍ୟାପକ, ପରେ ବିହାର ଶିକ୍ଷା ବିଭାଗରେ ଅନ୍ୟକାର୍ଯ୍ୟ କରି ଅବସର ନେଲେ । ବିଲଗ୍ରାମୀ ଓକାଲତି କଲେ । ମକ୍ବୁବ ଆଲୀ ମନ୍ତ୍ରୀ ହୋଇଥିଲେ । ରମଜାନ ମାସରେ ବିଲଗ୍ରାମୀ ତାଙ୍କ ଘରୁ ଆସିଥିବା ମିଷ୍ଟାନ କେତେଥର ରାତିରେ ଖାଇବାକୁ ଦିଅନ୍ତି । ଆଉଜଣେ ବନ୍ଧୁ ହୋଇଥିଲେ ବଳଦେଓ ସିଂହ, ଗୟାର । ସେ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରୁ ବି.ଏ.ପାସ୍ କରି ପାଟନାରେ ଲ ପଢ଼ିବାକୁ ଆସିଥାଆନ୍ତି । ତାଙ୍କ ବାକ୍‌ଚାତୁରୀ ଆକର୍ଷଣୀୟ ଥିଲା । ପରେ ବାରିଷ୍ଟର ହୋଇ ଗୟାରେ ଓକାଲତି କଲେ । ଚାଇବାସା ଛାଡିଲା ପରେ ଯେପରି ଘଟିଥିଲା, ପାଟନା ଛାଡିଲା ପରେ ସେଠାର ବନ୍ଧୁମାନଙ୍କ ସହିତ ଦୂରତ୍ୱ ଆସିଗଲା । ପୁଣି ପାଟନା ଜଜ୍ ହୋଇଯିବା ପରେ, ମିଥିଲେଶ, କୃପାନାଥଙ୍କ ସଙ୍ଗେ ଯୋଗାଯୋଗ ଘଟିଲା ।

ପାଟନା ମେଡିକାଲ କଲେଜରେ କେତେକ ଓଡିଆ ଛାତ୍ର ଥାଆନ୍ତି । ଓଡିଶାରେ ମେଡିକାଲ କଲେଜ ବହୁ ପରେ ଓଡିଶା ସ୍ୱତନ୍ତ୍ର ପ୍ରଦେଶ ହେଲା ପରେ ଅନୁଷ୍ଠିତ ହେଲା । ମେଡିକାଲ ପିଲାଙ୍କ ସଙ୍ଗେ ଆମର ବନ୍ଧୁତ୍ୱ ହେବାର ସୁଯୋଗ ହୋଇ ନଥିଲା, ଯଦିଓ ସେ କଲେଜ ଆମ କଲେଜର ଅତି ନିକଟବର୍ତ୍ତୀ । ଏବେ କଟକ କଲେଜ ଓ ମେଡିକାଲ କଲେଜର ମଧ୍ୟ ସେହି ଅବସ୍ଥା । ବିହାର ଓଡିଶା ସେକ୍ରେଟେରିଏଟରେ ଅନେକ ଓଡିଆ ଅଫିସର ଓ କର୍ମଚାରୀ ଥାଆନ୍ତି । ସେମାନେ କଲେଜଠାରୁ ତିନିମାଇଲ ଦୂରରେ ଗରଦନିବାଗରେ ରହୁଥାଆନ୍ତି । ଓଡିଆ କଲେଜ ଛାତ୍ରଙ୍କ ସଙ୍ଗେ ସେମାନେ ସମ୍ପର୍କ ରଖୁ ନ ଥିଲେ । ତାଙ୍କ ମଧ୍ୟରେ ଜଗତବାବୁ

Digitized by srujanika@gmail.com

(ଜଗତ ବଲ୍ଲଭ ଦାସ) ଗୋପାଳଙ୍କ ଗାଁ ଚାଣିରର ଲୋକ ଓ ନିକଟ ଆତ୍ମୀୟ ଥିବାରୁ, ଗୋପାଳ ଓ ମୁଁ କେତେକ ସମୟରେ ତାଙ୍କ ଘରକୁ ଯାଉଥିଲୁ । ତାଙ୍କ ଘରେ ଗାଈଥାଏ; ଦୁଧ-ଛେନା ଖାଇବା ଓ ଖୋଇବାରେ ଜଗତବାବୁ ଓ ତାଙ୍କ ସ୍ତ୍ରୀ ଖୁସି ପାଉଥିଲେ । ଜଗତବାବୁ ଅବସର ନେବା ପରେ ପୁରୀ ରାଜାଙ୍କର ଦେୱାନ ହୋଇଥିଲେ କେତେବର୍ଷ । ଅତି ସ୍ନେହଶୀଳ ବ୍ୟକ୍ତି ସେ ଥିଲେ । ନିଃସନ୍ତାନ ଥିବାରୁ, ତାଙ୍କ ସ୍ନେହର ଅନେକ ଅଂଶ ଆମେ ପାଇଥିଲୁ ।

ବିହାର ଓଡିଶା ଲେଜିସ୍‌ଲେଟିଭ କାଉନସିଲ ପାଟନାରେ ବସେ । ତାହାର ଅଧିବେଶନ ବେଳେ ମୁଁ କେତେକ ସମୟରେ ଦର୍ଶକ ଗ୍ୟାଲେରୀରେ ବସି ଦେଖେ । ଓଡିଶାରୁ ସେତେବେଳେ ହରେକୃଷ୍ଣ ମହତାବ, ଗୋଦାବରୀଶ ମିଶ୍ର, ଜଗନ୍ନାଥ ଦାସ (କଣ୍ଟାପାରାର), ଶ୍ରୀକୃଷ୍ଣ ମହାପାତ୍ର, (ଅବସରପ୍ରାପ୍ତ ପୁଲିସ ସୁପରିଣ୍ଟେଣ୍ଡେଣ୍ଟ) ପ୍ରଭୃତି ମେମ୍ବର ରୂପେ ଯାଉ ଥାଆନ୍ତି । ବିହାରର ଯେଉଁମାନେ ଥାଆନ୍ତି, ତାଙ୍କ ମଧ୍ୟରେ ଦ୍ୱାରିକାନାଥ, ଦେବକୀନନ୍ଦନ ସିଂହ ଆଲୋଚନାରେ ବହୁ ଅଂଶ ଗ୍ରହଣ କରୁଥିଲେ । ମୁଁ ଆକର୍ଷିତ ହେଉଥିଲି ଦେବକୀନନ୍ଦନ ସିଂହଙ୍କ ବକ୍ତୃତାରେ । ଡୁମରାଂ ଓ ଅନ୍ୟ କେତେକ ବଡ ଜମିଦାରମାନେ ମଧ ମେମ୍ବର ଥିଲେ । ସେମାନଙ୍କୁ ରାଜା, ମହାରାଜା ବୋଲି କହୁଥିଲେ । ସେମାନଙ୍କ ମଧରୁ କେତେକ ସେମାନଙ୍କ ବକ୍ତୃତା କଲେଜର ଏମ.ଏ. ଛାତ୍ରଙ୍କ ଦ୍ୱାରା ଲେଖାଇ ନେଉଥିଲେ । ବନ୍ଧୁ କୃପାନାଥ ମିଶ୍ର ମତେ ଡୁମରାଂ ରାଜା ସାହେବଙ୍କ ସହିତ ପରିଚିତ କରାଇ ତାଙ୍କ ବକ୍ତୃତା ମୁଁ ଲେଖିବାର ସ୍ଥିର କରି ଦେଇଥିଲେ । ପ୍ରତି ବକ୍ତୃତା ପାଇଁ ପଚିଶ ଟଙ୍କା ମିଳୁଥିଲା । ବଜେଟ୍ ଅଧିବେଶନରେ ଏ ପ୍ରକାର ବକ୍ତୃତା ଲେଖା ବେଶି ହୁଏ । ମୁଁ ବିଭିନ୍ନ ସମୟରେ ପ୍ରାୟ ଦଶଟି ବକ୍ତୃତା ଲେଖି ଦେଇଥିଲି । କୃପାନାଥ ନିଜେ ଅନ୍ୟଜଣଙ୍କ ପାଇଁ ଲେଖୁଥିଲେ । ଖାଜା ମହମ୍ମଦ ନୁର କାଉନ୍‌ସିଲର ଅଧକ୍ଷ ଥାଇ, ବିଚକ୍ଷଣତାର ସହିତ ସଭା ପରିଚାଳନା କରୁଥିଲେ ।

ମେଡିକାଲ କଲେଜ ପାଖରେ ଖୋଦାବକ୍‌ସ ଲାଇବ୍ରେରୀ । ଆରବି, ପରଶିଆନ ଅମୂଲ୍ୟ ଅନେକ ପାଣ୍ଡୁଲିପି ପାଇଁ ପ୍ରସିଦ୍ଧ । ତାହାଛଡା ଅନେକ ଦୁଷ୍ପ୍ରାପ୍ୟ ପୁସ୍ତକ ମଧ ଥାଏ । ସେଠାକୁ ଛୁଟି ଦିନରେ ଯିବାର ସୁବିଧା ଥିଲା । ଅନ୍ୟଏକ ଲାଇବ୍ରେରୀ ଥିଲା, ରାଧିକା ସିହ୍ନା ଲାଇବ୍ରେରୀ । ସଚ୍ଚିଦାନନ୍ଦ ସିହ୍ନା ବାରିଷ୍ଟର ତାଙ୍କର ପରଲୋକଗତ ସ୍ତ୍ରୀଙ୍କ ନାମରେ ସେ ଲାଇବ୍ରେରୀ ନିଜ ଘରକୁ ଲଗାଇ ଏକ ସ୍ୱତନ୍ତ୍ର କୋଠାରେ କରିଥିଲେ । ବହୁ ପୁସ୍ତକ, ସମ୍ବାଦ ପତ୍ର, ମାସିକ ପତ୍ର ସେଠାରେ ଥିଲା ।

Digitized by srujanika@gmail.com

ମୁଁ, ଭବାନୀ (ଭଟ୍ଟାଚାର୍ଯ୍ୟ) ସେଠାକୁ ଯାଉ । ସଚ୍ଚିଦାନନ୍ଦ ସିହ୍ନା କାଉନସିଲ ମେମ୍ବର, କେନ୍ଦ୍ର ଆସେମ୍ଲି ମେମ୍ବର, ବିହାରର ଏକ୍‌ଜିକ୍ୟୁଟିଭ କାଉନସିଲର ଓ ସର୍ବୋପରି, ଭାରତ ସ୍ୱାଧୀନତା ପରର କନଷ୍ଟିଚ୍ୟୁସନ ପ୍ରଣୟନ ପାଇଁ ଯେଉଁ ଆସେମ୍ଲି ହେଲା, ତାହାର ପ୍ରଥମ ଅଧକ୍ଷ ହୋଇ ଖ୍ୟାତି ଲାଭ କରିଥିଲେ । ପାଟନା ବିଶ୍ୱବିଦ୍ୟାଳୟର ଭାଇସ୍ ଚାନ୍‌ସେଲର ମଧ ଥିଲେ । ବିହାରରେ ତାଙ୍କର ପ୍ରତିପତ୍ତି ବହୁତ ଥିଲା । ଛାତ୍ରମାନେ ତାଙ୍କ ପାଖକୁ ଯାଉଥିଲେ, ଅସୁବିଧା ମୋଚନ ପାଇଁ, ବକ୍ତା ଓ ସମ୍ବାଦପତ୍ର ଲେଖକ ଭାବରେ ତାଙ୍କର ଖ୍ୟାତି ଥିଲା ।

ଆମ କଲେଜ ନିକଟରେ Y.M.C.A. ହଲ ଥିଲା । ସେଠାରେ ସାଧାରଣ ସଭା, ଧର୍ମସଭା, ଆଲୋଚନା ସଭା ଅନେକ ସମୟରେ ହୁଏ । ପ୍ରଫେସର ନିରଞ୍ଜନ ନିୟୋଗୀ କେତେ ସଭାରେ ଅଧକ୍ଷତା କରନ୍ତି । ସେ ଜଣେ ସୁବକ୍ତା ଥିଲେ । ତାଙ୍କର ସ୍ୱର ଅତି ମଧୁର ଓ ଲୀଳାୟିତ ଥିବାରୁ ଶ୍ରୋତାମାନଙ୍କର ପ୍ରିୟ ହେଉଥାଏ । ମୁଁ ଅଧିକାଂଶ ସଭାକୁ ଯିବାର ସୁବିଧା ଖୋଜୁଥାଏ । କଲେଜ ପରେ ଲ କ୍ଲାସ ସାରି ସେ ସଭାକୁ ଆସିହୁଏ । ତାହା ମୋର ଅନ୍ୟଏକ ଆକର୍ଷଣ ଥିଲା, ଯେପରି ଥିଲା, ହାଇକୋର୍ଟ ଓ କାଉନସିଲ । ବିଷୟବସ୍ତୁର ବିଶ୍ଳେଷଣ, କହିବାର ପ୍ରାଞ୍ଜଳତାରେ ମୁଁ ଆକୃଷ୍ଟ ହେଉଥିଲି ।

ପାଟନାରେ ଟେକ୍‌ଷ୍ଟବୁକ୍ କମିଟିର ସଭ୍ୟଥାଇ, ବିଶ୍ୱନାଥ କର, ବ୍ରଜସୁନ୍ଦର ଦାସ ପ୍ରଭୃତି ବର୍ଷକେ ଥରେ ପାଟନା ଆସନ୍ତି । ସେ ଦୁହେଁ ରହନ୍ତି, ରାଧାକାନ୍ତ ଘୋଷଙ୍କ ଘରେ । ସେ ଜିଲ୍ଲାଜଜ ରୂପେ ପାଟନାରେ କାର୍ଯ୍ୟ କରୁଥିଲେ । ତାଙ୍କ ଘର କଟକରେ । ତାଙ୍କର ଦୁଇ ଭାଇ ନଳିନୀକାନ୍ତ ଓଡ଼ିଶାର ଡେପୁଟି, ରେବତୀକାନ୍ତ କଟକରେ ଓକିଲ ଥିଲେ । ରାଧାକାନ୍ତ ଘୋଷ ପାଟନାରେ ଥିବାର ମୁଁ ପ୍ରଥମେ ଜାଣିଲି ବିଶ୍ୱନାଥ କରଙ୍କ ପତ୍ରରୁ । ସେ ମତେ କଲେଜ ହଷ୍ଟେଲ ଠିକଣାରେ ପତ୍ର ଲେଖୁଥିଲେ । ସେତେବେଳେ ଧାରାବାହିକ ପତ୍ର ଆକାରରେ 'ବନଫୁଲ' ନାମରେ ପ୍ରବନ୍ଧ 'ଉତ୍କଳ ସାହତ୍ୟ' ରେ ଲେଖୁଥିଲି । ବିଶ୍ୱନାଥବାବୁଙ୍କ ସଙ୍ଗେ ଦେଖା କରିବାକୁ ଯାଇ, ରାଧାକାନ୍ତବାବୁଙ୍କୁ ଜାଣିଲି । ବ୍ରଜସୁନ୍ଦରବାବୁଙ୍କ (ମୁକୁରର ସମ୍ପାଦକ) ସଙ୍ଗେ ସାକ୍ଷାତ ପରିଚୟ ସେଠାରେ ହେଲା । ରାଧାକାନ୍ତାବାବୁଙ୍କ ବିଧବା କନ୍ୟା ଲତାଦିଦିଙ୍କ ସଙ୍ଗେ ଆଳାପ ହେଲା । ବଙ୍ଗଳା ସାହିତ୍ୟ ପଢ଼ା ଓ ଚର୍ଚ୍ଚାରେ ସେ ଉତ୍ସାହୀ ଥିଲେ । ମୋ ଅପେକ୍ଷା ଅନ୍ନଦାର ତାଙ୍କ ସହିତ ଅଧିକ ବନ୍ଧୁତା ହେଲା । ରାଧାକାନ୍ତ ବାବୁ ଘରେ ବଙ୍ଗଳା କହନ୍ତି କିନ୍ତୁ ଆମ ସଙ୍ଗେ ଖାଣ୍ଟି ଓଡ଼ିଆରେ କଥାବାର୍ତ୍ତା କରନ୍ତି । ଓଡ଼ିଆ ଛାତ୍ରମାନଙ୍କ ସହିତ କିନ୍ତୁ କିଛି ସହଯୋଗ ରଖୁ ନଥିଲେ ।

Digitized by srujanika@gmail.com

ସେତେବେଳେ ବିଶ୍ୱବିଦ୍ୟାଳୟର କନ୍‌ଭୋକେସନ୍ ଲାଟସାହେବ କୋଠୀରେ ହୁଏ । ହାଇକୋର୍ଟ ଜଜ୍ ଟି.ଏସ୍.ମାକ୍‌ଫରସନ ଭାଇସ ଚାନସେଲର ଥାଇ ଆମ ବି.ଏ.ଡିଗ୍ରୀ ବିତରଣ ହୋଇଥିଲା ୧୯୨୫ କନ୍‌ଭୋକେସନ୍‌ରେ । ଅନ୍ନଦା, ଶରତ, ପ୍ରାଣକୃଷ୍ଣ ନନ୍ଦ, ପଦାରବିନ୍ଦ ମହାନ୍ତି, ଗୋପାଳ ଓ ମୁଁ ଡିଗ୍ରୀ ପାଇଲା ପରେ ଗୋଟିଏ ଫଟୋ ଏକାଠି ଉଠାଇଥିଲୁ । ତାକୁ ଦେଖିଲେ ପୂର୍ବସ୍ମୃତି ଜାଗେ । ପ୍ରାଣକୃଷ୍ଣ, ପଦାରବିନ୍ଦ ଆଉ ନାହାନ୍ତି । ପଦାରବିନ୍ଦ ଏମ୍.ଏସସି ପଢ଼ିଲାବେଳୁ ଯକ୍ଷ୍ମାରେ ଆକ୍ରାନ୍ତ ହେଲେ ଏବଂ ଦୁଇବର୍ଷ ମଧ୍ୟରେ ଦେହତ୍ୟାଗ କଲେ । ସାଲେପୁରର ପଦ୍ମପୁରରେ ତାଙ୍କ ଘର । ତାଙ୍କ ବାପା ଷ୍ଟେସନ ମାଷ୍ଟର ଥିଲେ । ପଦାରବିନ୍ଦ ଏକ ନିଷ୍ଠାପର, ଅଜାତଶତ୍ରୁ ଛାତ୍ର ଥିଲେ । ଯେପରି ସ୍ନେହୀ, ସେହିପରି ସାହାଯ୍ୟକାରୀ । ତାଙ୍କ ବାପାଙ୍କଠାରୁ ଗୋଟିଏ ରେଲୱାଇ ବାଇଗଣି ରଙ୍ଗର ଗରମ କୋଟ ଆଣିଥିଲେ । ଶୀତଦିନେ ବାହାରକୁ ଗଲାବେଳେ କେତେଥର ମୁଁ ତାକୁ ପିନ୍ଧି ପାଟନା ଥଣ୍ଡାରୁ ରକ୍ଷା ପାଇଛି । ପଦାରବିନ୍ଦ, ଗୋପାଳ ଓ ମୋର ବଡ଼ ବନ୍ଧୁ ଥିଲେ । ତାଙ୍କ ଅସୁସ୍ଥତା ସମୟରେ ଆମେ ଯାଇଥିଲୁ ତାଙ୍କ ଗାଁକୁ ତାଙ୍କୁ ଦେଖିବା ପାଇଁ । ଶୀର୍ଣ୍ଣ ଶରୀର, କିନ୍ତୁ ମୁହଁରେ ଚିରପରିଚିତ ସ୍ମିତ ହସ, ଏବେ ମତେ ଦିଶି ଯାଉଛି । ତାଙ୍କ ବିୟୋଗରେ ବଡ ବିଷାଦଗ୍ରସ୍ତ ହୋଇଥିଲି । ଅନେକ ସମୟରେ ତାଙ୍କୁ ମନେପକାଏ ଏବଂ ଏପରି ଶୁଦ୍ଧପୂତ ଲୋକର ଅକାଳ ଶେଷ କାହିଁକି ହେଲା ପଚାରି ଉତ୍ତର ପାଏ ନାହିଁ ।

ଶରତ ୧୯୨୭ ବେଳକୁ ଡେପୁଟି ଚାକିରୀରେ ହଜାରିବାଗ ବଦଳି ହୋଇଥାଆନ୍ତି । ତାଙ୍କଠାରୁ ଚିଠି ପାଇଲି ମାର୍ଚ୍ଚ ମାସ ୨୪ ତାରିଖରେ ତାଙ୍କର ବିବାହକୁ ଯିବା ପାଇଁ । ପୂର୍ବରୁ ଜାଣିଥିଲି କଟକ କାଠଗଡା ସାହିର ଶାନ୍ତ ସିହ୍ନା (ଏମ.ଏ. ଛାତ୍ରୀ) କୁ ସେ ବିବାହ ସ୍ଥିର କରିଥା'ନ୍ତି । ନିଜେ ବ୍ରାହ୍ମଣ, ଶାନ୍ତ ନିମ୍ନ କାୟସ୍ଥ । ଶରତଙ୍କ ପିତା, କକା ପ୍ରଭୃତି ଏ ସମ୍ବନ୍ଧରେ ଅମତହେବା ନିଶ୍ଚୟ ଜାଣି, ସେମାନଙ୍କୁ ଲୁଚାଇ, ହଜାରିବାଗରେ ରେଜେଷ୍ଟ୍ରୀ କରି Special Marriage Act ଅନୁସାରେ ବିବାହର ଯୋଗାଡ କରି ଥାଆନ୍ତି । ହଜାରିବାଗ ଷ୍ଟେସନଠାରୁ ହଜାରିବାଗ ସହର ପ୍ରାୟ ଆଠମାଇଲ ଦୂର । ତେଣୁ ଷ୍ଟେସନ ପାଖରେ ବିବାହର ବନ୍ଦୋବସ୍ତ ହେଲା । ମୁଁ ପହଞ୍ଚି ଦେଖିଲି କଟକରୁ କିଶୋରୀମୋହନ ଜୁଆରଦାର (ଯେ ଭିକ୍ଟୋରିଆ ହାଇସ୍କୁଲର ହେଡମାଷ୍ଟର ଥିଲେ) ଶାନ୍ତଙ୍କୁ ସାଙ୍ଗରେ ନେଇ ପହଞ୍ଚି ଥାଆନ୍ତି । ସନ୍ଧ୍ୟାବେଳେ ୬/୭ ଜଣଙ୍କ ଉପସ୍ଥିତିରେ ଅତି ଅଳ୍ପ ସମୟ ମଧ୍ୟରେ ଗୋଟିଏ କ୍ଷୁଦ୍ର କୋଠରୀରେ ବିବାହ ଲିପିବଦ୍ଧ ହେଲା । ଅସବର୍ଣ୍ଣ ବିବାହର ସାକ୍ଷୀ ହୋଇ ମୁଁ

Digitized by srujanika@gmail.com

ଦସ୍ତଖତ କଲି । ଓଡିଶାର ବୋଧହୁଏ ତାହା ପ୍ରଥମ ଅସବର୍ଣ୍ଣ ବିବାହ । ଘଟନା କ୍ରମେ ୧୯୩୨, ୧୯୩୬ ରେ ଆଉ ଦୁଇଟି ରେଜଷ୍ଟ୍ରୀ ଅସବର୍ଣ୍ଣ ବିବାହରେ ମୁଁ ସାକ୍ଷ୍ୟ ସ୍ୱୀକାର କରିବା ଆବଶ୍ୟକ ପଡିଲା । ଗୋଟିଏ ହେଉଛି କୃପାସିନ୍ଧୁ ମିଶ୍ର I.C.S. ଙ୍କର ଦଶପଲ୍ଲା ଦେୱାନ ଭାବଗ୍ରାହୀ ବିଶ୍ୱାଳଙ୍କ କନ୍ୟା ବିନ୍ଦୁ ସୁହିତ, ଅନ୍ୟଟି ଗୋପାଳ ଚାଟାର୍ଜୀଙ୍କର ବେଲା (ଦତ୍ତ ବୋଧହୁଏ) ସହିତ । କିଛି ବର୍ଷପରେ ଗଂଗାଧର ରଥ ଓ ନିରୂପମା (କରଣ) ଙ୍କ ବିବାହରେ ମଧ ମୁଁ ହେଲି ସାକ୍ଷୀ । ଗଂଗାଧର ପରବର୍ତ୍ତୀ କାଳରେ ପ୍ରଖ୍ୟାତ ଓକିଲ, ଆଡଭୋକେଟ ଜେନେରାଲ ଓ ନିରୂପମା ସମାଜସେବୀ, ଡାକ୍ତର ହୋଇ ସମାଜରେ ଉଚ୍ଚସ୍ଥାନ ଲାଭ କରିଛନ୍ତି ।

୧୯୨୬ ଡିସେମ୍ବର ମାସରେ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ ନିଖିଳ ଭାରତ ବକ୍ତୃତା ପ୍ରତିଯୋଗିତା ହେଲା । ପାଟନା ବିଶ୍ୱବିଦ୍ୟାଳୟର ପ୍ରତିନିଧିତ୍ୱ କରିବା ପାଇଁ କୃପାନାଥ ଓ ମୁଁ ନିର୍ବାଚିତ ହେଲୁ । ଆମେ ଦୁହେଁ ବନାରସରେ ପହଞ୍ଚି ଆବାକାବା ହୋଇଗଲୁ । କୃପାନାଥ ସେଠା ପିଲାଙ୍କ ସଙ୍ଗେ ମିଶିଗଲା । ମୁଁ ବାରେଇ ହୋଇ ରହିଗଲି । କଲିକତା, ମାଡ୍ରାସ, ବମ୍ବେ, ଆଲିଗଡ, ଏହ୍ଲାହାବାଦ ପ୍ରଭୃତିରୁ ଛାତ୍ରମାନେ ଆସି ଥାଆନ୍ତି । ସମସ୍ତଙ୍କର ରହିବାର ସ୍ଥାନ ହୋଇଥାଏ ସେଠା ହଷ୍ଟେଲରେ । କନ୍‌ଭୋକେସନ୍ ଅବସରରେ ଏହି ଛାତ୍ର ବକ୍ତୃତା ପ୍ରତିଯୋଗିତା ହେଉଥିଲା । କନ୍‌ଭୋକେସନ୍‌ରେ ଅଧକ୍ଷତା କଲେ ପଣ୍ଡିତ ମଦନମୋହନ ମାଳବ୍ୟ, ଦୀକ୍ଷାନ୍ତ ଭାଷଣ ଦେଲେ ସାର୍ ଜଗଦୀଶଚନ୍ଦ୍ର ବୋଷ । ଜଗଦୀଶଙ୍କ ପତ୍ନୀ ଅବଳା ବୋଷ ଉପସ୍ଥିତ ଥାଆନ୍ତି । ସ୍ୱାମୀଙ୍କର କି ଯତ୍ନ ନେଉଥାଆନ୍ତି ଲକ୍ଷ୍ୟ କରିବାର କଥା । କନ୍‌ଭୋକେସନ୍‌ରେ ଛାତ୍ର, ଶିକ୍ଷକ, ଅତିଥି, ଦର୍ଶକ ଦୁଇ ତିନି ହଜାର ହେଉଥିଲେ । ଏହ୍ଲାବାଦ ହାଇକୋର୍ଟର ଏକାଧିକ ଜଜ୍, ବନାରସ ମହାରାଜା ଆସିଥିଲେ । ଏପରି ବିରାଟ ସମାରୋହ ଦେଖିବା ମୋର ପ୍ରଥମ । ମନ୍ତ୍ରମୁଗ୍ଧ ପରି ଦେଖୁଥାଏ, ଆଉ ଅଭିଭୂତ ହେଉଥାଏ । ଦ୍ୱିତୀୟ ଦିନ ବକ୍ତୃତା ପ୍ରତିଯୋଗିତା । ମଞ୍ଚାସୀନ ମାଳବ୍ୟଜୀ ଓ ଅନ୍ୟ ବହୁ ବିଶିଷ୍ଟ ବ୍ୟକ୍ତି । ବକ୍ତୃତା ବିଚାରକ ଥିଲେ ଜଷ୍ଟିସ୍ ଗୋକର ନାଥ ମିଶ୍ର (ଏହ୍ଲାବାଦ), ପ୍ରଫେସର ଶେଷାଦ୍ରୀ (ହିନ୍ଦୁ ବିଦ୍ୟାଳୟର ଇଂରାଜୀ ଅଧାପକ), ଆଉ ଜଣେ ହାଇକୋର୍ଟ ଜଜ (ନାମ ମନେ ନାହିଁ) । ଡିବେଟର ବିଷୟ, ସେଠାରେ ଘୋଷିତ ହେଲା—Modern Civilization is conducive to human happiness. ଗୋଳା ପକାଇ ପ୍ରତି ଯୋଗୀମାନଙ୍କ ମଧ୍ୟରୁ କିଏ ସପକ୍ଷ ଓ କିଏ ବିପକ୍ଷରେ କହିବେ ଘୋଷଣା କରାହେଲା । ମୋର ବିପକ୍ଷରେ କହିବା ପାଳି ପଡିଲା ।

Digitized by srujanika@gmail.com

କହିବା ପାଇଁ ମୋର ଭୟ ଜାତ ହେଲା । ଏତେ ଲୋକ ସମାଗମ ଓ ଏପରି ପ୍ରତିଭାଶାଳୀ ମଞ୍ଚସ୍ଥ ବ୍ୟକ୍ତିମାନଙ୍କୁ ଦେଖି ମୋର ନଗନ୍ୟତା ଅଧିକ ମୋ ନିକଟରେ ପ୍ରକାଶ ପାଉଥାଏ । ଅନ୍ୟ ପ୍ରତିଯୋଗୀମାନେ ମୋଠାରୁ ଆକାର ପ୍ରକାରରେ ବଡ । ସେମାନଙ୍କର ପରିଚ୍ଛଦ ତୁଳନାରେ ମୁଁ ଅତି ହେୟ । ପ୍ରତିଯୋଗିତାରୁ କ୍ଷାନ୍ତ ରହିବାର କୌଣସି ସୁଯୋଗ ଥିଲେ, ମୁଁ ନିଶ୍ଚୟ ତାହା କରି ଥାନ୍ତି । ଏହିପରି ମାନସିକ ଦୟନୀୟ ଅବସ୍ଥାରେ ଥିଲାବେଳେ ମୋ ନାମ ଡକରା ହେଲା । ମୁଁ କିପରି ଓ କଅଣ କହିଲି ଜାଣେ ନାହିଁ । ଦଶମିନିଟ୍ ଘଣ୍ଟିବାଜିଲା, ମୁଁ ମଞ୍ଚରୁ ଓହ୍ଲାଇ ଶୀତଦିନେ ଜଳଦଘର୍ମ ହୋଇଗଲି । ପ୍ରତିଯୋଗିତା ଓ ବିଚାର ପ୍ରାୟ ତିନିଘଣ୍ଟା ଚାଲିଲା । ଫଳ ଘୋଷିତ ହେଲା, ହିନ୍ଦୁ ବିଶ୍ୱବିଦ୍ୟାଳୟରୁ ପ୍ରଥମ, ପାଟନା ବିଶ୍ୱବିଦ୍ୟାଳୟରୁ ଦ୍ୱିତୀୟ, ଆଲିଗଡ ବିଶ୍ୱବିଦ୍ୟାଳୟରୁ ତୃତୀୟ । ଆମ ତିନିଜଣଙ୍କୁ ମଞ୍ଚ ଉପରକୁ ଡକାଯାଇ ପ୍ରଥମଙ୍କୁ ଏକ ସ୍ୱର୍ଣ୍ଣନିର୍ମିତ ସରସ୍ୱତୀ ମୂର୍ତ୍ତି, ଦ୍ୱିତୀୟ ମତେ ଏକ ସ୍ୱର୍ଣ୍ଣପଦକ ଏବଂ ତୃତୀୟଙ୍କୁ ରୌପ୍ୟ ପଦକ ମାଲବ୍ୟଜୀ ଦେଲେ । ଆଉ କାହାର କଣ ହୋଇଥିବ, ମୁଁ ନିଜକୁ ଧନ୍ୟଧନ୍ୟ ମନେକଲି ।

ସେ ଦିନ ଅପରାହ୍ନରେ ଅଣହିନ୍ଦିଭାଷୀ ଛାତ୍ରମାନଙ୍କ ମଧ୍ୟରେ ହିନ୍ଦି ବକ୍ତୃତାର ପ୍ରତିଯୋଗିତା ଥାଏ । ମୋ ନାମ ଦେବାପାଇଁ କେତେଜଣ କହିବାରୁ ମୁଁ ରାଜି ହେଲି । ସେଠାରେ ମଧ ମୋର ଦୟନୀୟଭାବ । ମାଲବ୍ୟଜୀ ଅଧ୍ୟକ୍ଷ ଓ ତାଙ୍କର ଦୁଇ ସହଯୋଗୀ ବିଚାରକ । ମୁଁ ପ୍ରଥମ ହୋଇଯାଇ ସ୍ୱର୍ଣ୍ଣପଦକ ପାଇଲାବେଳେ, ମାଲବ୍ୟଜୀ ପଚାରିଲେ—'ଆପ କାହାଁକା ଅଧିବାସୀ ହେଁ ?' 'ଓଡିଶାକା' ଉତ୍ତର ଦେବାରେ ଦ୍ୱିଗୁଣିତ କରତାଳି ଶୁଭିଲା । ମାଲବ୍ୟଜୀ ଡାକିଲେ ତାଙ୍କ ବାସସ୍ଥାନକୁ । ସନ୍ଧ୍ୟାରେ ଗଲି ଏବଂ ତାଙ୍କ ସହିତ କଥୋପକଥନରେ ବାଧିତ ହୋଇ ଫେରିଲି । । ସେହି ରାତିରେ ହଷ୍ଟେଲରେ ଅନ୍ୟଏକ ପ୍ରତିଯୋଗିତା ହେଲା ଖାଇବାରେ । ଚପାତି (ରୁଟି) ଓ ଡାଲି । କିଏ କେତେଖଣ୍ଡ ରୁଟି ଖାଇବ, ତାର ସୁମାରୀ ହେଉଥାଏ । ସେ ପ୍ରତିଯୋଗିତାରେ ମୁଁ ଦର୍ଶକ । ରୂପା ଗଣେଶ ମୂର୍ତ୍ତି ଯେ ପ୍ରଥମ ସ୍ଥାନ ଅଧିକାର କରି ପାଇଲେ, ସେ ୨୭ ଖଣ୍ଡ ରୁଟି ଖାଇପାରିଥିଲେ । ଲମ୍ବା ପତଳା ପିଲା । ଏହ୍ଲାବାଦର ଏମ୍.ଏ. ଛାତ୍ର । ନାମ ନକୁଳ ସିଂ । ବୋଧହୁଏ ରାଜପୁତ ।

ପାଟନା ଫେରି ପ୍ରିନ୍ସପାଲ, ସୁପରିଣ୍ଟେଣ୍ଡେଣ୍ଟଙ୍କ ଠାରୁ ବଧାଇ ମିଳିଲା ଏବଂ କଲେଜର ଡିବେଟିଂ ସୋସାଇଟିର ଏକ ଅଧିବେଶନରେ ଅଧ୍ୟାପକ ନିରଞ୍ଜନ ନିୟୋଗୀଙ୍କ ଅଧ୍ୟକ୍ଷତାରେ ବଧାଇ ପାଇ କୃତ୍ୟକୃତ୍ୟ ହେଲି ।

Digitized by srujanika@gmail.com

ଅନ୍ୟଏକ ଘଟଣା, ଯେଉଁଥିରେ ମୋର କ୍ଷୁଦ୍ର ଅଂଶ ଆଶାନୁରୂପ ଫଳ ଦେଇଥିଲା । ସାଇମନ କମିସନ ଭାରତକୁ ଆସିଲାବେଳେ, କଂଗ୍ରେସ ତରଫରୁ ତାକୁ ବୟକଟ କରାହେଲା । ଯେଉଁଠାକୁ ସେମାନେ ଗଲେ ସେଠାରେ ପ୍ରତ୍ୟାଖ୍ୟାନ । ସେମାନଙ୍କୁ ବହୁତ ବାଧୁଥାଏ । ପାଟନା ଆସିଲାବେଳେ ସେହିପ୍ରକାର ଦୁରବସ୍ଥା ସେମାନେ ଆଶଙ୍କା କରିବା ସ୍ୱାଭାବିକ । କିନ୍ତୁ କଂଗ୍ରେସ ବୟକଟ ସତ୍ତ୍ୱେ, ଓଡିଆ ଭାଷୀ ସମସ୍ତ ଅଞ୍ଚଳ ମିଶ୍ରଣର ଦାବୀ ତାଙ୍କ ନିକଟରେ ଉପସ୍ଥାପିତ କରିବା ପାଇଁ, କନିକାର ରାଜା ସାହେବ (ସେ ଓଡିଶାର Executive Councellor ଥିଲେ) ଓ ଅନ୍ୟ ଅଣକଂଗ୍ରେସ ଓଡିଆ ନେତୃସ୍ଥାନୀୟ ବ୍ୟକ୍ତି କେତେକ ସ୍ଥିର କଲେ, ସାଇମନଙ୍କୁ ସ୍ୱାଗତ କରିବା ପାଇଁ । ସେଥିରେ ସାହାଯ୍ୟ କରିବାକୁ ମୁଁ ଆଗଭର ହେଲି । ପାଟନାରେ କଂଗ୍ରେସର ପ୍ରଭାବ ଅତି ଅଧିକ । ଆମର ସ୍ୱାଗତ ଚେଷ୍ଟା ସେମାନେ ଭଣ୍ଡୁର କରିଦେବା ନିଶ୍ଚିତ ଜାଣି, ଆମ୍ଭେମାନେ (ମୁଁ ଓ ଅନ୍ୟ ୪/୫ ଜଣ) ରାତି ବାରଟା ପରେ ପାଟନା ଷ୍ଟେସନ ମାଷ୍ଟରଙ୍କୁ ମାତ୍ର ଏକଶତ ଟଙ୍କା ମିଷ୍ଟାନ ପାଇଁ ଦେଇ ହାର୍ଡିଂଜପାର୍କ ପାଖ ପ୍ଲାଟଫରମରେ ସ୍ୱାଗତ ପୋଷ୍ଟରମାନ ଲଗାଇ ଦେଲୁ । ଅତି ପ୍ରତ୍ୟୁଷରୁ ସାଇମନ କମିଶନ ଟ୍ରେନ୍‌ରୁ ଓହ୍ଲାଇ ସ୍ୱାଗତ ଲିପିକାମାନ ଦେଖି ଅତି ଖୁସିହେଲେ ଏବଂ Orissa Welcomes Simon Commission ପୋଷ୍ଟର କେତେଖଣ୍ଡି ଉଠାଇ ହାତରେ ନେଲେ । ପରେ ଅଟଲି ସବ୍ କମିଟି ବସାଇଲେ ଏବଂ ଓଡିଶା ସପକ୍ଷରେ ରିପୋର୍ଟରେ ସୁପାରିଶ କଲେ । କେହି ମାନନ୍ତୁ ବା ନ ମାନନ୍ତୁ, ସେହି କ୍ଷୁଦ୍ର ଚେଷ୍ଟା ଯେ ଆମ ଦାବୀକୁ ଆଗେଇ ନେଲା, ସନ୍ଦେହ ନାହିଁ ।

କଲେଜ କ୍ଲାସ ଶେଷ ହେବାରେ, କଟକ ସେଣ୍ଟରରେ M.A. ପରୀକ୍ଷା ଦେବାପାଇଁ ଅନୁମତି ନେଇ କଟକ ଆସିଲି ଏବଂ ପରୀକ୍ଷା ପର୍ଯ୍ୟନ୍ତ ରେଭେନ୍‌ସା କଲେଜ ପାୱାର ହାଉସ ମେକାନିକ୍ ଜଗନ୍ନାଥଙ୍କ ବସାରେ ରହି ପଢ଼ାପଢ଼ି କଲି । ଅଧିକାଂଶ ଦିନ ଦୁଧ ପାଉଁରୁଟି ଖାଏ । ଦିନେ ଦିନେ ଜଗନ୍ନାଥ ଦୟା କରି ତାଙ୍କ ସ୍ୱହସ୍ତ ରନ୍ଧା ଭାତ, ତରକାରୀ ଦିଅନ୍ତି । ତାଙ୍କ କ୍ୱାଟରରେ ଦୁଇବଖରା ଘର । କ୍ଷୁଦ୍ରତର କୋଠରୀଟି ମତେ ଛାଡି ଦେଇଥିଲେ । ବଡ ଅମାୟିକ ବ୍ୟକ୍ତି ଜଗନ୍ନାଥ । ମୁଁ ତାଙ୍କ ନିକଟରେ କୃତଜ୍ଞ । ସେହି ସମୟରେ (୮/୮/୧୯୨୭) ଅନ୍ନଦା I.C.S. Training ପାଇଁ ବିଲାତ ଗଲେ । ସେ ପରୀକ୍ଷାରେ ପ୍ରଥମ ସ୍ଥାନ ଅଧିକାର କରି I.C.S.ପାଇଁ ମନୋନୀତ ହୋଇଥିଲେ । ଜୀବନର ଅନ୍ୟ ଏକ ଗୁରୁତର ପରୀକ୍ଷାର ଦ୍ୱନ୍ଦ ମଧରେ ସେ ସେତେବେଳେ ବିଚଳିତ ଥାଆନ୍ତି । ଗଲାଦିନ ସକାଳେ ମୋ

Digitized by srujanika@gmail.com

ପାଖକୁ ଆସି ଦୁଇଟି ଖାଲି ବିସ୍କୁଟ ଟିଣରେ ତାଙ୍କ ଦ୍ୱନ୍ଦର ସ୍ମାରକୀ ବସ୍ତୁ ବନ୍ଦ କରି ମୋ ମାରଫତ ରଖିଦେଇ ଗଲେ । ରାତି ମାଡ୍ରାସ ମେଲରେ କଟକ ଛାଡିବାର କଥା । ରେଲଷ୍ଟେନରେ ତାଙ୍କ ଆତ୍ମୀୟମାନଙ୍କ ମଧ୍ୟରେ ତାଙ୍କର ପିତା ଉପସ୍ଥିତ ଥାଆନ୍ତି । ମୁଁ ତାଙ୍କୁ ଲକ୍ଷ୍ୟ କରି ଅଭିଭୂତ ହୋଇ ପଡିଲି । ଅତି ଧର୍ମପରାୟଣ ବ୍ୟକ୍ତି । ପୁତ୍ରର ବିଦେଶ ଗମନ ପାଇଁ ଗଭୀର ଭାବରେ ଦୁଃଖିତ । କିନ୍ତୁ ମୁହଁରେ ନିର୍ବିକାର ହସ ରେଖା ଫୁଟାଇବାର ପ୍ରଗାଢ଼ ଚେଷ୍ଟା । ଅନ୍ନଦାଙ୍କର I.C.S. ହେବାର ଦୁର୍ଦ୍ଦାନ୍ତ ଅଭିଳାଷ ଥିଲା । ପାଟନା ହଷ୍ଟେଲରେ ସେ ବିଷୟରେ ଭବିଷ୍ୟତ କଳ୍ପନା ବହୁତ ଶୁଣିଥିଲି ତାଙ୍କ ଠାରୁ । ସେହି ଅଭିଳାଷର ସାର୍ଥକତାରେ ସେ ସନ୍ତୁଷ୍ଟ ଥିଲେ । କୁଟୁମ୍ବଙ୍କଠାରୁ ବିଦାୟରେ ତାଙ୍କର କୌଣସି ବିଚଳତା ପ୍ରକାଶ ପାଉ ନଥିଲା । ଗାଡି ଛାଡିଲା, ମୁଁ ଫେରିଲି ଦୁଃଖରେ । ଅନ୍ନଦା ବିଲାତରେ ପହଞ୍ଚିବା ପରେ ସାହେବ ହେବାର ବାସନା ଦୂରେଇ ଗଲା । ମୋ ଇଂରେଜୀ ଲେଖା ଗୋଟିଏ ଚିଠିର ଉତ୍ତର ସେ ୫/୧୨/ ୧୯୨୭ (ଯିବାର ମାତ୍ର ଚାରିମାସ ମଧ୍ୟରେ) ତାରିଖରେ ଲଣ୍ଡନରୁ ବଙ୍ଗଳାରେ ଲେଖି ପଠାଇଲେ । ସେଥିରେ, ସେ ଚାକିରୀ ୩/୪ ବର୍ଷ କରି ଛାଡିଦେବେ ଏବଂ ଗୋଟିଏ ପତ୍ରିକା ପ୍ରକାଶ କରିବାର ଇଚ୍ଛା ଉଲ୍ଲେଖ କରିଥିଲେ । ମତେ ପରାମର୍ଶ ଦେଇଥିଲେ, ଓକିଲାତି କର ଓ କାଗଜ ବାହାର କର । ଇଂରେଜୀ ପ୍ରଭାବ ଏଡାଇବା ପାଇଁ ବଙ୍ଗଳାରେ ଚିଠି ଲେଖା । ସେ ଖିଆଲ କିନ୍ତୁ ରହିଲା ନାହିଁ । ତା' ପରର ଅନ୍ୟ ସବୁ ଚିଠି ଏ ପର୍ଯ୍ୟନ୍ତ ଇଂରେଜୀରେ ଲେଖା ।



Digitized by srujanika@gmail.com

# ଅଦୂର ଦୃଷ୍ଟି

ପାଟନାରେ ଥିଲାବେଳର ଏକ ଦୁଃଖପୂର୍ଣ୍ଣ ଅନୁଭୂତି ସ୍ମରଣୀୟ ହୋଇ ରହିଛି । ଜୀବନର ଏକ ଅଭିଳାଷର ଅପୂର୍ଣ୍ଣତା ମତେ ବିକ୍ଷୁବ୍ଧ କରିଛି । ପରିଜା ସାହେବ ବିଲାତରୁ ଆସି କଲେଜରେ ଯୋଗଦେବାର ପ୍ରଥମ ଦିନରୁ ମୁଁ ତାଙ୍କ ପ୍ରତି ବିଶେଷଭାବରେ ଆକୃଷ୍ଟ ହୋଇଥିଲି ! ମୋର ସେ ଆଦର୍ଶ ଥିଲେ । ସେ ଓ ତ୍ରିପାଠୀ ସାହେବ State Scholarship ପାଇ ଉଚ୍ଚ ଶିକ୍ଷା ପାଇଁ ବିଲାତ ଯାଇଥିଲେ । ପରିଜା ସାହେବଙ୍କୁ ଦେଖିଲାଦିନୁ ମୋର ପ୍ରବଳ ଇଚ୍ଛା ହେଲା ବିଲାତ ଯିବାକୁ । ଯିବା ପାଇଁ ସମ୍ବଳ ନ ଥିଲା । ଭାବିଥିଲି ବି.ଏ. ପରେ ଅବା ସୁଯୋଗ ମିଳିବ । ପାଟନା କଲେଜକୁ ଯିବା ପରେ State Scholarship ପାଇଁ ନୋଟିସ ବାହାରିଲା । ଦରଖାସ୍ତ କଲି । ଇଣ୍ଟରଭିଉ କଲେ ଆଠ ଜଣିଆ ଏକ କମିଟି । ଖାଁ ବାହାଦୂର ଖାଜା ମହମ୍ମଦ (କାଉନସିଲ ଅଧ୍ୟକ୍ଷ) ଚେଆରମାନ୍, ଫକସ ସାହେବ (D.P.I), ପାଟନା କଲେଜ ପ୍ରିନ୍‌ସପାଲ ଜ୍ୟାକ୍‌ସନ ସାହେବ, କଟକ କଲେଜ ପ୍ରିନ୍‌ସପାଲ ଲାମ୍ବର୍ଟ ସାହେବ, କାଉନସିଲ ମେମ୍ବର ଦ୍ୱାରିକା ପ୍ରସାଦ, ଲକ୍ଷ୍ମୀଧର ମହାନ୍ତି, କଲଡୱେଲ ସାହେବ (ପାଟନା କଲେଜ କେମେଷ୍ଟ୍ରି ଅଧ୍ୟାପକ) ଓ ଆଉ ଜଣେ (ନାମ ମନେ ପଡୁନାହିଁ) । ପ୍ରାର୍ଥୀ ଥିଲୁ ଘନଶ୍ୟାମ ଦାସ (ପାଟନା କଲେଜର ଇତିହାସ-ଏମ୍.ଏ.ଛାତ୍ର ), କଟକ କଲେଜର ଇଂରେଜୀ ଏମ୍.ଏ.ଛାତ୍ର ହରିହର ମିଶ୍ର, ପାଟନା କଲେଜରୁ କୃପାନାଥ ମିଶ୍ର, ମୁଁ ଓ ଅନ୍ୟମାନେ । ଇଣ୍ଟରଭିଉ ପରେ ଜଣାଗଲା ଯେ ମତେ ପ୍ରଥମ ସ୍ଥାନ ମିଳିଲା, କିନ୍ତୁ ସେ ବର୍ଷ ଇତିହାସରେ State Scholarship ଦେବାର ସ୍ଥିର ହେବାରୁ ଘନଶ୍ୟାମ ଦାସ ନିର୍ବାଚିତ ହେଲେ । ଆଗାମୀ ବର୍ଷ ଇଂରାଜୀରେ ଦୁଇଟି Scholarship ଦିଆଯିବ ଏବଂ ତନ୍ମଧ୍ୟରୁ ଗୋଟିକ ପାଇଁ ମୋ ନାମ ଉଲ୍ଲେଖ ରହି ଗୋପନୀୟ ବିବରଣୀ ଲିପିବଦ୍ଧ ରହିଲା । ମୁଁ ଖୁସି । ତାର କେତେଦିନ ପରେ ଦିନେ ମୁଁ ଲ କଲେଜ ଫାଟକ ପାଖରେ ଅନ୍ୟଛାତ୍ର କେତେଜଣଙ୍କ ସଙ୍ଗେ ଠିଆ ହୋଇଥିବା

Digitized by srujanika@gmail.com

ବେଳେ D.P.I ଫକସ ସାହେବ ରାସ୍ତାରେ ଗାଡି ଚଳାଇ ଯାଉଥିଲେ । ମତେ ଦେଖି ଗାଡି ଅଟକାଇ ଅଙ୍ଗୁଳି ନିର୍ଦ୍ଦେଶରେ ଡାକିଲେ । ବିରକ୍ତ ସ୍ୱରରେ ପଚାରିଲେ, 'Why are you loitering here ? You will get the State Scholarship next year. You should now try to learn French' ମୁଁ ନିରବ ଥାଏ । ଲ ପଢୁଛି, ଏକଥା ଲୁଚାଇ ରଖିଲି । ନଚେତ ସେ ଅସନ୍ତୁଷ୍ଟ ହୋଇ ଥାଆନ୍ତେ । ତାଙ୍କଠାରୁ ଶୁଣିଲା ପରେ ଆଗାମୀ ବର୍ଷ ପାଇଁ ନିଶ୍ଚିନ୍ତ ରହିଲି । ପାଖରେ ଥିବା ପିଲାମାନେ କଥାଟାକୁ ଡିଣ୍ଡିମ ବଜାଇ ଦେଲେ ।

ଏ ଘଟନାର ପ୍ରାୟ ମାସକ ପରେ ପାଟନା ବିଶ୍ୱବିଦ୍ୟାଳୟର ସିନେଟ୍ ଅଧିବେଶନରେ ଯୋଗଦେବା ପାଇଁ ତ୍ରିପାଠୀ ସାହେବ, ପରିଜା ସାହେବ ପାଟନା ଆସି, ପାଟନା କଲେଜ ଫିଜିକ୍ସର ପ୍ରଫେସର ଆଶୁବାବୁଙ୍କ ଘରେ ରହୁଥାନ୍ତି । ମତେ ହଷ୍ଟେଲରୁ ଡକାଇ ପଠାଇଲେ । ରବିବାର ସକାଳେ ମୁଁ ଗଲାବେଳକୁ ପରିଜା ସାହେବ କ୍ଷୌର ହେଉଥାଆନ୍ତି, ତ୍ରିପାଠୀ ସାହେବ ଖବର କାଗଜ ଦେଖୁ ଥାଆନ୍ତି । ଉଭୟ ମତେ କହିଲେ, ରେଭେନ୍‌ସା କଲେଜ ପ୍ରିନ୍‌ସପାଲ ଚାହାନ୍ତି, ମୁଁ କଟକ କଲେଜକୁ M.A. ପଢ଼ିବା ପାଇଁ ଗଲେ ଭଲ ହେବ । ପ୍ରିନ୍‌ସପାଲ ସେମାନଙ୍କୁ କହିଥିଲେ, ଘନଶ୍ୟାମ ଦାସ ପାଟନା କଲେଜକୁ ଆସି State Scholarship ପାଇଲେ; ଆଗାମୀ ବର୍ଷ ମୁଁ ପାଟନା କଲେଜରେ ଥାଇ Scholarship ପାଇଲେ ସମସ୍ତଙ୍କର ଧାରଣା ହେବ, ପାଟନା ନ ଗଲେ Scholarship ପାଇବାର ଆଶା କମ । ସେପରି ହେଲେ କଟକ କଲେଜ ଏମ୍.ଏ. କ୍ଲାସରେ ଭଲପିଲା କେହି ରହିବେ ନାହିଁ । ଏସବୁ ଶୁଣି, ଫକସ ସାହେବ କିଛି ଦିନ ପୂର୍ବରୁ ମତେ ଯାହା କହିଥିଲେ, ମୁଁ ଜଣାଇଲି । ପରିଜା ସାହେବ କହିଲେ ଲାମ୍ବର୍ଟ ସାହେବ ତାଙ୍କୁ କହିଛନ୍ତି, ଆଗାମୀ ବର୍ଷ ମୁଁ Scholarship ପାଇବା ସ୍ଥିର ହୋଇଛି । ସେଥିପାଇଁ କଟକ କଲେଜର ଛାତ୍ରଥାଇ ମୁଁ ପାଇବା ସେ ଇଚ୍ଛା କରନ୍ତି । ମୋର ମଧ ମନେ ପଡିଲା, ମୁଁ ପାଟନା ଆସିବା ପୂର୍ବରୁ ଲାମ୍ବର୍ଟ ସାହେବ ପ୍ରିନ୍‌ସପାଲଙ୍କ ଠାରୁ ସାର୍ଟିଫିକେଟ୍ ନେବାବେଳେ ସେ ମତେ କଟକ ଏମ୍.ଏ. କ୍ଲାସରେ ପଢ଼ିବା ପାଇଁ କହିଲେ । ମୁଁ ଇକନମିକ୍ସ ନେବି ବୋଲି କହିବାରୁ ସେ ନିରବ ରହିଲେ । କଟକରେ କେବଳ ଇଂରାଜୀରେ ଏମ୍.ଏ. ଥିଲା । ପରିଜା ସାହେବ କି ତ୍ରିପାଠୀ ସାହେବ ମତେ ଟିକିଏ ଜୋର କରି କହିଥିଲେ, ମୁଁ ନିଶ୍ଚୟ ସେହି ଅନୁସାରେ କରିଥାଆନ୍ତି । କେବଳ ଖବର ଦେଲାପରି

Digitized by srujanika@gmail.com

କହିବାରୁ ମୁଁ ସେତେ ଗୁରୁତ୍ୱ ଦେଲି ନାହିଁ । ଦୂରଦୃଷ୍ଟିର ଅଭାବ ମୋର ସବୁବେଳେ । ମୁଁ ହଷ୍ଟେଲକୁ ଫେରି ଭାବିଲି, କମିଟିରେ ଯେତେବେଳେ ସ୍ଥିର ହୋଇସାରିଛି ଏବଂ D.P.I. ଯେତେବେଳେ ମତେ ପ୍ରକାଶ୍ୟରେ କହିଛନ୍ତି, ସେଥିରେ ଆଉ ତ ସନ୍ଦେହ କିଛି ନାହିଁ । ମୁଁ କାହିଁକି ମଝିରେ କଟକ ଯାଇ ନାମ ଲେଖାଇବି । ପାଟନା ବଡ ଜାଗା । ଆସିଛି ତ ଶେଷ ପର୍ଯ୍ୟନ୍ତ ରହିଯାଏ ।

ଆଗାମୀବର୍ଷ ନୋଟିସ ବାହାରିବାରୁ ଦରଖାସ୍ତ ଦେଲି । ଅନ୍ୟମାନଙ୍କ ମଧ୍ୟରେ କୃପାନାଥ, ହରିହର ମିଶ୍ର ମଧ୍ୟ ପ୍ରାର୍ଥୀ ହେଲେ । ଇଣ୍ଟରଭିଉ ବୋର୍ଡରେ ପୂର୍ବବର୍ଷର ସମସ୍ତେ ଥାଆନ୍ତି । ସବୁ ପ୍ରାର୍ଥୀଙ୍କୁ ଦେଖିବା ପରେ ବିଚାରବେଳେ କଟକ କଲେଜ ପ୍ରିନ୍‌ସପାଲ ଲାମ୍ବର୍ଟ ଜିଦ୍‌ଧରି ବସିଲେ ସେଠାରୁ ଜଣକୁ ବଛାଯାଉ । ସେଠାର ଏକମାତ୍ର ପ୍ରାର୍ଥୀ ହରିହର ମିଶ୍ରେ । ଅନ୍ୟ ମେମ୍ବରମାନେ ପୂର୍ବ ବର୍ଷର ନିଷ୍ପତ୍ତି କଥା ଉଠାଇବାରୁ, କଟକ ପ୍ରିନସପାଲ ମନ୍ତବ୍ୟ କଲେ, ବିଚାରରେ ହରିହର ମହାପାତ୍ରଙ୍କର ଶ୍ରେଷ୍ଠତ୍ୱରେ ଦ୍ୱିମତ ନାହିଁ । କିନ୍ତୁ ସେ ଯଦି ପାଆନ୍ତି, ତେବେ ସମସ୍ତେ ଭାବିବେ ଯେ, ପାଟନା କଲେଜକୁ ଗଲେ Scholarship ପାଇବାର ସମ୍ଭାବନା ବେଶି । ସେହି ଦୃଷ୍ଟିରୁ କଟକ କଲେଜ ଏମ୍.ଏ.କୁ ଭଲ ପିଲା କେହି ଆସିବେ ନାହିଁ । ଏହି ଜିଦ୍ ଓ ଯୁକ୍ତିର ଅନ୍ୟମାନେ ଦୃଢ଼ ପ୍ରତିରୋଧ କଲେ ନାହିଁ । ବହୁ ମତରେ କଟକ କଲେଜରୁ ହରିହର ମିଶ୍ର, ପାଟନାରୁ କୃପାନାଥ ମିଶ୍ର ବଛାହେଲେ । ପାଟନା କଲେଜରୁ ମୁଁ ପାଇ ପାରିଲି ନାହିଁ । କାରଣ ଜଣେ ଓଡିଆ ଓ ଜଣେ ବିହାରୀ ପାଇବାର କଥା । ମୁଁ ଏ କୂଳ ହେଲି ନାହିଁ କି ସେ କୂଳ ହେଲି ନାହିଁ । ମଝିରୁ ବିନା ଦୋଷରେ କାଟ ଖାଇଲି । ଅଦୂରଦୃଷ୍ଟିର ଫଳ ହାତେ ହାତେ ମିଳିଲା । ପୋଷ୍ଟଗ୍ରାଜୁଏଟ୍ ସ୍କଲରସିପ୍ ଯେପରି ହରାଇଥିଲି, ଷ୍ଟେଟ ସ୍କଲରସିପ୍ ସେହିପରି ହରାଇ ବସିଲି । ଏ ଦୁଃଖ ମୋର ସବୁଦିନକୁ ରହିଲା । ପରବର୍ତ୍ତୀ କାଳରେ ବିଲାତ ଯେତେଥର ଯାଇଛି ଏବଂ ପରେ ଲଣ୍ଡନରେ ଘର କିଣିବାବେଳେ ସେ ଘଟନା ବାରମ୍ବାର ସ୍ମରଣକୁ ଆସିଛି । ଲଣ୍ଡନ, କେମ୍ବ୍ରିଜ, ଅକ୍ସଫୋର୍ଡ ବିଶ୍ୱବିଦ୍ୟାଳୟକୁ ଦେଖିବାକୁ ଗଲାବେଳେ ସେ କଥା ଝୁରି ହୋଇଛି ।

ହରିହର ମିଶ୍ର ଓ କୃପାନାଥ ମିଶ୍ର ମୋର ବନ୍ଧୁ ଥିଲେ । ହରି ମିଶ୍ରଙ୍କୁ ମୁଁ ମିତ ବୋଲି ଡାକେ । ତାଙ୍କ ସଙ୍ଗେ ମୋର, ଆମ ପରିବାରର ସମସ୍ତଙ୍କର ଅତି ସହୃଦୟତା ରହି ଆସିଛି । ତାଙ୍କର ନିକଟରେ ୧୯୮୨ରେ କର୍କଟ ରୋଗରେ ମୃତ୍ୟୁ

Digitized by srujanika@gmail.com

ଘଟିବାରେ ମୁଁ ଅତ୍ୟନ୍ତ ମର୍ମାହତ ହୋଇଛି । କୃପାନାଥ ଓ ସେ Scholarship ନେଇ ଲଣ୍ଡନ ୟୁନିଭରସିଟିକୁ ଗଲେ; କିନ୍ତୁ ଦୁଃଖର ବିଷୟ, ଉଭୟ ଫେଲ୍ ହୋଇ ଫେରିଲେ । ସେଥିପାଇଁ ସେମାନେ କଲେଜରେ ଅଧ୍ୟାପକ ହୋଇ ପାରିଲେ ନାହିଁ । ପରେ ଦୁଃଖର ସହିତ ଜାଣିବାକୁ ପାଇଲି, ପ୍ରିନ୍ସପାଲ ଲାମ୍ବର୍ଟ ସାହେବଙ୍କ ଜରିଆରେ ମିତଙ୍କ ପାଇଁ ଅତ୍ୟଧିକ ସୁପାରିଶ କରିବା ପାଇଁ ସାହେବଙ୍କୁ ପ୍ରଭାବିତ କରାଯାଇ ଥିଲା । ପରେ ସେଥିପାଇଁ ଲାମ୍ବର୍ଟ ସାହେବ ପରିଡା ସାହେବଙ୍କ ଆଗେ ଦୁଃଖ ପ୍ରକାଶ କରିବା କଥା ପରିଡା ସାହେବ ମତେ କହିଲେ ।



Digitized by srujanika@gmail.com

# ଟିଉସନ୍

ଏମ୍.ଏ. ପରୀକ୍ଷା ସରିଲା ପରେ ଭାବନା ପଡ଼ିଲା କଅଣ କରିବି । ମୋର ସତ୍ୟବାଦୀ ସ୍କୁଲର ସହଧ୍ୟାୟୀ ବନ୍ଧୁ ରାମି (ରାମଚନ୍ଦ୍ର ମିଶ୍ର) ସେତେବେଳେ କଟକ ପେନସନ୍ ଗଳିରେ ଥାଏ । ସେଟଲମେଣ୍ଟରେ କିରାନୀ ହୋଇଥାଏ । ସେ ଓ ତା ମା ଛଡ଼ା ଆଉ କେହି ନଥାନ୍ତି । ତାର ମୋ ପ୍ରତି ବହୁତ ମମତା ଥିଲା । ସେ ମତେ ଡାକିଲା, ତା ବସାଘରେ ରହିବା ପାଇଁ । ମୁଁ ଟିଉସନ ଖୋଜି, ୨୦/୩/୧୯୨୮ ତାରିଖରୁ କାଳୀଗଳିରେ ଉପେନ୍ଦ୍ର ଚନ୍ଦ୍ର ମିଶ୍ର ଓକିଲଙ୍କ ଘରେ ତାଙ୍କର ଦୁଇ ଭଣଜାଙ୍କୁ ପଢ଼ାଇବା ସ୍ଥିର ହେଲା । ମାସିକ ପଚିଶ ଟଙ୍କା ଦରମା ଛିଣ୍ଡିଲା । ପ୍ରତିଦିନ ସନ୍ଧ୍ୟାରେ ବକ୍ସିବଜାର ପେନ୍‌ସନ ଗଳିରୁ ଆସେ । ପାଞ୍ଚମାସ ପରେ ସୁକିନ୍ଦା କୋଠିରେ ଟିଉସନ ମିଳିଲା । ସୁକିନ୍ଦା ରାଜାଙ୍କ ନାତିକୁ ପଚାଶଟଙ୍କା ଦରମାରେ ତାଙ୍କ କୋଠିରେ ରହି ପଢ଼ାଇବାକୁ ହେବ । ଖାଇବା ପିଇବା ତାଙ୍କ କୋଠିରେ ହେବ । ମୁଁ ରାମି ବସାରୁ ସେଠାକୁ ଯାଇ ରହିଲି ୧୩/୮/୧୯୨୮ ଦିନ ଠାରୁ । କାଠଯୋଡ଼ି କୂଳରେ ସନ୍‌ସାଇନ୍ ଫିଲଡ୍ ପାଖରେ ତାଙ୍କର କୋଠି । ସେଠାରେ ରାଜାଙ୍କ ନାତି, ଜଣେ ଅଭିଭାବକ, ଚାକର ପୂଜାରୀ ଥାଆନ୍ତି । ସ୍କୁଲ ତଳ କ୍ଳାସରେ କଲେଜିଏଟ୍ ସ୍କୁଲରେ ସେ ପଢୁଥାଏ ।

ସେଠାରେ ଥିଲାବେଳେ ମୁଁ ଏକାଦଶୀ ପାଳନ କରୁଥିଲି । ଦିନବେଳେ ନିର୍ଜଳା ଥାଇ ସନ୍ଧ୍ୟା ପୂର୍ବରୁ କିଛି ଜଳଯୋଗ କରେ । ଗୋଟିଏ ଏକାଦଶୀରେ ଦିପହରେ କଟକ ଓକିଲଖାନାକୁ ଯାଇଥିଲି ବୁଲିବାକୁ । ବିଚିତ୍ରାନନ୍ଦ ଦାସଙ୍କ ସହିତ ସାକ୍ଷାତ ହେବାରେ, ସେ ତାଙ୍କ ପାଖରେ ବସାଇ କଅଣ କରୁଛି ଓ କରିବି ବୋଲି ପଚାରିଲେ । ତୃଷା ହେବାରୁ ସେଠାରେ ଥିବା ସୁରାଇରୁ ପାଣି ପିଇଲି । ସୁକିନ୍ଦା କୋଠିକୁ ଫେରି ସନ୍ଧ୍ୟାରେ ଜଳଯୋଗ କରିଥିଲି । କେଉଁ କାରଣରୁ କେଜାଣି ତା ପର ଦିନ (୨୮/୯/୧୯୨୮) ଖରାବେଳକୁ ମୋର ତରଳ ଝାଡ଼ାହୋଇ ଓପରଓଳା କଲେରା ଧରିଲା । କୋଠିରେ ସମସ୍ତେ ଚିନ୍ତିତ । ଖବର ପାଇ ଗୋପବନ୍ଧୁ ଚୌଧୁରୀ,

Digitized by srujanika@gmail.com

ନବକୃଷ୍ଣ ଚୌଧୁରୀ ଆସିଲେ ଦେଖିବାକୁ । ନବ ଚୌଧୁରୀଙ୍କ ସଙ୍ଗେ ବନ୍ଧୁତ୍ୱ ହୋଇଥିଲା ରେଭେନ୍‌ସା କଲେଜରେ ପଢ଼ିଲାବେଳେ । ସେ ଅସହଯୋଗ ଆନ୍ଦୋଳନ ପାଇଁ କଲେଜ ଛାଡିଥିଲେ । ଶାନ୍ତିନିକେତନରେ ପଢ଼ିବାକୁ ଯାଇଥିଲେ । ବୌଦ୍ଧିକ କ୍ରିୟା ତାଙ୍କର ସ୍ୱଭାବ ସିଦ୍ଧ । ଚିନ୍ତାଶୀଳରେ ସେ ଅଗ୍ରପନ୍ଥୀ । ଏମ୍.ଏ. ପରୀକ୍ଷା ପାଇଁ ମୁଁ ପ୍ରସ୍ତୁତ ହେଉଥିବାବେଳେ ତାଙ୍କର ବିବାହ ହେଲା । ଶାନ୍ତିନିକେତନରେ ମାଳତୀ ସେନଙ୍କ ସଙ୍ଗେ ତାଙ୍କର ଘନିଷ୍ଠତା ଜନ୍ମି ପ୍ରେମାବଦ୍ଧ ହେଲେ । କାଠଯୋଡି କୂଳ ତାଙ୍କ ଦ୍ୱିତଳ ବାସଭବନରେ ବିବାହର ଚତୁର୍ଥ ଦିବସରେ ଯେଉଁ ଉତ୍ସବ ହୋଇଥିଲା, ମୁଁ ସେଥିରେ ଯୋଗ ଦେଇଥିଲି । ମାଳତୀ ଚୌଧୁରୀ ବୋହୁସାଜି, ଓଢ଼ଣା ପକାଇ ପାଦରେ ପାଉଜି ପିନ୍ଧି ମୁଣ୍ଡ ଲୁଆଇଁ ଲୁଆଇଁ ବାହାରିଲେ । ପୂରା କରଣ ଘରର ବୋହୂ । ନବ ଚୌଧୁରୀଙ୍କର ପିତା ଗୋକୁଳାନନ୍ଦ ଚୌଧୁରୀ ପ୍ରଖ୍ୟାତ ଓକିଲ ଥିଲେ । ତାଙ୍କର ପରଲୋକ ଘଟିଯାଇଥିଲା । ଗୋପବନ୍ଧୁ ଚୌଧୁରୀ ଏମ.ଏ.ପାସ୍ କରି ଡେପୁଟି ହୋଇଥିଲେ । ସେ ଚାକିରୀ ଛାଡି କଂଗ୍ରେସରେ ଯୋଗ ଦେଇଥାନ୍ତି । କଲେଜରେ ମୁଁ ପଢୁଥିଲାବେଳେ ସଭାସମିତିରେ ତାଙ୍କ ସହିତ ପରିଚିତ ହୋଇଥିଲି । ନବ ଚୌଧୁରୀଙ୍କ ମାଆ ରକ୍ଷଣଶୀଳା ଥିବାରୁ ନବବାବୁଙ୍କ ବିବାହ ଯେତେଦୂର ସମ୍ଭବ କୁଳରୀତିରେ ହୋଇଥିଲା । ମୋର କଲେରା ହେବା ଶୁଣି ଦୁଇଭାଇ ଆସି ପହଞ୍ଚିଲେ । କଂଗ୍ରେସରେ ଯୋଗ ଦେଇଥିବା ଡାକ୍ତର ଅଟଳବିହାରୀ ଆଚାର୍ଯ୍ୟଙ୍କୁ ଡାକି ମୋର ଚିକିତ୍ସା କରାଇଲେ । ଅଟଳବାବୁ କଲିକତାରେ ଡାକ୍ତରୀ ପଢ଼ିଲାବେଳେ ସଂତ୍ରାସବାଦୀ ଦଳରେ ସକ୍ରିୟ ଥାଇ ଅଟକବନ୍ଦୀ ହୋଇଥିଲେ । ଅତି ଉଦାର ସ୍ୱଭାବର ଲୋକ । ଯେପରି ଜନପ୍ରିୟ ସେହିପରି ଲୋକ ଦୁଃଖକାତର । ତାଙ୍କ ପରାମର୍ଶରେ ବଙ୍କିମବାବୁ ଆସିଷ୍ଟାଣ୍ଟ ସର୍ଜନଙ୍କୁ ଡକାଗଲା । ସେ ଆସି ମତେ ଇଞ୍ଜେକ୍‌ସନ ଦେଲେ । ମୁଁ କାତର ହୋଇ ପ୍ରାୟ ସଂଜ୍ଞାହୀନ ହୋଇଥିଲି । ଦ୍ୱିତୀୟ ଦିନକୁ ଟିକିଏ ସୁସ୍ଥ ହେବା ଆରମ୍ଭ ହେଲା । ନବଭାଇ ଘରୁ ବାର୍ଲି ତିଆରି କରି ଆଣି ମତେ ଦେଉଥିଲେ । ଗୋପବାବୁ ବାରବାର ଆସି ବୁଝୁଥାନ୍ତି । ପରେ ଜାଣିଲି, ମିନୁଦି (ମାଳତୀ ଚୌଧୁରୀ) ବାର୍ଲି ତିଆରି କରୁଥିଲେ । ସେ ପରେ ମତେ କହିଛନ୍ତି, ନବଭାଇ ମୋ ପାଖକୁ ଆସୁଥିବାରୁ ସେ (ମିନୁଦି) ଭୟଭୀତ ହେଉଥିଲେ, କାଳେ ତାଙ୍କୁ (ନବବାବୁଙ୍କୁ) କଲେରା ଡେଇଁବ । ନବବଧୂ ସ୍ୱାମୀସର୍ବସ୍ୱ ହେବା ସ୍ୱାଭାବିକ । ମୋ ଅସୁସ୍ଥତା ଖବର ପାଇ ନନା ଆସି ପହଞ୍ଚିଲେ । ସେହି ସମୟରେ ନୀଳମଣି ସେନାପତି କଟକର କଲେକ୍ଟର ଥାଆନ୍ତି । ସେ ଅପ୍ରତ୍ୟାଶିତ ଭାବରେ ମତେ ଦେଖିବାକୁ ସକାଳ ୧୧ଟା ବେଳେ ସୁକିନ୍ଦା

Digitized by srujanika@gmail.com

କୋଠିରେ ପହଞ୍ଚିଲେ ଏବଂ ମୋ ସ୍ୱାସ୍ଥ୍ୟ ଓ ଚିକିତ୍ସା କଥା ପଚାରି ବୁଝିଲେ । ସେ ଯେଉଁଦିନ ଆସିଥିଲେ, ତା ପରଦିନ ଓଡିଶା ଡିଭିଜନ କମିଶନର ଅଫିସରେ ଡେପୁଟି କାର୍ଯ୍ୟପାଇଁ ଓଡିଶାର ପ୍ରାର୍ଥୀମାନଙ୍କର (ଯେଉଁମାନେ ଜିଲ୍ଲା ସ୍ତରରୁ କଲେକ୍ଟରମାନଙ୍କ ଦ୍ୱାରା ମନୋନୀତ ହୋଇଥାନ୍ତି ।) ଇଣ୍ଟରଭିଉ ଥିଲା । ମୋ ନାମ ପୁରୀ ଜିଲ୍ଲା କଲେକ୍ଟର ଦୟାନିଧି ଦାସ ପ୍ରଥମ ସ୍ଥାନ ଦେଇ ପଠାଇ ଥାନ୍ତି । ସେନାପତି ସାହେବଙ୍କୁ ମୁଁ ଅତି କ୍ଷୀଣକଣ୍ଠରେ କହିଲି ଡିଭିଜନ ଇଣ୍ଟରଭିଉକୁ ମୋ ଯିବାର ଅକ୍ଷମତା । ସେ ମତେ Don't worry କହି ଚାଲିଗଲେ । କମିଶନର ଇଣ୍ଟରଭିଉରେ ସବୁ ଜିଲ୍ଲା କଲେକ୍ଟରମାନେ ମଧ ଉପସ୍ଥିତ ଥାଆନ୍ତି । ପରେ ଜାଣିଲି, ସେନାପତିଙ୍କ ଦୃଢ଼ ସୁପାରିଶରେ ମୋ ନାମ ପ୍ରଥମ ସ୍ଥାନରେ ପାଟନାରେ ଶେଷ ଇଣ୍ଟରଭିଉ ପାଇଁ ମନୋନୀତ କରାଯାଇଥିଲା । ସେନାପତି ୧୯୨୧ ମସିହାରେ ପରିଜା ସାହେବ ବିଲାତରୁ ଫେରିବାର ୨/୩ ମାସପରେ I.C.S. ହୋଇ ବିଲାତରୁ ଆସି କଟକରେ ପହଞ୍ଚିଲେ । ଆମର I.A. ପ୍ରଥମ ବର୍ଷ । ପହଞ୍ଚିବା ଦିନ କଲେଜକୁ ଆସିଥିଲେ ତ୍ରିପାଠୀ ସାହେବଙ୍କ ସଙ୍ଗେ । କଲେଜ ବାରଦାରେ ଯାଉଥିବାବେଳେ ଆମେ ଉତ୍ସୁକ ହୋଇ ତାଙ୍କୁ ଦେଖୁଥିଲୁ । ବ୍ଲେଜର କୋଟ ପିନ୍ଧିଥାନ୍ତି । ଆମକୁ ଅପୂର୍ବ ଲାଗୁଥାଏ । ସେହିଦିନ ସନ୍ଧ୍ୟାରେ କଟକ ଟାଉନ ହଲରେ ତାଙ୍କୁ ସମ୍ବର୍ଦ୍ଧନା କରିବା ପାଇଁ ସଭା ହେଲା । ବିଶ୍ୱନାଥ କର ସଭାପତି । ସେନାପତି ସେଠାକୁ ଆସିଲେ, ଧୋତି ଓ ବ୍ଲେଜର କୋଟ ଓ ଟାଇପିନ୍ଧି । ମୁଁ ସେ ସଭାକୁ ଯାଇଥିଲି । ପରିଜା ସାହେବ ବିଲାତରୁ ଫେରିବା ପରେ ମଧ ସେହିପରି ସମ୍ବର୍ଦ୍ଧନା ସଭା ହୋଇଥିଲା । ବିଶ୍ୱନାଥବାବୁ ସଭାପତି ଥିଲେ । ପରିଜା ସାହେବ ଧୋତି ପଞ୍ଜାବୀ ପିନ୍ଧି ଆସିଥିଲେ । ସେନାପତିଙ୍କୁ ସେହିଦିନୁ ମୁଁ ଚିହ୍ନିଥିଲି । ସେ ମତେ ଚିହ୍ନିଲେ ମୁଁ କଲେରାରେ ଅବଶ ହୋଇ ପଡିଥିଲାବେଳେ ।

ଦେହବ୍ୟସ୍ତରୁ ଉଠିଲି କିନ୍ତୁ ବଙ୍କିମବାବୁ ଯେଉଁ ଇଞ୍ଜେକସନ ଦେଇଥିଲେ ତାହା ସେପ୍‌ଟିକ୍ ହୋଇ ତାଙ୍କ ଦ୍ୱାରା ଅପରେସନ କରିବାକୁ ପଡିଲା । ସେ କ୍ଷତ ଚିହ୍ନ ସବୁଦିନ ପାଇଁ ମୋ ଦକ୍ଷିଣ ହାତରେ ରହିଛି ।

ସୁକିନ୍ଦା କୋଠିରେ ଥିଲାବେଳେ ଇନକମ ଟ୍ୟାକସ୍ ଇନସ୍‌ପେକ୍ଟର ଚାକିରୀ ପାଇଁ ରାଞ୍ଚିରେ ଇନକମଟ୍ୟାକ୍ସ କମିଶନରଙ୍କ ପାଖେ ଇଣ୍ଟରଭ୍ୟୁ ଡାକରା ପଡିଲା । ରାଞ୍ଚିରେ ସେତେବେଳେ ପ୍ରଣବ ରାୟଚୌଧୁରୀ ଡେପୁଟି ଥାଆନ୍ତି । ତାଙ୍କୁ ଟେଲିଗ୍ରାମ୍ କଲି, ତାଙ୍କ ଘରେ ଯାଇ ମୁଁ ଉଠିବି ବୋଲି । ସୁବିଧା ହେବନାହିଁ ବୋଲି ସେ ଟେଲିଗ୍ରାମ୍‌ରେ ଉତ୍ତର ପଠାଇଲେ । ସେହିଦିନ ମୋର ଟ୍ରେନ୍ ଧରିବାର କଥା ।

Digitized by srujanika@gmail.com

ରାଞ୍ଚିରେ ପହଞ୍ଚି ରିକ୍ସାରେ ତାଙ୍କ ଘରେ ଯାଇ ଉପସ୍ଥିତ ହେବାରୁ ତାଙ୍କ ମୁହଁରେ ଅସନ୍ତୋଷ ଦେଖି ମୁଁ ବିସ୍ମିତ ଓ ଦୁଃଖିତ ହେଲି । ଯାହାଙ୍କ ସଙ୍ଗେ ଏତେ ବନ୍ଧୁତ୍ୱ ଥିଲା, ସେ ଚାକିରୀ ପାଇବା ପରେ ଏପରି ବଦଳିଯିବେ, ମୁଁ ଭାବିନଥିଲି । ସେତେବେଳକୁ ସେ ବିବାହିତ । ପାଟନାର ବାରିଷ୍ଟର କେ.ବି.ଦତ୍ତଙ୍କର (K.B.Dutt) କନ୍ୟା ତରୁ ଦତ୍ତ ପାଟନାର କଲେଜରେ ଏମ.ଏ.କ୍ଲାସରେ ଏକମାତ୍ର ଛାତ୍ରୀ ଥାଆନ୍ତି । ପ୍ରଣବବାବୁଙ୍କର ସେଠାରେ ତାଙ୍କ ସହିତ ଘନିଷ୍ଠତା ଜନ୍ମି, ପରେ ବିବାହ ହୋଇ ଦୁହେଁ ରାଞ୍ଚିରେ ଥାଆନ୍ତି । ତାଙ୍କ ସ୍ତ୍ରୀ, ବାରିଷ୍ଟରଙ୍କ କନ୍ୟା, ଡେପୁଟିଙ୍କ ପତ୍ନୀ ବୋଲି ନିଜକୁ ଉଚ୍ଚସ୍ତରର ମନେ କରୁଥିଲେ । ମୋ ପରି ଗୋଟିଏ ଓଡିଆ ଯୁବକ, ଯେ ଇନ୍‌ସପେକ୍ଟର ପରି ଗୋଟିଏ ଛୋଟ ଚାକିରୀ ପାଇଁ ଆସୁଛି, ତାଙ୍କ ଦୃଷ୍ଟିରେ ହେୟ ବିବେଚିତ ହେବା ଆଶ୍ଚର୍ଯ୍ୟ ନଥିଲା । ମତେ ଆତିଥ୍ୟ ଦେଲେ ତାଙ୍କର ମର୍ଯ୍ୟାଦା କ୍ଷୁର୍ଣ୍ଣହେବ ବୋଲି ବୋଧହୁଏ ସ୍ୱାମୀଙ୍କୁ କହି ନାସ୍ତି ଟେଲିଗ୍ରାମ୍ ପଠାଇ ଥିଲେ । ମୁଁ ଆସି ଦୁଆରେ ପହଞ୍ଚିବାରୁ, ଅଗତ୍ୟା କୁଣ୍ଠାର ସହିତ ମତେ ତାଙ୍କ ଗୋଦାମ ଘରେ ( Store room) ସ୍ଥାନ ଦେଲେ । ଦେଖିଲି, ସେହି ଇନ୍‌ସପେକ୍ଟର କାର୍ଯ୍ୟ ପାଇଁ ପ୍ରାର୍ଥୀ ଆଉଜଣେ—ମୈଥିଲୀ ମୁଖାର୍ଜୀ–ତାଙ୍କ ଘରେ ଉଠିଛନ୍ତି । ସେ ଯେଉଁ ରୁମ୍‌ରେ ରହିଥାନ୍ତି, ସେଥିରେ ଯଥେଷ୍ଟ ସ୍ଥାନ ଖାଲିଥାଏ । ମୁଁ ରହିବା ଭିତରେ ମିସେସ୍ ରାୟଚୌଧୁରୀ ମୋ ସହିତ ପ୍ରାୟ କଥାବାର୍ତ୍ତା କରି ନଥିଲେ । ପ୍ରଣବବାବୁ ତ୍ରୁଟି ଦେଖାଇ ନଥିଲେ । ସେ ସମୟର ତିରିଶବର୍ଷ ପରେ ମୁଁ ଯେଉଁଦିନ ପାଟନାରେ ଜଜ୍ ହୋଇ ଯୋଗ ଦେଲି, ପ୍ରଥମ ଦିନ ସନ୍ଧ୍ୟାରେ ପ୍ରଣବବାବୁ ଓ ତାଙ୍କ ପତ୍ନୀଙ୍କର ସାକ୍ଷାତ ଓ ପ୍ରୀତି ସମ୍ଭାଷଣରେ ମୁଁ ଆପ୍ୟାୟିତ ହୋଇଥିଲି । ଜଣେ ଜଜ୍‌ଙ୍କ ସଙ୍ଗେ ପରିଚୟ ବା ବନ୍ଧୁତା ବୋଧହୁଏ ତାଙ୍କ କୌଳିନତାରେ ସହାୟକ ମନେ କଲେ । ପାଟନା ରହିଥିବା ସମୟରେ ଏକାଧିକବାର ତାଙ୍କ ଗୃହରେ ଭୋଜନ ନିମନ୍ତ୍ରଣ ରକ୍ଷା କରିଥିଲି । ପ୍ରଣବବାବୁ ଅନେକ ସମୟରେ ମୋ ପାଖକୁ ଆସୁଥାନ୍ତି । ତାଙ୍କ ସଙ୍କଳିତ ଜିଲ୍ଲା ଗେଜେଟିୟର କେତେଖଣ୍ଡି ମତେ ଉପହାର ଦେଇଥିଲେ । ପୂର୍ବର ସୌହାର୍ଦ୍ଦ୍ୟ ଅତୁଟ ରହିଛି ।

ଗୋଟିଏ ଇନସ୍‌ପେକ୍ଟର କାର୍ଯ୍ୟ ପାଇଁ ଅନେକ ପ୍ରାର୍ଥୀ ଥିଲେ । ଇଣ୍ଟରଭିଉରେ ମୋର ନିଯୁକ୍ତି ମିଳିଲା । ମୈଥିଲିବାବୁ ପରେ ମୁନସଫ ହେଲେ । କଟକରେ ସେ ଅବସ୍ଥାପିତ ଥିବା ସମୟରେ ମୁଁ ଓକିଲାତି କରୁଥିଲି । ଭଦ୍ର ବ୍ୟବହାର, ଧର୍ମଭୟ ଯୋଗୁ ସେ ସମସ୍ତଙ୍କର ପ୍ରିୟପାତ୍ର ଥିଲେ । ପରେ ସବ୍‌ଜଜ୍ ହୋଇ ଅବସର ଗ୍ରହଣ କଲେ ଓ ପୁରୀରେ ବାସିନ୍ଦା ହୋଇ ରହିଲେ ।

Digitized by srujanika@gmail.com

ଦେଢ଼ଶହ ଟଙ୍କା ବେତନରେ ଇନ୍‌କମଟ୍ୟାକ୍‌ସ ଇନ୍‌ସପେକ୍ଟର ରୂପେ କଟକ ଅଫିସରେ ଯୋଗଦେଇ କଟକ ଗଙ୍ଗାମନ୍ଦିରରେ ଘରଭଡା ନେଇ ସ୍ତ୍ରୀ, ପୁତ୍ରଙ୍କୁ ଆଣି ବସା ଆରମ୍ଭ କଲି । ମତେ କଲେରା ହେବା ପୂର୍ବଦିନ ଭିଙ୍ଗାରପୁରଠାରେ ପୁତ୍ର ଜନ୍ମଲାଭ କରିଥିଲା । ନାମ ପ୍ରଭାତ କୁମାର । ମଧୁସୂଦନ ମହାନ୍ତି ସେତେବେଳେ ଇନ୍‌କମଟ୍ୟାକ୍‌ସ ଅଫିସର । ତାଙ୍କ ପିତା ରଘୁନାଥ ମହାନ୍ତି ଥିଲେ ପ୍ରସିଦ୍ଧ ମୁକ୍ତାର । ତାଙ୍କ ଘୋଡାଗାଡିରେ ମଧୁବାବୁ ଅଫିସକୁ ଆସୁ ଥାଆନ୍ତି । ଇନ୍‌ସପେକ୍ଟର କାମରେ ଖାତିର ଥିଲା । ଓଡିଶାରେ ଜଣେ ଅଫିସର, ଜଣେ ଇନ୍‌ସପେକ୍ଟର । ପୁରୀ, କଟକ, ବାଲେଶ୍ୱର ଜିଲ୍ଲାର ବିଭିନ୍ନ ସ୍ଥାନ ଗସ୍ତରେ ଯିବାକୁ ପଡୁଥିଲା । ଡେପୁଟିଠାରୁ ଇନ୍‌କମ୍ ଟ୍ୟାକ୍‌ସ ଅଫିସର ବେତନ ଶହେ ଟଙ୍କା ଅଧିକ । ସବ୍ ଡ଼େପୁଟି ଠାରୁ ଇନ୍‌ସପେକ୍ଟର ପଚାଶ ଟଙ୍କା ବେଶୀରେ ଆରମ୍ଭ କରୁଥିଲେ । ଗସ୍ତରେ ଗଲାବେଳେ ପୁରୁଷୋତ୍ତମ ଦାସ ପିଅନ ମୋ ସାଙ୍ଗରେ ଯାଉଥିଲା । ଜାତି ଅଭିମାନରେ ସେ ବଡ ଟାଣ । ବାଙ୍କୀରେ ବନବିହାରୀ ପଟ୍ଟନାୟକଙ୍କ (ଡାକ୍ତର) ଭଉଣୀ ସଙ୍ଗେ ଗୋପାଳଙ୍କର ବିବାହବେଳେ ମୁଁ ପୁରୁଷୋତ୍ତମକୁ ସଙ୍ଗରେ ନେଇ ଯାଇଥିଲି । ତାଙ୍କ ଘରେ ଖାଇବାକୁ, ମୁଁ କହିଲେ ସୁଦ୍ଧା ସେ ଗଲାନାହିଁ, ତାକୁ କୁଣିଆ ନିମନ୍ତ୍ରଣ କରି ନ ଥିବାରୁ । ମଧୁବାବୁଙ୍କ ଅଧୀନରେ ମୋର କାର୍ଯ୍ୟ । ତାଙ୍କର ମୋ ପ୍ରତି ସହାନୁଭୂତି ଥିଲା । ପୁରୁଣା କଲେଜ ଗଳିରେ ଗୋଟିଏ ଦୋତାଲା ଘରେ, ତଳ ମହଲାରେ ଅଫିସ ହେଉଥାଏ । ଓପର ମହଲାରେ ତିନୋଟି ଘର ଥିଲା । କୌଣସି ବ୍ୟବହାରରେ ଆସୁ ନଥିଲା । ମଧୁବାବୁଙ୍କ କହିବା ଅନୁସାରେ ମୁଁ ମାସିକ ପନ୍ଦର ଟଙ୍କା ଭଡାରେ ସେଠାରେ ଆସି ରହିଲି । ସେହି ଗଳିମୁଣ୍ଡରେ 'ସମାଜ' ଅଫିସ ଓ ପ୍ରେସ ଥାଏ । ପରିଚାଳକ ରାଧାନାଥବାବୁ । ଗୋପବନ୍ଧୁ ଦାସଙ୍କର ତିରୋଧାନ ୧୯୨୮ ଜୁନ୍ ୧୭ରୁ ହୋଇଯାଇଥାଏ । ରାଧାନାଥବାବୁ ଅନେକ ସମୟରେ ଆମ ବସାକୁ ଆସୁଥିଲେ । ତାଙ୍କ ସହିତ ଘନିଷ୍ଠତା ସେହି ସମୟରୁ । କେତେମାସ ପରେ ଓଡିଆ ବଜାର ଯଦୁନାଥ ଭବନରେ ଓପର ମହଲାକୁ ବସା ପରିବର୍ତ୍ତନ କଲି । ସେଠାରେ ଥିବା ସମୟରେ ଭାଗ୍ୟର ବିପର୍ଯ୍ୟୟ ପୁଣି ଘଟିଲା ।



Digitized by srujanika@gmail.com

# ବିପର୍ଯ୍ୟୟ

ପ୍ରଭିନ୍‌ସିଆଲ ଏକ୍‌ଜିକ୍ୟୁଟିଭ ସର୍ଭିସ ସେତେବେଳେ ବଡ ଚାକିରୀ ଥିଲା । ତା ଉପରକୁ ଥିଲା ଆଇ.ସି.ଏସ୍. । ସେଥିପାଇଁ ବିଲାତ ଯିବାକୁ ହେଉଥିଲା । ପ୍ରାଥମିକ ପ୍ରତିଯୋଗିତା ପରୀକ୍ଷା ଭାରତବର୍ଷରେ ହୁଏ । ସେଥିରେ ଯେ ପାରନ୍ତି, ବିଲାତ ଯାଆନ୍ତି ଶିକ୍ଷା ଓ ଟ୍ରେନିଙ୍ଗ ପାଇଁ । ସେ ଚାକିରୀ ଅତି ଅଳ୍ପ । ପ୍ରତି ପ୍ରଦେଶରେ ସ୍ୱତନ୍ତ୍ର ଭାବରେ, ଡେପୁଟି, ସବ୍‌ଡେପୁଟି ବଛା ହୁଅନ୍ତି ପ୍ରତିବର୍ଷ । ସେଥିପାଇଁ ପରୀକ୍ଷା ନଥିଲା । ଶିକ୍ଷାର ଯୋଗ୍ୟତା ଓ ଇଣ୍ଟରଭ୍ୟୁର ଫଳ ଉପରେ ମନୋନୟନ ହୁଏ । ପ୍ରଥମେ ଜିଲ୍ଲାସ୍ତରରେ ବଛାହୁଏ । ତାପରେ ଡିଭିଜନଦ୍ୱାରା । ଶେଷରେ ପ୍ରଦେଶର ସଦର ମହକୁମାରେ ହୋମମେମ୍ବରଙ୍କ ଅଧକ୍ଷତାରେ ଏକ କମିଟି ଇଣ୍ଟରଭ୍ୟୁ କରି ସୁପାରିଶ ହୋଇ ଆସିଥିବା ପ୍ରାର୍ଥୀମାନଙ୍କ ମଧ୍ୟରୁ ଯେତୋଟି ନିଯୁକ୍ତି ଆବଶ୍ୟକ ସେତେଜଣଙ୍କୁ ବାଛନ୍ତି । ସେମାନେ ମେଡିକାଲ ବୋର୍ଡରେ ଶାରୀରିକ ପରୀକ୍ଷା ପରେ କାର୍ଯ୍ୟରେ ଯୋଗ ଦିଅନ୍ତି । ପଚିଶ ବର୍ଷ ବୟସ ସୀମା ଥାଏ ।

ମୋ ନାମ ଜିଲ୍ଲାରୁ ପ୍ରଥମ ସ୍ଥାନରେ ଏବଂ ଡିଭିଜନରୁ, ମୁଁ କଲେରାରେ ଅସୁସ୍ଥ ଥିବାରୁ ଇଣ୍ଟରଭ୍ୟୁରେ ଉପସ୍ଥିତ ନ ଥିବା ସତ୍ତ୍ୱେ, ପ୍ରଥମ ସ୍ଥାନରେ ଯାଇଥିଲା । ସେତେବେଳେ ସାଧାରଣତଃ ଚାରିଜଣ ଡେପୁଟି ମନୋନୀତ ହେଉଥିଲେ । ଜଣେ ବିହାରୀ ହିନ୍ଦୁ, ଜଣେ ମୁସଲମାନ, ଜଣେ ଓଡିଶାରୁ, ଆଉ ଜଣେ ଅନ୍ୟ ସମ୍ପ୍ରଦାୟରୁ । ସରକାରୀ କାର୍ଯ୍ୟରେ ନିଯୁକ୍ତ ଥିବା ପ୍ରାର୍ଥୀଙ୍କୁ ଜିଲ୍ଲା, କିମ୍ବା ଡିଭିଜନ ଇଣ୍ଟରଭ୍ୟୁକୁ ଯିବାକୁ ପଡେ ନାହିଁ । ତାଙ୍କ ଦରଖାସ୍ତ ତାଙ୍କ ବିଭାଗର ସର୍ବଶ୍ରେଷ୍ଠ କର୍ମଚାରୀଙ୍କ ସୁପାରିଶ ହେଲେ, ସିଧା ପ୍ରାଦେଶିକ ଇଣ୍ଟରଭ୍ୟୁ ପାଇଁ ଆସେ । ପାଟନା ମନୋନୟନ କମିଟିରେ ଉପସ୍ଥିତିବେଳେ ଦେଖିଲି ଅବକାରୀ ଇନସ୍‌ପେକ୍ଟର ଜଗନ୍ନାଥ ମିଶ୍ର (ଓଡିଶାର) ପ୍ରାର୍ଥୀ ଥିଲେ । ଇଣ୍ଟରଭ୍ୟୁରେ ଓଡିଶା ପ୍ରାର୍ଥୀମାନଙ୍କ ମଧ୍ୟରେ ମୋର ପ୍ରଥମ ସ୍ଥାନ ହେଲା କିନ୍ତୁ ମନୋନୟନ ବିଚାରବେଳେ ଫଲି (Folly) ସାହେବ Board of Revenue Member (ଯେ ଇଣ୍ଟରଭ୍ୟୁରେ ଜଣେ ମେମ୍ବର ଥିଲେ)

Digitized by srujanika@gmail.com

ଜଗନ୍ନାଥ ମିଶ୍ରଙ୍କର ବୟସ ସୀମା ପାରହେଉ ଥିବାରୁ ଏବଂ ମୋର ଆଉ ବର୍ଷେ ଥିବା ସ୍ଥଳେ, ଜଗନ୍ନାଥବାବୁଙ୍କୁ ସେ ବର୍ଷ ଚାକିରୀ ଦେବାକୁ ବାରମ୍ବାର କହିଲେ । ତେଣୁ ଆଗାମୀ ବର୍ଷ ମୋର ନିଯୁକ୍ତି ହେବାପାଇଁ ନୋଟ ଉଲ୍ଲେଖ ରହି, ଜଗନ୍ନାଥ ମିଶ୍ରେ ମନୋନୀତ ହେଲେ । ସେହି ବୋର୍ଡରେ ଫକସ ସାହେବ (D.P.I.), ଫଲି ସାହେବ (Revenue Member), ଦ୍ୱାରିକା ପ୍ରସାଦ, ଲକ୍ଷ୍ମୀଧର ମହାନ୍ତି ମେମ୍ବର ଥିଲେ । ହୋମ ମେମ୍ବର ହାମଣ୍ଡ ସାହେବ ଅଧ୍ୟକ୍ଷ । ପରେ ଜାଣିଲି ଜଗନ୍ନାଥ ମିଶ୍ରଙ୍କ ଠାରୁ ଫଲି ସାହେବଙ୍କ ସଙ୍ଗେ ତାଙ୍କର କୌଣସି ଜଣାଶୁଣା ନଥାଇ, ଫଲି କାହିଁକି ତାଙ୍କ ପାଇଁ ବୋର୍ଡରେ ଶତମୁଖ ସୁପାରିଶ୍ କଲେ । ଫଲି ସାହେବ ଅଳ୍ପଦିନ ମଧ୍ୟରେ ଅବସର ନେଇ ବିଲାତ ଚାଲିଯିବାର କଥା । ତାଙ୍କ ପାଖରେ ଜଣେ ଓଡ଼ିଆ ଚାକର ବହୁବର୍ଷ ରହିଥାଏ । ଫଲି ସାହେବ ସ୍ୱଦେଶକୁ ଯାଉଥିବାରୁ ତା ପାଇଁ କିଛି ଅନୁଗ୍ରହ ଦେଖାଇବା ପାଇଁ ସେ ସାହେବଙ୍କ ପାଖେ ନେହୁରା କଲା । କଅଣ କରିପାରିବେ ପଚାରିବାରୁ ଚାକର କହିଲା ତା ଗାଁ ଧାମନଗର ଜମିଦାରଙ୍କର ପୁଅ ମୁରଲୀଧର ଜେନା ଅବକାରୀ ଇନସ୍‌ପେକ୍ଟର ପାଇଁ ଦରଖାସ୍ତ କରିଛି । ଯଦି ସେ ଚାକିରୀ ହୋଇଯାଏ, ଜମିଦାର ତାକୁ (ଚାକରକୁ) କିଛି ଜମିଚାଷ କରିବାକୁ ଦେବେ ଏବଂ ସାହେବ ଦେଶକୁ ଚାଲିଗଲେ ସେ ଯାଇ ଗାଁରେ ଚାଷବାସ କରି ଚଳିଯିବ । ଅବକାରୀ ଚାକିରୀରେ କି ବାଧା ଅଛି ପଚାରନ୍ତେ, ଚାକର କହିଲା ଯେ ଜଗନ୍ନାଥ ମିଶ୍ର ଅବକାରୀ ଇନ୍‌ସପେକ୍ଟର ଥାଇ ଡେପୁଟି ପାଇଁ ପ୍ରାର୍ଥୀ ଅଛନ୍ତି । ତାଙ୍କର ଯଦି ଡେ଼ପୁଟି ଚାକିରୀ ହୋଇଯାଇ ପାରିବ, ତେବେ ତାଙ୍କ ଜାଗାରେ ଚାକରର ଜମିଦାରଙ୍କ ପୁଅ ଭର୍ତ୍ତି ହୋଇଯାଇ ପାରିବ । ସେହି ଯୋଗୁ ଇଣ୍ଟରଭ୍ୟୁ ବୋର୍ଡରେ ଫଲି ସାହେବ, ଜଗନ୍ନାଥ ମିଶ୍ରେ ଦ୍ୱିତୀୟ ସ୍ଥାନ ପାଇଥିଲେ ମଧ୍ୟ ତାଙ୍କ ବୟସ ସୀମା ଆଳରେ ତାଙ୍କ ପାଇଁ, ଏତେ ଲାଗି ପଡିଲେ । ମୋ ପ୍ରତି ଅନ୍ୟାୟ ହେଲା ନାହିଁ ବୋଲି ସେ ଓ ଅନ୍ୟମାନେ ଭାବିଲେ, କାରଣ ଆଗାମୀ ବର୍ଷ ମୋର ନିଯୁକ୍ତି ପାଇଁ ନୋଟ ରଖାଗଲା । ଷ୍ଟେଟ ସ୍କଲରସିପ୍ ବେଳେ ମଧ୍ୟ ପ୍ରଥମଥର ଏପରି ନୋଟ ଆଗାମୀ ବର୍ଷ ପାଇଁ ରହିଥିଲା । ଜଣେ ବେହେରା ଚାକର ଜରିଆରେ ଜମିଦାରଙ୍କ ପୁଅ ଏତେ ଯୋଗାଡ କରିପାରିଲେ ଏବଂ ସେହି ସୂତ୍ରରେ ନ୍ୟାଯ୍ୟ ପ୍ରାପ୍ତିରୁ ମୁଁ ବଞ୍ଚିତ ହେଲି । ଜଗନ୍ନାଥ ମିଶ୍ରେ ଡେପୁଟି ହେଲେ । ତାଙ୍କ ସ୍ଥାନରେ ବେହେରା ଚାକର ଜମିଦାରଙ୍କ ପୁଅ ମୁରଲୀଧର ଜେନା ଅବକାରୀ ଇନ୍‌ସପେକ୍ଟର ହେଲେ । ପରେ ସେ ସୁପରିଣ୍ଟେଣ୍ଡେଣ୍ଟ ହୋଇ ଅବସର ନେଲେ । ବ୍ରିଟିଶ୍ ଶାସନରେ ଏହା ମଧ୍ୟ ସମ୍ଭବ ଥିଲା । ଜଣକୁ ଛୋଟ ଚାକିରୀ ଦେବା

Digitized by srujanika@gmail.com

ପାଇଁ, ଆଉ ଜଣକୁ ବଡ ଚାକିରୀ ଦେଇ, ଯୋଗ୍ୟତମ ବ୍ୟକ୍ତିକୁ ନିରାଶ କରିବାରେ ନ୍ୟାୟ ବିଚାର କେଉଁଠି ରହିଲା ? ଜଣେ ଚାକରର କାନକୁହାରେ ସବୁ ଓଲଟପାଲଟ ହୋଇଗଲା । କନିକାର ରାଜା ସାହେବ ସେତେବେଳେ Executive Councellor । ଲକ୍ଷ୍ମୀଧରବାବୁ ତାଙ୍କ ଘରେ ରହୁଥିଲେ । କନିକା ଏ ସମସ୍ତ ଶୁଣି ଦୁଃଖିତ ହେଲେ । ଇଣ୍ଟରଭ୍ୟୁ ବୋର୍ଡର ଫାଇଲ ମଗାଇ ଦେଖିଲେ ଆଗାମୀ ବର୍ଷ ପାଇଁ ମୋ ସପକ୍ଷରେ ନୋଟ ରହିଛି । ଏ ଆଶ୍ୱାସନା ସେ ଦେଲେ । କିନ୍ତୁ ଅତି ମନ ଦୁଃଖରେ ମୁଁ କଟକ ଫେରିଲି ।

ଆଉ ବର୍ଷେ କଟିଗଲା ଇନ୍‌କମଟ୍ୟାକ୍ସ ଅଫିସରେ । ଡେପୁଟି କାମପାଇଁ ଦରଖାସ୍ତ କରିବାର ପୁଣି ସମୟ ଆସିଲା । ମୋ ଦରଖାସ୍ତ ଇନ୍‌କମଟ୍ୟାକ୍ସ କମିଶନରଙ୍କ ଜରିଆରେ ଯିବାର କଥା । ମୁଁ ତାହା କଲି ଏବଂ ଆଉ ଗୋଟିଏ ଦରଖାସ୍ତ ପୂର୍ବବର୍ଷ ପରି ପୁରୀ କଲେକ୍ଟରଙ୍କ ପାଖକୁ ପଠାଇଲି । ଇନ୍‌କମଟ୍ୟାକ୍ସ କମିଶନର ଲେଖି ପଠାଇଲେ ଯେ ମୋ ଦରଖାସ୍ତ ସେ ଉପରକୁ ପଠାଇବେ ନାହିଁ । ଏ ନିଷ୍ପତ୍ତି ବଦଳାଇବା ପାଇଁ ତାଙ୍କୁ ଅନୁରୋଧ କରିବା ନିମନ୍ତେ ରାଞ୍ଚି ଗଲି । ହରମୋହନ ପଟ୍ଟନାୟକ ରାଞ୍ଚିରେ ଇନ୍‌କମ୍‌ଟ୍ୟାକ୍ସ ଅଫିସର ଥାଆନ୍ତି । ତାଙ୍କ ପାଖେ ଉଠିଲି । କମିଶନର ଥାଆନ୍ତି ଜନଷ୍ଟନ୍ ସାହେବ I.C.S । ତାଙ୍କ ସଙ୍ଗେ ସାକ୍ଷାତ କରିବା ଜୀବନ ସାରା ମନେ ରହିଲା ଭଳି ଏକ ଅନୁଭୂତି ।

ତାଙ୍କ ଅଫିସକୁ ଯିବା ସଙ୍ଗେ ସଙ୍ଗେ ସେ କହିଲେ, ତମ ଦରଖାସ୍ତ ଉପରକୁ ପଠାଇବି ନାହିଁ ବୋଲି ମୁଁ ଚିଠି ଦେଇଥିଲି, ତମେ କଅଣ ପାଇନାହିଁ ?

ଉତ୍ତର— ପାଇଛି । ମୁଁ ଆସିଛି ଆପଣଙ୍କୁ ଅନୁରୋଧ କରିବା ପାଇଁ । ମୋ ଦରଖାସ୍ତଟିକୁ ଦୟା କରି ଫରଓ୍ୱାର୍ଡ କରନ୍ତୁ ।

ସାହେବ—ତମ କାର୍ଯ୍ୟ ଏଠାରେ ପ୍ରଶଂସା ଯୋଗ୍ୟ ହୋଇଛି । ଆସିଷ୍ଟାଣ୍ଟ କମିଶନର ତମ ଅଫିସ ପରିଦର୍ଶନ କରି, ତମ କାର୍ଯ୍ୟକୁ ସେଠା ଇନ୍‌କମଟ୍ୟାକ୍ସ ଅଫିସରଙ୍କ ଅପେକ୍ଷା ଅଧିକ ପସନ୍ଦ କରି ରିପୋର୍ଟ ଲେଖିଛନ୍ତି । ତମେ ଏଠାରେ ଇନ୍‌କମ୍‌ଟ୍ୟାକ୍ସ ଅଫିସର ହେବ । ଡେପୁଟି ଚାକିରୀ ପାଇଁ କାହିଁକି ଲାଳାୟିତ ହେଉଛ ?

ଉତ୍ତର— ଏଠାରେ ଅଫିସର ହେବାକୁ ପ୍ରାୟ ୧୧ ବର୍ଷ ଲାଗିଯିବ । ମୋର ଏ ବର୍ଷ ଡେପୁଟି ଚାକିରୀ ପାଇଁ ଗତବର୍ଷ ଠାରୁ ନୋଟ ହୋଇ ରହିଛି । ଆପଣ ଦରଖାସ୍ତଟି ପଠାଇଲେ ତାହା ମୋ ପକ୍ଷରେ ସହାୟକ ହେବ ।

Digitized by srujanika@gmail.com

ସାହେବ—ଦରଖାସ୍ତ ପାଇଲେ, ଡେପୁଟି ଚାକିରୀ ମିଳିବାର କେଉଁ ନିଶ୍ଚିତ ଅଛି ? ସବୁ ଦିଗକୁ ବିଚାରି ମୁଁ ସ୍ଥିର କରିଛି ଦରଖାସ୍ତ ଫରୱାର୍ଡ କରିବି ନାହିଁ ।

ଉତ୍ତର— ତାହାହେଲେ ମତେ ଇସ୍ତଫା ଦେବାକୁ ହେବ ।

ସାହେବ—ଇସ୍ତଫା ଦେବା ବୋକାମୀ ହେବ । ଯଦି ଡେପୁଟୀ ଚାକିରୀ ନ ହେଲା, ତାହାହେଲେ କଣ କରିବ ? ଏ କୂଳ ଯିବ ସେ କୂଳ ଯିବ ।

ଉତ୍ତର — ମୁଁ କୌଣସି ମତେ ଠିଆ ହେବା ପାଇଁ ଚାଖଣ୍ଡେ ଜାଗା ଠିକ୍ କରିନେବି ।

ସାହେବ—ଏପରି ଦମ୍ଭ ଭାରତୀୟଙ୍କର ମୁଁ ଦେଖିନାହିଁ । (ଉପହାସ୍ୟ ସହିତ କହିଲେ)

ଉତ୍ତର— ଅନ୍ତତଃ ମୁଁ ଜଣେ ସେହି ଭାରତୀୟ ଯାହାର ସେ ଦମ୍ଭ ଅଛି ।

ସାହେବ—ଯାଅ, ଏ ଘର କାନ୍ଥ ପାଖରେ ଚୌକିଟିଏ ନେଇ ବସି ଧୀର ଭାବରେ ବିଚାର କରି ଯାହା ସ୍ଥିର କର । ଦଶମିନିଟ୍ ସମୟ ଦେଲି ।

ଘଣ୍ଟି ବଜାଇ ଚପରାସିକୁ ଡାକି ଘରକୋଣକୁ ଚୌକି ପକାଇ, ମତେ ସେଠାରେ ବସିବା ପାଇଁ ନିର୍ଦ୍ଦେଶ ଦେଲେ । ମୁଁ ତାହା କଲି । ଭାବିଲି, ସତକଥା, ଯଦି ଇସ୍ତଫା ଦିଏ ଓ ଡେପୁଟି ନ ହୁଏ ତାହାହେଲେ ଅବସ୍ଥା କାହିଲ ହେବ । କିନ୍ତୁ ଏତେ ଦମ୍ଭ ଦେଖାଇ ଇସ୍ତଫା କଥା କହିଛି । ଇସ୍ତଫା ନ ଦେଲେ ସାହେବ ଆହୁରି ଉପହାସ କରିବେ ଏବଂ ଭାରତୀୟଙ୍କର ଖାଲି ମୁହଁ ଗାଲୁ ବୋଲି କେବଳ ମୋ ପାଖରେ ଥଟ୍ଟା କରିବେ ନାହିଁ, କ୍ଲବରେ ଅନ୍ୟ ସାହେବମାନଙ୍କ ଆଗରେ ମଧ କହିବେ । ଏହି କଥା ମତେ ଘାରେଇଲା । ସ୍ଥିର କଲି, ଯାହାହେବ ହେଉ, ଆଉଥରେ ଅନୁରୋଧ କରିବି ଦରଖାସ୍ତ ଫରୱାର୍ଡ କରିବା ପାଇଁ । ନ ଶୁଣିଲେ ଇସ୍ତଫା ଦେବି । ଦଶମିନିଟ୍ ପୂରିବାରେ ସାହେବ ମତେ ପାଖକୁ ଡାକି ପଚାରିଲେ, କଣ ଠିକ୍ କଲି । ମୁଁ ପୁନର୍ବାର ଅନୁରୋଧ କଲି । ସେ ପ୍ରତ୍ୟାଖ୍ୟାନ କରିବାରୁ ମୋର ଇସ୍ତଫା ଗ୍ରହଣ କରିବାକୁ ଜଣାଇଲି ।

ସାହେବ—ତମ ନିଷ୍ପତ୍ତିର ଫଳପାଇଁ ତମେ ଦାୟୀ । ମୁଁ ନୁହେଁ । ଦେଖ, ତମେ ଯାହା କରିବାକୁ ଯାଉଛ, ତାହା ଭାବିଚିନ୍ତି କରୁଛ ବୋଲି ମୋର ମନେ ହେଉନାହିଁ । ତମେ ବିବାହିତ, ତମ ସ୍ତ୍ରୀକୁ ଏ ବିଷୟରେ ପଚାରିଛ ? ତମ ବାପ ମା'ଙ୍କ ପରାମର୍ଶ ନେଇଛ ?

ଉତ୍ତର— ମୁଁ କାହାରି ପରାମର୍ଶ ଲୋଡିନଥିଲି, କାରଣ ମୁଁ ଭରସା କରିଥିଲି ଆପଣଙ୍କୁ ଅନୁନୟ କଲେ ଆପଣ ମୋ ଦରଖାସ୍ତ ପଠାଇ ଦେବେ । ଆପଣ ଏପରି ବିମୁଖ ହେବେ ବୋଲି ମୁଁ ଭାବିନଥିଲି ।

Digitized by srujanika@gmail.com

ଏହାପରେ ମୁଁ ଇସ୍ତଫାପତ୍ର ଲେଖି ତାଙ୍କୁ ଦେଲି ଏବଂ ଠିଆହୋଇ ଅନୁରୋଧ କଲି ।

ମୋର ଇସ୍ତଫାଟି ବର୍ତ୍ତମାନ ଗ୍ରହଣ କରି ମତେ କାର୍ଯ୍ୟରୁ ଅବ୍ୟାହତି ଦେଲେ ମୁଁ ବାଧିତ ହେବି । ପୁରୀ କଲେକ୍ଟରଙ୍କ ପାଖରେ ଇଣ୍ଟରଭିଉ ପୂର୍ବରୁ ମୁକ୍ତ ନ ହେଲେ, ସେ ମୋ ଦରଖାସ୍ତ, ବିଚାରକୁ ନେବେ ନାହିଁ ।

ସାହେବଙ୍କର ଦୟାହେଲା । ସେ ସେଥିରେ ସ୍ୱୀକୃତ ହୋଇ ଇସ୍ତଫା ଗ୍ରହଣ କରି ମୋଠାରୁ ଚାର୍ଯ୍ୟ ନିଆଗଲା ବୋଲି କଟକ ଅଫିସକୁ ଟେଲିଗ୍ରାମ କରିଦେଲେ ।

ମୁଁ ତାଙ୍କଠାରୁ ବିଦାୟ ନେଇ ରିକ୍ସାରେ ଅଳ୍ପ ବାଟ ଆସିଛି ସାହେବଙ୍କ ଚପରାସି ସାଇକେଲରେ ଆସି ମତେ ଡାକିନେଲା । ଭାବିଲି, ବୋଧ ହୁଏ ସେ ମତ ବଦଳାଇଲେ । କିନ୍ତୁ ମୁଁ ଯିବାରେ ସେ ମୋ ହାତକୁ ଗୋଟିଏ ଲଫାପା ବଢ଼ାଇ ଦେଲେ । ଖୋଲି ଦେଖିଲି ଅତି ଉଚ୍ଚ ଦରର ଖଣ୍ଡିଏ ସାର୍ଟିଫିକେଟ୍ ଲେଖିଛନ୍ତି । ଧନ୍ୟବାଦର ସହିତ ଫେରିଲି । ରିକ୍ସାରେ ବସିଲି । ଚାରିଆଡ ଅନ୍ଧାର ଦିଶିଲା । ଆଖିରୁ ଲୁହ ବୋହିଗଲା । ମୁହଁଟାଣ ସିନା ସାହେବଙ୍କ ପାଖରେ ଦେଖାଇଥିଲି, ପ୍ରକୃତରେ ମନଟାଣ ନଥିଲା । ହରମୋହନବାବୁଙ୍କୁ ଇସ୍ତଫା ଦେବାକଥା କହିବାରୁ ସେ ଅତ୍ୟନ୍ତ ଦୁଃଖ ପ୍ରକାଶ କଲେ । ରାତି ଗାଡିରେ କଟକ ଆସିଲି ଅସ୍ଥିର ମନରେ ।

ନନା ସେତେବେଳେ ବାଲେଶ୍ୱର ଜିଲ୍ଲାସ୍କୁଲକୁ ବଦଳି ହୋଇ ଆସି ଥାଆନ୍ତି । ତାଙ୍କୁ ରାଞ୍ଚି ଷ୍ଟେସନରୁ ଟେଲିଗ୍ରାମ୍ କଲି ବାଲେଶ୍ୱର ଷ୍ଟେସନକୁ ଆସିବା ପାଇଁ । ସକାଳେ ଟ୍ରେନ୍ ପହଞ୍ଚିଲାବେଳକୁ ସେ ଠିଆ ହୋଇଥିଲେ । ମୁଣ୍ଡ ଲୁଆଁଇ ଇସ୍ତଫା ଦେଇଛି ବୋଲି କହନ୍ତେ ତାଙ୍କ ମୁହଁ ବିମର୍ଷ ହୋଇଗଲା । ମୋ ଆଖିରେ ଲୁହ ଦେଖି ସେ କହିଲେ, ହଉ ଯାହା ହୋଇ ଯାଇଛି , ସେ କଥା ଭାବି ଲାଭ ନାହିଁ । ଭଗବାନ ସାହା ହେବେ । ଟ୍ରେନ୍‌ରେ କଟକ ଆସି, ଷ୍ଟେସନରୁ ଘୋଡାଗାଡିରେ ଯଦୁନାଥ ଭବନ ବସାଘରେ ଓହ୍ଲାଇଲାବେଳକୁ ପୁରୀ କଲେକ୍ଟରଙ୍କ ଟେଲିଗ୍ରାମ୍ ଧରି ଡାକବାଲା ଠିଆ ହୋଇଥାଏ । ଟେଲିଗାମ୍ ଖୋଲି ଦେଖେ, ଲେଖାଅଛି ତମ ଦରଖାସ୍ତ ଗ୍ରହଣଯୋଗ୍ୟ ହେଲାନାହିଁ, କାରଣ ଡିପାଟମେଣ୍ଟ ଜରିଆରେ ଆସି ନାହିଁ । ମୁଣ୍ଡରେ ଚଡକ ପଡିଲା । ସେହି ରାତିରେ ପୁରୀ ଯାଇ ସକାଳେ କଲେକ୍ଟରଙ୍କ ସହିତ ଦେଖା କରିବାକୁ ଯାଇ ଶୁଣିଲି, ତାହାର ଦିନକ ଆଗରୁ ଇଣ୍ଟରଭ୍ୟୁ ସରି ସୁପାରିଶ କମିଶନର ଅଫିସକୁ ପଠା ସରିଛି ଏବଂ କଲେକ୍ଟର ବାଲୁଗାଁ ଗସ୍ତରେ ବାହାରି ଯାଇଛନ୍ତି । କି ହତାଶ ଲାଗିଥିବ, ତାହା ଅନୁମାନ କରିବା କଷ୍ଟ । ତଥାପି, ସାହସ ବାନ୍ଧି ପୁରୀରୁ

Digitized by srujanika@gmail.com

ଟ୍ରେନ୍‌ରେ ବାଲୁଗାଁ ଯାଇ ରାତିରେ ପହଞ୍ଚିଲି । ସକାଳେ ବାଲୁଗାଁ ଡାକବଙ୍ଗଳାକୁ ଗଲାବେଳେ କଲେକ୍ଟର ସେନାପତି ସାହେବ ବ୍ରେକ୍‌ଫାଷ୍ଟ କରୁଥାନ୍ତି । ଅନ୍ୟ କୋଠରୀରେ ଖୋର୍ଦ୍ଧାର S.D.O. ରାଧାରଚଣ ଦାସ ଗୋଟିଏ କଂସାବେଲାରେ ଚୁଡାଚକଟା ଖାଉଥିଲେ । ମୁଁ ବାରନ୍ଦାରେ ଅପେକ୍ଷା କରୁଥିବା ଦେଖି ଭିତରକୁ ଡାକିଲେ । ନିଃସଙ୍କୋଚରେ ଚୁଡା ଚକଟା ଚାଲିଥାଏ । ପଚାରିବାରୁ, ମୋ କଥା ସବୁ କହିଲି । ଶୁଣି, ବେଲାରେ ତାଙ୍କ ହାତ ରହିଗଲା । କହିଲେ— କଣ କଲ, ଏଡେ ବଡ ଚାକିରୀ ଛାଡିଦେଲ ? ଏପରି କରନ୍ତି ? ବାପ ପୁଅକୁ କହିଲା ପରି କଥା କହୁଥାନ୍ତି । ସେନାପତି ସାହେବ ଡକାଇ ପଠାଇଲେ । ପ୍ରଥମରୁ ପଚାରିଲେ— ଟେଲିଗ୍ରାମ୍ ପଠାହୋଇଥିଲା, ପାଇନାହଁ ? ମୁଁ ହଁ କହିଲି ଏବଂ ନିବେଦନ କଲି ଯେ ମୁଁ ଇସ୍ତଫା ଦେଇ ସାରିଛି । Is that so ? କହି ଷ୍ଟେନୋଗ୍ରାଫରକୁ ଡକାଇ କମିଶନରଙ୍କୁ ଚିଠି ଲେଖିଲେ, ଯେ ଯାହା ସୁପାରିଶ କରି ପଠା ଯାଇଛି ତାହାର ପରିବର୍ତ୍ତନରେ ମୋର ନାମ ପ୍ରଥମ ସ୍ଥାନରେ ଜିଲ୍ଲାନ୍ତରରୁ ଗଲା ବୋଲି ଧରାଯାଉ । ଇସ୍ତଫା କଥା କହି ପ୍ରାର୍ଥୀର ଅସାଧାରଣ ସାହସ କଥା ଉଲ୍ଲେଖ କଲେ । ମୁଁ ଟିକିଏ ଆଶ୍ୱସ୍ତ ହୋଇ ବିଦାୟ ନେଇ କଟକ ଆସିଲି ।

କଟକ ବସା, ବିନା ଚାକିରୀରେ ଚଳାଇବା ଅସମ୍ଭବ । ତେଣୁ ବସାଭାଙ୍ଗି ପିଲାଙ୍କୁ ଧରି ଗାଁକୁ ଗଲି । ସେତେବେଳେ ସ୍ତ୍ରୀ ଦୁଃଖ କରିଛନ୍ତି କିନ୍ତୁ ମତେ ଦୋଷ ଦେଇନାହାନ୍ତି ବା ନିଜେ ଭାଙ୍ଗିପଡି ନାହାନ୍ତି । ମୁଁ ବରଂ ଭାଙ୍ଗି ପଡିଥିଲି । କଟକରେ କମିଶନରଙ୍କ ଇଣ୍ଟରଭ୍ୟୁ ପଡିଲା । ସେଠାରେ ଓଡିଶାରୁ ପ୍ରଥମ ସ୍ଥାନରେ ମୋ ନାମ ଗଲା । ଗାଁରେ ଥାଇ ଖବର କାଗଜରେ ବାଲେଶ୍ୱରରେ ଇରଦାର ନାବାଳକ ଜମିଦାର ମୃତ୍ୟୁଞ୍ଜୟ ନାରାୟଣ ପ୍ରହରାଜଙ୍କର ୭୫ ଟଙ୍କା ମାସିକ ବେତନରେ ଜଣେ ଟ୍ୟୁଟର ପାଇଁ ବିଜ୍ଞାପନ ଦେଖିଲି । ଦରଖାସ୍ତ ପଠାଇଲି । ଉତ୍ତରରେ ନିଯୁକ୍ତି ପତ୍ର ଆସିଲା । ବାଲେଶ୍ୱରରେ ଯାଇ ଯୋଗଦେଲି । ନାବାଳକଙ୍କର ଜମିଦାରୀ କୋର୍ଟ ଅଫ୍ ଓ୍ୱାର୍ଡସ ଅଧୀନରେ ଥାଏ । ସେଠାର ଆଉ ଗୋଟିଏ ଜମିଦାରୀ— ସାମନ୍ତ ଇଷ୍ଟେଟ ମଧ ସେହିପରି ଥାଏ । ଏ ଦୁଇ ଜମିଦାରୀ ପାଇଁ ଜଣେ ସବ୍‌ଡେପୁଟୀ, ସାଧୁ ଚରଣ ସାହୁ କୋର୍ଟ ଅଫ୍ ଓ୍ୱାର୍ଡସ ତରଫରୁ ମାନେଜର ଥାନ୍ତି । ବାଲେଶ୍ୱର ଟାଉନର ଗୋପାଳ ପୁରରେ ଗୋଟିଏ ଏକତାଲା ଘରେ ନାବାଳକ ଜମିଦାର ଓ ତାଙ୍କ ମାତା, ପୂଜାରୀ, ଚାକର ନେଇ ରହିଥାନ୍ତି । ମୋର ସେଠାରେ ତାଙ୍କର ପଢ଼ାର ଦାୟିତ୍ୱ ନେବାର କଥା । ସେ ଜିଲ୍ଲା ସ୍କୁଲରେ ପଢୁଥାନ୍ତି । ସୁତରାଂ ସକାଳେ ସନ୍ଧ୍ୟାରେ ଘରେ ମତେ ପଢ଼ାଇ ବାକୁ ହୁଏ । କାର୍ଯ୍ୟରେ ଯୋଗଦେବା ଅର୍ଥ ସବ୍‌ଡେପୁଟି ମାନେଜରଙ୍କ

Digitized by srujanika@gmail.com

ଅଫିସରେ ଢ଼ଏନିଙ୍ଗ ରିପୋର୍ଟ ଦେବା । ବଡ ଅପମାନିତ ବୋଧହେଲା । ମନଦୁଃଖ ମନରେ ଚାପି କାମ ଆରମ୍ଭ କଲି । ତାହାର ଅଳ୍ପଦିନ ପରେ ନନାଙ୍କର ପୁରୀ ଜିଲ୍ଲା ସ୍କୁଲକୁ ବଦଳି ହୋଇଗଲା । ଚୌଧୁରୀ ସାହିରେ ପାଞ୍ଚଟଙ୍କା ଭଡାରେ ଦୁଇବଖରିଆ ଚାଳଘର ନେଇ ପିଲାମାନଙ୍କୁ ଗାଁରୁ ଆଣିଲି । କଟକ ଦୋତାଲା ଯଦୁନାଥ ଭବନ, ଇନ୍‌ସପେକ୍ଟର କାମ, ଚାକର ପୂଜାରୀ ବଦଳରେ ଭୃତ୍ୟହୀନ ପାଞ୍ଚଟଙ୍କିଆ ଚାଳଘର । ସହିନେବାକୁ ହେଲା । ଦୁଇବର୍ଷର ପୁଅକୁ ନେଇ ସ୍ତ୍ରୀ ଏକା । ମୁଁ ରହିବାର ଦୁଇମାସ ପରେ, ବାଲେଶ୍ୱର କଲେକ୍ଟରଙ୍କ (ଜଣେ ଖାଁ ବାହାଦୂର ମୁସଲମାନ ଭଦ୍ରଲୋକ) ସଙ୍ଗେ ଦେଖାହେଲା । ପରବର୍ତ୍ତୀ ଦିନ ସେ ମେନେଜରକୁ ଲେଖି ପଠାଇଲେ ମୋ ବେତନ ଏକଶହ ପଚିଶଟଙ୍କା କରିବା ପାଇଁ । ମୁଁ କିଛି କହି ନଥିଲି ତାଙ୍କୁ । ପରେ ଅନେକ ଥର ମତେ ଡକାଇ ଆଳାପ କରନ୍ତି ସେ ।

ସେ ସମୟରେ ବାଲେଶ୍ୱରରେ ଜ୍ଞାନେନ୍ଦ୍ର ବ୍ରହ୍ମ ସବ୍‌ଡିଭିଜନ ଅଫିସର (S.D.O.), ସତୀଶ ଚନ୍ଦ୍ର ମିତ୍ର ଓ ଭାବଗ୍ରାହୀ ମିଶ୍ର ଡେପୁଟି ମାଜିଷ୍ଟ୍ରେଟ୍ । ସେମାନେ ଅନ୍ୟାନ୍ୟ ସୂତ୍ରରୁ ମୋ ବଦଳରେ ଜଗନ୍ନାଥ ମିଶ୍ର କିପରି ଡେପୁଟି ମନୋନୀତ ହେଲେ ଜାଣି ସାରିଥାନ୍ତି । କଟକ ପୁରୀରେ ମଧ ସେ କଥା ଜଣା ପଡି ଯାଇଥିଲା । ବ୍ରହ୍ମ ସଙ୍ଗୀତ ପ୍ରିୟ । ତାଙ୍କର ରେଳଷ୍ଟେସନ୍ ପାଖ ଘରେ ଅନେକ ସମୟରେ ସଙ୍ଗୀତ ଆସର ବସେ । ମତେ ପ୍ରତିଥର ଲୋକ ପଠାଇ ଖବର ଦିଅନ୍ତି । ମୁଁ ଆସେ । ସତୀଶବାବୁ ସେଠାକୁ ମଧ ଆସନ୍ତି । ତାଙ୍କ ସହିତ ବନ୍ଧୁତ୍ୱ ହେଲା । ବହୁ ସମୟରେ ତାଙ୍କ ବସାକୁ ଯାଏ । ବିଧବା ଦିଦି ଓ ତାଙ୍କ ପୁତ୍ରମାନେ ସତୀଶବାବୁଙ୍କ ସଙ୍ଗେ ରହୁଥିଲେ । ସୁଜିରେ ଅଣ୍ଡାଦେଇ ମହନଭୋଗ ତାଙ୍କ ଘରେ ଅନେକ ଥର ଖାଇଛୁ ଚା' ସାଙ୍ଗରେ । ଭାବଗ୍ରାହୀ ସସ୍ତ୍ରୀକ ଥାଆନ୍ତି । ପାଟନା କଲେଜରେ ମୁଁ ଥିଲାବେଳେ ତାଙ୍କ ସଙ୍ଗେ ଆଳାପ ହୋଇଥିଲା । ସେ ଏମ୍.ଏସ୍‌ସି ପରୀକ୍ଷା ଦେଇସାରି ସଙ୍ଖାଳିବାବୁ ଓଭରସିଅରଙ୍କ ବସାରେ ରହୁଥିଲେ । ଭାବଗ୍ରାହୀବାବୁ ଧୀର ପ୍ରକୃତିର ଲୋକ, ସଦାଳାପୀ । ଏହି ତିନି ଭଦ୍ରବ୍ୟକ୍ତିଙ୍କ ସାନିଧ ମୋର ବାଲେଶ୍ୱର ରହଣି କାଳରେ ବଡ ସ୍ପୃହଣୀୟ ହୋଇଥିଲା । ସେମାନଙ୍କ ସହିତ ସହୃଦୟତା ସେମାନଙ୍କର ତିରୋଧାନ ପର୍ଯ୍ୟନ୍ତ ଅକ୍ଷତ ରହିଥିଲା ।

ପାଟନା ଇଣ୍ଟରଭ୍ୟୁ ସମୟ ଆସିଲା । ସେ ବର୍ଷ ଚାରିଜଣ ଡେପୁଟି ହେବାର କଥା । ଜଣେ ବିହାରୀ ହିନ୍ଦୁ, ଜଣେ ମୁସଲମାନ, ଜଣେ ଡୋମିସାଇଲଡ ବଙ୍ଗାଳୀ ଓ ଜଣେ ଓଡିଶାରୁ । ବହୁ ପ୍ରାର୍ଥୀ ଥିବାରୁ ବହୁ ସମୟ ଇଣ୍ଟରଭ୍ୟୁ ଚାଲିଲା । ଇଣ୍ଟରଭ୍ୟୁ ବୋର୍ଡରେ ପୂର୍ବବର୍ଷ ପରି ସମସ୍ତେ ଥିଲେ । କେବଳ ଫଲି ସାହେବଙ୍କ

Digitized by srujanika@gmail.com

ସ୍ଥାନରେ ଅନ୍ୟ ଜଣେ ସାହେବ ଥାଆନ୍ତି । ଓଡିଶାରୁ ମୁଁ ଡେପୁଟି ପାଇଁ ଏକମାତ୍ର ମନୋନୀତ ହୋଇ ଥିବାର ଜାଣି ବାଲେଶ୍ୱର ଫେରିଲି । ତା'ପରେ ମେଡିକାଲ ବୋର୍ଡ ପାଇଁ ଡାକରା ଆସିବ ବୋଲି ଅପେକ୍ଷାରେ ଥାଏ ।

କିଛି ଦିନ ପରେ ପୁରୀର ରାୟ ବାହାଦୂର ଲୋକନାଥ ମିଶ୍ର, ଯେ ଲେଜିସ୍ଲେଟିଭ କାଉନସିଲର ମେମ୍ବର ଥିଲେ, ମତେ ଖଣ୍ଡିଏ ପତ୍ର ପାଟନାରୁ ସ୍ୱତଃ-ପ୍ରବୃତ୍ତ ହୋଇ ଲେଖି ଜଣାଇଲେ ଯେ ମୋର ଡେପୁଟି ଚାକିରୀ ହୋଇଛି । Executive Councilରେ ପାସ୍ ହୋଇ ଲାଟସାହେବଙ୍କ ପାଖକୁ ଫାଇଲ ଯାଇଛି । ପଣ୍ଡିତ ଗୋଦାବରୀଶ ମିଶ୍ରଙ୍କ ସେକ୍ରେଟାରୀ ପରି ଥିବା ସୁଦର୍ଶନ ପାଣିଗ୍ରାହୀ ଇନ୍‌ସୁରାନ୍‌ସ ଏଜେଣ୍ଟ କାମ ମଧ୍ୟ କରୁଥିଲେ । ସେ ଓ ଗୋଦାବରୀଶବାବୁ ପାଟନାରେ ଥିଲେ । ସେ ସେଠାରୁ ମତେ ପତ୍ର ଦେଲେ ଯେ ମୋର ଡେପୁଟି ମନୋନୟନ ହୋଇଯାଇଛି । ପ୍ରଥମ ମାସର ବେତନ ପାଇଲେ, ତାଙ୍କ ଜରିଆରେ ଲାଇଫ୍ ଇନ୍‌ସିଓରେନ୍‌ସ (ଜୀବନବିମା) ଯେପରି ନିଶ୍ଚୟ କରିବି । ଏ ଦୁଇପତ୍ର ପାଇବା ସତ୍ତ୍ୱେ ମେଡିକାଲ ବୋର୍ଡର ଡାକରା ନ ଆସିବାରୁ ପାଟନାକୁ ପୀତାମ୍ବର ମିଶ୍ରଙ୍କୁ (ଓକିଲ) ଟେଲିଗ୍ରାମ୍ କଲି ବୁଝି ଖବର ନେବାପାଇଁ । ସେ ଦିନକ ପରେ ଟେଲିଗ୍ରାମ୍ କଲେ (Sorry, not finally selected) 'ଦୁଃଖର କଥା ତମର ମନୋନୟନ ଶେଷ ସ୍ତରରେ ହେଲା ନାହିଁ ।' ମୁଁ ଅବାକ୍ ହୋଇଗଲି । ଦୁଇଦିନ ପରେ ପତ୍ରପାଇ ଯାହା ଜାଣିଲି ତାହା କେତେ ଦୁଃଖଦାୟକ, ବୁଝାଇବା କଷ୍ଟକର ।

ପ୍ରଦେଶରେ ଦ୍ୱୈତଶାସନ ଚାଲିଥିଲା । ମନ୍ତ୍ରୀ ଦୁଇଜଣ, ଏକ୍‌ଜିକିଉଟିଭ କାଉନସିଲର ଦୁଇଜଣ ଥାନ୍ତି । ଫକ୍ରୁଦିନ୍ ଓ ଗଣେଶ ଦତ୍ତ ସିଂହ ମନ୍ତ୍ରୀ ଥିଲେ । ଡେପୁଟି ମନୋନୟନ ଫାଇଲ ଲାଟସାହେବଙ୍କ ପାଖକୁ ଗଲାପରେ ଗଣେଶ ଦତ୍ତ ସିଂହ ଲାଟଙ୍କ ପାଖରେ ଅନୁରୋଧ କଲେ ତାଙ୍କର ଜଣେ ଦୂର ସମ୍ପର୍କୀୟ ପୁତୁରାକୁ ଡେପୁଟି ନିଯୁକ୍ତ କରିବା ପାଇଁ । ସେ ପ୍ରାର୍ଥୀର ନାମ ବୋର୍ଡରୁ ଆସି ନଥିଲା । ତାହାର ସେହି ବର୍ଷ ବୟସ ସୀମା ପାର ହେଉଥିଲା । ତେଣୁ ତା ପାଇଁ ମନ୍ତ୍ରୀ ଲାଟଙ୍କୁ ଧଇଲେ । ଚାରିଟି ସ୍ଥାନ ପାଇଁ ଚାରିଜଣଙ୍କ ନାମ ସୁପାରିଶ୍ ହୋଇ ଆସିଥିବାରୁ ମନ୍ତ୍ରୀଙ୍କ ପୁତୁରାକୁ ନେବାର ସୁବିଧା ନାହିଁ ବୋଲି ଲାଟସାହେବ ଦର୍ଶାଇବାରୁ, ବୁଦ୍ଧିମାନ ମନ୍ତ୍ରୀ ବାଟ ଦେଖାଇ ଦେଲେ, ଓଡିଶାକୁ ଏ ବର୍ଷ ଡେପୁଟି ଚାକିରୀ ଦିଆ ନଯାଉ । ତା ବଦଳରେ ଦୁଇଜଣ ସବ୍‌ଡେପୁଟିଙ୍କୁ ପ୍ରମୋଶନ ଦେଇ ଡେପୁଟି କରି ଦିଆହେଉ । ଓଡିଶା ସେଥିରେ ସନ୍ତୁଷ୍ଟ ହେବ ଏବଂ ମୋ ବଦଳରେ ମନ୍ତ୍ରୀଙ୍କ ପୁତୁରାକୁ ନିଆଯାଉ । ମନ୍ତ୍ରୀଙ୍କ ଅଜିରେ ଲାଟସାହେବ ହଁ ଭରିଲେ ଏବଂ ସେହି ମର୍ମରେ

Digitized by srujanika@gmail.com

ମେମୋରେଣ୍ଡମ ତିଆରି ହୋଇ ଆଉଥରେ ଏକ୍‌ଜିକ୍ୟୁଟିଭ କାଉନସିଲକୁ ଗଲା । ହାମଣ୍ଡ ସାହେବ ହଁ ଭରିଲେ, କନିକା ରାଜା ବିରୋଧ କରି ଦୀର୍ଘ ମନ୍ତବ୍ୟ ଲେଖିଲେ । କିନ୍ତୁ ତାହା କାର୍ଯ୍ୟକାରୀ ହେଲା ନାହିଁ । ଶେଷରେ ଲାଟସାହେବ ମନ୍ତ୍ରୀଙ୍କ ସୁଚତୁର ପ୍ରସ୍ତାବ ଅନୁସାରେ ମତେ କାଟି ମନ୍ତ୍ରୀଙ୍କ ପୁତୁରାକୁ ଆଉ ଜଣେ ବିହାରୀ ହିନ୍ଦୁ ଭାବେ ନିଯୁକ୍ତି ଦେବା ଅର୍ଡର ଦେଲେ ଏବଂ ଓଡିଶାରୁ ସବ୍‌ଡେପୁଟି ପୂର୍ଣ୍ଣଚନ୍ଦ୍ର ମହାନ୍ତି, ସତୀଶଚନ୍ଦ୍ର ବାନାର୍ଜୀ ପ୍ରମୋସନ ପାଇଲେ ଡେପୁଟି ପଦକୁ । ସେ ଯାହା ଆଶା କରିନଥିଲେ, ପାଇଲେ; ମୁଁ ଯାହା ଆଶା କରିଥିଲି ହରାଇଲି । ପୋଷ୍ଟ ଗ୍ରାଜୁଏଟ୍ ସ୍କଲରସିପ୍, ଷ୍ଟେଟ ସ୍କଲରସିପ୍, ପ୍ରଥମ ଥର ଡେପୁଟି ସିଲେକ୍‌ସନ ପରି ଏଥର ମଧ୍ୟ ମୋ ପାଦତଳୁ ଭୂମି ଖସିଗଲା ଶେଷ ମୁହୂର୍ତ୍ତରେ । ଇନ୍‌କମଟ୍ୟାକ୍ସ କମିଶନର ମୁଁ ଇସ୍ତଫା ଦେଲାବେଳେ ଯେଉଁ ସତର୍କବାଣୀ ଶୁଣାଇଥିଲେ–ଏ କୂଳ ଯିବ, ସେ କୂଳ ଯିବ—ତାହାହିଁ ଘଟିଲା । ଏହାକୁ ଭାଗ୍ୟର ବିପର୍ଯ୍ୟୟ ବୋଲି ଗ୍ରହଣ କରିବା ବ୍ୟତୀତ ଅନ୍ୟ ଉପାୟ ନ ଥିଲା ।

ଥରକୁ ଥର ପାଞ୍ଚଥର ଏହିପରି ମୋର ଯାହା ନ୍ୟାୟତଃ ପ୍ରାପ୍ୟ, ସେଥିରୁ ବଞ୍ଚିତ ହେଲି ଅନ୍ୟମାନଙ୍କ କାରସାଦିରୁ । ଆଗରୁ ମୋର ବୁଝିବା ଉଚିତ୍ ଥିଲା, ଚାକିରୀ ପାଇଁ ମୁଁ ଅଭିପ୍ରେତ ନୁହେଁ । ପିଲାଦିନୁ ଓକିଲାତି ମୋର କାମ୍ୟ ଥିଲା । ଚାଇବାସାରେ ବି.ଏନ୍. ମିଶ୍ର ବାରିଷ୍ଟରଙ୍କୁ କହିଥିଲି, I want to be a lawyer । ତାହାର ବିରୁଦ୍ଧାଚରଣ କରି ଯେଉଁ ଚେଷ୍ଟା କରୁଥିଲି ତାହା ବାରମ୍ବାର ବ୍ୟର୍ଥ ହେବାରୁ ଚେତା ପଶିଲା । ନିଜର ସ୍ୱଚ୍ଛାତପନ୍ଥା ଅନୁସରଣ କରିବା ପାଇଁ, ଓକିଲାତି ପରୀକ୍ଷା ଦେବାପାଇଁ ପ୍ରସ୍ତୁତ ହେବା ଆରମ୍ଭ କଲି । ପରବର୍ତ୍ତୀକାଳରେ ମୁନସଫ ହେବାପାଇଁ ଜିଲ୍ଲା ଜଜ୍ ଯେତେବେଳେ ଯାଚିଲେ, ମୁଁ ନମ୍ରତାର ସହିତ ଅସ୍ୱୀକାର କଲି । ମୋର ଯୋଗାଣ ବିଭାଗର ସ୍ଥାୟୀ ଓକିଲ ନିଯୁକ୍ତି ଯେତେବେଳେ ଗେଜେଟ୍‌ରେ ପ୍ରକାଶ ପାଇଲା, ମୁଁ ନାସ୍ତି କଲି । ପରେ ସେନାପତି ସାହେବ ରେଭିନ୍ୟୁ କମିଶନର ଥିଲାବେଳେ, କଟକର ଓକିଲ ହେବାପାଇଁ ପତ୍ର ଆସିଲାବେଳେ ମୁଁ ପ୍ରତ୍ୟାଖାନ କଲି । ପୋଡା ତିଅଣରେ କି ସୁଆଦ ?



Digitized by srujanika@gmail.com

# ଇରଦା ଜମିଦାର

ଇରଦା ଜମିଦାରଙ୍କର ନିଜ ଘର ବସ୍ତାପାଖ ଇରଦାଗଡରେ । ପରିବାର ପୃଥକ ଚାରିଅଂଶ । ଏକ ଅଂଶରେ ଗୋଲକନାରାୟଣ ପ୍ରହରାଜ, ଅନ୍ୟ ଏକ ଅଂଶରେ ଜୟନାରାୟଣ ପ୍ରହରାଜ, ତୃତୀୟ ଅଂଶରେ ରାମନାରାୟଣ ପ୍ରହରାଜ । କନିଷ୍ଠ ଥିଲେ ରାମନାରାୟଣ । ସଂସ୍କୃତରେ ଅଭିଜ୍ଞ । ଅଳ୍ପ ବୟସରେ ହଠାତ୍ ମୃତ୍ୟୁ ହେଲା । ଏକମାତ୍ର ପୁତ୍ର ମୃତ୍ୟୁଞ୍ଜୟ ନାରାୟଣ ଅତି ଅଳ୍ପ ବୟସର ବାଳକ ଥିବାରୁ ତାଙ୍କ ଅଂଶ କୋର୍ଟ ଅଫ୍ ୱାର୍ଡସକୁ ଯାଇଥିଲା । ତାଙ୍କର ଜମିଦାରୀର ଏକଅଂଶ ଭଦ୍ରଖ ଚାନ୍ଦବାଲି ମଧଭାଗରେ ଦୋଳସାହିରେ ଥିଲା । ସେଠାରେ ତାଙ୍କ ଖଞ୍ଜାଘର ଥାଏ । ସେଠାକୁ ସେମାନେ ଯାଇ ରହନ୍ତି । ବର୍ଷର କୌଣସି ସମୟରେ ଇରଦା ଘରକୁ ମଧ ଯାଆନ୍ତି । ତାଙ୍କ ସଙ୍ଗରେ ମତେ ଯିବାକୁ ହୁଏ । ମୃତ୍ୟୁଞ୍ଜୟଙ୍କ ମାତା ଧର୍ମପରାୟଣା, ସ୍ନେହୀ ଥିଲେ । ମୋ ସ୍ତ୍ରୀକୁ ଝିଅପରି ଜ୍ଞାନ କରୁଥିଲେ । ସେହି ଦୃଷ୍ଟିରେ ମତେ ଶ୍ରଦ୍ଧା କରୁଥିବାରୁ ମତେ ଟ୍ୟୁଟର ଚାକିରୀ କଲାପରି ଲାଗୁ ନଥିଲା । ଆତ୍ମୀୟ ଘରପରି ବ୍ୟବହାର ମିଳୁଥିଲା । ମୃତ୍ୟୁଞ୍ଜୟଙ୍କର ଜମିଦାରୀ ମିଜାଜ ଥାଏ । ତାଙ୍କର ଜଣେ ଦୂରସମ୍ପର୍କୀୟ ମେଦିନାପୁରବାସୀ— ମନୁବାବୁ—ସେମାନଙ୍କ ପାଖରେ ଘର ମୁରବୀ ପରି ଥାଆନ୍ତି । ମୋର ଅଜ୍ଞାତ କୌଣସି କାରଣରୁ ତାଙ୍କର ଧାରଣା ହେଲା ଯେ ମୁଁ ଟ୍ୟୁଟର ରହିବା ଯୋଗୁ ମାନେଜର ସାଧୁବାବୁଙ୍କ ବ୍ୟବହାରରେ ପରିବର୍ତ୍ତନ ଆସିଛି । ସେ ପୂର୍ବାପେକ୍ଷା ଅଧିକ ସହାନୁଭୂତିଶୀଳ ଓ ଜମିଦାରୀ ପରିଚାଳନାରେ ଅଧିକ ସକ୍ରିୟ ହେଲେ । କଲେକ୍ଟରଙ୍କ ସହିତ ମୋର ସୌହାର୍ଦ୍ଦ୍ୟ ଥିବାରୁ ବୋଧହୁଏ ସାଧୁବାବୁ ସତର୍କ ହେବା ଉଚିତ୍ ମନେ କଲେ । ଖାଁ ବାହାଦୁରଙ୍କ ବଦଳି ହୋଇ ଅରୁଣ ବୋଷ ଆସିଲେ । ବର୍ଣ୍ଣ ଶ୍ୟାମଳ, ମିଜାଜ ଗୋରା । ମେଳାପୀ, ଫୁର୍ତ୍ତିବାଜ । କାର୍ଯ୍ୟରେ ଦକ୍ଷତା ଯୋଗୁ ଡେପୁଟିରୁ ବଢ଼ି କଲେକ୍ଟର ହୋଇ ଥାଆନ୍ତି । ତାଙ୍କ ସହିତ ମିଳାମିଶା ଅଳ୍ପ ଦିନରେ ଘନିଷ୍ଠ ହୋଇଗଲା । କିପରି ଓପର ପାହ୍ୟା

Digitized by srujanika@gmail.com

ସହିତ ଏପରି ହେଉଥାଏ, ମୁଁ ବୁଝିପାରୁ ନଥାଏ । ସଙ୍ଗପ୍ରିୟତା ମୋର କେବେ ହୋଇପାରି ନାହିଁ । ହାତେ ପାପି ଚାଖଣ୍ଡେ ଚାଲିବା ମୋର ପ୍ରକୃତି । ମାନ ରଖି ଦୂରେଇ ରହିବା ମୋର ଅଧିକ ପସନ୍ଦ । ସଙ୍ଗମେଳ ଅପେକ୍ଷା ଏକାକୀ ମୁଁ ରହେ ଅଧିକ ।

ମୃତ୍ୟୁଞ୍ଜୟଙ୍କ କାକା ଜୟନାରାୟଣଙ୍କ ସଙ୍ଗେ ତାଙ୍କ ବଡଭାଇ ଗୋଲକ-ନାରାୟଣଙ୍କର କିଛି ବିବାଦ ଥିଲା । ଇରଦାରେ ଦିନେ ରାତିରେ ଜୟନାରାୟଣ, ତାଙ୍କ ସ୍ତ୍ରୀ, ପୁତ୍ର, କନ୍ୟା ସମସ୍ତଙ୍କର ଆତତାୟୀ ହାତରେ ମୃତ୍ୟୁ ଘଟିଲା । କେବଳ ଗୋଟିଏ ଝିଅ ଅଳ୍ପକେ ରକ୍ଷା ପାଇଥିଲା । ଆତତାୟୀ ଝିଅ ମରିଯାଇଛି ଭାବି ଆଉ ଅଧିକ ଆହତ ନକରି ଛାଡି ଦେଇଥିଲା । ଗୋଲକନାରାୟଣଙ୍କୁ ଏ ନୃଶଂସ ହତ୍ୟାରେ ଦାୟୀ କରି ସେସନ୍ସ କେସ୍ ଚାଲିଲା ବାଲେଶ୍ୱରରେ ଏକ ମାସରୁ ଅଧିକ କାଳ । ମେଦିନାପୁରର ବିଖ୍ୟାତ ବାରିଷ୍ଟର ବୀରେନ୍ଦ୍ର ସାସମଲ ଗୋଲକ ନାରାୟଣଙ୍କ ପାଇଁ ଲଢୁଥିଲେ । ତାଙ୍କ ବଂଶ ଓଡିଆ ସାମଲ । ସାମଲକୁ ସାସମଲ କରି ବଙ୍ଗାଳୀ ବୋଲି ନିଜକୁ ଚିହ୍ନାଉ ଥାଆନ୍ତି । ଓଡିଆଭାଷୀ ଅଞ୍ଚଳ ସବୁର ଏକତ୍ରୀକରଣ ଆନ୍ଦୋଳନରେ ମେଦିନୀପୁରର ଅନ୍ୟମାନେ ସମର୍ଥନ ଜଣାଇଲା ବେଳେ ସାସମଲ ବିରୋଧ କରିଥିଲେ । ସେ କହୁଥିଲେ, ଓଡିଶାରେ କ'ଣ ରବୀନ୍ଦ୍ରନାଥ ଠାକୁର, ଶରତ୍ ଚାଟାର୍ଜୀ ଅଛନ୍ତି ? ଆମେ କାହିଁକି ବଙ୍ଗଦେଶ ଛାଡି ଓଡିଶାକୁ ଯିବୁ ? ସରକାରଙ୍କ ପକ୍ଷରୁ ଗୋଲକନାରାୟଣଙ୍କ ବିରୁଦ୍ଧରେ କଟକର ଚିନ୍ତାମଣି ଆଚାର୍ଯ୍ୟ ଓକିଲ ନିଯୁକ୍ତ ହୋଇଥିଲେ । ସେ କେସ୍ ଚାଲିଥିଲାବେଳେ, ପ୍ରତିଦିନ ମୁଁ କୋର୍ଟକୁ ଯାଉଥାଏ । ବୀରେନ୍ଦ୍ର ସାସମଲଙ୍କର ଦକ୍ଷତା ସ୍ପଷ୍ଟ ଜଣା ପଡୁଥାଏ । ବିଚାରରେ ଗୋଲକନାରାୟଣ ଓ ସହଯୋଗୀମାନଙ୍କୁ କାରାଦଣ୍ଡ ହେଲା । ଅପିଲରେ ତାହା କାଏମ ରହିଲା । ଜୟନାରାୟଣଙ୍କର ରକ୍ଷା ପାଇଥିବା କନ୍ୟାର ବିବାହ ପରେ ମୟୁରଭଞ୍ଜର ରାମଚନ୍ଦ୍ର ଦାସଙ୍କ ସହିତ ଘଟିଲା । ସେ ଆମର ସହପାଠୀ ଥିଲେ । ମୟୁରଭଞ୍ଜ ଷ୍ଟେଟରେ ପୁଲିସ ସୁପରିଣ୍ଟେଣ୍ଡେଣ୍ଟ ଥିଲେ । ଗଡଜାତ ମିଶ୍ରଣ ପରେ ଓଡିଶା କାଡରକୁ ଆସି, ପରେ ଆଇ.ଜି.ହୋଇ ଅବସର ନେଇଥିଲେ । ତାଙ୍କର ଦୁଇ ଯମଜ ପୁତ୍ର ପରେଶ, ଭବେଶ । ପରେଶ ଟିଟାଗଡ ପେପର (କାଗଜ) ମିଲର ମାନେଜର । ଭବେଶ ଆମେରିକା ସିକାଗୋରେ ଏକ କାରଖାନାରେ ମାନେଜର ସ୍ଥାନୀୟ । ରାମବାବୁଙ୍କର ଅନ୍ୟପୁତ୍ର (ଜ୍ୟେଷ୍ଠ) ରମେଶ ଚା' ବଗିଚାର ଦାର୍ଜିଲିଂରେ ମାନେଜର ଥିଲେ । ଏବେ ବାରିପଦାରେ ଅବସ୍ଥାନ କରୁଛନ୍ତି ।

Digitized by srujanika@gmail.com

ମୃତ୍ୟୁଞ୍ଜୟଙ୍କ ମାତା ପୁତ୍ରକୁ ନେଇ ଥରେ ପୁରୀ ଆସି ମାସାଧିକ ରହିଥିଲେ । ମୁଁ ମଧ ସେମାନଙ୍କ ପାଖରେ ଥିଲି । ମାନେଜର ସାଧୁବାବୁଙ୍କର ପୁରୀ ମୋଚିସାହି ଛକ ନିକଟରେ ଗୋଟିଏ ଛୋଟ ଘର ରହିଥିଲା । ସେଥିରେ ସେମାନେ ରହିଲେ, ମୁଁ ମଧ । ସେହି ସମୟରେ 'ପୁରୀବାସୀ' ସମ୍ବାଦପତ୍ରର ସମ୍ପାଦକ ପଙ୍କବାବୁ (ଲୋକନାଥ ମିଶ୍ର) । ପଣ୍ଡିତ କାବ୍ୟକଣ୍ଠ ସଦାଶିବ ମିଶ୍ର ତାହାର ସମ୍ପାଦନା କରୁଥିଲେ । ତାଙ୍କ ମୃତ୍ୟୁପରେ ସେ ଦାୟିତ୍ୱ ପଡିଥାଏ ତାଙ୍କ ପୋଷ୍ୟପୁତ୍ର ପଙ୍କବାବୁଙ୍କ ଉପରେ । ସମ୍ପାଦକୀୟ ଅନ୍ୟ ଲେଖା ପଙ୍କବାବୁ ଓ ମୁଁ ମିଶି କରୁଥାଉ, ମୁଁ ପୁରୀରେ ଥିଲାବେଳେ । ସାଧୁବାବୁଙ୍କ ଘର ଛୋଟ ଥିବାରୁ ମୃତ୍ୟୁଞ୍ଜୟ ଓ ମୁଁ ବେଦ କର୍ମକାଣ୍ଡ ବିଦ୍ୟାଳୟକୁ ସକାଳଓଳି ଯାଉ ପଢ଼ାପଢ଼ି ପାଇଁ । ସେ ବିଦ୍ୟାଳୟ ସ୍ଥାପିତ ହୋଇଥିଲା କାବ୍ୟକଣ୍ଠଙ୍କ ଦ୍ୱାରା । ସେଠାକୁ ଆମେ ଯିବା ପାଇଁ ଅନୁମତି ପଙ୍କବାବୁ କରି ଦେଇଥିଲେ ।

୧୯୩୧ ଆଦ୍ୟ ଭାଗରେ ଟ୍ୟୁଟରିରୁ ପନ୍ଦରଦିନ ଛୁଟି ନେଇ କଟକ ଆସିଲି ଇ' ପରୀକ୍ଷା ଦେବାପାଇଁ । କଟକ ଯାଚକ ଲେନ୍‌ରେ ବୈକୁଣ୍ଠ ସସ୍ତ୍ରୀକ, କାଳିନ୍ଦୀ ସପରିବାର ଏକତ୍ର ଗୋଟିଏ ଘରେ ରହୁଥାନ୍ତି । ବି.ଏ. ପରେ କାଳିନ୍ଦୀ କଟକ କୋଅପରେଟିଭ ବ୍ୟାଙ୍କ ଚାକିରୀକୁ ଗଲେ । ବୈକୁଣ୍ଠ ଯାଇଥାନ୍ତି ସ୍କୁଲ ମାଷ୍ଟରୀକୁ । ସେ ବି.ଏ.ପରେ ପାଟନାରେ ବି.ଟି. ପାସ୍ କରିଥିଲେ । ପରେ ବାହାର ଛାତ୍ର ହିସାବରେ ଓଡ଼ିଆରେ ଏମ୍.ଏ ପାସ୍ କଲେ । ପୁରୀ ଜିଲ୍ଲା ସ୍କୁଲର ହେଡମାଷ୍ଟର, ପରେ ସ୍କୁଲ ଇନ୍‌ସପେକ୍ଟର, କିଛିକାଳ ଓଡିଆ ଅଧାପକ ହୋଇ ଅବସର ନେଇଥିଲେ । ୧୯୩୧ ବେଳକୁ ତାଙ୍କର ସଦ୍ୟ ବିବାହ ହୋଇଥାଏ, କାଳିନ୍ଦୀଙ୍କ ମଧ୍ୟସ୍ଥତାରେ ପୁରୀ ରାମଚଣ୍ଡୀ ସାହିର ଏକ ସମ୍ଭ୍ରାନ୍ତ କରଣ ପରିବାରରେ । କାଳିନ୍ଦୀଙ୍କ ଘର ସେହି ରାମଚଣ୍ଡୀ ସାହିରେ । କଲେଜର ଦୁଇ ଘନିଷ୍ଠବନ୍ଧୁ, ଘନିଷ୍ଠତର ହୋଇ ଏକା ସଙ୍ଗେ ଗୋଟିଏ ଭଡାଘରେ ରହୁଥାନ୍ତି । ମୁଁ ଆସି ସେଠି ଉଠିଲି । ବୈକୁଣ୍ଠଙ୍କ ପୁତୁରା ବୃନ୍ଦାବନ ସେଠାରେ ଥାଇ ଇ'ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଥାନ୍ତି । ତାଙ୍କଠାରୁ ବହିପତ୍ରର ସାହାଯ୍ୟ ମିଳିବା ଆଶାରେ ମୋର ସେଠାକୁ ଆସିବା । ଭଗବତୀ, କାଳିନ୍ଦୀଙ୍କ କନିଷ୍ଠ ସହୋଦର (ପରବର୍ତ୍ତୀ କାଳରେ ମାର୍କସବାଦୀ ପ୍ରଖ୍ୟାତ ସାହିତ୍ୟିକ ଯୁବନେତା) ମଧ ସେଠାରେ ବାସ କରୁଥିଲେ । ମୋର ବନ୍ଧୁମାନଙ୍କ ସଙ୍ଗେ ରହିବା, ବୃନ୍ଦାବନଙ୍କ ସଙ୍ଗେ ଏକାଠି ପଢ଼ିବା, ଏକ ସୁଯୋଗ ମିଳିଲା । ଇ'ପରୀକ୍ଷା ପରେ ମୁଁ ବାଲେଶ୍ୱର ଫେରିଗଲି । ଫଳ ବାହାରିଲାବେଳକୁ ମୋର ପାସ୍, ବୃନ୍ଦାବନ ଫେଲ । ବୃନ୍ଦାବନ ପରେ ସବ୍‌ଡେପୁଟି ଓ ଡେପୁଟି ହୋଇ ଅବସର ଗ୍ରହଣ କରିଛନ୍ତି ।

Digitized by srujanika@gmail.com

ବାଲେଶ୍ୱରରେ ଯାହାଙ୍କ ଘରେ ଭଡାରେ ରହୁଥିଲି ସେ ଅବସରପ୍ରାପ୍ତ ସବ୍‌ରେଜିଷ୍ଟ୍ରାର, ବିଶିଷ୍ଟ ସାହିତ୍ୟପ୍ରେମୀ ଆସରଫ ଅଲି । ଦେଖାହେଲେ, ସାହିତ୍ୟ ସଂସ୍କୃତି ନେଇ କଥା । ତାଙ୍କ ଘର ଭଡାଘରକୁ ପ୍ରାୟ ଲାଗିଥାଏ । ସେ ସଦାବେଳେ ଲେଖା ପଢ଼ାରେ ସମୟ କଟାଉଥିଲେ । ଅର୍ଥ ଅନଟନ ହେବାରୁ ଇନ୍‌ସପେକ୍ଟର ଥିବାବେଳେ ଯେଉଁ ଛୋଟ ଟାଇପ୍‌ରାଇଟର କିଣିଥିଲି, ତାଙ୍କୁ ଏକଶହ ଟଙ୍କାରେ ବିକ୍ରି କରି ଦେଇଥିଲି । ତାଙ୍କ ସହିତ ଆଳାପ ସବୁବେଳେ ଆମୋଦପ୍ରଦ ଥିଲା । ତାଙ୍କର ପୁତ୍ରମାନେ କଲେଜରେ ପଢୁଥିଲେ । ଛୁଟିରେ ଆସିଲେ ସେମାନଙ୍କ ସହିତ ଆଳାପ ହେଉଥିଲା । ସେମାନଙ୍କ ମଧ୍ୟରୁ ଜଣେ ମଇଉଦ୍ଦିନ ଆହମଦ ଆଇ.ଏ.ଏସ୍. ହୋଇଥିଲେ । ସେ କଟକ ବକ୍‌ସିବଜାରରେ ବିରାଟ ଉର୍ଦ୍ଦୁ ଲାଇବ୍ରେରୀ ସ୍ଥାପନ କରାଇ ଅଛନ୍ତି । ନିଜେ ହାଜ୍ କରିଛନ୍ତି । ଅନେକ ସମାଜସେବା କାର୍ଯ୍ୟରେ ଅଂଶଗ୍ରହଣ କରନ୍ତି । ଆସରଫ ଅଲିଙ୍କର ମୃତ୍ୟୁର ପ୍ରାୟ ବର୍ଷକ ପୂର୍ବରୁ କାର୍ଯ୍ୟାନ୍ତରରେ ମୁଁ ବାଲେଶ୍ୱର ଯାଇଥିଲାବେଳେ ତାଙ୍କୁ ସାକ୍ଷାତ କରିବାକୁ ଯାଇଥିଲି । ସେତେବେଳେ ସେ ପ୍ରାୟ ଏକଶତ ବର୍ଷ ପାଖରେ । ଚଟାଣରେ ବିସ୍ତୃତ ଶଯ୍ୟା ଉପରେ ଖାତା ପୁସ୍ତକ ରାଜି ମଧ୍ୟରେ ବସି ଥିଲେ । ମୁଁ ଯିବାରେ ବହୁ ଆନନ୍ଦ ପ୍ରକାଶ କଲେ । ପୁତ୍ର ସ୍ନେହରେ ମୋର ଯତ୍‌କିଞ୍ଚିତ କୃତିରେ ଗର୍ବ ଅନୁଭବ କରି କଥା କହିଲେ । ସେ କାଟର ପ୍ରକୃତ ବିଦଗ୍ଧ ଲୋକ ବିରଳ ।

୧୯୩୧ ଦୁର୍ଗାପୂଜା ପୂର୍ବରୁ ମୃତ୍ୟୁଞ୍ଜୟଙ୍କ ମା' ପୁତ୍ରକୁ ସାଙ୍ଗରେ ନେଇ କଟକ ଆସିଲେ । ମହମ୍ମଦିଆ ବଜାର ସାମନ୍ତ ନିବାସରେ ରହିଲେ । ବାଲେଶ୍ୱର ସୁନହଟ ଜମିଦାରଙ୍କର ସେ ଘର । ମୁଁ ମଧ୍ୟ ସେଠାରେ ରହିଲି । କିଛିଦିନ ପରେ ସେମାନଙ୍କଠାରୁ କୃତଜ୍ଞତାର ସହିତ ବିଦାୟ ନେଇ, ଓକାଲତି ଆରମ୍ଭ କଲି ୧/୯/ ୧୯୩୧ ତାରିଖରେ । ଟିଉସନର ପ୍ରଥମ ପର୍ଯ୍ୟାୟ ୧୯୨୮ ମାର୍ଚ୍ଚ ମାସରେ କାଳୀଗଳି, ଦ୍ୱିତୀୟ ୧୯୨୮ ଅଗଷ୍ଟ ମାସ ସୁକିନ୍ଦା କୋଠି, ତୃତୀୟ ପର୍ଯ୍ୟାୟ ବାଲେଶ୍ୱର, ଦୀର୍ଘତର ହୋଇ ଶେଷ ହେଲା ।



Digitized by srujanika@gmail.com

# ଓକାଲତି ଆରମ୍ଭ

ଆରେ ଢ଼େମଣା, ବୁଲି ବୁଲି ସେଇ ଅଗଣା । ପ୍ରଫେସର ହେବା ନୋହିଲା, ଡେପୁଟି ହେବା ନୋହିଲା, ଇନକମଟ୍ୟାକ୍ସ ଅଫିସର ହେବା ଗନ୍ଧାଇଲା । ସ୍କୁଲବେଳୁ ଯେଉଁ ଓକାଲତି ପାଇଁ ଇଚ୍ଛା ଥିଲା, ତାହା ଆସି ଯୁଟିଲା ମୋଡି ମୋଡି ହୋଇ । ପାଟନା ପଢ଼ା ପରେ, ତାହା କରିଥିଲେ, ଚାରିବର୍ଷ ଆଗରୁ ଓକିଲ ହୋଇଥାନ୍ତି । ମୋ ସାଙ୍ଗରୁ ଗୋପାଳ ପାଟନା ହାଇକୋର୍ଟରେ ଭକିଲ ହୋଇ ସାରିଥିଲେ । ପାଟନାରେ ଓକାଲତି ଆରମ୍ଭ କରିବାର ମୋର ସଙ୍ଗତି ନଥିଲା । ସତ କହିବାକୁ ଗଲେ, କଟକରେ ଆରମ୍ଭ କରିବା ମୋ ପକ୍ଷରେ ଦୁଃସାହସ । ମୁଁ ମଫସଲ ଗାଁ ପୁରୀ ଜିଲ୍ଲାର ଲୋକ । କଟକରେ ଜଣାଶୁଣା କେହି ନଥିଲେ । ଯେଉଁ ବର୍ଷାଧିକ କାଳ କଟକରେ ଇନ୍‌କମ୍ ଟିକସଇନ୍‌ସ-ପେକ୍ଟର ଥିଲି, ସେଥିରେ ଲୋକ ପରିଚିତିର ସୁଯୋଗ ନଥିଲା । ଷ୍ଟେଟ ସ୍କଲରସିପ, ଡେପୁଟି ଚାକିରୀରେ ମୋର ଯେଉଁ ଅଯଥା ବିପର୍ଯ୍ୟୟ ଘଟିଥିଲା ଏବଂ ଯେଉଁ କାରଣରୁ ତାହା ହେଲା,ତାହା ଶିକ୍ଷିତ ମହଲରେ ଯଥେଷ୍ଟ ଜଣାଥିଲା ଏବଂ ମୋ ପ୍ରତି ଏକ ସହାନୁଭୂତି ଭାବ କଲେଜ ଅଧ୍ୟାପକ ଓ ଓକିଲ ମହଲରେ ପ୍ରକାଶ ପାଉଥିଲା । ସେ ସବୁ ଘଟନା ଓକିଲମାନଙ୍କ ମଧ୍ୟରେ ବହୁ ଆଲୋଚିତ ହୋଇଥିଲା । ମୋ ପ୍ରତି ଅନ୍ୟାୟ ହୋଇଥିବା କଥା, ବିଶେଷତଃ ଲକ୍ଷ୍ମୀଧର ମହାନ୍ତି (ଓକିଲ) ଯେ ପାଟନା ଇଣ୍ଟରଭିଉ ବୋର୍ଡର ଉଭୟ କ୍ଷେତ୍ରରେ ସଦସ୍ୟ ଥିଲେ, ବାରମ୍ବାର ବହୁ ସ୍ଥାନରେ, ବାର ଆସୋସିଏସନ୍‌ରେ ମଧ୍ୟ, ପ୍ରକାଶ କରିଥିଲେ । କନିକାର ରାଜାସାହେବ ଏବଂ ତାଙ୍କର ଟିକାୟତ ଶୈଳେନ୍ଦ୍ର ନାରାୟଣ ଭଞ୍ଜଦେଓ ମଧ୍ୟ ସେହିପରି ଅନେକଙ୍କ ଆଗରେ କହୁ ଥାଆନ୍ତି । ଏହି ପୃଷ୍ଠଭୂମିରେ ମୁଁ ଯେଉଁଦିନ କଚେରୀକୁ ପ୍ରଥମ ଗଲି, ଅତି ସଙ୍କୋଚରେ ମ୍ରିୟମାଣ ହୋଇ ପଡିଥିଲି । ଅନ୍ୟ କ୍ଷେତ୍ରରେ ପରାଜିତ ହୋଇ, ଆଶ୍ରୟ ଖୋଜି ସେଠାକୁ ଗଲାପରି ମତେ ମାଡି ମାଡି ପଡୁଥାଏ । ପାଟନାରେ ପଢ଼ିଲାବେଳେ, ପାଟନା ହାଇକୋର୍ଟର ବାୟୁମଣ୍ଡଳରେ ଆକୃଷ୍ଟ ହୋଇଥିଲି । ତାହା

Digitized by srujanika@gmail.com

ତୁଳନାରେ କ୍ଷୁଦ୍ର ପରିସର ସନ୍ତୋଷ ବା ଦିଅନ୍ତା କିପରି ? କିଛି ସମୟ ଜଜ କୋର୍ଟରେ ବସି ପଦାକୁ ଆସିଲା ବେଳକୁ ବ୍ରଜବନ୍ଧୁ ଦାସ ଓକିଲ କୋର୍ଟ ବାରନ୍ଦାରେ ଅନ୍ୟମାନଙ୍କୁ ମୋ ବିଷୟରେ ପ୍ରଶଂସା କରି କହୁଥାନ୍ତି । ମୁଁ ଇନ୍‌କମ୍‌ଟିକସ କମିଶନରଙ୍କୁ କଅଣ କହି ଇସ୍ତଫା ଦେଇଥିଲି, ବନାରସରେ କିପରି ସର୍ବଭାରତୀୟ ପ୍ରତିଯୋଗିତାରେ ବିଜେତା ହୋଇଥିଲି, ବିହାରୀ ମନ୍ତ୍ରୀ କିପରି ମୋ ନାମ କଟାଇ ତାଙ୍କ ପୁତୁରାକୁ ଡେପୁଟି କାମରେ ଥୋଇଲେ, ଇତ୍ୟାଦି, ଇତ୍ୟାଦି । ମୁଁ ଲାଜ ଥୁମୁଣା ହୋଇଗଲି । ବ୍ରଜବାବୁ ଓଡିଶା ଦେଶ ମିଶ୍ରଣରେ ଜଣେ ଅଗ୍ରଣୀ ଥିଲେ । ରାଜନୈତିକ ଘଟନା ସବୁ ତାଙ୍କ ନଖଦର୍ପଣରେ ଥାଏ । ସମ୍ବାଦ ସମୀକ୍ଷାରେ ସେ ଧୁରନ୍ଧର । ପବ୍ଲିକ୍ ଲାଇଫରେ ଆଗ୍ରହୀ । ମୋ ପ୍ରତି ତାଙ୍କର ଅନୁକୂଳ ଭାବ ପ୍ରଥମ ଦିନରୁ ତାଙ୍କର ଦେହାନ୍ତ ପର୍ଯ୍ୟନ୍ତ ଅକ୍ଷୁର୍ଣ୍ଣ ରହି ଆସିଥିଲା । ତାଙ୍କ ବଡଭାଇ ଲୋକନାଥ ଦାସ ମଧ ତଦ୍ରୂପ ଉଦାରଚେତା ଥିଲେ । ସେ ପାଟନାରେ କିଛି କାଳ ଓକାଲତି କରି କଟକକୁ ଆସିଲେ । ଉଭୟ ଭ୍ରାତା ଓକାଲତିରେ ବିଶେଷ ଅଗ୍ରଗତି ନ କରି ପାରିଲେ ମଧ, ସମସ୍ତଙ୍କର ପ୍ରିୟ ଓ ଶ୍ରଦ୍ଧାଭାଜନ ଥିଲେ ।

ପ୍ରକୃତ କଥାରେ ଯେତେ ନୁହେଁ, ବ୍ରଜବାବୁଙ୍କ ବାକ୍‌ଚାତୁରୀରେ ଶ୍ରୋତା ଓକିଲମାନଙ୍କର ମୋ ପ୍ରତି ସୁନଜର ପଡିଲା । ସେ କଥା ସବୁ, ପୁରୁଣା ଘଟନା ହୋଇଥିଲେ ମଧ, ନୂତନ ରଙ୍ଗରେ ଅନ୍ୟମାନଙ୍କ କାନକୁ ପ୍ରସାରିଯିବାରୁ, ଅକିଞ୍ଚନ ମୁଁ ଓକାଲତି ପାଇଁ ବିଶେଷ ଯୋଗ୍ୟ ବୋଲି ଏକ ଅକଳ୍ପିତ ଧାରଣା ସୃଷ୍ଟି ହୋଇଗଲା । ମୋର ଆତଙ୍କଭାବ କଟିଗଲା । ବିନା କାରଣରେ ମୁଁ ଉତ୍‌ଫୁଲ୍ଲ ବୋଧକରି କଚେରୀରୁ ଫେରିଲି । ବାଟରେ ଭାବୁଥାଏ, ଆସିଥିଲି ପ୍ରାୟ ମନସ୍ତାପରେ, ଫେରୁଛି ମନଃପୂତ ହୋଇ । କାହା ଇଙ୍ଗିତରେ ଓ କିପରି ଏହା ହେଲା ? ପ୍ରଥମ ଦିନରେ ଏପରି ସୌଭାଗ୍ୟ କ୍ୱଚିତ୍ ଓକିଲଙ୍କୁ ମିଳେ । ସେ ଦିନର ଉନିଦ୍ର ରାତ୍ରି ଭଗବାନଙ୍କୁ ନିବେଦନ ଜଣାଇ କଟିଲା । ଅଲକ୍ଷିତ ହସ୍ତର ନିର୍ଦ୍ଦେଶରେ କଟକରେ ଓକାଲତି ଆରମ୍ଭ କରିଥିବା ଜଣାଇଲି ନନାଙ୍କୁ ଓ ପତ୍ନୀଙ୍କୁ । ନନା ସେତେବେଳେ ପୁରୀଜିଲ୍ଲା ସ୍କୁଲରେ ଶିକ୍ଷକ ଥାଆନ୍ତି । ତାଙ୍କ ପାଖରେ ବୋଉ ଓ ଅନ୍ୟ ଭାଇଭଉଣୀମାନେ ଥିଲେ । ଓକିଲ ହେବାରେ ସମାଜରେ ମର୍ଯ୍ୟାଦା ଥିଲା । କଟକରେ ସେତେବେଳେ ଲବ୍‌ଧପ୍ରତିଷ୍ଠ ଓକିଲ ଥିଲେ ମଧୁସୂଦନ ଦାସ, ଜାନକୀନାଥ ବୋଷ (ସୁଭାଷ ବୋଷଙ୍କ ପିତା), ସୁବୋଧ ଚନ୍ଦ୍ର ଚାଟର୍ଜୀ, ସତ୍ୟନାରାୟଣ ସେନଗୁପ୍ତ, ବିଚିତ୍ରାନନ୍ଦ ଦାସ, ସୁବାରାଓ, ସତୀଶଚନ୍ଦ୍ର ବସୁ । ଏମାନେ ଦେୱାନୀ (Civil) ଦିଗର । ମଧୁବାବୁ ଥିଲେ

Digitized by srujanika@gmail.com

ବୟୋଜ୍ୟେଷ୍ଠ, ଭଗ୍ନସ୍ୱାସ୍ଥ୍ୟ, ଶୀର୍ଣ୍ଣ ଶରୀର । ଅତୀତରେ ବିପୁଳ ଅର୍ଥ ଉପାର୍ଜ୍ଜନ କରିଥିଲେ ମଧ୍ୟ, ବହୁ ଦେଣାଗ୍ରସ୍ତ ହୋଇ କୋର୍ଟରେ Insolvent ହୋଇଥାନ୍ତି । ସମସ୍ତଙ୍କର ଭକ୍ତି ଓ ସମ୍ମାନ ତାଙ୍କ ପ୍ରତି ଥାଏ କିନ୍ତୁ ଓକାଲତି ପ୍ରସାର ତାଙ୍କର ବହୁତ କମି ଯାଇଥାଏ । ବିଚିତ୍ରାନନ୍ଦ ବାବୁଙ୍କ ବ୍ୟତୀତ, ଅନ୍ୟମାନେ ଅଣଓଡିଆ । ମଧୁବାବୁ କଥା କହୁଥିଲେ ବଙ୍ଗଳାରେ ସାଧାରଣତଃ । ସଭାସମିତିରେ ଓଡିଆ, ଇଂରେଜୀ ତାଙ୍କର ପ୍ରାଞ୍ଜଳ ବାହାରୁ ଥାଏ । ଓଡିଶାରେ କେବଳ ଓକାଲତିରେ ନୁହେଁ, ଡାକ୍ତରୀରେ ମଧ୍ୟ ବଙ୍ଗୀୟମାନଙ୍କର ପ୍ରତିପତ୍ତି ଓ ଦକ୍ଷତା ଅଧିକ ଥିଲା । ବିଚିତ୍ରାନନ୍ଦବାବୁ, ସତ୍ୟନାରାୟଣବାବୁ କଂଗ୍ରେସପନ୍ଥୀ ଥିଲେ । ଜାନକୀବାବୁ ମଧ୍ୟ । ଅନ୍ୟମାନେ ନିର୍ଦ୍ଦଳୀୟ । ସରକାର ସହଯୋଗୀ ଥିଲେ, ଲକ୍ଷ୍ମୀଧର ମହାନ୍ତି, ଭିକାରୀ ଚରଣ ପଟ୍ଟନାୟକ, ଚିନ୍ତାମଣି ଆଚାର୍ଯ୍ୟ, ବୀରକିଶୋର ରାୟ, ଗୋପାଳଚନ୍ଦ୍ର ପ୍ରହରାଜ, ବାଞ୍ଛାନିଧି ମହାପାତ୍ର ପ୍ରଭୃତି । ବୀରବାବୁଙ୍କର ଫୌଜଦାରୀ ଦିଗରେ ବେଶି ପ୍ରସାର ଥିଲା । ପରେ ତାଙ୍କର ବୁଦ୍ଧିମତା ଦେଓ୍ୱାନୀ ଦିଗରେ ମଧ୍ୟ ପ୍ରସାରିତ ହେଲା । ଅଗ୍ରସ୍ଥାନୀୟ ଓକିଲ ମାନଙ୍କ ନିକଟରେ ଏକାଧିକ ଜୁନିଅର ରହିଥାନ୍ତି । ସେମାନେ ସିନିଅରଙ୍କ ଅନୁକ୍ରମରେ କଂଗ୍ରେସ ବା ସରକାର ପ୍ରତି ଅନୁରକ୍ତ ହୁଅନ୍ତି ବା ଦେଶର ସମସ୍ୟା ପ୍ରତି ଉଦାସଭାବ ପୋଷଣ କରନ୍ତି । ଗୋପାଳଚନ୍ଦ୍ର ରାୟ, ଶରତଚନ୍ଦ୍ର ଚକ୍ରବର୍ତ୍ତୀ, ଶରତଚନ୍ଦ୍ର ପାଲ, ବିପିନବିହାରୀ ମିତ୍ର, ଯଦୁନାଥ ମିତ୍ର, ନଗେନ୍ଦ୍ର ନାଥ ମିତ୍ର, ପଞ୍ଚାନନ ମୁଖାର୍ଜୀ, ପ୍ରିୟନାଥ ମୁଖାର୍ଜୀ, ଜ୍ଞାନେନ୍ଦ୍ର ବୋଷ, ରେବତୀକାନ୍ତ ଘୋଷ, ମାୟାଧର ଦାସ, ରାମଚନ୍ଦ୍ର ଦାଶ, ପାରେଶ୍ୱର ମହାନ୍ତି, ଧର୍ମାନନ୍ଦ ମହାନ୍ତି ପ୍ରଭୃତିଙ୍କର ମୁନସଫ କୋର୍ଟମାନଙ୍କରେ ଯଥେଷ୍ଟ ପ୍ରସାର ଥାଏ । ସେମାନଙ୍କ ପରେ ଅନେକ ଯୁବକ ଓକିଲ ବାହାରି ଥାଆନ୍ତି । ତାଙ୍କ ମଧ୍ୟରୁ ସୌରୀପ୍ରସାଦ ମହାପାତ୍ର, ବିଧୁ ପ୍ରସାଦ ମହାପାତ୍ର, ରବୀନ୍ଦ୍ରନାଥ ସିଂହ, ହରିଚରଣ ମୁଖାର୍ଜୀ, ଲଳିତ ଦାସଗୁପ୍ତ, ହରିଦାସ ସେନ୍, ଅନାଥବନ୍ଧୁ ରାୟଙ୍କର ଏକ ବନ୍ଧୁମେଳ ଥାଏ । ସେମାନଙ୍କ ସଙ୍ଗେ ମୋର ପ୍ରଥମରୁ ଆଳାପ ହୋଇଥିଲା ।

ନୂଆ ହୋଇ ଓକିଲାତି କଲେ, କୌଣସି ବୟସ୍ଥ ଓକିଲଙ୍କ ସିରସ୍ତାରେ ଜୁନିଅର ହୋଇ କାର୍ଯ୍ୟରେ ଅଭ୍ୟସ୍ତ ହେବାକୁ ହୁଏ । ମୁଁ ଆସି ଦେଖିଲି, ସବୁ ନାମଜାଦା ଓକିଲଙ୍କର ଅନେକ ଜୁନିଅର ରହି ସାରିଛନ୍ତି । ହୁଏତ ସେମାନଙ୍କ ମଧ୍ୟରୁ କାହାପାଖକୁ ଯାଇଥିଲେ, ତାଙ୍କ ସିରସ୍ତାରେ ମୋ ପାଇଁ ସ୍ଥାନ ମିଳିଥାଆନ୍ତା । କେଜାଣି କାହିଁକି, ମୋର ମନ ହେଲା, କାହାରି ଜୁନିଅର ନ ହୋଇ, ମୁଁ ନିଜେ, ନିଜେ କାମ

Digitized by srujanika@gmail.com

ଆରମ୍ଭ କରେ । ଏପରି କେହି କରି ନଥିଲେ ବା କରୁ ନଥିଲେ । ମୋର ଏହି ରୀତିକୁ କେହି ପସନ୍ଦ କରିବାର ମନେ ହୁଏ ନାହିଁ । କୌଣସି ଅହଂକାର ଯୋଗୁ ମୁଁ ତାହା କରି ନଥିଲି । ଦୁଃସାହସର ଏକ ପ୍ରତିକ୍ରିୟା ବୋଧହୁଏ । ତାହାଦ୍ୱାରା ପ୍ରଥମରୁ ବହୁତ ଅସୁବିଧା ଭୋଗିଲି, କିନ୍ତୁ ଉପକାର ମିଳିଲା ଅଳ୍ପକାଳ ପରେ ବହୁତ ବେଶି । ଅଜଣା, ଅଶୁଣା ନୂଆ ଓକିଲକୁ କିଏ କାହିଁକି କାମ ଦେବ ? ତା ଉପରେ ଭରସା କେଉଁଠୁ ମିଳିବ ? ଯାହାଙ୍କ ପାଖରେ ବହୁତ କାମ, ତାଙ୍କ ପାଖରେ ତ ଅନେକ ଜୁନିଅର । ସେ ବା ମତେ କାହିଁକି ତାଙ୍କ କାମରେ ଜୁନିଅର କରିବେ ? ବନ୍ଧୁତା ଯେଉଁ ଓକିଲଙ୍କ ସଙ୍ଗେ ଜମିଲା, ସେ ତ ନିଜେ କାମ ପାଇଁ ଧନ୍ଦି ହେଉଥାନ୍ତି, ମତେ ସେ କାହୁଁ ସାହାଯ୍ୟ କରିବେ ? ସୁତରାଂ ଶୂନ୍ୟଘରେ ହାତ ବୁଲାଇବା ସାର ହେଲା ।

ଯେଉଁ କେସ୍‌ରେ (ଦେୱାନୀ) ନାବାଳକ ପକ୍ଷ ଥାଆନ୍ତି ଏବଂ ନାବାଳକର କେହି ଅଭିଭାବକ ମୁକରୀର ବା ହାଜର ନ ହୁଅନ୍ତି, କୋର୍ଟ ତରଫରୁ ସେହି ନାବାଳକ ପାଇଁ ଜଣେ ଜୁନିଅର ଓକିଲ ନିଯୁକ୍ତ କରାଯାଏ ସାମାନ୍ୟ ଫିସ୍‌ରେ । ନୂଆ ହୋଇ ଯେଉଁମାନେ ଓକିଲାତି କରୁଥାନ୍ତି, ତାଙ୍କୁ ସେହି କାର୍ଯ୍ୟ ଦିଆଯାଏ । ମୋ ଭାଗରେ ସେହିପରି ଅଳ୍ପ କେତୋଟି ନିଯୁକ୍ତି ମିଳିଲା । ନାହିଁ ମାମୁଁଠୁ କଣା ମାମୁଁ ଭଲ । ଏପରି ଗୋଟିଏ କେସ୍‌ରେ ବକ୍‌ସି ବଜାରର ବ୍ୟବସାୟୀ, ମାମଲତକାର ମଣି ସାହୁ ବାଦୀ ଥାଇ ଜଣେ ଛୋଟ ଦୋକାନଦାର ତ୍ରିନାଥ ସାହୁଠାରୁ ପ୍ରାପ୍ୟ ଟଙ୍କା ପାଇଁ ଦାବୀ କରିଥାନ୍ତି । ସାହୁର ଏକ ନାବାଳକ ସାନ ଭାଇକୁ ପ୍ରତିବାଦୀ ମଧ କରିଥାନ୍ତି । ସେହି ବାଳକ ପାଇଁ କୋର୍ଟ ତରଫରୁ ମତେ ନିଯୁକ୍ତ କରାହୋଇଥାଏ । ବିହାରର ଜଣେ ମୁସଲମାନ ମୁନସଫ ମହମ୍ମଦ ଇବ୍ରାହିମଙ୍କ କୋର୍ଟରେ (Small Case Court) ସେ ମାମଲା ପଡିଲାବେଳେ, ମଣି ସାହୁ, ବାଦୀ ସାକ୍ଷୀ ଦେବାକୁ ଠିଆ ହେଲେ । ସେ ପ୍ରକାର କେସରେ ସାକ୍ଷ୍ୟ ନାମକୁ ମାତ୍ର । ମୂଳ ପ୍ରତିବାଦୀର ଓକିଲ ଯାହା ପ୍ରତିରୋଧର ଚେଷ୍ଟା କରେ । ନାବାଳକର ଓକିଲ ଖାଲି ଉପସ୍ଥିତ ହୁଏ, ସାମାନ୍ୟ ଫିସ୍ କୋର୍ଟରୁ ପାଇବା ପାଇଁ । ବାଦୀ ମଣି ସାହୁଙ୍କୁ ପ୍ରତିବାଦୀ ଓକିଲ ସାମାନ୍ୟ ଜେରା କରିବା ପରେ ମଣି ସାହୁ ହସି ହସି ଓହ୍ଲାଇ ଆସୁଥିଲେ, ଯେତେବେଳେ ମୁଁ ଠିଆ ହେଲି ନାବାଳକ ତରଫରୁ ଜେରା କରିବା ପାଇଁ । ମୁନସିଫ ମତେ ଦେଖି ନଦେଖିଲା ପରି ମଣି ସାହୁଙ୍କ ଜମାନବନ୍ଦୀ ଶେଷ ହେଲାପରି ଦସ୍ତଖତ କରିଦେଲେ । ମୁଁ ତଥାପି ଠିଆ ହୋଇଥାଏ । ମତେ ପଚାରିଲେ, ମୁଁ କଣ ଚାହେଁ । ନାବାଳକ ତରଫରୁ ଜେରା କରିବାକୁ ଇଚ୍ଛା କରୁଛି ଶୁଣି ସେ ନାପସନ୍ଦ ହସିଲେ, କିନ୍ତୁ ନାହିଁ

Digitized by srujanika@gmail.com

କରି ପାରିଲେ ନାହିଁ । ନାବାଳକ ମଧ ଜଣେ ପକ୍ଷ ଏବଂ ତାହାର ମଧ ହକ ଅଛି ବାଦୀଙ୍କର ଦାବୀକୁ ପ୍ରତିରୋଧ କରିବାକୁ । ମଣି ସାହୁ ମଧ ଅପସନ୍ଧିଆ ମୁଖାଭାସରେ ପୁଣି ଠିଆହେଲେ, ଜୋରରେ ସାକ୍ଷୀ ଦେବାକୁ । ଯେଉଁ ଖାତା ଲେଖା ଉପରେ ବାଦୀଙ୍କର ଦାବୀ ନିର୍ଭର କରୁଥିଲା, ତାହାର କେତେକ ତ୍ରୁଟି ପ୍ରତି ମଣି ସାହୁଙ୍କ ଦୃଷ୍ଟି ଆକର୍ଷଣ କରି ମୁଁ ପ୍ରଶ୍ନ ପଚାରିବାରେ ସେ ଥତମତ ହେଲେ । ସେ ଖାତା କୋର୍ଟର ବିଶ୍ୱାସଯୋଗ୍ୟ ହୋଇ ନ ପାରେ ବୋଲି ମୋର ଯୁକ୍ତି କୋର୍ଟ ଗ୍ରହଣ କରି ବାଦୀଙ୍କର ଦାବୀକୁ ଡିସ୍‌ମିସ୍ କଲେ । ନାବାଳକ ତରଫରୁ ଜଣେ ନୂଆ ଓକିଲ ଏତେ ଯତ୍ନନେଇ ଜେରା ଓ ଜବାବ ସୁଆଲ କରିବା ବିଷୟରେ କୋର୍ଟଙ୍କର ପ୍ରକାଶ୍ୟ ପ୍ରଶଂସା ସୂଚକ ମନ୍ତବ୍ୟରେ ମୁଁ ଯେତେ ଉତ୍ସାହିତ ହେଲି, ତାହାଠାରୁ ବେଶି ହେଲି, ଉପସ୍ଥିତ ଥିବା ମୋହରୀର, ମହକିଲମାନଙ୍କର କୁହାକୋହି ମନ୍ତବ୍ୟରେ । ନ ଦେଖିଲା ଓଉ ଛ'ଫଡା ପରି କଥାଟା ମୋହରୀରଖାନାରେ ବିସ୍ତାରିତ ହୋଇଗଲା । ଫିସ୍ ମିଳିଲା ମାତ୍ର ଚାରିଟଙ୍କା, କିନ୍ତୁ ପ୍ରଶଂସା ମିଳିଲା ବହୁ ଗୁଣ । ମଣି ସାହୁ ହାରିଯାଇ ଶୁଖିଲା ମୁହଁରେ ମୋ ପ୍ରତି ଅପ୍ରସନ୍ନ ହେବାର କଥା । ତାଙ୍କର କଟକ ରେଲଷ୍ଟେସନ ମାଲଗୋଦାମରେ ଦୋକାନ ଥାଏ । କଟକ ବାହାରେ ଜମିବାଡି କିଛି ଥିଲା । ପ୍ରତିଦିନ କଚେରୀକୁ ନ ଆସିଲେ ତାଙ୍କ ଭାତ ହଜମ ହୁଏ ନାହିଁ । ନିଜର ଯେତେ ମକଦ୍ଦମା ନଥାଏ, ଅନ୍ୟମାନଙ୍କ ମକଦ୍ଦମା ତଦ୍‌ବିର କରିବା ତା ଠାରୁ ବେଶି । ସକାଳୁ ଓଳି ତାଙ୍କ ଘରେ ଲୋକେ ଜୁଟନ୍ତି, କାହାକୁ ଓକିଲ ଦେବେ, ମକଦ୍ଦମା ତଦ୍‌ବିର କେମିତି ହେବ ଇତ୍ୟାଦି ବିଷୟରେ ତାଙ୍କ ପରାମର୍ଶ ନେବାପାଇଁ । ମଣି ସାହୁ ଖାଇପିଇ କଚେରୀକୁ ଆସନ୍ତି ଫିଟନ୍ ଘୋଡାଗାଡିରେ । କିଛି କାମ ନଥିଲେ ମଧ ଥରେ କଚେରୀ ବୁଲି ନ ଗଲେ, ନ ହୁଏ । କଚେରୀରେ ଯେଉଁମାନେ ତାଙ୍କ ନିଜ ମକଦ୍ଦମାରେ ମୋ ଦ୍ୱାରା ହାରିଲେ, ତା ପରଦିନ ସକାଳେ ମୋ ପାଖେ ପହଞ୍ଚିଲେ ୪/୫ ଜଣଙ୍କ ସାଙ୍ଗରେ । ମତେ ତ ତାରିଫ କଲେ କିନ୍ତୁ ମତେ ଆଶ୍ଚର୍ଯ୍ୟ ଲାଗିଲା, ତିନି ଜଣଙ୍କର ତିନୋଟି କେସ୍ ଚଳାଇବା ପାଇଁ ମୋ ଜିମା ଦେଲେ । ସେହି ଦିନଠାରୁ ମଣି ସାହୁ ତାଙ୍କ ତିରୋଧାନ ପର୍ଯ୍ୟନ୍ତ ନିଜର ଓ ଅନ୍ୟମାନଙ୍କର ବହୁ କେସ୍‌ରେ ମୋ ସାହାଯ୍ୟ ନେଉଥିଲେ । ୧୯୪୩ରେ ପୁରୀ ସଦର ଥାନା ଅନ୍ତର୍ଗତ ଓଡସମଲ ମୌଜାରେ ତାଙ୍କର ଥିବା ଧାନଜମି ଓ ନଡିଆ ବଗିଚା ୩୪ ଏକର ମତେ ଚଉଦ ହଜାର ଟଙ୍କା ଜରସମନରେ ବିକ୍ରୟ କରିଥିଲେ । ତା ସଙ୍ଗେ ପୁରୀ ସହର ପଥୁରିଆ ସାହିର ଗୋଟିଏ କୋଠା ମଧ ବିକିଥିଲେ । ପାଠପଢ଼ା ତାଙ୍କର ନ ଥିଲା, କିନ୍ତୁ ମାନୀ ଲୋକ

Digitized by srujanika@gmail.com

ଥିଲେ । କଟକର ବାସ୍ତରି କୀର୍ତ୍ତନମଣ୍ଡଳର ସେ ଅଧିକାରୀ ଓ ତେଲି ସଂପ୍ରଦାୟର ଜଣେ ମୁରବୀ ସ୍ଥାନୀୟ ଲୋକଥାଇ କଟକ ସାହି ମହଲରେ ମର୍ଯ୍ୟାଦା ପାଉଥିଲେ ।

ମଣି ସାହୁଙ୍କ କେସ୍ ପରେ, କିଛି କିଛି କେସ୍ ଜୁଟିଲା । ମୁଁ କାହାରି ଜୁନିଅର ନ ଥିବାରୁ, କେସ୍‌ର ପ୍ରସ୍ତୁତି ପାଇଁ ବହୁତ ଅଣ୍ଡାଳି ହେବାକୁ ପଡେ । ଅମଡାବାଟ ବେଳେବେଳେ ବାହାରି ପଡେ । ଗୋଟିଏ କେସ୍‌ରେ ଯେତିକି ଆବଶ୍ୟକ, ତାଠାରୁ ଅନେକ ବେଶି ଖୁଣ୍ଟି ନାଣ୍ଟି ନ ଦେଖିଲେ, ମନରେ ଭରସା ଆସେ ନାହିଁ । ଏହାଦ୍ୱାରା କେସ୍ ପ୍ରସ୍ତୁତ କରିବା ଏବଂ କୋର୍ଟରେ ତାହା ପରିଚାଳନା କରିବାର ଏକ ଷ୍ଟାଇଲ ମୋର ହେଲା, ଯାହା ଗତାନୁଗତିକ ଠାରୁ ଅନେକାଂଶରେ ଭିନ୍ନ । ଅର୍ଜି, ଜବାବ ଓ ଆର୍ଗୁମେଣ୍ଟ ମୋର ଭିନ୍ନ ଧରଣର ଥିବାରୁ ମୁଁ ଅନେକ ସମୟରେ ଅନେକ ସୁବିଧା ପାଇଁ ଅନ୍ୟମାନଙ୍କ ସୁଦୃଷ୍ଟି ଲାଭ କରିବାକୁ ସମର୍ଥ ହୋଇଥିଲି । କେସ୍ ଛୋଟ ହେଉ ବା ବଡ ହେଉ, ସିଧାହେଉ ବା ଜଟିଳହେଉ, ଫିସ୍ ମିଳୁ ବା ନ ମିଳୁ, ଥରେ ହାତକୁ ନେଲେ, ମୋ ପାରୁପର୍ଯ୍ୟନ୍ତ, ଚେଷ୍ଟା ଓ ଯତ୍ନ କରିବା ମୋର ଆଦ୍ୟରୁ ଅପରିବର୍ତ୍ତିତ ଅଭ୍ୟାସ ରହିଥିଲା । ପ୍ରଥମ ମଣି ସାହୁ କେସ୍‌ରେ ମୁଁ ତେର ଘଣ୍ଟା ପରିଶ୍ରମ କରିଥିବା କେହି ବିଶ୍ୱାସ କରିବେ ନାହିଁ । ଅନ୍ୟ କେହି ତେର ମିନଟରୁ ଅଧିକ ସମୟ ଦେବା ଆବଶ୍ୟକବୋଧ କରି ନଥାନ୍ତା । ତେର ଘଣ୍ଟା ପରଶ୍ରମର ଅର୍ଥ, ସେହି କେସ୍ ସଂକ୍ରାନ୍ତ ସାମାନ୍ୟ କାଗଜପତ୍ର ପରୀକ୍ଷା କରିବା, ନିଜେ ସଂପୂର୍ଣ୍ଣ ବୁଝିବା, ବାଟ ଖୋଜିବା ପାଇଁ ବହିପତ୍ର ଘାଣ୍ଟିବା ଏବଂ ସର୍ବୋପରି, ସେ ବିଷୟରେ ଭାବିବା । ଚାରିଟଙ୍କା ଫିସ୍ ଅନୁପାତରେ ଯଦି ମୋ ମନ, ଧ୍ୟାନ ଓ ପ୍ରସ୍ତୁତି ହୋଇଥାଆନ୍ତା ବା ସାଧାରଣତଃ ନାବାଳକର ଓକିଲ ଯେଉଁ କର୍ମହୀନ ଭୂମିକା ନେବାର କଥା, ମୁଁ ଯଦି ତାହା ଅନୁସରଣ କରିଥାଆନ୍ତି, ତେବେ ଓକାଲତି ବୃତ୍ତିପାଇଁ ସେହି ପ୍ରଥମ କେସ୍ ଯେଉଁ ବିପୁଳ, ଅପ୍ରତ୍ୟାଶିତ ସହାୟକ ହୋଇଥିଲା, ତାହା ଘଟି ନଥାନ୍ତା । ଇନ୍‌କମଟିକସରେ କିଛି କାଳ ଚାକିରୀ କରିଥିବାରୁ କିଛି କିଛି ଇନ୍‌କମଟିକସ କେସ ମଧ୍ୟ ହାତକୁ ଆସିଲା । ଜଣେ ମୋହରୀର ନିଜଆଡୁ ଆସି ମୋ ପାଖରେ ରହିବାକୁ କହିଲେ । ନୂଆ ଓକିଲଙ୍କର ପ୍ରଥମ ଅବସ୍ଥାରେ ଯାହା ନ ମିଳେ, ମତେ ତାହା ଓ ତାହାଠାରୁ ବେଶି ମିଳିଲା, କେବଳ ଭଗବାନଙ୍କ ଦୟାରୁ । ଚାକିରୀରେ ଯାହା ଅର୍ଥ ବା ଜଣାଶୁଣା ହୁଅନ୍ତା, ତା ଅପେକ୍ଷା ଅଧିକ ପ୍ରାପ୍ତିରେ, ପଛକଥା ଆଉ ମନରେ ଦୁଃଖ ଦେବାର କାରଣ ନଥିଲା । ଧୋବାକୁ ମାଇପ ମିଳିଲା, କିମ୍ବାର କଥା

Digitized by srujanika@gmail.com

ଜଣା ପଡିଲା । ଅନ୍ୟମାନଙ୍କ ଚକ୍ରାନ୍ତ ସମସ୍ତେ ଜାଣିଲେ, ମୋ ପେଟ ଅପୋଷା ରହିଲା ନାହିଁ ।

ଓଡିଆ ବଜାର ବ୍ରାହ୍ମସମାଜ ଆଗଦୁଆରି ଗୋଟିଏ ଘର ମାସିକ ପନ୍ଦର ଟଙ୍କା ଭଡାରେ ଠିକ୍ କରି ପିଲାଙ୍କୁ ଆଣି କଟକରେ ପୁଣି ବସା ବାନ୍ଧିଲି । ଇନ୍‌କମଟିକସ ଚାକିରୀ ପୂର୍ବରୁ ପୁଅ ପ୍ରଭାତ ଜନ୍ମ ହୋଇଥିଲା । ଓକାଲତି ଆରମ୍ଭ ପୂର୍ବରୁ ଝିଅ ସୁମିତ୍ରା ସେହି ବର୍ଷ (୧୯୩୧) ମେ ମାସରେ ଜନ୍ମ । ପୁଅକୁ ଡାକୁ ବେବି ବୋଲି, ଝିଅକୁ ମିନି । ଏ ଡାକ ନାମରେ କିଛି ରହସ୍ୟ ଥିଲା । ନବଭାଇ (ନବକୃଷ୍ଣ ଚୌଧୁରୀ) ବେବି ନାମରେ ଜଣକୁ ଡାକୁଥିବାର ଜାଣିଥିଲି ଆଗରୁ । ମାଳତୀ ଚୌଧୁରୀଙ୍କୁ ମିନୁ ବୋଲି ଡାକୁଥିଲେ । ଏହିପରି ଏକ ବଙ୍ଗଳା ମାସିକ ପତ୍ରିକାରୁ ଅନ୍ୟ ଏକ ନାମର ସାଦୃଶରେ ସ୍ତ୍ରୀଙ୍କୁ ମୂଳରୁ ଇଲି ବୋଲି ଡାକୁଥିଲି । ସବୁ ବନ୍ଧୁ ସେହି ନାମରେ ତାଙ୍କୁ ଡାକନ୍ତି । ତାଙ୍କ ବାପ ଘରେ ଡାକନାମ ଥିଲା ପିରି । ମୋ ବୋଉ, ନାନୀ ଓ ଅନ୍ୟମାନେ ସେହି ନାମରେ ତାଙ୍କୁ ଡାକୁଥିଲେ, ଆମ ଘରକୁ ସେ ଆସିଲା ପରେ । ଟିକିଏ ଆଶ୍ଚର୍ଯ୍ୟର କଥା ଏହି ଯେ ଯେଉଁ ଓଡିଆ ବଜାରରୁ ଇନ୍‌କମଟିକସ ଚାକିରୀ ଛାଡି, କଟକ ଛାଡିଥିଲି, ସେହି ଓଡିଆ ବଜାରକୁ ପୁଣି ଘଟନାଚକ୍ରରେ ଅନ୍ୟ ବୃତ୍ତି ଉପଲକ୍ଷେ ଆସି ରହିବାକୁ ହେଲା । ଘରଟିର ରାସ୍ତାପଟକୁ ଦୁଇବଖରା ଚାଳଘର । ଭିତରକୁ ଦୁଇଟି ପକ୍‌କା କୋଠରୀ, ପକ୍‌କା ଅଗଣାରେ କୂଅ । ଆଉ ଦୁଇଟି ଚାଳଘର, ଯେଉଁଥିରେ ଗୋଟିକରେ ରୋଷାଇ, ଅନ୍ୟଟିରେ ଭଣ୍ଡାର ଓ ଦିଅଁ । ଗୋଟିଏ ଛୋଟ ପିତଳ ଖଟୁଲିରେ ମହାଲକ୍ଷ୍ମୀ ମୂର୍ତ୍ତି, ରାମ, ଲକ୍ଷ୍ମଣ ସୀତା ଚିତ୍ରପଟ ରଖି ମୋ ସ୍ତ୍ରୀ ପୂଜା କରୁଥିଲେ । ଦାଣ୍ଡପଟ ଚାଳଘର ଦୁଇଟିରୁ ଗୋଟିଏ ଥିଲା ବଡ, ସେଇଟି ହେଲା ଅଫିସ ଘର, ଅନ୍ୟ ଛୋଟଘରଟି ବାଟଘର । ସେଥିରେ ଘରବାଲାଙ୍କର ଗୋଟିଏ ସାଧା ପଲଙ୍କ ଥିଲା । ଗଲା ଆସିଲା ଲୋକଙ୍କ ପାଇଁ ବ୍ୟବହାରରେ ତାହା ସାହାଯ୍ୟ କଲା । ମହେନ୍ଦ୍ର ଭୂୟାଁ ସେତେବେଳେ କଟକରେ ଆସିଷ୍ଟାଣ୍ଟ ଇଞ୍ଜିନିୟର ହୋଇ ଚାକିରୀ ଆରମ୍ଭ କରିଥିଲେ । ତାଙ୍କଠାରୁ ଗୋଟଏ ଟେବୁଲ ମାଗିଆଣି ଅଫିସ ଆରମ୍ଭ କଲି । ଦୁଇବର୍ଷ ପରେ ନିଜର ନୂଆ ଟେବୁଲ ତିଆରି ହେବାରୁ ତାଙ୍କ ଟେବୁଲ ଫେରାଇ ଦେଲି । କିଛି ଅଳ୍ପ ଦାମର ଚୌକି ତିଆରି କରାଇ, ଗୋଟିଏ ଆରାମ ଚୌକି ସହିତ ସୁଦୃଶ୍ୟ ଅଫିସ ଘର ହୋଇଗଲା । ଆମ ବସାଠାରୁ ପ୍ରାୟ ଷାଠିଏ ହାତ ଦୂରରେ ଜାନକୀନାଥ ବୋଷଙ୍କ ଘର, ଦ୍ୱିତଳ ପ୍ରାସାଦ । ମୁଁ ବସାବାନ୍ଧିବାର ଅଳ୍ପଦିନ ପରେ, ପ୍ରାତଃଭ୍ରମଣରୁ ଫେରିଲାବେଳେ ଜାନକୀବାବୁ ମୋ

Digitized by srujanika@gmail.com

ଅଫିସ ଘର ଦୁଆର ମୁହଁକୁ ଆସି ଠିଆହୋଇ, ସବୁଆଡକୁ ଚାହିଁ କହିଲେ, Crowded with furniture, Very nice. ଉପହାସ କଲେ କି ଉତ୍ସାହିତ କରିବା ପାଇଁ କହିଲେ, ସେ ଜାଣନ୍ତି । ମୁଁ କିନ୍ତୁ ତାଙ୍କ ମନ୍ତବ୍ୟରେ ଆନନ୍ଦ ପାଇଲି । ଜାନକୀବାବୁ ଜଣେ ଅକିଞ୍ଚନ ଜୁନିଅର ଘରେ ପଦାର୍ପଣ କରିବେ, ଏହା କଳ୍ପନାନୀତ । ତାଙ୍କ ନିଜଘର, ଅଫିସ ପରିପାଟୀ ପୂର୍ଣ୍ଣ । ତାଙ୍କ ନଜରକୁ ଏ ଚାଳଘର ଅଫିସ ଆସିବା ମୋର ସୌଭାଗ୍ୟ । ସେ ସେଦିନ ଅନେକ କ୍ଷଣ ପ୍ରସନ୍ନତାର ସହିତ ନାନା କଥା ପଚାରି ବୁଝିଲେ । ଗଲାବେଳେ କହିଗଲେ,Come whenever you like. You are always welcome. ମୋ ମନ କୁଣ୍ଢେ ମୋଟ । ଜାନକୀବାବୁ ବଙ୍ଗଳା, ଇଂରେଜୀରେ ଆମ ସାଙ୍ଗେ କଥା କହନ୍ତି । କଚେରୀରେ ସାକ୍ଷୀମାନଙ୍କୁ ବଙ୍ଗଳାରେ ପ୍ରଶ୍ନ ପଚାରନ୍ତି । ତାଙ୍କ କାଟ ଓ ବୟସର ସମସ୍ତ ବଙ୍ଗାଳୀ ଓକିଲ ସେହିପରି ବଙ୍ଗଳାରେ ପ୍ରଶ୍ନ ପଚାରୁ ଥିଲେ । ସାକ୍ଷୀ ଜବାବ ଦିଅନ୍ତି ଓଡିଆରେ । ଯୁବକ ବଙ୍ଗାଳୀ ଓକିଲ ଓଡିଆରେ ପ୍ରଶ୍ନ ପଚାରୁଥିଲେ । ମିଷ୍ଟର ଦାସ (ମଧୁସୂଦନ ଦାସ) ଙ୍କ ସାଙ୍ଗକୁ ଜାନକୀବାବୁଙ୍କର ସମ୍ମାନ ଓ ମର୍ଯ୍ୟାଦା ସର୍ବୋପରି । ତାଙ୍କର ସୌମ୍ୟ ଚେହେରା, ସ୍ମିତହାସ୍ୟ, କୋମଳ କଥା, ମଧୁର ସ୍ୱରରେ ସମସ୍ତେ ବଶୀଭୂତ ହୁଅନ୍ତି । ସେ କିନ୍ତୁ କାହା ସହିତ ମିଶିପାରନ୍ତି ନାହିଁ । ଦୂରତ୍ୱ ରଖି ସେ ସର୍ବଦା ଚଳନ୍ତି । ବହୁ ବର୍ଷ ସେ ସରକାରୀ ଓକିଲ ଥିଲେ ।

ଆମ ବସାଘର ଆଗକୁ ରାସ୍ତାକୁ ଲାଗି ଗୋଟିଏ ପାଚେରୀ ଥିଲା । ପାଚେରୀରେ ଦୁଆର ଥାଏ । ପାଚେରୀ ଓ ଅଫିସଘର, ବାଟଘର ମଧ୍ୟରେ ଅଳ୍ପ ଫାଙ୍କାଜାଗା । ସେଥିରେ ଗନ୍ଧହୀନ, ବର୍ଣ୍ଣମୟ, ଅଳ୍ପବ୍ୟୟ କ୍ରୋଟନ ଓ କେନା ଲଗାଇ ଟିକିଏ ସଜାଡି ଥିବାରୁ ବିଶ୍ୱନାଥ କର, ଯେତେବେଳେ ଆସନ୍ତି, ସନ୍ତୋଷ ପ୍ରକାଶ କରନ୍ତି । ଅନ୍ୟମାନେ ଆସିଲେ ଟିକିଏ ଆଶ୍ଚର୍ଯ୍ୟ ମଣନ୍ତି । ମୋ କାଟର କେବଳ ନୁହେଁ, ଅଧିକାଂଶ ବା ପ୍ରାୟ ସମସ୍ତ ଓକିଲଙ୍କଠାରୁ କିଛି ଭିନ୍ନ ଦିଶୁଥାଏ ମୋ ବୃତ୍ତି ପରିବେଶ ।

ଜାନକୀବାବୁଙ୍କ ଘର ଓ ଆମ ବସା ମଧ୍ୟରେ ଆଉ ତିନିଜଣ ବୟସ୍କ ବଙ୍ଗାଳୀ ଓକିଲ ରହୁଥିଲେ । ତାଙ୍କ ମଧ୍ୟରୁ ଦୁଇଜଣ, ଦୁଇ ସହୋଦର ଗୋଟିଏ ଘରେ ଭଡାରେ ରହୁଥାଆନ୍ତି । ସେମାନେ ଜାନକୀବାବୁଙ୍କର ସମ୍ପର୍କୀୟ । ସେମାନଙ୍କର ଓକାଲତି କାମ ପ୍ରାୟ କିଛି ନ ଥିଲା । କିନ୍ତୁ ସବୁଦିନ ଦଶଟାଠାରୁ ଚାରିଟା ପର୍ଯ୍ୟନ୍ତ ସେମାନେ ଓକିଲଖାନାରେ ବସନ୍ତି । ବଡଭାଇ ଅତି ସୁନ୍ଦର ପେନ୍‌ସିଲ କାଟୁଥିଲେ ।

Digitized by srujanika@gmail.com

ଅନେକ ଓକିଲଙ୍କର ପେନ୍‌ସିଲ କାଟିବାରେ ତାଙ୍କର ଲେଶ ମାତ୍ର କୁଣ୍ଠା ନଥିଲା । ବଲପେନ୍ ସେତେବେଳକୁ ବାହାରି ନଥିଲା । ଅନ୍ୟ ଜଣେ ଥିଲେ ପ୍ରିୟବାବୁ । ଗୌରବର୍ଣ୍ଣ, ଲମ୍ବାଗଢ଼ଣ, ହାସ୍ୟପ୍ରିୟ, କୁଶଳୀ ଓକିଲ । ପରିଚ୍ଛଦ ଯେପରି ପରିଚ୍ଛନ୍ନ, କଥା ଓ ବ୍ୟବହାର ସେପରି ସୁରୁଚି ସମ୍ପନ୍ନ । ସେ ତିନିଜଣ ପ୍ରତିଦିନ ଏକତ୍ର ଗୋଟିଏ ଭଡା ଘୋଡାଗାଡିରେ କଚେରୀ ଯାଆନ୍ତି ଓ ଫେରନ୍ତି । ମୁଁ ତାଙ୍କ ସାଙ୍ଗରେ ଯୁକ୍ତ ହେଲି । ଯାହା ଭଡା ପଡେ ମାସକୁ, ଚାରିଭାଗରେ ଆମେ ଦେଉ । ମୋ ପାଇଁ ଏ ବ୍ୟବସ୍ଥା ମର୍ଯ୍ୟାଦାକର ହୋଇଗଲା । ସବୁ ଜୁନିଅର ଚାଲିକରି ଯାଆନ୍ତି । କ୍ୱଚିତ୍ ସାଇକେଲ ବ୍ୟବହାର କରୁଥିଲେ କଚେରୀ ଯିବାପାଇଁ ।

ସେତେବେଳେ ରୁବେନ୍ ସାହେବ I.C.S ଜିଲ୍ଲା ଜଜ୍ । ସେ ପାର୍ସି ଥିଲେ । ମୋର ଅନ୍ୟ କୋର୍ଟରେ କାମ ନଥିଲାବେଳେ, ମୁଁ ତାଙ୍କ କୋର୍ଟରେ ବସିଥାଏ । ଫୌଜଦାରୀ ଡଙ୍କ କୋର୍ଟ କାର୍ଯ୍ୟରେ ମୋର ଆଗ୍ରହ ନ ଥିଲା । ମୁଁ ତାହିଁ ବସିଥାଏ । ପାଟନା ହାଇକୋର୍ଟର ଜଜ୍‌ମାନେ କେବେ କଟକକୁ ସର୍କିଟରେ ଆସିବେ । ବିହାର ଓଡିଶା ପ୍ରଦେଶ ହୋଇ, ବଙ୍ଗଳାରୁ ଅଲଗା ହେବା ପରେ, ପାଟନାରେ ହାଇକୋର୍ଟ ବସିଲା ଏବଂ କଲିକତା ହାଇକୋର୍ଟ ସହିତ ସମ୍ପର୍କ ତୁଟିଲା । ଓଡିଶାକୁ ପ୍ରତି ୩/୪ ମାସରେ ଥରେ ୩/୪ ସପ୍ତାହ ପାଇଁ ପାଟନା ହାଇକୋର୍ଟରୁ ଦୁଇଜଣ ଜଜ୍ ଆସି କଟକରେ ସର୍କିଟ କୋର୍ଟ କରିବାର ବ୍ୟବସ୍ଥା ଥାଏ । ଯେ ଭକିଲ ବା ଆଡ୍‌ଭୋକେଟ୍ ଶ୍ରେଣୀଭୁକ୍ତ ହୋଇଥାନ୍ତି, ସେ ହାଇକୋର୍ଟ ବା ସର୍କିଟ କୋର୍ଟରେ କାର୍ଯ୍ୟ କରିବାର ଅଧିକାର ପାଆନ୍ତି । ତିନିବର୍ଷ ପ୍ଲିଡର ନହେଲେ, ଆଡଭୋକେଟ୍ ହେବାକୁ ଅଧିକାର ମିଳେ ନାହିଁ । ମୋର ସେ ସମୟ ପୂରଣ ହେବା ପୂର୍ବରୁ, ମୁଁ ଅନେକ ସମୟ ସର୍କିଟ୍ କୋର୍ଟ ଆସିଲାବେଳେ ସେଠାରେ ବସି କାର୍ଯ୍ୟ ଲକ୍ଷ୍ୟ କରିବାକୁ ଭଲ ପାଉଥିଲି । ସର୍କିଟ୍ କୋର୍ଟ ନ ଥିଲାବେଳେ ଜଜଙ୍କ କୋର୍ଟରେ ବସେ । ବୋଧ ହୁଏ ଜିଲ୍ଲା ଜଜ ରୁବେନ ସାହେବ ତାହା ଲକ୍ଷ୍ୟ କରିଥିଲେ । ଓକାଲତିର ତିନିମାସ ପରେ, ଦିନେ ଟିଫିନ୍ ବିରତିବେଳେ, ଜିଲ୍ଲା ଜଜ୍‌ଙ୍କ ପେସ୍‌କାର ମତେ ପଚାରିଲେ, ଗୋଟିଏ ସେସନସ୍ କେସରେ ଜଣେ ଗରୀବ ଆସାମୀ ପକ୍ଷରେ ମୁଁ ଓକାଲତି କରିବି କି ? ଆସାମୀ ଫିସ ଦେଇ ଓକିଲ ନିଯୁକ୍ତ କରିବାକୁ ଅସମର୍ଥ ଥିଲେ, ସରକାର ତରଫରୁ ଫିସ୍ ଦେଇ ଜିଲ୍ଲାଜଜ ଓକିଲ ନିଯୁକ୍ତ କରିପାରନ୍ତି । ମୋ ପରି ଅର୍ବାଚୀନ ଜୁନିଅରକୁ ସେ ସୁଯୋଗ ମିଳିବା ଆଶାତୀତ ଥିଲା । ସେ ନିଯୁକ୍ତିର ପ୍ରାୟ ଦୁଇମାସ ପରେ ସେ କେସ୍ ଚାରିଦିନ ଚାଲିଲା । ଚିନ୍ତାମଣି ଆଚାର୍ଯ୍ୟ ସରକାରୀ ଓକିଲ ଥାଇ ଆସାମୀ

Digitized by srujanika@gmail.com

ବିରୁଦ୍ଧରେ କେସ ଚଳାଉ ଥିଲେ । ମତେ ତାଚ୍ଛଲ୍ୟ କରି ବେଳେବେଳେ ମନ୍ତବ୍ୟ ଦେଇ ନିଜେ ପୌଢ଼ି କରୁ ଥାଆନ୍ତି । କେସ ଥିଲା ଘରପୋଡି ସମ୍ବନ୍ଧରେ । ଆସାମୀକୁ ସଜାହେଲା; ଅର୍ଥାତ୍ ମୁଁ ହାରିଲି, କିନ୍ତୁ ମୋ କରିଥିବା ଚେଷ୍ଟା ଯୋଗୁ ପ୍ରଶଂସା ଭାଜନ ହେଲି କୋର୍ଟରେ ଓ ବାହାରେ ।

'ସମାଜ ପ୍ରେସ' ସେତେବେଳେ ନିମଚଉଡି ପାଖ ପୁରୁଣା କଲେଜ ଲେନ ମୁଣ୍ଡରେ ଗୋଟିଏ ଦୋତାଲା ଭଡାଘରେ ଥାଏ । କାଗଜ ସେଠାରୁ ସାପ୍ତାହିକ ବାହାରୁ ଥାଏ । ରାଧାନାଥବାବୁ (ରଥ) ପ୍ରାୟ ସବୁବେଳେ ଦୋତାଲା ଅଫିସ ଘରେ କାମ କରୁ ଥାଆନ୍ତି । ଖାଲି ପ୍ରେସ (ସତ୍ୟବାଦୀ ପ୍ରେସ) କଥା ନୁହେଁ , କାଗଜ କଥା ମଧ୍ୟ ବୁଝୁଥାଆନ୍ତି । ଲିଙ୍ଗରାଜବାବୁ (ମିଶ୍ର) ମଧ୍ୟ ସେଠାରେ ଅନେକ ସମୟ ସେହି କାର୍ଯ୍ୟରେ ଲାଗିଥାଆନ୍ତି । କଂଗ୍ରେସ ଖବର, ଦେଶର ଖବର ସେଠାରେ ସବୁ ମିଳେ । ରାଧାନାଥବାବୁଙ୍କ ସହିତ ଘନିଷ୍ଠତା ଥିବାରୁ 'ସମାଜ' ପ୍ରତି ଆରମ୍ଭରୁ ମମତା ଯୋଗୁ ଏବଂ ସତ୍ୟବାଦୀ ଅନୁଷ୍ଠାନ ସହିତ ପିଲାଦିନୁ ସମ୍ପର୍କ ଥିବା ହେତୁ, ମୁଁ ଅଧିକାଂଶ ଦିନ କଚେରୀରୁ ଫେରିବା ପରେ ଯାଏ । ମୁଁ ଜାଣିଥିବା ଖବର ତାଙ୍କୁ କହେ, ସେ ଜାଣିଥିବା ଖବର ମୁଁ ଶୁଣେ । ରାଧାନାଥ ବାବୁ ମଧ୍ୟ ସମୟେ ସମୟେ ଆମ ବସାକୁ ଆସନ୍ତି । ୧୯୨୮ ଠାରୁ ଗଞ୍ଜାମ ବ୍ରହ୍ମପୁରରୁ 'ଆଶା' ପତ୍ରିକା ଦୈନିକ ବାହାରୁ ଥିଲା । ଶଶିଭୂଷଣ ରଥ ତାର ଧୁରନ୍ଧର ସମ୍ପାଦକ । ସେ ବଡଖେମୁଣ୍ଡି ରାଜା ସାହେବଙ୍କଠାରୁ ମାତ୍ର ପାଞ୍ଚଶତ ଟଙ୍କା ସାହାଯ୍ୟ ନେଇ ୧୯୧୩ ଏପ୍ରିଲ ୧୩ ତାରିଖ ଠାରୁ ବ୍ରହ୍ମପୁରରୁ ସାପ୍ତାହିକ 'ଆଶା' ପ୍ରକାଶ କରୁଥିଲେ । ଘୁମୁସର ଅଞ୍ଚଳରେ ଯେଉଁ ମରୁଡି ଭୟାବହ ପରିସ୍ଥିତି ସୃଷ୍ଟି କରିଥିଲା, ତାହା 'ଆଶା' ରେ ବହୁଳ ଭାବେ ପ୍ରକାଶିତ ହୋଇ ମାନ୍ଦ୍ରାସ ସରକାର ଉପରେ ଦୃଢ଼ଚାପ ପକାଇବା ଫଳରେ ଲୋକଙ୍କ ସାହାଯ୍ୟ ପାଇଁ ଚାଳିଶ ଲକ୍ଷ ଟଙ୍କା ମଞ୍ଜୁର ହୋଇଥିଲା । ଉତ୍କଳମଣି ଗୋପବନ୍ଧୁଙ୍କ ତିରୋଧାନର ଅଳ୍ପକାଳ ପରେ ୧୯୨୮ରେ 'ଆଶା' ଦୈନିକ ହେଲା । ୧୯୩୯ ବେଳକୁ ପ୍ରେସ ଓ ପତ୍ରିକା କଟକକୁ ଆଣିଥିଲେ ଶଶୀବାବୁ । ସ୍ୱାସ୍ଥ୍ୟଭଙ୍ଗ ଯୋଗୁ ପୁଣି ଫେରାଇ ନେଲେ ବ୍ରହ୍ମପୁରକୁ । ୧୯୩୩ ମେ ମାସରୁ ଇଂରେଜୀ ପତ୍ରିକା New Orissa ସେ ବାହାର କଲେ । ସାମ୍ବାଦିକତାରେ ତାଙ୍କର ଭୂମିକା ଉଜ୍ଜ୍ୱଳମୟ । ତାଙ୍କ ସାନଭାଇ ରଙ୍ଗନାଥ ମହାପାତ୍ର ଓଡିଆ ଟାଇପ ରାଇଟର ବାହାର କରି ପ୍ରତିଷ୍ଠା ଲାଭ କରିଥିଲେ । ସେ ଆମର ଦୂର ସମ୍ପର୍କୀୟ ବନ୍ଧୁ । କଟକ ଆସିଲେ ଆମ ବସାକୁ ଆସନ୍ତି । ତାଙ୍କରି କଥାରେ ମୁଁ 'ଦୈନିକ ଆଶା' କୁ କଟକରୁ ସମ୍ବାଦ ପଠାଇବା

Digitized by srujanika@gmail.com

ଆରମ୍ଭ କଲି । ଓକାଲତି ଆରମ୍ଭ ସଙ୍ଗେ, ସାଧାରଣ କାର୍ଯ୍ୟରେ ମୋର ପୂର୍ବ ଆଗ୍ରହ ମଧ୍ୟ ଆରମ୍ଭ ହେଲା । ପ୍ରତି ସଭାସମିତିରେ ଯୋଗ ଦେଉଥିବାରୁ, ସେ ସମ୍ବନ୍ଧର ସମ୍ବାଦ, କଚେରୀ ଓ ଅନ୍ୟାନ୍ୟ ଖବର ମୁଁ ପଠାଇବା ଯୋଗୁ, ଆଶାରେ ପ୍ରକାଶ ପାଉଥାଏ । କଲିକତା (Statesman) ଷ୍ଟେଟ୍‌ସମାନ କାଗଜକୁ ମଧ୍ୟ ଓଡିଶା ସମ୍ବାଦ ପଠାଉଥାଏ । ସେଥିପାଇଁ କିଛି ପାରିଶ୍ରମିକ ମିଳୁଥାଏ । ସାଧାରଣ କ୍ଷେତ୍ରରେ (Public life) ବିଚିତ୍ରାନନ୍ଦ ଦାସ, ସତ୍ୟନାରାୟଣ ସେନଗୁପ୍ତ, ଭିକାରୀ ଚରଣ ପଟ୍ଟନାୟକଙ୍କ ସାଙ୍ଗକୁ ମୁଁ (ସେମାନଙ୍କଠାରୁ ଅତି କନିଷ୍ଠ ଥିବା ସତ୍ତ୍ୱେ) ଓକିଲମାନଙ୍କ ମଧ୍ୟରୁ ବାହାରୁ ଥିବାରୁ ସର୍ବସାଧାରଣରେ ଅତିଶୀଘ୍ର ପରିଚିତ ହେଲି ଏବଂ ପ୍ରକାଶିତ ସମ୍ବାଦ ଯୋଗୁ କଟକ ବାହାରେ ତାହା ମଧ୍ୟ ସମ୍ଭବ ହେଲା । ସେ ସମୟରେ ସାଧାରଣସଭା ଡାକିବା ପାଇଁ ଧରାବନ୍ଧା କେତେଜଣଙ୍କ ନାମରେ ନୋଟିସ ବା ନିବେଦନପତ୍ର ଛାପାହୋଇ ବଣ୍ଟା ଯାଉଥିଲା । କଟକରେ କୌଣସି ଦୈନିକ ସମ୍ବାଦପତ୍ର ନଥିଲା । ସେ ପ୍ରକାର ନୋଟିସ ବା ନିବେଦନ ପତ୍ରରେ ବିଚିତ୍ରାନନ୍ଦ ଦାସ, ସତ୍ୟନାରାୟଣ ସେନଗୁପ୍ତ, (ମାରୱାଡିଙ୍କ ଭିତରୁ) ରଙ୍ଗଲାଲ ମୋଦି, (ମୁସଲମାନଙ୍କ ତରଫରୁ) ଅହମ୍ମଦ ବକ୍‌ସ, (ଖ୍ରୀଷ୍ଟାନମାନଙ୍କ ମଧ୍ୟରୁ) ରେଭେରେଣ୍ଡ ବ୍ରଜାନନ୍ଦ ଦାସ, (ଯୁବକମାନଙ୍କ ପାଇଁ) ମୋ ନାମ ଦିଆଯାଉଥିଲା । ପୂରାପୂରି କଂଗ୍ରେସ ବିଷୟକ ସଭା ହେଲେ, ଗୋପବନ୍ଧୁ ଚୌଧୁରୀ, ଯଦୁମଣି ମଙ୍ଗରାଜଙ୍କ ନାମ ସହିତ ବିଚିତ୍ରା ନନ୍ଦବାବୁ, ସତ୍ୟନାରାୟଣ ବାବୁ ଓ ମୋ ନାମ (ଓକିଲମାନଙ୍କ ମଧ୍ୟରୁ) ଯୁକ୍ତହୋଇ ନିବେଦନ ପତ୍ର ବାହାରେ । ଖାସ୍ ସରକାର ସମର୍ଥନ ସଭାପାଇଁ, ବିଶ୍ୱନାଥ କର, ଲକ୍ଷ୍ମୀଧର ମହାନ୍ତି, ଚିନ୍ତାମଣି ଆଚାର୍ଯ୍ୟ, ଭିକାରୀ ଚରଣ ପଟ୍ଟନାୟକ, ଅହମ୍ମଦ ବକ୍‌ସ, ବ୍ରଜାନନ୍ଦ ଦାସ, ଦେୱାନ ବାହାଦୁର ଶ୍ରୀକୃଷ୍ଣ ମହାପାତ୍ର (ଅବସର ପ୍ରାପ୍ତ ପୁଲିସ ସୁପରିଣ୍ଟେଣ୍ଡେଣ୍ଟ) ଙ୍କ ନାମରେ ଛାପା ନୋଟିସ ବଣ୍ଟାଯାଏ । ସବୁ ସଭା ପ୍ରାୟ ଟାଉନ ହଲରେ ହୁଏ । ସରକାରୀ କଥାର ପ୍ରତିବାଦ ସଭା ବହୁତ ହେଉଥିଲା, ଆମମାନଙ୍କ ଦସ୍ତଖତରେ । ଏହି ସବୁର ପ୍ରତିକ୍ରିୟା ଯେ ଓକାଲତିରେ ନ ପଡିଲା, ତା ନୁହେଁ । ଓକାଲତି ଯୋଗୁ ସାଧାରଣ କ୍ଷେତ୍ରକୁ ଆସିବାର ସୁଯୋଗ ମିଳିଲା । ଓକାଲତିର କୂପମଣ୍ଡୁକତ୍ୱ ମତେ ଗ୍ରାସ କରିପାରିଲା ନାହିଁ । କଚେରୀ ଓ କଚେରୀ ବାହାରେ କିଛି ପ୍ରତିଷ୍ଠା ଆପେ ଆପେ ଆସିଲା । ଓକାଲତି ଆରମ୍ଭ କରିବା ସଙ୍ଗେ ସଙ୍ଗେ ପରିଜା ସାହେବ ଓ ତ୍ରିପାଠୀ ସାହେବଙ୍କ ସହିତ ଯୋଗାଯୋଗ ପୁଣି ମିଳିଲା । ନିର୍ମଳ ଚନ୍ଦ୍ର ବାନାର୍ଜୀ (ଇତିହାସ ଅଧ୍ୟାପକ) ରେଭେନ୍‌ସା କଲେଜ ପୁରାତନ

Digitized by srujanika@gmail.com

ଛାତ୍ରସଂଘର ସମ୍ପାଦକ ଥାଇ ସଭ୍ୟ ସଂଗ୍ରହ କରୁଥିଲେ । ମତେ ମେମ୍ବର କଲେ । କଲେଜ ସହିତ ପରୋକ୍ଷ ସମ୍ପର୍କ ଜଡ଼ିଲା । କେତେବର୍ଷ ଛାଡ଼ରା ହେବା ପରେ, କାଳିନ୍ଦୀ, ବୈକୁଣ୍ଠ, ଶରତଙ୍କ ସଙ୍ଗେ ପୂର୍ବ ଘନିଷ୍ଠତା ଜାଗି ଉଠିଲା । ବି.ଏ.ପରେ ଶରତ ହେଲେ ଡେପୁଟି, ବୈକୁଣ୍ଠ ଶିକ୍ଷକ, କାଳିନ୍ଦୀ କୋଅପରେଟିଭ ବ୍ୟାଙ୍କ କର୍ମଚାରୀ । ୧୯୩୧ ବେଳକୁ ସେମାନେ କଟକରେ ଥାଆନ୍ତି । ଶରତ କଟକର କୋଅପରେଟିଭ ସୋସାଇଟି ଆସିଷ୍ଟାଣ୍ଟ ରେଜିଷ୍ଟ୍ରାର, କାଳିନ୍ଦି କଟକ ସେଣ୍ଟ୍ରାଲ କୋଅପରେଟିଭ ବ୍ୟାଙ୍କର କର୍ମଚାରୀ । ବୈକୁଣ୍ଠ କଲେଜିଏଟ୍ ସ୍କୁଲର ଶିକ୍ଷକ । ଏକାଠି ହେବା, କଳ୍ପନା ଜଳ୍ପନା କରିବା, ସାହିତ୍ୟ, ଗ୍ରାମ ସଂଗଠନ, ସମାଜ ସଂସ୍କାର ଆଦି ବିଷୟରେ ତର୍କ, ବିତର୍କ, ଆଲୋଚନା, ଆମ ବନ୍ଧୁତ୍ୱର ପରିପ୍ରକାଶ ଥିଲା । ଶରତ ଓ ମୁଁ ଦୁ ତାରେ କଲେଜବେଳୁ କଥାବାର୍ତ୍ତା କରି ଆସିଛୁ, ଅନ୍ୟମାନେ ତମେ ତମର ଆତ୍ମୀୟତାରେ ଆବଦ୍ଧ । ସେମାନଙ୍କ ବିଷୟରେ ମାନ୍ୟାର୍ଥରେ ଏଠାରେ ଲେଖିଲାବେଳକୁ ଅଡୁଆ ଲାଗୁଛି । ଚାରିଜଣଙ୍କ ସ୍ତ୍ରୀମାନଙ୍କ ସଖ୍ୟତା କିଛି କମ ନଥିଲା । ବୈକୁଣ୍ଠଙ୍କ ସ୍ତ୍ରୀ ଆଦରମଣିଙ୍କୁ ଆଦ, କାଳିନ୍ଦୀଙ୍କ ସ୍ତ୍ରୀ ରତ୍ନମଣିଙ୍କୁ ରତ୍ନା, ଶରତ ସ୍ତ୍ରୀଙ୍କୁ ଶାନ୍ତି ଓ ମୋ ସ୍ତ୍ରୀଙ୍କୁ ଇଲି ଡାକରେ, ଅନେକ ସମୟରେ ଆମମାନଙ୍କ ସଙ୍ଗରେ ଏବଂ କେତେବେଳେ ସେମାନେ ସ୍ୱତନ୍ତ୍ର ଏକତ୍ର ହେଉଥିଲେ ।



Digitized by srujanika@gmail.com

# କଲେଜ କମ୍‌ମେମୋରେସନ

ରେଭେନ୍‌ସା କଲେଜ କମ୍‌ମେମୋରେସନ୍ ପାଳିତ ହେବାର ପଚାଶବର୍ଷ ହେଲାଣି । ୧୯୩୨ ବା ୧୯୩୩ ରେ ଆରମ୍ଭ ହେଲା ପରିଜା ସାହେବଙ୍କ (ପ୍ରଫେସର ପ୍ରାଣକୃଷ୍ଣ ପରିଜା) ପ୍ରେରଣା ଓ ଉତ୍ସାହରେ । ମୁଖ୍ୟ ଅତିଥି ହୋଇ ଆସିଥିଲେ ପଦାର୍ଥବିଜ୍ଞାନୀ ସାର ସି.ଭି. ରମଣ । ଅଧ୍ୟକ୍ଷତା କଲେ ଟି.ଏସ୍. ମାକ୍‌ଫରସନ୍, ପାଟନା ହାଇକୋର୍ଟର ଜଜ୍ । ସେ ଆସିଥାଆନ୍ତି ସେତେବେଳେ କଟକ ସର୍କିଟ୍ କୋର୍ଟ ପାଳିରେ । ଫିଜିକ୍‌ସ ଲାବରେଟରୀ ସାମନାରେ ସୁସଜ୍ଜିତ ସାମିଆନା ଆଚ୍ଛାଦିତ ପେଣ୍ଡାଲ ଉପରେ ଆସୀନ ଥିଲେ ଅତିଥି ଦୁହିଁଙ୍କ ସଙ୍ଗେ ପ୍ରିନ୍‌ସପାଲ, ତ୍ରିପାଠୀ ସାହେବ (ପ୍ରଫେସର ଶ୍ୟାମଚନ୍ଦ୍ର ତ୍ରିପାଠୀ), ପରିଜା ସାହେବ, ବାବା କର୍ତ୍ତାର ସିଂହ (କେମେଷ୍ଟ୍ରି ପ୍ରଫେସର) । ଏ ଚାରିଜଣ ଥିଲେ ଆଇ.ଇ.ଏସ୍. ପାହିଆର୍ । ପେଣ୍ଡାଲ ସମ୍ମୁଖରେ ଅନାବୃତ ଲନ୍ ଉପରେ ଛାତ୍ର, ନିମନ୍ତ୍ରିତ ଭଦ୍ରବ୍ୟକ୍ତି ଓ ଓଲଡ ବଏଜମାନେ (ପୁରାତନ ଛାତ୍ର) ବେଞ୍ଚ, ଚୌକିରେ ବସିଲେ । ପ୍ରାଥମିକ ସୂଚନା ପରେ ପ୍ରାଇଜ ଦିଆଗଲା ଛାତ୍ରମାନଙ୍କୁ, ଯେଉଁମାନେ ବିଭିନ୍ନ କ୍ରୀଡା ଓ ବକ୍ତୃତା ପ୍ରତିଯୋଗିତାରେ ବିଜୟୀ ହୋଇଥିଲେ । ତାଙ୍କ ମଧ୍ୟରେ ଚେସଖେଳ ବିଜୟୀ ଥିଲେ । ପ୍ରାଇଜ ପରେ ଡାକ ପଡିଲା, ପୁରାତନ ଛାତ୍ରଙ୍କ ମଧ୍ୟରୁ କେହି କହିବେ କି ! କେହି ଉଠିବାର ନ ଦେଖି, ମୁଁ ଉଠିଲି । ସେତେବେଳକୁ ମୋ ଓକାଲତି ଆରମ୍ଭ ବର୍ଷେ ମାତ୍ର । ସବୁଦିଗରୁ ଅର୍ବାଚୀନ । ସେ ପ୍ରକାର ବିଦଗ୍ଧ ମଣ୍ଡଳୀରେ ମୋ ପକ୍ଷରେ ଠିଆହେବା କିପରି ବୋକାମି ଓ ଦୁଃସାହସ ତାହା କେତେକ ଅଧ୍ୟାପକମାନଙ୍କ ନାପସନ୍ଦ, ଉପହାସ ଚାହାଣିରୁ ବୁଝି ପାଦ ଧିମେଇଗଲା । କିନ୍ତୁ ଡାଏସ୍ ଉପରକୁ ନ ଯାଇ ଅଧାବାଟରୁ ଫେରିବାର ଉପାୟ ନ ଥିଲା । ମୋ କହିବା ଭିତରେ ଗୋଟିଏ ହାଲୁକା ମନ୍ତବ୍ୟ ଥିଲା, କଲେଜ ହଷ୍ଟେଲରେ ଚେସ୍ ଖେଳ ପ୍ରବର୍ତ୍ତନ କରି ପଶାଖେଳରୁ ମହାଭାରତ ଯୁଦ୍ଧ ପୁନର୍ବାର ସୃଷ୍ଟି ହେଲା ପରି ଅଘଟନ ନ ଘଟିଲେ ରକ୍ଷା । ସେ

Digitized by srujanika@gmail.com

କଥାରେ କେହି ଜଣେ ହାତତାଳି ଆରମ୍ଭ କରିଦେବାରୁ (ବୋଧହୁଏ କୌତୁକ ଭାବରେ) ହାତତାଳି ବହୁତ ପଡିଗଲା । ହାସ୍ୟରୋଳ ଭିତରେ ମୋ ପରେ ମୁଖ୍ୟ ବକ୍ତୃତା ଦେଲେ ସାର୍‌.ସି.ଭି ରମଣ । ସେ ସେହି ପଶାଖେଳ ମନ୍ତବ୍ୟକୁ ଧରି ଆରମ୍ଭ କଲେ ଓ ବକ୍ତୃତାରେ ସର୍ବାଧିକ ଅଂଶରେ ଜୀବନ କିପରି ଏକ ପଶାଖେଳ ଓ ପଶାକାଠିର ଅନିଶ୍ଚିତତାରେ ଲୋକ କିପରି ସମସ୍ୟାର ସମ୍ମୁଖୀନ ହୁଏ, ତାହା ବୁଝାଇ ଥିଲେ । ଶେଷ ଅଂଶରେ କୌତୁକ କରି ବାବା କର୍ତ୍ତାର ସିଂହଙ୍କୁ ଲକ୍ଷ୍ୟ କରି ରସାୟନ ପରୀକ୍ଷାଗାର ଓ ପୋଲରାଇଜେସନ୍‌ କଥା କହି ଶ୍ରୋତାମାନଙ୍କୁ ହସାଇଲେ । ମାକ୍‌ଫରସନ୍‌ ସାହେବ ତାଙ୍କ ସଭାପତି ଭାଷଣରେ ପଶାଖେଳ କଥାକୁ ଉଲ୍ଲେଖ କରି ବର୍ଷା ଦିନରେ ଘର ଭିତରେ ଚେସ୍‌ଖେଳ କିପରି ଆମୋଦଦାୟକ ତାହା ନିଜ ଅନୁଭବରୁ ପ୍ରକାଶ କଲେ । ଉଭୟ ରମଣ ଓ ମାକ୍‌ଫରସନ୍‌, କହିଲାବେଳେ, ପ୍ରକାଶ୍ୟରେ ପରିଚ୍ଛା ସାହେବଙ୍କୁ ମୋ ନାମ ପଚାରି ତାହା ଉଲ୍ଲେଖ କରିବାରୁ ମୁଁ ଅପ୍ରତିଭ ବୋଧ କରୁଥାଏ । ମୋ ଲଘୁମନ୍ତବ୍ୟ ଏ ପ୍ରକାର ଗୁରୁତ୍ୱ ଲାଭ କରିବା ମୋର ବା ଅନ୍ୟମାନଙ୍କର କଳ୍ପନା ନଥିଲା । ସଭାପରେ ସେ ବିଷୟ ବହୁ ଚର୍ଚ୍ଚିତ ହେଲା ଏବଂ ଫାଉ ସ୍ୱରୂପ ମୁଁ କିଛି ଅଯଥା ପ୍ରଶଂସା ପାଇଲି । ଘଟନା ଚକ୍ରରେ ଏହା ମୋ ପକ୍ଷରେ ସ୍ମରଣୀୟ ହୋଇ ରହିଲା । ତା ପରଦିନ ମୁଁ କଚେରୀକୁ ଯାଇ ଦେଖିଲି ଅନେକେ ମୋ ବକ୍ତୃତା ବିଷୟ ଆଲୋଚନା କରୁଛନ୍ତି । ଓକିଲଖାନାରେ ବର୍ଷୀୟାନ ଓକିଲ ରେବତୀକାନ୍ତ ଘୋଷ, ଶୁଭ୍ରକାନ୍ତି, ଶୁଭ୍ର ଚୋଗାଚପକନ ପରିହିତ ସର୍ବଦା ତାମ୍ବୁଳରଞ୍ଜିତ ଅଧର — ମତେ ସମସ୍ତଙ୍କ ସମ୍ମୁଖରେ ଉର୍ଦ୍ଧ୍ୱ ସ୍ୱରରେ କହିଲେ— ହରିହର, କାଲି ତମ ବକ୍ତୃତା ଚମତ୍କାର ହେଲା, ତମେ ସାହସ କରି ଏତେ ସଭାରେ ଠିଆ ହେଲ, ତମକୁ ସାବାସ । ତମେ ଓକିଲାତିରେ ନିଶ୍ଚୟ ଭଲ କରିବ ...... । ରେବତୀବାବୁ ନିମ୍ନ କଣ୍ଠରେ କଥା କହନ୍ତି ନାହିଁ । ଘରେ ମଧ୍ୟ ସେହି ଉଚ୍ଚସ୍ୱର ସବୁବେଳେ । ତାଙ୍କର ସମ୍ଭ୍ରାନ୍ତ ପରିବାର । ଦୁଇ ଭାଇ, ରେବତୀକାନ୍ତ ବିଚାରବିଭାଗରେ, ନଳିନୀକାନ୍ତ ଶାସନ ବିଭାଗରେ ଉଚ୍ଚପଦସ୍ଥ ଅଫିସର । ଜଣେ ଜିଲ୍ଲା ଜଜ୍‌ ହୋଇ, ଆଉ ଜଣେ ଜିଲ୍ଲା ମାଜିଷ୍ଟ୍ରେଟ୍‌ ହୋଇ ଅବସର ନେଲେ । ରେବତୀବାବୁ ଥିଲେ ଜାତୀୟବାଦୀ । ବଙ୍ଗ ବିଚ୍ଛେଦ ବେଳୁ ସ୍ୱଦେଶୀ ଭକ୍ତ । ଓଡିଶା ଡୋମିସାଇଲ୍‌ଡ ବଙ୍ଗୀୟ ପରିଷଦର ସକ୍ରିୟ କର୍ମକର୍ତ୍ତା । କଥା କହିବାରେ ଖୋଲାଖୋଲି । ମୋ ଉପରେ ମନ୍ତବ୍ୟ ଦେଇସାରି, ମୋ ପିଠିରେ ଦୁଇଥର ଥାପୁଡେଇଲେ

Digitized by srujanika@gmail.com

ସ୍ନେହାତିଶୟରେ । ଓକିଲଖାନାରେ ଓକିଲ ଓ ମୋହରୀରମାନଙ୍କ ମଧ୍ୟରେ ହଠାତ୍ ମୁଁ ବଡ ଦିଶିଲି । କଥା ବ୍ୟାପିଗଲା ଚାହୁଁ ଚାହୁଁ । ମୁଁ ଅପ୍ରତିଭ ବୋଧ କରୁଥାଏ କିନ୍ତୁ ଭିତରେ ଭିତରେ କୃତଜ୍ଞତାର ସ୍ନିଗ୍ଧ ନିବେଦନ ଈଶ୍ୱରଙ୍କୁ ଅର୍ପଣ କରୁଥାଏ । ତାଙ୍କ କୃପା ହେଲେ ଅଧମକୁ ବାଟ ମିଳିଯାଏ । କହିବାକୁ ଗଲେ, ମୋର ପବ୍ଲିକ ଲାଇଫ ଏହି ବକ୍ତୃତାରୁ ଆରମ୍ଭ ହୋଇଗଲା । ଓକାଲତି କ୍ଷେତ୍ରରେ ମଧ୍ୟ ଏହାର କିଛି ପରୋକ୍ଷ ପ୍ରଭାବ ବୋଧହୁଏ ପଡିଲା । ଅବହେଳିତ ଅଜ୍ଞାତ ନିତାନ୍ତ ଜୁନିଅର ପାହ୍ୟାଟା କଟିଗଲା । କଲେଜର ପ୍ରାୟ ସମସ୍ତ ଅନୁଷ୍ଠାନକୁ (function) ଡକରା ଆସିଲା । ପଶ୍ଚିମ ଛାତ୍ରାବାସର ଏକ ଅଧିବେଶନରେ ବକ୍ତୃତା ଦେଇ ସୁପରିଣ୍ଟେଣ୍ଡେଣ୍ଟ ଶ୍ରୀଯୁକ୍ତ ନାରାୟଣ ମିଶ୍ରଙ୍କ ଅକୁଣ୍ଠ ଓ ଅତ୍ୟଧିକ ପ୍ରଶଂସା ମିଳିବାରୁ ଛାତ୍ରସମାଜରେ ଅପ୍ରତ୍ୟାଶିତ ସମ୍ପର୍କ ସ୍ଥାପିତ ହେଲା, ଯାହା ଏ ପର୍ଯ୍ୟନ୍ତ ମଧ୍ୟ ଚାଲିଛି । କମ୍‌ମେମୋରେସନର ପ୍ରାୟ କୋଡିଏ ବର୍ଷ ପରେ, ଉତ୍କଳ ବିଶ୍ୱବିଦ୍ୟାଳୟର କୁଳପତି ଚିନ୍ତାମଣି ଆଚାର୍ଯ୍ୟ ଓ ମୁଁ ମାନ୍ଦ୍ରାଜ ବିଶ୍ୱବିଦ୍ୟାଳୟ ଶତବାର୍ଷିକୀ ଉତ୍ସବକୁ ଯିବା ଅବସରରେ ସାର୍, ସି.ଭି, ରମଣଙ୍କୁ ସାକ୍ଷାତ କରିବା ପାଇଁ ତାଙ୍କ ବାସଭବନକୁ ଯାଇଥିଲୁ । ସେ ଦିନ ସେ ଆମକୁ ଦେଖି ପଚାରିଲେ, ମୁଁ କଅଣ ସେଇ ପିଲା ଯେ କଟକ କଲେଜ ସଭାରେ ପଶାଖେଳ ଉପରେ କଟୁ ମନ୍ତବ୍ୟ ପ୍ରକାଶ କରିଥିଲା ? ଆଶ୍ଚର୍ଯ୍ୟ ହେଲି, ଏ ସାମାନ୍ୟ କଥା ତାଙ୍କର ମନେ ରହିଛି । ଚିନ୍ତାମଣିବାବୁ ସେ ସଭାରେ ମଧ୍ୟ ଥିଲେ ବୋଲି ପ୍ରକାଶ କଲେ ।

ସେ ବର୍ଷ ପରେ ମଧ୍ୟ ସମାବର୍ତ୍ତନ ଉତ୍ସବ ବହୁ ବିଶିଷ୍ଟ ବ୍ୟକ୍ତିଙ୍କ ଦ୍ୱାରା ଅଳଂକୃତ ହୋଇ ଆସିଛି । ସାର୍ ଇକ୍‌ବାଲ, ସାର୍ ରସମସୁଦ, ସରୋଜିନୀ ନାଇଡୁ, ରାଜଗୋପାଳାଚାରୀଙ୍କୁ ସେହି ଅବସରରେ ଦେଖିବା ଓ ଶୁଣିବାର ସୁଯୋଗ ପାଇଥିଲୁ । ଉତ୍କଳ ବିଶ୍ୱବିଦ୍ୟାଳୟ ୧୯୪୩ରେ ସ୍ଥାପିତ ହେବା ପର୍ଯ୍ୟନ୍ତ ଏହି କମ୍‌ମେମୋରେସନ ସମାବର୍ତ୍ତନ ଉତ୍ସବ ପରି ଆକାର ଓ ପ୍ରାଧାନ୍ୟ ପାଉଥିଲା । କଟକରେ ବର୍ଷ ଭିତରେ ଏହାକୁ ଗୋଟିଏ ଆକର୍ଷଣୀୟ ଘଟନାପରି ସାଧାରଣ ଲୋକେ ଅପେକ୍ଷା କରୁଥିଲେ । କାରଣ ସେଦିନ କଲେଜର ବିଭିନ୍ନ କୋଠରୀରେ ବହୁ ପ୍ରକାର ପ୍ରଦର୍ଶନୀ ଆୟୋଜିତ ହେଉଥାଏ । ଲାବୋରେଟୋରୀ ମାନଙ୍କରେ ଚିତ୍ତାକର୍ଷକ ବୈଜ୍ଞାନିକ କୌଶଳ ଦେଖିବା ପାଇଁ ଲୋକ ଭିଡ ବହୁତ ହୁଏ । କଟକ ବାହାରୁ ମଧ୍ୟ ପୁରାତନ ଛାତ୍ର କେତେକ ଆସନ୍ତି । ପୁରାତନ ଛାତ୍ରଙ୍କୁ ୨୫ ଟଙ୍କାରେ ଆଜୀବନ ସଭ୍ୟ ଓ ଏକଟଙ୍କା ନେଇ

Digitized by srujanika@gmail.com

ସାଧାରଣ ସଭ୍ୟ କରିବା ପାଇଁ ବର୍ଷସାରା ଇତିହାସ ଅଧ୍ୟାପକ ନିର୍ମଳଚନ୍ଦ୍ର ବାନାର୍ଜୀ ସାଇକେଲରେ ଘର ଘର ବୁଲୁଥାଆନ୍ତି । ତାଙ୍କ ମୁଣାରେ ରସିଦ ବହି ସବୁବେଳେ ଥାଏ । ବଜାରରେ, ବାଟରେ, ସଭାସମିତିରେ ଯେଉଁଠି ଜଣେ ପୁରାତନ ଛାତ୍ରଙ୍କୁ ଦେଖନ୍ତି, ତାକୁ ସଭ୍ୟ ନ କରି ଛାଡ଼ନ୍ତି ନାହିଁ । ଓଲଡ୍ ବଏଜ ଆସୋସିଏସନ୍ ତାଙ୍କରି ଚେଷ୍ଟାରେ ଏପରି ଏକ ବିପୁଳ ଓ ବିଶିଷ୍ଟ ଅନୁଷ୍ଠାନ ହୋଇ ଉଠିଥିଲା ଯେ ପାଟନା ବିଶ୍ୱବିଦ୍ୟାଳୟର ସିନେଟକୁ ଜଣେ ସଭ୍ୟ ନିର୍ବାଚନ କରିବାର ଅଧିକାର ମିଳିଥିଲା । ୧୯୩୪ ମସିହାର ସେ ନିର୍ବାଚନରେ ପରିଜା ସାହେବଙ୍କ ପ୍ରସ୍ତାବରେ ମୁଁ ମନୋନୟନ ପତ୍ର ଦାଖଲ କରିଥିଲି । ଲକ୍ଷ୍ମୀଧର ମହାନ୍ତି (ବିହାର ଓଡିଶା କାଉନ୍‌ସିଲର ମେମ୍ବର ଓ ଉପବାଚସ୍ପତି) ମଧ୍ୟ ପ୍ରାର୍ଥୀ ହେଲେ । ନିର୍ବାଚନରୁ ଓହରି ଯିବାପାଇଁ ମତେ ଖଣ୍ଡିଏ ପତ୍ର ରାଞ୍ଚିରୁ ଲେଖିଥିଲେ । ତାହା କରି ନଥିଲି । ନିର୍ବାଚନରେ ମୁଁ ହାରିଲି କିନ୍ତୁ ଆନନ୍ଦ ମିଳିଲା ଯେ ବିପନବାବୁ (ବିପନବିହାରୀ ରାୟ), ଆର୍ତ୍ତବାବୁ (ଆର୍ତ୍ତବଲ୍ଲଭ ମହାନ୍ତି), ବରଦାବାବୁଙ୍କ (ବରଦାକାନ୍ତ ଚାଟାର୍ଜୀ) ପରି ଗୁରୁଜନମାନଙ୍କର ସମର୍ଥନ ପାଇଥିଲି ।



Digitized by srujanika@gmail.com

# ସବୁଜ ସାହିତ୍ୟ ସମିତି

୧୯୩୧ ବେଳକୁ ଅନ୍ନଦା ବଙ୍ଗ ଦେଶରେ । ବି.ଏ.ପାସ୍ ପରେ, ସେ ଓଡିଆ ସାହିତ୍ୟରୁ ବିଦାୟ ନେବା ସ୍ଥିର କଲେ । ଆଇ.ସି.ଏସ୍ ରେ କୃତକାର୍ଯ୍ୟ ହୋଇ, ବଙ୍ଗ ଦେଶରେ ଚାକିରି କରିବାର ଅଭିପ୍ରାୟ, ବଙ୍ଗ ସାହିତ୍ୟ, ବଙ୍ଗ ପରିବେଶ, ବଙ୍ଗୀୟ ଲୋକଙ୍କ ସହିତ ଅନ୍ତରଙ୍ଗ ଓ ଅବିଚ୍ଛିନ୍ନ ସମ୍ପର୍କ ରହିଲେ ବଙ୍ଗଳାଭାଷାରେ ସାହିତ୍ୟ ଚର୍ଚ୍ଚା ଓ ରଚନାର ସୁବିଧା ମିଳିବ । ଓଡିଆ ସାହିତ୍ୟ ଅପେକ୍ଷା ବଙ୍ଗ ସାହିତ୍ୟର ବୃହତ୍ତର ବେଷ୍ଟନୀ ଅନ୍ୟ ଏକ ଆକର୍ଷଣ ଥିଲା । ଓଡିଶା, ଓଡିଆ ସାହିତ୍ୟ ଓ ଓଡିଆ ବନ୍ଧୁମାନଙ୍କ ପତ୍ରି ଅନୁରାଗରେ ତାଙ୍କର କୌଣସି କୁଣ୍ଠା ଜନ୍ମି ନଥିଲା । ମୁଁ ଓକାଲତିକୁ ଆସିବାରୁ, ଆମ ବନ୍ଧୁମାନଙ୍କର ଗୋଟିଏ ବେସ୍ (ସ୍ଥାୟୀ ଆବାସ) ମିଳିଲା । ଅନ୍ୟମାନେ ଚାକିରୀ ଯୋଗୁ, ଏପଟ ସେପଟ ହେବାରୁ ଏକ ସଂଯୋଗର ଅଭାବ ଘଟିଥିଲା । ଏବେ ତାହା ଦୂର ହେଲା । ଅଧିକନ୍ତୁ, ଘଟନାଚକ୍ରରେ ଆମେ ଚାରିଜଣ, ବୈକୁଣ୍ଠ, କାଳିନ୍ଦୀ, ଶରତ ଓ ମୁଁ, କଟକରେ ଏକ ସମୟରେ ରହିଲୁ । କଟକ କଲେଜ ସମୟର ନନ୍‌ସେନସ କ୍ଲବ୍, ଶକ୍ତି ସାଧନା ଅନ୍ୟ ରୂପରେ ମୁଣ୍ଡ ଟେକିଲା । ଏକ ସ୍ଥାୟୀ ସାହିତ୍ୟ ସଂସ୍ଥା ଓ ଛାପା ମାସିକ ପତ୍ର ଆମର ବହୁଦିନର କାମ୍ୟ ଥିଲା । କାମନାରେ କଳ୍ପନା ଅଫୁରନ୍ତ । କାର୍ଯ୍ୟରେ ପରିଣତ କରିବା କେତେ କଷ୍ଟକର, ତାହା ଆରମ୍ଭ ନକଲେ କଳିହୁଏ ନାହିଁ । ଆମ ପାଞ୍ଚବନ୍ଧୁଙ୍କ ମଧ୍ୟରେ ଶରତ ସର୍ବାଧିକ କର୍ମଠ । ପରାମର୍ଶ ଦେବାପାଇଁ ବୈକୁଣ୍ଠ, ଲେଖା ବାଛିବା ପାଇଁ କାଳିନ୍ଦୀ, ଯୋଗସୂତ୍ର ପାଇଁ ମୁଁ । ଇଚ୍ଛା ଓ ଉତ୍ସାହର ତାଡନାରେ ଆମେ ଭୁଲିଗଲୁ, ଭାସମାନ କାଠଖଣ୍ଡ ପରି ଆମେମାନେ ନଦୀ ସ୍ରୋତରେ ପୁଣି ପୃଥକ୍ ସ୍ଥାନମୁଖୀ ହୋଇଯାଇପାରୁ । ଯାହାହେଉ ଆପାତତଃ ଧରିନେଲୁ, କଲେଜରେ ଯେପରି ଏକତ୍ର କଳ୍ପନା କରିବାର ସୁବିଧା ମିଳିଥିଲା, ବର୍ତ୍ତମାନ ଏକତ୍ର ଇଚ୍ଛାନୁରୂପ କାର୍ଯ୍ୟ କରିବାର ସୁଯୋଗ ଆସିଗଲା । ଅନ୍ନଦାଙ୍କର ଦୂରରୁ ସହାନୁଭୂତି ଓ ସହଯୋଗର ପ୍ରତିଶ୍ରୁତି ଆମର ଏକତ୍ର ବୋଧରେ ଅଧିକ ପାଣି ଫୋଟକା ସୃଷ୍ଟି କଲା । ଯୌବନର କଳ୍ପନାବିଳାସ ଜଣକୁ ଉବୁଟୁବୁ

Digitized by srujanika@gmail.com

କରି ପକାଏ । ସେ ବିଳାସ ପାଞ୍ଚଜଣଙ୍କର ଏକାଠି ହେଲେ ତ୍ରାହି ବା କାହୁଁ ଆସିବ ? ସାହିତ୍ୟର ସ୍ୱପ୍ନ ତ ଗୋଟିଏ ଦିଗ । ସାଙ୍ଗଠନିକ ଅର୍ଥ ବିନିଯୋଗରେ ଲାଭ୍ୟାଂଶର ମୋହ ସେ ମୋହକୁ ଅଧିକ ମୂର୍ତ୍ତିମନ୍ତ କଲା । ହିସାବ କିତାବରେ ଦୋରସ୍ତ ଶରତ ଆମକୁ ବୁଝାଇ ଦେଲେ, ନିଜେ ନିଜେ ସାହିତ୍ୟ ସୃଷ୍ଟି କରିବା ସଙ୍ଗେ ଅନ୍ୟମାନଙ୍କର ଉପାଦେୟ ସାହିତ୍ୟ ସୃଷ୍ଟି ପ୍ରକାଶନ ଦ୍ୱାରା, ସାହିତ୍ୟ ସେବା ସବିଶେଷ ଫଳପ୍ରଦ ହେବ । ବୈକୁଣ୍ଠ ସେତେବେଳେ ସହର ଗୋଲାପି ଅଞ୍ଚଳରେ ମନ ଚଞ୍ଚଳ । କାଳିନ୍ଦୀ ଦୂର ଗ୍ରାମ୍ୟ ସହଯୋଗ ସମିତିର ଅନ୍ତରାଳରେ ପଲ୍ଲୀବଧୂର ଅତର୍କିତ ଦୃଷ୍ଟି କ୍ଷେପରେ ସଚେତନ । ମୁଁ ସାମାଜିକ ସ୍ୱୀକୃତି ଓ ପ୍ରତିଷ୍ଠାରେ ଅଭିଳାଷୀ । ଶରତ, ବୈଷୟିକ ଅଭିବୃଦ୍ଧିର ଚାତକ । ବିଶେଷ କରି ତାଙ୍କରି ପ୍ରରୋଚନାରେ ସ୍ଥିର ହେଲା, ସାହିତ୍ୟ ସମ୍ପର୍କିତ ପୁସ୍ତକ ଓ ପତ୍ରିକା ପ୍ରକାଶନ ପାଇଁ ଏକ ସହଯୋଗ ସମିତି ସ୍ଥାପନ କରିବା । ଶରତ ଓ କାଳିନ୍ଦୀ ସହଯୋଗ କ୍ଷେତ୍ରରେ (Co-operative Department) କାର୍ଯ୍ୟ କରୁଥିବାରୁ ସେହି ଅବଲମ୍ବନରେ ସଂସ୍ଥା ଗଢ଼ିବା ଆପାତତଃ ସୁବିଧାଜନକ ବୋଧ ହେଉଥାଏ । ଆମ ଦେଶରେ କୋଅପରେଟିଭ ବୃତ୍ତି ଯେ ଉଧେଇବ ନାହିଁ, ସେ ସନ୍ଦେହ ମନକୁ ସ୍ପର୍ଶ କରୁ ନଥାଏ । ପ୍ରକାଶନ ସଂସ୍ଥାର ସୁନେଲି ଚିତ୍ର ଶରତଙ୍କ ବାଗ୍ମିତାରେ ଅଧିକ ସ୍ୱର୍ଣ୍ଣାଭ ଦିଶିଲା ଆମ ଆଗରେ । ନିଆଁ ଜଳୁ ବା ନ ଜଳୁ ଅନିଳବର୍ଣ୍ଣ ଦିଶିଲେ, ପତଙ୍ଗ ଝାସ ଦେବାପାଇଁ ବ୍ୟଗ୍ର । ପ୍ରକାଶନ ସଂସ୍ଥାର ନାମ କରଣ ହେଲା, ସବୁଜ ସାହିତ୍ୟ ସମିତି । ସେଥିରେ ନୂତନତ୍ୱ କିଅତ ପ୍ରତିଭାତ ହେଲା, ସବୁଜ ଶବ୍ଦ ସଂଯୋଗରେ । ଆମ୍ଭମାନଙ୍କ ସାହିତ୍ୟ ଚର୍ଚ୍ଚା ବା ସୃଷ୍ଟିକୁ ସବୁଜ ଆଖ୍ୟା ଦେବା, ନା କଲେଜରେ, ନା ପରେ, କଦାପି ଆମ ମନରେ କେବେ ଉଠିନଥିଲା । ଓଡ଼ିଆ ସାହିତ୍ୟରେ ସବୁଜ ଶବ୍ଦର ପ୍ରଚଳନ ପ୍ରାୟ ନଥିଲା । ବଙ୍ଗଳାରେ ସେତେବେଳେ ସବୁଜ ପତ୍ର ବୋଲି ଏକ ପତ୍ରିକା ବାହାରୁ ଥାଏ । ରବିନ୍ଦ୍ରନାଥଙ୍କ କବିତାରେ 'ସବୁଜ' ଶବ୍ଦ କେତେ ସ୍ଥାନରେ ଥିଲା । ଅନ୍ନଦାଙ୍କ ରଚିତ କବିତାରେ 'ସବୁଜପରୀ' ବୈକୁଣ୍ଠ କବିତାରେ 'ସବୁଜବନ୍ଧୁ' ପ୍ରକାଶ ପାଇଥିଲା; ପ୍ରାୟ ୧୯୨୫ ମସିହାରେ, ଆମେ କଲେଜରେ ପଢୁଥିଲାବେଳେ । କଥିତ ଓଡିଆରେ 'ସବଜା ସବଜି'ର ଅର୍ଥ 'ତଟକା ପରିବା' । ସତେଜ ଅର୍ଥରେ ସବୁଜ ଶବ୍ଦ କିଛି ଅପ୍ରାସଙ୍ଗିକ ନୁହେଁ । ଆମେ ସେ ଶବ୍ଦ ବଙ୍ଗଳାରୁ ଆଣିଛୁ ବୋଲି ଅଭିଯୋଗ ବରାବର ହୋଇଆସିଛି । ପ୍ରକାଶନ ସମିତି ଗଠନବେଳେ ଆମେ 'ସବୁଜ ସାହିତ୍ୟ ସମିତି' ନାମକରଣ କରିଥିଲୁ ସତ, କିନ୍ତୁ ଆମ ଗୋଷ୍ଠୀକୁ 'ସବୁଜ ଗୋଷ୍ଠୀ' ଓ ଆମ ଲେଖାକୁ 'ସବୁଜ ସାହିତ୍ୟ' ଓ ସେହି ସମୟକୁ 'ସବୁଜ ଯୁଗ' ଆଖ୍ୟା ଦେଇଛନ୍ତି ଅନ୍ୟମାନେ । ଓଡିଆ ସାହିତ୍ୟରେ

Digitized by srujanika@gmail.com

'ସବୁଜ' ଶବ୍ଦ ସ୍ୱୀକୃତି ଲାଭ କରିଛି' । ପ୍ରାଚୀନ ଓଡ଼ିଆ, ବଙ୍ଗଳା ବା ହିନ୍ଦୀ ସାହିତ୍ୟରେ ସେ ଶବ୍ଦର ପ୍ରଚଳନ ନଥିଲା । ଇଂରେଜୀରେ 'Green' ଏକାଂଶରେ ସେହି 'ସତେଜ' ଅର୍ଥ ବାହକ ।

ପାଣ୍ଡୁଲିପି ସଂଗ୍ରହ, କାଗଜକିଣା, ପ୍ରେସକୁ ଦଉଡା, ହିସାବରଖା ଇତ୍ୟାଦି ସମସ୍ତ ଖାଟୁଣି ଶରତଙ୍କ ମାରଫତ ଥାଏ, ତାଙ୍କ ସ୍ୱଇଚ୍ଛା ଓ ଅକୁଣ୍ଠ ସମ୍ମତିରେ । ଆମେ ତିନି ଜଣ, କାଳିନ୍ଦୀ, ବୈକୁଣ୍ଠ ଓ ମୁଁ ଓପର ଭସା । ପ୍ରୁଫ୍ ସଂଶୋଧନ କାଳିନ୍ଦୀ ଅନେକ କରୁଥିଲେ । ମୋ ଉପରକୁ ଆସିଲା 'ଯୁଗବାଣୀ' ମାସିକ ପତ୍ରିକାର ସମ୍ପାଦନ । ତାହା ସବୁଜ ସାହିତ୍ୟ ସମିତିର ମୁଖପତ୍ର ନଥିଲା । ବହି ଆକାରରେ ଏକ ନୂତନ ରୀତିରେ ମାସିକ ସାହିତ୍ୟ ପତ୍ରିକାର ଅୟମାରମ୍ଭ କରାହେଲା । ଅନ୍ୟାନ୍ୟ ଦେଶ ବିଦେଶର ସାହିତ୍ୟ ସୃଷ୍ଟିର ପରିଚୟ ତାହାରି ମାଧ୍ୟମରେ ଓଡ଼ିଆ ଯୁବଗୋଷ୍ଠୀକୁ ଦେବା ଏବଂ ଓଡ଼ିଶାରେ ଏକ ଯୁଗ ଚେତନା ଆଣିବା ଆମର ଅଭିପ୍ରାୟ ଥିଲା । ସେ ସମୟକୁ ଚାହିଁଲେ, ଏହା ଏକ ଅଭିନବ ଚେଷ୍ଟା ।

ସମିତିର ପ୍ରଥମ ପ୍ରକାଶନ ହେଲା, 'ସବୁଜ କବିତା' । ଆମ ପାଞ୍ଚଜଣଙ୍କର ଲେଖା ସାତଆଠଟି ଲେଖାଏ କବିତା ଏକତ୍ର ସେଥିରେ ରହିଲା । ତାହାର ପ୍ରଚ୍ଛଦପଟ ସବୁଜ ରଙ୍ଗରେ ଛାପା, ଉତ୍ସର୍ଗ, 'ଦେଶର ସବୁଜ ପ୍ରାଣ ତରୁଣ ତରୁଣୀଙ୍କର କରକମଳେ' । ଏ ପ୍ରକାର ପୁସ୍ତକ ପ୍ରକାଶ ଥିଲା ପ୍ରଥମ ଓଡ଼ିଶାରେ । 'ବାସନ୍ତୀ' ଯାହା ପୂର୍ବରୁ 'ଉତ୍କଳ ସାହିତ୍ୟ' ରେ କ୍ରମାନ୍ୱୟରେ ବହୁମାସ ଧରି ପ୍ରକାଶିତ ହୋଇଥିଲା, ତାକୁ ସମିତି ଦେଲା ପୁସ୍ତକ ରୂପ । ଏହାକୁ ଅତି ଦ୍ରୁତ ଆଦର ମିଳିଥିଲା । ଆମେ ଆଶ୍ଚର୍ଯ୍ୟ ହୋଇଥିଲୁ, ତରୁଣୀ ମହଲରେ ତାହାର ବିଶେଷ ସମାଦର ଲକ୍ଷ୍ୟ କରି । ପଛକୁ ପଛ ଆମ ଦଳଙ୍କର ଲିଖିତ ଉପନ୍ୟାସ, କାବ୍ୟ, ନାଟକ ସାଙ୍ଗକୁ ଅନ୍ୟ କେତେକ ସମଧର୍ମୀ ତରୁଣ ବନ୍ଧୁଙ୍କର ଯୁବ ଚେତନାମୟ ଉପାଦେୟ ପୁସ୍ତକ ପ୍ରକାଶ ପାଇବାକୁ ଲାଗିଲା । ଯଥା—ହରିଶଚନ୍ଦ୍ର ବଡାଳ, ମାୟାଧର ମାନସିଂହ, ହରିହର ମିଶ୍ର, ସଚ୍ଚି ରାଉତରାୟ, କମଳାକାନ୍ତ ଦାସ ପ୍ରଭୃତି । ଆମଠାରୁ ବୟସ୍କ ଓ ପ୍ରତିଷ୍ଠିତ ଲେଖକ ଦିବ୍ୟସିଂହ ପାଣିଗ୍ରାହୀ, ଚିନ୍ତାମଣି ମହାନ୍ତିଙ୍କର ଉପନ୍ୟାସ 'ତୁ ମୋ ମାଆ' 'ଶନି ସପ୍ତାହ' ମଧ୍ୟ ଆମେ ପ୍ରକାଶ କରିଥିଲୁ । ବଳିଷ୍ଠ ସାହିତ୍ୟ ସୃଷ୍ଟି କରିବା ଉଦ୍ଦେଶ୍ୟରେ ବୈଷୟିକ ବିଷୟରେ ଅଭିଜ୍ଞ ବ୍ୟକ୍ତିଙ୍କ ଦ୍ୱାରା କୃଷି, ଗୋପାଳନ ଇତ୍ୟାଦି ଉପରେ ପୁସ୍ତକ ଲେଖାଇ ପ୍ରକାଶ ମଧ୍ୟ କରାଗଲା । ସବୁଜ ସାହିତ୍ୟ ସମିତିର ଉଦ୍ୟମ ପୂରା ଦମରେ ସାତବର୍ଷ ଚାଲିଲା । ଶରତଙ୍କର ବିହାରକୁ ବଦଳି ହୋଇ ଯିବାପରେ, ତାଙ୍କର ପରିଚିତ ଜଣେ ବଙ୍ଗଦେଶୀୟ ଯୁବକ ଗୋପାଳ ଚାଟାର୍ଜୀ

Digitized by srujanika@gmail.com

ସମିତିର ପରିଚାଳନା ଦାୟିତ୍ୱ ନେଲେ । କ୍ରମଶଃ ତାହା ଶିଥିଳ ହୋଇ, ବନ୍ଦ ହୋଇଗଲା । ଯୁଗବୀଣାର ପ୍ରସାର ସନ୍ତୋଷଜନକ । ତାହା ବନ୍ଦହେବା ପରେ ୪/୫ ବର୍ଷ ପର୍ଯ୍ୟନ୍ତ ଗ୍ରାହକ ଚାନ୍ଦା ମନି ଅର୍ଡ଼ରରେ ଆସୁଥିଲା । ତାକୁ ଦୁଃଖର ସହିତ ଫେରାଇ ଦେଇ ପତ୍ର ଲେଖେଁ ଯେ ଯୁଗବୀଣା ଆପାତତଃ ବନ୍ଦ ଅଛି । ମୁଁ ଆଶା ରଖିଥିଲି, ସବୁଜ ସାହିତ୍ୟ ସମିତିର ପୁସ୍ତକ ପ୍ରକାଶ ବନ୍ଦ ହେଲେ ମଧ୍ୟ, ଯୁଗବିଣା ପୁନଃ ପ୍ରକାଶ ପାଇବ । ତାହା ହୋଇପାରିଲା ନାହିଁ । ସେଥିପାଇଁ ଦୁଃଖ ମୋର ରହିଗଲା ସବୁଦିନକୁ । ସମିତି ଦ୍ୱାରା ତିରିଶଖଣ୍ଡି ପୁସ୍ତକ ଛପା ଯାଇଥିଲା । ବନ୍ଦ ହେଲା ପରେ, ବିକ୍ରୀ ହୋଇନଥିବା ଅନେକ ବହି ଗଚ୍ଛିତ ଥିଲା ବହୁକାଳ ପର୍ଯ୍ୟନ୍ତ । ଅନ୍ୟ ପୁସ୍ତକ ବିକ୍ରେତାଙ୍କ ଦ୍ୱାରା ତାହା ବିକ୍ରୟ କରିବାର ଚେଷ୍ଟା କେତେ ସଫଳ ହେଲା, ମୁଁ କହିପାରିବି ନାହିଁ । ମୋ ଜାଣିବାରେ, ଗୋପାଳ ଚାଟାର୍ଜୀ ସମିତିର ହିସାବ ପତ୍ର ନ ବୁଝାଇ, ଆମ (କାଳିନ୍ଦୀ, ବୈକୁଣ୍ଠ, ମୁଁ )ଅଜାଣତରେ କଟକରୁ ଚାଲିଗଲେ । ସେ ଶରତଙ୍କ କାଠଗଡ଼ା ସାହି ଘରେ ରହୁ ଥାଆନ୍ତି ଏବଂ ସମିତି କାର୍ଯ୍ୟାଳୟ ସେଠାରେ ଥାଏ ।

ଦେଶବାସୀଙ୍କର ମାନସିକତା ଓ ଦିଗ୍‌ଦର୍ଶନ ପରିବର୍ତ୍ତନ ପାଇଁ ଯଥାଯୁକ୍ତ ସାହିତ୍ୟ ସୃଷ୍ଟି ଓ ପ୍ରସାର ପାଇଁ ସମିତିର ମାଧମ ଚାଲିଗଲା ପରେ ବ୍ୟକ୍ତିଗତ ଚେଷ୍ଟା ବିଭିନ୍ନ କାର୍ଯ୍ୟପନ୍ଥାରେ ଅବ୍ୟାହତ ରହିଲା । ଆମ ବନ୍ଧୁତ୍ୱର ମୂଳଭିତ୍ତି ଓ ଆଭିମୁଖ୍ୟ, ସମିତି ବା ଯୁଗବୀଣା ବନ୍ଦ ହେବା ଦ୍ୱାରା କୌଣସି ପ୍ରକାରେ ବ୍ୟାଘାତ ପାଇ ନଥିଲା ।

ବହୁବର୍ଷ ପରେ ୧୯୬୮ ମସିହାରେ ନିଉ ଷ୍ଟୁଡ଼େଣ୍ଟ ଷ୍ଟୋର ଅଧିକାରୀ ଭିକାରୀ ଚରଣ ଦାଶ 'ସବୁଜ କବିତା' ଓ 'ବାସନ୍ତୀ' ବହି ଦୁଇଟି ପୁନଃ ପ୍ରକାଶ କରିବାକୁ ଚାହିଁବାରୁ ଆମ୍ଭେମାନେ ସେଥିରେ ସମ୍ମତ ହେଲୁ ଏବଂ ସେ ମହାଶୟ ସେଥିପାଇଁ ଆମ୍ଭମାନଙ୍କ ଠାରୁ (ପାଞ୍ଚଜଣ) ଏକ ଏଗ୍ରିମେଣ୍ଟ ଲେଖାଇ ନେଇ ଚାରିହଜାର ଟଙ୍କାର ଏକ ଚେକ୍ ଶରତଙ୍କ ନାମରେ ଦେଲେ । ସେ ଟଙ୍କା ତାଙ୍କ ପାଖରେ ରହିଲା । ସେତେବେଳେ ସ୍ଥିର ହୋଇଥିଲା, ସେହି ଟଙ୍କା ଉତ୍କଳ ବିଶ୍ୱବିଦ୍ୟାଳୟ ବା ଉତ୍କଳ ସାହିତ୍ୟ ସମାଜକୁ ଦିଆଯାଇ ତାହାର ସୁଧରୁ ବାର୍ଷିକ ଏକ ପୁରସ୍କାର — ସବୁଜ ସାହିତ୍ୟ ସମିତି ପୁରସ୍କାର— ସାହିତ୍ୟଗତ ପ୍ରବନ୍ଧ ପ୍ରତିଯୋଗିତାରେ ଦିଆଯିବ । ତାହା କାର୍ଯ୍ୟକାରୀ ହେବାରେ ବାଧା ଉପୁଜିବାରୁ ଅନନ୍ଦା, କାଳିନ୍ଦୀ ଓ ମୁଁ ଆମ ଭିତରେ ଚାରିହଜାର ଟଙ୍କା ସଂଗ୍ରହ କରି ଉତ୍କଳ ସାହିତ୍ୟ ସମାଜରେ ଗଚ୍ଛିତ ପାଣ୍ଠିରେ ଜମାଦେଲୁ ଏବଂ ସେହି ବର୍ଷଠାରୁ ସେ ପୁରସ୍କାର ଦିଆ ହେଉଅଛି । ତିରିଶ ବୟସ ସୀମା ମଧ୍ୟରେ ତରୁଣ ତରୁଣୀମାନେ ସେଥିପାଇଁ ପ୍ରତିଯୋଗିତାରେ

Digitized by srujanika@gmail.com

ଅଂଶ ନେଇପାରିବେ ବୋଲି ଆମେ ସର୍ତ୍ତ ରଖିଥିଲୁ । ୧୯୩୫-୩୬ରେ ଆମର କନିଷ୍ଠମାନେ ଯଥା, ଭଗବତୀ ପାଣିଗ୍ରାହୀ, ଅନନ୍ତ ପଟ୍ଟନାୟକ, ବୈଦ୍ୟନାଥ ରଥ ପ୍ରମୁଖ ଗୋଟିଏ ଦଳ ବାହାରିଲେ, ମାର୍କସ ଚିନ୍ତାଧାରାରେ ଅନୁପ୍ରାଣିତ ହୋଇ । ରାଜନୈତିକ କାର୍ଯ୍ୟଧାରା ସଙ୍ଗେ ପ୍ରଗତିବାଦୀ ସାହିତ୍ୟ ସୃଷ୍ଟି ସେମାନଙ୍କର ବିପ୍ଳବବାଦ କର୍ମପନ୍ଥାର ଅନ୍ତର୍ଭୁକ୍ତ ହେଲା । ଆମ୍ଭମାନଙ୍କ ସହିତ ସେମାନଙ୍କ ଦଳର ଓ କାର୍ଯ୍ୟର ଯୋଗସୂତ୍ର ଘନିଷ୍ଠ ଥିଲା, ସାହିତ୍ୟ କ୍ଷେତ୍ରରେ ବିଶେଷ କରି ।

ଆଉ ଗୋଟିଏ ସାହିତ୍ୟ ସଂସ୍ଥା ସେତେବେଳେ ଗଢ଼ିଉଠିଲା—ପ୍ରାଚୀ ସମିତି; ଯାହା ସହିତ ମୂଳରୁ ଆମ ଭିତରୁ ମୁଁ ଏକା ସଂଶ୍ଳିଷ୍ଟ ଥିଲି । ରେଭେନ୍‌ସା କଲେଜର ସଂସ୍କୃତ ଓ ଓଡିଆ ଅଧ୍ୟାପକ ଆର୍ତ୍ତବଲ୍ଲଭ ମହାନ୍ତି, ଲକ୍ଷ୍ମୀକାନ୍ତ ଚୌଧୁରୀ ପ୍ରାଚୀନ ଓଡିଆ ସାହିତ୍ୟରେ ବିଶେଷ ଅନୁରାଗୀ ଥିଲେ । ଆର୍ତ୍ତବାବୁ ୧୯୨୧ ମସିହାରୁ କରୁଣାକର କର ଓ ଅନ୍ୟ କେତେକ ଛାତ୍ରଙ୍କ ସହାୟତାରେ ପ୍ରାଚୀନ ଅପ୍ରକାଶିତ ଓଡିଆ ତାଳପତ୍ର ପୋଥୀ ସଂଗ୍ରହ ଆରମ୍ଭ କରିଥିଲେ । ଶାରଳା ଦାସ, ଜଗନ୍ନାଥ ଦାସ ପ୍ରଭୃତିଙ୍କ ଲେଖାର ଶୁଦ୍ଧ ସଂସ୍କରଣ କାର୍ଯ୍ୟ ମଧ ହାତକୁ ନେଉଥିଲେ । ସେହି କାର୍ଯ୍ୟକୁ ଅଧିକ ଅଗ୍ରସର କରିବା ନିମନ୍ତେ 'ପ୍ରାଚୀ ସମିତି' ଗଢ଼ାହେଲା । ଆର୍ତ୍ତବାବୁ ସଭାପତି, ବିଚ୍ଛନ୍ଦ ଚରଣ ପଟ୍ଟନାୟକ ସମ୍ପାଦକ, ଲକ୍ଷ୍ମୀକାନ୍ତ ବାବୁ, ମୁଁ ଓ ଅନ୍ୟ କେତେକ ସଭ୍ୟ ହେଲୁ । କାର୍ଯ୍ୟକାରୀ କମିଟିରେ ମଧ ମୁଁ ରହିଲି । ସବୁଜ ସାହିତ୍ୟ ସମିତି ପରେ ପ୍ରାଚୀ ସମିତି । ବିଚ୍ଛନ୍ଦ ଚରଣ ଥିଲେ ଦକ୍ଷ ସାହିତ୍ୟିକ, ମୂଳରୁ ସବୁଜ ବିରୋଧୀ ମନ୍ତବ୍ୟ ତାଙ୍କଠାରୁ ଶୁଣି ଆସୁଥିଲୁ । କିନ୍ତୁ ଗୁଣଗ୍ରାହୀ ଲୋକ ସେ ଥିଲେ । ପରବର୍ତ୍ତୀ କାଳରେ ଭଞ୍ଜସାହିତ୍ୟର ବିପୁଳ ପ୍ରସାର ତାଙ୍କ ଦ୍ୱାରା ହୋଇଛି । ପ୍ରାଚୀନ ସାହିତ୍ୟରେ ତାଙ୍କର ପ୍ରବେଶ ଥିବାରୁ, ଆର୍ତ୍ତବାବୁ ତାଙ୍କର ଓ କରୁଣାକରଙ୍କର କାର୍ଯ୍ୟ ଉପରେ ଭରସା ରଖିଥିଲେ । ଆଉ କେତେ ସହକର୍ମୀ ଯୁଟିଲେ ପ୍ରାଚୀ ସମିତିରେ । ଏଡତାଳର (ଭଦ୍ରଖ ଅଞ୍ଚଳ) ଭୁୟାଁ ଭାସ୍କରଚନ୍ଦ୍ର ମହାପାତ୍ର, କୁଲି ସର୍ଦ୍ଦାରି ଓ ଜାହାଜ ବୋଝଇ, ଖଲାସି ବ୍ୟବସାୟରେ କଲିକତାରେ ବହୁ ଧନ ଅର୍ଜ୍ଜନକରି, ସେଠାରେ ବିପୁଳ କୋଠାବାଡି ଏବଂ ଗ୍ରାମରେ ବହୁ ସମ୍ପତି କରିଥିଲେ । ଉମାଚରଣ ଦାସ, ଡେପୁଟିଙ୍କ ସଙ୍ଗେ ତାଙ୍କର ସଖ୍ୟତା ଥିଲା । ଉମାବାବୁଙ୍କ ପରାମର୍ଶରେ ସେ ଭଦ୍ରଖ ସରକାରୀ ହସ୍‌ପିଟାଲକୁ କୋଡିଏ ହଜାର ଟଙ୍କା ଓ ପ୍ରାଚୀ ସମିତି ପାଇଁ କୋଡିଏ ହଜାର ଟଙ୍କା ଦାନ କଲେ । ଏହି ବଦାନ୍ୟତାର ପୁରସ୍କାର ସ୍ୱରୁପ ସରକାର ତାଙ୍କୁ 'ରାୟବାହାଦୂର' ଉପାଧି ଅର୍ପଣ କଲେ । ଭାସ୍କର ମହାପାତ୍ରଙ୍କର ଆର୍ଥିକ ସାହାଯ୍ୟ ଯୋଗୁ ପ୍ରାଚୀ ସମିତି ଗୋଟିଏ ପ୍ରେସ୍ କିଣି, ପ୍ରାଚୀନ ସାହିତ୍ୟ ପ୍ରକାଶ ଆରମ୍ଭ

Digitized by srujanika@gmail.com

ହେଲା । ବହୁ ପ୍ରତିଷ୍ଠା ବଢ଼ିଲା । ପରିଚାଳନା ପ୍ରତି ଆର୍ତ୍ତବାବୁଙ୍କର ସେତେ ଦୃଷ୍ଟି ନଥାଏ । ବିଚ୍ଛନ୍ଦଙ୍କ ଉପରେ ସବୁ ଛାଡି ଦେଇଥିଲେ । କାର୍ଯ୍ୟକାରୀ କମିଟିରେ ପରିଚାଳନାଗତ ତ୍ରୁଟି କ୍ରମଶଃ ଦେଖିବାକୁ ମିଳିଲା ଏବଂ ତାହା ଅଧିକରୁ ଅଧିକତର ହୋଇ, ଶେଷକୁ ପ୍ରାଚୀ ସମିତି ବନ୍ଦ ହୋଇଗଲା । ଶେଷ ଅବସ୍ଥାରେ ଉଦ୍ଧାର କାର୍ଯ୍ୟ ଚେଷ୍ଟାବେଳକୁ ଦେଖାଗଲା, ସମିତିର ଅତ୍ୟାବଶ୍ୟକୀୟ କାଗଜପତ୍ର ପୋଡାହୋଇ ଯାଇଛି । ଅଧିକ ନ ଘାଣ୍ଟି ଆର୍ତ୍ତବାବୁ ଚୁପ୍ ରହିଲେ । ସବୁଜ ସାହିତ୍ୟ ସମିତି ଯାଇଥିଲା, ପ୍ରାଚୀ ମଧ୍ୟ ଗଲା । କିନ୍ତୁ ପ୍ରାଚୀର କାର୍ଯ୍ୟ ଏକକ ଚେଷ୍ଟାରେ ଆର୍ତ୍ତବାବୁ ଜୀବନର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଚଳାଇ ଗଲେ ।

ଅନ୍ୟଏକ ସାହିତ୍ୟ ଚେଷ୍ଟା ଭଗବତୀ ପାଣିଗ୍ରାହୀଙ୍କ ଗୋଷ୍ଠୀ ଉତ୍ସାହ ଓ ନିଷ୍ଠାର ସହିତ ଆରମ୍ଭ କରି ପୁସ୍ତକ ପତ୍ରିକା ପ୍ରକାଶନ ପର୍ଯ୍ୟନ୍ତ ଯାଇଥିଲେ । ସେମାନେ ଉଚ୍ଚ ଶିକ୍ଷିତ, କାର୍ଯ୍ୟ ତତ୍ପର, ଜନସେବୀ, ରାଜନୈତିକ ବିପ୍ଲବୀ ଥିଲେ । ସେହି ବିପ୍ଲବର କର୍ମଧାରାରେ ବିଶେଷ ଲିପ୍ତ ରହିବାରୁ, ସାହିତ୍ୟ ଦିଗ କ୍ରମଶଃ ଶିଥିଳ ହୋଇଗଲା । ତାଙ୍କର 'ନବଯୁଗ ସାହିତ୍ୟ ସଂସଦ' ପ୍ରଗତିଶୀଳ ଲେଖକ ସଂଘ ବନ୍ଦ ହୋଇଗଲା । କିନ୍ତୁ ଓଡିଶାରେ କମ୍ୟୁନିଷ୍ଟ ପାର୍ଟିର ଭିତ୍ତି ଓ ସଙ୍ଗଠନ ସେମାନେ କୃତିତ୍ୱର ସହିତ ସ୍ଥାପନ କରି ଯାଇଛନ୍ତି ।

* ଏ ଶତାବ୍ଦୀର ତୃତୀୟ, ଚତୁର୍ଥ ଓ ପଞ୍ଚମ ଦଶକରେ ସାହିତ୍ୟ କ୍ଷେତ୍ରରେ ଯେଉଁ ତିନି ଗୋଟି ସମବେତ ଉଦ୍ୟମ ଆରମ୍ଭ ହୋଇ କେତେ ବର୍ଷ କାର୍ଯ୍ୟ କରିଥିଲା, ତାହାର ପ୍ରଭାବ ଓଡିଆ ସାହିତ୍ୟରେ ଗଭୀରଭାବେ ପଡିଛି ଏବଂ ତାହାର ସ୍ମରଣ ଏବେ ସୁଦ୍ଧା ଅକ୍ଷତ ଥିବାର ଦେଖାଯାଏ । ସେହି ତିନି ସଂସ୍ଥାରେ ମୋର କିଞ୍ଚିତ ସହଯୋଗ ମୋ ପକ୍ଷରେ ମଧ୍ୟ ସ୍ମରଣୀୟ ରହିଛି ।



---

* ବିଂଶ ଶତାବ୍ଦୀ (ବହିଟି ବିଂଶ ଶତାବ୍ଦୀରେ ଲେଖାଯାଇଥିବାରୁ, ଏହା ଦର୍ଶାଇଲୁ । — ପ୍ରକାଶକ)

Digitized by srujanika@gmail.com

# ଗତି ଓ ଦୁର୍ଗତି

ଓକାଲତି ବ୍ୟବସାୟ ନୁହେଁ । ଏହା ଏକ ବୃତ୍ତି । ଅବଲମ୍ବିତ ହେବାର କଥା ସମାଜରେ ନ୍ୟାୟ ପ୍ରତିଷ୍ଠାରେ ସାହାଯ୍ୟ କରିବା ପାଇଁ ଓ ଅନ୍ୟାୟଗ୍ରସ୍ତ ମଣୁଥିବା ଲୋକକୁ ଆଇନଗତ ପରାମର୍ଶ ଓ ସହାୟତା ଦେବାପାଇଁ । ଏ କଥା ଆଇନ ବୃତ୍ତି ଇତିହାସରୁ ପଢ଼ିଥିଲି ଏବଂ ପଢ଼ିଲାବେଳେ ଭାଇସ୍ ପ୍ରିନ୍‌ସିପାଲ ସରିଫ ସାହେବ ବାରମ୍ବାର କ୍ଲାସରେ କହୁଥିଲେ । ଓକିଲଙ୍କ ଗାଉନ ପଛରେ କାନ୍ଧ ଉପରୁ ଗୋଟିଏ ସରୁମୁଣା ଝୁଲି ସିଲାଇ ହୋଇଥାଏ । ଓକିଲ ତା କାର୍ଯ୍ୟପାଇଁ ଫିସ୍ ମାଗୁନଥିଲେ । ଯେ ଇଚ୍ଛା କଲା ଯାହା ଖୁସି ପଛପଟ ମୁଣାରେ ରଖି ଦେଉଥିଲା । ଏ ଥିଲା ପୁରାତନ ପାଶ୍ଚାତ୍ୟ ସଭ୍ୟତାର ରୀତି । ବ୍ରିଟିଶ୍ ଶାସନବେଳେ ପାଶ୍ଚାତ୍ୟ ପ୍ରଥା ଅନୁକ୍ରମରେ ନ୍ୟାୟାଳୟ ଆମ ଦେଶରେ ବସିଲା ଓ ଓକାଲତି ବୃତ୍ତି ଆରମ୍ଭ ହେଲା । ବିଲାତରେ ବାରିଷ୍ଟର (ବା ଆଡଭୋକେଟ୍) ମହକିଲ ସଙ୍ଗେ ସାକ୍ଷାତ ସମ୍ପର୍କ ରଖନ୍ତି ନାହିଁ । ଅନ୍ୟଏକ ଗୋଷ୍ଠୀ—ସଲିସିଟର—ମହକିଲଙ୍କଠାରୁ କାଗଜପତ୍ର, ମାମଲା ବିବରଣୀ ଇତ୍ୟାଦି ସଂଗ୍ରହ କରି ବାରିଷ୍ଟରଙ୍କୁ ଦିଅନ୍ତି । ସେ ତାହା ଉପରେ କୋର୍ଟରେ କେସ ଚଳାନ୍ତି । ଫିସ୍ ମଧ ନିଅନ୍ତି ମହକିଲଠାରୁ ସଲିସିଟର । ଧର୍ମକୁ ଆଖିଠାର ! ବାରିଷ୍ଟର ଫିସ୍ ମାଗିବେ ନାହିଁ । ଆମ ଦେଶରେ କଲିକତା, ବମ୍ବେ, ମାନ୍ଦ୍ରାଜରେ ଉଚ୍ଚ ନ୍ୟାୟାଳୟ ବସିବା ପରେ ଏହି ପ୍ରଥା ଚାଲୁ ହୋଇଥିଲା । ଅନ୍ୟ ସ୍ଥାନରେ ହାଇକୋର୍ଟ ବସିଲା । କିନ୍ତୁ ସେ ଦ୍ୱୈତ ପ୍ରକ୍ରିୟା ରହିଲା ନାହିଁ ।

ପାଟନା ହାଇକୋର୍ଟରେ ସାର ଆଲି ଇମାମ, ହାସନ ଇମାମ, ସାର ସୁଲତାନ, ପି.କେ.ସେନ, କେ.ବି.ଦତ୍ତ, ପି.ସି. ମାନୁକ ପ୍ରଭୃତି ବାରିଷ୍ଟରମାନଙ୍କୁ ଦେଖିଥିଲି । ସେଇ ଛାପ ମୋର ଆଦର୍ଶ ଥିଲା । ତାଙ୍କମାନଙ୍କ ଉପରେ ମୋର ଧ୍ୟାନ ଥିଲା । ତାହା ମତେ ବହୁତ ଭାବରେ ସାହାଯ୍ୟ କରିଛି । ଯେଉଁ ସାମାନ୍ୟ କେସ ହାତକୁ ଆସେ ତାହା ପ୍ରାୟ ସବ୍‌ଜଜ କୋର୍ଟରେ ବା ଜଜ୍ କୋର୍ଟରେ । ତେଣୁ ମହକିଲ ଓ ମୋହରୀର ମହଲରେ ଟିକିଏ ଉଚ୍ଚ ଦୃଷ୍ଟି ମୋ ଆଡେ ରହିଲା । କଲେଜ୍

Digitized by srujanika@gmail.com

କମ୍ମେମୋରେସନ ପରି ଆଉ ଏକ ଘଟନା ଅନାହୂତ ଭାବରେ ଘଟିଲା । ଆମ ଚାଳଘର ବସା ସାମନାରେ ବ୍ରାହ୍ମସମାଜ । ବିଶ୍ୱନାଥ କର ତାର କର୍ତ୍ତା ଥିଲେ । ରାଜା ରାମମୋହନ ରାୟ ୧୯୨୮ ଅଗଷ୍ଟ ୨୦ରେ ବ୍ରାହ୍ମ ସମାଜ ଆରମ୍ଭ କରିଥିଲେ । ବ୍ରାହ୍ମ ଧର୍ମର ଅନୁଧ୍ୟାୟୀ ଓଡିଶାରେ ଅଳ୍ପଲୋକ ଥିଲେ । କଟକରେ ସେମାନଙ୍କ ମଧ୍ୟରେ ପ୍ରତିଷ୍ଠିତ ବ୍ୟକ୍ତି ଥିଲେ ବିଶ୍ୱନାଥ କର, ରଘୁନାଥ ରାଓ , ଡାକ୍ତର ଜୟନ୍ତ ରାଓ, ଡାକ୍ତର ପି.ସି. ରାୟ ପ୍ରମୁଖ । ଅଳ୍ପ ଅନୁଗାମୀ ଥିଲେ ମଧ୍ୟ, ବ୍ରାହ୍ମ ସମାଜର ଅନୁଷ୍ଠାନମାନଙ୍କରେ ଅନେକ ଅ-ବ୍ରାହ୍ମ ଉପସ୍ଥିତ ହୁଅନ୍ତି । କଲେଜରେ ପଢ଼ିଲାବେଳେ ଆମେ କେତେଜଣ ବି ଆସୁଥିଲୁ । ଓକିଲାତି ଆରମ୍ଭ ପରେ ମଧ୍ୟ ବେଳେବେଳେ ଯାଏ । ରାଜା ରାମମୋହନ ରାୟଙ୍କର ଜନ୍ମ ହୋଇଥିଲା ୧୭୭୨ ମେ ମାସ ୨୨ ତାରିଖରେ, ତିରୋଧାନ ହେଲା ୧୮୩୩ ସେପ୍‌ଟେମ୍ବର ୨୭ । ମୃତ୍ୟୁର ଶତବାର୍ଷିକୀ ୧୯୩୩ରେ କଲିକତା ପ୍ରଭୃତି ସ୍ଥାନରେ ହେଉଥାଏ । କଟକରେ ବ୍ରାହ୍ମ ସମାଜରେ ବିପୁଳ ଆକାରରେ ବିଶ୍ୱନାଥବାବୁ ଓ ଅନ୍ୟମାନେ ଆୟୋଜନ କଲେ । ଚନ୍ଦ୍ରାତପ ତଳେ ବିରାଟ ସଭା ତିନିଦିନ ସନ୍ଧ୍ୟାବେଳେ ହେଲା । କଲିକତାରୁ ଜ୍ଞାନାଞ୍ଜନ ନିୟୋଗୀ ଆସିଥିଲେ ଶେଷଦିନ ବକ୍ତୃତା ଦେବାପାଇଁ । ପ୍ରଗଲ୍‌ଭ ବକ୍ତା । ଅଧ୍ୟାପକ ନିରଞ୍ଜନ ନିୟୋଗୀଙ୍କ ଭାଇ । 'ବାଡି, ଗାଡି, ଛଡି' ର ପ୍ରାଧାନ୍ୟ ସମାଜରେ ସ୍ୱୀକୃତ ହେବାରୁ ଧର୍ମ ପ୍ରତି ଆକର୍ଷଣ ପ୍ରତିହତ ହେଉଛି ବୋଲି ବହୁ କଟାକ୍ଷ ସେ ପ୍ରକାଶ କରିଥିଲେ । ସେତେବେଳେ ବଙ୍ଗ ସମାଜରେ ଘୋଡାଗାଡି, କୋଠାଘର, ହାତବାଡି ସାମାଜିକ ପ୍ରତିଷ୍ଠା ଓ ସମ୍ଭ୍ରାନ୍ତ ବଂଶର ପରିଚାୟକ ଥିଲା । ବୟସ ନିର୍ବିଶେଷରେ ବାଁ ହାତରେ ଲୁଗାକୁଞ୍ଚ ଡାହାଣ ହାତରେ ସରୁବାଡି ଧରି ଚାଲୁଥିଲେ । ରାମମୋହନ ମୃତ୍ୟୁ ଶତବାର୍ଷିକୀର ପୁରୋଧା ହୋଇ ଆସିଥିଲେ, ଅତି ମାନ୍ୟାସ୍ପଦ ବୃଦ୍ଧ ରାମାନନ୍ଦ ଚାଟର୍ଜୀ, 'ମଡର୍ଣରିଭ୍ୟୁ', 'ପ୍ରବାସୀ'ର ପ୍ରବୀଣ ସମ୍ପାଦକ । ପ୍ରଥମ ସନ୍ଧ୍ୟାରେ ବହୁ ଜନ ସମାଗମରେ ଉତ୍ସବ ଆରମ୍ଭ ହେଲା । ବକ୍ତା ଥିଲେ ଚାରିଜଣ, ଖ୍ରୀଷ୍ଟାନଙ୍କ ମଧ୍ୟରୁ ଷ୍ଟୁଆର୍ଟ ସ୍କୁଲ ଅଧକ୍ଷ ରବର୍ଟ ସାହେବ, ମୁସଲମାନଙ୍କ ମଧ୍ୟରୁ ଜଣେ (ୟୁସୁଫ) ବ୍ରାହ୍ମଙ୍କ ମୁଖପାତ୍ର ବିଶ୍ୱନାଥ କର ଏବଂ ମୁଁ (ଯୁବକଙ୍କ ତରଫରୁ କହ ବା ହିନ୍ଦୁଙ୍କ ତରଫରୁ କହ) । ବିଶ୍ୱନାଥବାବୁ ଆମ ବସାକୁ ଆସି ମତେ କହି ଯାଇଥିଲେ । ମୁଁ ଥିଲି ଶେଷ ବକ୍ତା । ଅଳ୍ପ କହିଲି, କିନ୍ତୁ କହିଲି ରାମମୋହନଙ୍କର ତିରୋଧାନର ମାତ୍ର ପାଞ୍ଚବର୍ଷ ପୂର୍ବେ ଯେଉଁ ଧର୍ମ ନୂତନ ବୋଲି ପ୍ରଚାରିତ ହେଲା, ତହିଁରେ ସନାତନ ହିନ୍ଦୁ ଧର୍ମଠାରୁ କୌଣସି ପାର୍ଥକ୍ୟ ନଥିଲା; କେବଳ ପ୍ରତିମା ପୂଜାର ବିରୋଧ ଛଡା ।

Digitized by srujanika@gmail.com

ସେଥିପାଇଁ ଶହେ ବର୍ଷ ଭିତରେ ଭାରତର ଲୋକସଂଖ୍ୟା ମଧ୍ୟରେ ଅତି କତିପୟ ବ୍ୟକ୍ତି ବ୍ରାହ୍ମ ସମାଜ ଭିତରକୁ ଆସିଛନ୍ତି । ଏହି ନୂତନ ସଂସ୍କରଣରେ ପୁରାତନର ମର୍ଯ୍ୟାଦା ବା ସ୍ଥିତି ଆସିପାରି ନାହିଁ । ବ୍ରାହ୍ମଧର୍ମୀଙ୍କ ସଂଖ୍ୟା ସେନ୍‌ସେସ୍ ରିପୋର୍ଟରୁ ପ୍ରକାଶ କରିଥିଲି । ଏହି ମନ୍ତବ୍ୟରେ ହୁଲସ୍ଥୁଲ୍ ପଡିଲା ବ୍ରାହ୍ମଙ୍କ ଭିତରେ, ଅବ୍ରାହ୍ମଙ୍କୁ ଭଲ ସୁହାଇଲା । ମୁଁ କୌଣସି ମନ୍ଦ ଦୃଷ୍ଟିରୁ କହି ନଥିଲି । ତାତ୍ତ୍ୱିକ ଭାବରେ କଥାର ଅବତାରଣା କରିଥିଲି ମାତ୍ର । ତା ପରଦିନ ସନ୍ଧ୍ୟାରେ ଅଧକ୍ଷ ରାମାନନ୍ଦ ଚାଟାର୍ଜୀ କେତେଗୁଡିଏ ପୁସ୍ତକ ଟେବୁଲରେ ରଖି ମୋ ଉକ୍ତିକୁ ଖଣ୍ଡନ କରି ଦୀର୍ଘ ବକ୍ତୃତା ଦେଲେ ଏବଂ କଲିକତା ଫେରିଯାଇ ତାଙ୍କ ମାସିକ ପତ୍ରରେ ଏ ବିଷୟ, ମୋ ନାମ ପ୍ରକାଶ କରି, ଆଲୋଚନା କଲେ । ପଣ୍ଡିତ, ଅତି ପ୍ରତିଷ୍ଠିତ ବ୍ୟକ୍ତି ସେ; ମୁଁ କି ଛାର । କିନ୍ତୁ କୁସୁମ ପରଶେ ପଟ ନିସ୍ତରେ । ବାହାବା ମତେ ମିଳିଲା, ଯଦିଓ ବିନା କାରଣରେ ।

ମୁଁ ରାମମୋହନଙ୍କ ପ୍ରତିଭା ଓ ବିଦ୍‌ବତ୍ତା ଯାହା କହିଥିଲି ତାକୁ କେହି ଧରିଲେ ନାହିଁ, ଧରିଲେ କେବଳ ବ୍ରାହ୍ମଧର୍ମର ମନ୍ତବ୍ୟକୁ । ରାଜା ରାମମୋହନ ଅସାଧାରଣ ଗୁଣ ସମ୍ପର୍ଣ୍ଣ ଥିଲେ । ପାଟନାରେ ପରସିଆନ, ବାରାଣସୀରେ ସଂସ୍କୃତ ଓ ନିଜ ଚେଷ୍ଟାରେ ଆରବିକ୍, ଗ୍ରୀକ୍, ହୀବ୍ରୁ, ଲାଟିନ୍, ଉର୍ଦ୍ଦୁ, ହିନ୍ଦି ଓ ଇଂରେଜୀରେ ଅଗାଧ ପାଣ୍ଡିତ୍ୟ ଲାଭ କରିଥିଲେ । ୧୮୨୫ ରେ ବେଦାନ୍ତ କଲେଜ କଲିକତାରେ ସ୍ଥାପନ କରିଥିଲେ । ତାଙ୍କରି ଅଦମ୍ୟ ଚେଷ୍ଟାରେ ୧୮୨୯ରେ ଲର୍ଡବେଣ୍ଟିକ ୧୭ ନମ୍ବର ରେଗୁଲେସନ ଜାରି କରି ସତୀଦାହ ପ୍ରଥା ନିଷିଦ୍ଧ କରିଥିଲେ । ସତୀଦାହ ସପକ୍ଷରେ ଏକ ଆନ୍ଦୋଳନ ଆରମ୍ଭ କଲେ ଧର୍ମସଭା—ସେମାନେ ଆଡ୍‌ଭୋକେଟ୍ ଜେନରାଲ ସର୍ଜେଣ୍ଟ ସ୍ପାଙ୍କି ସାହେବଙ୍କୁ କଲିକତାରୁ ଲଣ୍ଡନ ପଠାଇ ପ୍ରିଭିକାଉନସିଲ ଆଗରେ ଲର୍ଡ ବେଣ୍ଟିକଙ୍କ ରେଗୁଲେସନ୍ ବିରୁଦ୍ଧରେ ଅପିଲ ଶୁଣାଣି କରାଇଥିଲେ । ରାମମୋହନ ସେତେବେଳେ ବିଲାତରେ ଥିଲେ । ସେ ତିନିଶତ ଭାରତୀୟଙ୍କ ଦସ୍ତଖତରେ ସତୀଦାହ ବିରୁଦ୍ଧରେ ଏକ ଦରଖାସ୍ତ ପ୍ରିଭିକାଉନସିଲରେ ଦାଖଲ କରିଥିଲେ । ପ୍ରିଭିକାଉନସିଲ ସତୀଦାହ ଉଚ୍ଛେଦକୁ କାଏମ ରଖିଲେ । ୧୮୩୫ ମସିହା ପ୍ରେସ ସ୍ୱାଧୀନତାର ପୁନରୁଦ୍ଧାର କରି ଯେଉଁ ଆଇନ୍ ଜାରିହେଲା, ତାହା ମଧ୍ୟ ତାଙ୍କରି ଚେଷ୍ଟାର ଫଳ । କଲିକତାରୁ ପ୍ରକାଶିତ କଲିକତା କ୍ରନିକଲକୁ (Calcutta Chronicle)ସରକାର ବନ୍ଦ କରିଦେଇ ତାର ସମ୍ପାଦକ ଜେମସ୍ ସିଲକ୍ ବକିଂମଙ୍କୁ ୧୮୨୩ର ରେଗୁଲେସନ ୨ ବଳରେ ଭାରତରୁ ବିତାଡିତ କରିବାରୁ ରାମମୋହନ

Digitized by srujanika@gmail.com

ଦୃଢ଼ ପ୍ରତିବାଦ ଆରମ୍ଭ କରି ଗୋଟିଏ ସୁପ୍ରିମ୍ କୋର୍ଟକୁ ଓ ଆଉ ଗୋଟେ କିଙ୍ଗ ଇନ୍ କାଉନସିଲକୁ, ଏପରି ଦୁଇଟି ଅପିଲ ପଠାଇଥିଲେ । ସେ ଦୁଇଟି ନା-ମଞ୍ଜୁର ହେଲା ସତ, ମାତ୍ର ପ୍ରେସ ସ୍ୱାଧୀନତାର ତାହା ଅଗ୍ରଦୂତ ହୋଇଥିଲା । ତାଙ୍କ ମୃତ୍ୟୁର ୨ ବର୍ଷ ପରେ ପ୍ରେସ ସ୍ୱାଧୀନତା ରକ୍ଷା କରି ୧୧ ନମ୍ବର ଆଇନ ୧୮୩୫ରେ ପାସ୍ ହେଲା । ଉଚ୍ଚ ଚାକିରୀରେ ଭାରତୀୟଙ୍କୁ ନିଯୁକ୍ତି ଦେବା ତାଙ୍କରି ଉଦ୍ୟମରୁ ଆରମ୍ଭ ହୋଇଥିଲା । ବୋର୍ଡ ଅଫ୍ କଣ୍ଟ୍ରୋଲ, ପାର୍ଲିଆମେଣ୍ଟ ସିଲେକ୍ଟ କମିଟି ପାଖେ ବାରମ୍ବାର ସେଥିପାଇଁ ଦାବୀ ଜଣାଉଥିଲେ । ୧୮୩୩ରେ ୧୧ ନମ୍ବର ରେଗୁଲେସନ୍ ଜାରି ହୋଇ ଭାରତୀୟମାନେ ଡେପୁଟି କଲେକ୍ଟର ହେବା ଆରମ୍ଭ ହେଲା । ୧୮୪୩ ରେ ୧୫ ନମ୍ବର ଆଇନ ବଳରେ ଭାରତୀୟ ଡେପୁଟି ମାଜିଷ୍ଟ୍ରେଟ୍ ହେଲେ । ଶାସନ କର୍ତ୍ତାଙ୍କ ପାଖେ ଆଇନ ଧାରାରେ ପ୍ରତିବାଦ ସାହସର ସହିତ ଜନସାଧାରଣଙ୍କ ପକ୍ଷରୁ ଉପସ୍ଥାପିତ କରିବାର ପଥ ପ୍ରଦର୍ଶକ ସେ । ଏ ସବୁ ବଖାଣି ମୋର ଧୋଇ ହୋଇଗଲା, ବ୍ରାହ୍ମ ଧର୍ମୀଙ୍କ ଅତି ନ୍ୟୁନ ସଂଖ୍ୟା ପ୍ରକାଶରେ ।

ଆମ ବସାକୁ କେତେକ ସମୟରେ ଆସୁଥାନ୍ତି ସାରଙ୍ଗଧର ଦାସଙ୍କ ଆମେରିକାନ୍ ପତ୍ନୀ ଫ୍ରିଡା ଦାସ, ଓଡିଶାରେ ନାରୀ ସ୍ୱାଧୀନତାର ଅଗ୍ରଦୂତ ସରଳା ଦେଈ । ଅଗଣା କୂଅବାଡ ଉପରେ ବସି ଗପ ହୁଏ, ଆଖି ପିଛୁଳାକେ କେମିତି ସଂସ୍କାର ଆଣି ସମାଜକୁ ବଦଳାଇଦେବା । ଉଭୟେ ମୋର ସମବୟସୀ । ଦିନେ ସନ୍ଧ୍ୟାବେଳେ ଜଣେ ପ୍ୟାଣ୍ଟସାର୍ଟ ପିନ୍ଧି ଘରକୁ ପଶି ଆସିଲେ, ପିରି, ପିରି (ମୋ ସ୍ତ୍ରୀଙ୍କ ବାପଘର ଡାକନାମ ଥିଲା ପିରି) ଡାକି । ମୁଁ ଚିହ୍ନି ନ ଥିଲି । ଇଲି (ସ୍ତ୍ରୀଙ୍କୁ ମୁଁ ଦେବା ନାମ) ଚିହ୍ନିଲେ, ତାଙ୍କ ଜୟରାମ ଦଦେଇଙ୍କ ପୁଅ ଚୌଧୁରୀ ଜଗନ୍ନାଥ ଦାଶ । ଜର୍ମାନୀରେ ରହୁଥିଲେ । ସେଠାରେ ଦର୍ଶନ ଶାସ୍ତ୍ରରେ ଅଧ୍ୟୟନ ସାରିଥା'ନ୍ତି । ସୁଇଜରଲ୍ୟାଣ୍ଡ ବୁଲିବାକୁ ସେ ଯାତ୍ରା ଆରମ୍ଭ କଲାବେଳେ, ଟ୍ରେନରେ ଜଣେ ତାଙ୍କୁ ପଚାରିଲେ ସେ ଦାର୍ଜିଲିଂ ଦେଖିଛନ୍ତି କି ? ନାହିଁ ଉତ୍ତରରେ, ଯାହା ଶୁଣିଲେ, ସୁଇଜରଲ୍ୟାଣ୍ଡ ଯାତ୍ରା ସେଠାରୁ ବନ୍ଦ ହୋଇଗଲା । ଭଦ୍ରବ୍ୟକ୍ତିଙ୍କୁ କହିଥିଲେ, ତମେ ଭାରତୀୟ, ଭାରତବର୍ଷର ଏତେ ଦର୍ଶନୀୟ ସ୍ଥାନ ଅଛି, ଦେଖୁନାହଁ କାହିଁକି ? ଦାର୍ଜିଲିଂ ଯେ ନ ଦେଖିଛି, ସୁଇଜରଲ୍ୟାଣ୍ଡ କଣ ଦେଖିବ ! ଦାଶେ ଆସିଥାନ୍ତି ଦାର୍ଜିଲିଂ ଦେଖିବାକୁ । ପ୍ରାୟ ମୋରି ବୟସ । ଆଳାପ ହେଲା । ଭବିଷ୍ୟତରେ ଜର୍ମାନୀରେ ତାଙ୍କର ଆତିଥ୍ୟର ନିମନ୍ତ୍ରଣ ପାଇଲି । କିଏ ଭାବିଥିଲା, ତାର ଅଳ୍ପ କାଳରେ ଜର୍ମାନୀରେ ତାଙ୍କର ଅକାଳ ବିୟୋଗ ଘଟିଯିବ !

Digitized by srujanika@gmail.com

ମୋ ମଝିଆଁ ଭାଇ କୃଷ୍ଣଚନ୍ଦ୍ର ପୁରୀ ଜିଲ୍ଲା ସ୍କୁଲରୁ ପ୍ରଥମ ଡିଭିଜନରେ ମାଟ୍ରିକ୍ ପାସ୍ କରି ୧୯୩୩ରେ ଆସିଲା । ମୋ ପାଖରେ ରହି ରେଭେନ୍‌ସା କଲେଜରେ ଆଇ.ଏସ୍.ସି.ପଢ଼ିବ । ପ୍ରତିଭାବାନ୍, ଧୀର ସ୍ୱଭାବ ପିଲା । ସାଇକେଲରେ କଲେଜକୁ ଯିବାଆସିବା କରେ । ଅଫିସ ଘରପାଖ ବାଟ ଘରଟିରେ ଖଟରେ ଶୁଏ ରାତିରେ । ତାର ସାଥି ଥିଲେ ଅଶୋକ (ଦାସ,ପରେ ହେଲେ ଆଡ୍‌ଭୋକେଟ୍ ଜେନେରାଲ): ଗଙ୍ଗାଧର (ମହାପାତ୍ର, ପରକାଳରେ ମନ୍ତ୍ରୀ) କବି (ମହାପାତ୍ର, ଶିକ୍ଷା ପରେ ଶିକ୍ଷକ ହେଲେ) ଇତ୍ୟାଦି । କୃଷ୍ଣ ଆସିବା ପରେ, ମୋ କନିଷ୍ଠ ଭାଇ ଶରତ (ତିନୁ) ମଧ ଆସିଲା ସ୍କୁଲରେ ପଢ଼ିବା ପାଇଁ । ନନା ସେତେବେଳେ ପୁରୀ ଜିଲ୍ଲାସ୍କୁଲରେ ଶିକ୍ଷକ, ରହୁଥାନ୍ତି ହେରାଗୋହିରୀ ସାହି ଚିନ୍ତାମଣି କରଙ୍କ ଘରେ ଭଡାରେ । ଆମେ ତିନିଭାଇ, ମୋ ସ୍ତ୍ରୀ, ଦୁଇପିଲେ, ବେବି (ପ୍ରଭାତ), ମିନି (ସୁମିତ୍ରା) ସୁଖ ଦୁଃଖରେ ଚଳିଯାଉଥାଉ, ପକ୍କା ଦୁଇବଖରା, ଚାଳ ଦୁଇବଖରା ଘର ଭିତରେ, ଜଣେ ଚାକର ସାହାଯ୍ୟରେ । ହଠାତ୍ ୧୯୩୪ ମେ ୨୧ ତାରିଖରେ ଚଡକ ଆସି ପଡିଲା ମୋ ମୁଣ୍ଡରେ । ମେ ମାସ, ଖରା ଦିନ । ବାରନ୍ଦାରେ ଆମେ ଶୋଇଥାଉ । କୃଷ୍ଣ ଶୋଇଥିଲା ବାଟଘର ଘଟରେ । ଭୋରକୁ ଧପ୍ କରି ପଡିଯିବାର ଗୋଟେ ଜୋର ଶବ୍ଦ ମତେ ଶୁଭିଲା । ନିଦ ଭାଙ୍ଗି ମୁଁ ଚାହିଁଲାବେଳକୁ କୂଅ ମୂଳରେ କୃଷ୍ଣ ପଡିଯାଇଛି । ଉଠିଆସି ଦେଖେ, ପ୍ରାଣଶୂନ୍ୟ । ମୋ ଡାକ ଶୁଣି ସମସ୍ତେ ଉଠିଲେ । ସକାଳ ପାଞ୍ଚଟାବେଳ । ଅଳ୍ପ ଅନ୍ଧାରୁଆ ଥାଏ । ଛାତଉପରକୁ ଯାଇ ପଡିଶା ଘରେ ରହୁଥିବା ମୁରଲୀବାବୁ ଡାକ୍ତରଙ୍କୁ ଡକା ପକାଇଲି । ସେ ଏକବସ୍ତ୍ରହୋଇ ଦୌଡିଆସିଲେ, ଦେଖିଲେ କହିଲେ ସବୁ ଶେଷ । କଅଣ କରିବି ବୁଦ୍ଧି ବଣା । ମୁରଲୀବାବୁ (Dr. M. Ray)ପଚାରିଲେ, କାହାକୁ ଖବର ଦେବା ? ସେ ନିଜେ ଯାଇ ରାଧାନାଥବାବୁଙ୍କୁ (ସମାଜ) ଡାକି ଆଣିଲେ । ରାଧାନାଥବାବୁ ସଙ୍ଗେ ସଙ୍ଗେ ଗଲେ ବୈଦ୍ୟନାଥବାବୁଙ୍କ ପାଖକୁ । (ବୈଦ୍ୟନାଥ ମିଶ୍ର, ସିନିଅର ଡେପୁଟି ମାଜିଷ୍ଟ୍ରେଟ୍) ଏବଂ ତାଙ୍କଠାରୁ ଖଣ୍ଡିଏ ଲେଖାଇ ଆଣିଲେ ଶବଦାହ ପାଇଁ । ମୁରଲୀବାବୁ ଏହି ଲେଖାପାଇଁ ଉଦ୍‌ଗ୍ରୀବ ଥାଆନ୍ତି । କାରଣ ସେ ପ୍ରଥମ ଦେଖିଲାବେଳୁ ଜାଣି ପାରିଥିଲେ – କୃଷ୍ଣ ବିଷଖାଇ ଆତ୍ମହତ୍ୟା କରିଛି । ମୁଁ ଅଳ୍ପ ସମୟ ପରେ, କୃଷ୍ଣ ତକିଆ ତଳୁ ୨ ଖଣ୍ଡି ଲଫାପା ବନ୍ଦ ଚିଠି ପାଇଲି । ଖଣ୍ଡିଏ ମୋ ପାଖକୁ, ଅନ୍ୟ ଖଣ୍ଡିଏ ଅଶୋକକୁ । ମୋତେ ଲେଖିଛି—

Digitized by srujanika@gmail.com

ପୂଜ୍ୟପାଦେଷୁ ୨୧/୫/୧୯୩୪

ଏଇ ଚିଠି ଖଣ୍ଡକରେ ଆପଣଙ୍କ ସାଙ୍ଗେ ଶେଷ ଦେଖା । ମୁଁ ଆଜି ଆତ୍ମହତ୍ୟା କରୁଛି । ହସୁଚନ୍ତି, କି ନିର୍ବୋଧ ବୋଲି ବିଚାରୁଛନ୍ତି, କିନ୍ତୁ ନୁହେଁ । ଜୀବନରେ ଏପରି ଆହ୍ୱାନ ମୁଁ ଆଜି ପାଇଲି । ଆଉ କାରଣ କିଛି ଲେଖୁନି । କେବଳ ଆହ୍ୱାନ ପାଇଲି । ହଉ ଯାଉଛି ।

ହଁ ଗଙ୍ଗାଭାଇନା ପ୍ରଭୃତିଙ୍କୁ କାଲି ଡାକି ଆଣିବେ । ସେମାନେ ପଚାରିଲେ କହିବେ, ସେ କେଉଁ ଆହ୍ୱାନରେ ପ୍ରାଣପାତ କରିଛି । ଯେ କେହି ପଚାରିଲେ ସେଇଆ କହିବେ ।

ଅଶୋକ ଭାଇନାଙ୍କୁ ତାଙ୍କ ବହିତକ ଓ ଘଣ୍ଟାଟି ଫେରେଇ ଦେବେ । ଦୁଇଖଣ୍ଡ ସହକାର ଅଛି; କବିପ୍ରସାଦ ମହାପାତ୍ରଙ୍କର । ତାଙ୍କୁ ଫେରେଇ ଦେବେ । ଅଶୋକ ଭାଇନାଙ୍କ ପାଖକୁ ଯେଉଁ ଚିଠିଟି ଅଛି ସେଇଟିକୁ କାଲି ତୁରନ୍ତ ପଠେଇ ଦେବେ । କାଲି ପାରିଲେ ତାଙ୍କ ପାଖକୁ Wire କରିବେ । ଅନ୍ତତଃ ଏତିକି ଲେଖି Krisno dead, Letter follows. ତାଙ୍କ ପାଖରୁ reply ନ ପାଇଲେ ଚିଠି ପକାଇବେ ।

ମୋର ବିଦାୟ ନମସ୍କାର ସମସ୍ତଙ୍କୁ ଜଣାଇବେ । ଆଜି ସକାଳ ୫ଟାରେ ମୁଁ ଏଇ କାମ କଲି Pot. Cyanide ବିଷରେ ।

ଶେଷରେ କହିରଖେ, ମୋର ଶବକୁ Post Mortems Ex କୁ ନଦେବା ଲାଗି ଚେଷ୍ଟା କରିବେ । ହଉ ଚାଲିଲି ନମସ୍କାର । ବୋଉକୁ ବିଶେଷ କରି କହିବେ । ବହୁତଗୁଡିଏ କାମ ଦେଇଗଲି । କ୍ଷମା କରିବେ ।

ଶ୍ରୀଯୁକ୍ତ ହରିହର ମହାପାତ୍ର ସେବକ

କୃଷ୍ଣ

ପୋଷ୍ଟମାର୍ଟମ ନ ହୋଇ ଶବ ସତ୍କାର ହେଲା । ମୁଁ ହତଭମ୍ବ ହେଲି । କାହିଁକି କୃଷ୍ଣ ଏପରି କଲା, ମୁଁ ଏ ପର୍ଯ୍ୟନ୍ତ ଜାଣିପାରି ନାହିଁ, ଅନୁମାନ ବି କରିପାରି ନାହିଁ । ଅଶୋକଙ୍କୁ ତାଙ୍କ ଚିଠିଟି ଦେଲି । ବହି, ଘଣ୍ଟା ମଧ ଫେରାଇଲି । କବିଙ୍କୁ ସହକାର ପଠାଇଦେଲି । ଦୁର୍ଘଟଣାର ପଚାଶ ବର୍ଷ ହୋଇଗଲାଣି । କିନ୍ତୁ ଏବେ ମଧ ମନେ ପକାଇଲେ କୋହ ଉଠୁଛି ।

Digitized by srujanika@gmail.com

ତାର ଚାରି ମାସ ପରେ ଅନ୍ୟଏକ ଘଟଣାରେ ମର୍ମାହତ ହେବାକୁ ଥିଲା । ରେଭେନ୍ସା କଲେଜ ଓଲ୍ଡ ବଏଜ ଆସୋସିଏସନର ପାଟନା ବିଶ୍ୱବିଦ୍ୟାଳୟ ସିନେଟକୁ ଜଣେ ପ୍ରତିନିଧି ଯିବାପାଇଁ ନିର୍ବାଚନ ହେବା ସ୍ଥିର ହେଲା । ବନ୍ଧୁ ଶରତ୍ କହିଲେ ମୁଁ ପ୍ରାର୍ଥୀପତ୍ର ଦାଖଲ କରିବା ପାଇଁ । ପରିଜା ସାହେବଙ୍କୁ ପଚାରିଲି । ସେ ମୋ ମନୋନୟନ ପତ୍ରରେ ପ୍ରସ୍ତାବକ ହୋଇ ଦସ୍ତଖତ ଦେଲେ । ପରେ ଠିଆହେଲେ, ଲକ୍ଷ୍ମୀଧର ମହାନ୍ତି, ବିହାର ଓଡିଶା ବିଧାନସଭାର ମେମ୍ବର ଓ ଉପସଭାପତି । ତାଙ୍କୁ ସମର୍ଥନ ବୟସ୍କ ଲୋକଙ୍କଠାରୁ ମିଳିବା ସ୍ୱାଭାବିକ । ମୁଁ ଦୁଃଖିତ ଓ ଆଶ୍ଚର୍ଯ୍ୟ ହେଲି, ଯେତେବେଳେ ଜାଣିଲି ଯେ ପରିଜା ସାହେବ ମୋ ନାମ ପ୍ରସ୍ତାବ କରି, ଭୋଟବେଳେ ଲକ୍ଷ୍ମୀଧରବାବୁଙ୍କୁ ଭୋଟଦେଲେ । ଭୋଟ ଦିଆହେଲା, କଲେଜ ହଲରେ ସନ୍ଧ୍ୟାବେଳେ । ମୁଁ ଚୁପ୍ ହୋଇ ବସିଥାଏ । ବର୍ଷୀୟାନମାନେ ଲକ୍ଷ୍ମୀଧରବାବୁଙ୍କ ପାଇଁ ବ୍ୟାକୁଳତା ଦେଖାଇ ଭୋଟ ମାଗୁଥାନ୍ତି । ଲକ୍ଷ୍ମୀଧରବାବୁ ନିଜେ ଅନ୍ୟମାନଙ୍କୁ କଥାରେ ଆପ୍ୟାୟିତ କରିବାରେ ଦକ୍ଷ । ତାଙ୍କ ଉପସ୍ଥିତି ତାଙ୍କ ସମର୍ଥକ ସଂଖ୍ୟା ବଢ଼ାଇଲା । ଭୋଟ ଗଣତି ହୋଇ, ମୁଁ ହାରିଲି ବତିଶ ଭୋଟରେ । ଭୋଟ ପୂର୍ବରୁ ଲକ୍ଷ୍ମୀଧରବାବୁ ରାଞ୍ଚିରୁ ୧୨/୯/୧୯୩୪ ତାରିଖରେ ମତେ ଖଣ୍ଡିଏ ପତ୍ର ଲେଖିଥିଲେ ।

Council Quarters
Doranda
Po-Hinoo, Ranchi
12-9-34

My dear Harihar,

I am so very sorry that in the coming Election for Senate, I am to contest with you. It is irony of fate that I am destined to do this with the best of my friends. This in my misfortune and I take it that it is one of these misfortunes into which God has put me now. To tell you the truth. I had not the least inclination to stand & it is to the wishes of some of my friends that I had to yield at last. I had to recognise that their arguments were sound & so had to yield.

Digitized by srujanika@gmail.com

I wanted to write to you earlier but I was so nervous to write to you. In fact I admit that I ought to help you in matters like these instead of contesting with you but as I said above this in an irony of fate. When I reach Cuttack I shall meet you. It is from many considerations that I decided to stand and if you could find your way to desist this time, I promise I would help you & all my energies to get you elected in future. But you are young & have entertained an ambition & I am therefore nervous to tell you this. There should be no bitterness & the same good relations that exists between us should continue.

Yours affly
Laxmidhar

ଦୁର୍ଗତି ସାଙ୍ଗକୁ ଆକସ୍ମିକ ଭାବେ କିଛି ସୁଗତି ଆସିଲା । ଆଠଗଡକୁ ଗୋଟିଏ କେସ୍ ଚଳାଇବା ପାଇଁ ଯିବାକୁ ମଉକା ମିଳିଲା । ମୋ ପରି ଅନଭିଜ୍ଞ ଓକିଲ ବାହାରକୁ ଯିବା ଏକାବେଳେ ଅପ୍ରତ୍ୟାଶିତ । ପ୍ରଥମ ପଚାଶ ଟଙ୍କିଆ ଫିସ୍ ସେଥିରେ ପାଇଲି । କେସ୍ ଛୋଟ କିନ୍ତୁ କଚେରୀରେ କଟକରୁ ଓକିଲ ଆସିଛନ୍ତି ବୋଲି ଦେଖଣାହାରି ଅନେକ । ଦିବ୍ୟସିଂହ ମିଶ୍ର ମାଜିଷ୍ଟ୍ରେଟଙ୍କ କୋର୍ଟରେ କେସ୍ ପଡିଲା । ମୁଁ ଠିଆ ହୋଇ ତାଙ୍କୁ Your Honour କହି ଆର୍ଗୁମେଣ୍ଟ କଲାବେଳେ ତାଙ୍କୁ ମାତିପଡୁଥିବାର ଲକ୍ଷ୍ୟ କଲି । ତା ପରେ ଅନ୍ୟ କେତେକ କେସରେ ଆଠଗଡର ଭିନ୍ନ କୋର୍ଟକୁ ଓ ପଲିଟିକାଲ ଏଜେଣ୍ଟ ଆସିଥିଲାବେଳେ ତାଙ୍କ କୋର୍ଟକୁ ଯାଇଛି । ଥରେ ପଲିଟିକାଲ ଏଜେଣ୍ଟ (ଇୟୁରୋପୀୟ)ଙ୍କ ପାଖେ ଗୋଟିଏ ଅପିଲ ଆଠଗଡଠାରେ ଶୁଣାଣି ହେବାକୁ ଥିଲା । ମୁଁ ଅନେକ ନଜିର ବହି ନେଇ ଯାଇଥାଏ । ସାହେବ ଇଜଲାସକୁ ଆସି ପଚାରିଲେ ଏତେ ବହି କଣ ? ମୁଁ ଉତ୍ତର ଦେଲି, ଅପିଲରେ ଦେଖାଇବା ପାଇଁ ଆଣିଛି । ପୁଣି ପ୍ରଶ୍ନ, ଏ ସବୁ କଣ ପଢ଼ି ଶୁଣାଇବ ? ମୁଁ କହିଲି ହଁ । ସାହେବ ଭାବିଲେ ଗୋଟାକ ପରେ ଗୋଟେ ସବୁ ବହି ପଢ଼ା ହେବ । ଅପିଲ ନଥିରେ କିଛି ନ ଶୁଣି ରାୟ ଲେଖିଲେ, ଅପିଲ ମଞ୍ଜୁର । ଶୁଖିଲାରେ ବାଳିଆ ପିଟାହେଲା । ଆଉଥରେ, ଅନ୍ୟ ଏକ କେସରେ ତଳ କୋର୍ଟ ନଥିରେ କେତେକ ପ୍ରମାଦ ମୁଁ ଦେଖାଇଲାବେଳେ ତଳ କୋର୍ଟ ହାକିମଙ୍କୁ ସେ ଡକାଇ କହିଲେ ସଂଶୋଧନ

Digitized by srujanika@gmail.com

କରି ଦେବାପାଇଁ । ତାହା କରାଯାଇ ପାରିବ ନାହିଁ ବୋଲି ମୁଁ ଆପତ୍ତି କରିବାରୁ ସାହେବ ଆଶ୍ଚର୍ଯ୍ୟ ହେଲେ; କଥା କଟାକଟି ଚାଲିଲା । ଶେଷକୁ ତଳ କୋର୍ଟ ପ୍ରମାଦ ଅପେକ୍ଷା ତାଙ୍କ ପ୍ରମାଦ ଯେ ଅଧିକ ଗୁରୁତର ହେବ, ବୁଝିଲେ ।

ସତ୍ୟବାଦୀ ମିଶ୍ର ଡାକ୍ତର କଟକ ମ୍ୟୁନିସପାଲିଟିର ହେଲଥ୍ ଅଫିସର ଥିଲେ । ମୁନିସିପାଲିଟିରେ ଓଭରସିଅର ଥିଲେ ଜଣେ ସଚ୍ଚୋଟ ଯୁବକ, ଯାହାକୁ ସତ୍ୟବାଦୀବାବୁ ଅତି ସ୍ନେହ କରୁଥିଲେ । ତାଙ୍କ ପାଇଁ ଗୋଟିଏ ସେକେଣ୍ଡ ହ୍ୟାଣ୍ଡ (ଥାର୍ଡ ହ୍ୟାଣ୍ଡ ବୋଧହୁଏ) ବେବି ଅଷ୍ଟିନ ଟୁରର ମଟରଗାଡି କଲିକତାରୁ ଅଣାଇଥିଲେ ସାତଶହ ପଚାଶ ଟଙ୍କା ମୂଲ୍ୟରେ । ଓଭରସିଅର ଟଙ୍କା ଦେଇ ପାରିଲେ ନାହିଁ । ଗୋଟଏ ରବିବାର ସକାଳେ ମୁଁ ଗାଧୋଇବାକୁ ତେଲ ଲଗାଉଛି, ସତ୍ୟବାଦୀବାବୁ ସେହି ଗାଡିରେ ଆସିଥିଲେ ଆମ ବସାକୁ ମୋ ପାଖକୁ । କଥା ପ୍ରସଙ୍ଗରେ ଗାଡିକଥା ଶୁଣିଲି । ତାଙ୍କୁ ଦୁଆର ମୁହଁରେ ଟିକିଏ ଅପେକ୍ଷା କରିବାକୁ କହି ଘର ଭିତରକୁ ଆସି ପାଞ୍ଚଶତ ଟଙ୍କାର ଖଣ୍ଡିଏ ଚେକ ଲେଖି ତାଙ୍କୁ ନେଇ ଦେଲି, ଗାଡିଟି ମୁଁ କିଣିବା ପାଇଁ । ବାକୀ ଟଙ୍କା ପରେ ଦେବାର ହେଲା । ସତ୍ୟବାଦୀବାବୁ ନିଜେ ମତେ ଗାଡି ଚଲାଇବା ଶିଖାଇ ଦେଲେ । ଗାଡି ଆଣିଲି । ମୁଁ କିଏ, ଗାଡି କିଏ ? ସେତେବେଳେ ଓକିଲଙ୍କ ଭିତରେ ମଟରଗାଡି ଥାଏ କେବଳ ଜାନକୀନାଥ ବୋଷ, ସୁବୋଧଚନ୍ଦ୍ର ଚାଟାର୍ଜି, ବୀରକିଶୋର ରାୟ ଓ ଚିନ୍ତାମଣି ଆଚାର୍ଯ୍ୟଙ୍କର । ତାଙ୍କ ସାଙ୍ଗକୁ ମୋ ପରି ନଗଣ୍ୟ ଲୋକ ଗାଡି ଚଳାଇ କୋର୍ଟକୁ ଯିବାରେ ସମସ୍ତଙ୍କୁ ଆଶ୍ଚର୍ଯ୍ୟ ଲାଗିବା ସ୍ୱାଭାବିକ । ପ୍ରଥମ ଦିନ କଚେରୀ ହତାରେ ମୋ ଗାଡି ଦେଖି ଚିନ୍ତାମଣିବାବୁ ଅବିଶ୍ୱାସ କଲେ ମୋର ବୋଲି । ଓକିଲାତି ତିନି ବର୍ଷରେ ମଟରଗାଡି, କିଏ ବା ବିଶ୍ୱାସ କରନ୍ତା ? ମତେ ନିଜକୁ ଆଶ୍ଚର୍ଯ୍ୟ ଲାଗୁଥିଲା । କରି କରାଉଥାଏ ମୁହିଁ, ମୋ ବିନା ଅନ୍ୟ ଗତି ନାହିଁ । ତାଙ୍କରି ଦୟା । ପୂଜା ଛୁଟିରେ ପିଲାଙ୍କୁ ନେଇ ରାଞ୍ଚିରେ ତିନି ସପ୍ତାହ ରହିବା ଅନ୍ୟଏକ ଘଟନା ଯାହା କେତେକ ବ୍ୟଙ୍ଗ, କେତେକ ଚର୍ଚ୍ଚାର ବିଷୟ ହେଲା କିଛିଦିନ । ରାଞ୍ଚିରେ ଦଶହରା ଦିନ ଆଳାପ ହେଲା ପୁଲିସ ଡେପୁଟି ସୁପରିଣ୍ଟେଣ୍ଡେଣ୍ଟ ବୈଷ୍ଣବବାବୁଙ୍କ ସଙ୍ଗେ (ବୈଷ୍ଣବ ଚରଣ ଦାସ) । ସୌଖୀନ ଲୋକ, ସାହିତ୍ୟପ୍ରେମୀ, ଖାଇବା ପିଇବାରେ ମଉଜି । ତାଙ୍କ ବସାରେ ଅତିଥି ଥିଲେ ସବ୍‌ଡେପୁଟି ଦାମୋଦର ମର୍ଦ୍ଦରାଜ । ତାଙ୍କ ପିତା ବ୍ରଜସୁନ୍ଦର ମର୍ଦ୍ଦରାଜ ସବ୍‌ଡେପୁଟି ହୋଇ ଅବସର ନେଇଥିଲେ । ଋଣଗ୍ରସ୍ତ ମହାଜନଙ୍କ ଦୌରାତ୍ମ୍ୟରୁ ରକ୍ଷା ପାଇଁ ଜିଲ୍ଲା ଜଜ୍‌ଙ୍କ କୋର୍ଟରେ ବେମଗଦୁର(Insolvency) ଦରଖାସ୍ତ କରିଥିଲେ । କିପରି ଓ

Digitized by srujanika@gmail.com

କାହିଁକି ମତେ ଓକିଲ ନିଯୁକ୍ତ କରିଥିଲେ । ଫିସ ସେ ଦେଇ ନାହାନ୍ତି କି ମୁଁ ମାଗିନାହିଁ । ଏପରି ଗୁରୁତର ମକଦ୍ଦମାରେ ମୋ ପରି ତିନିବର୍ଷିଆ ଓକିଲ ଉପରେ ଭରସା କିପରି କଲେ କେଜାଣି ! ତାଙ୍କର ସମସ୍ତ ଋଣ ବାବଦକୁ ମାସିକ ପଚିଶ ଟଙ୍କା ଲେଖାଏ କୋର୍ଟରେ ଜମାଦେବା ଅର୍ଡର ହେଲା । ଏ ମକଦ୍ଦମାରୁ ଗୋଟିଏ ଅତୁଆଖିଅ ପାଞ୍ଚବର୍ଷ ପରେ ବାହାରିଥିଲା । ସେ ପ୍ରତିମାସରେ ୨୫ ଟଙ୍କା ଜମା ଦେବାପାଇଁ ମୋ ପାଖକୁ ପଠାନ୍ତି ଓ ତାହା କୋର୍ଟରେ ଜମା ଦିଆଯାଏ । ମଝିରେ ଗୋଟିଏ ମାସ ସେ ଦେଇଥିଲେ , କିନ୍ତୁ କୋର୍ଟରେ ଜମା ହୋଇପାରି ନଥିଲା । ମୋତେ ଈର୍ଷା କରୁଥିବା କେତେକ ଓକିଲ ବନ୍ଧୁ ଥିଲେ । ସେମାନେ ମର୍ଦରାଜଙ୍କ କାନରେ ଫୋଡିଲେ ଯେ ଏହି ଗଫଲିଯତି ଯୋଗୁ ତାଙ୍କ ଇନସଲଭେନ୍‌ସି ଖାରଜ ହୋଇଯିବ ଏବଂ ମହାଜନମାନେ ତାଙ୍କ ବିରୁଦ୍ଧରେ ଡ୍ରିଗୀ ଜାରି ବାହାର କରି ତାଙ୍କୁ ସିଭିଲି ଜେଲ ଦିଆଇବେ । ମର୍ଦରାଜ ଭୟଭୀତ ହେଲେ । ସେଥିରୁ ଉଦ୍ଧାର ପାଇଁ ସେମାନଙ୍କ ପରାମର୍ଶରେ ମୋ ବିରୁଦ୍ଧରେ ଗୋଟିଏ ଦରଖାସ୍ତ ଲେଖି ଜିଲ୍ଲା ଜଜ ସାହେବ (ବାୟରସ୍ ସାହେବ)ଙ୍କ କୋଠିକୁ ସକାଳବେଳା ଗଲେ । ଜଜ୍ ସାହେବ ତାଙ୍କ ମଟରଗାଡି ସଜାଡୁ ଥିଲେ । ମର୍ଦରାଜଙ୍କୁ କହିଲେ କଚେରୀ ଚାଲ । ମୁଁ କୋର୍ଟକୁ ଯାଇ ଦେଖେ ମର୍ଦ୍ଦରାଜ ବାରଣ୍ଡାରେ ଠିଆ ହୋଇଛନ୍ତି । ମତେ ଦେଖି, ନ ଦେଖିଲା ପରି ହୋଇ ଘରକୁ ଫେରିଗଲେ । ସନ୍ଧ୍ୟାବେଳକୁ ଆସି ମତେ ସବୁ କହି ଅନୁତପ୍ତ ହେଲେ । ଟଙ୍କା ଦୁଇମାସର ଏକାଠି ଜମା ହୋଇଥିବାର ସେ ବୁଝି ସାରିଥିଲେ ।

ରାଞ୍ଚିରେ ଛୁଟୀଟି ଭଲରେ କଟିଲା । ନିରୋଳା ରାସ୍ତାରେ ବୁଲା, ହୁଣ୍ଡୁରୁ ଜଳପ୍ରପାତ ଦେଖା, ପିଲାଙ୍କୁ ଆନନ୍ଦ ଦେଲା । ସେତେବେଳକୁ ବେବି, ମିନିଙ୍କ ତଳକୁ ବସନ୍ତ ଅତି ଛୋଟ ହୋଇଥାଏ । ଦିନେ ଦିପହରେ ମିନି ଏକୁଟିଆ ରାସ୍ତାକୁ ବାହାରି ଯାଇ ପ୍ରାୟ ହଜିଗଲା । ଖୋଜି କରି ଆଣିଲି କିଛି ସମୟ ପରେ । ତାପରେ ପ୍ରତିବର୍ଷ ଛୁଟିରେ ଆମେ ବାହାରକୁ ଯାଉଥିଲୁ । ଦୂରକୁ ନହେଲେ, ପୁରୀ ବା ଭୁବନେଶ୍ୱର ଯାଉ ।

ଚାଳ ବସାଘରେ ତିନିବର୍ଷ ରହି, ୧୯୫୩ ରେ ସେହି ଓଡିଆ ବଜାର ମୁଣ୍ଡରେ ଥିବା ଯଦୁନାଥ ଭବନକୁ ଆସିଲୁ ଭଡାରେ । ଇନ୍‌କମଟିକସ ଚାକିରୀରୁ ବିଦାୟବେଳେ ସେହି ଘରେ ଥିଲୁ । ସେତେବେଳେ ସମସ୍ତ ଉପର ତାଲାଟି ନେଇଥିଲୁ । ପରେ ସେ କୋଠା ଦୁଇ ଭାଇଙ୍କ ମଧ୍ୟରେ ବଣ୍ଟନ ହୋଇ, ତଳେ ଦୁଇବଖରା, ଓପରେ ଦୁଇବଖରା ଲେଖାଏଁ ଜଣକ ଭାଗରେ ପଡିଥାଏ । ଗୋଟିଏ ଭାଗ ଆମେ ମାସକୁ ୩୦ ଟଙ୍କା ଭଡାରେ ନେଲୁ । ସେଠାରେ ଦୁଇବର୍ଷ ରହିଲୁ ।

Digitized by srujanika@gmail.com

ସେହି ଘରକୁ ଯାଇ ଗୋଟିଏ ବଡ ବହି ଆଲମାରୀ କଲି ଏବଂ କଲିକତାର ବଟରଓ୍ୱାର୍ଥ କମ୍ପାନୀଠାରୁ କିସ୍ତିଓ୍ୱାରୀରେ ବହୁ ମୂଲ୍ୟର ଏମ୍ପାୟାର ଡାଇଜେଷ୍ଟ (Empire Digest)ସିରିଜ ଓ ହାଲସ୍‌ବେରୀ (Halsobury) ସିରିଜ କିଣିଲି । ଏ ବହି କଟକରେ କାହାରି ପାଖରେ ନଥାଏ । କୋର୍ଟ ଲାଇବ୍ରେରୀରେ ଏମ୍ପାୟାର ଡାଇଜେଷ୍ଟ ମଧ ନଥିଲା । ଅଯଥା ବ୍ୟୟ ବୋଲି ଅନେକ କହିଲେ । ମୁଁ କିନ୍ତୁ ଖୁସି ହେଲି ବହି ପାଇବାରେ । ସେହି ବହିରୁ ନଜିର ଖୋଜି କୋର୍ଟରେ ମୋ କେସ୍‌ରେ ଦେଖାଇଲାବେଳେ ପ୍ରତିପକ୍ଷ ଓକିଲଙ୍କର ଅସୁବିଧା ହେଉଥିଲା ଓ କୋର୍ଟର ସୁନଜର ଦିଶୁଥିଲା କେତେକ ସମୟରେ । ପୁରୁଣା ମୋହରୀର ସାଙ୍ଗକୁ ଆଉ ଜଣେ ନୂଆ ଟୋକା ମୋହରୀର ଆସି ଯୁଟିଲା । ପିଲାଟି ଡେଙ୍ଗା, କର୍ମ-ଚଞ୍ଚଳ । ଦୁଇ ମୋହରୀର ପୋଷି ହୋଇ ପାରିବେ କି ନାହିଁ ସନ୍ଦେହ ଥିବାରୁ ପୁରୁଣା ମୋହରୀର ଉପରେ ଆପତ୍ତି ନ କଲେ ମଧ ଭିତରେ ଅତୃପ୍ତ ଥିବାର ଲକ୍ଷ୍ୟ କରି ମୁଁ କହିଲି ପୁରୁଣା କେସର ସମସ୍ତ ପ୍ରାପ୍ୟ ପୁରୁଣା ମୋହରୀର, ନୂଆ କେସରୁ ଅଧାଅଧି ପୁରୁଣା ଓ ନୂଆ ନେବେ । ଦେଖିଲି, ଟୋକା ମୋହରୀରର ଚଟପଟିଆ କାମରେ ପୁରୁଣା ମୋହରୀର ଶ୍ରମ ଲାଘବ ହେବାରୁ, ଦୁହେଁ ମିଳିମିଶି ପୁରୁଣା ନୂଆ ଭେଦ ନରଖି ସିରସ୍ତା ସମ୍ଭାଳିଲେ । ମୁଁ ସେତେବେଳକୁ ଆଡଭୋକେଟ୍ ହୋଇସାରିଥିଲି । ଛୋଟ ବେବି ଅଷ୍ଟିନ ମଟର ଗାଡିଟି ରଜନୀକାନ୍ତ ଘୋଷ ଡାକ୍ତରଙ୍କୁ ୫୦୦ ଟଙ୍କାରେ ଦେଇ ଷ୍ଟାଣ୍ଡର୍ଡ଼ ସିଡ଼େନ ଗୋଟିଏ ସେକେଣ୍ଡହ୍ୟାଣ୍ଡ ୧୩୦୦ ଟଙ୍କାରେ କିଣିଲି । ଗାଡି ରଖିବାର ଜାଗା ନଥିବାରୁ ଜାନକୀ ବଲ୍ଲଭ ବୋଷଙ୍କ ଗ୍ୟାରେଜରେ ରଖୁଥାଏ । ସେ ସଜ୍ଜନ କୌଣସି ଭଡା ନେଉ ନଥିଲେ ।

ବେବି ଓ ମିନି କନ୍‌ଭେଣ୍ଟ ସ୍କୁଲରେ ପଢୁ ଥାଆନ୍ତି । ବସନ୍ତ ସ୍କୁଲ ଯାଇ ନଥାଏ । ଅନୁ (ଅନନ୍ତ) ତାହାଠାରୁ ସାନ । ସ୍ତ୍ରୀ ଅସୁସ୍ଥ ହେଲେ । ପୂର୍ବରୁ ତାଙ୍କର ହିଷ୍ଟରିଆ ଥିଲା, ସେ କଟକ ଆସିବା ପରଠାରୁ ଭଲଥିଲେ । ଏବେ ଦୁର୍ବଳତା ଓ ଲିଭର ଦୋଷରୁ ଅସୁସ୍ଥ । ମିଶନ ପ୍ରେସର ସୁପରିଣ୍ଟେଣ୍ଡେଣ୍ଟ ରେଭେରେଣ୍ଡ ଫେଲୋଜ୍‌ଙ୍କ ସ୍ତ୍ରୀ ବିଲାତ ପଢୁଆ ଡାକ୍ତର, ଅତି ମଧୁର ସ୍ୱଭାବ, ଦୟାଶୀଳା । ତାଙ୍କରି ଚିକିତ୍ସାରେ ସ୍ତ୍ରୀ ରହିଲେ । ବସନ୍ତ ସବୁବେଳେ ବୋଉ କାନି ଧରିଥାଏ । ଅଳେଇଚ ତାଙ୍କର ଭାରି ପ୍ରିୟ । ମିସେସ୍ ଫେଲୋଜ ରୋଗୀକୁ ଦେଖିବାକୁ ପ୍ରତି ସକାଳେ ଆସିଲାବେଳେ ପକେଟରେ ଅଳେଇଚ ଆଣିଥାନ୍ତି, ବସନ୍ତ ପାଇଁ । ଆଗ ବସନ୍ତ ସାଙ୍ଗେ କଥା ହେଲେ, ପରେ ଯାଇ ଦେଖନ୍ତି ସ୍ତ୍ରୀଙ୍କୁ । ଔଷଧ ଦେଉଥିଲେ କମ୍, ଭରସା ଦେଉଥିଲେ ବେଶୀ । ସ୍ତ୍ରୀ ପ୍ରାୟ ସୁସ୍ଥ ହେଲାବେଳକୁ ମିସେସ ଫେଲୋଜ ବାହାରିଲେ ସ୍ୱଦେଶକୁ ଯିବାପାଇଁ,

Digitized by srujanika@gmail.com

ନିଜର ସନ୍ତାନ ସମ୍ଭାବନା ଥିବାରୁ । ଡାକ୍ତର ଦାୟିତ୍ୱ କିପରି ତୁଲାନ୍ତି ତାଙ୍କଠାରେ ଦେଖିଲି । ସେ ବିଲାତ ଯିବା ଆଗରୁ ଡାକ୍ତର ଡେଭିଡ୍ ରବିନ୍ ସାହୁଙ୍କୁ ଆଣି ରୋଗୀ ସହିତ ପରିଚିତ କରାଇ, ଚିକିତ୍ସାର ପୂର୍ବାପର ସବୁ ବୁଝାଇ ଦାୟିତ୍ୱ ଦେଇଗଲେ ତାଙ୍କୁ । ଡେଭିଡଙ୍କୁ ମୁଁ ପାଟନାରେ ପଢ଼ିଲାବେଳେ ଚିହ୍ନିଥିଲି । ସେ ମେଡିକାଲ କଲେଜରେ ପଢୁଥିଲେ । ଏକ ବୟସର ପ୍ରାୟ ଆମେ । ସେ ଖ୍ରୀଷ୍ଟିଆନ୍ । ବକ୍ସିବଜାରରେ ରୀତା ମେଡିକାଲ ହଲ ନାମରେ ଔଷଧ ଦୋକାନ କରିଥିଲେ । ପରେ ସରକାରୀ ଚାକିରୀ କରି ଡିରେକ୍ଟର ହୋଇ ଅବସର ନେଲେ । ତାଙ୍କର ଦ୍ୱିତୀୟା କନ୍ୟା ସଞ୍ଜୁକ୍ତା ସହିତ ମୋ କନିଷ୍ଠ ପୁଅ ଅନନ୍ତର ବିବାହ ହେଲା ୧୯୬୪ ରେ ।

୧୯୩୬ ପୂଜା ଛୁଟିରେ ମୁଁ ଦାର୍ଜିଲିଂଗ ଯାଇଥିଲି । ଫଟୋ ଦେଇ କଲେକ୍ଟରଙ୍କଠାରୁ ଲିଖିତ ଅନୁମତି ବିନା ଦାର୍ଜିଲିଂଗ ପ୍ରବେଶ ନିଷେଧ ଥିଲା । କାହିଁକି କେତେଦିନ ପାଇଁ ଯାଉଛି ଓ ସେଠାରେ ବ୍ୟୟବହନର ସାମର୍ଥ୍ୟ ଇତ୍ୟାଦି ଦର୍ଶାଇ ଅନୁମତି ପାଇଲି । ସେଇ ବୋଧହୁଏ ମୋର ପ୍ରଥମ ଏକାକୀ ଫଟୋ । ହିମାଳୟର ଅପୂର୍ବ ଶୋଭା ସକାଳ ସନ୍ଧ୍ୟାରେ ମଲ ରାସ୍ତାରୁ ଯେତେ ଦେଖିଲେ ବି ତୃପ୍ତି ଆସେ ନାହିଁ । ଟାଇଗର୍ ହିଲ୍‌ରେ ସୂର୍ଯ୍ୟ ଉଦୟ ଦେଖିବାକୁ ଯାଇ ଯେଉଁପରି ଅପ୍ରସ୍ତୁତ ହୋଇଥିଲି ଏବେ ବି ମନରୁ ଯାଇନାହିଁ । ରାତି ପହରେ ଥାଇ ହୋଟେଲରୁ ଗଲି ପାହାଡ ଚାଲି, ଚାଲି, ଉଠି, ଉଠି । ଟାଇଗର ହିଲରେ ପହଞ୍ଚିଲାବେଳକୁ ଆଉ ୨୦/୨୫ ଜଣ ବସିଥାଆନ୍ତି । ସମସ୍ତେ ଉଦଗ୍ରୀବ ଦିଗ୍‌ବଳୟରେ ଆଲୋକ ସ୍ତମ୍ଭ କିପରି ଉଠିବ । ମୁଁ ପୂର୍ବକୁ ଚାହିଁଥାଏ । ଏକ ଜାପାନୀ ଦମ୍ପତି ସେଠାରେ ଥିଲେ । ସ୍ତ୍ରୀ କିଛି ମୃଦୁ ସ୍ୱରରେ ସ୍ୱାମୀଙ୍କୁ ଜଣାଇଲେ । ମୋ କାନରେ ବାଜିଲା; କିନ୍ତୁ ଭାଷା ଅଜ୍ଞାନରୁ ବୁଝିପାରିଲି ନାହିଁ । ସ୍ୱାମୀ ମୋ ପିଠିରେ ହାତ ରଖିବାରୁ ମୁଁ ଫେରି ଚାହିଁଲି । ବଙ୍କା ଇଂରେଜୀରେ କହିଲେ, Why are you looking to the East ? Look to the west. ମୋ ଛଡା ସମସ୍ତେ ଚାହିଁଥିଲେ ପଶ୍ଚିମକୁ । ଏଠାରେ କଣ ସୂର୍ଯ୍ୟ ପଶ୍ଚିମରେ ଉଦିତ ହୁଅନ୍ତି ? ଭାବିଲି । ଦେଖୁ ଦେଖୁ ପଶ୍ଚିମ ପର୍ବତ ମାଳାର ହିମାବୃତରେ ଅପୂର୍ବ ରକ୍ତିମ ଛଟା ଭିତରୁ କ୍ରମଶଃ ଝରିଲା । ପୂର୍ବପଟ ଉଦୟର ପ୍ରତିଫଳନ । ଜାପାନୀ ବଧୂ ଦୟାକରି ପତିଙ୍କ ଦ୍ୱାରା ମୋର ଭ୍ରମ ସଂଶୋଧନ ଯଥା ସମୟରେ ନ କରାଇଥିଲେ ମୁଁ ଏ ଅକଳନୀୟ ଶୋଭାରୁ ବଞ୍ଚିତ ହୋଇଥାଆନ୍ତି । ଟାଇଗର ହିଲ୍‌ରେ ସବୁ ପ୍ରଭାତରେ ସୂର୍ଯ୍ୟକିରଣ ଦୃଶ୍ୟ ହୁଏନାହିଁ । ଅଧିକାଂଶ ଦିନ ମେଘ ଆଚ୍ଛନ୍ନ ବା କୁହୁଡି ଘେରାଥାଏ । ବହୁଥର ଯାଇ ମଧ୍ୟ ନିରାଶ ହେବାଲୋକ ଅନେକ । ମୋ କପାଳକୁ ପ୍ରଥମ ଯାତ୍ରାରେ ଦେବତାଙ୍କ କୃପା ଲାଭ ହେଲା ।

Digitized by srujanika@gmail.com

ଦାର୍ଜିଲିଙ୍ଗର ଡେପୁଟି କମିଶନର ଥାଆନ୍ତି ବି.କେ.ରାୟ, ଓଡିଶା କୋ-ଅପରେଟିଭ ସୋସାଇଟ୍‌ର ଡେପୁଟି ରେଜିଷ୍ଟ୍ରାର ଏନ୍.କେ ରାୟଙ୍କ ଭ୍ରାତା, ଯାହାଙ୍କ ସହିତ ମୋର ଘନିଷ୍ଠ ପରିଚୟ ଥିଲା । ମୋ ଦାର୍ଜିଲିଙ୍ଗ ଯାତ୍ରା ସେ ଭାଇଙ୍କୁ ଜଣାଇ ଥିଲେ । ବି.କେ. ରାୟ ସପତ୍ନୀ ସହୃଦୟତାରେ ଆପ୍ୟାୟିତ କଲେ । ବଙ୍ଗଳାର ଜଣେ ମନ୍ତ୍ରୀ ଆଜିଜୁଲ ହକ୍ ଓ ବର୍ଦ୍ଧମାନର ସରକାରୀ ଓକିଲଙ୍କ ସଙ୍ଗେ ସେଠାରେ ଆଳାପର ସୁଯୋଗ ଘଟିଥିଲା । ସରକାରୀ ଓକିଲ (ନାମ ପାଶୋର ଯାଇଛି) ବାଧ୍ୟକଲେ ମତେ ଗୋଟିଏ ଓଭର କୋର୍ଟ ତିଆରି କରାଇବାକୁ । ପଚାଶ ବର୍ଷ ହୋଇଗଲା, ସେ କୋଟଟି ଅଦ୍ୟାପି ଅଛି । ପୁଅ, ଯୋଇଁ, କାହାର ଦରକାର ହେଲେ, ବ୍ୟବହାରରେ ଲାଗୁଛି । ଦେଖିଲେ ମନେ ପଡୁଛି ଦାର୍ଜିଲିଙ୍ଗରେ ସେହି ପ୍ରଥମ ଦର୍ଶନ । ତା' ପରେ କେତେଥର ଯିବାକୁ ହୋଇଛି, ମାତ୍ର ସେ ଦାର୍ଜିଲିଙ୍ଗକୁ ନୁହେଁ । ସେଥର ସେଠାରୁ ଖଣ୍ଡିଏ ବାଡି ଆଣି ବନ୍ଧୁ ଚକ୍ରଧର ମିଶ୍ରଙ୍କୁ ଦେଇଥିଲି । ସେ ଏବେ ତାକୁ ଦେଖାଇ ସେଦିନ କଥା କହନ୍ତି । ତାଙ୍କ ସଙ୍ଗେ ଥରେ, ଦାର୍ଜିଲିଙ୍ଗ ଯିବା ପୂର୍ବରୁ, ଆସାମର ସିଲଙ୍ଗ ଯାଇଥିଲି ତାଙ୍କର ଏକ କାମରେ । ସେ ଏକ ଅଭୁଲା ଅନୁଭୂତି । କେନ୍ଦୁଝରର ରାଜା ସେଠାକୁ ଯାଇଥିଲେ ମନ ବିନୋଦନ ପାଇଁ । ତାଙ୍କ ନିକଟରୁ ମଟର ଚଳାଚଳ ସମ୍ପର୍କରେ ଅନୁମତି ଚକ୍ରଧରବାବୁଙ୍କର ଆବଶ୍ୟକ ଥିଲା । ସେଥିପାଇଁ ଦରଖାସ୍ତ ଦେବା ଓ କହିବା ପାଇଁ ଆମେ ଯାଇଥାଉ । ସେଠାରେ ବଲାଙ୍ଗିର ପାଟନାର ତରୁଣ ରାଜା, ନୟାଗଡର ଯୁବକ ରାଜାଙ୍କ ସଙ୍ଗେ ସାକ୍ଷାତ ହେଲା । ମୋ ନାଁ ସେ ଦୁହେଁ ଜାଣିଥିଲେ । ଆଳାପରେ ସୌଜନ୍ୟ ଦେଖାଇଲେ । ନୟାଗଡ ରାଜାଙ୍କର ଏକ ଦୟନୀୟ ଅବସ୍ଥାର ଚିତ୍ର ମୋ ମନରେ ଲାଗି ରହିଛି । ତାଙ୍କ ରାଣୀ ନେପାଳର ଝିଅ । ସେ ଚାଲୁଥାନ୍ତି , ବୁଲୁଥାନ୍ତି, ସିଲଙ୍ଗ କ୍ଲବରେ, ପଛେ ପଛେ ଅନୁଧାବନ କରୁଥାନ୍ତି ନୟାଗଡ ରାଜା ହାତରେ ଫାଇଲ ଧରି । କରୁଣା ପ୍ରାର୍ଥୀର କାକୁତି ଗୌର ମୁଖମଣ୍ଡଳରେ ଦିଶୁଥାଏ । ସିଲଙ୍ଗରୁ ଯାଇଥିଲୁ ଚେରାପୁଞ୍ଜୀ; ଯେଉଁଠାରେ ପୃଥିବୀରେ ସବୁଠାରୁ ବେଶୀ ବରୁଣ ଦେବଙ୍କର ଝରଣ ହୁଏ । କି ଦୁର୍ଲ୍ଲଭ ଦୃଶ୍ୟ ! ଦୁଇ ପର୍ବତ ମାଳାର ମଧ୍ୟବର୍ତ୍ତୀ ଗହ୍ୱରରେ ମେଘମାଳାର ବନ୍ଦୀତ୍ୱର ଏକ ଅସହାୟ ରୂପ । ସେଠାରେ ଗୋଟିଏ ପାହାଡୀ ବୁଢ଼ୀ ପତ୍ରଟୁଙ୍ଗୀରେ ଗୁଡ ଚା'ଦେଲା । ଚା' ନୁହେଁ, ଅମୃତବାରୀ । ସେହିପରି ଏକ ଏକ ଚିତ୍ର ଜୀବନରେ ଗୁନ୍ଥି ହୋଇ ଯାଇଛି ।

ଯଦୁନାଥ ଭବନରେ ଥିଲାବେଳେ, ପୁରୀ, ବ୍ରହ୍ମପୁର, ଖୋର୍ଦ୍ଧା ଯାଉଥିଲି କେସ୍ କରିବାକୁ । ୧୯୩୬ ଏପ୍ରିଲ ପହିଲା ଦିନ ସ୍ୱତନ୍ତ୍ର ଓଡିଶା ପ୍ରଦେଶର ଦରବାର ହେଲା, ସାର୍ ଜନ୍ ହବାକ ରାଜ୍ୟପାଳ ଶପଥ ନେଲେ । ଦେଶ ମିଶ୍ରଣ ପାଇଁ ଯେଉଁ

Digitized by srujanika@gmail.com

ଚେଷ୍ଟା ଆମେ ଉତ୍କଳ ସମ୍ମିଳନୀ ଓ ଅନ୍ୟ ଅନୁଷ୍ଠାନ ମାଧମରେ କରୁଥିଲୁ, ତାହାର କେତେକାଂଶରେ ସଫଳତା ମିଳିଲା । ୧୯୩୫ ମସିହା ଗଭର୍ଣ୍ଣମେଣ୍ଟ ଅଫ୍ ଇଣ୍ଡିଆ ଆକ୍ଟ ଅନୁସାରେ, ପ୍ରଦେଶର ସ୍ୱତନ୍ତ୍ର ଶାସନର ଭବିଷ୍ୟତରେ ଆଶାୟୀ ଥିଲୁ । ବିଧାନ ସଭାପାଇଁ ନିର୍ବାଚନରେ କଂଗ୍ରେସ ଅଂଶ ଗ୍ରହଣ ନିଷ୍ପତ୍ତି ପୂର୍ବରୁ ପାରଳାଖେମୁଣ୍ଡି ରଜା, ତାଙ୍କ ବିଶ୍ୱସ୍ତ ବ୍ରହ୍ମପୁରର ଓକିଲ ମାନ୍ଧାତା ଗୋରାଚାନ୍ଦ ପଟ୍ଟନାୟକଙ୍କୁ କଟକ ପଠାଇ, ବୀରକିଶୋର ରାୟଙ୍କ ସହାୟତାରେ ଜାତୀୟ ଦଳ ଗଠନ କରି ପ୍ରାର୍ଥୀ ଠିଆ କରିବାର ଚେଷ୍ଟା କରିଥିଲେ । ମତେ ପୁରୀ ସଦର ପାଇଁ ପ୍ରାର୍ଥୀ ବାଛିଲେ । କାଳେ ଓକାଲତିରେ ବାଧା ଉପୁଜିବ ବୋଲି ଇତସ୍ତତଃ ହେଉଥିଲି । କିନ୍ତୁ, ବୀରବାବୁ ଓ ଅନ୍ୟ କେତେକ ଓକିଲ ପ୍ରାର୍ଥୀ ଦେଉଥିବାରୁ ମୁଁ ସମ୍ମତ ହେଲି । କାର୍ଯ୍ୟ ଆରମ୍ଭ ହେଲା । କଂଗ୍ରେସ ଠିକ୍ କଲା ନିର୍ବାଚନ ଲଢ଼ିବ, ଶାସନ ହାତକୁ ନେବ ମନ୍ତ୍ରୀମଣ୍ଡଳ ଗଠନ କରି । କଂଗ୍ରେସ ପକ୍ଷରୁ ପୁରୀ ମାର୍କଣ୍ଡ ସାହି ଜଗନ୍ନାଥ ମିଶ୍ରେ ପୁରୀ ସଦର ପାଇଁ ଠିଆ ହେଲେ । ମତେ ଚିଠି ଲେଖିଲେ —

ମାର୍କଣ୍ଡ ସାହି, ପୁରୀ
୨୨/୯/୧୯୩୬

ପ୍ରିୟ ହରିହର ବାବୁ,

ଗତକାଲି ଆଚାର୍ଯ୍ୟ ମହାଶୟଙ୍କ ଠାରୁ ଶୁଣିଲି ଯେ ଆପଣ ଉତ୍ତର-ପୁରୀ ଅଞ୍ଚଳରୁ ଅର୍ଥାତ୍ ସତ୍ୟବାଦୀ, ଡେଲାଙ୍ଗ, ପିପିଲି, ବାଲିଅନ୍ତା ଓ ବାଲିପାଟନା ଥାନାମାନଙ୍କରୁ ପ୍ରାର୍ଥୀ ହେବେ ବୋଲି ଇଚ୍ଛା କରିଛନ୍ତି । ଆପଣ ପ୍ରାର୍ଥୀ ହେଲେ ମୁଁ ସେଥିର କୌଣସି ପ୍ରକାର ପ୍ରତିବନ୍ଧକ ହେବାକୁ ଇଚ୍ଛା କରୁନାହିଁ । କିନ୍ତୁ କେତେଗୁଡିଏ ଅସୁବିଧା ଉଭୟ କୂଳର ହେବ ସେଥିପାଇଁ ଏ ପତ୍ର ଲେଖୁଛି । ଆପଣ ପ୍ରାର୍ଥୀ ହେବାପାଇଁ ଟିକିଏ ଆଗରୁ ପ୍ରସ୍ତାବ କରି ଦେଇଥିଲେ ମୁଁ ଆଦୌ ଠିଆ ହୋଇ ନଥାନ୍ତି । ଆପଣ ଜାଣନ୍ତି, ଲୋକନାଥବାବୁ (ରାୟ ବାହାଦୁର) ଦକ୍ଷିଣ ପୁରୀ ଅଞ୍ଚଳରୁ ଠିଆ ହେଲେ ବୋଲି ଓ ଠିଆ ହେବା ସକାଶେ ମୋଠାରୁ ତାଙ୍କର ବ୍ୟାକୁଳତା ବା ଆଗ୍ରହ ଅତି ଅଧିକ ବୋଲି, ମୋର ତାଙ୍କଠାରୁ ଅତି ଅଧିକ ଭୋଟ ପାଇବାର ସମ୍ଭାବନା ଥିଲେ ସୁଦ୍ଧା, ମୁଁ ଠିଆ ହେଲି ନାହିଁ । କାରଣ ଆମେ ଉଭୟେ ଠିଆ ହେଲେ ଅକାରଣରେ ମୋର ପାଞ୍ଚହଜାର ଓ ତାଙ୍କର ପାଞ୍ଚହଜାର ଖର୍ଚ୍ଚ ହେବ ଓ ତା' ଉପରେ ଭୋଟରେ ଯେପରି ଜଘନ୍ୟ ବ୍ୟାପାର ହୁଏ, ମୋ ଲୋକେ ତାଙ୍କର ଅକାରଣ କୁତ୍ସା ଗାଇ ବୁଲିବେ ଓ ତାଙ୍କ ଲୋକେ ମୋର ମଧ ତଦ୍ରୂପ କରିବେ ।

Digitized by srujanika@gmail.com

ତାହାସବୁ ଅତି ଅପ୍ରୀତିକର ଓ ଶିଷ୍ଟାଚାର ବିରୁଦ୍ଧ ହେବ । ମୋର ଆଶଙ୍କା ଆପଣ ଓ ମୁଁ ଉଭୟେ ଉତ୍ତର ପୁରୀର ପ୍ରାର୍ଥୀ ହେଲେ ସେହି ଫଳଭୋଗୀ ହେବା ସିନା ? ଅନ୍ୟ କିଏ ପ୍ରାର୍ଥୀ ହୋଇଥିଲେ ଚିନ୍ତା କରିବାର ନଥିଲା । ଏହା ବର୍ତ୍ତମାନ ସବୁ ଦୃଷ୍ଟିରୁ ଆମର ଏକା ଘରରୁ ବିବାଦ ସୃଷ୍ଟି ହେଲାଭଳି ହେବ । ମୁଁ ଯଦି ଆଗରୁ ଆପଣଙ୍କର ଏ ସଂକଳ୍ପ ଜାଣିଥାନ୍ତି ତାହା ହେଲେ ମୁଁ ସବୁ ଥାନାରେ ବୁଲି, ଏଜେଣ୍ଟ ମାନ ନିଯୁକ୍ତ କରି ଯେପରି ପ୍ରଚାର ଆରମ୍ଭ କରି ଦେଲିଣି ତାହା ଆଦୌ କରି ନଥାନ୍ତି । ମୁଁ କ୍ଷାନ୍ତ ହୋଇ ଯାଇଥାନ୍ତି । ଲିଙ୍ଗରାଜ ବାବୁଙ୍କ ନାମ ଶୁଣିଥିଲି; ସେହି ହେତୁରୁ ମୋର ବନ୍ଧୁମାନେ ନାନା ପୀଡ଼ନ କଲେ ସୁଦ୍ଧା ମୁଁ ତାହା ପ୍ରତି ଦୃକ୍‌ପାତ ନକରି ତାଙ୍କୁ ଅନୁରୋଧ କରିଥିଲି ଓ କରାଇଥିଲି, କିନ୍ତୁ ଯେତେବେଳେ ସେ ନିତାନ୍ତ ମନାକଲେ ମୁଁ ଅଗ୍ରସର ହେଲି । ଆପଣଙ୍କ ନାମ ମାତ୍ର ଶୁଣିଥିଲେ ମୁଁ ଆପଣଙ୍କୁ ବାଟଛାଡି ଦେବାରେ କୁଣ୍ଠା କରି ନଥାନ୍ତି । ବରଂ କେତେକ ଦିନ ପୂର୍ବେ ଆଚାର୍ଯ୍ୟ ମହାଶୟଙ୍କ ଠାରୁ ଶୁଣିଥିଲି ଆପଣ ଠିଆ ହେବେ ନାହିଁ ।

ଅତଏବ ଏ ସବୁ ଦୃଷ୍ଟିରୁ ଆପଣ ଫେରନ୍ତା ଡାକରେ ଆପଣଙ୍କ ମତାମତ ଲେଖିଲେ ମୁଁ ଟିକିଏ ଆଶ୍ୱସ୍ତ ହେବି । ବର୍ତ୍ତମାନ ଯେପରି ଅବସ୍ଥା ସେଥିରେ କାଳବିଳମ୍ବ କ୍ଷତିକାରକ । ସେହି ହେତୁରୁ ଶୀଘ୍ର ଉତ୍ତର ପାଇବାକୁ ଲେଖୁଛି ।

ଆଶା ଭଲ ଥିବେ । ଆମ୍ଭମାନଙ୍କର ସମସ୍ତ ମଙ୍ଗଳ । ଶଙ୍କର ବୋଧହୁଏ ତା'ର ପିଲାମାନଙ୍କୁ ନେଇ କଲିକତା ଚାରିପାଞ୍ଚ ଦିନ ବୁଲିବାକୁ ଯିବ । ଇତି ।

ଆପଣଙ୍କର

ଶ୍ରୀ ଜଗନ୍ନାଥ ମିଶ୍ର

ଚିଠି ଏକାଧିକବାର ପଢ଼ିଲି । ଜଗନ୍ନାଥ ମିଶ୍ରେ ନିକଟ ସମ୍ପର୍କ ବନ୍ଧୁ । ସେ ପୂରା ସମୟ ଦେଇପାରିବେ ଜନସେବାରେ । ନିଜେ ଧନୀ, ଅନ୍ୟବୃତ୍ତି ଅବଲମ୍ବନ ଅନାବଶ୍ୟକ; ଯଦିଓ ଓକାଲତିରେ ନାମ ଲେଖାଇଥିଲେ । ଠିକ୍ କଲି, ମୁଁ ଓହରି ଯିବି । ତାଙ୍କୁ ଫେରନ୍ତା ଡାକରେ ତାହା ଜଣାଇ ଦେଲି । ପତ୍ର ଆସିଲା ।

ମାର୍କଣ୍ଡ ସାହି, ପୁରୀ

୨/୧/୩୬ *

ପ୍ରିୟ ହରିହର ବାବୁ,

ମୋର କୃତଜ୍ଞତା ପ୍ରକାଶ କରିବାକୁ ଯଥେଷ୍ଟ ଭାଷା ପାଉନାହିଁ । ଆପଣଙ୍କ ପତ୍ର ପଢୁ ପଢୁ ମୋର ଭାବରାଶି ଏତେ ଉଦ୍‌ବେଳିତ ହେଲା ଯେ ମୋ ଆଖି ଛଳ

---

* ଘଟଣା କ୍ରମରେ ତାରିଖ ୨/୧/୩୭ ହେଲେ ଠିକ୍ ମନେହୁଏ । — ପ୍ରକାଶକ

Digitized by srujanika@gmail.com

ଛଳ ହୋଇ ଆସିଲା । ବହୁ କଷ୍ଟରେ ଭାବ ସମ୍ବରଣ କଲି । ଆପଣଙ୍କର ପତ୍ରର ଲେଖାଗୁଡିକ ମୋତେ ଆପଣଙ୍କ ନିକଟରେ ଗୋଟିଏ ଶକ୍ତ ବନ୍ଧନରେ ବାନ୍ଧି ପକାଇଲା । ଆପଣଙ୍କ ତ୍ୟାଗ ବିଷୟ ମଧ ମନେ ମନେ ଆଲୋଡିତ ହୋଇଗଲା । ସେତେବେଳେ ମୁଁ ନିଜକୁ ବଡ ଲଜ୍ଜିତ ମଧ ମନେ କଲି । କେତେ କ'ଣ ସବୁ ମନ ଭିତରକୁ ଆସିଲା । ଶେଷରେ ଅପର ପକ୍ଷର ପିତୃ ଶ୍ରାଦ୍ଧରେ ବ୍ୟାପୃତ ହୋଇ ମନକୁ ବଦଳାଇଲି ।

ଯାହାହେଉ, ମୁଁ ଖୁବ୍ ଆଶ୍ୱସ୍ତ ହେଲି; କାରଣ ଦିନକୁ ଦିନ ଜଗତ୍ ତାର ସମସ୍ତ କୁଟିଳତାକୁ ମୋର ସମ୍ମୁଖରେ ପ୍ରକାଶ କରୁଥିଲା । ଆପଣଙ୍କର ଯେ ସମର୍ଥକ ଓ ଯେଉଁମାନଙ୍କଠାରୁ ମୁଁ ନ୍ୟାୟତଃ ବା ଧର୍ମତଃ କୌଣସି ସାହାଯ୍ୟ ଦାବୀ କରି ନପାରେ ସେମାନେ ଅତି ସାମାନ୍ୟ ଅନୁରୋଧରେ ମୋର ପକ୍ଷ ସମର୍ଥନ କରିବାକୁ ରାଜି ହୋଇ ଯାଉଥିଲେ । ମୁଁ ଭାବୁଥାଏ, ଏମାନେ ମୋ ନିକଟରେ ହେଉ କିମ୍ବା ମହାପାତ୍ରଙ୍କ ନିକଟରେ ହେଉ ନିଜର କୁଟିଳ କାର୍ଯ୍ୟ କରିବେ । ଏହିପରି ଗୋଟିଏ ଗୋଟିଏ ହୋଇ କେତେ ବିଭତ୍ସ ବ୍ୟାପାର ଆସି ଆଖି ଆଗରେ ପଡି ମୋତେ ଅସ୍ଥିର ଓ ଉଦ୍‌ବିଗ୍ନ କରୁଥିଲା । ଆପଣଙ୍କ ପତ୍ର ଦ୍ୱାରା ମୋର ଦୁଶ୍ଚିନ୍ତା ସବୁ ଦୂର ହେଲା ।

ଭାଗବାନ ମତେ ବଳ ଦିଅନ୍ତୁ, ମୁଁ ଆପଣଙ୍କର ଋଣ ଭାରରୁ ମୁକ୍ତ ହୁଏ । ସମସ୍ତ ମଙ୍ଗଳ । ଇତି ।

ଆପଣଙ୍କର

ଶ୍ରୀ ଜଗନ୍ନାଥ ମିଶ୍ର

ମୋର ନିର୍ବାଚନ ଯବନିକା ପଡିଲା । ଜଗନ୍ନାଥବାବୁ ବିଜୟୀ ହୋଇ ବିଶ୍ୱନାଥ ଦାସଙ୍କ ମନ୍ତ୍ରୀମଣ୍ଡଳରେ ପାର୍ଲିଆମେଣ୍ଟାରୀ ସେକ୍ରେଟାରୀ ହେଲେ ।

ସେହିବର୍ଷ ନିଖିଳ ଛାତ୍ର ସମ୍ମିଳନୀ ଅଧିବେଶନରେ କଟକ ଟାଉନ ହଲ୍ ପଡିଆରେ ସଭାପତି ହୋଇଥିଲି । ଚାଇବାସା ସ୍କୁଲରେ ପଢ଼ିବା ବେଳେ ଛାତ୍ର ସମ୍ମିଳନୀ ପାଇଁ ଚାନ୍ଦା ଉଠାଇ ଦଣ୍ଡିତ ହୋଇଥିଲି । ରେଭେନ୍‌ସା କଲେଜରେ ବି.ଏ. ପଢ଼ିଲା ବେଳେ ସମ୍ମିଳନୀର ସମ୍ପାଦକ ହୋଇଥିଲି । ଗୋଦାବରୀଶବାବୁଙ୍କୁ (ପଣ୍ଡିତ ଗୋଦାବରୀଶ ମିଶ୍ର) ସଭାପତି କରିଥିବାରୁ ସରକାରଙ୍କର କୋପ ଦୃଷ୍ଟିରେ ପଡିଥିଲି ।

Digitized by srujanika@gmail.com

ସେ ସବୁ ଦୁଃଖର ପୂରଣ ପାଇଁ ଏହା ମିଳିଲା କି ? ଅଭିଭାଷଣ ମୌଖିକ ଓ ଇଂରେଜୀରେ ଥିଲା । ପିଲା ଓ ଗୁରୁଜନମାନଙ୍କ ପାଖରେ ଆଦୃତ ହେବା ସେମାନଙ୍କର ଉଦାରତାର ଫଳ । କେତେକ ବୟସ୍କ ଓକିଲ ଓ ଉଚ୍ଚପଦସ୍ଥ ଅଫିସର ସେଠାରେ ସେ ସମୟରେ ଉପସ୍ଥିତ ଥିବାରେ ମୁଁ ଆଶ୍ଚର୍ଯ୍ୟ ବୋଧ କରିଥିଲି । ଦୁଇ ଦିନ ଅଧିବେଶନ ନିର୍ବିଘ୍ନରେ ହେଲା । କମ୍ୟୁନିଷ୍ଟ ଯୁବକମାନେ ମଝିରେ ତାଙ୍କର ଆଭିମୁଖ୍ୟ ପ୍ରକାଶ କରିବା ପାଇଁ ମୁଁ ସୁବିଧା ଦେଉଥିବାରୁ ସେମାନେ ସନ୍ତୁଷ୍ଟ ହେଲେ ।

ସେତେବେଳେ ମୁଁ ସଂପୃକ୍ତ ଥିବା ଅନ୍ୟ ଏକ ଘଟଣା ମନରୁ ଯାଇ ନାହିଁ । ଗୋଦାବରୀଶ ବାବୁ କଟକ ଆସିଲେ, ମୁଁ ବସାବାନ୍ଧିବା ପରଠାରୁ, ଆମ ଘରେ ଉଠୁଥିଲେ । ଚାଳଘରେ ବାଟ ଘରଟିରେ ସେ ରହୁଥିଲେ । ଯଦୁନାଥ ଭବନରେ ବସିବା ଘରେ ରହନ୍ତି । ସେଠାରୁ ବସା ଭାଙ୍ଗିଲା ପରେ ଆଉ ଆମ ଘରେ ରହିବା ଆବଶ୍ୟକ ପଡିଲା ନାହିଁ , କାରଣ ତାଙ୍କର ନିଜର ବସାଘର ବାନ୍ଧିଲେ । ତାଙ୍କ ପାଖରେ ବହୁବର୍ଷ ଧରି ସୁଦର୍ଶନ ପାଣିଗ୍ରାହୀ ଚଳୁଥିଲେ । ବିହାର ଓଡିଶା ବିଧାନସଭାରେ ମେମ୍ବର ଥିଲାବେଳେ ଓ ଅନ୍ୟାନ୍ୟ ସମୟରେ ତାଙ୍କ ସଙ୍ଗେ ବରାବର ସବୁ ସ୍ଥାନକୁ ଯାଉଥିଲେ । ପରିବାରରେ ସୁଦର୍ଶନବାବୁଙ୍କ ଆଧିପତ୍ୟ ଗୋଦାବରୀଶବାବୁଙ୍କ ଠାରୁ ବରଂ ଅଧିକ ଥିଲା । ତାଙ୍କର ବିବାହ ଗୋଦାବରୀଶ ବାବୁଙ୍କ ପାଖରେ ଓ ଗୋଦାବରୀଶ ବାବୁଙ୍କ ଘରେ ଥିଲାବେଳେ ହୋଇଥିଲା । ଗୋଦାବରୀଶ ବାବୁଙ୍କ ଟଙ୍କା ପଇସା, ଘର ବାହାର କଥା ସବୁ ସେ (ସୁଦର୍ଶନବାବୁ) ବୁଝୁଥିଲେ । ଗୋଦାବରୀଶ ବାବୁଙ୍କ ବଡଝିଅ ତାରାମଣିଙ୍କର ବିବାହ ମେଦିନପୁର ଜିଲ୍ଲା ବେଲିଆ ବେଡ଼ା ଜମିଦାର ବିଶ୍ୱମ୍ବର ପ୍ରହରାଜଙ୍କ ସଙ୍ଗେ ମହା ପଟାଟୋପରେ (୧୯୨୮) ହେଲାବେଳେ ଗୋଦାବରୀଶ ବାବୁଙ୍କ ଘର ପିଣ୍ଡାରେ ବାକ୍ସ ଧରି ସୁଦର୍ଶନବାବୁ ସବୁ ବୁଝାବୁଝି କରୁଥିବାରୁ ଦେଖିଥିଲି । । ସବୁଦିନ ସମାନ ଯାଏ ନାହିଁ । ଦୁହିଁଙ୍କ ମଧ୍ୟରେ ମନାନ୍ତର ଘଟିଲା, ଅପଡ ହେଲା । ସୁଦର୍ଶନବାବୁ ଚାରିଆଡେ ଗୋଦାବରୀଶ ବାବୁଙ୍କର ଦୁର୍ନାମ ଗାଇଲେ, କ୍ଷତି କରିବାକୁ ସୁବିଧା ଖୋଜିଲେ । ରାଜନୀତିରେ ପଙ୍କ ଘାଣ୍ଟିବାକୁ ଲୋକେ ବେଳ ଉଣ୍ଡୁଥାନ୍ତି । ସୁଦର୍ଶନବାବୁଙ୍କୁ ଟିହାଇବା ଲୋକର ଅଭାବ ନଥିଲା । ରାଧାନାଥବାବୁ (ସମାଜ) ଓ ମୁଁ ସେ ଦୁହିଁଙ୍କୁ ଦିନେ ଦିପହରେ ଆମ ଘରେ ଏକାଠି କରାଇ ମିଳାମିଶାର ଚେଷ୍ଟା କଲୁ । ରାଧାନାଥବାବୁ ଭାବବିହ୍ୱଳ ହୋଇ କାନ୍ଦିଲେ, ମୁଁ ମନାନ୍ତରର ମଞ୍ଜି ଖୋଜିଲି । ସନ୍ଦେହ କୀଟ ଥରେ ପଶିଲେ ବନ୍ଧୁତା, ମମତା କୁଟୁ କୁଟୁ ହୋଇଯାଏ । ତିନି ଚାରି ଘଣ୍ଟାରୁ ଅଧିକ କଥାବାର୍ତ୍ତା,

Digitized by srujanika@gmail.com

ଆମ ଉଭୟଙ୍କ କାକୁତି ମିନତି ପରେ ସ୍ଥିର ହେଲା ସୁଦର୍ଶନବାବୁ ଅଲଗା ରହିବେ ହଜାରେ ଟଙ୍କା ନେଇ ଏବଂ ଆଉ ବାରଲୋକଙ୍କ ଆଗେ କାହାର କଥା ଲଗେଇ ଯୋଡେଇ କହି ବୁଲିବେ ନାହିଁ । ପରେ ହଜାରେ ଟଙ୍କା ନେଇ ଦିନେ ରାତିରେ ରାଧାନାଥ ବାବୁ, ମୁଁ ଓ ଗୋଦାବରୀଶବାବୁ ମଟରରେ ଗଲୁ ବାଣପୁର ସୁଦର୍ଶନବାବୁଙ୍କୁ ଦେବାପାଇଁ । ଗୋଦାବରୀଶବାବୁ ଏକୁଟିଆ ଚଳିପାରନ୍ତି ନାହିଁ । ପାଖରେ ଜଣକ ଉପରେ ସର୍ବଦା ନିର୍ଭର ତାଙ୍କର ଆବଶ୍ୟକ । ସୁଦର୍ଶନବାବୁ ପ୍ରାୟ ୧୪ ବର୍ଷ ସେପରି ନିର୍ଭରତା ରକ୍ଷା କରୁଥିଲେ । ସେ ଅଲଗା ହେବା ପରେ, ଗୋପୀନାଥ ତାଙ୍କ ସ୍ଥାନ ପୂରଣ କଲେ, ଅଧିକା ରୋଷେଇ ଭାର ମଧ ତାଙ୍କ ଉପରେ ରହିଲା ।

୧୯୩୬ ଶେଷବେଳକୁ ଘର ମାଲିକ କହିଲେ ଆମକୁ ଘର ଛାଡି ବାକୁ । ଦୈବାତ୍ ସେହି ସମୟରେ ସବ୍‌ଜଜ୍ କୋର୍ଟରେ ଭିଙ୍ଗାରପୁର କମନ ଇଷ୍ଟେଟର ଗୋଟିଏ ଅତି ପୁରୁଣା ବଣ୍ଟନ ମକଦ୍ଦମାର ଶେଷ ପର୍ଯ୍ୟାୟ ଚାଲିଥାଏ । ଅନ୍ୟ କେତେକଙ୍କ ସଙ୍ଗେ ମୁଁ ମଧ ସେଥିରେ ଓକିଲ ଥାଏ । ରମେଶ ଚନ୍ଦ୍ର ମିତ୍ର ସବ୍‌ଜଜ୍ ଥାଆନ୍ତି । ଚାନ୍ଦିନୀଚୌକ ଛକ ପାଖରେ ସେ କମନ ଇଷ୍ଟେଟର ଖଣ୍ଡିଏ ପାଞ୍ଚଗୁଣ୍ଠର ଖାସ ମାହାଲ୍ ଲିଜ୍ ଜାଗା ଥାଏ । ଲିଜ୍ ସରିଥାଏ । ପୁନି ଲିଜ୍ ନ ହେଲେ ଖାସମାହାଲକୁ ବାଜ୍ୟାପ୍ତ ହେବାର କଥା । ମୁଁ ଭଡାଘର ଦରକାର କରୁଥିବା ସେ ଜାଣିଥିଲେ, କାରଣ କଟକ ସହରରେ ତାଙ୍କର କେତେଖଣ୍ଡି ଘର ଭଡାରେ ଲାଗୁଥିଲା । ସେ ମତେ ତାଙ୍କ ଚେମ୍ବରକୁ ଡକାଇ କହିଲେ, ସେ ଜାଗା ମୁଁ ନେଇପାରିବି ଇଷ୍ଟେଟରୁ ବା ଖାସମାହାଲରୁ । ଜରସମନ ଅଳ୍ପ ହେବ । ମୁଁ କିଛି ନ ବିଚାରି ହଁ ଭରିଲି, ଜାଗା ଆପେ ଆପେ ଆସିଯାଉଛି ବୋଲି । ସବ୍‌ଜଜ୍ ତାହାର ସୁବିଧା କରିଦେଲେ ଇଜଲାସରେ ଉପସ୍ଥିତ ସବୁ ପକ୍ଷଙ୍କ ସମ୍ମତିରେ । ୧୯୩୭ ଜାନୁୟାରୀ ପହିଲା ଦିନ ସେଠାରେ ଘର ତୋଳିବା ଶୁଭ ଦିଆହେଲା । ଜାଗା ଉପରେ ଯେଉଁ ବହୁ ପୁରୁଣା ଛୋଟ ଘରଟି ଥିଲା, ତାହା ଭଙ୍ଗା ହେଲା ।



Digitized by srujanika@gmail.com

# ନୂଆ ଘର ଓ ବିଘ୍ନ

ଭଡାଘର ଛାଡିବା ତାକିଦାରେ ଘର ତୋଳାଇବା ଉପରେ ଯୋର ଦେବାକୁ ପଡିଲା । ଡେପୁଟି ଉଦୟନାଥ ରଥଙ୍କର ସନ୍‌ସାଇନ୍ ଫିଲଡ୍ ପାଖେ ଏକ ଦୋତାଲା ଘର ସେତେବେଳକୁ ଶେଷ ହୋଇଥାଏ । ତାଙ୍କ ସହିତ ହଠାତ୍ ସାକ୍ଷାତ ଓ ଆଳାପ ପରେ ତାଙ୍କ କୋଠା କାମ ଶେଷ କରିଥିବା ମହନ ମିସ୍ତ୍ରୀକୁ ପଠାଇଲେ । ମହନର ଘର ଡଗରପଡାରେ, ଆମ ଜାଗାଠାରୁ ଡାକେବାଟରୁ କମ୍ । ସେ ରହିଲା ଆମ କାମରେ । ଲୋକ ସଚ୍ଚୋଟ, କାମରେ ନିପୂଣ । ମୂଲିଆ ମୂଲ ତିନିଅଣା, ଟୋକା ମୂଲିଆ ଚାରିପଇସା; ମାଇପି ମୂଲିଆ ଦୁଇଅଣା । କାମ ଦିନରାତି ଚାଲିଲା । କଚେରୀ ଫେରନ୍ତା ଦିନେ ଶୁଣିଲି, କିଏ ଦୁଇଜଣ ଆସି ଜାଗା ମାପଚୁପ୍ କରିଥିଲେ ଦିନବେଳେ । ଦୁଇଦିନ ପରେ ମୁନିସପାଲିଟିର ନୋଟିସ ଆସିଲା ସେ ଜାଗାର ପୂର୍ବ ଅଧକରେ ଘର ନ କରିବାକୁ ।

ରାମି (ରାମଚନ୍ଦ୍ର ମିଶ୍ର) ମୋର ସ୍କୁଲବେଳର ବନ୍ଧୁ । କିରାଣୀ ଚାକିରୀ କରେ, କିନ୍ତୁ ଲାଟ ମିଜାଜ । ଅତି ସ୍ନେହୀ । ବକ୍‌ସିବଜାର ପେନସନ୍ ଗଳିରେ ଭଡାଘରେ ଥାଏ ବିଧବା ମା ସାଙ୍ଗରେ । ଘର ପୁରୀ ଜିଲ୍ଲା ବୀର ପ୍ରତାପପୁର । ରାୟବାହାଦୁର ବୈଦ୍ୟନାଥ ମିଶ୍ରଙ୍କ ପୁତୁରା । ଅବିବାହିତ । ଇଚ୍ଛା କଲା ବିବାହ ପାଇଁ । ମୋ ସ୍ତ୍ରୀଙ୍କର କକେଇ ଝିଅ ଭଉଣୀ ଅଳ୍ପ ଦିନରେ ବିଧବା ହୋଇଯାଇଥାଏ । ପିତୃହୀନା ହେଲେ ମଧ ଭାଇ, ବୋଉଙ୍କ ପାଖେ ବାପଘରେ ଭିଙ୍ଗାରପୁରରେ ଥାଏ । ତାରି ସାଙ୍ଗେ ବିବାହ ପ୍ରସ୍ତାବ ହେଲା । ଚୌଧୁରୀ କୂଳରେ ବିଧବା ବିବାହ ଅଜଣା । ତଥାପି ଭାଇମାନେ ଓ ତାଙ୍କର ଭିଣୋଇ ଲକ୍ଷ୍ମଣ ମିଶ୍ରେ (ପୁଲିସ ସବ୍‌ଇନସ୍‌ପେକ୍ଟର, ପରେ ସୁପରିଣ୍ଟେଣ୍ଡେଣ୍ଟ ହୋଇ ଅବସର ନେଲେ ଓ କବିରାଜିରେ ଦକ୍ଷତା ଲଭି ସୁନାମ ଅର୍ଜିଲେ) ସେଥିପାଇଁ ଆଗଭର ହେଲେ । ମତେ ବ୍ରଜ (ବିଧବାର ବଡଭାଇ ବ୍ରଜସୁନ୍ଦର ଦାଶ ଚୌଧୁରୀ) ଆସି ପଚାରନ୍ତେ, ମୁଁ କହିଲି, ଏ କ୍ଷେତ୍ରରେ ବିଧବା

Digitized by srujanika@gmail.com

ବିବାହ ଅବଶ୍ୟ କରଣୀୟ । ପ୍ରସ୍ତାବିତ ପାତ୍ର ରାମିକୁ ପିଲାଦିନୁ ମୁଁ ଜାଣେ । ସଚ୍ଚୋଟ ଲୋକ, ସ୍ନେହୀ । ତା ମିଜାଜ ବଡ କଡା ଯାହା । ଲକ୍ଷ୍ମଣ ମିଶ୍ରଙ୍କ ଗାଁର (ବୀର ପ୍ରତାପପୁର) ସେ । ବିବାହ ସ୍ଥିର ହେଲା । କିନ୍ତୁ ମୋ ଦୁର୍ଭାଗ୍ୟକୁ, ବ୍ରଜ ରାମିକୁ କଣ କହିଲା କେଜାଣି, ରାମିର ଧାରଣା ହେଲା ମୁଁ ତା ବିରୁଦ୍ଧରେ କହି ବିବାହ ଭାଙ୍ଗି ଦେବାକୁ ଚାହୁଁଥିଲି । ହା, ଦଇବ । ମୁଁ ବ୍ୟଗ୍ର ଥିଲି, ବିଧବା ଝିଅଟି କୂଳରେ ଲାଗୁ, ରାମି ଘର କରୁ । ରାମି ବି ମତେ କିଛି ପଚାରିଲା ନାହିଁ। ବିବାହକୁ ମତେ ନ ଡାକିଥିଲେ ମଧ୍ୟ ଯାଇ ପହଞ୍ଚିଥିଲି । ମତେ କଥା କହିଲା ନାହିଁ । ମୋ ପଛରେ ଲାଗିଲା ସେହିଦିନୁ । ବ୍ରଜ ସାନଭାଇ ସଚ୍ଚିକୁ ଲଗାଇ ମୁନିସ୍‌ପାଲଟିରେ ଦରଖାସ୍ତ ଦିଆଇଲା ଯେ ଚାନ୍ଦିନୀଚଉକ ଖାସମାହାଲ ଲିଜ୍ ଜାଗା କମନ୍‌ଇଷ୍ଟେଟର ଥିବାଯୋଗୁ ସେ ଜଣେ ଅଂଶୀଦାର ଭାବରେ ସେ ଜାଗାରେ ସ୍ୱତ୍ୱବାନ୍ ଓ ତା ଅଜାଣତରେ ମୁନିସ୍‌ପାଲିଟି ଘର ତିଆରି ପାଇଁ ଯେଉଁ ମଞ୍ଜୁର ଦେଇଛି, ତା ରଦ୍ କରାଯାଉ ଓ ବର୍ତ୍ତମାନ ପାଇଁ ଘର ତିଆରି ବନ୍ଦ ରହୁ, ଅନ୍ତତଃ ଜାଗାର ପୂର୍ବ ଅଧକରେ । ଏହି ଦରଖାସ୍ତ ଉପରେ, ରାମି ନିଜେ ଜଣେ ସରକାରୀ ଅଫିସରେ କିରାଣୀ ଥିବାରୁ ମୁନିସ୍‌ପାଲିଟି ଅଫିସର କିରାଣୀଙ୍କୁ ଧରି ନିଷେଧ ନୋଟିସ ଜାରି କରାଇଲା ମୋ ଉପରେ । ରାମି ଏପରି କରିବାରେ ମୁଁ ଅତ୍ୟନ୍ତ ମର୍ମାହତ ହେଲି । ଭାଗ୍ୟକୁ ମଞ୍ଜୁରୀ ନକ୍ସା ଅନୁସାରେ, ପୂର୍ବ ଅଧକରେ କେବଳ ଗୋଟିଏ ବାରନ୍ଦା, ପୋର୍ଟିକୋ ଓ ଛୋଟ ଘର ଥିଲା । ସେତକ ବାଦ୍ ଦେଇ ଘରତୋଳା ଅବ୍ୟାହତ ରହିଲା । ମାତ୍ର ପାଞ୍ଚମାସରେ ଏକତାଲା ସାରି ୧୯୩୭ ମେ ମାସ ୨୨ ତାରିଖରେ ପୁରୀରୁ ପଖାଳ ମହାପ୍ରସାଦ ଆଣି ଗୃହ ପ୍ରତିଷ୍ଠା ପଣ୍ଡିତ ବାମନ ଆଚାର୍ଯ୍ୟଙ୍କ ଦ୍ୱାରା କରାଇ ନୂଆ ଘରେ ରହିଲୁ । ନନା ଓ ବୋଉ ଆସିଥିଲେ । ପରିଜା ସାହେବ, ବ୍ରଜସୁନ୍ଦର ଦାସ (ମୁକୁର ସମ୍ପାଦକ), ରାଏ ସାହେବ ଉମାଚରଣ ଦାସ, ବିଚିତ୍ରାନନ୍ଦ ଦାସ, ସତ୍ୟନାରାୟଣ ସେନଗୁପ୍ତ, ଅଧ୍ୟାପକ ବିପିନବିହାରୀ ରାୟ ପ୍ରମୁଖ ଅନେକ ପ୍ରତିଷ୍ଠିତ ବ୍ୟକ୍ତି ଆସିଥିଲେ । ମୋ ସମବୟସୀ ଓ ବନ୍ଧୁମାନେ ମଧ୍ୟ । ରାମି ଆସିଲା ନାହିଁ, ଡାକିବା ସତ୍ତ୍ୱେ ।

କେତେକଦିନ ପରେ ମୁନିସ୍‌ପାଲିଟି ମକଦ୍ଦମା ଛିଣ୍ଡିଲା । କମନ ଇଷ୍ଟେଟ ବଣ୍ଟନ ଅନୁସାରେ ଆପତ୍ତି ଦରଖାସ୍ତ ଓ ନିଷେଧ ନୋଟିସର ଯଥାର୍ଥତା ନଥିବା ସାବ୍ୟସ୍ତ ହେଲା । ବାରନ୍ଦା, ପୋର୍ଟିକୋ ମୁଁ ତିଆରି କରିଦେଲି । ଏକତାଲା ଘରେ ଖର୍ଚ୍ଚ ହେଲା ଅଠତ୍ରିଶ ହଜାର ଟଙ୍କା । ଓକାଲତିର ମାତ୍ର ପାଞ୍ଚ ବରଷରେ, ଏତେ

Digitized by srujanika@gmail.com

ବ୍ୟୟର ଘର ଆଲୋଚିତ ହେବା କଥା, ହେଲା । ଆଗରେ ବାହାବା, ପଛରେ କଟୁକଥା, କାନକୁ ଆସୁଥାଏ । ସୁବାରାଓ ଓକିଲଙ୍କଠାରୁ ବାରହଜାର ଟଙ୍କା, ପରିଜା ସାହେବଙ୍କଠାରୁ ଏକହଜାର ଟଙ୍କା ଧାର କରିଥିଲି । ଇଟା, ଚୂନ, ଛଡ ବାବଦରେ ଧାର ମଧ ଥିଲା । ସେ ସବୁ ଶୁଝିଲି ପରେ କ୍ରମେ, କ୍ରମେ । ସୁବାରାଓଙ୍କୁ ସୁଧ ୧୨ ଟଙ୍କା ଦେବାକୁ ହେଲା । ମୋ ଦଦେଇ (ଦାମୋଦର ମହାପାତ୍ରେ) ଦିନେ କଟକ ଆସି ମତେ ଗାଳି ଦେଲେ, ସୁବାରାଓଙ୍କ ଠାରୁ କାହିଁକି ଏତେ ଟଙ୍କା କରଜ କଲି ବୋଲି । ବୋଧହୁଏ ମତେ ନିନ୍ଦା କରୁଥିବା କାହାରିଠାରୁ ସେ ଶୁଣିଥିବେ ।

ଘରର ଦୁଇଟି ବିଶେଷତ୍ୱ ଥିଲା । କଟକରେ ଏହାଥିଲା ପ୍ରଥମ ଶୂନ୍ ଛାତ । ଭାଗବତ ମହାନ୍ତି ପାଟନା ଇଞ୍ଜିନିୟରିଙ୍ଗ କଲେଜରୁ ବି.ଇ.ପାଶ୍ କରି ସରକାରୀ ଚାକିରୀରେ ନ ପଶି ତାଙ୍କର ଜଣେ ସହପାଠୀ ଇଞ୍ଜିନିୟର ସାମୁଏଲଙ୍କ ସଙ୍ଗେ ମିଶି କଣ୍ଟ୍ରାକ୍ଟରୀ ବ୍ୟବସାୟ ଆରମ୍ଭ କଲେ । ତାଙ୍କରି କଥାରେ ଓ ଦେଖା ଶୁଣାରେ କଂକ୍ରିଟ ଢ଼ଳେଇ ଛାତ ଘରେ ପଡିଲା । ତାହା ପୂର୍ବରୁ କେବଳ ଷ୍ଟେସନ୍ ପାଖ ନୂଆ ରେଭେନ୍ସା କଲେଜ ୧୯୨୧ ରେ ହୋଇଥିଲାବେଳେ ଇଟା ରିଇନଫୋର୍ସ ଛାତ ହୋଇଥିଲା, କଲିକତା ମାର୍ଟିନ୍ ବର୍ଣ୍ଣ କମ୍ପାନୀଙ୍କ ଦ୍ୱାରା । ଅନ୍ୟ କୌଣସି ସରକାରୀ ବା ଘରୋଇ ଲୋକ କଂକ୍ରିଟ୍ ଢ଼ଳେଇ ଛାତ କରି ନଥିଲେ । ତାକୁ ସେତେବେଳେ ଶୂନ୍ଛାତ କହୁଥିଲେ । ଆମ ଛାତ ପଡିଲାବେଳେ ଲୋକେ ଆସୁଥିଲେ ଦେଖିବାକୁ; କଡି, ବରଗା, ଟାଇଲ ନ ଦେଇ ଖାଲି ତାର ଗୋଡି ସିମେଣ୍ଟରେ ଛାତ କିପରି ହେଉଛି । ବାହାର ପଟ ପୋର୍ଟିକୋକୁ ଲାଗି ବାରନ୍ଦା ଢ଼ଳେଇ ହେଲାବେଳେ ଜଣେ ମିସ୍ତ୍ରୀ ଓପରୁ ତଳକୁ ଗଳିପଡି ମୂର୍ଚ୍ଛା ହୋଇଗଲା । ଆମେ ସବୁ ତଟସ୍ଥ ହୋଇଗଲୁ । ଛିଞ୍ଚାବିଞ୍ଚା କରିବାରେ ସାଷ୍ଟାମ ହେଲା । ପୁଲିସ ଡେପୁଟି ସୁପରିଣ୍ଟେଣ୍ଡେଣ୍ଟ ସତୀଶ ବାନାର୍ଜୀ ଆସିଲେ ଘଟନା ବୁଝିବାକୁ । ସେ ନୂଆଘର ଦେଖି ଖୁସିହେଲେ । କହିଲେ ଏତେ ତ କଲେ, କଳ ପାଇଖାନା କରୁ ନାହାନ୍ତି କାହିଁକି ? କଲିକତାରେ କେଉଁଠି ମିସ୍ତ୍ରୀ ମିଳିବେ, ଠିକଣା ଦେଲେ । ମୁଁ ପାଟନା ହାଇକୋର୍ଟକୁ କେସ୍‌ରେ ପ୍ରାୟ ପ୍ରତି ମାସରେ ଥରେ ଅଧେ ଯାଉଥାଏ କଲିକତା ବାଟେ । ସାନିଟାରୀ ମିସ୍ତ୍ରୀ ଓ ସରଞ୍ଜାମ ଆଣି, ଗାଧୁଆ ଘରମାନଙ୍କରେ ସାନିଟାରୀ ପାଇଖାନା, ବେସିନ୍ ଲଗାଇଲି । କଲିକତାରେ ଏ.ଟି.ଆଲି ହୁସେନ (ଷ୍ଟ୍ରାଣ୍ଡରୋଡ) ଠାରୁ ପମ୍ପଆଣି ଅଗଣାରେ ଟିଉବ୍‌ୱେଲ କରି ପାଣି ଗାଧୁଆ ଘରକୁ ଯିବାର ବନ୍ଦୋବସ୍ତ ହେଲା । କଟକରେ ପାଣି ସପ୍ଲାଇ ହୋଇ ନଥାଏ ।

Digitized by srujanika@gmail.com

ଆମଘରେ ଯେଉଁ ମିସ୍ତ୍ରୀ ସାନିଟାରୀ କାମ କଲା; ସେ ତାପରେ ଡାକ୍ତର ଜୟନ୍ତ ରାଓ ଓ ସତୀଶ ବାନାର୍ଜୀଙ୍କ ଘରେ ସେପ୍‌ଟିକ୍ ଟ୍ୟାଙ୍କ, ସାନିଟାରୀ ପାଇଖାନା ବସାଇଲା । ଶୁନ୍‌ଛାତ, କଳ ପାଇଖାନା, ଶୂନ୍ୟେ ଶୂନ୍ୟେ ଆମ ଘରେ ପ୍ରଥମେ ହୋଇଗଲା ।

ରାମି ଘର ତୋଳିବାରେ ବାଧା କରାଇଥିଲା, ପ୍ରତିଷ୍ଠାକୁ ଆସିଲା ନାହିଁ । ସାଥି ଥିଲା, ବନ୍ଧୁ ହେଲା ମୋ ସ୍ତ୍ରୀଙ୍କ କକେଇ ଝିଅ ଭଉଣୀକୁ ବିଭା ହୋଇ । କିନ୍ତୁ ଦୂରେଇ ରହିଲା । କେତେବର୍ଷ ପରେ ହଠାତ୍ ଦିନେ ରାତି ନଅଟାବେଳେ ଆମଘର ପାଖ ରାସ୍ତା ଉପରେ ଠିଆହୋଇ ମତେ ଖବର ପଠାଇଲା । ମୁଁ ଯାଇ ଦେଖେ ଶୁଖିଲା ମୁହଁରେ ଠିଆ ହୋଇଛି । ପଚାରି ବୁଝିଲି, ବିପଦରେ ପଡିଛି, ରାତି ଭିତରେ ହଜାରେ ଟଙ୍କା ଲୋଡା । ଅନ୍ୟତ୍ର ଚେଷ୍ଟା କରି ବ୍ୟର୍ଥ ହୋଇ ଆସିଛି । ଘର ଭିତରକୁ ଆଣିଲି, ଜଳଖିଆ ଖୁଆଇ ହଜାରେ ଟଙ୍କା ଦେଇ ଗାଡିରେ ଛାଡି ଆସିଲି । ନିଆଁ ପାଉଁଶରେ ଘୋଡେଇ ହୋଇଥିଲା ସିନା, ତା ମନର ଭରସା ମୋ ଉପରୁ ଯାଇ ନଥିଲା । ପରେ ବନ୍ଧୁର ଅକାଳ ବିୟୋଗରେ ମୁଁ ଦୁଃଖ ପାଇଥିଲି । ସେ ୧୯୨୮ ରେ ଦେଇଥିବା ଦୁଇଟି ପଟା ବନ୍ଧା ଖାତା ଏବେବି ମୋ ପାଖରେ ସ୍ମାରକୀ ହୋଇ ରହିଛି । ମୋର କଲେରା ହେଲାବେଳେ ସେ ନିଜ ହାତରେ ଯେଉଁ ସ୍ନେହ ଓ କରୁଣା ପ୍ରକାଶ କରି କେତେ ଧାଡି ଲେଖିଥିଲା, ତାହା ମୁଁ ବେଳେବେଳେ ପଢ଼େ, ଆଶ୍ୱାସନା ପାଏ ।

ଘରର ବିଘ୍ନ ସରି ନଥିଲା । ଆମେ ଆସି ରହିବାର ୫/୬ ମାସ ପରେ ଚିଫ୍ ସେକ୍ରେଟରୀ ମାନ୍‌ସଫିଲଡ ସାହେବ ସାଇକେଲରେ ଆସି ପହଞ୍ଚିଲେ, ଦିନେ ଦିପହରେ, ରବିବାରରେ । ଅଳ୍ପ କଥାବାର୍ତ୍ତା ପରେ ପଚାରିଲେ, ଘର ସରକାରଙ୍କୁ ଭଡାଦେବି କି ? ମୁଁ ଆଶ୍ଚର୍ଯ୍ୟ ହେଲି । ଆମ ହତାକୁ ଲାଗି ଲାଟ ସାହେବଙ୍କ ଲାଲବାଗ କୋଠୀ ହତା । ଆମ ଘରଟିକୁ ଲାଟଙ୍କ ସେକ୍ରେଟେରୀ ରହିବା ପାଇଁ ପାଇଲେ ଦୁଇହତା ମଝି ପାଚେରୀରେ ବାଟ ଖୋଲି ଲଗାଇଦେବେ । ମୁଁ କହିଲି, ସ୍ତ୍ରୀଙ୍କୁ ପଚାରି ପରେ ଉତ୍ତର ଦେବି । ପ୍ରଥମେ ମୁଁ ଭାବିଲି,କିଛି କାଳପାଇଁ ଭଡାଦେଲେ, ଘର ତିଆରି ପାଇଁ ହୋଇଥିବା ଧାର ଶୁଝିବା ସହଜ ହୋଇଯିବ । ସ୍ତ୍ରୀଙ୍କ ପରାମର୍ଶ ହେଲା, ନିଜ ଘରଛାଡି, ଭଡାଘର ପୁଣି କାହିଁକି ଖୋଜିବା । ମାନସ୍‌ଫିଲଡ୍‌କୁ ମନାକରି ଉତ୍ତର ପଠାଇଲି । ତା କେତେଦିନ ପରେ ଦେଖାଗଲା, ମୁଁ କଚେରୀରେ ଥିଲାବେଳେ, କେତେଜଣ ଆସି ବାହାରୁ ବାହାରୁ ଘର, ହତା ମାପଚୁପ୍ କରୁଛନ୍ତି । ଖବର ନେଲି,

Digitized by srujanika@gmail.com

ବ୍ୟୟର ଘର ଆଲୋଚିତ ହେବା କଥା, ହେଲା । ଆଗରେ ବାହାବା, ପଛରେ କଟୁକଥା, କାନକୁ ଆସୁଥାଏ । ସୁବାରାଓ ଓକିଲଙ୍କଠାରୁ ବାରହଜାର ଟଙ୍କା, ପରିଜା ସାହେବଙ୍କଠାରୁ ଏକହଜାର ଟଙ୍କା ଧାର କରିଥିଲି । ଇଟା, ଚୂନ, ଛଡ ବାବଦରେ ଧାର ମଧ ଥିଲା । ସେ ସବୁ ଶୁଝିଲି ପରେ କ୍ରମେ, କ୍ରମେ । ସୁବାରାଓଙ୍କୁ ସୁଧ ୧୨ ଟଙ୍କା ଦେବାକୁ ହେଲା । ମୋ ଦଦେଇ (ଦାମୋଦର ମହାପାତ୍ରେ) ଦିନେ କଟକ ଆସି ମତେ ଗାଳି ଦେଲେ, ସୁବାରାଓଙ୍କ ଠାରୁ କାହିଁକି ଏତେ ଟଙ୍କା କରଜ କଲି ବୋଲି । ବୋଧହୁଏ ମତେ ନିନ୍ଦା କରୁଥିବା କାହାରିଠାରୁ ସେ ଶୁଣିଥିବେ ।

ଘରର ଦୁଇଟି ବିଶେଷତ୍ୱ ଥିଲା । କଟକରେ ଏହାଥିଲା ପ୍ରଥମ ଶୂନ୍ ଛାତ । ଭାଗବତ ମହାନ୍ତି ପାଟନା ଇଞ୍ଜିନିୟରିଙ୍ଗ କଲେଜରୁ ବି.ଇ.ପାଶ୍ କରି ସରକାରୀ ଚାକିରୀରେ ନ ପଶି ତାଙ୍କର ଜଣେ ସହପାଠୀ ଇଞ୍ଜିନିୟର ସାମୁଏଲଙ୍କ ସଙ୍ଗେ ମିଶି କଣ୍ଟ୍ରାକ୍ଟରୀ ବ୍ୟବସାୟ ଆରମ୍ଭ କଲେ । ତାଙ୍କରି କଥାରେ ଓ ଦେଖା ଶୁଣାରେ କଂକ୍ରିଟ ଢ଼ଳେଇ ଛାତ ଘରେ ପଡିଲା । ତାହା ପୂର୍ବରୁ କେବଳ ଷ୍ଟେସନ୍ ପାଖ ନୂଆ ରେଭେନ୍ସା କଲେଜ ୧୯୨୧ ରେ ହୋଇଥିଲାବେଳେ ଇଟା ରିଇନଫୋର୍ସ ଛାତ ହୋଇଥିଲା, କଲିକତା ମାର୍ଟିନ୍ ବର୍ଣ୍ଣ କମ୍ପାନୀଙ୍କ ଦ୍ୱାରା । ଅନ୍ୟ କୌଣସି ସରକାରୀ ବା ଘରୋଇ ଲୋକ କଂକ୍ରିଟ୍ ଢ଼ଳେଇ ଛାତ କରି ନଥିଲେ । ତାକୁ ସେତେବେଳେ ଶୂନ୍ଛାତ କହୁଥିଲେ । ଆମ ଛାତ ପଡିଲାବେଳେ ଲୋକେ ଆସୁଥିଲେ ଦେଖିବାକୁ; କଡି, ବରଗା, ଟାଇଲ ନ ଦେଇ ଖାଲି ତାର ଗୋଡି ସିମେଣ୍ଟରେ ଛାତ କିପରି ହେଉଛି । ବାହାର ପଟ ପୋର୍ଟିକୋକୁ ଲାଗି ବାରନ୍ଦା ଢ଼ଳେଇ ହେଲାବେଳେ ଜଣେ ମିସ୍ତ୍ରୀ ଉପରୁ ତଳକୁ ଗଳିପଡି ମୂର୍ଚ୍ଛା ହୋଇଗଲା । ଆମେ ସବୁ ତଟସ୍ଥ ହୋଇଗଲୁ । ଛିଞ୍ଚାବିଞ୍ଚା କରିବାରେ ସାଷ୍ଟାମ ହେଲା । ପୁଲିସ ଡେପୁଟି ସୁପରିଣ୍ଟେଣ୍ଡେଣ୍ଟ ସତୀଶ ବାନାର୍ଜୀ ଆସିଲେ ଘଟନା ବୁଝିବାକୁ । ସେ ନୂଆଘର ଦେଖି ଖୁସିହେଲେ । କହିଲେ ଏତେ ତ କଲେ, କଳ ପାଇଖାନା କରୁ ନାହାନ୍ତି କାହିଁକି ? କଲିକତାରେ କେଉଁଠି ମିସ୍ତ୍ରୀ ମିଳିବେ, ଠିକଣା ଦେଲେ । ମୁଁ ପାଟନା ହାଇକୋର୍ଟକୁ କେସ୍‌ରେ ପ୍ରାୟ ପ୍ରତି ମାସରେ ଥରେ ଅଧେ ଯାଉଥାଏ କଲିକତା ବାଟେ । ସାନିଟାରୀ ମିସ୍ତ୍ରୀ ଓ ସରଞ୍ଜାମ ଆଣି, ଗାଧୁଆ ଘରମାନଙ୍କରେ ସାନିଟାରୀ ପାଇଖାନା, ବେସିନ୍ ଲଗାଇଲି । କଲିକତାରେ ଏ.ଟି.ଆଲି ହୁସେନ (ଷ୍ଟ୍ରାଣ୍ଡରୋଡ) ଠାରୁ ପମ୍ପଆଣି ଅଗଣାରେ ଟିଉବ୍‌ୱେଲ କରି ପାଣି ଗାଧୁଆ ଘରକୁ ଯିବାର ବନ୍ଦୋବସ୍ତ ହେଲା । କଟକରେ ପାଣି ସପ୍ଲାଇ ହୋଇ ନଥାଏ ।

Digitized by srujanika@gmail.com

ଆମଘରେ ଯେଉଁ ମିସ୍ତ୍ରୀ ସାନିଟାରୀ କାମ କଲା; ସେ ତାପରେ ଡାକ୍ତର ଜୟନ୍ତ ରାଓ ଓ ସତୀଶ ବାନାର୍ଜୀଙ୍କ ଘରେ ସେପ୍‌ଟିକ୍ ଟ୍ୟାଙ୍କ, ସାନିଟାରୀ ପାଇଖାନା ବସାଇଲା । ଶୂନ୍‌ଛାତ, କଳ ପାଇଖାନା, ଶୂନ୍ୟେ ଶୂନ୍ୟେ ଆମ ଘରେ ପ୍ରଥମେ ହୋଇଗଲା ।

ରାମି ଘର ତୋଳିବାରେ ବାଧା କରାଇଥିଲା, ପ୍ରତିଷ୍ଠାକୁ ଆସିଲା ନାହିଁ । ସାଥି ଥିଲା, ବନ୍ଧୁ ହେଲା ମୋ ସ୍ତ୍ରୀଙ୍କ କକେଇ ଝିଅ ଭଉଣୀକୁ ବିଭା ହୋଇ । କିନ୍ତୁ ଦୂରେଇ ରହିଲା । କେତେବର୍ଷ ପରେ ହଠାତ୍ ଦିନେ ରାତି ନଅଟାବେଳେ ଆମଘର ପାଖ ରାସ୍ତା ଉପରେ ଠିଆହୋଇ ମତେ ଖବର ପଠାଇଲା । ମୁଁ ଯାଇ ଦେଖେ ଶୁଖିଲା ମୁହଁରେ ଠିଆ ହୋଇଛି । ପଚାରି ବୁଝିଲି, ବିପଦରେ ପଡିଛି, ରାତି ଭିତରେ ହଜାରେ ଟଙ୍କା ଲୋଡା । ଅନ୍ୟତ୍ର ଚେଷ୍ଟା କରି ବ୍ୟର୍ଥ ହୋଇ ଆସିଛି । ଘର ଭିତରକୁ ଆଣିଲି, ଜଳଖିଆ ଖୁଆଇ ହଜାରେ ଟଙ୍କା ଦେଇ ଗାଡିରେ ଛାଡି ଆସିଲି । ନିଆଁ ପାଉଁଶରେ ଘୋଡେଇ ହୋଇଥିଲା ସିନା, ତା ମନର ଭରସା ମୋ ଉପରୁ ଯାଇ ନଥିଲା । ପରେ ବନ୍ଧୁର ଅକାଳ ବିୟୋଗରେ ମୁଁ ଦୁଃଖ ପାଇଥିଲି । ସେ ୧୯୨୮ ରେ ଦେଇଥିବା ଦୁଇଟି ପଟା ବନ୍ଧା ଖାତା ଏବେବି ମୋ ପାଖରେ ସ୍ମାରକୀ ହୋଇ ରହିଛି । ମୋର କଲେରା ହେଲାବେଳେ ସେ ନିଜ ହାତରେ ଯେଉଁ ସ୍ନେହ ଓ କରୁଣା ପ୍ରକାଶ କରି କେତେ ଧାଡି ଲେଖିଥିଲା, ତାହା ମୁଁ ବେଳେବେଳେ ପଢ଼େ, ଆଶ୍ୱାସନା ପାଏ ।

ଘରର ବିଘ୍ନ ସରି ନଥିଲା । ଆମେ ଆସି ରହିବାର ୫/୬ ମାସ ପରେ ଚିଫ୍ ସେକ୍ରେଟରୀ ମାନ୍‌ସଫିଲଡ ସାହେବ ସାଇକେଲରେ ଆସି ପହଞ୍ଚିଲେ, ଦିନେ ଦିପହରେ, ରବିବାରରେ । ଅଳ୍ପ କଥାବାର୍ତ୍ତା ପରେ ପଚାରିଲେ, ଘର ସରକାରଙ୍କୁ ଭଡାଦେବି କି ? ମୁଁ ଆଶ୍ଚର୍ଯ୍ୟ ହେଲି । ଆମ ହତାକୁ ଲାଗି ଲାଟ ସାହେବଙ୍କ ଲାଲବାଗ କୋଠୀ ହତା । ଆମ ଘରଟିକୁ ଲାଟଙ୍କ ସେକ୍ରେଟେରୀ ରହିବା ପାଇଁ ପାଇଲେ ଦୁଇହତା ମଝି ପାଚେରୀରେ ବାଟ ଖୋଲି ଲଗାଇଦେବେ । ମୁଁ କହିଲି, ସ୍ତ୍ରୀଙ୍କୁ ପଚାରି ପରେ ଉତ୍ତର ଦେବି । ପ୍ରଥମେ ମୁଁ ଭାବିଲି,କିଛି କାଳପାଇଁ ଭଡାଦେଲେ, ଘର ତିଆରି ପାଇଁ ହୋଇଥିବା ଧାର ଶୁଝିବା ସହଜ ହୋଇଯିବ । ସ୍ତ୍ରୀଙ୍କ ପରାମର୍ଶ ହେଲା, ନିଜ ଘରଛାଡି, ଭଡାଘର ପୁଣି କାହିଁକି ଖୋଜିବା । ମାନସ୍‌ଫିଲଡ୍‌କୁ ମନାକରି ଉତ୍ତର ପଠାଇଲି । ତା କେତେଦିନ ପରେ ଦେଖାଗଲା, ମୁଁ କଚେରୀରେ ଥିଲାବେଳେ, କେତେଜଣ ଆସି ବାହାରୁ ବାହାରୁ ଘର, ହତା ମାପଚୁପ୍ କରୁଛନ୍ତି । ଖବର ନେଲି,

Digitized by srujanika@gmail.com

ରିକ୍ୟୁଜିସନ୍ ପାଇଁ କଥା ଚାଲିଛି । ବ୍ୟସ୍ତ ଲାଗିଲା । କିନ୍ତୁ ଉପାୟ କଣ ? ଏହାର ପ୍ରାୟ ମାସକ ପରେ ଦିନେ ଅପରାହ୍ଣରେ ଲାଟପତ୍ନୀ ଲେଡି ହବାକ୍ଙ୍କର ଏକ ଚିଠି ଆସିଲା, ସେ ପରଦିନ ଆମ ଘରକୁ ଆସି ମୋ ସ୍ତ୍ରୀଙ୍କ ସହିତ ଆଳାପ କରିବାକୁ ଇଚ୍ଛା କରୁଛନ୍ତି । ସୁବିଧା ହେବ କି ? ସ୍ତ୍ରୀ ଯାଇଥାନ୍ତି ତା ପୂର୍ବଦିନ କଟକ ବାହାରକୁ ଚାରିଦିନ ପାଇଁ । ସେଇ କଥା ଜଣାଇଲେ, ଭାବିଲି ଲାଟପତ୍ନୀ ଭାବିବେ ଓଡିଆଣୀ ଭେଟିବାକୁ ବୋଧହୁଏ ଡରିଲା । ତେଣୁ ଧନ୍ୟବାଦର ସହିତ ହଁ ଭରି ପତ୍ରବାହକ ହାତରେ ଉତ୍ତର ପଠାଇ ଦେଲି । ସଙ୍ଗେ ସଙ୍ଗେ ଲୋକ ପଠାଇ ସ୍ତ୍ରୀଙ୍କୁ କଟକ ଫେରି ଆସିବାକୁ ଲେଖିଲି । ସେ ପରିଦିନ ସକାଳେ ଆସିଲେ । ଲେଡି ହବାକ୍ ମିସ୍ ନିର୍ମଳାବାଳା ନାୟକଙ୍କ ସଙ୍ଗେ ସନ୍ଧ୍ୟା ୫ଟା ବେଳେ ପହଞ୍ଚିଲେ । ମୋ ସ୍ତ୍ରୀ, ମୁଁ ସେ ଦୁହେଁ ବସି କିଛି ଆଳାପ କଲୁ, ଚା ଜଳଖିଆ ଖାଇଲୁ । ଗୋରା ହେଉ, ସବୁ ମାଇପେ ସମାନ । ସୁଖ ଦୁଃଖ ଆରମ୍ଭ କଲେ, ପିଲାପିଲି କଥା ପଚରା ପଚରି ହେଲେ । ଲେଡି ହବାକ୍ ଘରବୁଲି ଦେଖିଲେ ଭାରିଖୁସ ମିଜାଜରେ । ଫେରିଲାବେଳକୁ ମୁଁ କହିଲି, ମୋ ସ୍ତ୍ରୀ ବଡ ଦୁଃଖିତ ଯେ ଆମକୁ ଏ ଘରୁ ବାହାରି ଯିବାକୁ ପଡୁଛି । ସେ ଥ ହୋଇ ପଚାରିଲେ, କାହିଁକି ? ମୁଁ ମାନସଫିଲଡଙ୍କ କଥା, ରିକ୍ୟୁଜିସନ ପ୍ରସ୍ତାବ ହେଉଥିବା ତାଙ୍କୁ କହିଲି । ସେ ଅତି ଦୁଃଖିତ ହେଲେ, ସ୍ତ୍ରୀଙ୍କୁ ବୋଧ ଦେଇ କହିଲେ, ଏପରି ହେବା ଅନ୍ୟାୟ । ସେ ଜନ୍‌କୁ (John Hubback) କହିବେ । ଏହାର ପାଞ୍ଚ ସାତ ଦିନ ପରେ, ନାରୀସଂଘ ସଦନରେ ଏକ ସଭାକୁ ଲାଟ ସାହେବ ଯାଇଥାଆନ୍ତି, ମାନସଫିଲ୍ଡ ଏବଂ ଅନ୍ୟମାନେ । ମୁଁ ମଧ । ସଭାପରେ ମଞ୍ଚ ଉପରୁ ସାର୍ ଜନ ହବାକ୍ ଓହ୍ଲାଇ ବାହାରକୁ ଗଲାବେଳେ ମତେ ଦେଖିଲେ, ରହିଯାଇ, ପଚାରିଲେ Is Mrs Mohapatra now happy ? ସେ ହସିଲେ, ମୁଁ ହସିଲି । ସେ ଉତ୍ତର ଆଶା କରୁ ନଥିଲେ କି ମୁଁ ଉତ୍ତର ଦେବାର ନଥିଲା, ଧନ୍ୟବାଦ ଛଡା । ମାନ୍‌ସଫିଲଡ୍ ତା ପରେ ମୋ ନିକଟକୁ ଆସି ପଚାରିଲେ, How could His Excellency get interested about your house ? ମୁଁ ହସି କହିଲି, You were also interested in that. ଉଭୟେ ହସିଲୁ । ଦୈବକୃପା ବ୍ୟତୀତ ଏହା ହୋଇ ନଥାନ୍ତା । ଆମେ କିଏ, ଆମ ଘରକୁ ଲାଟପତ୍ନୀ ତାଙ୍କ ଆଡୁ କାହିଁକି ଆସନ୍ତେ ? ଚିଫ୍ ସେକ୍ରେଟାରୀଙ୍କ ପ୍ରସ୍ତାବକୁ ଲାଟଙ୍କୁ କହି କାହିଁକି ସେ ରଦ୍ଦ କରାନ୍ତେ ? ହବାକଙ୍କ ସହିତ ପରେ ଯେତେବେଳେ ଦେଖା ହେଉଥିଲା, ସେ ସୌଜନ୍ୟରେ ତ୍ରୁଟି କରୁନଥିଲେ । ତାଙ୍କର ଗୋଟିଏ ଭାଷଣ ସମ୍ବନ୍ଧରେ ମୋ ପତ୍ର ପାଇଁ ସେ ଉତ୍ତର ଦେଲେ,

Digitized by srujanika@gmail.com

Government House
Puri
5th August-1939

Dear Mr. Mohapatra,

I must write to thank you for your very kind letter about my speech . It is great satisfaction to me to know that I managed to express what I believed to be the feelings of the people of Orissa as a whole with some degree of success.

Yours Sincerely
John Hubback

Hariher Mohapatra. Esq.
Chandinichowk
Cuttack.

ଆସ୍ତେ ଆସ୍ତେ ଘରର ଦୋତାଲା ହେଲା । ଅଳ୍ପ ଥିବା ଖାଲି ଜାଗାରେ ବଗିଚା ହୋଇ ପ୍ରାୟ ପ୍ରତିବର୍ଷ ପ୍ରତିଯୋଗିତାରେ କପ୍, ପ୍ରାଇଜ ପାଇ ଆସୁଛୁ । ପ୍ରଥମ ମାଳିଟି ଥିଲା ଅଲେଖ ଧର୍ମୀ । ତାପରେ ରହିଲା ବଟ । ଗାଳୁ ପେଲିବାରେ ଦୁରନ୍ତ । ବଜାର ସଉଦାକୁ ନ ପଠାଇଲେ ଏଡେ ମୁହଁ । କିନ୍ତୁ ଭଲମନ୍ଦ ସବୁଥିକି ସମସ୍ତଙ୍କର ମାଳିକୁ ଡାକରା । ତିରିଶ ବର୍ଷ ହେଲା ରହିଲାଣି, କୁଟୁମ୍ବର ଜଣେ ସିଏ ।

କଲେଜରେ ପଢ଼ିଲାବେଳକୁ କନିକା ରାଜା ରାଜେନ୍ଦ୍ରନାରାୟଣ ଭଞ୍ଜଦେଓଙ୍କ ସଙ୍ଗେ ପରିଚିତ ହୋଇଥିଲି । ସେହିଦିନୁ ତାଙ୍କର ମୋ ପ୍ରତି ପ୍ରସନ୍ନତା ଥାଏ । ତାଙ୍କ ଟିକାୟତଙ୍କ ଇଲେକ୍ସନ କେସ୍ ମୋ ହାତରେ ଦେଇଥିଲେ । ଅନ୍ୟ କେତେକ କେସ୍ ମଧ । ମୁଁ ଘର କରିବାର ବର୍ଷକ ପରେ ଦିନେ ପ୍ରାୟ ୧୦ ଟା ବେଳେ ତାଙ୍କ ଗାଡି ଆମ ଫାଟକ ପାଖରେ ଲାଗିଲା । ତାଙ୍କୁ ଦେଖି ମୁଁ ଆଶ୍ଚର୍ଯ୍ୟ ହେଲି । ସେ ତ କାହା ଘରକୁ, ବିଶେଷତଃ ମୋ ପରି ନଗଣ୍ୟ ଲୋକ ଘରକୁ, ଆସିବା ଲୋକ ନୁହନ୍ତି । ଘର ଭିତରକୁ ପଶି କହିଲେ, ଟିକାୟତ (ଶୈଳେନ୍ଦ୍ର ନାରାୟଣ) କହୁଥିଲା ତମେ ଭଲ ଘର କରିଛ, ଦେଖିବାକୁ ଆସିଲି । ଲାଜରେ ମୁଁ ଥୋମଣା ହେଲି । ସବୁଘର ବୁଲି ଦେଖିଲେ । ଗୋଟେପଟ ଅଗଣାରେ ପାଣି ଫୁଆରାଟିଏ

Digitized by srujanika@gmail.com

ଥିଲା, ତାକୁ ବି ଦେଖିଲେ, ଚାବିଖୋଲି ଫୁଆରା ମେଲାଇଲେ । ଶେଷକୁ ଅଫିସ ଘରକୁ ଆସିଲେ । ସେଠାରେ କହିଲେ, ଆଉ ସବୁଘର ଯାହା ଦେଖିଲି ସେ ସବୁ ଖର୍ଚ୍ଚର ଘର, କେବଳ ଏହି ଘରଟି(ଅଫିସ) ଅର୍ଜ୍ଜନ ଘର । ବଡ ଖାଣ୍ଟିକଥା । ଏହି ପଦକ ଯୋଗୁ ତାଙ୍କ ଆସିବା ଏତେ ମନକୁ ଧରିଛି । ସେ ସେଦିନ ଆସିଥିଲେ ଲାଟସାହେବଙ୍କ ପାଖକୁ ଲାଲବାଗ କୋଠୀକୁ । ଫେରନ୍ତି ବାଟରେ ଆମଘର । ଦୟା ମନରେ ଅଟକିଲେ ।

ଆମ ଘର ସାମନାରେ ରାସ୍ତା ଆରପଟକୁ ପାଣୁ ପଧାନର ଚାଳଘର, ସ୍ଥିତିବାନ୍, ଏକଗୁଣ୍ଠ, ଡିଗ୍ରୀ ଜାରୀରେ ସେ ଜମି ନିଲାମରେ ଉଠିବାରୁ ପାଣୁ ବିକ୍ରି କରିବା ପାଇଁ ଆମ ପାଖକୁ ଆସିଲା । ଆମେ ନେଲୁ କିନ୍ତୁ କଥା ଥିଲା, ସେ ବଞ୍ଚିବାଯାକେ ସେଠାରେ ରହିବ । ଏକୁଟିଆ ଲୋକ, ରୋଗ, ଅଭାବରେ ଥାଏ । ବକତେ ଆମଘରୁ ନେଇ ଖାଏ । ତିନିବର୍ଷ ପରେ ତାର ପରଲୋକ ହେଲା । ସେତେବେଳେ ଘର ମଧ୍ୟ କୁଢ଼େଇ ହୋଇ ପଡିଥିଲା । ସେ ଜମିକୁ ଲାଗି ଆଉ ଗୁଣ୍ଠେ ଖାଲି ଜାଗାଥିଲା, (ଖାସମାହାଲ ଲିଜ) କୈଳାସ ଲେଙ୍କା ଓକିଲଙ୍କର । ସେ ତାହା ବିକ୍ରୟ କରିବା ପାଇଁ ମୋ'ଠାରୁ ଦୁଇ ଶତ ଟଙ୍କା ଅଗ୍ରୀମ ନେଲେ । ମାତ୍ର ପରେ କବଲା କରିଦେଲେ ଭୁବନାନନ୍ଦ ଦାସଙ୍କ (B. Das) ସ୍ତ୍ରୀ ରୁକୁଣୀ ଦେଈଙ୍କ ନାମରେ ତିନି ଶତ ଟଙ୍କାରେ । ରୁକୁଣୀ ଦେଈ ଆମକୁ ବିକିଲେ ୧୯୬୧ ରେ ଦଶହଜାର ଟଙ୍କାରେ । ପାଣୁ ପଧାନଙ୍କ ଯେଉଁ ଜମି ଆମେ କିଣିଥିଲୁ ସେଥିରେ ମକଦ୍ଦମା ଲଗାଇଲେ ଲକ୍ଷ୍ମଣ ସ୍ୱାଇଁ ତଗରପଡାର । ସେ ଥାନ୍ତି ମୁନିସିପାଲ କମିଶନର । ତାଙ୍କ ମକଦ୍ଦମା ଦୁଇ କୋର୍ଟରେ ସେ ହାରି ଛିଣ୍ଡିଲା । ତାଙ୍କ ତରଫରୁ ଲଢୁଥିଲେ ଦୁଇ ମହାରଥି, ସତ୍ୟନାରାୟଣ ସେନଗୁପ୍ତ, ରାୟ ବାହାଦୁର ଲକ୍ଷ୍ମୀଧର ମହାନ୍ତି । ଆମ ପଟରେ ମୁଁ । ମକଦ୍ଦମାରେ ହାରି ନିରସ୍ତ ନ ହୋଇ, ମୁନିସିପାଲିଟି ଦ୍ୱାରା ଏକ ମକଦ୍ଦମା ଆରମ୍ଭ କରାଇଲେ, ଆମେ ବିନାନୁମତିରେ ଘର ତୋଳୁଥିବା ଆପତ୍ତି ଉପରେ । ପାଣୁ ପଧାନ ଚାଳଭାଙ୍ଗି ପଡିଥିଲା, କାନ୍ଥ କେତେକ ଦରଦ ହୋଇ ଖଣ୍ଡିଆ ମଣ୍ଡିଆ ହୋଇଥିଲା । ସେ ସବୁ ଆମେ ମରାମତି କରି ଚାଳରେ ଟିଣ ପକାଇଲୁ । ସେଥିପାଇଁ ମୁନିସିପାଲିଟିର ଅନୁମତି ଅନାବଶ୍ୟକ । ସେ ମକଦ୍ଦମାରେ ମଧ୍ୟ ଲକ୍ଷ୍ମଣ ସ୍ୱାଇଁ ହାରିଲେ । ତିନି ଜମିରେ ପାଞ୍ଚ ବିଘ୍ନ ଉପୁଜିଥିଲା ।

ଆଉ ଏକ ଘର ତୋଳାରେ ମୋ ହାତ ଥିଲା । ତାହା ନିଜ ଘର ନୁହେଁ । ୧୯୩୩ ଶେଷକ ପୁରୁଷୋତ୍ତମ ଦାସ ଟଣ୍ଡନ କଟକ ଆସିଥିଲାବେଳେ ସ୍ଥିର

Digitized by srujanika@gmail.com

ହେଲା,'ସମାଜ ପ୍ରେସ' ପାଇଁ ଖଣ୍ଡିଏ ଜମି ଯୋଗାଡ କରି ସେଥିରେ ଗୋଟିଏ ଘର କରାଯିବ–ଗୋପବନ୍ଧୁ ଭବନ—ପଣ୍ଡିତ ଗୋପବନ୍ଧୁ ଦାସଙ୍କ ସ୍ମୃତିରେ । ଗୋପବନ୍ଧୁ ମେମୋରିଆଲ କମିଟି ଗଢ଼ାଗଲା । ଆଚାର୍ଯ୍ୟ ହରିହର ଦାଶ ହେଲେ ସଭାପତି, ମୁଁ ରହିଲି ସମ୍ପାଦକ । ପାଣ୍ଠିପାଇଁ ଚାନ୍ଦା ସଂଗ୍ରହ ହେଲା । ଖାସ୍‌ମାହାଲରୁ ବକ୍ସିବଜାର ମାର୍କେଟ ପାଖରେ ଖଣ୍ଡିଏ ଜାଗା ପାଇଁ ଦରଖାସ୍ତ ହେଲା । ଆର. ପି. ଓ୍ୟାର୍ଡ ସେତେବେଳେ କଲେକ୍ଟର । ଅତି ଉଚ୍ଚମନା ଲୋକ । ଜମି ଲିଜ୍‌ରେ ଦେବାକୁ ରାଜି ହେଲେ, ନାମିକ ଏକ ଟଙ୍କା ବାର୍ଷିକ ଖଜଣାରେ । ସେଥିପାଇଁ ରେଭେନ୍ୟୁ କମିଶନରଙ୍କ ଅନୁମତି ଆବଶ୍ୟକ । ସେ ଅନୁମତି ମୁଁ ଯାଇ ଆଣିଲି । ବିଶ୍ୱନାଥ ଦାସଙ୍କ ମନ୍ତ୍ରୀମଣ୍ଡଳ ବେଳେ, ବିଧାନ ସଭା ଅଧିବେଶନ ସମୟରେ, ବିଶ୍ୱନାଥ ବାବୁଙ୍କ ଦ୍ୱାରା ଭିତ୍ତି ସ୍ଥାପନ କରାହେଲା । ବାଚସ୍ପତି ମୁକୁନ୍ଦ ପ୍ରସାଦ ଦାସ, ଅନ୍ୟମନ୍ତ୍ରୀ ଓ ବିଧାନସଭା ସଭ୍ୟମାନେ ଯୋଗ ଦେଇଥିଲେ । ଆଚାର୍ଯ୍ୟ ମହାଶୟ, ପଣ୍ଡିତ ଲିଙ୍ଗରାଜ ମିଶ୍ର ଚାନ୍ଦା ସଂଗ୍ରହ ପାଇଁ ଗଡଜାତ ରାଜା ମାନଙ୍କ ପାଖକୁ ଯାଇଥିଲେ । ସେମାନେ ଓ ମୁଁ ଯାଇଥିଲୁ ମୟୁରଭଞ୍ଜ ମହାରାଜାଙ୍କ ନିକଟକୁ । ଦିବ୍ୟସିଂହ ପାଣିଗ୍ରାହୀ ଷ୍ଟେଟ ସରକାରୀ ଓକିଲ ଥିଲେ । ତାଙ୍କ ଘରେ ଆତିଥ୍ୟ ନେଲୁ । ଦେଓ୍ୱାନ କେ.ସି. ନିଓଗୀ ଆମକୁ ସାହାଯ୍ୟ ଦେବାରେ କୁଣ୍ଠିତ ହେଲେ । ମହାରାଜାଙ୍କ ସହିତ ଆମର ସାକ୍ଷାତ ହେଲା ଏବଂ ସେ ଆନନ୍ଦରେ ସାହାଯ୍ୟ କଲେ । ଜଣେ କଣ୍ଟ୍ରାକ୍ଟର ଦ୍ୱାରା ଗୃହ ନିର୍ମିତ ହେଲା— ତାହା ହେଉଛି ବର୍ତ୍ତମାନର ଗୋପବନ୍ଧୁ ଭବନ । ପରେ ଅନେକ ବୃଦ୍ଧି ଲାଭ କରିଛି ।

କଟକରେ ଘର ହେବା ପରେ ବୋଉ ଇଚ୍ଛାରେ ଗାଁରେ କୋଠା ଘରଟିଏ କଲି । ମହନ ମିସ୍ତ୍ରୀ ସେଠାକୁ ଯାଇ ସେ କାର୍ଯ୍ୟ କରିଥିଲା । ବତ୍ରିଶ ହଜାର ଟଙ୍କା ଖର୍ଚ୍ଚ ହେଲା । ନନା ବୋଉ ଖୁସି ହେଲେ ଗାଁ ଘରଟି ହେବାରେ । କିନ୍ତୁ ସେମାନେ ବେଶିଦିନ ସେଠାରେ ରହିପାରିଲେ ନାହିଁ । ପୁରୀରେ ଘର ହେବାପରେ ପୁରୀରେ ଯାଇ ରହିଲେ ।



Digitized by srujanika@gmail.com

# ଭିନ୍ନ ମୋଡ

ଲ କ୍ଲାସ ସକାଳେ ରେଭେନ୍ସା କଲେଜରେ ହେଉଥାଏ । ଜଣେ ପ୍ରଫେସର ଥାଆନ୍ତି । ଦୁଇ ଜଣ ଅଭିଜ୍ଞ ଆଡ୍‌ଭୋକେଟ୍ ପାର୍ଟଟାଇମ ଲେକ୍‌ଚରର ତିନିବର୍ଷ ପାଇଁ ନିଯୁକ୍ତ ହୁଅନ୍ତି । ଚିନ୍ତାମଣି ଆଚାର୍ଯ୍ୟ ସେହିପରି ଜଣେ ଲେକ୍‌ଚରର ଥିଲେ । ମାସିକ ଦରମା ଦେଢ଼ଶହ, କିନ୍ତୁ ଓକିଲ ମହଲରେ ଓ ବାହାରେ ସେ କାମର ଖାତିର ଥିଲା । ଓଡିଶା ଓ ମଧ୍ୟପ୍ରଦେଶକୁ ନେଇ ଗୋଟିଏ ପବ୍ଲିକ ସର୍ଭିସ କମିଶନ୍ ଥିଲା । ଲେକ୍‌ଚରର ନିଯୁକ୍ତି ତାଙ୍କ ଦ୍ୱାରା ହୁଏ । ସେତେବେଳେ ସରକାରୀ କଲେଜରେ ସ୍ଥାୟୀ ଲେକ୍‌ଚରର ଦେଢ଼ ଶହ ଟଙ୍କା ମାସିକ ଦରମାରେ ନିଯୁକ୍ତ ହେଉଥିଲେ । ଲ ଲେକଚରର ସକାଳେ ଦୁଇଘଣ୍ଟା ପଢ଼ାନ୍ତି । ମୁଁ ଲେକ୍‌ଚରର ନିଯୁକ୍ତ ହେଲି ୧୯୩୮ରେ । ରୁଟିନ୍ ଏପରି ତିଆରି ହେଲା ଯେ ସପ୍ତାହରେ ଚାରିଦିନ ମୋର କ୍ଲାସ ରହିଲା । ଶୁକ୍ରବାର ଓ ଶନିବାର କ୍ଲାସ ନଥାଏ । ଦରକାର ପଡିଲେ ସେହି ଦିନମାନଙ୍କରେ ବାହାରକୁ ଯାଏ କେସ କରିବାକୁ । ପାଟନା ଗଲେ ଛୁଟିନିଏ । ପରିଜା ସାହେବ ରେଭେନ୍ସା କଲେଜର ପ୍ରିନ୍ସପାଲ ଥିଲେ । ତ୍ରିପାଠୀ ସାହେବ ଡି.ପି.ଆଇ. । ସେମାନେ କଦାପି ମତେ ଅଧୀନସ୍ଥ ଭାବେ ଦେଖୁ ନଥିଲେ । ମୋର ତିନିବର୍ଷ ପୂରିଲା ପରେ ଆଉ ତିନିବର୍ଷ ପାଇଁ ପୁଣି ରହିଲି । ପ୍ରଥମ ନିଯୁକ୍ତି ସଙ୍ଗେ ସଙ୍ଗେ ଅବ୍‌ଜରଭର (Observer) ଇଂରେଜୀ ପତ୍ରିକାର ସମ୍ପାଦକ ମଧୁସୂଦନ ମହାନ୍ତି ଲେଖି ପଠାଇଲେ ।

Po. Chandinichowk,
Cuttack
Date.27-7-1938

My dear Mr. Mohapatra,

Hearty Congratulations on your well deserved appointment. May not the "Observer" expect a share on the happy occasion ?

Digitized by srujanika@gmail.com

Any little, would be highly appreciated.

Wishing you all luck.

H. Mohapatra
Advocate

Sincerely
M.S. Mahanty

ଆଉ ଖଣ୍ଡିଏ ଚିଠି ଆସିଲା । ମିନୁଦିଙ୍କ (ମାଳତୀ ଚୌଧୁରୀ) ଠାରୁ ୧/୮/୩୮ରେ ।

ହରିଭାଇ,

ତମେ ଆସି ଫେରିଗଲ ଶୁଣି ବଡ ବ୍ୟସ୍ତ ଲାଗୁଛି, କାରଣ ମୋର ଗରଜ ବେଶି ଥିଲା । କିନ୍ତୁ ତମେ ଆସିବ କହିବାରୁ ମୁଁ ଦିନଯାକ ଅପେକ୍ଷା କରି ରହିଥିଲି । ଛାଡ, ଦେଖା ତ ହୋଇପାରିଲା ନାହିଁ । ମୁଁ କାଲି ଖୁବ୍ ଭୋର ମଧୁପୁରର ଗୋଟିଏ ଗାଁକୁ ଯାଉଛି, ସେଠାରେ ଆମର ଶିବିର ହେବାର ଅଛି, ନବବାବୁ ମଧ ଯାଉଛନ୍ତି । 'କୃଷକ' କାଗଜ ସକାଶେ ତମଠାରୁ କିଛି ମୋଟା ରକମର ଚାନ୍ଦା ପାଇବା ଆଶାରେ ମୁଁ କାଲିଠାରୁ ତମ ଘରକୁ ଯିବାକୁ ଇଚ୍ଛା କରି ଯାଇପାରୁ ନାହିଁ । ତମେ ତ Law lecturer ହେଲଣି-ସେଥିରେ ଆମ ଭାଗ ନାହିଁକି ? 'କୃଷକ' ଯେଉଁ ଅସୁବିଧାରେ ଚାଲିଛି ତା ତମେତ ବୁଝି ପାରୁଥିବ । ତମଠାରୁ ଏହି ସପ୍ତାହରେ ଅନ୍ତତଃ ଖୁବ୍ କମ୍ ପକ୍ଷରେ ଟ.୫୦ଙ୍କା ଟି ପାଇବାର ଆଶା କରି ରହିଲି । ତମେ ପତ୍ରବାହକ ହାତରେ ଟଙ୍କାଟା କେଉଁଦିନ ଦେଇ ପାରିବ ଜଣେଇଲେ–ବଡ ଗୋଟାଏ ବୋଝ ମୋ ମୁଣ୍ଡରୁ ଓହ୍ଲାଇ ଯିବ, ତା ନହେଲେ ଶିବିରରେ ପନ୍ଦର ଦିନ ମୋତେ ରହିଲାବେଳେ ଭାରି ବ୍ୟସ୍ତରେ ଦିନ କଟାଇବାକୁ ହେବ ।

ସ୍ନେହାଧୀନ
। ମିନୁଦି ।

ମୂଳରୁ ମୋ ସ୍ୱଳ୍ପ ଆୟରୁ ମଧ ଏପରି ବ୍ୟୟ କରି ଆସୁଥିଲି । ମଧୁବାବୁ ଇନ୍‌କମ୍‌ଟିକସ ଅଫିସର ଥିଲେ; ମୁଁ ଯେତେବେଳେ ଇନ୍‌ସପେକ୍ଟର ଭାବେ ଯୋଗ ଦେଇଥିଲି, ସେହିଦିନଠାରୁ ବନ୍ଧୁତ୍ୱ ରହିଥିଲା ତାଙ୍କର ବିୟୋଗ ପର୍ଯ୍ୟନ୍ତ । କେତେକ

Digitized by srujanika@gmail.com

ଗୋଳମାଳ ଯୋଗୁଁ ଚାକିରି ଅଧାରୁ ସେ ବାହାରି ଆସିଲେ । ଲ' ପଢ଼ି, ପରୀକ୍ଷା ଦେଇ ଓକିଲାତି କଲେ । 'ଅବଜରଭର' ଇଂରେଜୀ କାଗଜ ବାହାର କରିଥିଲେ ଅନେକ ଦିନ । ବଡ ସାହସୀ ଲୋକ, ଅଧ୍ୟବସାୟୀ । ମୋ ଯଥା ଶକ୍ତି ମୁଁ ସାହାଯ୍ୟ କରି ଆସୁଥିଲି ତାଙ୍କୁ । କିଛି ଅଧିକ ଆୟ ହେବାରୁ, ଅଧିକ ସାହାଯ୍ୟ ଦାବୀ କରିବାରେ ତାଙ୍କର ଯଥାର୍ଥତା ଥିଲା ।

'କୃଷକ' କଂଗ୍ରେସର ଅଗ୍ରଗାମୀ ଯୁବଗୋଷ୍ଠୀର ମୁଖପତ୍ର ଥିଲା । ତାହା ସହିତ ସହଯୋଗ ମୋର ରହିଥିଲା । ସବୁ ସାଧାରଣ କାମରେ, ବିଶେଷତଃ ସମ୍ବାଦ ପତ୍ର ପରିଚାଳନାରେ, ସର୍ବଦା ଆର୍ଥିକ ଅନଟନ ଥାଏ । ସେତେବେଳେ ବିଜ୍ଞାପନ ଆଦୌ ନଥିଲା । ମିନୁଦି ପ୍ରଭୃତି ମାଗିବାରେ ଯେପରି ନିଃସଙ୍କୋଚ, ମୁଁ ଯଥାଶକ୍ତି ଦେବାରେ ସେପରି ଆଗ୍ରହୀ । ସାହାଯ୍ୟପ୍ରାପ୍ତ ଅନୁଷ୍ଠାନ ଓ ବ୍ୟକ୍ତିଙ୍କ ସଂଖ୍ୟା କ୍ରମଶଃ ବଢ଼ିବା ସ୍ୱାଭାବିକ । କିଛି ସାହାଯ୍ୟ କରିପାରିଲେ ମୋର ଆନନ୍ଦ । ଗାଁରେ ପିଲାଦିନେ ଶୁଣିଥିଲି, କୂଅରୁ ପାଣି କାଢ଼ିଲେ ଶୁଖେ ନାହିଁ । ପାଣି ନ କାଢ଼ିଲେ ବଢ଼େ ବି ନାହିଁ ।

୧୯୩୮ ମାର୍ଚ୍ଚ ମାସ ୨୫ ତାରିଖରେ ଗାନ୍ଧି ସେବା ସଂଘର ଏକ ଅଧିବେଶନ ପୁରୀ ଜିଲ୍ଲା ଡେଲାଙ୍ଗ ପାଖରେ ବେରବୋଇଠାରେ ସାତଦିନ ବସି ଥିଲା । ଗାନ୍ଧିଜୀ ଓ ଅନ୍ୟ ବହୁ ତୁଙ୍ଗନେତା ଦେଶର ସବୁ ପ୍ରାନ୍ତରୁ ଆସିଥିଲେ । ଗାନ୍ଧିଜୀ ଆସିଥିବା ଟ୍ରେନ୍ ପହଞ୍ଚିଲାବେଳକୁ ରାଧାନାଥବାବୁ (ସମାଜ) ଓ ମୁଁ ଫୁଲମାଳ ନେଇ କଟକରୁ ଯାଇଥିଲୁ । ଏତେ ଲୋକ ଭିଡ ଯେ ଗୋପବନ୍ଧୁ ଚୌଧୁରୀ ଟ୍ରେନ୍‌ରୁ ଗାନ୍ଧିଜୀଙ୍କୁ ଉଠାରି ବାଟ କାଢ଼ିନେବା କଷ୍ଟକର ହେଲା । ସେହି ଚକଟା ଚକଟିରେ ମୋ ହାତର ଫୁଲମାଳ ଗାନ୍ଧିଜୀଙ୍କ ବେକକୁ ନ ଯାଇ ଅନ୍ୟର ପାଦ ମର୍ଦ୍ଦନ ହେଲା । ମୋ ହାତଟି ମୋଡିହୋଇ କିଛିଦିନ ଅଚ୍ଚ ଅଚଳ ରହିଲା । ସେ ଅଧିବେଶନରେ ଶୃଙ୍ଖଳା, ନିରାଡମ୍ବର ବିରାଟ ଆୟୋଜନ ଦେଖିବାର, ଶିଖିବାର ଥିଲା । ସେହି ଅଧିବେଶନବେଳେ କସ୍ତୁରୀ ବାଈ (ଗାନ୍ଧିଜୀଙ୍କ ପତ୍ନୀ) ପୁରୀ ଯାଇ ଜଗନ୍ନାଥ ଦର୍ଶନ କରିଥିବାରୁ ସ୍ୱାମୀଙ୍କଠାରୁ ପ୍ରକାଶ୍ୟ ଭର୍ତ୍ସନା ପାଇଥିଲେ , କାରଣ ଯେଉଁ ମନ୍ଦିରକୁ ହରିଜନଙ୍କ ପ୍ରବେଶ ନିଷିଦ୍ଧ ଥିଲା, ସେଠାକୁ ତାଙ୍କର ମଧ ଯିବାର ନ ଥିଲା । ଶୁଣିଥିଲି, ସ୍ୱାମୀ ସ୍ତ୍ରୀଙ୍କୁ କଥା କହିଲେ ନାହିଁ କିଛିଦିନ । ଏପରି ସବୁ ପରିବାରରେ ଘଟେ, କିନ୍ତୁ ଏପରି କାରଣରୁ ନୁହେଁ । ଆଉ ମଧ ଶୁଣିଥିଲି ନିତ୍ୟାନନ୍ଦବାବୁ (ନିତ୍ୟାନନ୍ଦ କାନୁନ୍‌ଗୋ, ସେତେବେଳେ ମନ୍ତ୍ରୀ ଥିଲେ) ସେଠାରେ ହାଣ୍ଡି ଡଙ୍କା ଧରି କଚା ପାଇଖାନା ସଫା

Digitized by srujanika@gmail.com

କରୁଥିଲେ । ସେବା ଓ ତ୍ୟାଗର ପ୍ରତୀକ ଗାନ୍ଧିଜୀଙ୍କ ପ୍ରଭାବ କିପରି ଓ କେତେଦୂର ଯାଉଥିଲା, ଏଥିରୁ ଜଣା ପଡିବ ।

ବଡପୁଅ ବେବିର (ପ୍ରଭାତ) ବ୍ରତଘର ଗାଁରେ ହେଲା । ତାର ପ୍ରଥମ ବର୍ଷ ସ୍ୱନକ୍ଷତ୍ର ମଧ ଗାଁରେ ହୋଇଥିଲା । ସେତେବେଳେ ମୁଁ ଇନକମ୍‌ଟିକସ ଇନ୍‌ସପେକ୍ଟର ଥିଲି । ଗାଁରେ ଯେପରି ସାଧାରଣତଃ ହୁଏ ତାଠାରୁ ଅଧିକ ହୋଇଥିଲା । ବ୍ରତଘର ପାଇଁ କଟକରୁ କେତେକ ଯିବା ପାଇଁ ଆଗ୍ରହୀ ହେଲେ, ମୋ ଅନୁରୋଧରେ । ନିପଟ ମଫସଲ ଗାଁରେ ପହଞ୍ଚିଲେ ପରିଜା ସାହେବଙ୍କର ସ୍ତ୍ରୀ ଓ ଝିଅମାନେ, ତ୍ରିପାଠୀ ସାହେବଙ୍କ ସ୍ତ୍ରୀ, ବୀରକିଶୋର ରାୟ, ଚିନ୍ତାମଣି ଆଚାର୍ଯ୍ୟ, ସତୀଶଚନ୍ଦ୍ର ବସୁ, ସୁବା ରାଓ (ସିନିଅର ଓକିଲମାନେ) ରବୀନ୍ଦ୍ରନାଥ ସିହ୍ନା, ହରିଚରଣ ମୁଖାର୍ଜୀ, ସୌରୀପ୍ରସାଦ ମହାପାତ୍ର, ହରିଦାସ ସେନ୍, ଦୀନବନ୍ଧୁ ସାହୁ, ଗଦାଧର ଜେନା, (ଓକିଲମାନେ) ଚକ୍ରଧର ମିଶ୍ର, ପଣ୍ଡିତ ଲିଙ୍ଗରାଜ ମିଶ୍ର, ଦିବ୍ୟସିଂହ ମିଶ୍ର, କାହ୍ନୁଚରଣ ମିଶ୍ର, ସତ୍ୟବାଦୀ ମିଶ୍ର ପ୍ରଭୃତି ବନ୍ଧୁମାନେ । ପୁରୀରୁ ଗୋପ ମାମୁଁ, ଶଙ୍କର (ଭିଣୋଇ) ଓ ଅନ୍ୟମାନେ ଆସିଲେ । ବିଶ୍ୱନାଥ ଦାସ (ମୁଖ୍ୟମନ୍ତ୍ରୀ ଥିଲେ, କୁହାଯାଉଥିଲା ପ୍ରାଇମ୍‌ମିନିଷ୍ଟର) ନ ଯାଇପାରି ବ୍ରହ୍ମପୁରୀ ପାଟ ହଳେ ପଠାଇଥିଲେ ବ୍ରତଚାରୀ ପାଇଁ । ଗାଁରେ ଏତେ ବାହାରର ବିଶିଷ୍ଟ ଲୋକଙ୍କ ସମାଗମ ଅସାଧାରଣ ଥିବାରୁ ଗାଁ ଲୋକଙ୍କର ଉଲ୍ଲାସ କହିଲେ ନ ସରେ । ବରଡା ଚାଞ୍ଚ ଛାମୁଣ୍ଡିଆ, ଗାଁ ଦାଣ୍ଡରେ ଧାଡିବସି ଖାଇବା ସମାଗତଙ୍କ ମଧ୍ୟରୁ କେତେକଙ୍କୁ ନୂଆ ଲାଗିଲା । ବୀରବାବୁ ଅନେକ ଦିନ ପର୍ଯ୍ୟନ୍ତ ବ୍ରାହ୍ମଣ ଗାଁ ରନ୍ଧାର ତାରିଫ କରୁଥିଲେ । ବେଦୀ ଉପରେ କାନଫୋଡାବେଳେ ଚିନ୍ତାମଣିବାବୁ ବେବିକୁ ଚିଡାଇବାରୁ ସେ ଗୋଟିଏ କାନଫୋଡା ପରେ ଆଉ କାନ ଆଉ ନ ଦେଖାଇ ଉଠିଗଲା । ଏକ କାନଫୋଡାରେ ପଇତା ପଡିଲା । ଭଦ୍ରଲୋକେ ବାହାରୁ ଯେ ଯାଇଥିଲେ, ତାଙ୍କୁ ଅଲଗା କରି ଆଗ ଖାଇବାକୁ ଦେଇ ବିଦାୟ କରିବାକୁ ହେଲା । ତା ପରେ ଗାଁ ଭୋଜି । ଗାଁ ଦାଣ୍ଡରେ ଧୂଳି ଉପରେ ପାଣିଛିଞ୍ଚି, ତାଳପତ୍ର ଆସନ ପକାଇ ଗ୍ରାମର ସମସ୍ତ ବ୍ରାହ୍ମଣମାନଙ୍କୁ, ଥରେ ଡାକି, ଦ୍ୱିତୀୟ ଥର ନିମନ୍ତ୍ରଣ କରାହେଲା । ଏଇ ବିଧି । ମୋ ଶ୍ୱଶୁର ଚୌଧୁରୀ ନରହରି ଦାସ ଆସିଥିଲେ ନାତି ଉପନୟନ ପାଇଁ । ସେ ଦାଣ୍ଡକୁ ଆସିଲେ ସଭାରେ (ଖାଇବା ପଂକ୍ତି) ବସିବା ପାଇଁ । ସବୁଠାରେ ଖଳ ଲୋକ ଥାଆନ୍ତି । ଗାଁର ଜଣେ ଦିଜଣ ଆପତ୍ତି ଉଠାଇଲେ ପରସ୍ପର କୁହାକୋହିରେ ଯେ ଭିଙ୍ଗାରପୁର ଚୌଧୁରୀ

Digitized by srujanika@gmail.com

ସଭାରେ ବସିଲେ ଗାଁ ବ୍ରାହ୍ମଣ ସାମନ୍ତମାନେ ସେ ସଭାରେ ବସିବେ ନାହିଁ, କାରଣ ଭିଙ୍ଗାରପୁର ଚୌଧୁରୀ ବ୍ରାହ୍ମଣ ଜାତି କୂଳ ମର୍ଯ୍ୟାଦାରେ ଊଣା । ଭୋଜି ପ୍ରସ୍ତୁତ, ସ୍ଥାନ ପ୍ରସ୍ତୁତ, ପରଷୁଣୀ ପ୍ରସ୍ତୁତ, ଦୁଇଥର ଡକା ଓ ନିମନ୍ତ୍ରଣ ସରିଲାଣି, ଅଥଚ କେହି ଆସୁ ନାହାନ୍ତି । ବୋଉର ପିଇସି ପୁଅ ଭାଇ, ମୋ ମାମୁଁ, ପଣ୍ଡିତ ବିଶ୍ୱନାଥ ରଥ ଆସି ନନାଙ୍କୁ କହିଲେ ଗାଁରେ ଫୁଟପାଟ ହେଉଥିବା ଲୋକଙ୍କ କଥା । ପ୍ରସ୍ତାବ ଆସିଲା, ଚୌଧୁରୀ ସଭାରେ ନ ବସନ୍ତୁ । ସେ ନାତି ବ୍ରତଘର ସଭାରେ ବସିବାକୁ ଶ୍ରଦ୍ଧା ମନରେ ବାହାରିଛନ୍ତି, ତାଙ୍କୁ ମନାକଲେ, କେତେ ଅପମାନ ଲାଗିବ, ସେ କଥା ଗାଁ ଲୋକେ ବିଚାରି ପାରିଲେ ନାହିଁ । ମୁଁ ଗାଁ ଭିତରକୁ ଯାଇ କହିଲି, ଆଗରୁ ଏ ଆପତ୍ତି ଜାଣିଥିଲେ, ପ୍ରତିକାର ଅବା କରାଯାଇ ଥାଆନ୍ତା । ଏବେ ଶ୍ୱଶୁର ସଭାକୁ ଆସି ସାରିଛନ୍ତି, ତାଙ୍କୁ ଅସମ୍ମାନ କୌଣସି ପ୍ରକାରେ ହେବାକୁ ମୁଁ ଦେଇପାରିବି ନାହିଁ । ଆପଣମାନେ ନ ଆସିଲେ, ସମସ୍ତ ଭୋଜି ଧୋବା, ବାଉରିଙ୍କୁ ଦେଇ, ବାକୀ ଗଡିଆ ପାଣିରେ ପକାଇଦେବି । ଶ୍ୱଶୁରଙ୍କ ମାନ ରହୁ, ଆପଣମାନଙ୍କ ମାନ ରହୁ । ଆପଣମାନଙ୍କ ପାଇଁ ଗୋପୀନାଥଙ୍କ (ଗ୍ରାମର ଇଷ୍ଟ ଦେବତା) ପାଖରେ ମୁଁ ପାଞ୍ଚ ଟଙ୍କା ଦେଉଛି, ଆପଣମାନେ ଆସନ୍ତୁ । ସମସ୍ତେ ରାଜି ହୋଇଗଲେ, ସଭାକୁ ଆସିଲେ । ଭୋଜ୍ୟର ବହୁଳ ଆୟୋଜନ ସମସ୍ତଙ୍କୁ ଜଣାଥିଲା ଆଗରୁ । ଗାଁ ନିଶାପ ଏହିପରି ଛିଣ୍ଡେ । ସଭାରେ ବ୍ରାହ୍ମଣମାନେ ବସିଲା ପରେ ମାମୁଁ ପଣ୍ଡିତ ବିଶ୍ୱନାଥ ରଥେ ଶ୍ଳୋକ ବୋଲି ଏପରି ସୃଷ୍ଟି କଲେ ଯେ ସମସ୍ତେ ଖୁସିବାସିରେ ଖାଇ ଭୁରି ଭୁରି ପ୍ରଶଂସା କରି ବାହୁଡିଲେ । ଯେ ଅଡି ବସିଥିଲେ, ସେ ଖଡି ଗଡେଇଲେ ।



Digitized by srujanika@gmail.com

# ଦରଦୀ ବନ୍ଧୁ

ବୋଧହୁଏ ୧୯୩୯ ଫେବୃଆରୀ ମାସରେ ଅନ୍ନଦା ସପରିବାର ବମ୍ବେ, ମାଡ୍ରାସ ବୁଲି ଢେଙ୍କାନାଳ, କଟକ ଆସିଥିଲେ । ଛୁଟି ନେଇ ପ୍ରାୟ ଦୁଇମାସ ଭାରତର ଭିନ୍ନ ଭିନ୍ନ ସ୍ଥାନ ବୁଲିବା ପରେ ଓଡିଶା ବାଟେ କଲିକତା ଫେରୁ ଥାଆନ୍ତି । ମତେ ବମ୍ବେଠାରୁ ଅଜନ୍ତା ଗୁମ୍ଫାର ଏକ ଚିତ୍ର କାର୍ଡ ପଠାଇଥିଲେ । ସେଥିରେ ଥିଲା ବୁଦ୍ଧଙ୍କ ସ୍ତ୍ରୀଙ୍କର ପ୍ରତିକୃତିର ଛବି । ତାପରେ ମାଡ୍ରାସରୁ ଚିଠି ଲେଖିଲେ; କଟକ, ଢେଙ୍କାନାଳ ଆସିବା କଥା । କଟକରେ ପହଞ୍ଚି ଦୁର୍ଭାଗ୍ୟ ଭେଟିଲେ । ସ୍ତ୍ରୀ ଲୀଳା, ପୁଅ ପୁଣ୍ୟଶ୍ଳୋକ, ଝିଅ ଜୟା ଓ ଦୀପ୍ତି ଓ ଏକ ଶିଶୁପୁତ୍ର ସାଙ୍ଗରେ ଥିଲେ । ଶିଶୁଟି ଅସୁସ୍ଥ ହେବାରୁ କଟକ ହାସପାତାଳ ନର୍ସିଙ୍ଗ ହୋମରେ ରଖି ଚିକିତ୍ସା ହେଲା । ନା ଡାକ୍ତର, ନା ଆମେ, କେହି ପିଲାଟିକୁ ରଖି ପାରିଲୁ ନାହିଁ । ସେ ସମୟରେ ଲୀଳାଙ୍କର ଶୋକ ଉଚ୍ଛ୍ୱାସ ଅସମ୍ଭାଳ । ତାଙ୍କୁ ଟିକିଏ ସାନ୍ତ୍ୱନା କରିବା ପାଇଁ ଇଂରେଜ ନର୍ସ ସିଷ୍ଟର ଟିକିଏ ଲଘୁସୁରା ଆଣି ଯାଚିଲେ । ଲୀଳା ଗଳାରେ ଶୋକର ସୁରା, ଅନ୍ୟ ସୁରାର ସ୍ଥାନ ନଥିଲା । ସେ ପ୍ରତ୍ୟାଖାନ କରିବାରେ ନର୍ସ ଅସହାୟବୋଧ କଲେ । ଶୋକରେ ହାସପାତାଳ ପର୍ବ ସାରି ଫେରିଲୁ ଆମେ । ଅନ୍ନଦା ଖଣ୍ଡିତ ପରିବାରକୁ ନେଇଗଲେ କଲିକତା ଓ ସେଠାରୁ କମିଲା, ଯେଉଁଠାରେ ତାଙ୍କର କାର୍ଯ୍ୟବସତି ଥିଲା । କେତେମାସ ପରେ ଚିଠି ଖଣ୍ଡିଏ ପାଇଲି ତାଙ୍କଠାରୁ ।

COMILLA
20th June-1939

My dear Hara,

I have ever wished to write to you but always at a loss for words. They say time is the great healer: do'nt believe them. Time works when love is idle. Where love keeps vigil, time can

Digitized by srujanika@gmail.com

only restore appetite and bring back energy and make the usual active life possible. In short Time can oil the body machine. It is utterly unable to fill the heart or wipe its silent tears or make it forget. How stupid I was when I prescribed the Time remedy to grieving folk ! the right remedy is to love incessantly and have faith in a loving God who unites, disunites, reunites us according to our soul's prayer.

Lila has outwordly revovered. Punya has made amazing progress in his studies. Little Joya is fast growing up.

Our misfortune had a silver lining. How generously you came to my aid and sweetened my anxiety ! You have been a brother to me. May you retain your soft and sincere nature. With a little luck you might have cought that train and saved my child by your right advice. Had you not been held up by some one the following evening, things might have been different. Lila remembers you with gratitude.

Best regards to you both. Love to your children.

Yours offly
Anu

ଅନ୍ନଦା, ଲୀଳାଙ୍କର ଏ ଶୋକ ବାରମ୍ବାର ଉଛୁଳିଛି ତାଙ୍କ ଲେଖାରେ ଓ ଅନ୍ୟ ଅଭିବ୍ୟକ୍ତିରେ ।

ନିଜ ଦୁଃଖକୁ ସ୍ମରଣ କରନ୍ତି ଅନ୍ନଦା ପରଦୁଃଖରେ । ପରଦୁଃଖକୁ ଭାବନ୍ତି ନିଜ ଦୁଃଖର ଚିତ୍ରରେ । ବୌଦ୍ଧିକତା ସେ ଦୁହିଁଙ୍କର ହୃଦୟବତ୍ତାକୁ ଅତିକ୍ରମ କରିପାରି ନାହିଁ ।

ଅନ୍ନଦା କଟକ ଆସିଲେ ଆମ ଘରେ କିମ୍ବା ସାନ କକା ହରଶ୍ଚନ୍ଦ୍ର ରାୟଙ୍କ ଘରେ ରହନ୍ତି । ହରିଶ୍ଚନ୍ଦ୍ର ରାୟ, ଆମ ସମସ୍ତଙ୍କର ହରିଶ କାକା । ଆମ୍ଭମାନଙ୍କୁ ପୁତ୍ରବତ୍ ସ୍ନେହ କରନ୍ତି । ଜଣେ ଆଦର୍ଶବାଦୀପରି ଚଳୁଥିଲେ, ସରକାରୀ ଚାକିରୀ କରୁଥିଲେ ମଧ୍ୟ ।

Digitized by srujanika@gmail.com

ଅନ୍ନଦାଙ୍କର ବିପତ୍ତି ପରି ଆମର ଘଟିଲା । ଏକ ଶିଶୁପୁତ୍ରକୁ ଆମେ ହରାଇ ବସିଲୁ । ବୈକୁଣ୍ଠଙ୍କଠାରୁ ସେ ଖବର ପାଇ, ଦରଦୀ ବନ୍ଧୁ ଅନ୍ନଦା ଚିଠି ଲେଖିଥିଲେ ।

COMILLA
26th June-1939

My dear Hara,

What is this that Baikuntha writes ? Are you that Hari whose misfortune he mentions ? Is it possible that you who generously helped a poor child in his fatal illness a few months ago should be destined to be a helpless spectator in an identical case concerning your own child ? Lila is deeply moved. What can sorrowing mother say to another ? or one sorrowing father to another ? You have caught our contagion. This is how friendship is rewarded ! We wish we could be with you at this hour.

You have always believed in God. There is none else that can give you the best relief. Pray for the little one to whom life was denied so soon–who was torn away from his playmate to face the unknown before he had gathered enough strength and joy.

This is a mystery which mankind has not yet been able to solve. Those who talk of chance and void and all that, do not know what they mean. All that we know is that God has been exceedingly merciful to us in our own lives. He cannot fail to be so to our children here or hereafter. Whereever they be, love to the brim of your heart and always pray for the one that is unseen. May he come back to you.

Yours affly.
Annada.

Digitized by srujanika@gmail.com

ଦୁଃଖ ଆମର ସରି ନ ଥିଲା । ଅନ୍ନଦାଙ୍କ ସଙ୍ଗେ ପତ୍ର ବିନିମୟରେ ସମବେଦନା ଦିହେଁ ପାଉଥିଲୁ । ଅନ୍ନଦା ଓ ଲୀଳା ଅତ୍ୟଧିକ ସନ୍ତାନ-ସ୍ନେହୀ । ପିଲାଙ୍କ ଚିନ୍ତା ସେମାନଙ୍କର ସବୁବେଳେ । ମାଡ୍ରାସରୁ ଆସିଲାବେଳେ, ମାଡ୍ରାସ ମେଲ ରାତିଅଧରେ କଟକରେ ପହଞ୍ଚୁ ଥିବାରୁ, ମତେ ଆଗରୁ ଚିଠି ଲେଖିଥିଲେ, ଷ୍ଟେସନ୍ ପାଖ ଡାକବଙ୍ଗଳାରେ କିମ୍ବା କଲେଜ ହଷ୍ଟେଲରେ ତାଙ୍କର ସେଦିନର ଅବଶିଷ୍ଟ ରାତ୍ରିଯାପନ ପାଇଁ ବ୍ୟବସ୍ଥା କରିବା ପାଇଁ । ସହର ଭିତରକୁ ଟ୍ରେନ୍‌ରୁ ଓହ୍ଲାଇ ଆସିଲେ ପିଲାଙ୍କର ନିଦ୍ରା ବ୍ୟାଘାତ ହେବା ଆଶଙ୍କା ଯୋଗୁ ରାତ୍ରିଟା ଷ୍ଟେସନ ପାଖରେ କଟାଇଦେବାକୁ ଇଚ୍ଛା କରିଥିଲେ । ପିଲାଏ ବଡ ହୋଇ ସେମାନଙ୍କର ସଂସାର କଲେ ମଧ, ସେମାନଙ୍କ ପାଇଁ ପିତା ମାତାଙ୍କର ଉଦ୍‌ବିଗ୍ନତାର ହ୍ରାସ ଘଟିନାହିଁ । ସ୍ନେହସର୍ବସ୍ୱ ପରିବାର ତାଙ୍କର ।

ମୋ ମଝିଆ ପୁଅ ବସନ୍ତର ଉପନୟନ ମଧ ହେଲା ଗ୍ରାମରେ । ବେବି ବ୍ରତଘର ଜାକଜମକରୁ କମ୍ ଥିଲା, ଯଦିଓ କେତେକ ବନ୍ଧୁ କଟକ, ପୁରୀରୁ ଯାଇଥିଲେ । ଚିନ୍ତାମଣି ଆଚାର୍ଯ୍ୟ, ଲିଙ୍ଗରାଜ ମିଶ୍ରେ, ଚକ୍ରଧରବାବୁ ପ୍ରଭୃତି ସକାଳୁ ରାତିଯାଏ ରହି ସବୁକାମ ବୁଝାସୁଝା କରୁଥିଲେ । ବ୍ରତଘରର ଚାରିଦିନ ଆଗରୁ ଆମେ ଗାଁକୁ ଯାଇଥିଲୁ । ଯିବା ପରଦିନ ବସନ୍ତ ତଳର ପୁଅ ଅନୁର (ଅନନ୍ତ) ହଠାତ୍ ବସନ୍ତ ଦେଖାଗଲା । ଆମ ସମସ୍ତଙ୍କ ମନ ଏକାବେଳେକେ ଦବିଗଲା । କୌଣସିମତେ ବ୍ରତଘର ସାରିବା ପାଇଁ ବ୍ୟଗ୍ର ହେଲୁ । ଦୁଇଦିନ ପରେ ଦେଖିଲୁ ସାନଝିଅ (ସୁଚିତ୍ରା) ବୁଢ଼ୀର ବସନ୍ତ ବାହାରିଲା । ଅନୁ ଟିକିଏ ଭଲହେବା ପରେ ଆମେ କଟକ ଫେରିଲୁ । ଅନୁକୁ ଘର ଭିତରୁ କାନ୍ଧରେ ପକାଇ ମୁଁ ଗାଡିକୁ ଆସିଥିଲି । ଝିଅକୁ ଟେକିକରି ଆଣିବାକୁ ହେଲା । କଟକରେ ଅନୁ ସୁସ୍ଥ ହେଲା । ବସନ୍ତର ଚିହ୍ନ ରହିଗଲା ମୁଖମଣ୍ଡଳରେ । ଝିଅ ରୋଗରୁ ଉଠିଲା ନାହିଁ । ଶେଷ ଦିନର ସାରା ରାତି ବସିରହିଲି ତା ପାଖରେ । ସକାଳ ଆଠଟାବେଳକୁ ତାର ଶେଷନିଃଶ୍ୱାସ ଦେଖି ବାରନ୍ଦାକୁ ଆସିଲି । ଲିଙ୍ଗରାଜବାବୁ (ପଣ୍ଡିତ ଲିଙ୍ଗରାଜ ମିଶ୍ର, ସମାଜ) ତତ୍‌କ୍ଷଣାତ୍ ପହଞ୍ଚିଲେ ଆମକୁ ବୋଧ ଦେବା ପାଇଁ । ଝିଅର ଶେଷ ପଦକ କଥା— ଢୋରସେ ଚଲାଅ (ପଙ୍ଖା)—କାନରେ ଏବେ ବି ଶୁଭୁଛି । ବିପଦ ସରିଲା ନାହିଁ । ଅନୁ ତଳ ଶିଶୁପତ୍ର (ରଜତ) କୁନା ବୋଲି ଡାକୁଥିଲୁ, ସେହି ରୋଗରେ ଆକ୍ରାନ୍ତ ହେଲା, ଝିଅର ଅସୁସ୍ଥତା ଭିତରେ । ନନା, ଗାଁରୁ ଆସିଥିଲେ । ଶିଶୁର ଅନ୍ତିମଶଯ୍ୟା ନିକଟରେ

Digitized by srujanika@gmail.com

ସେ ବସି ରହିଥିଲେ । ମୁଁ ବାରନ୍ଦାରେ, ସ୍ତ୍ରୀ ଅନ୍ୟ ଘରେ ନିରାଶାକୁ ଆଶ୍ରୟ କରି ଅପେକ୍ଷା କରୁଥାଉ । ଝିଅ ଯିବାର ଦୁଇଦିନ ପରେ କୁନା ବି ଗଲା । ସେହି ସମୟରେ ଆସିଥିଲେ ରାଧାନାଥବାବୁ (ସମାଜ) ଆମକୁ ସମ୍ଭାଳିବା ପାଇଁ । ସାନଭାଇ କୃଷ୍ଣ ବେଳକୁ ଆଉ ଏତେବେଳକୁ ତାଙ୍କର ଯେଉଁ ଅନ୍ତରଂଗ ସହୃଦୟତା ମିଳିଥିଲା, ଜୀବନର ଶେଷଯାଏ ତାହା ସ୍ମରଣ ରହିବ । ମୁଁ ସର୍ବଦା ତାଙ୍କ ନିକଟରେ କୃତଜ୍ଞ । ପରପର ଦୁଇ ସନ୍ତାନର ବିରହରେ ପତ୍ନୀ ଭାଙ୍ଗିପଡିଲେ । ସମବେଦନା ମିଳିଲା ଅନେକଙ୍କଠୁ, କିନ୍ତୁ ବେଦନା ଲାଘବ ହେଲା ନାହିଁ ।



Digitized by srujanika@gmail.com

# କୁ-ଅପରେଟିଭ ସଙ୍ଗଠନ

ପୁରୀ,କଟକ, ବାଲେଶ୍ୱର ଜିଲ୍ଲାରେ ସହଯୋଗ ସମିତି ଓ ସହଯୋଗ ବ୍ୟାଙ୍କ ସ୍ଥାପନ ଅତି ମନ୍ଥର ଗତିରେ ଆରମ୍ଭ ହୋଇଥିଲା ଦ୍ୱିତୀୟ ଦଶକରେ । ଆମ ଗାଁରେ ଗୋଟିଏ ସହଯୋଗ ସମିତି ଗଢ଼ାହେଲା, ମୁଁ ସ୍କୁଲରେ ପଢ଼ିଲାବେଳେ । ନନା ସେଥିରେ ଜଣେ ସଭ୍ୟ ଥିଲେ । ନାମକୁ ମାତ୍ର ଅଂଶଧନ ଦେଇ ଅନ୍ୟୁନ ଦଶଜଣ ସଭ୍ୟ ହେଲେ, ଗୋଟିଏ ସହଯୋଗ ସମିତି (କୁ-ଅପରେଟିଭ ସୋସାଇଟି) ଗଢ଼ାଯାଏ । ସେହି ପ୍ରକାରର ଅନେକଗୁଡ଼ିଏ ସମିତିକୁ ନେଇ ଜିଲ୍ଲା ସ୍ତରରେ ସେଣ୍ଟ୍ରାଲ କୁ-ଅପରେଟିଭ ବ୍ୟାଙ୍କ କାର୍ଯ୍ୟ କରେ । ସେହି ବ୍ୟାଙ୍କରୁ ଅତି ଅଳ୍ପ ସୁଧରେ ଟଙ୍କା ଆଣି, ସହଯୋଗ ସମିତି ଗୁଡ଼ିକ ନିଜ ନିଜ ସଭ୍ୟମାନଙ୍କୁ ଚାଷ, ବଣିଜ କରିବାକୁ ସୁଲଭ ସୁଧରେ କରଜ ଦିଅନ୍ତି ଏବଂ ସେହି ଋଣ ସହଜ କିସ୍ତିରେ ପରିଶୋଧ କରିବାର ନିୟମ । ଡେନମାର୍କ ପ୍ରଭୃତି ଦେଶରେ ଏହି ପ୍ରକାର ସଙ୍ଗଠନଦ୍ୱାରା ଲୋକେ ବହୁଳ ଭାବରେ ଉପକୃତ ହେଉଥିବାରୁ, ଇଂରେଜ ସରକାର ବେସରକାରୀ ଭାବରେ ଏହି ସଙ୍ଗଠନ ଆମ ଦେଶରେ ଆରମ୍ଭ କରିଥିଲେ । ଏହା ଏକ ସ୍ୱୟଂଶାସିତ ସଂସ୍ଥା । ଆଇନର ପ୍ରଶାସନିକ ତଦାରଖ ପାଇଁ କେବଳ ସରକାରୀ କର୍ମଚାରୀ ଅତି ଅଳ୍ପ ନିଯୁକ୍ତ ଥିଲେ । ଅନ୍ୟଥା, ଅନ୍ୟ ସମସ୍ତେ ବେସରକାରୀ । ପିଲାଦିନେ ମୁଁ ଦେଖିଥିଲି ବନବିଦ୍ୟାଳୟର ଶିକ୍ଷକ କୃପାସିନ୍ଧୁ ମିଶ୍ର, ଆଚାର୍ଯ୍ୟ ହରିହର ଦାସ, ଆମ ଗାଁ ସମିତିର କାଗଜପତ୍ର ତଦାରଖ କରିବାକୁ ଆସୁଥିଲେ । ପୁରୀ ସେଣ୍ଟ୍ରାଲ କୁ-ଅପରେଟିଭ ବ୍ୟାଙ୍କରେ ସେମାନେ ଡିରେକ୍ଟର ହୋଇଥିଲେ । ମୋ ମାମୁଁ ଗୋପୀନାଥ ମିଶ୍ର ମଧ୍ୟ ଜଣେ ଡିରେକ୍ଟର କିଛିକାଳ ଥିଲେ ।

ମୁଁ କଟକରେ ଓକାଲତି ଆରମ୍ଭ କରିବା ପୂର୍ବରୁ କାଳିନ୍ଦୀ କଟକ ସେଣ୍ଟ୍ରାଲ କୁ-ଅପରେଟିଭ ବ୍ୟାଙ୍କ ଅଧୀନରେ ଚାକିରୀ ଗ୍ରହଣ କରିଥାଆନ୍ତି । ଶରତ୍ ଡେପୁଟି ମାଜିଷ୍ଟ୍ରେଟ ହୋଇ କଟକ ସର୍କଲ କୁ-ଅପରେଟିଭ ସୋସାଇଟିଜ୍‌ର ଆସିଷ୍ଟାଣ୍ଟ

Digitized by srujanika@gmail.com

ରେଜିଷ୍ଟ୍ରାର ନିଯୁକ୍ତି ଥିଲେ । ଆଉ ଜଣେ ସେହିପରି ଥିଲେ ସତୀଶଚନ୍ଦ୍ର ରାୟ । ସେମାନଙ୍କ ଉପରେ ଡେପୁଟି ରେଜିଷ୍ଟ୍ରାର ଏନ.କେ.ରାୟ ଅତି ନିଷ୍ପାପର ଜଣେ ଅଫିସର କଟକରେ ଅବସ୍ଥାପିତ ହୋଇଥାଆନ୍ତି । ବକ୍‌ସି ବଜାରରେ ଆସିଷ୍ଟାଣ୍ଟ ରେଜିଷ୍ଟ୍ରାର ଦ୍ୱୟିଙ୍କ ଅଫିସ ଓ କାଣ୍ଟନମେଣ୍ଟ ରୋଡରେ ଏନ୍.କେ.ରାୟଙ୍କ ଅଫିସ ଥାଏ । କଟକ ସେଣ୍ଟ୍ରାଲ କୁ-ଅପରେଟିଭ ବ୍ୟାଙ୍କ ଲାଲବାଗ ପୁଲିସ ଥାନା ପାଖରେ କଟକ ସିଭିଲ କୋର୍ଟ ସାମନାରେ ଗୋଟିଏ ଦୋତାଲା କୋଠାରେ କାର୍ଯ୍ୟ କରୁଥାଏ । ରାମଚନ୍ଦ୍ର ଦାଶ ଓକିଲ ତାହାର ସମ୍ପାଦକ ଥାଆନ୍ତି । ମୁଁ ସେହି ବ୍ୟାଙ୍କର ଅଳ୍ପ କେତୋଟି ଅଂଶ କ୍ରୟ କରି ସଭ୍ୟ ହେବାର ଅଳ୍ପଦିନ ପରେ ତାହାର ଜଣେ ଡିରେକ୍ଟର ରୂପେ ନିର୍ବାଚିତ ହେଲି ଏବଂ ଅତି ଘନିଷ୍ଠ ଭାବରେ ସେ କାର୍ଯ୍ୟରେ ସଂପୃକ୍ତ ହେଲି । ବ୍ୟାଙ୍କର ଡିଗ୍ରୀଜାରି ସେକ୍‌ସନର ଦାୟିତ୍ୱ ଅନେକ ବର୍ଷ ତୁଲାଇବାକୁ ପଡିଲା । ବ୍ୟାଙ୍କ ତରଫରୁ ବିହାର ଓଡିଶା କୁ-ଅପରେଟିଭ ଫେଡ୍‌ରେସନ୍‌ର ବାର୍ଷିକ ଅଧିବେଶନରେ ଯୋଗ ଦେବାପାଇଁ ଜାମସେଦ୍‌ପୁର, ଛାପ୍ରା ପ୍ରଭୃତି ସ୍ଥାନକୁ ଯାଉଥାଏ । ସେଠାରେ ସକ୍ରିୟ ଅଂଶଗ୍ରହଣ କରୁଥିବାରୁ ଫେଡେରେସନର କାର୍ଯ୍ୟକାରୀ କମିଟିର ସଭ୍ୟ ବହୁ ବର୍ଷଧରି ନିର୍ବାଚିତ ହେଉଥିଲି । ସେହି କମିଟିରେ ଯୋଗ ଦେବାପାଇଁ ପ୍ରାୟ ପ୍ରତି ଦୁଇମାସରେ ପାଟନା ଯାଉଥାଏ । ସମବାୟ କ୍ଷେତ୍ରରେ ସେତେବେଳେ ବେସରକାରୀ ଭାବରେ କାର୍ଯ୍ୟ କରୁଥିଲେ ଅଧ୍ୟାପକ ବିପିନ୍‌ବିହାରୀ ରାୟ, ଚିନ୍ତାମଣି ଆଚାର୍ଯ୍ୟ (ଓକିଲ), ଯଦୁମଣି ମଙ୍ଗରାଜ (କଂଗ୍ରେସ କର୍ମୀ), ବାଙ୍କନିଧି ପଟ୍ଟନାୟକ (ଖୋର୍ଦ୍ଧା ହାଇସ୍କୁଲ ହେଡମାଷ୍ଟର), ପଦ୍ମଚରଣ ପଟ୍ଟନାୟକ (ପୁରୀର ଓକିଲ, କବି), ବ୍ରହ୍ମାନନ୍ଦ ମହାନ୍ତି (ପୁରୀର ଓକିଲ), ପ୍ରଫୁଲ୍ଲ ଚନ୍ଦ୍ର ପଟ୍ଟନାୟକ (ବାଲେଶ୍ୱର), କୁଜଙ୍ଗ ଇଷ୍ଟେଟର ମାନେଜର ରାଜେନ୍ଦ୍ର ସେନ୍, କୁଜଙ୍ଗ ହାଇସ୍କୁଲର ହେଡମାଷ୍ଟର ସରୋଜ (?) ବୋଷ ପ୍ରମୁଖ ଅନେକ ବିଶିଷ୍ଟ ବ୍ୟକ୍ତି । ଏମାନଙ୍କ ମଧ୍ୟରୁ ଅଧିକାଂଶ ଓଡିଶା କ୍ଷେତ୍ରରେ ସୀମିତ ରହିଲେ । ମୁଁ ପ୍ରାଦେଶିକ (ବିହାର ଓଡିଶା) ସ୍ତରରେ ମଧ୍ୟ କାର୍ଯ୍ୟ କରିବାର ଓ ପରିଚିତ ହେବାର ସୁଯୋଗ ପାଇଥିଲି । ସେ ସମୟର କୁ-ଅପରେଟିଭ ସୋସାଇଟିଜ୍‌ର ରେଜିଷ୍ଟ୍ରାର ରୂପେ ଗଡବୋଲେ ସାହେବ, ଆନ୍‌ସର୍ଯ ସାହେବ (ଉଭୟ ଆଇ.ସି.ଏସ୍. ଅଫିସର) ଓଡିଶାକୁ ଗସ୍ତରେ ଆସିଲାବେଳେ ସାମାଜିକ ସୌଜନ୍ୟ ଭାବରେ କେବଳ ଆମ ବସାକୁ ଆସୁ ଥିବାରୁ ଅନ୍ୟମାନେ ମୋ ପ୍ରତି ଅପ୍ରସନ୍ନ ହେଉଥିଲେ (ଈର୍ଷାନ୍ୱିତ ବୋଧହୁଏ ନୁହେଁ) । ମୋ ପଛରେ ଓ ବେଳେବେଳେ ମୋ

Digitized by srujanika@gmail.com

ଶୁଣିବାରେ କେହି କେହି ବିଦ୍ରୂପ କରି ମଧ କହୁଥିଲେ — ସେ ସାହେବ, ତାଙ୍କ ଘରକୁ ସାହେବ ନ ଆସି କଅଣ ଆମ ଘରକୁ ଆସନ୍ତେ ଇତ୍ୟାଦି । କୌତୁକ ଓ ପରିହାସରେ ଏ ସବୁ କଥା ଉଡିଯାଏ, କିନ୍ତୁ ଶ୍ଳେଷ୍ମ ରହିଯାଏ । ଏକମାତ୍ର ବିପିନବିହାରୀ ରାୟ ମୋର ଏ ପ୍ରକାର ସାମାଜିକ ସମ୍ଭ୍ରମ ଲାଭରେ ସନ୍ତୋଷ ଲାଭ ପ୍ରକାଶ କରୁଥିଲେ । ଅତି ଉଦାର ସ୍ନେହୀ ଲୋକ ତାଙ୍କ ପରି ବିରଳ ।

ଓଡିଶାରେ ପ୍ରଥମ (Land Mortgage Bank) ଭୂ-ସମ୍ପତ୍ତି ବନ୍ଧକ ବ୍ୟାଙ୍କ ଆରମ୍ଭ ହେବାରେ ବିପିନ୍‌ବାବୁ ତାହାର ଚେଆରମ୍ୟାନ, ମୁଁ ଜଣେ ମନୋନୀତ ଡିରେକ୍ଟର ହେଲି । ଅନେକ ବର୍ଷ ସେପରି ଚାଲିଲା । ସେଥିରେ ମୋର କାର୍ଯ୍ୟ ଓ ପରାମର୍ଶକୁ ବିପିନବାବୁ ଏବଂ ତାଙ୍କୁ ଅନୁକରଣ କରି ଅନ୍ୟମାନେ ଗୁରୁତ୍ୱ ଦେଉଥିବାର ମୁଁ ଲକ୍ଷ୍ୟ କରି ଉତ୍ସାହିତ ହେଉଥାଏ । ଡେପୁଟି ରେଜିଷ୍ଟ୍ରାର ଏନ୍.କେ.ରାୟ ସମବାୟ କ୍ଷେତ୍ରରେ ମୋର 'କର୍ମ କୁଶଳତା ଓ ଦୂରଦୃଷ୍ଟି' (ଏହା ତାଙ୍କର ଲିଖିତ ଏକ ରିପୋର୍ଟର ଭାଷା) ପସନ୍ଦ କରୁଥିବା ଜାଣି ମୁଁ ବିସ୍ମିତ ହେଇଥିଲି । ପ୍ରକୃତରେ ସେପରି ମୋର କିଛି ନଥିଲା । କିମ୍ବା ମୁଁ ସେପରି କିଛି ଚେଷ୍ଟା ମଧ କରି ନଥିଲି । ଅନ୍ୟମାନଙ୍କ ଅପେକ୍ଷା ମୁଁ ଟିକିଏ ଅଧିକ ସଭା, କମିଟି, ବୈଠକମାନଙ୍କରେ କୁହାବୋଲା କରେ ବୋଲି ସେପରି ଏକ ଧାରଣା ବୋଧହୁଏ ସୃଷ୍ଟି ହୋଇଥିଲା । ଫେଡେରେସନର ବାର୍ଷିକ ଅଧିବେଶନରେ ମୋର ମତ ଓ ପ୍ରସ୍ତାବମାନ ଅକ୍ଲେଶରେ ଓ ସର୍ବସମ୍ମତିକ୍ରମେ ଗୃହୀତ ହେଉଥିବାରୁ, ସରକାରଙ୍କ ତରଫରୁ କୌଣସି ପରାମର୍ଶ ବା ପ୍ରସ୍ତାବ ଥିଲେ, ରେଜିଷ୍ଟ୍ରାର, ଡେପୁଟି ରେଜିଷ୍ଟ୍ରାର, ସଭାରେ ତାହା ଆଗତ ହେବା ପୂର୍ବରୁ ଅନେକ ସମୟରେ ମୋ ସହିତ ଆଲୋଚନା କରୁଥିବା ସମସ୍ତଙ୍କ ଦୃଷ୍ଟିରେ ପଡୁ ଥିଲା । ଏହାର ଏକମାତ୍ର କାରଣ ଥିଲା, ସମବାୟ ସଂକ୍ରାନ୍ତ ରିପୋର୍ଟ । ସର୍କ୍ୟୁଲାର ଇତ୍ୟାଦି ଦେଖିବା, ପଢ଼ିବା, ତନଖି କରିବାରେ ଅନ୍ୟମାନେ ପ୍ରାୟ ବୀତସ୍ପୃହ ଥିଲେ । ମୁଁ ସେ ସବୁ ଅଭ୍ୟାସବଶତଃ ଟିକିଏ ଦେଖା ଚାହାଁ କରୁ ଥିଲି । ତେଣୁ ମୋ ମତାମତ ଓ ମନ୍ତବ୍ୟ ଶୁଣାଯାଉ ଥିଲା ।

ଏନ୍.କେ. ରାୟ ବଙ୍ଗୀୟ, ଶିକ୍ଷିତ ସୁରୁଚିସଂମ୍ପନ୍ନ ବ୍ୟକ୍ତି । ଖ୍ରୀଷ୍ଟାନ କେବଳ ଧର୍ମରେ ନଥିଲେ, ବିଶ୍ୱାସରେ ନୀତିବାନ । ସେ ଓଡିଶାକୁ ଡେପୁଟି ରେଜିଷ୍ଟ୍ରାର ହୋଇ ଆସିବା ପୂର୍ବରୁ, ବିହାରରେ ଆସିଷ୍ଟାଣ୍ଟ ରେଜିଷ୍ଟ୍ରାର ଭାବେ କାର୍ଯ୍ୟ କରୁଥିଲେ । ସେତେବେଳେ ସେ ହଜାରିବାଗରେ ଘର କରିବା ପାଇଁ ଖଣ୍ଡିଏ ଛୋଟ ଜାଗା

Digitized by srujanika@gmail.com

କିଣିଥିଲେ । ନିୟମ ଅନୁଯାୟୀ ସରକାରୀ କର୍ମଚାରୀ ସମ୍ପତ୍ତି କ୍ରୟ ପୂର୍ବରୁ ସରକାରଙ୍କ ଅନୁମତି ପାଇଁ ଅନ୍ତତଃ ଜଣାଇବା ଆବଶ୍ୟକ । ସେ ତାହା କରି ନଥିଲେ । ଓଡିଶାକୁ ଆସିବାର କେତେବର୍ଷ ପରେ ତାଙ୍କ ମନରେ ଏକ ଚିନ୍ତା ଉଠିଲା ଯେ ସେ ଅନୁମତି ନ ନେଇ ଜମି କିଣିବା ଦ୍ୱାରା ଏକ ଗୁରୁତର ନୀତିଗତ ଅନ୍ୟାୟ କରିଛନ୍ତି । ଖ୍ରୀଷ୍ଟ ଧର୍ମାନୁଯାୟୀ ଅନୀତିର ସ୍ୱୀକାର (Confession) କରଣୀୟ । ତେଣୁ ଥରେ ସେ ବିଲାତରୁ ଜାହାଜରେ ଆସୁଥିଲାବେଳେ (ବୋଧହୁଏ ୧୯୩୬) ବିହାର ଓଡିଶା ସରକାରଙ୍କୁ ଜଣାଇ ଦେଲେ ଯେ ସେ ବିନା ଅନୁମତିରେ ଜମି ହଜାରିବାଗରେ କେତେବର୍ଷ ତଳେ କିଣିଛନ୍ତି ଏବଂ ସେଥିପାଇଁ ଅନୁତାପ (repentance) କରୁଛନ୍ତି । ସରକାର ବୁଝିବାକୁ ଖସିଆନ୍ତୁ । ଜାହାଜ ବମ୍ବେରେ ଲାଗିଲାବେଳକୁ ସରକାର ଏନ୍.କେ. ରାୟଙ୍କର ସରକାରୀ ନିୟମଭଙ୍ଗ କରିଥିବାର ସ୍ୱୀକାର ଉପରେ ତାଙ୍କୁ କାର୍ଯ୍ୟରୁ ସସ୍‌ପେଣ୍ଡ ଅର୍ଡର ପାସ୍ କରି ଦେଇଥିଲେ । ରାୟ ସମୁଦ୍ର ତୀରରେ ପାଦ ଦେଉଦେଉ ତାହା ଅବଗତ ହେଲେ । ସଙ୍ଗରେ ପତ୍ନୀ ଥିଲେ । ରାୟ ମ୍ରିୟମାଣ ନ ହୋଇ କଟକ ଫେରିବା ପରଦିନ ଆମ ଓଡିଆ ବଜାର ଯଦୁନାଥ ଭବନ ବସାକୁ ଚା'ପାନ କରିବାକୁ ଆସିଥିଲେ । ରାୟସାହେବ ଭିକାରୀ ଚରଣ ପଟ୍ଟନାୟକ, ଲକ୍ଷ୍ମୀଧର ମହାନ୍ତି, ବିପିନବିହାରୀ ରାୟ ପ୍ରଭୃତି ଛଅଜଣ ମଧ୍ୟ ଆସି ଥାଆନ୍ତି ଚା'ପାନରେ ଯୋଗ ଦେବାପାଇଁ । ସେଠାରେ ରାୟ ଘଟନାଟି ଆମକୁ ଜଣାଇବାରେ ଆମେ ସମସ୍ତେ ଅତ୍ୟନ୍ତ କ୍ଷୁବ୍ଧ ହେଲୁ । ସରକାରଙ୍କୁ ନିନ୍ଦା ଓ ତାଙ୍କୁ ପ୍ରଶଂସା କରିବାର କଥା, ସମସ୍ତେ କଲେ । ଉପସ୍ଥିତ ଅତିଥିମାନେ ସ୍ଥିର କଲେ, ମୁଁ ସେ ବିଷୟରେ ରେଜିଷ୍ଟ୍ରାର ଗଡବୋଲେ ସାହେବଙ୍କୁ ଖଣ୍ଡିଏ ପତ୍ର ଲେଖିବା ଉଚିତ ହେବ । ସରକାରଙ୍କର ସସ୍‌ପେନସନ ଆଦେଶ ଅସମୀଚୀନ ଓ ରାୟ କାର୍ଯ୍ୟରୁ ଅନୁପସ୍ଥିତ ରହିଲେ, ଓଡିଶାରେ ସମବାୟ କାର୍ଯ୍ୟ ବାଧାପ୍ରାପ୍ତ ହେବ, ଏହା ଜଣାଇଦେବା ଦରକାର । ସେହି ମର୍ମରେ ଖଣ୍ଡିଏ ଦୀର୍ଘ ପତ୍ର ମୁଁ ଲେଖି ପାଟନାକୁ ପଠାଇଲି । ତାହାର ପ୍ରତିକ୍ରିୟା କଅଣ ହେଲା ମୁଁ ସଠିକ କହି ପାରିବି ନାହିଁ । ରାୟ ମଧ୍ୟ ଏକ କଇଫିୟତ ପଠାଇଥିଲେ । ପଠାଇବା ପୂର୍ବରୁ ମୁଁ ତାହା ଦେଖିବାକୁ ପାଇଥିଲି । ମାସାଧିକ ପରେ ସସ୍‌ପେନସନ୍ ଅର୍ଡର ପ୍ରତ୍ୟାହୃତ ହେଲା । ମୁଁ ସେତେବେଳକୁ ମାତ୍ର ଚାରିବର୍ଷର ଓକିଲ; ବୟସରେ କନିଷ୍ଠ, ଧନରେ ନଦାରଦ । ଅନ୍ୟମାନଙ୍କର ଶ୍ରଦ୍ଧା ଓ ବିଶ୍ୱାସଭାଜନ ହେବା କେବଳ ସୌଭାଗ୍ୟର ପରିଚାୟକ ।

Digitized by srujanika@gmail.com

ଏ ଘଟନାର ତିନି ବର୍ଷ ପୂର୍ବରୁ, ରାୟଙ୍କର ପରାମର୍ଶ ଓ ଚେଷ୍ଟାରେ କଟକର ନିକଟବର୍ତ୍ତୀ ଗ୍ରାମାଞ୍ଚଳରେ ସମବାୟ ଜରିଆରେ ଗ୍ରାମ ଉନ୍ନୟନ କାର୍ଯ୍ୟ ହାତକୁ ନେବା ସ୍ଥିର ହେଲା । ରାୟବାହାଦୂର ଜେ.ଏନ୍. ବୋଷ (କଲିକତାବାସୀ)ଙ୍କର କଟକ ଠାରୁ ପ୍ରାୟ ୨୦ ମାଇଲ ଦୂରରେ ଅଣଖିଆ ଗ୍ରାମକୁ ମିଶାଇ ଖଣ୍ଡିଏ ଜମିଦାରୀ ଥିଲା । ତାଙ୍କ ସହାୟତା ମିଳିବା ଆଶା ନେଇ ସେ ଅଞ୍ଚଳକୁ ବଛାଗଲା ।

କଟକରେ ସେହି ଉଦ୍ଦେଶ୍ୟରେ ଗୋଟିଏ ସମିତି ଗଠିତ ହେଲ । — Orissa Rural Reconstruction Co-operative Society Ltd. ନିୟମାବଳୀ ତିଆରି ହୋଇ ରେଜିଷ୍ଟରୀ କରାଗଲା । ସଭ୍ୟ ହେଲେ, ପରିଜା ସାହେବ (ପ୍ରଫେସର ପ୍ରାଣକୃଷ୍ଣ ପରିଜା I.E.S) ତ୍ରିପାଠୀ ସାହେବ (ପ୍ରଫେସର ଶ୍ୟାମଚନ୍ଦ୍ର ତ୍ରିପାଠୀ I.E.S), ହରିଲାଲ ବାନାର୍ଜି (କୃଷି ଡେପୁଟି ଡାଇରେକ୍ଟର), କଟକ କଲେକ୍ଟର ପ୍ରଭୃତି କୋଡିଏ ଜଣ ଉଚ୍ଚପଦସ୍ଥ ବ୍ୟକ୍ତି । ମତେ ନିଆହେଲା ସମ୍ପାଦକ ଭାବରେ । ସମସ୍ତେ ମାସକୁ ପନ୍ଦରଟଙ୍କା ଲେଖାଏଁ ଚାନ୍ଦା ଦେବେ ଏବଂ ଆବଶ୍ୟକ ହେଲେ ଅନ୍ୟତ୍ର ସାହାଯ୍ୟ ନେଇ କାମ ଆରମ୍ଭ ହେବା ସ୍ଥିର ହେଲା । ଏନ୍.କେ. ରାୟଙ୍କର ଅତୁଟ ଉତ୍ସାହ ଓ ବିଶ୍ୱାସରେ ସମସ୍ତେ ସେଥିରେ ରାଜିହେଲେ । ପ୍ରଥମ ବଛାଗଲା ଅଣଖିଆ ଗ୍ରାମ । ସେଠାର ବାସିନ୍ଦାମାନଙ୍କର ପ୍ରାଥମିକ ସଭା କରାଯାଇ, ଆମର ପ୍ରସ୍ତାବିତ କାର୍ଯ୍ୟ କିପରି ସେମାନଙ୍କ ଦ୍ୱାରା କରାଯାଇ ପାରିବ, ତାହାର ଆଲୋଚନା ହେଲା । କଟକରୁ ଏତେ ପଦସ୍ଥ ବ୍ୟକ୍ତି ଯାଇଛନ୍ତି ବୋଲି ଲୋକଙ୍କର ଉତ୍ସାହ ଆସିଲା । ସେଠାର ଜଣେ ଯୁବକ ଜୟକୃଷ୍ଣ ମିଶ୍ରଙ୍କୁ ମାସିକ ପନ୍ଦରଟଙ୍କା ବେତନରେ ନିଯୁକ୍ତ କଲୁ ସେଠାରେ କାମ ଆରମ୍ଭ କରିବାକୁ । ସେ ଅଞ୍ଚଳରେ ପ୍ରଥମ କରି କୋବି, ନୋଲକଲ୍, ସାଲଗମ, ଆଳୁ, ବିଲାତିବାଇଗଣ ଚାଷ, କୁକୁଡା ପାଳନ, ମହୁମାଛି ପୋଷି ମହୁ ବାହାର କରିବା, ପୌଢ଼ଶିକ୍ଷା, କାଇଁଶବୁଣା ଇତ୍ୟାଦି ସଙ୍ଗେ ପିଲାମାନଙ୍କ ମଧ୍ୟରେ କ୍ରୀଡା, କସରତ ଜୋରସୋରରେ ଚାଲୁହେଲା । ଆମେ ସବୁ ପ୍ରତି ସପ୍ତାହରେ ଥରେ, ପରେ ପନ୍ଦର ଦିନରେ ଥରେ ସେଠାକୁ ଯାଉଥାଉ । କାର୍ଯ୍ୟର ପରିସର ଓ ପ୍ରଶଂସା ବଢ଼ିଲା । କୃଷିରେ ତାଲିମପ୍ରାପ୍ତ ଜଣକୁ ସେଠାରେ ମୃତୟନ କରାଗଲା ଏକଶହ ଟଙ୍କା ମାସିକ ବେତନରେ, ଲୋକଙ୍କୁ କାର୍ଯ୍ୟରେ ସାକ୍ଷାତ ସାହାଯ୍ୟ କରିବା ପାଇଁ । ପରେ ସଲମନ ନାମକ ଏକ ଖ୍ରୀଷ୍ଟିଆନ ଯୁବକ ସେଠାରେ ଯାଇ କାମରେ ଲାଗିଲା । ଏହି କାର୍ଯ୍ୟର ଦାୟିତ୍ୱ ମୋ ଉପରେ ପୂରା ପଡିଲା । କଟକର ସାହେବ

Digitized by srujanika@gmail.com

କଲେକ୍ଟରଙ୍କର ବଦଳି ହୋଇ ଜଣେ ବିହାରୀ ଆଇ.ସି.ଏସ୍ ଅଫିସର (D.P.Sharma) ଆସିଲେ । ତାଙ୍କୁ ସଭ୍ୟ ହେବାକୁ ମୁଁ ଅନୁରୋଧ କରିବାକୁ ଯିବାରେ ସେ କିଞ୍ଚିତ ବିସ୍ମୟ ପ୍ରକାଶ କଲେ ଏବଂ ହଠାତ୍ ସମ୍ମତି ନ ଦେଇ ପରେ ଜଣାଇବେ ବୋଲି କହିଲେ । ବୋଧହୁଏ ତରୁଣ ଓକିଲ ପସନ୍ଦରେ ଆସିଲା ନାହିଁ । ପ୍ରାୟ ମାସକ ପରେ ପନ୍ଦରଟଙ୍କା ସହିତ ଖଣ୍ଡିଏ ସମ୍ମତି ପତ୍ର ଆସିଲା । ବୋଧହୁଏ ଏନ୍.କେ.ରାୟ ତାଙ୍କୁ ପ୍ରବର୍ତ୍ତାଇ ଥିବେ । ଶର୍ମାଙ୍କ ସହିତ ଘନିଷ୍ଠତା ଜନ୍ମିଲା । ଏକା ସାଙ୍ଗରେ ଏକାଧିକଥର ଅଣଖିଆ କେନ୍ଦ୍ରକୁ ଯାଇଛୁ । ସେ ପାଟନାର ଏକ ସମ୍ଭ୍ରାନ୍ତ ବ୍ରାହ୍ମଣ ପରିବାରର । ବିଲାତ ଫେରନ୍ତା ଆଇ.ସି.ଏସ. ହେଲେ ମଧ୍ୟ କିଛି ନୈଷ୍ଠିକତା ଥିଲା । ଚାକିରୀ ସମୟ ବହୁବର୍ଷ ବାକୀ ଥିଲା । କିନ୍ତୁ ଏତେ ବଡ ଚାକିରୀର ମୋହ ତାଙ୍କୁ ଅଟକାଇ ପାରିଲା ନାହିଁ । ସ୍ୱାଧୀନଚେତ୍ତା ଥିବାରୁ ସରକାରଙ୍କ ସହିତ ସବୁବେଳେ ଖାପନଖାଇ, ଅସ୍ୱସ୍ତିଭାବ ଜାତହେବାରୁ ଚାକିରୀ ଛାଡି ଘରକୁ ଫେରିଗଲେ । ମୁଁ ପାଟନାକୁ ଜଜ୍ ହୋଇଯିବା ପରେ ଗୋଟିଏ ଦୋକାନରେ ଦିନେ ସନ୍ଧ୍ୟା ବେଳେ ତାଙ୍କ ସଙ୍ଗେ ଦେଖାହେଲା । ମୁଁ ପ୍ରଥମେ ଚିହ୍ନିପାରିଲି ନାହିଁ । ସେ ଆଗ ଚିହ୍ନିଲେ । ଜଣେ ସମ୍ଭ୍ରାନ୍ତ ମୁସଲମାନ ବନ୍ଧୁ ତାଙ୍କ ସଙ୍ଗରେ ଥିଲେ । ତାଙ୍କୁ କଟକରେ ମୋ ସହିତ ସାକ୍ଷାତ ଘଟନା ଉଲ୍ଲେଖ କରି ପ୍ରଶଂସା କରି କେତେକ କଥା କହିଲେ । ପରିବର୍ତ୍ତିତ ପରିସ୍ଥିତିରେ ସେପରି କହିବାରେ କିଛି ଆଶ୍ଚର୍ଯ୍ୟ ନଥିଲା । ।

ଫିଲ୍ପ୍ ସାହେବ (C.L.Phillip I.C.S) ଓଡିଶା ଡିଭିଜନର କମିସନର ଥିଲେ, ରହୁଥିଲେ ଲାଲବାଗ କୋଠୀରେ । ବିହାର ଓଡିଶା ପ୍ରଦେଶରେ ପାଞ୍ଚଟି ଡିଭିଜନ ଥିଲା । ଓଡିଶା ଥିଲା ଗୋଟିଏ । ଅଣଖିଆ କେନ୍ଦ୍ରର ଏକ ବାର୍ଷିକ ଉତ୍ସବକୁ ଫିଲିପ୍ ମୁଖ୍ୟ ଅତିଥି ହୋଇ ଗଲେ । କଟକରୁ ଅନେକ ଯାଇଥିଲେ । ଉଚ୍ଚପଦସ୍ଥ ଅଫିସର ଅନେକ ଗଲେ ପ୍ରଥମ ଥର ଦେଖିବା ପାଇଁ । ଆଖପାଖ ଗାଁରୁ ପାଞ୍ଚ ଛଅଶହ ଲୋକ ଜମିଥିଲେ । ଖେଳ ପ୍ରତିଯୋଗିତା, କୃଷି ପ୍ରଦର୍ଶନୀ, ପରିବାଚାଷ କିଆରୀ ଆୟ ତୁଳନା ଇତ୍ୟାଦି ପରେ ସଭା ହେଲା । ଅଯଥା ପ୍ରଶଂସା ମିଳିଲା ମତେ । ତାହା ପରେ ଫିଲପ୍ କେତେକ ସରକାରୀ ସଂସ୍ଥା ସହିତ ମତେ ସମ୍ପର୍କିତ କଲେ ବେସରକାରୀ ସଭ୍ୟ ଭାବରେ । ଏନ୍.କେ. ରାୟଙ୍କର ଅକ୍ଳାନ୍ତ ଚିନ୍ତା ଓ ଚେଷ୍ଟା ଯୋଗୁ ଅଣଖିଆ ଗ୍ରାମୋଦ୍ୟୋଗର ସାଫଲ୍ୟ ସେ ଅଞ୍ଚଳର ଆଖି ଖୋଲିଥିଲା । ଏବେ, କେବଳ ସେଠାରେ ନୁହେଁ, ସବୁଆଡେ ଆଳୁ, କୋବି, ଟମାଟୋ, ସାଲଗମ

Digitized by srujanika@gmail.com

ଫସଲ; କୁକୁଡା ପାଳନ ନିତିଦିନିଆ କଥା । ଆମ ସାମାନ୍ୟ ଚେଷ୍ଟା ଲୋକଙ୍କ ମନରେ କି କାନରେ ନାହିଁ । ନିକଟରେ ସେ ଗ୍ରାମ ନିକଟବର୍ତ୍ତୀ ଏକ ହାଇସ୍କୁଲର ବାର୍ଷିକ, ଉତ୍ସବକୁ ଯାଇଥିଲାବେଳେ ଅଣଖିଆ କେନ୍ଦ୍ରର ପୂର୍ବକଥା ମୁଁ କହିଲାବେଳେ, ସଭାସ୍ଥଳରୁ ଜଣେ ବୃଦ୍ଧବ୍ୟକ୍ତି ଠିଆହୋଇ କହିଲେ, ସେ କଥା ସେ ଦେଖିଥିଲେ । ଜୟକୃଷ୍ଣ ମିଶ୍ରଙ୍କ ସଙ୍ଗେ ଦେଖାହେଲେ, ସେ ପୁରୁଣା ସ୍ମୃତିଚାରଣ କରନ୍ତି । ସରୁ ପାଣିଧାର କିପରି ବିପୁଳ ଆକାର ଧାରଣ କରେ, ତାହା ଭବିଷ୍ୟତ ଜାଣେ । ସରୁଧାର ଖୋଳିଲାବେଳେ ତା ଥିଲା ଅଜଣା ।

ଓଡିଶା ସ୍ୱତନ୍ତ୍ର ପ୍ରଦେଶ ୧୯୩୬ ଏପ୍ରିଲ ପହିଲାରେ ହେଲାବେଳକୁ ଏନ୍.କେ.ରାୟ ଓଡିଶାରେ ନ ଥିଲେ । ସତୀଶଚନ୍ଦ୍ର ରାୟ ଚେଷ୍ଟା କରୁଥିଲେ, ନୂତନ ପ୍ରଦେଶର ରେଜିଷ୍ଟ୍ରାର ହେବାପାଇଁ । ଦକ୍ଷତା ତାଙ୍କର ଥିଲା, ଜନପ୍ରିୟତା ନଥିଲା । ୧୯୩୭ରେ ପ୍ରଥମ କଂଗ୍ରେସ ମନ୍ତ୍ରିମଣ୍ଡଳ ବିଶ୍ୱନାଥ ଦାଶଙ୍କ ନେତୃତ୍ୱରେ ଗଢ଼ାହେଲା । ସତୀଶବାବୁଙ୍କ ଇଚ୍ଛା ଓ ଚେଷ୍ଟାରେ ସାହାଯ୍ୟ କରିବା ପାଇଁ ସେ ୧୫/୮/୧୯୩୮ ତାରିଖରେ ଖଣ୍ଡିଏ ଚିଠି ମତେ ଲେଖିଥିଲେ ।

Patna Circuit House
15-8-38

Dear Mr. Mahapatra,

As you are probably aware– I have come here to Patna in connection with the bifurcation of the B & O Provincial Bank. I am glad to tell you that question is now happily solved. We have got more than what we bargained for. We shall have to pay to Bihar Rs.3,75,000/- as againest their dues of Rs. 7,64,000/- Payment will be in eight annual instalments and there will be no further interest. The jurisdiction of the Registrar C.S. Bihar will cease as soon as C.B.S in Orissa confirm this arrangement i.e/ almost immediately. The question of appointment of a Registrar will therefore crop up immediately and I hope you will kindly do all that lies in your power to help me in the matter. At your instance, the representatives of Central Banks have voted for a whole time provincial service Registrar. Mudaliar report now supports

Digitized by srujanika@gmail.com

it. x x x x .As regards my case, you know it fully and I wish for a no better advocate. I rely fully upon your help x x x x Please take up this questions immediately. x x x x

Yours sincerely
Satish Ray

ଶରତ୍ ଓଡିଶାକୁ ନ ଆସି ବିହାରରେ ରହିବାକୁ ସ୍ଥିର କରିଥିବାରୁ, ସତୀଶବାବୁଙ୍କର ଅଭିଜ୍ଞତା ଦୃଷ୍ଟିରେ ରେଜିଷ୍ଟ୍ରାର ହେବା ବାଞ୍ଛନୀୟ ବୋଧ କଲି । ଅନ୍ୟ ଦୁଇ ଜଣ ସିନିଅର ଡେପୁଟି ମାଜିଷ୍ଟ୍ରେଟ୍ ମଧ ଚେଷ୍ଟା କରୁଥିଲେ ସେହି କାର୍ଯ୍ୟ ପାଇଁ । ସେମାନଙ୍କ ଅପେକ୍ଷା ସତୀଶବାବୁ ଅଧିକ ଯୋଗ୍ୟ ଓ ଅଭିଜ୍ଞ ଥିଲେ । ମୁଖ୍ୟମନ୍ତ୍ରୀଙ୍କୁ ସେ କଥା ବୁଝାଇବାରେ, ସେ ପ୍ରଥମେ ଅମତ, ପରେ ସମ୍ମତ ହେଲେ । ସତୀଶବାବୁ ରେଜିଷ୍ଟ୍ରାର ହୋଇ ଦାୟିତ୍ୱ ଗ୍ରହଣ କଲେ । କିନ୍ତୁ ତାଙ୍କ କାର୍ଯ୍ୟରେ ତତ୍ପରତା ପ୍ରକାଶ ପାଇଲା ନାହିଁ । ସେ କଥା ସୂଚାଇବାରୁ ସେ ଅପ୍ରସନ୍ନ ହେଲେ । କାର୍ଯ୍ୟରୁ ଅବସର ନେବା ଭିତରେ ମୋ ସହିତ ଯୋଗାଯୋଗ କ୍ୱଚିତ୍ ରଖିଲେ । ୧୯୩୨ ଠାରୁ ୧୯୩୯ ପର୍ଯ୍ୟନ୍ତ ଆମଘରକୁ ଅନେକ ସମୟରେ ଆସୁଥିଲେ । ତା'ପରେ ଆଉ ଆସିବା ବୋଧହୁଏ ପ୍ରୟୋଜନ ମନେ କଲେ ନାହିଁ । ବାହା ସରିଲେ ବେଦୀମୁହଁ ପୋଡା ।



Digitized by srujanika@gmail.com

# ଦେଶ ମିଶ୍ରଣ

ଚାଇବାସା ସ୍କୁଲରେ ପଢ଼ିଲାବେଳୁ ଦେଶ ମିଶ୍ରଣ, ଉତ୍କଳ ସମ୍ମିଳନୀ କଥା ଶୁଣୁଥିଲି । ଓଡ଼ିଶା ଖବର କାଗଜ ଘରକୁ ଯାଉଥିଲା । ତାକୁ ବରାବର ପଢୁଥାଏ । ଉତ୍କଳ ସମ୍ମିଳନୀର ଏକ ଅଧିବେଶନରେ ମେଦିନୀପୁର ଜିଲ୍ଲା ବାଲିଆବେଢ଼ାର ଜମିଦାର କୃଷ୍ଣଚନ୍ଦ୍ର ପ୍ରହରାଜ ସଭାପତି ହେବା ସ୍ଥିର ହେବାରୁ, ସେ ନନାଙ୍କ ଦ୍ୱାରା ସଭାପତି ଅଭିଭାଷଣ ଲେଖାଇଥିଲେ । ସେହିପରି ଆଉଥରେ ସିଂହଭୂମିର ଇଚା ଜମିଦାର ମଧ ଲେଖାଇ ଥିଲେ । ସେ ଦୁଇ ଲେଖାରେ ଦେଶ ମିଶ୍ରଣ କଥାର ବିଶେଷ ଉଲ୍ଲେଖ ଥିଲା । ୧୯୦୨ ରୁ ଓଡ଼ିଆ ଭାଷୀ ସବୁ ଅଞ୍ଚଳକୁ ଏକ ଶାସନାଧୀନ କରିବା ପାଇଁ–ଅର୍ଥାତ୍ ଗୋଟିଏ ପ୍ରଦେଶ ଅନ୍ତର୍ଗତ ହେବା ପାଇଁ –ଦାବୀ ଓ ଆନ୍ଦୋଳନ ଆରମ୍ଭ ହୋଇଥିଲା ମଧୁସୂଦନ ଦାସଙ୍କ (କଟକର ଓକିଲ) ପ୍ରେରଣା ନେତୃତ୍ୱରେ । ସେହି ପ୍ରଧାନ ଉଦ୍ଦେଶ୍ୟରେ ଓ ଓଡ଼ିଆଙ୍କର ସାମୂହିକ ଉନ୍ନତିକଳ୍ପେ ଉତ୍କଳ ସମ୍ମିଳନୀ ଆରମ୍ଭ ହୋଇଥିଲା ୧୯୦୩ରେ କଟକରେ, ମୟୂରଭଞ୍ଜ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଙ୍କ ସଭାପତିତ୍ୱରେ । ତା ପୂର୍ବ ବର୍ଷ ଗଞ୍ଜାମ ଜିଲ୍ଲା ରମ୍ଭାଠାରେ ଏକ ବୈଠକ ବସିଥିଲା । ବହୁ ନେତୃସ୍ଥାନୀୟ ଲୋକଙ୍କର । ସେଠାରେ ଉତ୍କଳ ସମ୍ମିଳନୀ ଆରମ୍ଭ ସ୍ଥିର ହୁଏ । ସେହି ସଭାର ଗୋଟିଏ ବଡ ସାଇଜର ଫଟୋ ମୁଁ ଆମ ଗାଁ ଘରେ ଆଲମାରୀରେ ଦେଖିଥିଲି, ପରେ ଅନ୍ୟତ୍ର କେତେ ଥର ଦେଖିଛି । ନନା, ଗୋପବନ୍ଧୁ ବାବୁ, ରାମଚନ୍ଦ୍ର ଦାଶ ମୁଖ୍ୟାରି ସେଥିରେ ଯୋଗ ଦେଇଥିବାର ଫଟୋରେ ଥିଲା । ନନା ଦେଶମିଶ୍ରଣ, ଉତ୍କଳ ସମ୍ମିଳନୀ କାର୍ଯ୍ୟରେ ଆଗ୍ରହୀ ଥିବାରୁ ସେହି ବିଷୟର ଆଲୋଚନା ଆମଘରେ ଶୁଣୁଥିଲି । ସମ୍ମିଳନୀର ଦୁଇଟି ଅଧିବେଶନ ପାଇଁ ସଭାପତି ଅଭିଭାଷଣ ଲେଖିଲାବେଳେ ସେ ସମ୍ବନ୍ଧୀୟ କେତେକ କାଗଜପତ୍ର, ପୁସ୍ତିକା ସେ ସଂଗ୍ରହ କରିଥିଲେ । ତାକୁ ପଢ଼ିବାର ସୁଯୋଗ ମତେ ମିଳିଥିଲା ।

ମାନ୍ଦ୍ରାଜ, ମଧ୍ୟପ୍ରଦେଶ, ବଙ୍ଗ ପ୍ରଦେଶରେ ଓଡ଼ିଆଭାଷୀ ଅଞ୍ଚଳ ଖଣ୍ଡ ବିଖଣ୍ଡିତ ହୋଇ ରହିଥିଲା । ୧୯୧୨ ରେ ବିହାର ଓ ଓଡ଼ିଶା ବଙ୍ଗରୁ ବିଚ୍ଛେଦ ହୋଇ

Digitized by srujanika@gmail.com

ଅନ୍ୟ ଏକ ପ୍ରଦେଶ ହେବାରୁ, ଚାରିଗୋଟି ପ୍ରଦେଶରେ ଓଡିଆମାନେ ଛାଟରା ହୋଇ ରହିଲେ । ସବୁଠାରେ ଲଘୁ ସଂଖ୍ୟକ, ତେଣୁ ଶାସନ ଦୃଷ୍ଟି ତାଙ୍କ ପ୍ରତି ଲଘୁଥିବାରୁ ଅନୁନ୍ନତ ଓ ଅସୁବିଧା ଅବସ୍ଥାରେ ଉଧେଇପାରୁ ନ ଥିଲେ । ସବୁ ଅଞ୍ଚଳ ଏକାଠି ଓ ଏକ ପ୍ରଦେଶଭୁକ୍ତ ହେଲେ ସେମାନଙ୍କର ନାଯ୍ୟ ଦାବୀ ଓ ପ୍ରାପ୍ୟ, ଶାସନ କ୍ଷେତ୍ରରୁ ପାଇବା ସଙ୍ଗେ ସେମାନେ ନିଜ ସମବେତ ଚେଷ୍ଟାରେ ନିଜର କଲ୍ୟାଣ ସାଧନ କରିବା ସମ୍ଭବପର ହେବ ବୋଲି ସମସ୍ତେ ଭାବୁଥିଲେ । ଓଡିଆ ଦେଶ ମିଶ୍ରଣକୁ ଗୋଟିଏ ସବ୍‌ପ୍ରୋଭିନ୍‌ସ ରୂପ ଦେବାର ଦାବୀ ସବୁ ଅଞ୍ଚଳରୁ ଉଠିଲା । ଉତ୍କଳ ସମ୍ମିଳନୀ ତାହାର ପ୍ରଧାନ ବାହକ ଥିଲା । ରାଜାଠାରୁ କୃଷକ ପର୍ଯ୍ୟନ୍ତ ସମସ୍ତଙ୍କୁ ନେଇ ସମ୍ମିଳନୀ ଚାଲୁଥାଏ । ସବୁ ଶ୍ରେଣୀର ଲୋକେ ସେଥିରେ ଆଗ୍ରହୀ ଥାଆନ୍ତି । ସେଥିରେ ଯୋଗ ଦିଅନ୍ତି । ସରକାରୀ କର୍ମଚାରୀ ମଧ୍ୟ । ସରକାର ବିରୋଧ ଆଭିମୁଖ୍ୟ ସେଥିରେ ନ ଥିଲା ୧୯୨୦ ଡିସେମ୍ବର ପର୍ଯ୍ୟନ୍ତ । ସେହି ମାସ ୩୧ ତାରିଖରେ ଚକ୍ରଧରପୁରଠାରେ ପୁରୀର ଜଗବନ୍ଧୁ ସିଂହଙ୍କ ସଭାପତିତ୍ୱରେ ଉତ୍କଳ ସମ୍ମିଳନୀରେ ଗୋପବନ୍ଧୁ ଦାସଙ୍କ ପ୍ରେରଣାରେ ଜାତୀୟ କଂଗ୍ରେସର ଗୟା ଅଧିବେଶନରେ ଗୃହୀତ ଅସହଯୋଗ ଆନ୍ଦୋଳନ ପ୍ରସ୍ତାବକୁ ସମର୍ଥନ ବହୁ ମତରେ କରାଇ ନିଆଯିବା ପରେ, ସରକାର ସହଯୋଗୀ ସମର୍ଥକମାନେ ଓ କଂଗ୍ରେସବିରୋଧୀ ଲୋକେ ସମ୍ମିଳନୀରୁ ଅଲଗା ହୋଇ ଗଲେ ଏବଂ ସେମାନଙ୍କ ମଧ୍ୟରୁ କେତେକ ପ୍ରକାଶ୍ୟ ବିରୋଧ ଆରମ୍ଭ କରିଦେଲେ । ମୁଁ କଲେଜରେ ପଢ଼ିଲାବେଳୁ ସମ୍ମିଳନୀ ଓ ଛାତ୍ର ସମ୍ମିଳନୀ ସହିତ ସବୁବେଳେ ସହଯୋଗ ରଖି ଆସିଛି । ସ୍କୁଲରେ ପଢ଼ିଲାବେଳେ ଛାତ୍ର ସମ୍ମିଳନୀ ପାଇଁ ଚାନ୍ଦା ସଂଗ୍ରହ କରିବା, କଲେଜରେ ଥିବା ସମୟରେ ସମ୍ମିଳନୀର ସମ୍ପାଦକ ହେବା, ଓକାଲତିବେଳେ ଛାତ୍ର-ସମ୍ମିଳନୀର ବାର୍ଷିକ ଅଧିବେଶନରେ ସଭାପତିତ୍ୱ କରିବା ଛଡା ସକ୍ରିୟ ସମ୍ପର୍କ ସର୍ବଦା ରକ୍ଷା କରିବାରେ ମୁଁ ନିଜେ ନିରୁତ୍ସାହିତ ହୋଇନାହିଁ ବା ଛାତ୍ରମାନଙ୍କୁ ନିରୁତ୍ସାହିତ କରିନାହିଁ । ଏବେ ମଧ ଛାତ୍ରମାନଙ୍କ ସଙ୍ଗଠନରେ ଯୋଗଦେବାକୁ ବାଧ ମନେ କରେ । ଓଡିଶା ଛାତ୍ର ସମ୍ମିଳନୀ ଉତ୍କଳ ସମ୍ମିଳନୀର ପରିପୂରକ ଭାବେ କାର୍ଯ୍ୟ କରୁଥିଲା । ସମ୍ମିଳନୀର ଖୋଲା ଅଧିବେଶନ ପରେ ଛାତ୍ର ସମ୍ମିଳନୀର ଅଧିବେଶନ ସେହି ସ୍ଥାନରେ ହେଉଥିଲା । ଚକ୍ରଧରପୁର ଅଧିବେଶନ ପରେ ଉଭୟଙ୍କର ସ୍ୱତନ୍ତ୍ର ଅଧିବେଶନ ସ୍ୱତନ୍ତ୍ର ସ୍ଥାନ ଓ ସମୟରେ ହେଲା । ବୟସ୍କ ଓ କନିଷ୍ଠମାନଙ୍କ ମଧ୍ୟରେ ପ୍ରତ୍ୟକ୍ଷ ସହଯୋଗରେ ବାଧା ଆସିଲା ।

Digitized by srujanika@gmail.com

ଉତ୍କଳ ସମ୍ମିଳନୀର ମୁଖ୍ୟ ଭୂମିକା ଥିଲା ଦେଶ ମିଶ୍ରଣ ପାଇଁ ଆନ୍ଦୋଳନ ଓ ସରକାରଙ୍କ ନିକଟରେ ଦାବୀ । ଜାତୀୟ କଂଗ୍ରେସରେ ଭାଷାଗତ ପ୍ରଦେଶ ଗଠନ ନୀତି ହିସାବରେ ଗୃହୀତ ହେଲା ପରେ, ଉତ୍କଳ ସମ୍ମିଳନୀର ଦାବୀ ଅଧିକ ସମର୍ଥନ ଲାଭ କରିଥିଲା । ଆମେ କଲେଜରେ ପଢ଼ିଲାବେଳେ ଇଂରେଜୀରେ Oriya Movement ବହି ଦୁଇ ଗ୍ରାଜୁଏଟ୍‌ଙ୍କ ଦ୍ୱାରା ପ୍ରକାଶିତ ହୋଇଥିଲା । ସେମାନଙ୍କ ନାମ ଛାପା ନ ହୋଇଥିଲେ ମଧ୍ୟ ସେମାନଙ୍କ ମଧ୍ୟରୁ ଜଣେ ଥିଲେ ଗଞ୍ଜାମର ନିରଞ୍ଜନ ପଟ୍ଟନାୟକ ଯେ ପରେ କଂଗ୍ରେସ ଓ ପାର୍ଲିଆମେଣ୍ଟରେ ଏକ ସମ୍ମାନିତ ସ୍ଥାନ ଅର୍ଜନ କରିଥିଲେ ଏବଂ ଯାହାଙ୍କର ଜାମାତା ଜାନକୀବଲ୍ଲଭ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ଓ କନ୍ୟା ଜୟନ୍ତୀ ପଟ୍ଟନାୟକ ପାର୍ଲିଆମେଣ୍ଟ ସଦସ୍ୟା ରୂପେ ଖ୍ୟାତି ଲାଭ କରିଛନ୍ତି । ଦେଶ ମିଶ୍ରଣ ବିଷୟରେ ସେ ପୁସ୍ତକରେ ଅନେକ ତଥ୍ୟ ଓ ଯୁକ୍ତି ଦିଆଯାଇଥିଲା । ମିଶ୍ରଣ ଦାବୀରେ ସତର୍କତା ଓ କ୍ଷିପ୍ରତା ଆସିଲା ୧୯୨୭ ଡିସେମ୍ବର ମାସରେ ସାଇମନ କମିସନ୍ ବସିବା ପରେ । ଭାରତ ବର୍ଷରେ ଶାସନ ସଂସ୍କାର କିପରି ଓ କେତେଦୂର ପ୍ରବର୍ତ୍ତନ କରାଯାଇପାରିବ, ତାହାକୁ ଅନୁସନ୍ଧାନ କରି ରିପୋର୍ଟ ଦେବାପାଇଁ ସାର ଜନ୍ ସାଇମନଙ୍କ ଅଧ୍ୟକ୍ଷତାରେ ସେ କମିସନ୍ ନିଯୁକ୍ତ ହୋଇଥିଲା । ତାଙ୍କ ଆଗରେ ଓଡିଆଙ୍କର ଦାବୀ ଉପସ୍ଥାପିତ କରିବା ପାଇଁ ତତ୍ପରତା ଆରମ୍ଭ ହେଲା । ମଧୁସୂଦନ ଦାସ, ଭୁବନାନନ୍ଦ ଦାସ, ବ୍ରଜସୁନ୍ଦର ଦାସ, ବିଚିତ୍ରାନନ୍ଦ ଦାସ, ଲିଙ୍ଗରାଜ ପାଣିଗ୍ରାହୀ, ମଧୁସୂଦନ ପାଣିଗ୍ରାହୀ, ଭୁବନେଶ୍ୱର ରଥ, ମାନ୍ଧାତା ଗୋରାଚାନ୍ଦ ପଟ୍ଟନାୟକ, ଜୟପୁରର ହରିହର ମିଶ୍ର ପ୍ରଭୃତି ସେଥିରେ ଲାଗି ପଡିଥିଲେ । କନିକାର ରାଜା ବାହାଦୂର ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ, ଖଲ୍ଲିକୋଟର ରାଜା ସାହେବ ରାମଚନ୍ଦ୍ର ମର୍ଦ୍ଦରାଜ, ଜୟପୁରର ମହାରାଜା ବିକ୍ରମ ଦେବ ସେଥିରେ ଗୁରୁତ୍ୱପୂର୍ଣ୍ଣ ଅଂଶଗ୍ରହଣ କରିଥିଲେ । ପାରଳାଖେମୁଣ୍ଡି ମହାରାଜ କୃଷ୍ଣଚନ୍ଦ୍ର ଗଜପତି ଅଜସ୍ର ବ୍ୟୟ ସ୍ୱୀକାର କରି ଏହି କାର୍ଯ୍ୟ ଆଗେଇ ନେବାପାଇଁ ଯତ୍ନ ଓ ଶ୍ରମ ଅବାରିତ ରଖିଥିଲେ ଶେଷ ପର୍ଯ୍ୟନ୍ତ । ସାଇମନ୍ କମିସନକୁ କଂଗ୍ରେସ ବୟକଟ୍ କରିବାର ସିଦ୍ଧାନ୍ତ ନେବାରୁ ଓଡିଶା ପକ୍ଷରେ ଜଟିଳ ଅବସ୍ଥା ଉପୁଜିଲା । କଂଗ୍ରେସ ନେତୃବର୍ଗଙ୍କର ସକ୍ରିୟ ସହଯୋଗ ପ୍ରକାଶ୍ୟରେ ମିଳିବାରେ ବ୍ୟାଘାତ ଆସିଲା । ପଣ୍ଡିତ ଗୋଦାବରୀଶ ମିଶ୍ର, ପଣ୍ଡିତ ନୀଳକଣ୍ଠ ଦାସ ପ୍ରଭୃତି ପଣ୍ଡିତ ଗୋପବନ୍ଧୁ ଦାସଙ୍କ ପ୍ରେରଣାରେ ଦେଶ ମିଶ୍ରଣ, ଉତ୍କଳ ସମ୍ମିଳନୀ କାର୍ଯ୍ୟରେ ଗୁରୁତ୍ୱପୂର୍ଣ୍ଣ ଅଂଶ ଗ୍ରହଣ କରିଥିଲେ କିନ୍ତୁ ସାଇମନ କମିଶନବେଳକୁ ସେମାନଙ୍କୁ ଦୂରେଇ ହୋଇ ରହିବାକୁ ପଡିଲା ।

Digitized by srujanika@gmail.com

ସାଇମନ କମିଶନ ଭାରତବର୍ଷର ଯେଉଁ ସ୍ଥାନକୁ ଗଲେ ସେଠାରେ କଂଗ୍ରେସ ତରଫରୁ ପ୍ରତ୍ୟାଖ୍ୟାନ ଘୋଷଣା କରାଗଲା ଏବଂ କୌଣସିଠାରେ ଜନସାଧାରଣଙ୍କର ସମ୍ବର୍ଦ୍ଧନା ବା ସହଯୋଗ ପାଇଲେ ନାହିଁ । କେବଳ ମୁଷ୍ଟିମେୟ ସରକାରୀ ଉଚ୍ଚପଦସ୍ଥ କର୍ମଚାରୀ ଓ ସରକାରଙ୍କ ସମର୍ଥକ ବେସରକାରୀ ଲୋକ ତାଙ୍କୁ ସ୍ୱାଗତ କରୁ ଥାଆନ୍ତି । କମିଶନ୍ ବିହାର ଓ ଓଡିଶାର ରାଜଧାନୀ ପାଟନାକୁ ଆସିଲାବେଳେ ମୁଁ ପାଟନା କଲେଜରେ ପଢୁଥିଲି । କନିକାର ରାଜା ସାହେବ ସେଠାରେ ଏକଜିକ୍ୟୁଟିଭ୍ କାଉନ୍‌ସିଲର ଥାଆନ୍ତି । ତାଙ୍କ ପୁତ୍ର ଶୈଳେନ୍ଦ୍ର ନାରାୟଣ ମଧ୍ୟ ଥିଲେ । ତାଙ୍କର ଚେଷ୍ଟାରେ ଆମ୍ଭେମାନେ ସ୍ଥିର କଲୁ ଓଡିଶା ଦାବୀ ପ୍ରତି ସାଇମନ୍ କମିଶନର ଦୃଷ୍ଟି କୌଣସି ପ୍ରକାରେ ଆକର୍ଷଣ କରିବା । ସେମାନେ ଟ୍ରେନ୍‌ରେ ଭୋର ସକାଳେ ପହଞ୍ଚିବାର ଥାଏ । କଂଗ୍ରେସ ତରଫରୁ ବିପୁଳ ପ୍ରଚାର ହୋଇଥାଏ କେହି ଯେପରି ତାଙ୍କୁ ସ୍ୱାଗତ ନ କରନ୍ତି । ଆମ୍ଭେମାନେ ଅନେକ ଗୁଡିଏ ବଡ ବଡ ପ୍ଲାକାର୍ଡରେ WELCOME SIMON COMMISSION, ORISSA DEMANDS SEPARATE PROVINCE, AMALGAMATE ALL ORIYA SPEAKING AREAS, ORIYAS SCATTERED IN FIVE PROVINCES, ପ୍ରଭୃତି ସ୍ଲୋଗାନ ଲେଖି, କମିଶନ ଯେଉଁ ସ୍ୱତନ୍ତ୍ର ପ୍ଲାଟଫର୍ମରେ ଓହ୍ଲାଇବାର କଥା ସେଠାରେ ମାରିବା ପାଇଁ ରାତିବାରଟା ପରେ ଗଲୁ । ଷ୍ଟେସନ ମାଷ୍ଟର କଂଗ୍ରେସ ପ୍ଲାକାର୍ଡ ଭାବି ପ୍ରଥମରୁ ବାଧା ଦେଲେ । ମାତ୍ର ଶହେଟି ଟଙ୍କା ଖର୍ଚ୍ଚ କରି ଆମେ ଚାରି ପାଞ୍ଚ ଜଣ ସବୁ ପ୍ଲାକାର୍ଡ ଲଗାଇ ଦେଲୁ ।  ଅତି ସକାଳେ ପୁଣି ଯାଇ ଅଳ୍ପ ଦୂରରୁ କମିଶନ ଆସିବା ବେଳକୁ ଅପେକ୍ଷା କଲୁ । କମିଶନ ଟ୍ରେନ୍‌ରୁ ଓହ୍ଲାଇ ପ୍ଲାକାର୍ଡ ସବୁ ଦେଖି କେବଳ ଯେ ସନ୍ତୁଷ୍ଟ ହେଲେ ତାହା ନୁହେଁ, କେତେଖଣ୍ଡି ପ୍ଲାକାର୍ଡ ଓଟାରି ସଙ୍ଗରେ ନେଲେ । କେହି ସ୍ୱୀକାର କରନ୍ତୁ ବା ନ କରନ୍ତୁ, ଏହା ଦେଶ ମିଶ୍ରଣ ଓ ସ୍ୱତନ୍ତ୍ର ପ୍ରଦେଶ ଗଠନରେ ଯେ ଗୁରୁତର ଭାବରେ ସହାୟକ ହୋଇଥିଲା, ସନ୍ଦେହ ନାହିଁ । କମିଶନର ଜଣେ ସଭ୍ୟ ଆଟ୍‌ଲିଙ୍କର (ଯେ ପରେ ବିଲାତର ପ୍ରଧାନମନ୍ତ୍ରୀ ହେଲେ) ପରବର୍ତ୍ତୀ କଥାରୁ ଏହା ସ୍ପଷ୍ଟ ଜଣା ପଡିଥିଲା । ଆମର ଏ ଚେଷ୍ଟା ସଫଳ ହେଲା ବୋଲି କନିକାର ରାଜାସାହେବ ପ୍ରଭୃତି ଖୁବ୍ ଖୁସି ହେଲେ । ମୁଁ କିନ୍ତୁ ମର୍ମେ ମର୍ମେ ମର୍ମାହତ ଓ ଲଜ୍ଜିତ ବୋଧକଲି କଂଗ୍ରେସର ବିରୁଦ୍ଧାଚରଣ ଜାଣିଜାଣି  କଲି ବୋଲି । ମୁଁ ବା କି ଛାର ଲୋକ–ସାମାନ୍ୟ କଲେଜ ଛାତ୍ରଟିଏ । କିନ୍ତୁ କଂଗ୍ରେସ ପକ୍ଷପାତୀ ବୋଲି ଛାତ୍ର ମହଲରେ ଓ ସାଧାରଣରେ ମୋର ପରିଚୟ

Digitized by srujanika@gmail.com

ଥିବାରୁ ମୋ ମନରେ ଆନନ୍ଦ ଓ ଆଶ୍ୱସ୍ତି ଥିଲା । ଏ ଘଟନାରେ କଂଗ୍ରେସ ବିରୁଦ୍ଧରେ ବାଟମାରଣା କାମ କଲାପରି ମନରେ ଗ୍ଲାନି ଆସିଲା ।

କମିଶନ୍ ପାଖରେ ଓଡିଆ ଦାବୀ ସମ୍ପର୍କରେ ମେମୋରେଣ୍ଡମ ଦିଆଗଲା । ସାକ୍ଷ୍ୟ ଦେବାର ଯୋଗାଡ ହେଲା । ୧୯୨୮ ରେ କମିଶନର ତିନିଜଣଙ୍କୁ ନେଇ ଆଟ୍‌ଲିଙ୍କ ଅଧ୍ୟକ୍ଷତାରେ ଆଟ୍‌ଲି ସବ୍‌କମିଟି ଗଢ଼ାଗଲା । ଓଡିଶା ସମସ୍ୟା ପରୀକ୍ଷା କରି ସୁପାରିସ୍ କଲେ ସେ ସବ୍ କମିଟି । ସାଇମନ କମିଶନ ରିପୋର୍ଟ ପ୍ରକାଶ ପାଇଲା ୨୭/୫/୧୯୩୦ ତାରିଖରେ । ତାପରେ ଲଣ୍ଡନରେ ପ୍ରଥମ Round Table Conference (ରାଉଣ୍ଡ ଟେବୁଲ୍ କନ୍‌ଫରେନ୍ସ) ବସିଲା ୧୨/୧୧/୧୯୩୦ ଠାରୁ ୧୯/୧/୧୯୩୧ ପର୍ଯ୍ୟନ୍ତ, ସେହି ସମୟରେ ପାରଳାଖେମୁଣ୍ଡି ମହାରାଜା ସେଠାକୁ ଯାଇ ଭାରତ ସଚିବ ପ୍ରଭୃତିଙ୍କ ଜରିଆରେ ଓଡିଶା ସ୍ୱତନ୍ତ୍ର ପ୍ରଦେଶ ଗଠନ ପାଇଁ ଓ ପାରଳାଖେମୁଣ୍ଡି, ଜୟପୁର ପ୍ରଭୃତି ବିଚ୍ଛିନ୍ନ ଅଞ୍ଚଳ ସେହି ପ୍ରଦେଶ ଭିତରକୁ ଆସିବା ପାଇଁ ସିଦ୍ଧାନ୍ତ ଗ୍ରହଣ କରାଯିବା ପାଇଁ ବହୁତ ଚେଷ୍ଟା କରିଥିଲେ । ଖଲ୍ଲିକୋଟର ରାଜାସାହେବ ମଧ୍ୟ ଯାଇଥିଲେ । ଓଡିଶାରୁ ବିଭିନ୍ନ ଅନୁଷ୍ଠାନ ନାମରେ, ଉତ୍କଳ ସମ୍ମିଳନୀ ନେତୃତ୍ୱରେ ଲମ୍ବା ଲମ୍ବା ଟେଲିଗ୍ରାମ ପଠାଯାଉଥାଏ ଭାରତ ସଚିବଙ୍କ ପାଖକୁ ଏବଂ ତାହାର ନକଲ ଦିଆଯାଉଥାଏ ପାରଳା ମହାରାଜାଙ୍କୁ । ସେ ସମୟରେ ରାଧାନାଥବାବୁ (ଶ୍ରୀ ରାଧାନାଥ ରଥ –'ସମାଜ') ଏ କାର୍ଯ୍ୟରେ ବହୁଳ ଅଂଶ ଗ୍ରହଣ କରୁଥାଆନ୍ତି । କୌଶଳପୂର୍ଣ୍ଣ ଭାବରେ ତଥ୍ୟ ସଂଗ୍ରହ କରି, ଭିନ୍ନ ଭିନ୍ନ ଅଞ୍ଚଳର ମାନଚିତ୍ର ଅଣାଇ, ଦାବୀପତ୍ର ଲେଖାରେ ସେ ସାହାଯ୍ୟ କରନ୍ତି ।

ସାଇମନ୍ କମିଶନ୍‌ର ସୁପାରିଶ, ପ୍ରଥମ ରାଉଣ୍ଡ ଟେବୁଲ୍ କନ୍‌ଫରେନ୍‌ସର ଆଲୋଚନା, ପାରଳାଖେମୁଣ୍ଡି ମହାରାଜାଙ୍କର ଅକ୍ଳାନ୍ତ ଚେଷ୍ଟା, ଉତ୍କଳ ସମ୍ମିଳନୀର ପୁନଃ ପୁନଃ ଉଦ୍ୟମ ଫଳରେ ଓଡିଆ ଅଞ୍ଚଳ ମିଶ୍ରଣ, ଓଡିଆ ସବ୍ ପ୍ରଭିନ୍‌ସ ବା ସ୍ୱତନ୍ତ୍ର ପ୍ରଦେଶ ଗଠନ ସଂକ୍ରାନ୍ତ ବିଷୟ ସବୁ ଅନୁଧ୍ୟାନ କରିବା ପାଇଁ ସରକାର ଗୋଟିଏ କମିଟି ଗଠନ କଲେ ୧୮/୯/୧୯୩୧ ତାରିଖରେ ଓଡନେଲ ସାହେବଙ୍କ ଅଧ୍ୟକ୍ଷତାରେ । ସେଥିରେ ଫୁକନ (ଆସାମର) ଓ ମେହେଟା ମେମ୍ବର ଥିଲେ । ତାକୁ ଓଡନେଲ କମିଟି ବୋଲି କୁହାଯାଉ ଥିଲା । ଏହି କମିଟିର ରିପୋର୍ଟ ଉପରେ ଓଡିଶା ଆନ୍ଦୋଳନର ଶେଷ ପର୍ଯ୍ୟାୟର ଫଳ ନିର୍ଭର କରୁଥିବାରୁ ସମସ୍ତେ ପ୍ରାଣମୂର୍ଚ୍ଛା ଚେଷ୍ଟା କରିବାରେ ଲାଗିଗଲେ । ମୁଁ ମଧ୍ୟ । ମୁଁ ସେତେବେଳକୁ ଓକାଲତି ଆରମ୍ଭ କରିଥାଏ । ପଣ୍ଡିତ ନୀଳକଣ୍ଠ ଦାସ ଗୋଟିଏ ସୁଦୀର୍ଘ ଓ ସୁଚିନ୍ତିତ ମେମୋରେଣ୍ଡମ ଦେଇଥିଲେ

Digitized by srujanika@gmail.com

ଏବଂ ନିଜେ କମିଟି ଆଗରେ ଜାମସେଦପୁର ଠାରେ ସାକ୍ଷ୍ୟ ଦେବାପାଇଁ ପ୍ରସ୍ତୁତ ହୋଇ ଯାଉଥିବା ବେଳେ (୧୦/୧/୧୯୩୨) କଂଗ୍ରେସ ଉଚ୍ଚ କର୍ତ୍ତୃପକ୍ଷଙ୍କ ପାଖରୁ ବାରଣ ନିର୍ଦ୍ଦେଶ ଆସିଲା । ବିହାରର ରାଜେନ୍ଦ୍ରପ୍ରସାଦ ପ୍ରଭୃତି ଭିତରେ ଭିତରେ ଓଡିଶା ସଙ୍ଗେ ସିଂହଭୂମ ମିଶ୍ରଣର ବିରୋଧ କରୁଥିଲେ । କଂଗ୍ରେସରେ ସେମାନଙ୍କର ଓଡିଶା ନେତାମାନଙ୍କ ଅପେକ୍ଷା ଅଧିକ ପ୍ରଭାବ ଥିବାରୁ ସେମାନଙ୍କର ଇଚ୍ଛା ଅଧିକ କାର୍ଯ୍ୟକାରୀ ହେଲା । ଓଡନେଲ କମିଟି ରିପୋର୍ଟ ପ୍ରକାଶ ପାଇଲା ୧୯/୪/ ୧୯୩୨ରେ । ସେ କମିଟିର ସେକ୍ରେଟାରୀ ଥିଲେ ବି.ସି.ମୁଖାର୍ଜୀ ଆଇ.ସି.ଏସ୍. । ସେ ପରେ ଓଡିଶାର ଚିଫ୍ ସେକ୍ରେଟାରୀ ହୋଇ ଆସିଥିଲେ । କମିଟି ରିପୋର୍ଟରେ ଅମ୍ଭେମାନେ ନିରାଶ ହେଲୁ । ସ୍ୱତନ୍ତ୍ର ପ୍ରଦେଶ ସୁପାରିଶ କରିଥିଲେ ମଧ୍ୟ, ପାରଳାଖେମୁଣ୍ଡି, ଜୟପୁର ପ୍ରଦେଶାନ୍ତର୍ଗତ ହେବାର ସୂଚନା ନଥିଲା । ସିଂହଭୂମି ମଧ୍ୟ ବାହାରେ ରହିଲା । ବହୁ ଆକାଂକ୍ଷିତ ଦକ୍ଷିଣର ଅନେକ ଓଡିଆଭାଷୀ ଅଞ୍ଚଳ ପ୍ରସ୍ତାବିତ ପ୍ରଦେଶ ମଧ୍ୟକୁ ଆସିଲା ନାହିଁ । କମିଟିର ଦୁଇଜଣ ସଦସ୍ୟ ଫୁକନ ଓ ମେହେଟା ରିପୋର୍ଟରେ ଜୟପୁର, ପାରଳାଖେମୁଣ୍ଡି ମିଶ୍ରଣ ସପକ୍ଷରେ ମତ ଉଲ୍ଲେଖ କରିଥିଲେ । ତାହା ସଂଖ୍ୟାଲଘୁ ମତ ହେଲେ ମଧ୍ୟ, ଆମ୍ଭେମାନେ ତାକୁ ଧରି ଏକ ତୀବ୍ର ଆନ୍ଦୋଳନ ଓ ନାନା ସ୍ଥାନରେ ବିରୋଧ ସଭାମାନ ଆରମ୍ଭ କଲୁ । ଭୁବନାନନ୍ଦ ଦାସ ଓ ଅନ୍ୟ କେତେକ ଯେକୌଣସି ମତେ ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ପାଇବା ପାଇଁ ବ୍ୟାକୁଳ ଥିଲାବେଳେ, ଆମ୍ଭେମାନେ ତାହାର ବିରୋଧ କରି, ଅନ୍ତତଃ ପାରଳାଖେମୁଣ୍ଡି, ଜୟପୁର ମିଶ୍ରିତ ନ ହେଲେ ପ୍ରଦେଶ ଗ୍ରହଣୀୟ ହେବନାହିଁ ବୋଲି କଟକ, ପୁରୀ, ବ୍ରହ୍ମପୁରରେ ପ୍ରଚାର ସଭାମାନଙ୍କରେ ପ୍ରସ୍ତାବ ଗ୍ରହଣ କରାଇ, ବିଲାତକୁ ପଠାଯାଉ ଥାଏ । ୧୯୩୨ ମସିହାଟା ଏହିପରି କଟିଲା । ପାରଳାଖେମୁଣ୍ଡି ମହାରାଜା ପୁଣି ବିଲାତ ଯାଇ ଆମ୍ଭମାନଙ୍କ ପ୍ରକାଶିତ ମତ ଓ ଦାବୀକୁ ପ୍ରବଳ ଜନମତ ରୂପେ ପ୍ରକଟିତ କରାଇ, ସ୍ୱତନ୍ତ୍ର ପ୍ରଦେଶ ମୂଳରୁ ଅକାମୀ ହୋଇଯିବାର ଆଶଙ୍କା ସରକାରୀ ମହଲରେ ସାବ୍ୟସ୍ତ କରିବା ଚେଷ୍ଟାରେ ଲାଗିଥିଲେ । ଏବେ ନିକଟରେ ଦୈନିକ 'ସମାଜ'ରେ ମହାରାଜାଙ୍କ ସମ୍ପର୍କ ଏକ ଲେଖାରେ ପ୍ରକାଶ ପାଇଥିଲା ଯେ ମୁଁ କଟକରୁ ପଠାଇଥିବା ଏକ କେବଲଗ୍ରାମ ଭିତ୍ତିରେ ସେ (ପାରଳା ମହାରାଜା) ଭାରତ ସଚିବଙ୍କୁ ପ୍ରଭାବିତ କରିପାରିଥିଲେ, ଜୟପୁର ପାରଳାଖେମୁଣ୍ଡି ମିଶ୍ରଣ ସପକ୍ଷରେ ।

୧୯୩୩ ଫେବୃୟାରୀ ମାସରେ କଟକ ଶ୍ରୀରାମଚନ୍ଦ୍ର ଭବନରେ ଭୁବନାନନ୍ଦ ଦାସ, ବିଚିତ୍ରାନନ୍ଦ ଦାସ ପ୍ରଭୃତି(Orissa Leaders Conference) ଓଡିଶା

Digitized by srujanika@gmail.com

ଲିଡରସ୍ କନ୍‌ଫରେନସ୍ ଡାକିଲେ । ସବୁଆଡୁ ନେତୃସ୍ଥାନୀୟ ବ୍ୟକ୍ତିମାନେ ଦଳ ନିର୍ବିଶେଷରେ ଆସିଥିଲେ । କନିଷ୍ଠ ହେଲେ ମଧ୍ୟ ମୁଁ ବାଦ୍‌ଯାଇ ନଥିଲି । ସେ ସଭା ଡାକିବାର ପ୍ରଚ୍ଛନ୍ନ ଉଦ୍ଦେଶ୍ୟ ଥିଲା ସ୍ୱତନ୍ତ୍ର ପ୍ରଦେଶ ସୁପାରିଶକୁ (ଓଡନେଲ କମିଟିର) ଗ୍ରହଣ କରିନେବା । ଭୁବନାନନ୍ଦବାବୁ ସଭାପତି ହୋଇ ସଭା କାର୍ଯ୍ୟ ଆରମ୍ଭ ହେଲା । ତାଙ୍କର ସମର୍ଥକ ଭିକାରୀ ଚରଣ ପଟ୍ଟନାୟକ, ଲକ୍ଷ୍ମୀଧର ମହାନ୍ତି, ବିଚିତ୍ରାନନ୍ଦ ଦାସ ପ୍ରଭୃତିଙ୍କର ଯୁକ୍ତି ହେଲା, ସ୍ୱତନ୍ତ୍ର ପ୍ରଦେଶ, ଖଣ୍ଡିତ ହେଲେ ମଧ୍ୟ, ଗ୍ରହଣ କରାଯାଉ ଏବଂ ପରେ ଅନ୍ୟାନ୍ୟ ଓଡିଆ ଅଞ୍ଚଳ ମିଶାଇବାର ଉଦ୍ୟମ ପ୍ରାଦେଶିକ ସରକାର ମାଧ୍ୟମରେ କରାଯିବ । ଏହାର ବିରୋଧ କରିବା ମୋ ଉପରେ ପଡିଲା । ମୋର ଭାଷଣର ସମର୍ଥନର ବିପୁଳତା ଲକ୍ଷ୍ୟ କରି ସଭାପତି ନରମ ପଡିଲେ । ଠିକ୍ ସେହି ସମୟରେ ପାରଳାଖେମୁଣ୍ଡି ମହାରାଜ ସୈନିକ ପୋଷାକ ପିନ୍ଧି ଆସି ସଭାସ୍ଥଳରେ ପହଞ୍ଚିଲେ । ମୋ ପ୍ରସ୍ତାବ, ଅନ୍ତତଃ ପାରଳାଖେମୁଣ୍ଡି, ଜୟପୁର ପ୍ରଦେଶରେ ପ୍ରଥମରୁ ନ ମିଶିଲେ, ସ୍ୱତନ୍ତ୍ର ପ୍ରଦେଶ ଅଗ୍ରାହ୍ୟ ହେବ ପ୍ରାୟ ଆପେ ଆପେ, ଗୃହୀତ ହୋଇଗଲା । ଉଦ୍ୟୋକ୍ତାମାନଙ୍କ ମଧ୍ୟରୁ କେହି ତାହାର ପ୍ରକାଶ୍ୟ ବିରୋଧ ମୋ କହିବା ପରେ କଲେ ନାହିଁ, ଯଦିଓ ସେମାନେ ମୋ ଉପରେ କୋପିତ ହେଲେ । ମିଷ୍ଟର ଦାସଙ୍କୁ (ମଧୁସୂଦନ ଦାସ) ସଭାପତି ଅନୁରୋଧ କରିବାରୁ ସେ ଶେଷକୁ ଇଂରାଜୀରେ ଯେଉଁ ବକ୍ତୃତା ଦେଇଥିଲେ, ତାହାର ଜ୍ୱଳନ୍ତ ଆଭା ମୋ ମନରେ ଅଲିଭା ରହିଛି । ସଭାପରେ ଟି ପାର୍ଟି ହେଲା । ସଭାକୁ ନ ଆସିଥିବା ବିଶିଷ୍ଟ ଲୋକ ନିମନ୍ତ୍ରିତ ହୋଇଥିଲେ । ପରିଜା ସାହେବ, ତ୍ରିପାଠୀ ସାହେବ ଆସିଥିଲେ । ସେଠାରେ ଭୁବନାନନ୍ଦବାବୁ ପରିଜା ସାହେବଙ୍କୁ ମତେ ଦେଖାଇ କହିଲେ ଯେ ମୁଁ ତାଙ୍କ ବିରୋଧରେ ଆନ୍ଦୋଳନ କରିବା ପାଇଁ ଧମକ ଦେଉଛି । ପରିଜା ସାହେବ ଉତ୍ତର କଲେ, He is as poor as a Church mouse. How can he do that ? କଥାଟା ହସ ହସରେ ଉଡିଗଲା କିନ୍ତୁ ବକ୍ତାଙ୍କ ଅନ୍ତର୍ଦାହ ଜଣା ପଡିଲା । ଏହି ସଭାର ମାସକ ପରେ ବିଲାତ ପାର୍ଲିଆମେଣ୍ଟରେ ୧୭/୩/୧୯୩୩ ତାରିଖରେ White Paper ପ୍ରକାଶ ପାଇଲା । ଦୁଇବର୍ଷ ଉତ୍ତାରୁ Government of India, Act 1935,୪/୮/୧୯୩୫ ରେ ଗୃହୀତ ହୋଇ, ଭାରତ ସମ୍ରାଟଙ୍କ ସ୍ୱୀକୃତି ୧୯୩୬ ଜାନୁୟାରୀରେ ଲାଭ କରିବା ପରେ ୧୯୩୬ ଏପ୍ରିଲ ପହିଲା ଦିନଠାରୁ ଓଡିଶା ଓ ସିନ୍ଧୁ, ଦୁଇଟି ନୂଆ ସ୍ୱତନ୍ତ୍ର ପ୍ରଦେଶ ଗଠିତ ହେଲା । ଜୟପୁର ପ୍ରଧାନ ଅଂଶ, ପାରଳାଖେମୁଣ୍ଡି ଜମିଦାରୀ ଓଡିଶା ଭିତରକୁ ଆସିଲା ।

Digitized by srujanika@gmail.com

ସାର ଜନ୍ ହବାକ୍ ଓଡିଶାର ପ୍ରଥମ ଲାଟ ହୋଇ ଏପ୍ରିଲ ପହିଲାରେ କଟକରେ ରେଭେନ୍ସା କଲେଜ ହଲରେ ଏକ ଦରବାରରେ ଶପଥ ଓ ଦାୟିତ୍ୱ ଗ୍ରହଣ କଲେ । ଦରବାରକୁ ମୋ ପରି ଜଣେ କନିଷ୍ଠ, ଚାରିବର୍ଷିଆ ଓକିଲ ନିମନ୍ତ୍ରିତ ହୋଇ ଯାଇଥିବାର ଦେଖି କେତେକ ବୟସ୍କ ନେତୃସ୍ଥାନୀୟ ଲୋକେ ଅପ୍ରସନ୍ନ ବୋଧ କରିବାର ଜଣା ପଡିଲା । ସେତେବେଳେ କଟକରେ ଜିଲ୍ଲା ଜଜ୍ ଥାଆନ୍ତି ଏ.ବି. ବାନାର୍ଜୀ । ମୁଙ୍ଗେରର ସେ ଓକିଲ । ଜିଲ୍ଲା ଜଜ୍ ମୁକରିର ହୋଇ ଆସିଥାଆନ୍ତି । ଲମ୍ବା ଚଉଡା ମଣିଷ । ସେ ଉଚ୍ଚ ଅଫିସର ଭାବରେ ଦରବାରକୁ ଯିବାର କଥା, ଯାଇଥାଆନ୍ତି । ମତେ ସେଠାରେ ଦେଖି ଆଶ୍ଚର୍ଯ୍ୟ ହେଲେ । ସମ୍ଭାଳି ନପାରି ପଚାରି ପକାଇଲେ, ଓକିଲଙ୍କ ମଧ୍ୟରୁ ମାତ୍ର ପାଞ୍ଚ ଜଣ ନିମନ୍ତ୍ରିତ ହୋଇଥିବା ଭିତରେ ମୁଁ କିପରି ତାହା ଭିତରେ ଜଣେ ହେଲି ? ସୁବୋଧଚନ୍ଦ୍ର ଚାଟାର୍ଜୀ (ଯେ ପରେ ପାଟନା ହାଇକୋର୍ଟର ଜଜ୍ ହେଲେ), ବୀରକିଶୋର ରାୟ (ଯେ ପରେ ଚିଫ ଜଷ୍ଟିସ ହୋଇଥିଲେ), ଚିନ୍ତାମଣି ଆଚାର୍ଯ୍ୟ ସରକାରୀ ଓକିଲ, ବିଚିତ୍ରାନନ୍ଦ ଦାସ, ବାର ଆସୋସିଏସନ୍ ପ୍ରେସିଡେଣ୍ଟ ଓକିଲଙ୍କ ମଧ୍ୟରୁ ଯାଇଥାଆନ୍ତି । ଓକିଲ ଓ ବେସରକାରୀ ଲୋକଙ୍କ ମଧ୍ୟରେ ମୁଁ ଏକମାତ୍ର ଦରବାରୀ ପୋଷାକ ପିନ୍ଧିଥିଲି । ୟୁରୋପୀୟ ଓ ଦେଶୀୟ ଉଚ୍ଚ ସରକାରୀ କର୍ମଚାରୀମାନେ ସେପରି ପୋଷାକ ପିନ୍ଧି ଯାଇଥିଲେ । କଟକରେ ସେ ପୋଷାକ ତିଆରି ହେଉ ନ ଥିବାରୁ, କଲିକତାରୁ ପ୍ରସ୍ତୁତ କରି ଅଣାଇଥିଲି । ମୋ ପକ୍ଷରେ ତାହା ନ କରିବା ଉଚିତ ହୋଇଥାଆନ୍ତା । ମୋ ସାମାଜିକ ସ୍ଥିତିକୁ ତାହା ବଳାଇ ପଡିଥିଲା । କିନ୍ତୁ ଏପରି ବଳକା କଥା ମୁଁ ସ୍ୱଭାବତଃ ଅନେକ କ୍ଷେତ୍ରରେ କରିଆସିଛି । କଲାପରେ ଜାଣେ, ବୋଧହୁଏ ବଳେଇଗଲା । ଏ ପ୍ରକାର ବଳକା କଥା ଯୋଗୁ ଅନ୍ୟମାନଙ୍କର ଦୃଷ୍ଟି ଯେତିକି ପାଇବାର କଥା, ତାଠାରୁ ଯେ ବେଶି ନ ପାଇଛି ତାହା ନୁହେଁ ।



Digitized by srujanika@gmail.com

# ଦ୍ୱନ୍ଦ୍ୱ (ରାଜଧାନୀ, ଡୁଡୁମା)

ନୂତନ ପ୍ରଦେଶ ହେବା ପରେ ପରେ ପ୍ରଶ୍ନ ଉଠିଲା ରାଜଧାନୀ କେଉଁଠି ହେବ । ସ୍ୱତନ୍ତ୍ର ପ୍ରଦେଶ, ଦେଶ ମିଶ୍ରଣ ପାଇଁ ଆନ୍ଦୋଳନ ୧୯୦୨ ଠାରୁ ୧୯୩୬ ପର୍ଯ୍ୟନ୍ତ ଚାଲିଥିଲାବେଳେ କାହାରି ମନକୁ ସେ ପ୍ରଶ୍ନ ଆସି ନଥିଲା । ଆମେ ଧରିନେଇଥିଲୁ, କଟକ ଓଡିଶା ଡିଭିଜନର ଯେପରି ହେଡକ୍ୱାଟରସ ଅଛି, ସ୍ୱତନ୍ତ୍ର ପ୍ରଦେଶ ହେଲେ ସେହିପରି ରାଜଧାନୀ ହେବାର କଥା । ଆନ୍ଦୋଳନରେ ଯେଉଁମାନେ ଏକଜୁଟ ହୋଇଥିଲେ, ସେମାନେ ଦୁଇଫାଙ୍କ ହୋଇଗଲେ । ଗଞ୍ଜାମବାଲା ସ୍ୱର ଉଠାଇଲେ, ବ୍ରହ୍ମପୁର, ଗୋପାଳପୁର ମଝାମଝି ରଙ୍ଗାଇଲୁଣ୍ଡାରେ ରାଜଧାନୀ ହେଉ । ଆମେ କଟକ, ପୁରୀ, ବାଲେଶ୍ୱରିଆ କଟକ ପାଇଁ ପ୍ରବଳ ମତ ସୃଷ୍ଟି କଲୁ । ଲାଟସାହେବଙ୍କର ଏକ ପରାମର୍ଶଦାତା କାଉନସିଲ ଗଢ଼ା ହୋଇଥିଲା । ତାହାର ଏକ ଅଧିବେଶନ ପୁରୀରେ ଲାଟସାହେବଙ୍କ ଅଧକ୍ଷତାରେ ସେ ପ୍ରଶ୍ନର ବିଚାର କରିବାକୁ ଥାଏ । ଶ୍ରୀଯୁକ୍ତ ରାଧାନାଥ ରଥ, ବ୍ରଜସୁନ୍ଦର ଦାସ, ବ୍ରଜବନ୍ଧୁ ଦାସ ଓ ମୁଁ କଟକ ସପକ୍ଷରେ କାଗଜପତ୍ର, ତଥ୍ୟ ସବୁ ସଂଗ୍ରହ କରି ପୁରୀଠାରେ କନିକା ରାଜାଙ୍କୁ ବୁଝାଇବାକୁ ଗଲୁ । ସେ ପରାମର୍ଶଦାତା କାଉନ୍‌ସିଲରେ ସଭ୍ୟ ଥାଆନ୍ତି । ଅପର ପକ୍ଷରେ ପାରଙ୍ଗମ ଯୁକ୍ତି ଆଣିବା ପାଇଁ ଖଲିକୋଟର ରାଜା ସାହେବ ବଦ୍ଧପରିକର ହୋଇ ଆସିଥାଆନ୍ତି । ସେ ମଧ ସଭ୍ୟ ଥିଲେ । ବ୍ରହ୍ମପୁରର ଲିଙ୍ଗରାଜ ପାଣିଗ୍ରାହୀ, ଗୋରାଚାନ୍ଦ ପଟ୍ଟନାୟକ ପ୍ରଭୃତି ଥିଲେ ତାଙ୍କର ବାକ୍‌ପଟୁ ସମର୍ଥକ । ଏ ପ୍ରଶ୍ନ ସେତେବେଳେ ଏପରି ତିକ୍ତତା ସୃଷ୍ଟି କରିଥିଲା ଯେ ସ୍ୱତନ୍ତ୍ର ପ୍ରଦେଶ ଏକ ଅଭିଶାପ ପରି ଲାଗିଲା । ସରକାରୀ କର୍ମଚାରୀମାନେ ମଧ ଦୁଇଫାଙ୍କ ହୋଇଗଲେ । ପରାମର୍ଶଦାତା କାଉନସିଲରେ ଖଲିକୋଟ ରାଜା ବକ୍ତୃତାରେ କହିଲେ ଯେ କଟକରେ ମଶା ଅଧୁଲି ଆକାରର, ସେଠାରେ ରାଜଧାନୀ ବିପଦଜନକ ହେବ । ପୁରୀର ଦାବୀ ମଧ ଉଠିଥିଲା । ତା ବିରୁଦ୍ଧରେ ଲିଙ୍ଗରାଜ ପାଣିଗ୍ରାହୀ ପ୍ରକାଶ୍ୟ ଯୁକ୍ତି ବାଢ଼ିଲେ ଯେ ଅନୁତପ୍ତା ବିଧବା, ଅତୃପ୍ତ ମଠ ମହନ୍ତମାନଙ୍କର ବାସସ୍ଥଳୀ ପୁରୀ ରାଜଧାନୀ

Digitized by srujanika@gmail.com

ପାଇଁ ଅଯୋଗ୍ୟ । ଅତୀତରେ କଟକ ଓ ପୁରୀ କିପରି ହୋଇ ପାରିଥିଲା ତାହା ବିସ୍ମରଣ ହେବା ସେମାନଙ୍କ ପକ୍ଷରେ ସହଜ ଥିଲା । ଆମେ ଲାଗିଥାଉ କଟକ ଓ ଚୌଦ୍ୱାରର ପ୍ରାଚୀନ ଯୋଗ୍ୟତା, ରାଜଧାନୀଯୋଗ୍ୟ ଅନୁଷ୍ଠାନମାନଙ୍କର ବର୍ତ୍ତମାନ ଅବସ୍ଥିତି ଓ ବ୍ୟୟ ଭାରର ସ୍ୱଳ୍ପତା ପ୍ରଭୃତି ବିଷୟରେ ତଥ୍ୟ ଓ ଯୁକ୍ତି ପ୍ରକାଶ କରିବାରେ । ଏ ବାଦାନୁବାଦ ଏପରି ପ୍ରଖର ହେଲା ଯେ ବ୍ୟକ୍ତିଗତ ସ୍ତର ମଧ୍ୟ ବାଦ୍ ପାଇଲା ନାହିଁ । ପରାମର୍ଶଦାତା କାଉନ୍‌ସିଲରେ ତାହା ସ୍ଥିର ହେବା ସମ୍ଭବ ହୋଇ ପାରିଲା ନାହିଁ । ରଙ୍ଗାଇଲୁଣ୍ଡା ଦାବୀ କ୍ରମଶଃ ନିସ୍ତବ୍ଧ ହୋଇ ଆସିଲା ।

ନୂତନ ପ୍ରଦେଶର ପ୍ରଥମ ମନ୍ତ୍ରିମଣ୍ଡଳ ପାରଳାଖେମୁଣ୍ଡି ମହାରାଜା, ମାନଧାତା ଗୋରାଚାନ୍ଦ ପଟ୍ଟନାୟକ, ମୌଲବି ଲତିଫୁର ରହମନଙ୍କୁ ନେଇ ଗଠିତ ହୋଇଥିଲା । ଦୁଇ ଜଣ ଗଞ୍ଜାମର ଥିଲେ ମଧ୍ୟ, ରଙ୍ଗାଇଲୁଣ୍ଡା କଥା ଉଠାଇ ନ ଥିଲେ । ତାଙ୍କପରେ କଂଗ୍ରେସ ମନ୍ତ୍ରିମଣ୍ଡଳ ବିଶ୍ୱନାଥ ଦାସଙ୍କ ନେତୃତ୍ୱରେ ହେଲା । ବିଶ୍ୱନାଥବାବୁ ମଧ୍ୟ ସେ ଦାବୀର ଔଚିତ୍ୟ ପ୍ରକାଶ କରିନଥିଲେ । ସେ ଦ୍ୱିତୀୟ ମହାସମର (୧୯୩୯) ସଂକ୍ରାନ୍ତ କଂଗ୍ରେସ ନିଷ୍ପତ୍ତି ଅନୁସାରେ ଇସ୍ତଫା ଦେବାରୁ, ପୁନର୍ବାର ପାରଳାଖେମୁଣ୍ଡି ମହାରାଜା, ପଣ୍ଡିତ ଗୋଦାବରୀଶ ମିଶ୍ର, ମୌଲବୀ ଶୋଭନ ଖାଁଙ୍କୁ ନେଇ ମନ୍ତ୍ରିମଣ୍ଡଳ ଗଠନ କଲେ । ସେମାନେ ରାଜଧାନୀ ଦ୍ୱନ୍ଦ ଭିତରକୁ ଯାଇ ନଥିଲେ । ୧୯୪୫ରେ ଯୁଦ୍ଧର ଅବସାନ ପରେ ସାଧାରଣ ନିର୍ବାଚନରେ କଂଗ୍ରେସଦଳ ବିଜୟୀ ହୋଇ ହରେକୃଷ୍ଣ ମହତାବ ଅନ୍ୟ ଚାରିଜଣଙ୍କୁ (ନବକୃଷ୍ଣ ଚୌଧୁରୀ, ନିତ୍ୟାନନ୍ଦ କାନୁନ୍‌ଗୋ, ଲିଙ୍ଗରାଜ ମିଶ୍ର, ରାଧାକୃଷ୍ଣ ବିଶ୍ୱାସରାୟ) ନେଇ ୨୩/୪/୧୯୪୬ ଠାରୁ ଶାସନ କ୍ଷମତାକୁ ଆସିଲେ । ତାପରେ ରାଜଧାନୀ ପ୍ରଶ୍ନ ଜୋରସୋରରେ ଉଠିଲା । ବି.କେ. ଗୋଖଲେ ଆଇ.ସି.ଏସ୍. ଦ୍ୱିତୀୟବାର ପାରଳାଖେମୁଣ୍ଡି ମହାରାଜାଙ୍କ ମନ୍ତ୍ରୀମଣ୍ଡଳ ଭାଙ୍ଗିବା ପରେ, ରାଷ୍ଟ୍ରପତି ଶାସନ ସମୟରେ ଲାଟଙ୍କର ପରାମର୍ଶଦାତା ହୋଇ ଆସିଥିଲେ । ଦକ୍ଷ ସୌଜନ୍ୟବନ୍ତ ପ୍ରଶାସନିକ ଭାବରେ ତାଙ୍କର ଖ୍ୟାତି ଥିଲା । ସେ କଟକ ଚୌଦ୍ୱାରକୁ ମିଶାଇ ରାଜଧାନୀ କରିବା ପାଇଁ ଖର୍ଚ୍ଚ ଅଟକଳ ପ୍ରଭୃତି ତିଆରି କରିଥିଲେ । ମହତାବ ଶାସନ ଭାର ନେଇ ନିଧାର୍ଯ୍ୟ କରାଇ ନେଲେ ଭୁବନେଶ୍ୱରରେ ନୂଆ ରାଜଧାନୀ ବସାଇବା ପାଇଁ । କଟକର ଗୁରୁତ୍ୱ କମିଯିବା ଆଶଙ୍କାରେ ବିରୋଧ ହୋଇଥିଲା । ଚଣ୍ଡିଗଡରେ ସେତେବେଳେ ନୂଆ ରାଜଧାନୀ ତିଆରି ହେବା ନିଷ୍ପତ୍ତି ହୋଇଥିବାରୁ, ପୁରୁଣା ସହରରେ ତାଳି ନ ପକାଇ କଟକ ନିକଟବର୍ତ୍ତୀ ଭୁବନେଶ୍ୱରକୁ ଯିବାପାଇଁ ଆପତ୍ତି ଊଣା ହୋଇ ଆସିଲା, ବିଶେଷ କରି

Digitized by srujanika@gmail.com

କଟକରେ ଉଚ୍ଚ ନ୍ୟାୟାଳୟ, ରେଭେନ୍ୟୁ ବୋର୍ଡ, ବିଶ୍ୱବିଦ୍ୟାଳୟ ପ୍ରଭୃତି ରହିବା ସ୍ଥିର ହେବାରୁ । ପଣ୍ଡିତ ଜବାହରଲାଲ ନେହେରୁ ଆସି ଶିଳାନ୍ୟାସ କରିଗଲେ । ୧୯୩୬ ଏପ୍ରିଲ ପହିଲା ଦିନ କଟକରେ ଯେପରି ଉତ୍ସାହ ଦେଖାଯାଇଥିଲା, ଭୁବନେଶ୍ୱରରେ ସେ ଦିନ ଏଗାର ବର୍ଷ ପରେ ସେହିପରି ଉତ୍ସାହ ଖେଳିଲା । ଆମେମାନେ କଟକରୁ କାଠଯୋଡି, କୁଆଖାଇ ଖରାଦିନିଆ ରାସ୍ତାଦେଇ ସକାଳୁ ସକାଳୁ ପହଞ୍ଚି ଥିଲୁ ଭୁବନେଶ୍ୱରରେ । ତା ପୂର୍ବଦିନ ସମ୍ବଲପୁରରେ ହୀରାକୁଦ ବନ୍ଧ ଉତ୍ସବରେ ଯୋଗଦେବା ପାଇଁ ଯାଇଥିଲି । ନେହେରୁ ସେଠାକୁ ଆସିଥିଲେ ପୁରୋଧା ହୋଇ । ସେ ଉତ୍ସବ ସନ୍ଧ୍ୟାରେ ସରିବା ସଙ୍ଗେ ସଙ୍ଗେ କଟକ ଫେରିଲି । ଘରେ ପହଞ୍ଚିଲାବେଳକୁ ରାତି ଚାରିଟା । ନିତ୍ୟକର୍ମ ସାରି ପୁଣି ଚାଲିଲି ଭୁବନେଶ୍ୱର ରାଜଧାନୀ ଶୀଳାନ୍ୟାସ ପାଇଁ । ନେହେରୁ, ମହତାବ ଉଡାଜାହାଜରେ ସମ୍ବଲପୁରରୁ ଆସି ସକାଳ ୧୦ଟା ବେଳକୁ ପହଞ୍ଚିଲେ । ଭିତ୍ତି ସ୍ଥାପନ କରି ନେହେରୁ ଫେରିଗଲେ ଦିଲ୍ଲୀ । ଏ ସବୁ କାର୍ଯ୍ୟରେ ସଂଶ୍ଳିଷ୍ଟ ହେବା ମୋର ଏକ ନୈତିକ କର୍ତ୍ତବ୍ୟ ମନେ କରୁଥିଲି । ଅନ୍ୟମାନେ ତାହା ଅହେତୁକ ଭାବୁଥିଲେ ।

ରାଜଧାନୀ ପାଇଁ ଯେପରି ଦ୍ୱନ୍ଦ୍ୱ ଉଠିଥିଲା, ସେପରି ଆଉ ଗୋଟିଏ ଦ୍ୱନ୍ଦ୍ୱ ଉପୁଜିଲା ଡୁଡୁମା ନେଇ । ଜୟପୁର ସହର ନିକଟବର୍ତ୍ତୀ ଡୁଡୁମା ଜଳପ୍ରପାତରୁ ବିଜୁଳି ଶକ୍ତି ସଂଗ୍ରହ କରିବା ପାଇଁ ମାଛକୁଣ୍ଡ ଯୋଜନା ଅନେକ ଦିନରୁ ସରକାରଙ୍କର ବିଚାରାଧୀନ ଥିଲା । ସେତେବେଳେ ଜୟପୁର ଜମିଦାରୀ ମାଡ୍ରାସ ପ୍ରଦେଶରେ ଥାଏ । ଓଡିଶା ସ୍ୱତନ୍ତ୍ର ପ୍ରଦେଶରେ ଜୟପୁର ଆସି ଯିବାରୁ ଏବଂ ସେ ନଦୀ ମାଡ୍ରାସ ଓ ଓଡିଶାର ସୀମାରେଖା ହେବାରୁ, ବିଜୁଳି ଶକ୍ତିରେ ଦୁଇ ପ୍ରଦେଶ ଅଧିକାରୀ ହେବାର କଥା । ଖର୍ଚ୍ଚରେ ମଧ ଦୁହେଁ ଦାୟୀ । ପ୍ରଶ୍ନ ଉଠିଲା କାହାର କେତେ ଅଂଶ । ଆମର ଦାବୀ ଅର୍ଦ୍ଧେକ । ଆମର ହ୍ରାସ ପ୍ରୟୋଗ ଶକ୍ତି ଓ ଆର୍ଥିକ ଅବସ୍ଥା ଦେଖାଇ ମାଡ୍ରାସ ବୃହତ ଅଂଶ ପାଇବାକୁ ପ୍ରବଳ ପ୍ରଭାବ ଆରମ୍ଭ କଲା । ପାଞ୍ଚଭାଗରୁ ଚାରିଭାଗ ତାଙ୍କର ଦାବୀ । କଟକରୁ ଏକ ଆନ୍ଦୋଳନ ଆରମ୍ଭ ହେଲା ତା ବିରୁଦ୍ଧରେ । ସଭା, ପ୍ରୋସେସନ, ମେମୋରେଣ୍ଡମ, ଡେପୁଟେସନ ପୁଣି ଚାଲିଲା । ମୁଁ ସେଥିରେ ସାମିଲ ହେବାର କଥା, ହେଲି । ଉତ୍କଳ ସମ୍ମିଳନୀକୁ ସଜାଗ କରାଗଲା । ବ୍ରହ୍ମପୁରର ଦିଗାମ୍ବର ରଥ (ଓକିଲ), ଜୟପୁରର ହରିହର ମିଶ୍ର (ଓକିଲ) ପ୍ରଭୃତି ଓଡିଶା ଦାବୀରେ ଜୋର ଦେଇ ବାହାରିଲେ । ସମ୍ମିଳନୀର କାର୍ଯ୍ୟକାରୀ ସମିତି ବୈଠକ ପୁନଃ ପୁନଃ କଟକରେ ବସୁଥାଏ । ରାଧାନାଥବାବୁ (ସମାଜ) ବହୁତ ସକ୍ରିୟ ଅଂଶ ଗ୍ରହଣ କରିଥିଲେ । କିନ୍ତୁ, ଦୁଃଖର କଥା, ଭିତରେ ଭିତରେ ଜୟପୁରର ମହାରାଜା

Digitized by srujanika@gmail.com

ମାଡ୍ରାସ ସପକ୍ଷରେ ରହିଲେ ଏବଂ ତାଙ୍କ କୁହାରେ ହେଉ ବା ଅନ୍ୟ କାରଣରୁ ହେଉ, ଲିଙ୍ଗରାଜ ପାଣିଗ୍ରାହୀ ସେ ଦିଗରେ ଗଲେ । ଶେଷକୁ ସାର୍ ବି.ଏନ୍. ରାଓଙ୍କ ମଧ୍ୟସ୍ଥତାରେ ମୀମାଂସା ହେବାର ସ୍ଥିର ହେଲା । ତାଙ୍କ ପାଖରେ ଆମର ଯୁକ୍ତି, ତଥ୍ୟ, କାଗଜ ପତ୍ର ପ୍ରଭୃତି ଉପସ୍ଥାପିତ ହେବାର ସଂପୂର୍ଣ୍ଣ ସୁଯୋଗ ନ ମିଳି ତରବରିଆ ହୋଇ ସେ ନିଷ୍ପତ୍ତି କଲେ, ମାଡ୍ରାସର ଅଶୀଭାଗ, ଓଡିଶାର କୋଡିଏ ଭାଗ ବିଜୁଳି ଶକ୍ତିରେ । ନିର୍ମାଣ ଭାର ମାଡ୍ରାସର । ୨୦ ଭାଗ ଖର୍ଚ୍ଚ ବହନ ଓଡିଶାର । ଏହା ଓଡିଶା ପକ୍ଷରେ ଚିରଦିନକୁ ହାନିକର ହୋଇ ରହିଲା । ଆମେମାନେ ବାଡେଇ କଚାଡି ହେଲୁ । ମାତ୍ର ନିରୂପାୟ । ଆମର ପ୍ରତିବାଦ ତଥାପି ଅବ୍ୟାହତ ଥାଏ । ୧୯୪୫ ଡିସେମ୍ବର ୨୮/୨୯ ତାରିଖରେ ଜୟପୁର ଠାରେ ଉତ୍କଳ ସମ୍ମିଳନୀ ବସିଲାବେଳେ ରାଧାନାଥବାବୁ, ମୁଁ ଡୁଡୁମା ପ୍ରପାତ ସ୍ଥାନକୁ ଯାଇଥିଲୁ । ରାଧାନାଥବାବୁ ସେହି ସମ୍ମିଳନୀ ଅଧିବେଶନରେ ଆସନ୍ତା ବର୍ଷ ପାଇଁ ସଭାପତି ନିର୍ବାଚିତ ହେଲେ । ମୁଁ ୧୯୪୩ରୁ ସମ୍ପାଦକ ଥିଲି । ଜୟପୁର ସମ୍ମିଳନୀରେ ଡୁଡୁମା ପ୍ରଶ୍ନ ଉପରେ ତୀବ୍ର ଆଲୋଚନା ହୋଇଥିଲା । ସମ୍ମିଳନୀରୁ କଟକ ଫେରିଲାବେଳେ ଟ୍ରେନ୍‌ରେ ମହତାବବାବୁଙ୍କ ସଙ୍ଗେ ଦେଖାହେଲା ଏବଂ ଡୁଡୁମା କଥା ଆଲୋଚିତ ହୋଇଥିଲା । ସେ ୧୯୪୬ ଏପ୍ରିଲରେ ମନ୍ତ୍ରିମଣ୍ଡଳ ଗଠନ କଲା ପରେ ସେ ବିଷୟରେ ଆଲୋଚନା କରିବା ପାଇଁ ମତେ ୨/୫/୧୯୪୬ ତାରିଖରେ ଖଣ୍ଡିଏ ଚିଠି ଲେଖିଥିଲେ ।

Cuttack
2nd May -1946

My dear Harihar Babu,

The question of agreement over Duduma between Madras and Orissa Governments has created a lot of public agitation in the province. I do not know if all facts are known to you. Besides the facts, there is a legal aspect to the matter also. I would like you to kindly come over to my office in the Secretariat tomorrow, the 3rd May, at about 4-30 P.M. in order to discuss the matter with me.

Sri H. Mohapatra
Advocate
Cuttack

Yours Sincerely
H. Mahatab

Digitized by srujanika@gmail.com

ମୁଁ ଗଲି । ଆଲୋଚନା ହେଲା । ପୂର୍ବ ନିଷ୍ପତ୍ତିରେ ପରିବର୍ତ୍ତନ ହୋଇପାରିଲା ନାହିଁ ।

ତୁତୁମା ପ୍ରଶ୍ନର ପୂର୍ଣ୍ଣଚ୍ଛେଦ ପଡିଲା, ମାତ୍ର ତୁତୁମା ମତେ ଛାଡିଲା ନାହିଁ । ମାଛକୁଣ୍ଡ ବନ୍ଧ ନିର୍ମାଣରେ ବମ୍ବେର ଡକ୍ଟର ଜି.ଏସ. ଡୁଗଲ କମ୍ପାନୀ କଣ୍ଟ୍ରାକ୍ଟର ନିଯୁକ୍ତ ହୋଇଥିଲେ । ନିଜେ ଜଣେ ଡାକ୍ତର କିନ୍ତୁ ଡାକ୍ତରୀ ବୃତ୍ତି ନ କରି ନିଜ ଭାଇ ହରିବଂଶ ଡୁଗଲ ଓ ଅନ୍ୟ କେତେକ ନିକଟ ସଂପର୍କୀୟଙ୍କୁ ନେଇ କଣ୍ଟ୍ରାକ୍ଟରୀ କାର୍ଯ୍ୟ କରୁଥାଆନ୍ତି । ତୁତୁମା ବନ୍ଧ ବାବଦ୍‌ରେ ତାଙ୍କର ସମସ୍ତ ପ୍ରାପ୍ୟ ମାଡ୍ରାସ ସରକାରଙ୍କଠାରୁ ନ ମିଳିବାରୁ ସେ ତାଙ୍କ ବିରୁଦ୍ଧରେ ବହୁ ଲକ୍ଷ ଟଙ୍କା ଦାବୀ କରି ଏକ ଦେଓ୍ୱାନୀ ମକଦ୍ଦମା ଜୟପୁର ସବ୍‌ଜଜ କୋର୍ଟରେ ଆଗତ କରି ମତେ ତାଙ୍କ ପକ୍ଷରୁ ଓକିଲ ନିଯୁକ୍ତ କଲେ । ମାଡ୍ରାସ ସରକାରଙ୍କ ତରଫରୁ ଭାଇଜାଗର ସରକାରୀ ଓକିଲ ଓ ତାଙ୍କର ସହକାରୀ ଚାରିଜଣ ଓକିଲ ଲଢୁଥାନ୍ତି । ତାହା ଏକ ଜଟିଳ ଓ ଗୁରୁତର ମାମଲା ଥିଲା । ବହୁ କାଗଜପତ୍ର ଛଡା ଭାଇଜାଗ୍, ଦିଲ୍ଲୀ, ଡେରାଡୁନ୍, ବମ୍ବେର ଅନେକ ଉଚ୍ଚପଦସ୍ଥ ସରକାରୀ କର୍ମଚାରୀ, ଇଞ୍ଜିନିୟରମାନଙ୍କ ସାକ୍ଷ୍ୟ ନିଆଗଲା । ୧୯୫୬ ରୁ ୧୯୫୯ ପର୍ଯ୍ୟନ୍ତ ସେ କେସ୍ ଚାଲି, ଶେଷରେ ଡୁଗଲଙ୍କ ସପକ୍ଷରେ ଡିଗ୍ରୀ ହେଲା । ସବ୍‌ଜଜ୍ ଥିଲେ ପ୍ରଫୁଲ୍ଲଚନ୍ଦ୍ର ଦେ । ଏ କେସ୍‌ରେ ମୋର ସୁଖ୍ୟାତି ଯେପରି ହେଲା, ଡୁଗଲ ପରିବାର ସଙ୍ଗେ ବନ୍ଧୁତା ସେପରି ଘନିଷ୍ଠ ହେବାର ସୁଯୋଗ ମିଳିଲା । ମୁଁ ଥରେ ବିଲାତ ଯାଇଥିଲାବେଳେ, ଜର୍ମାନୀର ଡସଲଡ୍ରଫ ଠାରେ ଡୁଗଲଙ୍କ ଘରେ ଦୁଇଦିନ ଆତିଥ୍ୟ ଗ୍ରହଣ କରିବାର ପ୍ରତିଶ୍ରୁତି ରକ୍ଷା କରିଥିଲି । ତୁତୁମା ଆନ୍ଦୋଳନବେଳେ ତୁତୁମାକୁ ନେଇ ଏପରି ଭବିଷ୍ୟତ ଘଟନା କଳ୍ପନାରେ ନ ଥିଲା । ଜୀବନରେ ଅନାହୂତ ଭାବରେ ପ୍ରାଧାନ୍ୟ ସୂଚକ ଅନୁଭୂତି ଅନେକ ଆସିଛି, ବିନା ଚେଷ୍ଟା, ବିନା ଇଚ୍ଛାରେ ଆପେ ଆପେ । ସେଥିପାଇଁ ଈଶ୍ୱରଙ୍କର ଅନୁଗ୍ରହ ନିକଟରେ ମୁଁ ନତମସ୍ତକ ।



Digitized by srujanika@gmail.com

# ଉତ୍କଳ ବିଶ୍ୱବିଦ୍ୟାଳୟ

ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ୧୯୩୬ରେ ହେଲା ପରେ ୧୯୩୫ ଗଭର୍ଣ୍ଣମେଣ୍ଟ ଅଫ୍ ଇଣ୍ଡିଆ ଆକ୍ଟ ଅନୁସାରେ ପ୍ରଥମ ନିର୍ବାଚନ ୧୯୩୭ରେ ଓଡ଼ିଶାରେ ହେଲା । ନୀଳକଣ୍ଠ ଦାସ ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ଥାଇ ନିର୍ବାଚନ ପ୍ରଚାର ଦାୟିତ୍ୱ ଅତି ଦକ୍ଷତା ଓ କୌଶଳରେ ଚଳାଇ କଂଗ୍ରେସକୁ ଷାଠିଏ ମଧ୍ୟରୁ ଛତିଶଙ୍କୁ ସଂଖ୍ୟାଗରିଷ୍ଠ କରି ଜିତାଇ କଂଗ୍ରେସ ତୁଙ୍ଗ ନେତାଙ୍କଠାରୁ ସାବାସ ପାଇଥିଲେ । ସର୍ଦ୍ଦାର ବଲ୍ଲଭଭାଇ ପଟେଲ Well done Orissa ଲେଖି ତାଙ୍କ ପାଖକୁ ଟେଲିଗ୍ରାମ ପଠାଇଥିଲେ । କଂଗ୍ରେସର ବିଜୟ ଭାରତ ବର୍ଷରେ ପ୍ରଥମ ଓଡ଼ିଶାରେ ହେଲା । ପ୍ରାଣମୂର୍ଚ୍ଛା ଚେଷ୍ଟା, ନିର୍ବାଚନରେ କରିଥିଲେ ନୀଳକଣ୍ଠବାବୁ, କିନ୍ତୁ ମନ୍ତ୍ରିମଣ୍ଡଳ ଗଠନବେଳକୁ ନିରାଶ ହେଲେ ସେ । ନିର୍ବାଚନରେ ସେ ନିଜେ ପ୍ରାର୍ଥୀ ନ ଥିଲେ । କଂଗ୍ରେସ ଦଳ ଭିତରେ ତାଙ୍କୁ ସହିପାରୁ ନଥିଲେ ଅନେକ । ତାଙ୍କର ଦକ୍ଷତା ସେମାନଙ୍କ ପକ୍ଷରେ ଅସହ୍ୟ ଯୋଗୁ ତାଙ୍କର ବିରୁଦ୍ଧାଚରଣ କରିବାପାଇଁ ଯେ କୌଣସି ସୁଯୋଗ ସେମାନଙ୍କୁ ସୁହାଉଥିଲା । କଂଗ୍ରେସ ସଂଖ୍ୟାଗରିଷ୍ଠ ବିଜୟ ଲାଭ କରିବାରୁ ସମସ୍ତେ ଭାବିଥିଲେ ନିଶ୍ଚୟ ନୀଳକଣ୍ଠବାବୁ, ଯାହାଙ୍କ ପ୍ରୟାସ ଯୋଗୁ ସେ ବିଜୟ ସମ୍ଭବ ହୋଇଥିଲା, ଦଳପତି ହେବେ ଏବଂ ମନ୍ତ୍ରିମଣ୍ଡଳର ମୁଖ୍ୟତ୍ୱ ଗ୍ରହଣ କରିବେ ଓ ଛଅମାସ ଭିତରେ ଏକ ବାଇ ଇଲେକ୍ସନ୍‌ରେ ପ୍ରାର୍ଥୀ ହୋଇ ରୀତିମତ ବିଧାନସଭାର ସଭ୍ୟ ହୋଇଯିବେ । ତାଙ୍କ ପାଇଁ ଗୋଟିଏ ସ୍ଥାନ କିଏ ଖାଲି କରିବ ତାହା ମଧ୍ୟ ସ୍ଥିର ହୋଇଥିଲା । ସେ ମୂଳ ନିର୍ବାଚନରେ ପ୍ରାର୍ଥୀ ହୋଇଥିଲେ ଅବଶ୍ୟ ଜୟୀ ହୋଇ ଥାଆନ୍ତେ । ନିଜେ ପ୍ରାର୍ଥୀ ନଥାଇ, କଂଗ୍ରେସ ସପକ୍ଷରେ ପ୍ରଚାର କଲେ ଅଧିକ ପ୍ରଭାବ ସମ୍ଭାବନା ପାଇଁ ଏକ ନିର୍ବାଚନ କୌଶଳ ରୂପେ ସେଥିରୁ ବିରତ ରହିଥିଲେ ।

କଂଗ୍ରେସ ଦଳ ବିଧାୟକମାନଙ୍କର ନେତା ନିର୍ବାଚନ ପାଇଁ ବୈଠକ ବସିବା ପୂର୍ବରୁ ଏକ ଗୁଲ କମିଟି, ବିଚିତ୍ରାନନ୍ଦ ଦାସଙ୍କ ସୂଚନା ଅନୁସାରେ ପ୍ରଥମରୁ ସ୍ଥିର

Digitized by srujanika@gmail.com

କରିଦେଲେ ଯେ କେବଳ ନିର୍ବାଚିତମାନଙ୍କ ମଧ୍ୟରୁ ନେତା ହେବେ । ମୂଳରୁ ମାଇଲେ ଯାଉ ସରି, ଦେବଙ୍କ ସଙ୍ଗେ କିମ୍ବା କଳି । ନୀଳକଣ୍ଠ ବାବୁ ବାଏଁ ବାଏଁ କଟିଗଲେ । ଛତିଶଜଣିଆ ଦଳରେ ନୀଳକଣ୍ଠବାବୁଙ୍କର ପ୍ରକାଶ୍ୟ ସମର୍ଥକ ଅନ୍ତତଃ ଏକୋଇଶ ଥିଲେ । ତାଙ୍କ ନାମ ଉଠିଥିଲେ, ଆଉ ଅଧିକ ସମର୍ଥନ ମିଳି ଥାଆନ୍ତା । ନୀଳକଣ୍ଠବାବୁ ସେଠାରେ ଉପସ୍ଥିତ ଥିଲେ, ରୁଲ କମିଟିର କୌଶଳ ବୋଧହୁଏ ଟେକିପାରି ନଥାନ୍ତା । ସେ ତ ନିର୍ବାଚିତ ହୋଇ ନାହାନ୍ତି, ବିଧାୟକ ବୈଠକକୁ କାହିଁକି ଆସିବେ ବୋଲି ନୀତିଧରି ଅଲଗା ରହିଥିଲେ । ବାସ୍ତବତଃ, ସେ ନେତା ନିର୍ବାଚିତ ନିଶ୍ଚିତ ବୋଧ କରି ଅଧିକ ଭାବମୂର୍ତ୍ତି ପାଇଁ ସଭାସ୍ଥଳରୁ ଅଲଗା ରହିଥିଲେ । ପ୍ରାଦେଶିକ ସଭାପତି, ନିର୍ବାଚନ ମୁଖ୍ୟ ତାଙ୍କ ସହିତ କୌଣସି ପରାମର୍ଶ ନ କରି ରୁଲ କମିଟି କୌଣସି ମୌଳିକ ଗୁରୁତର ନିଷ୍ପତ୍ତି ନେବ ବୋଲି ସେ କିମ୍ବା ତାଙ୍କ ସମର୍ଥକ କେହି ଆଶଙ୍କା କରି ନଥିଲେ । ଥରେ ରୁଲ ହୋଇଗଲା ପରେ ସାଧାରଣ ବୈଠକରେ ତାହା ବିରୁଦ୍ଧରେ ସ୍ୱର ଯେ ଉଠାଇ ପାରିଥାନ୍ତେ ସେମାନେ ନେତା ପ୍ରାର୍ଥୀତ୍ୱ ପାଇଁ ଆଶାୟୀ ହେବା ଅସ୍ୱାଭାବିକ ନ ଥିଲା । ପଣ୍ଡିତ ଗୋଦାବରୀଶ ନିର୍ବାଚିତ ହୋଇଥାନ୍ତି । ସେ ଦଳପତି ପାଇଁ ଯୋଗ୍ୟତମ ଥିଲେ । କିନ୍ତୁ ନୀଳକଣ୍ଠଙ୍କ ନିର୍ଦ୍ଦେଶରେ ତାଙ୍କ ସମର୍ଥକମାନେ ଗୋଦାବରୀଶଙ୍କ ପ୍ରତି ବିମୁଖ ହୋଇଗଲେ । ଗଞ୍ଜାମରୁ ବିଶ୍ୱନାଥ ଦାସ ନିର୍ବାଚିତ ହୋଇ ଆସି ଥାଆନ୍ତି । ସେ ପୁରୀ, କଟକ, ବାଲେଶ୍ୱର, ସମ୍ବଲପୁର ଅଞ୍ଚଳରେ ଜଣାଶୁଣା ନଥିଲେ । ଗଞ୍ଜାମ ଜିଲ୍ଲାରେ ରୟତ ଆନ୍ଦୋଳନ କରି ମାନ୍ଦ୍ରାସ ପ୍ରଦେଶରେ ତାଙ୍କର ପରିଚିତି ଥିଲା । ନୀଳକଣ୍ଠବାବୁଙ୍କ ସଙ୍ଗେ ତାଙ୍କର କଥା ହେଲା ବାଇ ଇଲେକ୍ସନ କରାଇ ନୀଳକଣ୍ଠବାବୁଙ୍କୁ ବିଧାନସଭାକୁ ଆଣି ସେ ଦଳପତିରୁ ଓହରି ଯାଇ, ତାଙ୍କୁ (ନୀଳକଣ୍ଠଙ୍କୁ) ସେ ସ୍ଥାନ ଛାଡିଦେବେ । ସେଇ ଲୋଭରେ ନୀଳକଣ୍ଠବାବୁ ତାଙ୍କର ସମର୍ଥକଙ୍କୁ ବିଶ୍ୱନାଥ ଦାସଙ୍କୁ ଭୋଟ ଦେବାପାଇଁ ମତାଇଦେଲେ । ସେ ବୋଧହୁଏ ଆଶଙ୍କା କଲେ, ଗୋଦାବରୀଶବାବୁ ଦଳପତି ଓ ମୁଖ୍ୟମନ୍ତ୍ରୀ ହୋଇଗଲେ, ତାଙ୍କର (ନୀଳକଣ୍ଠଙ୍କର) ସେ ସ୍ଥାନ ପରେ ପାଇବାର ଆଶା ସେତେ ନ ହୋଇପାରେ । ପୁରୀ ଜିଲ୍ଲାସ୍କୁଲ ପଢ଼ାବେଳରୁ ଦୀର୍ଘକାଳର ସଖ୍ୟତା, ବନବିଦ୍ୟାଳୟର ଘନିଷ୍ଠତା, ଗୋପବନ୍ଧୁଙ୍କ ପ୍ରେରଣାରେ ତ୍ୟାଗ ଓ ସେବାର ସହଯାତ୍ରୀତ୍ୱ, ସବୁ ରାଜନୀତିର ଝଲସାରେ ମଉଳିଗଲା । ଗୋଦାବରୀଶଙ୍କୁ ହରାଇଦେଲେ ନୀଳକଣ୍ଠବାବୁ । ଶେଷକୁ ନିଜେ ମଧ୍ୟ ହାରିଲେ । ବିଶ୍ୱନାଥବାବୁ ମନ୍ତ୍ରିମଣ୍ଡଳ ଗଢ଼ିଲା ପରେ ବାଇଇଲେକ୍ସନ

Digitized by srujanika@gmail.com

ବା ପଦ ବଦଳି କଥା ଆଉ ଉଠାଇଲେ ନାହିଁ କି ସେଥିକୁ କାନ ପତାଇଲେ ନାହିଁ । ତେବେ ଋଣ ପରିଶୋଧ ଅନ୍ୟ ବାଟରେ କଲେ । ନୂତନ ପ୍ରଦେଶରେ ସ୍ୱତନ୍ତ୍ର ବିଶ୍ୱବିଦ୍ୟାଳୟ ସ୍ଥାପନ ବିଷୟରେ ଅନୁସନ୍ଧାନ କରିବା ପାଇଁ ଏକ କମିଟି ନୀଳକଣ୍ଠ ଦାସଙ୍କ ଅଧ୍ୟକ୍ଷତାରେ ବସାଇଲେ । କିଛି ମୁଖ୍ୟ ସ୍ଥାନ ପାଇଲେ ନୀଳକଣ୍ଠବାବୁଙ୍କର ଦକ୍ଷତା ପ୍ରକାଶ ପାଏ । କମିଟିର ରିପୋର୍ଟ ହେଲା, ବିଶ୍ୱବିଦ୍ୟାଳୟ ବସୁ । ମାତ୍ର କାର୍ଯ୍ୟ କିଛି ହେଲା ନାହିଁ ସେ ଦିଗରେ । ପାଟନା ବିଶ୍ୱବିଦ୍ୟାଳୟ, ପାଟନା ହାଇକୋର୍ଟ ଅଧୀନରେ ଓଡିଶା ପୂର୍ବପରି ଚାଲିଲା ।

୧୯୩୯ ସେପ୍‌ଟେମ୍ବରରେ ଦ୍ୱିତୀୟ ମହାସମର ଆରମ୍ଭ ହୋଇ ବ୍ରିଟିଶ ସରକାରକୁ ଅସ୍ତବ୍ୟସ୍ତ କରି ପକାଇଲା । ଗ୍ରେଟ୍ ବ୍ରିଟେନ ବୋଇଲେ ଅତି ଅକିଞ୍ଚନ ଆକାର । କିନ୍ତୁ ବହୁଆଡକୁ ସାମ୍ରାଜ୍ୟ ବିସ୍ତାର କରି ପୃଥିବୀରେ ଏକ ମହାଶକ୍ତି ବୋଲାଉ ଥାଆନ୍ତି । ଯୁଦ୍ଧର ସାହାଯ୍ୟ ପାଇଁ ସାମ୍ରାଜ୍ୟର ବ୍ରିଟେନ ବାହାର ଅଂଶମାନଙ୍କ ଉପରେ ନିର୍ଭର କରିବା ଏକାନ୍ତ ଆବଶ୍ୟକ ପଡିଲା । ଭାରତବର୍ଷ ବ୍ରିଟିଶ୍ ସାମାଜ୍ୟର ମୁଖ୍ୟ । ଯୁଦ୍ଧର ସାହାଯ୍ୟ ଓ ସମର୍ଥନ ଏଠାରୁ ଅକଳନ୍ତ ନ ମିଳିଲେ ନ ଚଳେ । ଧନ, ଜନ, ମନ ସବୁ ଲୋଡା । ୧୯୩୫ ସାମ୍ବିଧାନିକ ଶାସନ କ୍ଷମତା ଯାହା କିଞ୍ଚିତ ଭାରତକୁ ଦେଇଥିଲେ, ତାହାଠାରୁ ଅଧିକ, ଏପରିକି ସ୍ୱାଧୀନତା ଯୁଦ୍ଧ ସମାପ୍ତି ପରେ ଦେବାପାଇଁ ଇଚ୍ଛା ପ୍ରକାଶ କରି ଯୁଦ୍ଧର ପୂର୍ଣ୍ଣ ସମର୍ଥନ ଆମ ଦେଶରୁ ପାଇବା ପାଇଁ ରାଜନୈତିକ ଆଲୋଚନା ଆରମ୍ଭ ହେଲା । ଭାରତର ରାଜୁଡା ସମୂହ ଅକୁଣ୍ଠ ସମର୍ଥନ ଘୋଷଣା କଲେ ତତ୍‌କ୍ଷଣାତ୍ । ସେତେବେଳେ ସବୁ ପ୍ରଦେଶରେ କଂଗ୍ରେସ ମନ୍ତ୍ରିମଣ୍ଡଳ । କଂଗ୍ରେସ ସାହାଯ୍ୟ ଦେବାକୁ ପ୍ରସ୍ତୁତ କିନ୍ତୁ ସର୍ତ୍ତ, ଯୁଦ୍ଧ ପରେ ପରେ ସ୍ୱାଧୀନତା ବର୍ତ୍ତମାନ ପାର୍ଲିଆମେଣ୍ଟରେ ଘୋଷିତ ହେଉ । ପ୍ରତିଶ୍ରୁତି ପାଇଁ ବ୍ରିଟିଶ ସରକାର ରାଜି, ଘୋଷଣା ପାଇଁ ନୁହେଁ । ମୌଳିକ ମତ ଓ ଆସ୍ଥାରେ ଐକ୍ୟ ଆସି ନ ପାରିବାରୁ, ଯୁଦ୍ଧରେ ସକ୍ରିୟ ଭାଗୀଦାର ନ ହେବାର ସଙ୍କେତ ସ୍ୱରୂପ ସବୁ ପ୍ରଦେଶରୁ କଂଗ୍ରେସ ମନ୍ତ୍ରୀମଣ୍ଡଳ ଇସ୍ତଫା ଦେଇ ବାହାରି ଆସିଲେ । ଓଡିଶାରୁ ମଧ । ଲାଟଙ୍କର ନିଜ ଶାସନ ଚାଲିଲା ।

ପୂର୍ବଭାଗରେ ଯୁଦ୍ଧ ଘନେଇ ଆସୁଥାଏ । ଜାପାନ ଯୁଦ୍ଧ କ୍ଷେତ୍ରକୁ ବ୍ରିଟିଶ୍ ବିରୁଦ୍ଧରେ ଅବତୀର୍ଣ୍ଣ ହୋଇଥାଏ । ଭାରତ ପୂର୍ବ ଉପକୂଳରେ (ବଙ୍ଗୋପ ସାଗର) ଆକ୍ରମଣର ଭୟ ଓ ସମ୍ଭାବନା ଯୋଗୁ ଆତଙ୍କ ଜନ୍ମିଲା । ନେତାଜୀ ସୁଭାଷଚନ୍ଦ୍ର

Digitized by srujanika@gmail.com

ବୋଷ ଏ ଯୁଦ୍ଧର ସୁଯୋଗ ନେଇ ଜର୍ମାନୀ ଓ ଜାପାନଙ୍କର ସାହାଯ୍ୟରେ ବ୍ରିଟିଶଙ୍କୁ କାବୁ କରି ଭାରତବର୍ଷର ସ୍ୱାଧୀନତା ହାସଲ କରିବାକୁ ବଦ୍ଧପରିକର ଥିଲେ । ସେ ସେଥିପାଇଁ ସୁବିଧା ଉଣ୍ଡୁଥିଲେ । ଫରଓ୍ୱାର୍ଡ ବ୍ଲକ୍ ଓ ତାଙ୍କର ବିଶ୍ୱସ୍ତ ସହଯୋଗୀମାନଙ୍କ ସହିତ ସେହି ଉଦ୍ଦେଶ୍ୟରେ ଗୁପ୍ତ ଯୋଗାଯୋଗ ରଖୁଥିଲେ । କଟକରେ ୧୯୩୯ ଅଗଷ୍ଟ ମାସରେ ପ୍ରାଦେଶିକ ଯୁବ ସମ୍ମିଳନୀ (Provincial Youth Conference)ହେଲାବେଳେ ସେ ଉଦ୍‌ଘାଟନ କରିବାକୁ ଆସିଥିଲେ । ଯଦୁମଣି ମଙ୍ଗରାଜ ଅଭ୍ୟର୍ଥନା ସମିତିର ଅଧକ୍ଷ ଥିଲେ । ନୀଳକଣ୍ଠବାବୁ, ଗୋଦାବରୀଶବାବୁଙ୍କ ସହିତ ନେତାଜୀଙ୍କର ସମ୍ପର୍କ ସେହି ସମୟରୁ ନିବିଡ ହୋଇଥିଲା । ଯୁଦ୍ଧ ତା ପରେ ପରେ ଆରମ୍ଭ ହେଲା । କଂଗ୍ରେସ ମନ୍ତ୍ରିମଣ୍ଡଳ ଇସ୍ତଫା ପରେ ନେତାଜୀଙ୍କ ପରିକଳ୍ପନା ଉପଯୋଗୀ ଏକ ଲୋକ ପ୍ରତିନିଧି ଶାସନ ପୂର୍ବ ଉପକୂଳରେ ଓଡିଶାରେ କରାଇବାର ଗୁପ୍ତ ପରାମର୍ଶ ଓ ଚେଷ୍ଟା ହେଲା । ବାହାରକୁ ଯୁଦ୍ଧ ସହାୟକ ରୂପ ଦେଇ ଭିତରେ ଅନ୍ୟ ମତଲବ ରଖି ମନ୍ତ୍ରୀମଣ୍ଡଳ ଗଢ଼ିବାକୁ ନୀଳକଣ୍ଠବାବୁ, ଗୋଦାବରୀଶବାବୁ ପାରଳାଖେମୁଣ୍ଡି ରାଜାଙ୍କୁ ଧରିଲେ । ସେ ମୁଖ୍ୟମନ୍ତ୍ରୀ ହେବାକୁ ଆଗଭର ହେବା ସ୍ୱାଭାବିକ । ଭିତରି ମତଲବ ତାଙ୍କଠାରୁ ଛପା ରହିଲା । ୧୯୪୧ ରେ ତାଙ୍କ ମନ୍ତ୍ରିମଣ୍ଡଳ କ୍ଷମତାକୁ ଆସିଲା । ଗୋଦାବରୀଶବାବୁ ସେଥିରେ ଶିକ୍ଷାମନ୍ତ୍ରୀ ହେଲେ । ସେ ଓଡିଶାରେ ବିଶ୍ୱବିଦ୍ୟାଳୟ କଥା ଉଠାଇ ସେହି ଦିଗରେ ସରକାରୀ ସ୍ତରରୁ କାର୍ଯ୍ୟ ଆରମ୍ଭ କଲେ । ପରିଜା ସାହେବ ରେଭେନ୍‌ସା କଲେଜର ପ୍ରିନ୍‌ସପାଲ, ତ୍ରିପାଠୀ ସାହେବ (D.P.I.) ଡାଇରେକ୍ଟର ଥାଇ ଏ ଉଦ୍ୟୋଗରେ ସହାୟକ ହେଲେ । ମାଡ୍ରାସ ବିଶ୍ୱବିଦ୍ୟାଳୟର ରେଜିଷ୍ଟ୍ରାରଙ୍କୁ ଅଣା ହେଲା (Act, Statute)ଆଇନ ଚିଠା କରିବା ପାଇଁ । କଟକ ଟ୍ରେନିଙ୍ଗ କଲେଜର ପ୍ରିନ୍‌ସିପାଲ ମହେଶଚନ୍ଦ୍ର ପ୍ରଧାନ ସେ କାର୍ଯ୍ୟରେ ଯୁକ୍ତ ହେଲେ । ମତେ ଡକରା ହେଲା ସେଥିରେ ସାହାଯ୍ୟ କରିବାକୁ । ତ୍ରିପାଠୀ ସାହେବଙ୍କ କାଣ୍ଟନମେଣ୍ଟ ରୋଡ ପାଞ୍ଚନମ୍ବର କୋଠୀରେ ଅନେକ ଦିନ ଅଳ୍ପ ଅଳ୍ପ ସମୟ ଧରି ସେ କାମ ଚାଲିଲା । କେତେଥର ଟ୍ରେନିଙ୍ଗ କଲେଜ ଦୋତାଲା ଅଫିସରେ କାମ ହେଲା । ତାପରେ ଆଇନ ଦପ୍ତରରେ ବିଲ୍ ପ୍ରସ୍ତୁତ ହୋଇ ୧୯୪୩ ଜୁନ୍ ୩୦ ତାରିଖରେ ବିଧାନସଭାରେ ପାଶ୍ ହେଲା । ଗଡ ବିଜୟର ଆନନ୍ଦ ସେ ଦିନ ଶିକ୍ଷା ମହଲରେ । କତିପୟ ଅଧ୍ୟାପକ ଦୁଃଖ କଲେ, ପାଟନା ଯିବା ବନ୍ଦ ହୋଇଯିବ ବୋଲି । ସେହିବର୍ଷ (୧୯୪୩) ଅଗଷ୍ଟ ଦୁଇ ତାରିଖରୁ ଉତ୍କଳ ବିଶ୍ୱବିଦ୍ୟାଳୟ କାର୍ଯ୍ୟ ଆରମ୍ଭ

Digitized by srujanika@gmail.com

କଲା ମାତ୍ର ପାଞ୍ଚଟି କଲେଜର ଆଫିଲିଏସନ୍ ନେଇ । ପରିଜା ଡିସେମ୍ବର ୧୬, ୧୯୪୩ ତାରିଖରୁ ଭାଇସଚାନ୍‌ସେଲର ନିଯୁକ୍ତ ହେଲେ । ପ୍ରଥମ ସିଣ୍ଡିକେଟ୍ ମନୋନୟନରେ ଗଠିତ ହେଲା । ମୁଁ ଅଣଶିକ୍ଷକ ପ୍ରତିନିଧିଭାବେ ସେଥିକି ଆସିଲି । ତାପରେ ସିନେଟ୍, ସିଣ୍ଡିକେଟ୍, ଏକାଡେମୀ କାଉନସିଲ ପାଇଁ ଯେତେବେଳେ ନିର୍ବାଚନ; ମୁଁ ପ୍ରତିଥର ରେଜେଷ୍ଟରୀ ଭୁକ୍ତ ଗ୍ରାଜୁଏଟ୍ ଭାବେ ନିର୍ବାଚିତ ହେଉଥାଏ ୧୯୬୧ ପର୍ଯ୍ୟନ୍ତ । ପାଟନା ହାଇକୋର୍ଟକୁ ଜଜ ରୂପେ ଯିବାପରେ ନିର୍ବାଚନରେ ପ୍ରତିଦ୍ୱନ୍ଦିତା କରିବା ଅସମୀଚୀନ ହେବ ବୋଲି ମୁଁ କ୍ଷାନ୍ତ ରହିଲି ।

କେବଳ ଓଡିଶା ଅନ୍ତର୍ଗତ ହାଇସ୍କୁଲ କଲେଜକୁ ନେଇ ବିଶ୍ୱବିଦ୍ୟାଳୟ ସ୍ୱଚ୍ଛଳ ହୋଇ ନ ପାରିବାର ଆଶଙ୍କା ଏକ ସମୟରେ ଗୁରୁତର ବାଧାରୂପେ ଉପସ୍ଥିତ ହୋଇଥିଲା । ଗଡଜାତ ସବୁ ଓଡିଶା ଶାସନ ବାହାରେ ଥାଆନ୍ତି । ସେ ଅଞ୍ଚଳର ଶିକ୍ଷାନୁଷ୍ଠାନ ଓ ଶିକ୍ଷାର୍ଥୀ ଉତ୍କଳ ବିଶ୍ୱବିଦ୍ୟାଳୟ ଅଧୀନକୁ ଆସିବା ଜରୁରୀ ହେଲା । ଗଡଜାତର ରାଜାମାନେ ସେଥିପାଇଁ ସମ୍ମତି ନ ଦେଲେ ତାହା ସମ୍ଭବ ହୋଇପାରିବ ନାହିଁ । କିପରି ତାହା ହୋଇପାରିବ ଚିନ୍ତା ପଡିଲା । ମୟୁରଭଞ୍ଜ, ଢେଙ୍କାନାଳ, ସୋନପୁର, ବଲାଙ୍ଗିର ରାଜାଙ୍କ ପାଖକୁ ତ୍ରିପାଠୀ ସାହେବଙ୍କୁ ପଠାଇଲେ ସୁବିଧା ହେବ ବୋଲି ଗୋଦାବରୀଶବାବୁ ମନେ କଲେ । ତ୍ରିପାଠୀଙ୍କର ସାନଭାଇ ଗୋଦାବରୀଶ ବାବୁଙ୍କର ଜାମାତା ଥିବାରୁ ଅନେକ ଭାବୁଥିଲେ ସେ ଦୁହେଁ ଅତି ନିକଟବର୍ତ୍ତୀ । କିନ୍ତୁ ପ୍ରକୃତରେ ଉଭୟ ପାରିବାରିକ ସ୍ତରରେ ନିରାସକ୍ତ ଥିଲେ ଏବଂ ସେ ବୈବାହିକ ସମ୍ବନ୍ଧ ଅତି ଗୌଣ ରୂପେ ରହିଥିଲା । ଦୁହିଁଙ୍କର ବ୍ୟକ୍ତିଗତ ବା ସରକାରୀ ସମ୍ପର୍କରେ ତାହା ଆଦୌ ପ୍ରଭାବ ଆଣିପାରୁ ନଥିଲା । ମୋ ନିଜ ଅନୁଭୂତି ମଧ ତଦ୍ରୂପ । ମୋ ଜ୍ୟେଷ୍ଠା କନ୍ୟା ସୁମିତ୍ରାର ବିବାହ ଗୋଦାବରୀଶବାବୁଙ୍କ କନିଷ୍ଠ ପୁତ୍ର ରଙ୍ଗନାଥଙ୍କ ସଙ୍ଗେ ୧୯୪୮ ଜାନୁୟାରୀ ୧୮ ତାରିଖରେ ହେଲା । ତାହା ପୂର୍ବରୁ ଗୋଦାବରୀଶବାବୁଙ୍କ ସଙ୍ଗେ ମୋର ଯେଉଁ ନିକଟତ୍ୱ ଓ ଦୂରତ୍ୱ ରହିଥିଲା, ସେଥିରେ ତିଳେ ମାତ୍ର ପରିବର୍ତ୍ତନ ଘଟି ନଥିଲା ତାଙ୍କର ୧୯୫୬ ଜୁଲାଇ ୨୬ ରେ ତିରୋଧାନ ପର୍ଯ୍ୟନ୍ତ । ସେ ନିଜ ଘରେ କୁଣିଆ ପରି ଚଳୁଥିଲେ । ପର କଥା ଆଉ ଅଧିକା କଅଣ ହୁଅନ୍ତା ।

ଶ୍ୟାମଚନ୍ଦ୍ର ତ୍ରିପାଠୀଙ୍କ ଉପରେ ଦୃଷ୍ଟି ପଡିବାର କାରଣ ଥିଲା ସେ ମୟୂରଭଞ୍ଜ ମହାରାଜାଙ୍କର ଅନ୍ତରଙ୍ଗ ବନ୍ଧୁଥିଲେ । ରାଜ ସମ୍ମତି ଆଣିବା ତାଙ୍କ

Digitized by srujanika@gmail.com

ପକ୍ଷରେ ସମ୍ଭବପର ଥିଲା । ମୟୂରଭଞ୍ଜ ରାଜିହେଲେ, ଅନ୍ୟ ରାଜାମାନେ ମଙ୍ଗିବାର ଆଶା ଥିଲା । ତା ଛଡା ତ୍ରିପାଠୀ ନିଜେ ଅତି ଶାନ୍ତ ମେଳାପୀ ଲୋକ । ଉଚ୍ଚ ମହଲରେ ତାଙ୍କର ଗତିବିଧି ସର୍ବାଧିକ ଥିଲା । ତାଙ୍କ କଥା ଯେଉଁଦିନ ଉଠିଲା, ତା ପରଦିନ ସେ ବିଲାତ ଯାତ୍ରା କରିବା, ପୂର୍ବରୁ ସ୍ଥିର ହୋଇ ସାରିଥିଲା । ସେ ସେଥିପାଇଁ ଛୁଟି ନେଇଥିଲେ । ତାଙ୍କୁ ସେ (ଗୋଦାବରୀଶବାବୁ) ଅଟକାଇବା ସମ୍ଭବ ହେବନାହିଁ ବୋଲି ମୁଖ୍ୟମନ୍ତ୍ରୀ ପାରଳାଖେମୁଣ୍ଡି ରାଜାଙ୍କୁ କହିଲେ । ମହାରାଜା ସନ୍ଧ୍ୟାବେଳକୁ ବ୍ୟକ୍ତିଗତ ଡାକରା ଦେଇ ତ୍ରିପାଠୀଙ୍କୁ ସବୁକଥା କହିଲେ ଏବଂ କହିଲେ ଗଡଜାତ ରାଜାମାନଙ୍କର ସମ୍ମତି ନ ମିଳିଲେ ବିଶ୍ୱବିଦ୍ୟାଳୟ ହୋଇପାରିବ ନାହିଁ ଏବଂ ସେ ସମ୍ମତି ଆଣିବାର ଏକମାତ୍ର ପାରିବାରିକ ଲୋକ ତ୍ରିପାଠୀ । ବିଲାତ ଯିବା ନୋହିଲା, ଜାହାଜ ଟିକଟ ଫେରିଲା । ପରଦିନ ସକାଳୁ ତ୍ରିପାଠୀ ବାହାରିଲେ ଗଡଜାତ ଅଭିମୁଖେ ଏବଂ କେତେଦିନ ପରେ ଫେରିଲେ ରାଜାମାନଙ୍କର ଲିଖିତ ସ୍ୱୀକୃତି ନେଇ । ବିଶ୍ୱବିଦ୍ୟାଳୟ ଗଠନରେ ତାଙ୍କର ଗୁରୁତ୍ୱପୂର୍ଣ୍ଣ ଭୂମିକା ଏଥିରୁ ଜଣାପଡିବ । ଦୁଃଖ ହୁଏ ଏ କଥା କେହି ସ୍ମରଣ କରନ୍ତି ନାହିଁ, ବିଶ୍ୱବିଦ୍ୟାଳୟ ସଂକ୍ରାନ୍ତ ଆଲୋଚନାରେ । ଗୋଟିଏ ବର୍ଷ ପ୍ରତିଷ୍ଠା ଦିବସ ପାଳନ ଅବସରରେ ବାଣୀବିହାରଠାରେ ମୁଁ ଏ ପ୍ରସଙ୍ଗ ପ୍ରକାଶ କରିଥିଲି । ଏ ଘଟନା ଅନ୍ୟ କେତେକ ମଧ୍ୟ ଜାଣିଥିଲେ । ଡକ୍ଟର ହରିବନ୍ଧୁ ମହାନ୍ତି ସବିଶେଷ କହିପାରିବେ । ଏଥିସଙ୍ଗେ କୌତୁକପୂର୍ଣ୍ଣ କଥାଟିଏ ଜଡିତ ଥିଲା । ତ୍ରିପାଠୀ ଜ୍ୟୋତିଷୀ ବିଶ୍ୱାସୀ । ଜାତକ ଦେଖାଇବା, ଜ୍ୟୋତିଷ ଆଲୋଚନାରେ ଆଗ୍ରହୀ । ଅନେକ ଜ୍ୟୋତିଷଜ୍ଞାନୀ ତାଙ୍କ ପାଖକୁ ଯାଆନ୍ତି । ତାଙ୍କ ମଧ୍ୟରେ ଜଣେ ପ୍ରାଇମେରୀ ଶିକ୍ଷକ ଥିଲେ, ନାମ ମନେ ନାହିଁ । ବିଲାତଯାତ୍ରା କଥା ତାଙ୍କୁ ପଚାରିଥିଲେ । ସେ କହୁଥିଲେ, ଯାତ୍ରାରେ ବିଘ୍ନ ଦେଖାଯାଉଛି । ପାରଳା ମହାରାଜା ଡକାଇବାର ପୂର୍ବଦିନ ମଧ୍ୟ ସେ ଜ୍ୟୋତିଷଙ୍କ ଠାରୁ ପୁନର୍ବାର ସେହି ବାଣୀ ମିଳିଲା । ତ୍ରିପାଠୀ କହିଥିଲେ, ଛୁଟି, ବମ୍ବେରୁ ଜାହାଜ ଟିକଟ, କଟକରୁ ବମ୍ବେ ପର୍ଯ୍ୟନ୍ତ ରେଳ ଟିକଟ ହୋଇ ସାରିଛି । ଆଉ ବିଘ୍ନ କଣ ? ଜ୍ୟୋତିଷ ଚୁପ୍ ହୋଇ ଫେରିଗଲେ । ମୁଖ୍ୟମନ୍ତ୍ରୀଙ୍କ ଅନୁରୋଧରେ ବିଲାତଯାତ୍ରା ରଦ୍ଦ ହେବାରୁ ତ୍ରିପାଠୀ ସେହି ଜ୍ୟୋତିଷ ପ୍ରବରଙ୍କୁ ଡାକି ନିଜର ଦୁଃଖ ଓ ତାଙ୍କର (ଜ୍ୟୋତିଷଙ୍କର) ପ୍ରଶସ୍ତି ଗାଇଲେ । ଦଇବ ଦଉଡି ମଣିଷ ଗାଈ, ଯେଣିକି ଓଟାରେ ତେଣିକି ଯାଇ ।

Digitized by srujanika@gmail.com

ବିଶ୍ୱବିଦ୍ୟାଳୟ ସହିତ ମୋର ସମ୍ପର୍କ ଅତି ଘନିଷ୍ଠ । ମୂଳରୁ ଏକାଦିକ୍ରମେ ଏତେ ବର୍ଷ କୌଣସି ଅନୁଷ୍ଠାନ ସହିତ ପ୍ରତ୍ୟକ୍ଷ ଭାବେ ଜଡିତ ରହିଲେ ସେପରି ହେବା ସ୍ୱାଭାବିକ । ତିନି ମୁଖ୍ୟ ପର୍ଯ୍ୟାୟ ସିନେଟ, ସିଣ୍ଡିକେଟ୍, ଏକାଡେମିକ କାଉନସିଲ ଛଡା, ଫାଇନାନ୍ସ କମିଟି, ଫାକଲଟି, ବୋର୍ଡ ଅଫ୍ ଷ୍ଟଡିଜ୍ ପ୍ରଭୃତିରେ ବରାବର ରହୁଥିଲି । କଲିକତା, ବମ୍ବେ, ମାନ୍ତ୍ରାସ ବିଶ୍ୱବିଦ୍ୟାଳୟର ଶତବାର୍ଷିକୀରେ ଓ ଲକ୍ଷ୍ନୌ ବିଶ୍ୱବିଦ୍ୟାଳୟର ସୁବର୍ଣ୍ଣ ଜୟନ୍ତୀରେ ଆମ ବିଶ୍ୱବିଦ୍ୟାଳୟ ପକ୍ଷରୁ ଯୋଗଦେବା ମୋ ପକ୍ଷରେ ସ୍ୱାଗତଯୋଗ୍ୟ ଅନୁଭୂତି । ପ୍ରଥମ ଦୁଇଟିକୁ ଭାଇସଚାନ୍ସେଲର (ପରିଜା) ନ ଯାଇ କେବଳ ମୁଁ ଯାଇଥିଲି । ଅନ୍ୟ ଦୁଇଟିକୁ ଭାଇସଚାନ୍ସେଲର (ଚିନ୍ତାମଣି ଆଚାର୍ଯ୍ୟ) ଓ ମୁଁ ଯାଇଥିଲୁ । ଭାରତବର୍ଷର ବହୁ ଶିକ୍ଷାସୂରି, ପ୍ରଶାସନିକଙ୍କ ସହିତ ପରିଚୟ ଓ ଆଲୋଚନାର ସୁଯୋଗ ମିଳିଥିଲା । ଆମ ଦେଶର ଇଣ୍ଟର ୟୁନିଭରସିଟି ବୋର୍ଡ ମିଟିଙ୍ଗ କୁ ମଧ୍ୟ ଯିବାକୁ ହେଲା । କଟକରେ ତାହାର ଅଧିବେଶନବେଳେ ପଞ୍ଜାବର ପ୍ରତିନିଧି ତେଜା ସିଂହ ଆମ ଘରେ ଆତିଥ୍ୟ ଗ୍ରହଣ କରିଥିଲେ । ଲକ୍ଷ୍ନୌରେ କୁଳାଧିପତି ସରୋଜିନୀ ନାଇଡୁ, ମୁଖ୍ୟମନ୍ତ୍ରୀ ଗୋବିନ୍ଦ ବଲ୍ଲଭ ପନ୍ଥ ଓ ପ୍ରଧାନମନ୍ତ୍ରୀ ନେହେରୁଙ୍କ ଭାଷଣ ଗୁଡିକରେ ପରସ୍ପର ପ୍ରତି କୌତୁକ ମନ୍ତବ୍ୟ ଓ ସଶ୍ରଦ୍ଧ କଟାକ୍ଷ ବଡ ଉପଭୋଗ୍ୟ ହୋଇଥିଲା । ମାନ୍ତ୍ରାସର ଆୟୋଜନ ସର୍ବାଧିକ ଶୃଙ୍ଖଳିତ ଥିଲା । କଲିକତାରେ ଏତେ ଗହଳି ହେଲା ଯେ ତାହାର ବିବରଣୀ ଖବର କାଗଜରୁ ମୋ ପରି ପ୍ରତ୍ୟକ୍ଷଦର୍ଶୀଙ୍କୁ ଖୋଜିବାକୁ ପଡିଲା । ବମ୍ବେର ବ୍ୟବସ୍ଥା ପର୍ଯ୍ୟାୟ କ୍ରମେ ହେଲା । ଏ ସବୁ ସ୍ଥାନରେ ବହିରାଗତ ପ୍ରତିନିଧି ହିସାବରେ କିଛି କିଛି କହିବାର ସୁଯୋଗ ମଳିଥିଲା । ମାନ୍ତ୍ରାସରୁ ଚିନ୍ତାମଣିବାବୁ, ତାଙ୍କ ସ୍ତ୍ରୀ, ମୁଁ ବାଙ୍ଗାଲୋର, ମହୀଶୁର ଯାଇଥିଲୁ । ସେ ବାରମ୍ବାର ମତେ କହୁଥାନ୍ତି, ଲକ୍ଷ୍ମୀ ସରସ୍ୱତୀ ସେଠାରେ ଏକତ୍ର ପ୍ରସନ୍ନା ହୋଇଛନ୍ତି ।

ଅନ୍ୟାନ୍ୟ ବିଶ୍ୱବିଦ୍ୟାଳୟର ଯେତେ କୁଳପତି ଦେଖିଥିଲି, ସେମାନଙ୍କ ମଧ୍ୟରେ ମାନ୍ତ୍ରାସର ସାର୍ ଲକ୍ଷ୍ମଣ ସ୍ୱାମୀ ମୁଦାଲିୟାର ଅଦ୍ୱିତୀୟ ଥିଲେ । ଏକାଦିକ୍ରମେ ପନ୍ଦର ବର୍ଷ କୁଳାଧିପତି ହୋଇ ଥାଆନ୍ତି । ନିଜେ ଡାକ୍ତର, ଘରୋଇ ହସ୍ପିଟାଲରେ କାମ ସଙ୍ଗେ ବିଶ୍ୱବିଦ୍ୟାଳୟ ପରିଚାଳନାରେ ଦକ୍ଷତା ଅପୂର୍ବ ଥିଲା । ବହୁ ବିଷୟରେ ଜ୍ଞାନୀ । ବାଗ୍ମିତାରେ ଚିତ୍ତାକର୍ଷକ । ତାଙ୍କ ଭ୍ରାତା ସାର୍.ଏ.ଏଲ. ମୁଦାଲିଆର ମଧ୍ୟ ସେହିପରି ପ୍ରଖ୍ୟାତ ବ୍ୟକ୍ତି । ସେ ଆନ୍ନମଲିଆ ବିଶ୍ୱବିଦ୍ୟାଳୟର କୁଳପତି ହୋଇଥିଲେ ।

Digitized by srujanika@gmail.com

ଶତବାର୍ଷିକୀ ପୂର୍ବରୁ ଥରେ ସରକାରଙ୍କର ବିଶ୍ୱବିଦ୍ୟାଳୟ ନିୟନ୍ତ୍ରଣ ନୀତି ଉପରେ ଆଲୋଚନା ପାଇଁ ଏକ ପ୍ରତିନିଧିମୂଳକ ବୈଠକ ଲକ୍ଷ୍ମଣ ସ୍ୱାମୀଙ୍କ ଅଧ୍ୟକ୍ଷତାରେ ବସିଥିଲା । ଆମ ବିଶ୍ୱବିଦ୍ୟାଳୟରୁ ମତେ ଏକାକୀ ପଠା ହୋଇଥିଲା । ସେଠାରେ ମୁଦାଲିଅର ଦୁଇଭାଇ ଓ କାଶ୍ମୀର ବିଶ୍ୱବିଦ୍ୟାଳୟର କୁଳପତି (କାଶ୍ମୀର ହାଇକୋର୍ଟର ଚିଫ୍ ଜଷ୍ଟିସ)ଙ୍କ ସହୃଦୟତାରେ ମୁଁ ଅଭିଭୂତ ହୋଇଥିଲି । ସେମାନଙ୍କର ଆଲୋଚନା, ବିଶ୍ଳେଷଣ ଓ ବାଗ୍ମିତା ଅତି ଉଚ୍ଚକୋଟୀର ଥିଲା । ତଥାପି ମୋ ପରି ଅନଭିଜ୍ଞ ବ୍ୟକ୍ତିର ଆଲୋଚନାକୁ ସେମାନେ ଉତ୍ସାହିତ କରିବା ଦେଖି ମୁଁ ଆଶ୍ଚର୍ଯ୍ୟ ହେଲି । ସେହି ସଭାର ସମସ୍ତ ପ୍ରସ୍ତାବ ଆଲୋଚନା ପରେ ଚିଠା କରିବାର ଦାୟିତ୍ୱ ମତେ ଦିଆଯାଇଥିଲା । ଥରେ ଇଣ୍ଟର ୟୁନିଭରସିଟି ବୋର୍ଡ ଚଣ୍ଡିଗଡରେ ବସିଲାବେଳେ ଏହି ପ୍ରକାର ଘଟିଥିଲା । ସେଠାରେ ନେହେରୁ ଉଦ୍‌ଘାଟନ କରିଥିଲେ ଏବଂ ଶେଷ ପର୍ଯ୍ୟନ୍ତ ରହିଥିଲେ । ପରିଜା ସାହେବ (ଭାଇସ୍‌ଚାନ୍‌ସେଲର) ମଧ୍ୟ ଯାଇଥିଲେ ଏଠାରୁ । ଡକ୍ଟର ବଳଭଦ୍ର ପ୍ରସାଦ ପାଟନା କୁଳପତିଭାବେ ଯୋଗ ଦେଇଥିଲେ । ଚଣ୍ଡିଗଡରୁ ଆମ୍ଭେମାନେ ଶ୍ରୀମତୀ ପରିଜା (ସୁନ୍ଦରମଣି)ଙ୍କ ସହିତ ଭାକ୍ରା ଡ୍ୟାମ ଦେଖିବାକୁ ଯାଇଥିଲୁ । ବାଟରେ ପରିଜାଙ୍କର ଆମୋଦକର ସଙ୍ଗପ୍ରିୟତା ଓ ଶ୍ରୀମତୀଙ୍କର ବାରମ୍ବାର ଗୁଆମସଲା ଯଚା ମନରେ ଅଭୁଲା ରହିଛି । ସେ ଦୁହିଁଙ୍କ ପାଖରେ ମୁଁ ଅନେକ ଭାବରେ ସ୍ନେହବାଧିତ । ବିଶ୍ୱବିଦ୍ୟାଳୟ ସଂକ୍ରାନ୍ତରେ ତାଙ୍କର ମୋ ଉପରେ ଆସ୍ଥା ମତେ ସର୍ବଦା ସକ୍ରିୟ ଓ ସତର୍କ ରଖିଥିଲା ।

୧୯୫୮ରେ କାନାଡା ମଣ୍ଟରିଅଲଠାରେ କମନୱେଲଥ ବିଶ୍ୱବିଦ୍ୟାଳୟ କନଫରେନ୍‌ସ ବସୁଥିବାରୁ ଆମ ବିଶ୍ୱବିଦ୍ୟାଳୟକୁ ନିମନ୍ତ୍ରଣ ଆସିଲା ପ୍ରତିନିଧି ପଠାଇବା ପାଇଁ । ସିଣ୍ଡିକେଟ୍‌ରେ ସେଥିପାଇଁ ପରିଜା ଓ ମୁଁ ମନୋନୀତ ହେଲୁ । ଯାତାୟାତର ଖର୍ଚ୍ଚ ପାଇଁ ବିଶ୍ୱବିଦ୍ୟାଳୟ ବଜେଟ୍‌ରେ ଟଙ୍କା ନ ଥାଏ । ଓଡିଶା ସରକାରଙ୍କୁ ଲେଖାହେଲା । ମୁଖ୍ୟମନ୍ତ୍ରୀ ମହତାବବାବୁ ମୌଖିକ ରାଜି ହେଲେ । ଲିଙ୍ଗରାଜ ପାଣିଗ୍ରାହୀ ହାଇକୋର୍ଟ ଚିଫ୍ ଜଷ୍ଟିସରୁ ଅବସର ପରେ ନିର୍ବାଚନରେ ବିଧାନସଭାକୁ ଆସି ଶିକ୍ଷାମନ୍ତ୍ରୀ ହୋଇଥାଆନ୍ତି । ସେ ହାଇକୋର୍ଟରେ ଥିଲାବେଳେ, କେଜାଣି କାହିଁକି ମୋ ପ୍ରତି ଆକ୍ରୋଶ ରଖୁଥିଲେ । ଅନିଷ୍ଟ କରିବାର ବିଫଳ ଚେଷ୍ଟା ମଧ୍ୟ କରିଥିଲେ । ବିଶ୍ୱସମ୍ମିଳନୀକୁ ମୋର ପ୍ରତିନିଧିତ୍ୱ ତାଙ୍କୁ ସୁଖ ବା କିପରି ଲାଗନ୍ତା ? ମୁଖ୍ୟମନ୍ତ୍ରୀଙ୍କ ରାଜି ସତ୍ତ୍ୱେ, ଟଙ୍କା ମଞ୍ଜୁରୀ ସମ୍ମିଳନୀର ଦଶଦିନ ପୂର୍ବ ପର୍ଯ୍ୟନ୍ତ

Digitized by srujanika@gmail.com

ଗଡାଇ ଗଡାଇ ଶେଷକୁ ନାସ୍ତି କରିଦେଲେ । ମୁଁ ବିଶେଷ ଦୁଃଖିତ ହେଲି ଯେ ମୋ ଯୋଗୁ ପରିଜାଙ୍କର ବି ହେଲା ନାହିଁ । ଜଣଙ୍କ ପାଇଁ ମଞ୍ଜୁରୀ ଦେଇଥିଲେ, ଆମେ ପରିଜାଙ୍କୁ ଏକାକୀ ପଠାଇ ପାରିଥାନ୍ତୁ । ତାହା କରିଥିଲେ ମୋ ପ୍ରତି ପାଣିଗ୍ରାହୀଙ୍କର ଅସୂୟାଟା ବେଶି ଚିହ୍ନା ପଡିଥାନ୍ତା । ମୁଖ୍ୟମନ୍ତ୍ରୀଙ୍କୁ କହିବା ପାଇଁ ପରିଜା ନାରାଜ ହେଲେ, ମତେ ବି ମନା କଲେ । ମହତାବ ନିଜଆଡୁ କିଛି କଲେ ନାହିଁ ବା କରିବାକୁ ଚାହିଁଲେ ନାହିଁ । ଭାରତବର୍ଷର ସବୁ ବିଶ୍ୱବିଦ୍ୟାଳୟ ପ୍ରତିନିଧି ପଠାଉଥିବାର ସମ୍ବାଦ ଆମେ ପାଇଲୁ । ଏକମାତ୍ର ଓଡିଶାରେ ପ୍ରତିନିଧିତ୍ୱ ଅନାବଶ୍ୟକ ମନେ କରି ସରକାର ସମାନ୍ୟ ଅର୍ଥ ଦେଇପାରିଲେ ନାହିଁ ପରିଜାଙ୍କର ସେଥିପାଇଁ ଗ୍ଲାନି କହିଲେ ନ ସରେ । ମୁଁ ସେଥିପାଇଁ ମର୍ମାହତ ବୋଧ କରୁଥାଏ । ଏହି ନାସ୍ତିବାଣୀ ପାଣିଗ୍ରାହୀଙ୍କଠାରୁ ଆସିବାର ଦୁଇଦିନ ପରେ ବିଜୁ ପଟ୍ଟନାୟକଙ୍କ ସଙ୍ଗେ ଏକ ମକଦ୍ଦମା ସମ୍ପର୍କରେ ମୋର କଥାବାର୍ତ୍ତାବେଳେ ଏ ବିଷୟ ବାହାରୁ ଶୁଣି ସେ ମତେ ପଚାରିଲେ । ତାଙ୍କର ସ୍ୱାଭାବିକ ବଦାନ୍ୟତା ଗୁଣରୁ ସଙ୍ଗେ ସଙ୍ଗେ ମଣ୍ଟ୍ରିଅଲକୁ ଉଡା ଜାହାଜରେ ଯିବା ଆସିବା ଦୁଇଟି ଟିକଟ ଦେବାପାଇଁ ଓ ପରିଜା ଆଉ ମୁଁ ଦୁଇ ଜଣ ନିଶ୍ଚୟ ଯିବାପାଇଁ ଖଣ୍ଡିଏ ଚିଠି ଲେଖି ମତେ ଦେଲେ । କଟକରୁ ରେଲ ଯାତାୟାତ, କାନାଡାର ଅନ୍ୟାନ୍ୟ ଖର୍ଚ୍ଚ ହାତରୁ ଦେଇଯିବା ପାଇଁ ପରିଜା ପ୍ରଥମେ ଅନିଚ୍ଛୁକ ଥିଲେ । ମୋ ଅନୁରୋଧରେ ବାହାରିଲେ । ସେତେବେଳେ ବିଦେଶ ଯାତ୍ରାପାଇଁ କେନ୍ଦ୍ର ସରକାରଙ୍କର ଅନୁମତି ଆବଶ୍ୟକ ଥିଲା । ପରିଜା ତାହା ଆଣିସାରି ଥିଲେ । ମୋର ଆସି ନଥାଏ । ରାଜ୍ୟ ସରକାରଙ୍କଠାରୁ ମଞ୍ଜୁରୀ ଆସି ନ ଥିବାରୁ ମୁଁ ସେ ଦିଗରେ ତତ୍ପର ହୋଇ ନ ଥିଲି । ସମୟ ଅତି ନିକଟ ହୋଇ ଯାଉଥିବାରୁ; ପରିଜା ଆଗ ଚାଲିଗଲେ । ମୁଁ ଟେଲିଗ୍ରାମ୍, ଟେଲିଫୋନ୍ କରି ଦିଲ୍ଲୀରୁ ଅନୁମତି ଆଣି ଯାଇ ପହଞ୍ଚିଲି ମଣ୍ଟ୍ରିଅଲ୍‌ରେ ସମ୍ମିଳନୀ ଆରମ୍ଭ ହେବାର ଦୁଇଘଣ୍ଟା ପୂର୍ବରୁ । ମତେ ଦେଖି ପରିଜା ବଳଭଦ୍ର ପ୍ରସାଦଙ୍କ ଆଗରେ ମତେ କୁଣ୍ଢାଇ ପକାଇଲେ, କହିଲେ I am here only for him. ପରିଜାଙ୍କ ଆଖି ଛଳଛଳ ମୁଁ ଆଉ କେବେ ଦେଖିନାହିଁ–ସନ୍ତାନ ବିୟୋଗରେ ମଧ ନୁହେଁ । ବଳଭଦ୍ର ପ୍ରସାଦ ପାଟନା ବିଶ୍ୱବିଦ୍ୟାଳୟ କୁଳପତି ହୋଇ ଯାଇଥାନ୍ତି । ଆଶ୍ଚର୍ଯ୍ୟ କଥା, ସମ୍ମିଳନୀର ଚାରିଦିନରେ ନାନା ପ୍ରସଙ୍ଗରେ ଅଂଶ ଗ୍ରହଣ କରିବାକୁ ମତେ ଉତ୍ସାହିତ କରୁଥାନ୍ତି, ପରିଜା ସାହେବ, ନିଜେ ଚୁପ୍ ରହି । ଭାରତବର୍ଷରୁ ଯେତେ ଯାଇଥାଆନ୍ତି, ସମସ୍ତଙ୍କର ପରିଜାଙ୍କ ପ୍ରତି ସମ୍ମାନ ଓ ଶ୍ରଦ୍ଧା ଅତି ସ୍ପଷ୍ଟ ପ୍ରକାଶ ପାଉଥିଲା ।

Digitized by srujanika@gmail.com

ଆମ ଦେଶର ପ୍ରତିନିଧିମାନଙ୍କ ମଧ୍ୟରୁ ସାର୍ ଲକ୍ଷ୍ମଣସ୍ୱାମୀ ମୁଦାଲିଅର (ମାନ୍ଦ୍ରାଜ କୁଳପତି), ପ୍ରଫେସର ସିଦ୍ଧାନ୍ତ (କଲିକତା କୁଳପତି), ତିରୁପତି ବିଶ୍ୱବିଦ୍ୟାଳର କୁଳପତି ଓ ମୁଁ ସମ୍ମିଳନୀରେ ଏକାଧିକବାର ଆଲୋଚନା କରିବାର ସୁବିଧା ମିଳିଥିଲା । ସମ୍ମିଳନୀଟି ଉଦ୍‌ଘାଟନ କରିଥିଲେ କାନାଡାର ଗଭର୍ଣ୍ଣର ଜେନେରାଲ ଗୋଟିଏ ବିଶାଳ ଜିମ୍‌ନାସିଅମ୍‌ରେ ବିନା ସାଜସଜ୍ଜାରେ । ବିଶ୍ୱ ସମ୍ମିଳନୀ ଦେଖା ମୋର ସେ ପ୍ରଥମ ।

ମଣ୍ଟରିଅଲ ପରେ, ଆମେରିକାର ହାରର୍ଭାଡ, ଏମ୍.ଇ.ଟି., ନିଉବ୍ରଞ୍ଜ ଉଇକ, ଲାଭାଲ, ନିଉୟର୍କ ଓ ଆଉ କେତୋଟି ବିଶ୍ୱବିଦ୍ୟାଳୟ, ବ୍ରିଟେନ୍‌ର ଲଣ୍ଡନ, ଅକ୍‌ସଫୋର୍ଡ, କେମ୍ବ୍ରିଜ୍ ବିଶ୍ୱବିଦ୍ୟାଳୟ, ପାରିସରେ ଗୋଟିଏ ଦେଖି ମୁଁ ଫେରିଲି । ପରିଜା ଟିକିଏ ଆଗରୁ ଫେରିଥିଲେ । ଆମେ ଦୁହେଁ ସମ୍ମିଳନୀ ସମ୍ବନ୍ଧରେ ଯେଉଁଦିନ କଟକ ରୋଟାରୀ କ୍ଲବରେ କହିଲୁ, ପରିଜା ମୋ ପ୍ରତି ଲକ୍ଷ୍ୟ କରି ଏପରି କେତେକ ସସ୍ନେହ ମନ୍ତବ୍ୟ ପ୍ରକାଶ କଲେ ଯେ ଅନେକ ଟିକିଏ ଆଶ୍ଚର୍ଯ୍ୟ ହେଲେ । କାରଣ ତାଙ୍କର ଭାବପ୍ରବଣତା କ୍ୱଚିତ ପ୍ରକାଶ ପାଏ ସଭାସମିତିରେ ବା ପ୍ରକାଶ୍ୟରେ ।

ନିଉବ୍ରଞ୍ଜଉଇକରେ ଏକ ଉଲ୍ଲେଖନୀୟ ସୁଯୋଗ ଘଟିଥିଲା । ବ୍ରିଟେନର ବହୁ ବହୁ ବିକ୍ରୀତ ଅନେକ ପ୍ରଖ୍ୟାତ ସମ୍ବାଦପତ୍ରର ସ୍ୱତ୍ୱାଧିକାରୀ ଲର୍ଡ ବିଭର ବ୍ରୁକଙ୍କ ମୂଳଘର ସେଠାରେ । ବର୍ଷ ଭିତରେ ଅନ୍ତତଃ ସେ ଥରେ ସେଠାକୁ ଯାଆନ୍ତି । ତାଙ୍କର ଏକ ବଡ ହୋଟେଲ ମଧ୍ୟ ସେଠାରେ ଅଛି । ମୁଁ ସେଠାକୁ ଗଲାବେଳେ ସେ ଦୈବାତ୍ ଥିଲେ । ଅନ୍ୟଥା ଲଣ୍ଡନରେ ରହନ୍ତି । ବିଶ୍ୱବିଦ୍ୟାଳୟ ସମ୍ମିଳନୀରୁ ଫେରିଥିବା ଆଉ କେତେକ ଭାରତୀୟ ୟୁରୋପୀୟ ପ୍ରତିନିଧିଙ୍କ ସଙ୍ଗେ ମତେ ଏକ ନୈଶଭୋଜିକୁ ସେହି ହୋଟେଲକୁ ଡାକିଥିଲେ । ବିପୁଳକାୟ, କାୟ ଅନୁପାତରେ ବୃହତ୍‌ଶିର, ଦ୍ରୁତବାକ୍, ହାସ୍ୟମୁଖର ବ୍ୟକ୍ତି । ଅତିଥିମାନଙ୍କ ସଙ୍ଗେ ଜଣ ଜଣ କରି ଆଳାପ କଲେ । ଆମ ସଙ୍ଗରେ ଏକ ଭାରତୀୟ ଦମ୍ପତି ଥିଲେ, ବରୋଦାର ଇତିହାସ ଅଧ୍ୟାପକ ଡକ୍ଟର ମେହେଟ୍ଟା । ଆଉ କିଏ ଭାରତୀୟ ଅଛନ୍ତି କି ବୋଲି ମତେ ଡାକିଲେ । ଓଃ କି କଥାବାର୍ତ୍ତା ! ଶେଷରେ ମତେ କହିଲେ, ଇଂରେଜଙ୍କୁ ତଡିଦେଲ ତମ ଦେଶରୁ ? ମୋ ପାଟିରୁ ବାହାରିଗଲା, ଆମେରିକାରୁ ଆପଣମାନେ ତାଙ୍କୁ ତଡି ନଥିଲେ କି ? ହାସ୍ୟ ରୋଳରେ ଘର ଭାଙ୍ଗି ପଡିଲା ।

ପରିଜା ପ୍ରଥମ କୁଳପତି ୧୯୪୩ ଡିସେମ୍ବରରୁ ହୋଇଥିଲେ । ଟର୍ମ ସରିବା ପରେ ସିନେଟ୍‌ରେ ନିର୍ବାଚନ ହେଲା ୧୯୪୮ରେ । ପରିଜା, ଗୋଦାବରୀଶ

Digitized by srujanika@gmail.com

ବାବୁ (ପଣ୍ଡିତ ଗୋଦାବରୀଶ ମିଶ୍ର) ଓ ଚିନ୍ତାମଣି ଆଚାର୍ଯ୍ୟ ପ୍ରାର୍ଥୀ ଥିଲେ । ପ୍ରଥମ ଦୁଇଜଣଙ୍କର ପ୍ରଚାର ବା ଯୋଗାଡ କିଛି ନଥିଲା । ଉଭୟ ଖ୍ୟାତାନାମା, ବିଶେଷତଃ ଶିକ୍ଷା କ୍ଷେତ୍ରରେ । ଚିନ୍ତାମଣିବାବୁଙ୍କର ନିର୍ବାଚନ ଯୋଗାଡ ଦେଖି ଆମେ ଅବାକ ହେଲୁ । ନିର୍ବାଚନ ପୂର୍ବଦିନ ତାଙ୍କ ତେଲଙ୍ଗା ବଜାର ଘର ବାହାର ପ୍ରାଙ୍ଗଣରେ ଟାନ୍ଦୁଆ ବନ୍ଧା ହୋଇଥାଏ । ସିନେଟର କଟକ ବାହାରୁ ଆସିଥିବା ବହୁ ସଭ୍ୟ ତାଙ୍କ ଘରେ ଅତିଥି ହେଲେ । ସିନେଟ୍‌ରେ ଭୋଟବେଳେ ତାଙ୍କ ପକ୍ଷରୁ ତତ୍ପରତା ଜଣା ପଡୁଥାଏ । ମଧ୍ୟାହ୍ନ ବିରାମ ସମୟରେ ପରିଜା ମତେ କହିଲେ, ଏପରି (ଯୋଗାଡ) ହେବ ଜାଣିଥିଲେ , ମୁଁ ଠିଆ (ପ୍ରାର୍ଥୀ) ହୋଇ ନଥାନ୍ତି । ଭୋଟରେ ଜିତି ଚିନ୍ତାମଣି ବାବୁ ୧/୧୦/୧୯୪୮ଠାରୁ କୁଳପତି ନିଯୁକ୍ତ ହେଲେ । ପୁରା ଟର୍ମ ନ ରହି ୧୫/୧୨/୧୯୫୧ରେ ଇସ୍ତଫା ଦେଲେ । ପରିଜା ସାହେବଙ୍କ ଠାରେ ବାଧିତ ଥିବା କିମ୍ବା ତାଙ୍କ ସ୍ନେହ ଓ ସାହାଯ୍ୟ ପାଇଥିବା କେତେକ ସିନେଟ ସଭ୍ୟ ନିର୍ବାଚନରେ ତାଙ୍କ ବିପକ୍ଷରେ ଯେପରି ଭୂମିକା ଗ୍ରହଣ କଲେ, ତାହା ଅନେକ ଦିନ ପର୍ଯ୍ୟନ୍ତ ସାଧାରଣରେ ଆଲୋଚନାର ବିଷୟ ହେଲା । ସେହିପରି ମଧ ଆଲୋଚିତ ହେଲା, ବିଶ୍ୱବିଦ୍ୟାଳୟ ସ୍ଥାପନର ମୂଳକର୍ତ୍ତା ଗୋଦାବରୀଶବାବୁଙ୍କ ପ୍ରତି ଅକୃତଜ୍ଞତାର ଯେଉଁ ସୂଚନା ସର୍ବଶ୍ରେଷ୍ଠ ଶିକ୍ଷିତ ଗୋଷ୍ଠୀରୁ ଯେପରି ମିଳିଲା । ଏହି ନିର୍ବାଚନରେ ପରିଜାଙ୍କ ସମ୍ମାନରେ ଯେଉଁ ଆଞ୍ଚ ଆସିଲା, ତାହା ଦୂରୀଭୂତ ହୋଇଗଲା ସେ ତାହାର ଅଳ୍ପ ଦିନପରେ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ପ୍ରୋଭାଇସଚାନସେଲର ନିଯୁକ୍ତ ହେବାରେ । ପଣ୍ଡିତ ମଦନମୋହନ ମାଳବ୍ୟଙ୍କ ପୁତ୍ର କେ.ଡି ମାଳବ୍ୟ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର କୁଳପତି ଥିଲେ । ମାଡ୍ରାସରୁ ପ୍ଲେନରେ କଲିକତା ଗଲାବେଳେ ଭୁବନେଶ୍ୱରଠାରେ ଆଗରୁ ଖବର ପଠାଇ ପରିଜାଙ୍କ ସଙ୍ଗେ କଥାବାର୍ତ୍ତା ହେଲେ । ବନାରସ ଫେରିବା ପରେ ନିଯୁକ୍ତି ଜଣାଇଲେ । ପରିଜା ସେଠାରେ ତିନିବର୍ଷ (ବୋଧହୁଏ) ରହିଲେ ।

ଚିନ୍ତାମଣିବାବୁ ଅତି ଉତ୍ସାହ ଓ ପରିଶ୍ରମ ସହକାରେ ବିଶ୍ୱବିଦ୍ୟାଳୟ କାର୍ଯ୍ୟରେ ଲାଗିଲେ । ମୁଖ୍ୟମନ୍ତ୍ରୀ ମହତାବବାବୁଙ୍କ ଠାରୁ ଯଥାଯଥ ସହାନୁଭୂତି ମିଳୁଥାଏ । ମୁଁ ଯଥାସାଧ ସାହାଯ୍ୟ କରୁଥାଏ । ୧୯୫୧ଜୁଲାଇରେ ଯେଉଁ ସିନେଟ୍ ବାଲଟ ଆଉଟ ହେଲା, ସେଥିରେ ମୋ ନାମ ଆସିଲା । ସୁତରାଂ ପୁଣି ନିର୍ବାଚନରେ ଠିଆହେବା ଦରକାର । ସେତେବେଳେ ଚିନ୍ତାମଣିବାବୁ ୧୧/୭/୫୧ରେ ମତେ ଖଣ୍ଡିଏ ପତ୍ର ନିଜ ହାତରେ ଲେଖିଥିଲେ ।

Digitized by srujanika@gmail.com

Vicechancellor

Utkal University
Cuttack
11-7-51

My dear Harihar.

I am very sorry that you are one of the person balloted out. The other gentleman is Lakshmi Narayan Bhanjadeo. I know how helpful and useful you are in giving us guidance in many matters in critical moments. However I hope earnestly you will be re-elected not only to the Senate but to the Syndicate also, and I pray to God for it. A man of your ability and intelligence is very necessary to be in the Syndicate & in University authorities.

Yours sincerely
C.M. Acharya

ତାଙ୍କ କାର୍ଯ୍ୟକାଳ ଭିତରେ ଶ୍ରୀରାମଚନ୍ଦ୍ର ଭଞ୍ଜ ମେଡିକାଲ କଲେଜର ଏକ ପରୀକ୍ଷାରେ ବିଭ୍ରାଟ ଯୋଗୁ ସିଣ୍ଡିକେଟ୍ କେତେକଙ୍କର ପରୀକ୍ଷା ଫଳ ବାତିଲ କରିଦେବାରୁ ସେହି ଛାତ୍ରଙ୍କ ତରଫରୁ ଓଡିଶା ହାଇକୋର୍ଟରେ ଏକ ରିଟ୍ ମକଦ୍ଦମା ଦାଏର ହେଲା । ବିଶ୍ୱବିଦ୍ୟାଳୟ ପକ୍ଷରୁ ମୁଁ ବିନା ଫିସ୍‌ରେ ଓକାଲତି ଦାୟିତ୍ୱ ନେଲି । ଚିନ୍ତାମଣିବାବୁଙ୍କ ବିରୁଦ୍ଧବାଦୀ କେତେଜଣ ପଦସ୍ଥ ବ୍ୟକ୍ତି ଛାତ୍ରଙ୍କୁ ମତାଇଲେ ଏବଂ ଆର୍ଥିକ ସାହାଯ୍ୟ ଦେଲେ । ହାଇକୋର୍ଟରୁ ଦିଲ୍ଲୀ ସୁପ୍ରିମ କୋର୍ଟକୁ ଗଲା । ମତେ ଅନେକଥର ଯିବାକୁ ପଡିଲା । ଶେଷକୁ ଏକ ସମାଧାନରେ ସେ ବ୍ୟାପାର ଛିଣ୍ଡିଲା । ଦିଲ୍ଲୀ ଯିବାପାଇଁ ଯାତାୟାତ ଖର୍ଚ୍ଚ କେବଳ ମତେ ମିଳୁଥିଲା । ଏହି ମକଦ୍ଦମାରୁ ଦୁଇଟି ଅତି ଗୁରୁତର ବିଷୟ ଉପୁଜିଲା ।

ମହତାବବାବୁ ସେତେବେଳକୁ କେନ୍ଦ୍ରର ମନ୍ତ୍ରୀ ହୋଇ ଯାଇ ସାରିଥାଆନ୍ତି । ନବକୃଷ୍ଣ ଚୌଧୁରୀ ରାଜ୍ୟର ମୁଖ୍ୟମନ୍ତ୍ରୀ ହେଲେ । ମହତାବ ବିଶ୍ୱବିଦ୍ୟାଳୟ ପ୍ରୋଚାନ୍‌ସେଲର, ଆସଫ ଆଲି କୁଳାଧିପତି ଓ ଓଡିଶାର ଗଭର୍ଣ୍ଣର । ମହତାବଙ୍କ କଟକରୁ ପ୍ରକାଶିତ ଇଷ୍ଟର୍ଣ୍ଣ ଟାଇମସ୍ ଓ ପ୍ରଜାତନ୍ତ୍ର ସମ୍ବାଦପତ୍ରରେ ଏହି ପରୀକ୍ଷା ଫଳ ସଂକ୍ରାନ୍ତ ଏକ ଅଗ୍ରଲେଖା ପ୍ରକାଶ ପାଇଥିବାରୁ ହାଇକୋର୍ଟରେ ସମ୍ବାଦପତ୍ରର

Digitized by srujanika@gmail.com

ସମ୍ପାଦକ ଓ ମୁଦ୍ରାକରଙ୍କ ବିରୁଦ୍ଧରେ ଅଦାଲତ ଅବମାନନା କେସ୍ ଆରମ୍ଭ ହେଲା । ବାସ୍ତବତଃ ତାହା ଚିନ୍ତାମଣି ବାବୁ ଓ ମହତାବଙ୍କ ବିରୁଦ୍ଧରେ ଥିଲା । ସମ୍ବାଦପତ୍ର ପାଇଁ ମୁଁ ବିନା ଫିସ୍‌ରେ କେସ୍ ଚଳାଇବା ପାଇଁ ବିନା ଦ୍ୱିଧାରେ ସ୍ୱୀକୃତ ହେଲି । କେସ୍‌ର ଶେଷ ପର୍ଯ୍ୟାୟରେ କଲିକତାର ବାରିଷ୍ଟର ସାର୍.ଏସ୍. ଏମ୍. ବୋଷ (ଆଡଭୋକେଟ୍ ଜେନରାଲ) ଆମ ପକ୍ଷରୁ ଜବାବ୍ ସୁଆଲ କରିବାକୁ ଆସିଥିଲେ । ଶୁଣାଣି ଶେଷକୁ ଚିଫ୍ ଜଷ୍ଟିସ ବୀରକିଶୋର ରାୟ ପ୍ରଶ୍ନ କରିଥିଲେ, 'ଅଭିଯୁକ୍ତମାନଙ୍କୁ ଯଦି ଦଣ୍ଡ ନ ଦେଇ କେବଳ ଭର୍ତ୍ସନା (Reprimand) କରାଯାଏ, ତେବେ କଅଣ ହେବ ?' ଉତ୍ତରରେ ସାର୍ ଏସ୍.ଏମ୍. ବୋଷ କହିଲେ, 'ତାହା ବିରୁଦ୍ଧରେ ମଧ୍ୟ ଅପିଲ ହୋଇପାରିବ ।' ଅର୍ଥାତ୍ ଭର୍ତ୍ସନା ମଧ୍ୟ ଏକପ୍ରକାର ଦଣ୍ଡ । ଶେଷକୁ ରାୟ ଆମ ପକ୍ଷରେ ହେଲା ।

କୁଳାଧିପତି ଆସଫ ଆଲି ଏକ ସୌଖିନ ଲୋକ ଥିଲେ । ସେ ବାରିଷ୍ଟର ହୋଇ ଆଇନ ବୃତ୍ତି କରୁଥିଲେ । କଂଗ୍ରେସରେ ଯୋଗଦେଇ ତାହା ବନ୍ଦ କଲେ । ତାଙ୍କ ସ୍ତ୍ରୀ ଅରୁଣା ଆସଫ ଆଲି ବଙ୍ଗୀୟ ମହିଳା, କମ୍ୟୁନିଷ୍ଟ, ପରିବାର ଅପେକ୍ଷା ରାଜନୀତିରେ ଅଧିକ ଆଗ୍ରହୀ । କଟକରେ ସ୍ୱାମୀଙ୍କ ପାଖେ କ୍ୱଚିତ ରହନ୍ତି । ଆସଫ ଆଲି ଅଧିକାର ପ୍ରିୟ । ନିଜର ଅଧିକାର ଓ ଶ୍ରେଷ୍ଠତ୍ୱ ବ୍ୟବହାରରେ ଅପରକୁ ସୂଚାଇବାରେ ବୋଧହୁଏ ଆନନ୍ଦ ପାଉଥିଲେ । କୁଳାଧିପତି ବୋଲି ବିଶ୍ୱବିଦ୍ୟାଳୟ ପରିଚାଳନାରେ କେହି କିଛି ଆପତ୍ତି ଉଠାଇଲେ, ସେ କୁଳପତିଙ୍କ ସଙ୍ଗେ ପରାମର୍ଶ ନ କରି ନିଜେ ଲିଖିତ ମନ୍ତବ୍ୟ ପ୍ରକାଶ କରିବା କିମ୍ବା ଅନ୍ୟ କାହାଦ୍ୱାରା ଘଟନା ଅନୁସନ୍ଧାନ କରାଇବା ପସନ୍ଦ କରୁଥିଲେ । ତାହାର ପ୍ରତିକ୍ରିୟା ଅନୁଷ୍ଠାନ ପକ୍ଷରେ ସ୍ୱାଗତଯୋଗ୍ୟ ନୁହେଁ ବୋଲି ଚିନ୍ତାମଣିବାବୁ ତାଙ୍କୁ ବୁଝାଇବାର ଚେଷ୍ଟାକରିଥିଲେ । କୁଳପତିଙ୍କର କୌଣସି ତ୍ରୁଟି ସେ ଦେଖି ବା ଦେଖାଇପାରି ନଥିଲେ । ମାତ୍ର କାର୍ଯ୍ୟ କରିବାରେ ସ୍ୱଚ୍ଛନ୍ଦତା ଓ ପରିଶ୍ରମର ଯଥାଯଥ ସ୍ୱୀକୃତି ବା ପ୍ରଶଂସା ନମିଳିବାରୁ, ଚିନ୍ତାମଣିବାବୁ ତାଙ୍କ କାର୍ଯ୍ୟକାଳ ଶେଷରେ ଦୁଇବର୍ଷ ପୂର୍ବରୁ ୧୫/୧୨/୧୯୫୧ ତାରିଖରେ ଇସ୍ତଫା ଦେଇ ବାହାରିଗଲେ । ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ଇଚ୍ଛା କରିଥିଲେ ଏକ ସମାଧାନ କରାଇ ପାରିଥାନ୍ତେ । ମାତ୍ର, ଚିନ୍ତାମଣିବାବୁ ଆଗେ ବ୍ରିଟିଶ୍ ସରକାରର ସହଯୋଗୀ ଓ କଂଗ୍ରେସ ବିରୋଧି ଥିବାରୁ ସେ ତାଙ୍କ ପ୍ରତି ବିମୁଖ ହେଲେ । ସୁତରାଂ ସେ ଚୁପ୍ ରହିଲେ । ତାପରେ ମହେଶଚନ୍ଦ୍ର ପ୍ରଧାନ,

Digitized by srujanika@gmail.com

ପରଶୁରାମ ମିଶ୍ରଙ୍କ ନାମ ଆସିବାରେ ପରଶୁରାମବାବୁ କୁଳପତି ମନୋନୀତ ହୋଇ ୧୭/୨/୧୯୫୨ ଠାରୁ କାର୍ଯ୍ୟଭାର ଗ୍ରହଣ କଲେ । ବନାରସ ବିଶ୍ୱବିଦ୍ୟାଳୟରୁ ଫେରି ଆସିଲା ପରେ ପରିଜା ଏଠାର ପ୍ରୋ-ଭାଇସଚାନ୍‌ସେଲର ହୋଇଥିଲେ । ବିଧାନସଭା ନିର୍ବାଚନରେ ପ୍ରାର୍ଥୀ ହୋଇ ପୁରୁଖା କଂଗ୍ରେସ ନେତା ଭାଗିରଥୀ ମହାପାତ୍ରଙ୍କ ଠାରୁ ଅଧିକ ଭୋଟପାଇ ଜୟୀ ହୋଇଥିଲେ । ପୁନର୍ବାର କୁଳପତି ଭାବରେ ୧୫/୮/୧୯୫୫ରେ ବିଶ୍ୱବିଦ୍ୟାଳୟରେ ଯୋଗଦେଇଥିଲେ । ତାଙ୍କର କାର୍ଯ୍ୟକାଳ ୧୯୬୦ରେ ଶେଷ ହେବା ପରେ ସେତେବେଳର କୁଳାଧିପତି ଓ ରାଜ୍ୟପାଳ ସୁକ୍ତଙ୍କର ପରିଜାଙ୍କର ପୁନଃ ନିଯୁକ୍ତିରେ ଅନିଚ୍ଛା ପ୍ରକାଶ କରିବାରୁ ମୁଖ୍ୟମନ୍ତ୍ରୀ ମହାତାବଙ୍କ ଅନୁରୋଧରେ ମୁଁ ପାଟନାରୁ ଆସି ପୁରୀରେ ରାଜ୍ୟପାଳଙ୍କ ସଙ୍ଗେ ସେ ବିଷୟରେ ଆଲୋଚନା କରିଥିଲି । ବିଶ୍ୱବିଦ୍ୟାଳୟ ଭୁବନେଶ୍ୱରକୁ ସ୍ଥାନାନ୍ତରିତ ହେଉଥିବାରୁ ସେତେବେଳେ ପରିଜା ଆଉ ଗୋଟିଏ ଟର୍ମ କୁଳପତି ରହିଲେ ସବୁଦିଗରୁ ସୁବିଧାଜନକ ହେବ ବୋଲି ତାଙ୍କୁ ବୁଝାଇବାରୁ (କୁଳାଧିପତି) ସମ୍ମତ ହେଲେ । ସେ ସମୟରେ ପରିଜାଙ୍କ ସଙ୍ଗେ ମୋର ଯେଉଁ ପତ୍ରାଳାପ ହୋଇଥିଲା, ସେଥିରେ ସେ ବାରମ୍ବାର ଉଲ୍ଲେଖ କରିଥିଲେ ଯେ ମୁଁ ତାଙ୍କ ରହିବା ପାଇଁ ଯେଉଁ ଚେଷ୍ଟା କରୁଛି ସେଥିରୁ ରାଜ୍ୟପାଳ ହୁଏତ ଭାବି ପାରନ୍ତି ମୋ ଦ୍ୱାରା ସେ (ପରିଜା) ଚେଷ୍ଟା କରାଉଛନ୍ତି । ପୁରୀ ଆସି ରାଜ୍ୟପାଳଙ୍କ ସହିତ ସାକ୍ଷାତ ଆଲୋଚନା ପୂର୍ବରୁ ମୁଁ ସ୍ୱତଃ ମୋ ଆଡୁ ମହତାବ ଓ ସୁକ୍ତଙ୍କରଙ୍କୁ ସେ ବିଷୟରେ ପାଟନାରୁ ପତ୍ର ଲେଖିଥିଲି । ପରିଜାଙ୍କୁ ମଧ । ପରିଜା ତୃତୀୟ ଥର ନିଯୁକ୍ତି ପାଇଲା ପରେ, ସିନେଟ ନିର୍ବାଚନ ହେଲା । ମୁଁ ପାଟନାରେ ଜଜ୍ ହୋଇଥିବାରୁ ସିନେଟ୍ ପାଇଁ ପ୍ରାର୍ଥୀ ହେବା ଉଚିତ୍ ମନେ କଲିନାହିଁ । ପରିଜା ଦୁଇଥର ଚିଠିରେ, ଥରେ ଟେଲିଫୋନ୍‌ରେ କହିଲେ—ମତେ ଜଣାଇଲ, ତମେ ନ ଆସିବା ଠିକ୍ ହେବ ନାହିଁ । ଜଜ୍ ଥାଇ ପ୍ରତ୍ୟକ୍ଷ ନିର୍ବାଚନକୁ ଯିବା ସଙ୍ଗତ ହେବନାହିଁ ବୋଲି ମୁଁ ତାଙ୍କୁ ନିବେଦନ କରି ଜଣାଇଥିଲି । । ସେ ବୁଝିଲେ ମାତ୍ର ଦୁଃଖିତ ରହିଲେ ।

ବିଶ୍ୱବିଦ୍ୟାଳୟର ଆରମ୍ଭରେ ରେଭେନ୍‌ସା କଲେଜ ପଶ୍ଚିମ ଛାତ୍ରାବାସର ଓ୍ୟାର୍ଡେନ୍ କ୍ୱାଟର୍ସର ଗୋଟିଏ ବଖରାରେ ଅଫିସ ହେଲା । ପରେ ବର୍ଦ୍ଧମାନ କୋଠିକୁ ଆସିଲା । ତା ପରେ ହେଲା କଟକ କଲେକ୍ଟରଙ୍କ କୋଠି, ମେଡିକାଲ ସାମନା ଦ୍ୱିତଳ ଗୃହରେ । ମହତାବ ବମ୍ବେ ଗଭର୍ଣ୍ଣର ପଦ ଛାଡି (୧୯୫୭) ଦ୍ୱିତୀୟ ଥର

Digitized by srujanika@gmail.com

ଓଡିଶାର ମୁଖ୍ୟମନ୍ତ୍ରୀ ହେବାପରେ ବିଶ୍ୱବିଦ୍ୟାଳୟର ସ୍ୱତନ୍ତ୍ର ଘର ତୋଳା କଥା ଜରୁରୀ ଭାବରେ ଉଠିଲା । ପୂର୍ଣ୍ଣାଙ୍ଗ ବିଶ୍ୱବିଦ୍ୟାଳୟ ସେ ପର୍ଯ୍ୟନ୍ତ ଗୃହ ଅଭାବରୁ ହୋଇପାରି ନଥିଲା । ପରିଜାଙ୍କ ଇଚ୍ଛା କଟକରେ ମାଡିମକଚି କୋଠା ତିଆର ହେଉ । ମୋର ଇଚ୍ଛା ବିସ୍ତୃତ ଭାବରେ ଆଧୁନିକ ରୀତିରେ ନିର୍ମାଣ ପାଇଁ ଭୁବନେଶ୍ୱରରେ ସ୍ଥାନ ସ୍ଥିର ହେଉ । ଏହିପରି ମତ ଭେଦରେ ଦ୍ୱି ଭିନ୍ନ ମତର ସମର୍ଥକ ବାହାରିଲେ । ମୁଁ ଏକ ପକ୍ଷର ଆଗୁଆ କୁହାଳିଆ । ଅନ୍ୟ ମତର ପୁରୋଧା ପରିଜା ସାହେବ ଜିଦ୍ ଖୋର ତ ନଥିଲେ, ତାଙ୍କ ସମର୍ଥକମାନେ ତାଙ୍କୁ ଟପି କଥା କହିବାକୁ ପସନ୍ଦ କରୁ ନଥିଲେ । U.G.C.(ୟୁନିଭର୍ସିଟି ଗ୍ରାଣ୍ଟସ୍ କମିସନ)ରୁ ନିର୍ମାଣ ପାଇଁ ଟଙ୍କା ମିଳିବାର କଥା । ତାହାର ଚେୟାରମ୍ୟାନ୍ ସି.ଡି. ଦେଶମୁଖ ଆସିଲେ ସ୍ଥାନ ନିରୁପଣ ସମ୍ବନ୍ଧରେ ଆଲୋଚନା ବା ଫଇସଲା କରିବା ପାଇଁ । ମହତାବ, ପରିଜା, ଦେଶମୁଖଙ୍କ ସଙ୍ଗେ ମିଳିତ ହେବାପାଇଁ ମତେ ଡକାଗଲା । ଆମ୍ଭେମାନେ କଟକର ଦୁଇଟି ସ୍ଥାନ ଦେଖି ଭୁବନେଶ୍ୱର ଯାଇ ବର୍ତ୍ତମାନ ଯେଉଁଠାରେ ବାଣୀବିହାର ସେଠାରେ ପହଞ୍ଚିଲୁ । ସେଠାରେ ଠିଆ ଠିଆ ଅଧଘଣ୍ଟାଏ ଆଲୋଚନା ହେଲା । ପରିଜା କଟକ ସପକ୍ଷରେ ଯୁକ୍ତି ବାଢ଼ିଲାବେଳେ, ମୁଁ ଭୁବନେଶ୍ୱର ପାଇଁ କହୁଥାଏ । ମହତାବ ନିରବ । ଦେଶମୁଖ ପରିଜାଙ୍କର କେମ୍ବ୍ରିଜର ସହପାଠୀ । ଶେଷକୁ ସେ ଓ ମହତାବ ଭୁବନେଶ୍ୱର ପାଇଁ ମତ ପ୍ରକାଶ କଲେ । ସ୍ଥିର ହେଲା ସେଠାରେ ନୂତନ ନିର୍ମାଣ କାର୍ଯ୍ୟ ଶୀଘ୍ର ଆରମ୍ଭ ହେବ । ଏ ନିଷ୍ପତ୍ତିରେ ପରିଜା ମୋ ପ୍ରତି ଅପ୍ରସନ୍ନ ହେବା ମୁଁ ବୋଧ କଲି । ଥରେ ସ୍ଥିର ହେବାପରେ, ସେ ସେଥିର ଯଥାଯଥ ଯତ୍ନ ନେଲେ । ଡେନମାର୍କର ଜଣେ ଆର୍କିଟେକ୍ଟ, ଯେ ନେପାଳରେ ନିର୍ମାଣ କାର୍ଯ୍ୟ କରାଇଥିଲେ, ତାଙ୍କୁ ମୁଁ ଜାଣିଥିଲି । ତାଙ୍କୁ ଡାକିବା ଭାର ମୁଁ ନେଲି । ସେ ନକ୍ସା ପ୍ରସ୍ତୁତ କଲେ । ମୁଁ ପାଟନା ଯିବାପରେ, କେତେଥର ଆସି ବାଣୀବିହାରର ଅଧାତିଆରି ଘରେ ସିଣ୍ଡିକେଟ୍ ମିଟିଙ୍ଗରେ ଯୋଗ ଦେଇଥିଲି । ବାଣୀବିହାରର ସ୍ଥାନ ନିରୂପିତ ହେବାରେ ଗୃହୀତ ପ୍ରଧାନ ଯୁକ୍ତି ଥିଲା ସେଠାର ସଡକ ପାର୍ଶ୍ୱ ପାଣିଝର, ଯାହାକୁ ଏକ କୃତ୍ରିମ ହ୍ରଦରେ ପରିଣତ କରାଯିବ; — ସ୍ଥାନର ସୌନ୍ଦର୍ଯ୍ୟ ବୃଦ୍ଧି ଏବଂ ଛାତ୍ରଛାତ୍ରୀମାନଙ୍କର ବୋଟ୍ ରେସିଙ୍ଗରେ ଚିତ୍ତବିନୋଦନ ପାଇଁ । ଦୁଃଖର କଥା, ତାହା ଏ ପର୍ଯ୍ୟନ୍ତ ଅବହେଳିତ, ମାତ୍ର ଧୋବାତୁଠରେ ରହିଛି । ବାଣୀବିହାରରେ ଦୁଇଥର ବିଶ୍ୱବିଦ୍ୟାଳୟ ବାର୍ଷିକୀ ଉତ୍ସବରେ ଏଥିପ୍ରତି ଦୃଷ୍ଟି ଆକର୍ଷଣ କରି ପ୍ରତିଶ୍ରୁତି କୁଳପତିଙ୍କ ଠାରୁ ପାଇଥିଲି , ନିକଟରେ ହେବ । ସେ ନିକଟ ଏବେ ସୁଦ୍ଧା ନିକଟକୁ ଆସି ପାରିନାହିଁ, କୋଡିଏ ବର୍ଷ ହୋଇଗଲା ।

Digitized by srujanika@gmail.com

ଯୋଗେନ୍ଦ୍ର ସିଂହ ରାଜ୍ୟପାଳ ଓ କୁଳାଧିପତି ଥିଲାବେଳେ ବିଶ୍ୱବିଦ୍ୟାଳୟ ରେଜିଷ୍ଟ୍ରାରଙ୍କୁ (ଶ୍ରୀଯୁକ୍ତ ଦୁର୍ଗାପ୍ରସାଦ ବରାଇ) ନେଇ ଏକ ଅଶାନ୍ତି ସୃଷ୍ଟି ହୋଇ ଥିବାରୁ ତାହିର ଓ ବିଶ୍ୱବିଦ୍ୟାଳୟ ପରିଚାଳନାର ଅନୁସନ୍ଧାନ କରି ରିପୋର୍ଟ ଦେବାପାଇଁ ମତେ ନିଯୁକ୍ତ କରାଯାଇଥିଲା । ବର୍ଷାଧିକକାଳ, ବହୁ ସଂପୃକ୍ତ ବ୍ୟକ୍ତିଙ୍କଠାରୁ ସାକ୍ଷ୍ୟ ନେଇ, ଅନ୍ୟାନ୍ୟ ନେତୃସ୍ଥାନୀୟଙ୍କର ମତାମତ ଶୁଣି ମୋ ରିପୋର୍ଟରେ ଅନେକଗୁଡ଼ିଏ ପରିଚାଳନାଗତ ସଂଶୋଧନ ପାଇଁ ସୁପାରିଶ କରାଯାଇଥିଲା ।

ସେହିପରି ଆଉଗୋଟିଏ ଅନୁସନ୍ଧାନ ଭାର ଗ୍ରହଣ କରିଥିଲି କୃଷି ମହାବିଦ୍ୟାଳୟ (Orissa University of Agiculture and Technology) ସମ୍ବନ୍ଧରେ । କୁଳପତିଙ୍କ ବିରୁଦ୍ଧରେ କେତେକ ଅଭିଯୋଗ ମଧ୍ୟ ଅନ୍ତର୍ଭୁକ୍ତ ଥିଲା । ସେଥିରେ ସାକ୍ଷ୍ୟ, ଶୁଣାଣିରେ ଏକ ବର୍ଷରୁ ଊର୍ଦ୍ଧ୍ୱ ସମୟ ଲାଗିଥିଲା । ସେ ରିପୋର୍ଟ ଦେଇଥିଲି କୁଳାଧିପତି ବି.ଡି. ଜଟ୍ଟିଙ୍କୁ (ଯେ ପରେ ଦେଶର ଉପରାଷ୍ଟ୍ରପତି ନିର୍ବାଚିତ ହେଲେ ) ଶୁଣିଥିଲି, ସେ ସେହି ରିପୋର୍ଟକୁ ଭାରତବର୍ଷର ଅନ୍ୟ କୃଷି ମହାବିଦ୍ୟାଳୟମାନଙ୍କୁ ପଠାଇଥିଲେ ।

ବର୍ଷକ ତଳେ ଓଡ଼ିଶାରେ ବ୍ୟାପକ ଛାତ୍ର ଅଶାନ୍ତି ଓ ଆନ୍ଦୋଳନ ଜାତ ହେବାରୁ ରାଜ୍ୟ ସରକାର ଏକ କମିଟି ହରେକୃଷ୍ଣ ମହତାବଙ୍କ ଅଧ୍ୟକ୍ଷତାରେ ବସାଇଲେ ତାହାର ସମାଧାନ ପାଇଁ । ସେଥିରେ ମୁଁ ସଭ୍ୟ ଥାଇ ମୋ ସାଧ୍ୟମତ ସକ୍ରିୟ ଅଂଶଗ୍ରହଣ କଲି । ଅନୁସନ୍ଧାନ ଓ ରିପୋର୍ଟ ସରକାର ଗ୍ରହଣ କରିଥିଲେ । ଆନ୍ଦୋଳନ ଶାନ୍ତ ପଡ଼ିଲା । ପରେ ଛାତ୍ରମାନଙ୍କର ଆପତ୍ତି ହେଲା ଯେ ସରକାରଙ୍କର କାର୍ଯ୍ୟାନୁଷ୍ଠାନରେ ବିଳମ୍ବ ଘଟୁଛି । ସେଥିପାଇଁ କମିଟି ଭାଙ୍ଗି ଯାଇଥିଲେ ମଧ୍ୟ ବ୍ୟକ୍ତିଗତ ଭାବେ ସରକାରଙ୍କ ସଙ୍ଗେ ଯୋଗାଯୋଗ ରକ୍ଷା କରିବା ଆବଶ୍ୟକ ହେଲା ।

ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ଥାପନ ପୂର୍ବରୁ ପାଟନା ବିଶ୍ୱବିଦ୍ୟାଳୟ ସହିତ ସଂପୃକ୍ତ ଥିଲି ଅଳ୍ପ ଭାବରେ, ରେଭେନ୍ସା କଲେଜରେ ଲ' ଲେକ୍‌ଚରର ଥିବାବେଳେ । ପାଟନା ହାଇକୋର୍ଟକୁ ଯିବା ପରେ ପୁଣି ସମ୍ପର୍କ ସ୍ଥାପିତ ହେଲା ପାଟନା ବିଶ୍ୱବିଦ୍ୟାଳୟ ସଙ୍ଗେ କୁଳପତି ଡଃ ବଳଭଦ୍ର ପ୍ରସାଦଙ୍କ ଅନୁରୋଧରେ । ତାଙ୍କ ପରେ ଡଃ କେ.କେ. ଦତ୍ତ କୁଳପତି ହୋଇ ମତେ ସଂପୃକ୍ତ ରଖିଲେ । ସେହି ସମୟରେ ଲ କଲେଜର ପାଠ୍ୟକ୍ରମ ସମ୍ବନ୍ଧରେ ମୋ ଅଧ୍ୟକ୍ଷତାରେ ବିଶ୍ୱବିଦ୍ୟାଳୟ ଏକ କମିଟି କରିଥିଲେ । ସେଥିରେ ଆଡଭୋକେଟ୍ ଜେନରାଲ ମହାବୀର ପ୍ରସାଦ, ସରକାରୀ ଆଡଭୋକେଟ୍

Digitized by srujanika@gmail.com

ଲଳିତନାରାୟଣ ସିହ୍ନା (ଯେ ପରେ ଦିଲ୍ଲୀରେ ଆଟର୍ଣ୍ଣି ଜେନେରାଲ ହେଲେ), ଲ କଲେଜରେ ଅଧକ୍ଷ ଶ୍ରୀଯୁକ୍ତ ଦେଶପାଣ୍ଡେ ସଭ୍ୟ ଥିଲେ । ଆମ ରିପୋର୍ଟରେ ଯେଉଁ ପାଠ୍ୟକ୍ରମ, ଶିକ୍ଷା ବ୍ୟବସ୍ଥା, ଅଧାପକ ନିଯୁକ୍ତି ସୁପାରିଶ କରାଯାଇଥିଲା ତାହା ପରେ କାର୍ଯ୍ୟକାରୀ କରାଯାଇଛି । ମହାପାତ୍ର କମିଟିର ସୁପାରିଶ ଭାବରେ ଅନ୍ୟ କେତେକ ବିଶ୍ୱବିଦ୍ୟାଳୟରେ ସୂଚିତ ହୋଇ ତାହା ଗୃହୀତ ହୋଇଥିଲା । ଏବେ କେନ୍ଦ୍ର ବାର୍ କାଉନସିଲ ଯାହା ପ୍ରଚଳନ କରିବାକୁ ଯାଉଛନ୍ତି, ତା ତାହାର ଅନୁରୂପ ଥିବାର ଦେଖୁଛି ।

ମୁଁ ପାଟନା ଯିବା ପୂର୍ବରୁ ଇଣ୍ଡିଆନ ଲ ଇନ୍‌ଷ୍ଟିଚ୍ୟୁଟରେ ସକ୍ରିୟ ଅଂଶଗ୍ରହଣ କରୁଥିଲି । ତାହାର ବାର୍ଷିକ ଅଧିବେଶନ ଓ ଆଲୋଚନା ସେମିନାରରେ ଯୋଗ ଦେବାପାଇଁ ପଡୁଥିଲା । ଏ ପ୍ରକାର କାର୍ଯ୍ୟରେ ଆଗ୍ରହ ଥିବାରୁ ଓଡିଶା ବାହାରର ଅନେକଙ୍କ ସଙ୍ଗେ ପରିଚିତ ଓ ବନ୍ଧୁତାର ସୁଯୋଗ ମିଳୁଥିଲା ଏବଂ ସେମାନେ ଓଡିଶା ସମ୍ବନ୍ଧରେ କିଛି ସଚେତନ ହେଉଥିଲେ ।

ରେଭେନ୍‌ସା କଲେଜ ଓଡିଶାର ସର୍ବ ବୃହତ ଓ ସର୍ବ ପ୍ରଥମ କଲେଜ । ତାହାର ଗଭର୍ଣ୍ଣିଙ୍ଗ ବଡିରେ ଅଧକ୍ଷତା କରୁଥିଲେ ଓଡିଶା ଡିଭିଜନର କମିଶନର ଓ ପରେ ଓଡିଶାର ରେଭେନ୍ୟୁ କମିଶନର । ୧୯୪୫ ରେ ପ୍ରଥମ କରି ବେସରକାରୀ ପ୍ରେସିଡେଣ୍ଟ ଭାବେ ମୁଁ ମନୋନୀତ ହୋଇଥିଲି । ଏସ୍. ରାୟ ସେତେବେଳେ କଲେଜର ପ୍ରିନ୍‌ସପାଲ । ପାଟନାରୁ ଅବସର ନେଇ ଆସିଲା ପରେ ପୁଣି ଛଅବର୍ଷ ପ୍ରେସିଡେଣ୍ଟ ରହିଲି । ବିଶ୍ୱବିଦ୍ୟାଳୟ ହେଉ, କଲେଜ ହେଉ, ତାହା ସହିତ ସାକ୍ଷାତ ସମ୍ପର୍କ ସବୁବେଳେ ମୋ ପ୍ରତି ଏକ ଆହ୍ୱାନ ରୂପେ କାର୍ଯ୍ୟ କରିଛି । ମୁଁ ସେଥିରେ କେବେ କ୍ଲାନ୍ତି ପାଇ ନାହିଁ, ଆନନ୍ଦ ପାଇଛି ।



Digitized by srujanika@gmail.com

# ରୋଟାରୀ କ୍ଲବ

ଆମେରିକାର ସିକାଗୋ ସହରରେ ୧୯୦୫ ଫେବୃଆରୀ ୨୩ ତାରିଖରେ ରୋଟାରୀ କ୍ଲବ ସ୍ଥାପିତ ହୁଏ । ପଲ ହାରିସ୍ ସେଠାରେ ଆଇନ ବୃତ୍ତିରେ ଥିଲେ । ବଡ ନିଃସଙ୍ଗ ବୋଧ କରିବାରୁ, ଅନ୍ୟ ତିନିଜଣଙ୍କ ସଙ୍ଗେ ପରାମର୍ଶ କରି ଠିକ୍ କଲେ ଯେ ସେ ଚାରିଜଣ ପ୍ରତି ସପ୍ତାହରେ ଥରେ ଏକାଠି ହେବେ ଓ ପରସ୍ପର ଭାବ ଆଦାନ ପ୍ରଦାନ ହେବ । ଅନ୍ୟ ତିନିଜଣ ଥିଲେ ଗୁସ୍‌ଟାଭସ୍ ଲୋହେର୍, ଜଣେ ଖଣି ଇଞ୍ଜିନିୟର, ସିଲ୍ ଭେଷ୍ଟର ସୀଲ, ଜଣେ କୋଇଲା ବ୍ୟବସାୟୀ, ହିରାମ ଶୋରି, ଜଣେ ଦରଜି ବ୍ୟବସାୟୀ । ଡିଅରବର୍ଣ୍ଣ ଷ୍ଟ୍ରୀଟ୍‌ରେ ଇୟୁନିଟ୍ ବିଲଡିଙ୍ଗର ୭୧୧ ନମ୍ବର ଘରେ ସେମାନଙ୍କ ମଧ୍ୟରୁ ଜଣଙ୍କର ଅଫିସ ଥିଲା । ସେହିଠାରେ ଏହି ଚାରିଜଣଙ୍କର ପ୍ରଥମ ବୈଠକ ବସିଥିଲା । ତାହାର ନାମ ରୋଟାରୀ କ୍ଲବ ଦେଲେ, କାରଣ ବୈଠକ ବୁଲି ବୁଲି ଜଣ ଜଣଙ୍କ ଅଫିସ୍‌ରେ ହେଉଥିଲା । ମୂଳରୁ ସେମାନେ ଠିକ୍ କରିଥିଲେ, ନିଜ ନିଜ ବୃତ୍ତି, ବ୍ୟବସାୟ ଚଳାଇବା ସଙ୍ଗେ ସଙ୍ଗେ ସମାଜର ଅନ୍ୟମାନଙ୍କର ହିତପାଇଁ ଅବଶ୍ୟ କିଛି କାର୍ଯ୍ୟ କରିବେ ଏବଂ ବନ୍ଧୁତା ଭ୍ରାତୃଭାବ ଦେଇ ସମସ୍ତଙ୍କ ସହିତ ସୌହାର୍ଦ୍ଦ୍ୟ ଓ ବୁଝାମଣା ବଢ଼ାଇବାରେ ଚେଷ୍ଟା କରିବେ । ପଞ୍ଚମ ସଭ୍ୟ ଜଣେ ମୁଦ୍ରାକର ଜୁଟିଲେ । କ୍ରମଶଃ ଅନ୍ୟ ବୃତ୍ତିର ଲୋକ ଯୋଗଦେଲେ । ନିୟମ ହୋଇଥିଲା କୌଣସି ନିର୍ଦ୍ଦିଷ୍ଟ ବୃତ୍ତି, ବ୍ୟବସାୟ ବା ଜୀବିକା ଅବଲମ୍ବନ କରୁଥିବା ବ୍ୟକ୍ତିମାନଙ୍କ ମଧ୍ୟରୁ ଜଣଙ୍କରୁ ବେଶି କ୍ଲବରେ ନିଆଯିବେ ନାହିଁ । ସମାଜର ସବୁସ୍ତର ସମାନ ଭାବରେ କେବଳ ଜଣଜଣଙ୍କ ଦ୍ୱାରା ପ୍ରତିବିମ୍ବିତ ହେବ । ଏହାର ଆକର୍ଷଣରେ ସିକାଗୋ ଓ ଅନ୍ୟ ସ୍ଥାନମାନଙ୍କରେ ରୋଟାରୀ କ୍ଲବମାନ ଆରମ୍ଭ ହେଲା । ରୋଟାରୀ କ୍ଲବ କାନାଡାକୁ ୧୯୧୦, ଡବ୍‌ଲିନ୍‌କୁ ୧୯୧୧, ଲାଟିନ୍ ଆମେରିକାକୁ (ହାଭାନାକୁ) ୧୯୧୬ରେ ବ୍ୟାପିଥିଲା । ଏସିଆକୁ ପ୍ରଥମ ଆସିଲା ୧୯୧୯ରେ କଲିକତା ସହରରେ । ଏହିପରି କ୍ରମଶଃ ପୃଥିବୀର ସବୁ ଅଞ୍ଚଳରେ ଏକ ଦୃଢ଼ ସମାଜସେବୀ ଆନ୍ତର୍ଜାତିକ ଅନୁଷ୍ଠାନ ରୂପେ ଏହା ପ୍ରତିଷ୍ଠିତ ହୋଇଛି ।

Digitized by srujanika@gmail.com

୧୯୪୪ରେ କଲିକତା ରୋଟାରୀ କ୍ଲବ ଚେଷ୍ଟାରେ ପାଟନାରେ ଏକ କ୍ଲବ ସ୍ଥାପିତ ହୋଇଥିଲା । ସେଥିରେ ବି.କେ. ଗୋଖଲେ ଆଇ.ସି.ଏସ୍. ସଭ୍ୟ ଓ ଉପସଭାପତି ଥିଲେ । ସେ ଓଡିଶାକୁ ଆସିଲେ ରାଜ୍ୟପାଳ ହଥର୍ଣ୍ଣ ଲୁଇସଙ୍କର ପରାମର୍ଶଦାତା ରୂପେ, ରାଷ୍ଟ୍ରପତି ଶାସନ ସମୟରେ । ପାଟନା ରୋଟାରୀ କ୍ଲବରେ ମୋର ପରିଚିତ କେତେଜଣ ଯୋଗ ଦେଇଥିଲେ । ମୁଁ କଟକରେ ରୋଟାରୀ ଅନୁଷ୍ଠାନ ଆରମ୍ଭ କରିବା ପାଇଁ ଇଚ୍ଛୁକ ଓ ଆଗ୍ରହୀ ଥିଲି । ବିହାରରେ ହେଲା, ଓଡିଶାରେ କିପରି ହେବ ବୋଲି ବ୍ୟଗ୍ର ଥିଲି । ଗୋଖଲେଙ୍କ ସଙ୍ଗେ ପ୍ରଥମ ସାକ୍ଷାତ ଦିନ ମୁଁ ମୋର ବ୍ୟଗ୍ରତା ପ୍ରକାଶ କରିଥିଲି । ତାଙ୍କର ଅନୁରୂପ ଇଚ୍ଛା ମଧ୍ୟ ହେଲା । ସେ ଦିନେ ସନ୍ଧ୍ୟାବେଳେ ପରିଜା ସାହେବ, ତ୍ରିପାଠୀ ସାହେବ ଓ ମୋତେ ତାଙ୍କର କାଣ୍ଟନମେଣ୍ଟ ରୋଡ ୬ ନମ୍ବର ବଙ୍ଗଳାକୁ ନିମନ୍ତ୍ରଣ କରି ଆଲୋଚନା କଲେ, କଟକରେ ରୋଟାରୀ କ୍ଲବ ଆରମ୍ଭ କରିବାପାଇଁ । ଆମ୍ଭେମାନେ ସେ ସମ୍ବନ୍ଧରେ କାଗଜପତ୍ର ଦେଖି ଅନ୍ୟମାନଙ୍କ ସହିତ ପରାମର୍ଶ କରି ପରେ ମିଳିତ ହେବାର ସ୍ଥିର ହେଲା । କିଛି ଦିନ ପରେ ତାଙ୍କ ଘରେ ଏଗାରଜଣ ଏକାଠି ହେଲୁ ଏବଂ ସ୍ଥିର ହେଲା କ୍ଲବ କରିବା ପାଇଁ । ସେଦିନ ଉପସ୍ଥିତ ଥିଲେ, ଇଞ୍ଜିନିୟର ଶ ସାହେବ, କାପ୍‌ଟେନ୍ ଓମରାଓ, ଲିଙ୍ଗରାଜ ପାଣିଗ୍ରାହୀ (ସେ ବ୍ରହ୍ମପୁର ଛାଡି କଟକରେ ଓକିଲାତି କରିବାକୁ ଆସିଥାନ୍ତି), ନିମକ୍ ବ୍ୟବସାୟୀ ମହମ୍ମଦ ୟୁସୁଫ୍, ପରିଜା, ତ୍ରିପାଠୀ ଓ ମୁଁ । ତାହାର ଦଶଦିନ ପରେ କଲିକତା ରୋଟାରୀ କ୍ଲବର ତତ୍କାଳୀନ ସଭାପତି ଡାକ୍ତର ଇୟୁ.ଏନ୍.ଭକିଲ ଓ ଅନ୍ୟଜଣେ ଇଉରୋପୀୟ ସଭ୍ୟ ଆସି ଏଠାରୁ ପ୍ରାୟ କୋଡିଏ ଜଣଙ୍କୁ ଏକାଠି କରି ଗୋଖଲେଙ୍କ ବଙ୍ଗଳା ପଛପଟେ ମହାନଦୀ କୂଳ ତାଙ୍କ ଲନ୍‌ରେ ବୈଠକ ବସି, ଗୋଖଲେ ସଭାପତି, ପାଣିଗ୍ରାହୀ ଓ ମୁଁ ଜଏଣ୍ଟ ସେକ୍ରେଟାରୀ ନିର୍ବାଚିତ ହୋଇ କଟକ ରୋଟାରୀ କ୍ଲବ ଗଠିତ ହେଲା । ପ୍ରତି ମଙ୍ଗଳବାର ସାପ୍ତାହିକ ବୈଠକ ହେବା ସ୍ଥିର ହେଲା । ଏହା ୧୯୪୫ ମସିହାର କଥା । ଓଡିଶାର ପ୍ରଥମ ରୋଟାରୀ କ୍ଲବ । ବିହାରରେ ସେତେବେଳକୁ ଦୁଇଟି ଥିଲା, ଜାମସେଦପୁର, ପାଟନା । ପାଣିଗ୍ରାହୀ ସବୁ ବୈଠକକୁ ଆସନ୍ତି, କହନ୍ତି ଭଲ, କିନ୍ତୁ କ୍ଲବର ସବୁ ଦାୟିତ୍ୱ ପଡିଲା ଗୋଖଲେ ଓ ମୋ ଉପରେ, ପାଣିଗ୍ରାହୀ ନାମକୁ ରହିଲେ ଅନ୍ୟ ଜଣେ ଜଏଣ୍ଟ ସେକ୍ରେଟାରୀ ହୋଇ । ରେଭେନ୍‌ସା କଲେଜ ପଶ୍ଚିମ ଛାତ୍ରାବାସ ୟୁନିଭରସିଟି ଅଫିସରେ ପ୍ରଥମେ କେତେମାସ, ପରେ ବର୍ଦ୍ଧମାନ କୋଠିରେ, ତାପରେ ନାରୀସଂଘରେ ରୋଟାରୀ କ୍ଲବର

Digitized by srujanika@gmail.com

ସଭା ହେଉଥିଲା । ରୋଟାରୀ ଇଣ୍ଟରନାସନାଲରୁ ଚାର୍ଟର ଦେବାପାଇଁ ରୋଟାରୀ ଗଭର୍ଣ୍ଣର ନୀତିଶଚନ୍ଦ୍ର ଲାହିରୀ କଟକ ଆସିଥିଲେ । ରାଜ୍ୟପାଳ ଲୁଇସ ସାହେବ, କମିଶନର ମାରଉଡ ପ୍ରଭୃତି ପ୍ରାୟ ଏକଶତ ଜଣଙ୍କ ଉପସ୍ଥିତିରେ ଏକ ନୈଶ ଭୋଜିରେ ଗୋଖଲେଙ୍କ ସଭାପତିତ୍ୱରେ ଲାହିରୀ ଚାର୍ଟର ପ୍ରଦାନ କଲେ । ସେଠାରେ ସମ୍ପାଦକ ଭାବରେ ମତେ ସଭା ପରିଚାଳନା କରିବାକୁ ହେଲା । ପାଣିଗ୍ରାହୀ ଧନ୍ୟବାଦ ଦେଲେ । ଉତ୍ସବମୁଖର ସେ ସନ୍ଧ୍ୟା ଅନେକ ଦିନଯାଏ ସ୍ମରଣୀୟ ହୋଇଥିଲା । ୧୯୫୫ରେ ମୁଁ ସଭାପତି ଥିଲାବେଳେ ଓଡିଶାର ଦ୍ୱିତୀୟ ରୋଟାରୀ କ୍ଲବ ଗଞ୍ଜାମ ବ୍ରହ୍ମପୁରରେ ସ୍ଥାପନ କରିଥିଲୁ । ବିଶ୍ୱବିଦ୍ୟାଳୟ ପରି ରୋଟାରୀ ସହିତ ମୂଳରୁ ନିବିଡ ଭାବରେ ଜଡିତ ରହିଲି । ସେତେବେଳେ ଭାବି ନଥିଲି ମୁଁ ପରେ ରୋଟାରୀ ଗଭର୍ଣ୍ଣର ହେବି ବୋଲି । ଏସିଆରୁ ପ୍ରଥମ ରୋଟାରୀ ଇଣ୍ଟରନାସନାଲର ପ୍ରେସିଡେଣ୍ଟ ହୋଇଥିଲେ କଲିକତାର ନୀତିଶ୍ ଲାହିରୀ । ମୁଁ ପାଟନା ଗଲାପରେ ସେଠାରେ ପାଟନା ରୋଟାରୀ କ୍ଲବର ମେମ୍ବର ରହିଲି । ୧୯୬୭ ରେ ରୋଟାରୀ ୩୨୫ ଡିସ୍ଟ୍ରିକ୍ଟର ଗଭର୍ଣ୍ଣର ନିର୍ବାଚିତ ହେଲି । ସେତେବେଳେ ବିହାର, ଓଡିଶା, ପଶ୍ଚିମବଙ୍ଗ, ପୂର୍ବ ପାକିସ୍ଥାନ, ନେପାଳ, ସିକିମ୍, ଆସାମ, ମଣିପୁର, ବର୍ମା, ନାଗାଲାଣ୍ଡ ପ୍ରଭୃତି ୩୨୫ ଡିସଟ୍ରିକ୍ଟ ଅନ୍ତର୍ଗତ ଥିଲା । ସେ ସବୁ ଅଞ୍ଚଳର ପ୍ରତ୍ୟେକ ରୋଟାରୀ କ୍ଲବ ପରିଦର୍ଶନ କରି, ରୋଟାରୀ ଅଗ୍ରଗତିରେ ସାହାଯ୍ୟ କରିବା ଗଭର୍ଣ୍ଣରର ମୁଖ୍ୟ ଦାୟିତ୍ୱ ଓ କାର୍ଯ୍ୟ । ସେଥିପାଇଁ ଏକ ସପ୍ତାହ ଆମେରିକାର ଲେକ୍‌ପ୍ଲାସିଡ ଠାରେ ଅଭିଜ୍ଞତାମୂଳକ ଆଲୋଚନାରେ (International Assembly) ଯୋଗଦେବାକୁ ହୋଇଥିଲା । ପୃଥିବୀର ସବୁ ପ୍ରାନ୍ତରୁ ନବ ନିର୍ବାଚିତ ଗଭର୍ଣ୍ଣରମାନେ ସେଠାକୁ ଆସନ୍ତି । ରୋଟାରୀ ଇଣ୍ଟରନାସନାଲର ସମସ୍ତ କର୍ମକର୍ତ୍ତା ଓ ଅନ୍ୟ ଅଭିଜ୍ଞ ପୂର୍ବତନ କର୍ତ୍ତାମାନେ ସେ ଆଲୋଚନାରେ ଅଂଶଗ୍ରହଣ କରନ୍ତି । ଏତେ ଦେଶ ବିଦେଶର ଲୋକଙ୍କ ସଙ୍ଗେ ଆଳାପ ପରିଚୟ ଭିତରେ ମନର ଦିଗ୍‌ବଳୟ ଆପେ ଆପେ ପ୍ରସାରିତ ହୋଇଯାଏ । ସେ ବର୍ଷ ରୋଟାରୀ ଇଣ୍ଟରନାସନାଲ କନ୍‌ଭେନସନ୍ ଫ୍ରାନ୍‌ସର ନିସ୍‌ଠାରେ ହୋଇଥିଲା । ସେଠାକୁ ଯାଇଥିଲି ଯୋଗ ଦେବାକୁ । କୋଡିଏ ହଜାରରୁ ଅଧିକ ରୋଟାରୀଆନ୍ ସମବେତ ହୋଇଥିଲେ । ମତେ ବସା ମିଳିଥିଲା କନ୍‌ଭେନସନ ସ୍ଥଳରୁ ତେର ମାଇଲ ଦୂରରେ, ମୋନାକ୍ ଉପସହରରେ । ପୃଥିବୀବିଖ୍ୟାତ ମଣ୍ଟିକାର୍ଲୋ ପଡିଶାରେ । ସେଠାକୁ ଶ୍ରେଷ୍ଠ ସେଠୀ, ବଣିକ, ଧନୀମାନେ ଆସନ୍ତି ଦ୍ୟୁତକ୍ରୀଡା ପାଇଁ । ସାଗର

Digitized by srujanika@gmail.com

କୂଳରେ ବିରାଟ ସୌଧ । ଦିନେ ସନ୍ଧ୍ୟାରେ ଗଲି ସେଠାକୁ ଦେଖିବାକୁ ଏତେ ପ୍ରସିଦ୍ଧ କ'ଣ ପାଇଁ । ରୂପବତୀନାରୀ, ଐଶ୍ୱର୍ଯ୍ୟବନ୍ତ ନରମାନଙ୍କୁ ସୁରାପାତ୍ର ହସ୍ତରେ ଘେରିଥାନ୍ତି ଅବଗୁଣ୍ଠିତ ଆଲୋକର ସ୍ତିମିତ ଆଭାରେ । ଦୈହିକ ରୂପ ଅପେକ୍ଷା ପ୍ରସାଧନ ପରିଧେୟର ରୂପକଳାରେ ନରନାରୀ ଅଧିକ ସଜ୍ଜିତ । ଯେଉଁ ଘରମାନଙ୍କରେ ଦ୍ୟୁତକ୍ରୀଡା, ସେଠାରେ ଗଦାଗଦା ନୋଟ । ସମସ୍ତେ ବିହ୍ୱଳ ହୋଇ ଚାହିଁବସି ଥାଆନ୍ତି ଟେବୁଲ ଉପରକୁ ତାଙ୍କ ପାଲି କେତେ ଚାଲିଲା । କାହାରି ମନରେ ଫୂର୍ତ୍ତି ଦିଶିଲା ନାହିଁ । ସମସ୍ତେ ନିସ୍ତବ୍ଧ, ଶଙ୍କିତ । ଶୁଣିଲି, ମୁହୂର୍ତ୍ତକେ ଲକ୍ଷ ଲକ୍ଷ ଡଲାର, ଫ୍ରାଙ୍କ, ପାଉଣ୍ଡ ହାତରୁ ହାତକୁ ଚାଲିଯାଏ । ଧନପତିଙ୍କର ମର୍ଯ୍ୟାଦାର ତୀର୍ଥ ସେ । କାଙ୍ଗାଳଙ୍କର ମଧ ଆଶା ମରିଚିକା । ଆମେ ଦୁଇସଙ୍ଗୀ ଏ କୂଳର ନୋହୁଁ କି ସେ କୂଳର ନୋହୁଁ । ବିନା ଖର୍ଚ୍ଚରେ, ବିନା ପ୍ରଣିପାତରେ ତୀର୍ଥ ଦର୍ଶନରୁ ଫେରିଲୁ ।

ମଣ୍ଟରିଅଲରେ ବିଶ୍ୱବିଦ୍ୟାଳୟ କନଫରେସନ୍ ଦେଖିଥିଲି । ରୋଟାରୀ କନ୍‌ଭେନ୍‌ସନ୍ ତାକୁ ବଳି ପଟାଟୋପରେ ତିନିଦିନ ଚାଲିଲା । ମୋର ତୁଣ୍ଡ ଫିଟିବାର ସୁଯୋଗ ନଥିଲା । ରିଚାର୍ଡ ଇଭାନ୍‌ସ ଥିଲେ ବିଦାୟୀ ଇଣ୍ଟରନାସନାଲ ପ୍ରେସିଡେଣ୍ଟ । ଈଶ୍ୱରବିଶ୍ୱାସୀ, ସରଳ, ସାଧୁ । ବକ୍ତୃତା ତାଙ୍କର ଚର୍ଚ୍ଚରେ ପ୍ରାର୍ଥନା ପରି । ତାଙ୍କଠାରୁ ଦାୟିତ୍ୱ ନେଲେ ଲୁଥର ହଜେସ୍ । ପ୍ରଶାସନ ଅଭିଜ୍ଞ, ଦାମ୍ଭିକ । ଯୁକ୍ତରାଷ୍ଟ୍ରର ଏକ ପୂର୍ବତନ ସଞ୍ଚାଳକ । ଫ୍ରାନ୍‌ସର ସୁନିପୁଣ ସୁଶ୍ରୀ କଳାକାରମାନଙ୍କର ସଙ୍ଗୀତ, ନୃତ୍ୟର ପରାକାଷ୍ଠା ଦେଖିବାର ସୌଭାଗ୍ୟ ମିଳିଲା କନ୍‌ଭେନ୍‌ସନ୍‌ର ନୈଶ ଭୋଜିରେ । ମଦିରାର ତାରଲ୍ୟ ଝଲକ ହାତରେ ନଥିଲେ, ମୋ ପରି ସଙ୍ଗହୀନ ହୋଇ କୋଣାଶ୍ରୟ ଗ୍ରହଣ କରିବାକୁ ପଡେ । ଅଧିକ ମଦ୍ୟପି,ଅଧିକ ଭ୍ରାମ୍ୟମାନ ହୁଅନ୍ତି ଅବଶ ହୋଇ ଅନ୍ୟର ଆଶ୍ରୟ ପାଇବା ଯାଏ । ଭୋଜି, ନୃତ୍ୟ ଗୀତର କୋଳାହଳ ମଧରେ ପୃଥିବୀର ସର୍ବଦେଶର ନରନାରୀଙ୍କୁ କର୍ମ ନିବୃତ୍ତ ଉଲ୍ଲାସ ଆନ୍ଦୋଳିତ ଅବସ୍ଥାରେ ଦେଖିବାର ଦୁର୍ଲ୍ଲଭ ସୁଯୋଗ ଏତେ ସହଜରେ ମିଳିବାର ଆଶା ମୁଁ କରିନଥିଲି । ଅଧିକ ଆମୋଦପ୍ରଦ ହେଲା ସମୁଦ୍ର ତୀରରେ ଅନ୍ୟ ଏକ ସନ୍ଧ୍ୟା । ସେଦିନ ଥିଲା ବାର୍ଷିକ ପୁଷ୍ପମେଳା । ସହରର ସମସ୍ତେ ସାଗରବେଳାରେ । ପ୍ରୋସେସନ କରି ଆସିଲା ପୁଷ୍ପଭାର; ଘୋଡାପିଠିରେ, ଗଧପିଠିରେ, ହାତଟଣା ଶକଟରେ, ମଟରଗାଡିରେ, ବିଭିନ୍ନ ଆକାରର (ଶତାଧିକ) ଘୋଡାଗାଡିରେ, ତରୁଣୀ ମୁଣ୍ଡରେ, ବହୁରୂପୀ କାନ୍ଧରେ । କେତେ ସହସ୍ର ପୁଷ୍ପଭାର, ଇୟତ୍ତା ନାହିଁ । ଏତେ ପୁଷ୍ପ, ଏତେ

Digitized by srujanika@gmail.com

ପ୍ରକାରର, ଏତେ ଆକାରର କିପରି ଗୋଟିଏ ସହରରୁ ବାହାରିଲା, ଆଶ୍ଚର୍ଯ୍ୟ ଲାଗିଲା । ଏତେ ସବୁ ପ୍ରାକୃତିକ ପୁଷ୍ପ ସମ୍ଭାର । ତାପରେ ଫିଟିଲା କୃତ୍ରିମ ଫୁଲର ବର୍ଷାଧାରା । ଅଦ୍ଭୁତ ସେ । ସମସ୍ତେ ଫିଙ୍ଗିଲେ ପରସ୍ପରକୁ ଫୁଲର ପ୍ରୀତି ସମ୍ଭାଷଣ । ସାଗରର ନୈସର୍ଗିକ ଦୃଶ୍ୟ ସଙ୍ଗେ ଏ ଜନସମାବେଶ ଅକଳନ ପୁଷ୍ପର ସୁଶୋଭନ ସୁବାସ ମୋ ପାଇଁ ଏକ ଇନ୍ଦ୍ରଜାଲ ସୃଷ୍ଟି କଲା । ଭାଗ୍ୟବାନ ସେ ନଗରବାସୀ ଯାହାଙ୍କୁ ଏ ଅମୃତ ଉପଭୋଗ ପ୍ରତିବର୍ଷ ମିଳେ ।

କନ୍‌ଭେନସନରୁ ଫେରି ୧୯୬୭ ଜୁଲାଇ ଠାରୁ ବର୍ଷେ ଗଭର୍ଣ୍ଣର ହୋଇ ବହୁ ସ୍ଥାନକୁ ଗଲି ରୋଟାରୀ କ୍ଲବ ପରିଦର୍ଶନରେ ବା ରୋଟାରୀ କ୍ଲବ ସ୍ଥାପନ ପାଇଁ । ସେ ଏକ ଅନୁଭୂତି ସମାଜସେବାର ପ୍ରତୀକ । ମୋ ପକ୍ଷରେ ତାହା କଷ୍ଟସାଧ ହେଲା, କାରଣ ହାଇକୋର୍ଟ ଜଜ୍ କାମ ଅବ୍ୟାହତ ରଖି, କେବଳ ଶନିବାର, ରବିବାର ଓ ଅନ୍ୟ ଛୁଟି ଦିନରେ ରୋଟାରୀ କାର୍ଯ୍ୟ, ଅର୍ଥାତ୍ ଦୂରଦୂରାନ୍ତକୁ ଗାଡି, ଟ୍ରେନ୍ ବା ପ୍ଲେନରେ ଯିବାପାଇଁ ସମୟ ଟାଣ ଟୁଣ ପଡୁଥିଲା । ସେ ବର୍ଷଟି କଷ୍ଟରେ, କିନ୍ତୁ କିଛି ସାଧାରଣ ହିତକର କାର୍ଯ୍ୟ କରୁଥିବାର ଅନୁଭୂତିରେ କଟିଲା । ପ୍ରତି କ୍ଲବରେ ଆଲୋଚନା, ସମୀକ୍ଷା, ବକ୍ତୃତା ଓ ଭୋଜି ଅପରିହାର୍ଯ୍ୟ ଥିଲା । ବାର୍ଷିକ କନଫରେନ୍‌ସ କଲିକତାରେ ହେଲା ୧୯୬୮ ମାର୍ଚ୍ଚ ମାସରେ ବିପୁଳ ଆକାରରେ ମୋ ପୌରୋହିତ୍ୟ ଓ ପରିଚାଳନାରେ । କଲିକତାର ବହୁ ରୋଟାରିଆନ ବନ୍ଧୁଙ୍କର ଅକୁଣ୍ଠ ସାହାଯ୍ୟ ନ ମିଳିଥିଲେ, ମୁଁ ହତାଶ ହୋଇ ଥାଆନ୍ତି । ତାହା ପୂର୍ବରୁ ବାଟାନଗରରେ ଏବଂ ପରେ ଜୁନ୍ (୧୯୬୮) ମାସରେ ଦିଘା ସାଗର କୂଳରେ ଡିସ୍‌ଟ୍ରିକ୍ଟ ଆସେମ୍ବ୍ଲି ଆୟୋଜନ କରିବାକୁ ହୋଇଥିଲା । ସୁରୁଖୁରୁରେ ତାହା ମଧ ହୋଇଗଲା । ଗଭର୍ଣ୍ଣର ଯାତାୟାତ ଖର୍ଚ୍ଚ ରୋଟାରୀ ଇଣ୍ଟରନାସନାଲରୁ ମିଳେ । ଅନ୍ୟ ଖର୍ଚ୍ଚ ହାତରୁ । ଦେହକୁ ବାଧକ ଡମର । ରାଞ୍ଚି, ରାମଗଡ ରୋଟାରୀ କ୍ଲବକୁ ଦୁଇଦିନ ପାଇଁ ଯାଇ ସୋମବାର ସକାଳେ ପାଟନା ଫେରି ସଙ୍ଗେ ସଙ୍ଗେ ହାଇକୋର୍ଟକୁ ଗଲି । ଇଜଲାସରେ ବସିଛି, ବାରଟାବେଳକୁ ହଠାତ୍ ଅସୁସ୍ଥ ଲାଗିଲା, ଉଠି ଚେମ୍ବରକୁ ଆସିଲାବେଳେ ଲିଫଟ୍‌ରେ ଅଜ୍ଞାନ ହୋଇ ପଡିଗଲି ଅଳ୍ପକ୍ଷଣ ପାଇଁ । ହାଇକୋର୍ଟରେ ଚହଳ ପଡିଗଲା । ମୁଁ ଅପ୍ରସ୍ତୁତ ବୋଧ କରୁଥାଏ । ଜଣେ ହାଇକୋର୍ଟ କର୍ମଚାରୀ ସଙ୍ଗେ ସଙ୍ଗେ ତାଙ୍କ ହାତବ୍ୟାଗ ବାକ୍ସରୁ ହୋମିଓପାଥି ଔଷଧ ଦେଲେ । ଜଜମାନଙ୍କ ମଧରୁ କୁହାକୋହି ହେଉଥାନ୍ତି, ଏ ଆଡେ ଜଜ୍, ସେଆଡେ ରୋଟାରୀ ଗଭର୍ଣ୍ଣର; ପାରି ଉଠିବା କଣ

Digitized by srujanika@gmail.com

ସହଜ ? ଡାକ୍ତର ଆସିଲେ, କହିଲେ, କିଛି ନାହିଁ exhaustion. ସମସ୍ତଙ୍କ ଚିନ୍ତା ଭାଙ୍ଗିଲା । ମୋ ଚିନ୍ତା ବଢ଼ିଲା ଆଉ ବାକୀ କ୍ଲବ ସବୁ କିପରି ସାରିବି । ଜୁନ୍ ମାସ ୩୦ ତାରିଖ ସୁଦ୍ଧା ସାରିଲି । ଶେଷ କ୍ଲବ ଥିଲା ବିହାର ସରିଫ, ପାଟନାଠାରୁ ୩୦ ମାଇଲ ଦୂର । ମୋ ବର୍ଷ ଶେଷ ହେବାର ପାଞ୍ଚବର୍ଷ ପରେ ନିୟମ ହେଲା ଗଭର୍ଣ୍ଣର ପ୍ରଥମ ଛଅମାସ–ଡିସେମ୍ବର ଶେଷ–ଭିତରେ ସମସ୍ତ କ୍ଲବ ପରିଦର୍ଶନ ଶେଷ କରିବେ । ମୋ ବେଳେ ସେ ନିୟମ ଥିଲେ, ମୁଁ ଗଭର୍ଣ୍ଣରସିପ୍ ପ୍ରତ୍ୟାଖ୍ୟାନ କରିବାକୁ ବାଧ ହୋଇଥାଆନ୍ତି ।

ଆଉଥରେ ଯାଇଥିଲି କନ୍‌ଭେନ୍‌ସନକୁ ୧୯୮୦ରେ । ସିକାଗୋରେ ହୋଇଥିଲା । ରୋଟାରୀର ଜନ୍ମସ୍ଥଳ, ବର୍ତ୍ତମାନର କାର୍ଯ୍ୟାଳୟ ବିରାଟ ସୌଧ ଦେଖିବାର ସୁଯୋଗ ମିଳିଲା । ବିଦେଶୀ ବହୁ ବନ୍ଧୁଙ୍କ ଭେଟ ହେଲା । ଜଳ (ବିଶାଳ ହ୍ରଦ) ସ୍ଥଳର ସମନ୍ୱୟରେ ସିକାଗୋ ସହର ଅପୂର୍ବ । ସେଠାରେ ସର୍ବବୃହତ୍ ଅଟ୍ଟାଳିକା, ମ୍ୟୁଜିୟମ ଦର୍ଶନୀୟ । ମୋ ପକ୍ଷରେ ଦ୍ରଷ୍ଟବ୍ୟ ହେଲା, ବିରାଟକାୟ କୃଷ୍ଣକାୟ ନିଗ୍ରୋମାନଙ୍କର ଧସେଇ ପଶିଲା ଗତିବିଧି । ଆମେରିକାର ଯେତେ ସ୍ଥାନ ମୁଁ ପୂର୍ବରୁ ଦେଖିଥିଲି, ସେଠାରେ ଏପରି ଲକ୍ଷ୍ୟ କରିନଥିଲି । ନିଗ୍ରୋମାନେ ସେଠାରେ ଅବହେଳିତ ବୋଲି ଧାରଣା ଥିଲା । ସିକାଗୋରେ ଦେଖିଲି ତାଙ୍କୁ ବରଂ ଡରୁଥିଲେ ଶ୍ୱେତକାୟ ଆମେରିକାନ୍ । ସବୁ ଟ୍ୟାକ୍‌ସି, ବସ୍‌ର ଡ୍ରାଇଭର ସେମାନେ । କଥା ଫିଙ୍ଗା ପକା । ନିଃସଙ୍ଗ ତରୁଣୀ ସେ ଟ୍ୟାକ୍‌ସିରେ ଯିବାପାଇଁ ଦ୍ୱିଧାଗ୍ରସ୍ତ ଥିବା ଅନେକବାର ଦେଖିଲି । ସିକାଗୋରେ ଥିବା ଓଡିଆମାନେ ମୁଁ ଯାଇଥିବାର ଜାଣି, ନୈଶ ଆହାର ପାଇଁ ଏକଜୁଟ ହୋଇଥିଲେ । ବଡ ଆନନ୍ଦ ହେଲା ସେମାନଙ୍କୁ ଦେଖି ଓ ଆଳାପ କରି । ସେଠାରେ ସମ୍ବଲପୁରର ଶ୍ରଦ୍ଧାକର ସୂପକାରଙ୍କ ପୁଅ ରାଜେନ୍ଦ୍ର ମତେ ଖଣ୍ଡିଏ ଚିଠି ଦେଖାଇଲେ । ସେଥିରେ ଶ୍ରଦ୍ଧାକରବାବୁ ପୁଅକୁ ଲେଖିଥିଲେ, ମୁଁ ସିକାଗୋ ଯାଉଥିବାର ସେ ଖବର କାଗଜରୁ ପଢ଼ିଥିଲେ । ପୁଅ ଯେପରି ମୋ ସଙ୍ଗେ ସାକ୍ଷାତ କରେ । ମୋର ଅନ୍ୟ ଏକ ବନ୍ଧୁପୁତ୍ର ଭବେଶ ଦାସ, ତାଙ୍କ ଜମଜ ଭାଇ ପରେଶ ଦାସଙ୍କଠାରୁ ଜାଣିଥିଲେ, ମୋ ଯିବା କଥା । ସେଠା ବନ୍ଧୁମେଳରେ ସାକ୍ଷାତ ହେଲା, ଆମ ଗାଁର ସୁଧାଂଶୁ ମିଶ୍ରଙ୍କ ସଙ୍ଗେ । ସେ ସେଠାରେ ଥିବା କଥା ମତେ ଆଗରୁ ଜଣା ନଥିଲା ବା ମନେ ନ ଥିଲା । ସେ ଦୁହିଁଙ୍କ ଘରକୁ ଯାଇ ତାଙ୍କ ପରିବାରଙ୍କୁ ଦେଖି ବଡ ଖୁସି ହେଲି । ଆଉଜଣେ ବନ୍ଧୁ କନ୍ୟା ସେଠା ବିଶ୍ୱବିଦ୍ୟାଳୟରେ ଭୁଗୋଳ

Digitized by srujanika@gmail.com

ଗବେଷଣାରତ ଥିଲା । ସେ କଥା ମନେ ନ ଥିବାରୁ ଦେଖାହେଲା ନାହିଁ । ସେ ପରେ ମତେ ଦୋଷ ଦେବାର କଥା, ଦେଲା । ସିକାଗୋରେ ରହିଲି ଏକ ସପ୍ତାହରୁ ଉର୍ଦ୍ଧ୍ୱ । ପ୍ରଥମ ପାଞ୍ଚଦିନ ହ୍ରଦ ତଟର ଏକ ହୋଟେଲରେ । ଶେଷ ଚାରିଦିନ ବିମାନବନ୍ଦର ନିକଟ ବିରାଟ ହାଇଆଟ୍ ହୋଟେଲରେ । ସେଠାରେ ରୋଟାରୀ କାଉନସିଲ ଅନ୍ ଲେଜିସ୍ଲେସନ୍ ବସିଥିଲା । ମୁଁ ଥିଲି ଜଣେ ନିର୍ବାଚିତ ପ୍ରତିନିଧି । ଅଧକ୍ଷତା କଲେ ଯୁକ୍ତରାଷ୍ଟ୍ରର ଜଣେ ପୂର୍ବତନ ସିନେଟ୍ ସଭ୍ୟ, ଯେ ବାଚସ୍ପତିର କାର୍ଯ୍ୟ କିଛି କରିଥିଲେ । ଅପୂର୍ବ ଦକ୍ଷତା ଦେଖିଲି । ଆମେ ପ୍ରତିନିଧି ଥିଲୁ ପ୍ରାୟ ତିନିଶତ । ଅନେକ କହିବାକୁ ଉଦ୍‌ଗ୍ରୀବ୍ । ଚିଠା ଲେଜିସ୍ଲେସନ୍ ପ୍ରାୟ ଦୁଇଶତ । ସମୟ ମାତ୍ର ତିନି ଦିନ । ସକାଳ ନଅରୁ ଦିନ ଏକ, ପୁଣି ତିନରୁ ପାଞ୍ଚ । ସେଠାରେ ଯାହା ସ୍ଥିର ହେବ, ପୃଥିବୀର ସବୁ କ୍ଲବକୁ ଯିବ । କୌଣସି ସିଦ୍ଧାନ୍ତ ବିରୁଦ୍ଧରେ କ୍ଲବମାନଙ୍କର ଏକ ଦଶମାଂଶରୁ ଅଧିକ କ୍ଲବ ଆପତ୍ତି ଉଠାଇଲେ, ତାହାର ଫଇସଲା ହେବ ଆଗାମୀ କନ୍‌ଭେନ୍‌ସନ୍‌ରେ । ତେଣୁ କାଉନସିଲ୍‌ର ଦାୟିତ୍ୱଭାର ଅଧିକ । ଅଧକ୍ଷଙ୍କର ତତ୍ପରତା ନ ଥିଲେ କାର୍ଯ୍ୟ ଶେଷ ହେବା କଷ୍ଟକର । ଆଲୋଚନା ହୁଏ ଚାରିଭାଷାରେ, ଫ୍ରେଞ୍ଚ, ଇଂରେଜୀ, ଜାପାନୀ, ପର୍ତ୍ତୁଗୀଜ କିନ୍ତୁ ନିଷ୍ପତ୍ତି ଘୋଷିତ ହୁଏ ଇଂରେଜୀରେ । ସନ୍ଧ୍ୟାରେ କାଉନ୍‌ସିଲର ବା କାଉନ୍‌ସିଲ ତରଫରୁ କୌଣସି ପ୍ରୋଗ୍ରାମ ନଥାଏ । ଆଶ୍ଚର୍ଯ୍ୟ ହେଲି, ଏତେବଡ ସଭ୍ୟ ଦେଶରେ, ଏତେବଡ ସଭ୍ୟ, ଭବ୍ୟ ବଡ ହୋଟଲରେ ବାରବନିତାଙ୍କ ଅବାଧ ପ୍ରବେଶ ଦେଖି । ବାରବନିତା କାଗଜ କଲମରେ ନୁହନ୍ତି ମାତ୍ର ସେହି ଶ୍ରେଣୀର, ସନ୍ଦେହ ନାହିଁ । କିଣା ବିକା, ବୁଲାବୁଲି ଥିଏଟର ଅରକେଷ୍ଟ୍ରାରେ ସହାୟକ ହେବାପାଇଁ ଇଚ୍ଛୁକ ଥାଇ ସେମାନେ ହୋଟେଲର ମୁଖ୍ୟ ଅଂଶରେ ଗଚ୍ଛରତ ଥାଆନ୍ତି । ଶିକ୍ଷା ଅଛି, ଦୀକ୍ଷା ନାହିଁ । କର୍ମ ସଂସ୍ଥାନର ଅଭାବ ଏତେ ଉତ୍କଟ ଅବସ୍ଥାକୁ ସେ ଦେଶରେ ଗଲାଣି ଦେଖି ଆଶ୍ଚର୍ଯ୍ୟ ଓ ଦୁଃଖ ଲାଗିଲା । ଏପରି ଦୁରାଚାର ଆମେରିକାର ଅନ୍ୟ କୌଣସି ସହରର ପ୍ରଖ୍ୟାତ ହୋଟେଲରେ ଦେଖିନାହିଁ ।

କଟକରେ ରୋଟାରୀ ସୂତ୍ରପାତ କରି ତାହା ସହିତ, ବିଶ୍ୱବିଦ୍ୟାଳୟ ସହିତ ଯେପରି, ମୂଳରୁ ଜଡିତ ରହିଲି, ମଝିରେ ଦଶବର୍ଷ ପାଟନା ରୋଟାରୀ କ୍ଲବରେ ସେପରି ଥିଲି ।୧୯୪୫ ଠାରୁ ଏହା ମଧ୍ୟରେ ଓଡିଶାର ଷାଠିଏ ରୋଟାରୀ କ୍ଲବ ହେଲାଣି ଏବଂ ୧୯୮୪ ଜୁଲାଇ ଠାରୁ କେବଳ ଓଡିଶା ଓ ମଧ୍ୟପ୍ରଦେଶର ଏକ ଅଂଶକୁ ନେଇ ସ୍ୱତନ୍ତ୍ର ରୋଟାରୀ ଜିଲ୍ଲା ହେବ । ବର୍ତ୍ତମାନ ପୃଥିବୀର ୧୫୮ ଦେଶରେ

Digitized by srujanika@gmail.com

୨୦୩୯୬ କ୍ଲବ ହୋଇ ସାରିଲାଣି । ପ୍ରତି ବୃତ୍ତି, ବ୍ୟବସାୟ ପିଛା ଏକ ହିସାବରେ ୯ ଲକ୍ଷ ୩୦ ହଜାର ୫୦୦ ମେମ୍ବର ହୋଇଛନ୍ତି । ଏଡେବଡ ସମାଜ ସଂସ୍ଥା ଆଉ ନାହିଁ । କ୍ଲବ ଓ ଜିଲ୍ଲାସ୍ତରରେ ଲୋକ ସାହାଯ୍ୟ ଛଡା, ଆନ୍ତର୍ଜାତିକ ସ୍ତରରେ ରୋଟାରୀ ଫାଉଣ୍ଡେସନକୁ ପ୍ରତି ରୋଟାରୀଆନ ବାର୍ଷିକ କୋଡିଏ ଡଲାର । (ଦୁଇଶତ ଟଙ୍କା) ଦିଅନ୍ତି ଓ ଆଉ ଅଧିକ ଅନ୍ୟ କେତେକ ଦିଅନ୍ତି । ବର୍ଷକେ ପ୍ରାୟ ଅନ୍ତତଃ କୋଡିଏ କୋଟି ଟଙ୍କା ଆଦାୟ ହୁଏ । ଏହା ଖର୍ଚ୍ଚ ହୁଏ ହାରାହାରି ବାର୍ଷିକ ତେରଶହ ଯୁବକ ଯୁବତୀଙ୍କୁ ଏକ ବର୍ଷ ଅନ୍ୟ ଦେଶରେ ରହି ପଢ଼ିବା ପାଇଁ ବୃତ୍ତି ଦେବାରେ ଏବଂ ଦେଢ଼ଶହଟି ଛଅଜଣିଆ ଟିମ୍ ଛଅ ସପ୍ତାହରୁ ଆଠ ସପ୍ତାହ, ବିଦେଶରେ ରୋଟାରିଆନଙ୍କ ପରିବାର ସଙ୍ଗେ ରହି ସେଠାରେ ମାନବିକତା, ସାମାଜିକତା ସମ୍ବନ୍ଧରେ ଅଭିଜ୍ଞତା ଲାଭ କରିବା ପାଇଁ ପଠାଇବାରେ । ଏହା ବ୍ୟତୀତ ସତୁରୀରୁ ଅଧିକ ଅନ୍ୟ ବ୍ୟାପକ ଜନସେବା କାର୍ଯ୍ୟକ୍ରମ ବିସ୍ତାରିତ ରୂପରେ ଗ୍ରହଣ କରାଯାଇଥାଏ । ପୃଥିବୀରେ ଏ ପର୍ଯ୍ୟନ୍ତ ଏ ପ୍ରକାର ଓ ଏତେ ବୃହତ୍ ସେବା ଉପରେ କାର୍ଯ୍ୟ ଓ ବ୍ୟୟ କୌଣସି ସ୍ୱେଚ୍ଛାସେବୀ ଅନୁଷ୍ଠାନ କରିବାର ଜଣା ନାହିଁ । ଏ ସଂସ୍ଥା ଓଡିଶାକୁ ଆଣିବାରେ ମୋ ହାତ କେତେକ ଅଂଶରେ ଥିବାରୁ, ମୋର ଆନନ୍ଦ ।



Digitized by srujanika@gmail.com

# ଯୁଦ୍ଧବେଳେ

ଦ୍ୱିତୀୟ ମହାସମର ୧୯୩୯ ସେପ୍ଟେମ୍ବରରେ ଆରମ୍ଭ ହୋଇ ଦୁନିଆକୁ ତୋଳପାଡ କଲା । ୧୯୧୪ରୁ ୧୯୧୮ ପର୍ଯ୍ୟନ୍ତ ସମରବେଳେ ସ୍କୁଲରେ ଆମେ ଛାତ୍ର । ଯୁଦ୍ଧ ସମ୍ବନ୍ଧରେ ପ୍ରତି ସପ୍ତାହରେ ଦିନେ ମାନଚିତ୍ର ସାହାଯ୍ୟରେ ହେଡମାଷ୍ଟରଙ୍କ ଠାରୁ ବକ୍ତୃତା ଶୁଣୁଥିଲୁ । ଯୁଦ୍ଧର ଅନ୍ୟ ପ୍ରଭାବ ସମ୍ବନ୍ଧରେ ସଚେତନ ନ ଥିଲୁ । ଦ୍ୱିତୀୟ ଯୁଦ୍ଧବେଳକୁ ପ୍ରତ୍ୟକ୍ଷ ଧକ୍କା ଆସି ବାଜିଲା । ସେତେବେଳକୁ ବିଶ୍ୱନାଥ ଦାସଙ୍କ ନେତୃତ୍ୱରେ ଓଡିଶାରେ କଂଗ୍ରେସ ମନ୍ତ୍ରିମଣ୍ଡଳ । ବିଶ୍ୱନାଥବାବୁ ରହୁଥିଲେ ନିମଚଉଡି ପାଖ ପ୍ରିୟନାଥ ଭବନ ଦୋତାଲା କୋଠାରେ । ବୃହତ୍ ଖୋଲାଛାତ ମୁକ୍ତାଙ୍ଗନ ପରି ଥାଏ । ସନ୍ଧ୍ୟାବେଳେ ସେଠାରେ ଅଧିକାଂଶ ଦିନ ବନ୍ଧୁମାନେ ମିଳିତ ହୁଅନ୍ତି । ଲିଙ୍ଗରାଜ ବାବୁ (ମିଶ୍ର), ରାଧାନାଥ ବାବୁ ଓ ମୁଁ ଯାଉ । ଆଚାର୍ଯ୍ୟ ମହାଶୟ ବେଳେବେଳେ ଆସନ୍ତି । ଆଲୋଚନାରେ କିଛି ବାଦ୍ ଯାଏନାହିଁ । ସେହି ଛାତ ଉପରେ ବିଶ୍ୱନାଥବାବୁ ସବୁ ଉଚ୍ଚ ଅଫିସରମାନଙ୍କୁ ଏକ ନୈଶ ଭୋଜି ଦେଇଥିଲେ, ତଳେ ଆସନ, କଦଳୀପତ୍ର ପକାଇ । ସାହେବମାନେ ଆସିଥିଲେ ଡିନର ସୁଟ୍‌ପିନ୍ଧି । ଆମେ ଓ ଭାରତୀୟ ଅଫିସରମାନେ ଥିଲୁ ଧୋତି ପରିହିତ । ବିଶ୍ୱନାଥବାବୁଙ୍କ ଟାଣୁଆପଣ ଅନେକ କ୍ଷେତ୍ରରେ ବେଶ୍ ପ୍ରକାଶ ପାଉଥିଲା । ଥରେ ଲାଟ୍‌ସାହେବ ହବାକ୍ କଥାବାର୍ତ୍ତାବେଳେ ଅସହିଷ୍ଣୁ ହୋଇ ତାଙ୍କୁ କହିଲେ, Do you know whom you are speaking to, ତତ୍‌କ୍ଷଣାତ୍ ବିଶ୍ୱନାଥବାବୁ ଉତ୍ତର ଦେଇଥିଲେ, I know, Prime Minister (ସେତେବେଳେ ମୁଖ୍ୟମନ୍ତ୍ରୀଙ୍କୁ ପ୍ରାଇମ୍ ମିନିଷ୍ଟର)is talking to the Governor. ଲାଟ ତୁନିପଡିଲେ । ଜେ. ଆର.ଡେନ୍. (ଆଇ.ସି.ଏସ୍) ରେଭେନ୍ୟୁ କମିଶନର ଥାଆନ୍ତି । ହବାକ୍ କେତେମାସ ଛୁଟିରେ ବିଲାତ ଯାଉଥିବାରୁ ଡେନ୍ ତାଙ୍କ ସ୍ଥାନରେ ଲାଟ ହେବାର ସ୍ଥିର ହେଲା । ହବାକ୍ ବୁକୁଚାବାନ୍ଧି ପ୍ରସ୍ତୁତ ଯିବା ପାଇଁ, ଡେନ୍ ଲାଟ ପୋଷାକ ତିଆରି କରି ଶପଥ ନେବା ପାଇଁ ମଧ୍ୟ ପ୍ରସ୍ତୁତ ।

Digitized by srujanika@gmail.com

ବିଶ୍ୱନାଥ ବାବୁ ଅତିବସିଲେ, ତାଙ୍କ ଅଧୀନରେ କାର୍ଯ୍ୟ କରୁଥିବା ଜଣେ ଅଫିସର ତାଙ୍କ ଉପରେ ଲାଟ ହୋଇନପାରେ । ସେ ବମ୍ବେର ମୁଖ୍ୟମନ୍ତ୍ରୀ ଖେରଙ୍କୁ ରାତି ଅଧରେ ଟେଲିଫୋନ୍ କରି ପରାମର୍ଶ କଲେ (ମୁଁ ଉପସ୍ଥିତ ଥିଲି) । ତା ପରେ ଜଣାଇଲେ ଦିଲ୍ଲୀକୁ ଯେ ଡେନ୍ ସାହେବ ଲାଟ ହେଲେ, ସେ ଇସ୍ତଫା ଦେବେ ଏବଂ ଅନ୍ୟ ପ୍ରଦେଶର କଂଗ୍ରେସ ମନ୍ତ୍ରିମଣ୍ଡଳମାନଙ୍କର ସେଥିରେ ସମର୍ଥନ ରହିଛି । ହବାକ୍ ସାହେବଙ୍କ ଛୁଟିରେ ଯିବା ବନ୍ଦ ହେଲା । ଡେନ୍ ସାହେବ ଅପ୍ରତିଭ ବୋଧ କରି ଛୁଟିରେ ଗଲେ । ବିଶ୍ୱନାଥବାବୁଙ୍କ ନୀତିଗତ ଦାବୀ ରକ୍ଷା ହେଲା । ଥରେ ସେ ସତ୍ୟନାରାୟଣ ସେନଗୁପ୍ତ, ବିଚିତ୍ରାନନ୍ଦ ଦାସ, ଲିଙ୍ଗରାଜ ମିଶ୍ର, ବୀରକିଶୋର ରାୟ (ଆଡଭୋକେଟ୍ ଜେନେରାଲ) ଓ ମତେ ଡାକି ଥାଆନ୍ତି ତାଙ୍କ ଅଫିସକୁ ଗୋଟିଏ ବିଷୟରେ ଆଲୋଚନା କରିବା ପାଇଁ । ଆଲୋଚନା ମଝିରେ ଲିଙ୍ଗରାଜବାବୁ ବାରନ୍ଦାରେ ଯାଉଥିବା ଜଣେ ବ୍ୟକ୍ତିଙ୍କୁ ପାଟିକରି ଡାକିଲେ ଅଫିସ ଘର ଭିତରୁ । ବିଶ୍ୱନାଥବାବୁ ବାଧା ଦେଇ କହିଲେ, ଏଠାରେ ଏପରି ଡାକିବାର ନୁହେଁ । ଦିନେ ସକାଳେ ସେ କେତେଗୁଡିଏ ଫାଇଲ ଧରି, ରାଧାନାଥବାବୁଙ୍କୁ ଓ ମତେ ସଙ୍ଗରେ ନେଇ ଗଲେ ଖଣ୍ଡଗିରି ଡାକବଙ୍ଗଳାକୁ, ଫାଇଲ କାମ ଶେଷ କରିବାକୁ । ସେଥିରେ ଲାଟସାହେବଙ୍କ ସଙ୍ଗେ କିଛି ଭିଡା ଓଟରା ଥିଲା । ତାଙ୍କ ଦୃଢ଼ତା ରୂଢ଼ତା ହୋଇଯାଉଛି କି ନାହିଁ ସେ ପରାମର୍ଶ କରୁଥାନ୍ତି । ସବୁ ପ୍ରଦେଶର କଂଗ୍ରେସ ମନ୍ତ୍ରିମଣ୍ଡଳ ଇସ୍ତଫା ଦେଲେ, ବ୍ରିଟିଶ୍ ସରକାର ଯୁଦ୍ଧ ପରେ ଭାରତକୁ ସ୍ୱାଧୀନତା ଦେବାର ପ୍ରତିଶ୍ରୁତି ନ ଦେଇ, ଭାରତକୁ ଯୁଦ୍ଧରେ ପ୍ରତ୍ୟକ୍ଷ ଭାଗୀଦାର କରି ଯୁଦ୍ଧପାଇଁ ଧନ, ଜନ ଓ ସାମଗ୍ରୀ ଦେଶରୁ ସଂଗ୍ରହ କରିବା ସ୍ଥିର କରିବାରୁ ।

ଜାପାନର ଆକ୍ରମଣ ଭୟରେ, କଟକରୁ ସରକାରୀ ନଥିପତ୍ର ସମ୍ବଲପୁର ନିଆଗଲା । କଟକରେ ଓ ଉପକୂଳବର୍ତ୍ତୀ ସବୁ ସହରରେ ବୋମାମାଡବେଳେ ଲୋକେ ଆଶ୍ରୟ ନେବାପାଇଁ ଭିନ୍ନ ଭିନ୍ନ ସ୍ଥାନରେ ମାଟିତଳେ ଆଶ୍ରୟସ୍ଥଳୀ ତିଆରି ହେଲା । ଘରମାନଙ୍କରେ ଆଲୁଅରେ ଢ଼ାଙ୍କଣା ଦିଆହେଲା । ମଟରଗାଡି ଆଲୁଅ ଉପରେ ତିନିଭାଗ କଳାବୋଳି ଅନ୍ଧାରୁଆ କରାଗଲା । ଚିଫ୍ ଓ୍ୟାର୍ଡେନ (ପରିଜା ସାହେବ), ହେଡ ଓ୍ୟାର୍ଡେନ (ମୁଁ), ଓ୍ୟାର୍ଡେନମାନେ ଅବୈତନିକ ନିଯୁକ୍ତ ହେଲେ ଲୋକଙ୍କ ମଧ୍ୟରେ ସତର୍କତା ରକ୍ଷା କରିବାର ବିସ୍ତୃତ ଆୟୋଜନର ତଦାରଖ କରିବା ପାଇଁ ।

କଙ୍କଡାକୁ ଗୋଲିପାଣି ସୁହାଏ । ଯୁଦ୍ଧ ଆତଙ୍କର ସୁବିଧା ନେଇ ବଡ ବଡ ବ୍ୟବସାୟୀମାନେ ଜିନିଷପତ୍ରର, ବିଶେଷ କରି ଚାଉଳର କୃତ୍ରିମ ଅନଟନ

Digitized by srujanika@gmail.com

ଆରମ୍ଭ କରିଦେଲେ । ପରମିଟ୍ ଚାଲୁହେଲା । ସେହି ସଂକ୍ରାନ୍ତରେ ଅନେକ ଗିରଫଦାର ହେଲେ, ଅନେକଙ୍କ ବିରୁଦ୍ଧରେ କେସ୍ ହେଲା । ଜାମିନ୍ ପାଇଁ ବ୍ୟାକୁଳ ହୋଇ ଆମ ଓକିଲଙ୍କ ପାଖକୁ ଦଉଡିଲେ । ଏଲ.ପି.ସିଂହ (ଆଇ.ସି.ଏସ୍.) କଟକର କଲେକ୍ଟର ଥାଆନ୍ତି । ସ୍ୱାଧୀନ ଚେତା, ଦେଶପ୍ରେମୀ । ଚାକିରୀରେ ମଧ୍ୟ ସଚ୍ଚୋଟ । ସେ ଓ ମୁଁ ସ୍ଥିର କଲୁ, ଯାହାର ଜାମିନ ମଞ୍ଜୁର ହେବ, ସେ ଗରିବପିଲାଙ୍କ ପଢ଼ାରେ କିଛି ସାହାଯ୍ୟ କରିବେ । କେତେ ହଜାର ଟଙ୍କା କଲେକ୍ଟରଙ୍କ ଜରିଆରେ ଆଦାୟ ହୋଇ ରେଭେନ୍‌ସା କଲେଜରେ ଗୋଟିଏ ପାଣ୍ଠି କରାଯାଇଥିଲା । ସେଥିରୁ ଏବେ ବି ସାହାଯ୍ୟ ଦିଆ ଯାଉଛି ।

ସରକାର କଂଗ୍ରେସ ଯୁଦ୍ଧବିରୋଧ କରୁଛି ବୋଲି କଂଗ୍ରେସ ଲୋକଙ୍କ ଗତିବିଧି ଉପରେ କଡାନଜର ରଖିଥାଆନ୍ତି । ଜୟପ୍ରକାଶ ନାରାୟଣ କଟକ ଆସି ଡଃ ବଳଭଦ୍ର ପ୍ରସାଦଙ୍କ ଘରେ କଲେଜ ହତାରେ ଦୁଇଦିନ ରହିଥିଲେ । କଲେକ୍ଟରଙ୍କୁ (ଏଲ.ପି.ସିଂହ) ଉପରୁ ନିର୍ଦ୍ଦେଶ ଆସିଲା ଅନୁସନ୍ଧାନ କରିବାକୁ । ସେ ଉପରକୁ ଲେଖି ପଠାଇଲେ, ତାଙ୍କ ନିଜ ଘରେ ସ୍ଥାନ ଥିଲେ ସେ ନିଜେ ଜୟପ୍ରକାଶଙ୍କୁ ଆତିଥ୍ୟ ଦେଇଥାଆନ୍ତେ । ଜୟପ୍ରକାଶ ବଳଭଦ୍ରପ୍ରସାଦଙ୍କର ବନ୍ଧୁ । ସେ କେବଳ ରହିଥିଲେ ତାଙ୍କ ଘରେ । ସେଠାରେ ସେ ରାଜନୀତି କରି ନଥିଲେ । ରାମମନୋହର ଲୋହିଆ ଥରେ ଲୁଚି କରି କଟକ ଆସିଥିଲେ । ଏଲ.ପି.ସିଂହଙ୍କୁ ଜଣା ଥିଲା । ସେ ନିରବ ରହିଲେ । ତାଙ୍କ ସ୍ତ୍ରୀ ମନୋଭାବରେ ସ୍ୱାମୀ ଅନୁବର୍ତ୍ତିନୀ ଥିଲେ । ସେମାନେ ବିହାରର ଲୋକ । ମୁଁ ପାଟନାକୁ ଗଲାବେଳେ ସେମାନେ ଦିଲ୍ଲୀରେ ଥିଲେ । ପରେ ଆସାମକୁ ରାଜ୍ୟପାଳ ହୋଇ ଗଲେ । ଚିଠିପତ୍ରରେ କଟକ ବେଳର ପ୍ରଥମ ବନ୍ଧୁତ୍ୱର ପ୍ରତିଧ୍ୱନି ଅବ୍ୟାହତ ରଖି ଆସିଛନ୍ତି । ଏଲ୍.ପି.ସିଂହଙ୍କ ପରେ ଚନ୍ଦ୍ରଶେଖର ଝା (ଆଇ.ସି.ଏସ୍) କଟକର କଲେକ୍ଟର ହେଲେ । ସେ ମଧ୍ୟ ବିହାରୀ । ମୈଥିଳି ବ୍ରାହ୍ମଣ । ତାଙ୍କ ପିତା ଦରଭଙ୍ଗାରେ ଓକିଲ ଥିଲେ । ପାଟନା କଲେଜରୁ ତାଙ୍କ ସହିତ ପରିଚୟ ଥିଲା । କଲେକ୍ଟର ଥିଲାବେଳେ ଅନେକ କ୍ଷେତ୍ରରେ ସହଯୋଗ ସେ ଇଚ୍ଛା ବା ଆବଶ୍ୟକ କରୁଥିଲେ । ସୈନ୍ୟମାନଙ୍କର ଯାତାୟାତ ଓ କଟକରେ ରହଣିବେଳେ ସମ୍ପର୍କ ଦିଗରୁ ବହୁ କାମ ପଡୁଥିଲା । ସେ ପରେ ଯୋଗାଣ ବିଭାଗ ଦାୟିତ୍ୱ ନେଇଥିଲେ । ଗୋଦାବରୀଶବାବୁ ଥିଲେ ଯୋଗାଣ ବିଭାଗ (ଓ ଶିକ୍ଷାବିଭାଗ) ମନ୍ତ୍ରୀ ପାରଳା ମନ୍ତ୍ରିମଣ୍ଡଳରେ (ଯୁଦ୍ଧକାଳୀନ) । ଏଲ୍.ପି.ସିଂହ ଓ ଚନ୍ଦ୍ରଶେଖର ଝାଙ୍କ ସଙ୍ଗେ ସାମାଜିକତା ଅଧିକ ଥିଲା ।

Digitized by srujanika@gmail.com

ଯୁଦ୍ଧ ଆରମ୍ଭ ହେବାର ଅବ୍ୟବହିତ ପୂର୍ବରୁ ୧୯୩୯ ଅଗଷ୍ଟ ମାସରେ କଟକରେ ପ୍ରାଦେଶିକ ଯୁବସମ୍ମିଳନୀ ହୋଇଥିଲା । ଅଗ୍ନିସ୍ଫୁଲିଙ୍ଗ ଯଦୁମଣି ମଙ୍ଗରାଜ ଥିଲେ ଅଭ୍ୟର୍ଥନା ସମିତିର ସଭାପତି । ସୁଭାଷ ବୋଷ ଆସିଥିଲେ ଉଦ୍‌ଘାଟନ କରିବା ପାଇଁ । ପଣ୍ଡିତ ନୀଳକଣ୍ଠ ଦାସ ପ୍ରଭୃତି ସେଥିରେ ପ୍ରତ୍ୟକ୍ଷ ଭାବରେ ସଂଶ୍ଲିଷ୍ଟ ଥିଲେ । ଆମର ତ ସହଯୋଗ ରହିବାର କଥା । ନେତାଜୀଙ୍କର ଭାଷଣର ଉଦ୍ଦୀପନା ଅବିସ୍ମରଣୀୟ । ଯୁଦ୍ଧ ହେଉ ହେଉ ଭଗବତୀ ପାଣିଗ୍ରାହୀ ଓ ସହକର୍ମୀ କମ୍ୟୁନିଷ୍ଟ କେତେଜଣଙ୍କୁ ଗିରଫଦାର କରି ଏକ ଷଡଯନ୍ତ୍ର ମକଦ୍ଦମା ଆରମ୍ଭ କରିଦେଲେ ସରକାର । ବିଚାର ଚାଲିଲା ଜେଲ ଭିତରେ । ରାଜକିଶୋର ଦାସ ଭାର ନେଲେ ବିନା ଫିସରେ, ଦରକାରବେଳେ ହାତରୁ ଖର୍ଚ୍ଚ କରି, ଆସାମୀଙ୍କ ତରଫରୁ ମକଦ୍ଦମା ଲଢ଼ିବାପାଇଁ । କଲିକତାର ବାରିଷ୍ଟର ଏସ୍.ଏନ. ମୁଖାର୍ଜୀ ଆସିଥିଲେ ସେହି ମକଦ୍ଦମାରେ । ଆମ ଘରେ ସେ ରହିଲେ । ରାଜୁବାବୁ ଓ ସେ ପରାମର୍ଶ କରି ମକଦ୍ଦମା ଶେଷ ପର୍ଯ୍ୟନ୍ତ ଚଳାଇଲେ । ଏଚ.ଲାଲ୍., ଆଇ.ସି.ଏସ୍, ଜେଲ ଭିତରେ ବିଚାର କରୁଥାନ୍ତି । ସମସ୍ତେ ଜାଣିଥିଲୁ ମକଦ୍ଦମାରେ ଦଣ୍ଡ ମିଳିବ । ପ୍ରତିଦିନ ଜେଲରେ ମକଦ୍ଦମା ଚଳାଇ ବାରିଷ୍ଟର ମୁଖାର୍ଜୀ ଆମ ଘରକୁ ଫେରି ସନ୍ଧ୍ୟାବେଳେ ଯେଉଁ ଆସର ଜମାଉଥିଲେ ତାହା ଉପଭୋଗ୍ୟ ଥିଲା । ୩/୧୨/୧୯୪୦ ରେ ରାୟ ହେଲା ଆସାମୀଙ୍କ ବିରୁଦ୍ଧରେ । ତାହା ବିରୁଦ୍ଧରେ ଅପିଲ ଶୁଣିଲେ ସେସନ୍‌ସ ଜଜ୍ ମାହେର ସାହେବ । ତାଙ୍କ ରାୟ ବାହାରିଲା ୩/୧୨/୧୯୪୧, ତଳ ରାୟକୁ କାଏମ କରି । ତାର ଦୁଇବର୍ଷ ପରେ ୨୩/୧୦/୧୯୪୩ରେ ଭଗବତୀଙ୍କର ଅକାଳ ବିୟୋଗ ଘଟିଲା, ଅତି କରୁଣ ଅବସ୍ଥାରେ, କଲେରା ରୋଗାକ୍ରାନ୍ତ ହୋଇ, ଡଗରପଡାର ଏକ କୁଟୀରରେ । ତାଙ୍କ ଅସୁସ୍ଥତା ଆମେ ଆଗରୁ ଜାଣିପାରି ନଥିଲୁ । ପ୍ରତିଭାବାନ, ଚିନ୍ତା ପ୍ରବଳ, କର୍ମନିଷ୍ଠ ଏକ ଯୁବନେତାଙ୍କର ଶୂନ୍ୟସ୍ଥାନ ଅପୂରଣୀୟ ହୋଇ ରହିଲା । ଭଗବତୀଙ୍କ ଉଦ୍ୟମ ଓ ନେତୃତ୍ୱରେ ନବଯୁବ ସାହିତ୍ୟ ସଂସଦ ଗଠିତ ହୋଇଥିଲା, ୧୯୩୬ ମେ ମାସରେ 'ଆଧୁନିକ' ପତ୍ରିକା ବାହାରିଥିଲା, 'ମୁକ୍ତି ଯୁଦ୍ଧ' ପତ୍ରିକା ମଧ ପ୍ରକାଶ ପାଇଥିଲା । ମୁକ୍ତିଯୁଦ୍ଧ ବେଆଇନ୍ ଘୋଷିତ ହେଲା ୧୯୪୨ ଅଗଷ୍ଟ ଭାରତ ଛାଡ ଆନ୍ଦୋଳନ ପରେ ।

ଯୁଦ୍ଧକାଳୀନ ଅନ୍ୟ ଏକ ମକଦ୍ଦମା ହୋଇଥିଲା ଅଶୋକ ଦାସଙ୍କ ବିରୁଦ୍ଧରେ । ମୁଁ ତାହା ଚଳାଉଥିଲି, ତାଙ୍କ ସପକ୍ଷରେ ।

Digitized by srujanika@gmail.com

ହରେକୃଷ୍ଣ ମହତାବ ଗୋଟିଏ ପ୍ରେସ୍ ଷ୍ଟେଟମେଣ୍ଟରେ ଭାରତ ସରକାରଙ୍କୁ କୁଇସିଲିଙ୍ଗ (quisling) ବୋଲି ବର୍ଣ୍ଣନା କରିଥିବାରୁ ତାଙ୍କ ବିରୁଦ୍ଧରେ ଏକ କେସ୍ (Defence of Indian Act.) ରୁଜୁ ହେଲା । କୁଇସଲିଙ୍ଗ ଅର୍ଥ ବିଶ୍ୱାସଘାତକ । ଅଭିଯୋଗ ହେଲା ଯେ ସେହି ପ୍ରକାଶନ ଦ୍ୱାରା ଲୋକ ମତ ବିଭ୍ରାନ୍ତ ହୋଇ ଯୁଦ୍ଧରେ ବାଧା ସୃଷ୍ଟି କରିବ । ମାଜିଷ୍ଟ୍ରେଟ୍ ମୁସାହେବ ଖାଁଙ୍କ କୋର୍ଟରେ କେସ୍ ଚାଲିଲା ଦୀର୍ଘଦିନ । ମୁଁ ମହାତାବବାବୁଙ୍କ ପକ୍ଷରୁ କେସ୍ ଚଳାଉଥିଲି । ରାୟ ଦେବା ପୂର୍ବରୁ ମୁସାହେବ ଖାଁ ପୂରା ନଥି ନେଇ ଜିଲ୍ଲା କଲେକ୍ଟରଙ୍କ ପାଖକୁ ଗଲେ ପରାମର୍ଶ ପାଇଁ । ମହତାବଙ୍କୁ ଶହେ ଟଙ୍କା ଜୋରିମାନା କରି ରାୟ ଦେଲେ । ସେତେବେଳକୁ ମହତାବ ଆହମଦନଗର ଦୁର୍ଗ ଜେଲରେ ୧୯୪୨ ଭାରତଛାଡ ପ୍ରସ୍ତାବ କଂଗ୍ରେସ କମିଟିରେ ପାସ୍ ହେବାର ଅବ୍ୟବହିତ ପରେ, ଅନ୍ୟ ନେତୃବୃନ୍ଦ ଜବାହାରଲାଲ ନେହୁରୁ, ସର୍ଦ୍ଦାର ବଲ୍ଲଭଭାଇ ପଟେଲ ପ୍ରଭୃତିଙ୍କ ସଙ୍ଗରେ । ମୁଁ ତାଙ୍କ ଦଣ୍ଡ ବିରୁଦ୍ଧରେ ହାଇ କୋର୍ଟରେ ରିଭିଜନ ଦରଖାସ୍ତ କଲି ।

ସେହିପରି ଏକ ମକଦ୍ଦମା ହେଲା ନବକୃଷ୍ଣ ଚୌଧୁରୀଙ୍କ ବିରୁଦ୍ଧରେ ତାଙ୍କର ଗୋଟିଏ ବକ୍ତୃତା ଉପରେ । ସେ ବକ୍ତୃତାରେ ସେ ପର୍ଲ ହାରବରରେ ମିତ୍ରପକ୍ଷର ପରାଜୟ ଯୁଦ୍ଧ ଆୟୋଜନର ବିଫଳତା ଇତ୍ୟାଦି ଅତି ରୁଢ଼ ଭାଷାରେ ବ୍ୟକ୍ତ କରିଥିଲେ । ତାଙ୍କ ତରଫରୁ ମୁଁ କେସ୍ ଚଳାଉଥିଲି । ମାଜିଷ୍ଟ୍ରେଟ୍ କୋର୍ଟରେ ଜେଲଦଣ୍ଡ ହେଲା । ଅପିଲରେ ତାହା କାଏମ ହେବାରୁ ହାଇକୋର୍ଟରେ ରିଭିଜନ୍ ଦାଖଲ କଲି । ମହତାବଙ୍କ କେସ୍ ଓ ଏହି କେସ୍ ପଡିଲା ପାଟନା ହାଇକୋର୍ଟର ଜଜ୍ ମେରିଡିଥ, ଆଇ.ସି.ଏସ୍‌ଙ୍କ ପାଖରେ କଟକ ସର୍କିଟରେ । କୋର୍ଟ ରୁମରେ କଂଗ୍ରେସ ସମର୍ଥକଙ୍କ ଭିତରେ ବହୁ ଓକିଲ ଖୁନ୍ଦିହୋଇ ବସିଥାନ୍ତି । ମୋ ବିପକ୍ଷରେ ଥିଲେ ବୀରକିଶୋର ରାୟ, ଆଡଭୋକେଟ୍ ଜେନେରାଲ । ନବ ଚୌଧୁରୀଙ୍କ ବକ୍ତୃତାଟି ପୂରା ମୁଁ ପଢ଼ି ଶୁଣାଉ ଥିଲି । ମେରିଡିଥ ସାହେବଙ୍କ ମୁହଁ, କାନ ରାଗ ଓ ବିରକ୍ତିରେ ଲାଲ ଦିଶୁଥାଏ । ମୋ ପଢ଼ାରେ ବାଧା ଦେଇ ପଚାରିଲେ, ମୁଁ କାହିଁକି ସମସ୍ତଟା ପଢୁଛି । ତା ସାଙ୍ଗକୁ ବୀରବାବୁ ଆକ୍ଷେପ ଯୋଡିଲେ ଯେ ସେପରି ପଢ଼ିବା ଦ୍ୱାରା କୋର୍ଟ ରୁମ୍‌ରେ ଜମା ହୋଇଥିବା ଲୋକେ ଯୁଦ୍ଧ ବିରୁଦ୍ଧରେ ଉତ୍ୟକ୍ତ ବୋଧ କରୁଛନ୍ତି ନିଶ୍ଚୟ । ମୁଁ ଧୀର, ନମ୍ର ଭାବରେ ନିବେଦନ କଲି, ବକ୍ତୃତାଟିକୁ ପୂରା ଭାବରେ ବିଚାର ନ କରି, କେତେକ ଅଂଶରେ ବ୍ୟବହୃତ କେତୋଟି ବାକ୍ୟ ଓ ଶବ୍ଦ ଉପରେ ତଳ କୋର୍ଟର ମତ ଗଠିତ

Digitized by srujanika@gmail.com

ହୋଇଥିବା ମୁଁ ଦର୍ଶାଇବାର ଚେଷ୍ଟା କରୁଛି । ଜଜ ନିରବ ରହିଲେ । ମୋ ପଢ଼ା ଚାଲିଲା । ମୁଁ ପ୍ରକୃତରେ ଇଚ୍ଛା କରୁଥିଲି, ରାୟ ଯାହା ହେବ ହେଉ, ସମସ୍ତେ ଜାଣନ୍ତୁ ବକ୍ତୃତାର ବିଷୟ । ମୋର ବକ୍ତବ୍ୟ ଥିଲା, ଭାଷାର ଉଗ୍ରତା ଅପରାଧ ନୁହେଁ, ଅପ୍ରୀତିକର, ଅଶୌଚନ୍ୟ ବା ଖୁବ୍ ହେଲେ ନିନ୍ଦନୀୟ ହୋଇପାରେ । ବକ୍ତୃତାରେ ଅସତ୍ୟ ଘଟନାର ଉଲ୍ଲେଖ ନ ଥିଲା । ଲୋକଙ୍କୁ ନିଜେ ନିଜେ ସଙ୍ଗଠିତ ହେବାକୁ ଯେଉଁ ଆହ୍ୱାନ ଦିଆ ହୋଇଥିଲା, ତାହା ଶତ୍ରୁ ଆକ୍ରମଣରେ ସରକାରଙ୍କର ସପକ୍ଷରେ କାର୍ଯ୍ୟକାରୀ ହେବାର ସମ୍ଭାବନା ଅଧିକ ଥିଲା ।

ମହତାବଙ୍କ କେସ୍‌ରେ ଯୁକ୍ତି କରାହେଲା, (ସ୍ପାଇ) ଗୁପ୍ତଚରମାନଙ୍କୁ ଲକ୍ଷ୍ୟ କରି କୁଇସ୍‌ଲିଙ୍ଗ କୁହାଯାଇଥିଲା । ସେ ପ୍ରକାର ଲୋକ ମିତ୍ରପକ୍ଷରେ ଯୁଦ୍ଧ କ୍ଷେତ୍ରରେ ଓ ବାହାରେ ଥିବା ଅସମ୍ଭବ ନଥିଲା । ଦୁଇ ମକଦ୍ଦମା ମେରିଡିଥ ସାହେବ ମଞ୍ଜୁର କରି ଦୁହିଁଙ୍କୁ ନିର୍ଦ୍ଦୋଷ ସାବ୍ୟସ୍ତ କଲେ । ଇଂରେଜ ବିଚାରପତି ମାନଙ୍କର ଯୁଦ୍ଧ ସମୟରେ ମଧ୍ୟ, ଏହିପରି ନିରପେକ୍ଷ ବିଚାରର ଅନେକ ଦୃଷ୍ଟାନ୍ତ ରହିଛି । କହିବା ବାହୁଲ୍ୟ, ଏ ସବୁ ମକଦ୍ଦମା ଆମେ ହାତରୁ ଖର୍ଚ୍ଚ କରି, ଅତି ତତ୍ପରତାର ସହିତ କରୁଥିଲୁ, କର୍ତ୍ତବ୍ୟ ଦୃଷ୍ଟିରୁ । ସେଥିପାଇଁ ସମୟ ଅଭାବରୁ ଫିସଦିଆ ଅନ୍ୟ ମକଦ୍ଦମା ଛାଡିବାରେ ଆଦୌ କୁଣ୍ଠାବୋଧ ନଥିଲା ।

କଂଗ୍ରେସ ମନ୍ତ୍ରିମଣ୍ଡଳ ଇସ୍ତଫାର କିଛି କାଳ ଲାଟ ଶାସନ ହେଲା । ତା ପରେ ୧୯୪୧ ନଭେମ୍ବରରେ ପଣ୍ଡିତ ନୀଳକଣ୍ଠ ଦାସଙ୍କ ଚେଷ୍ଟାରେ, ଭିତିରି ନେତାଜୀ ସୁଭାସ ବୋଷଙ୍କ ମନ୍ତ୍ରଣାରେ, ପାରଳା ରାଜାଙ୍କୁ ନେଇ ଏକ ମନ୍ତ୍ରିମଣ୍ଡଳ ହେଲା, ମିତ୍ର ପକ୍ଷଙ୍କୁ ଯୁଦ୍ଧକାଳୀନ ଜନ ସହଯୋଗ ଦେବାପାଇଁ । ନୀଳକଣ୍ଠବାବୁ ହେଲେ ଯୁଦ୍ଧ ସାମ୍ମୁଖ୍ୟର ପ୍ରଧାନ । ଗୋଦାବରୀଶବାବୁ, ଶୋଭାନ ଖାଁ ହେଲେ ଅନ୍ୟ ଦୁଇ ମନ୍ତ୍ରୀ । ପାରଳା ରାଜା ଓ ଶୋଭାନ ଖାଁ ଅବହିତ ନ ଥିଲେ ମନ୍ତ୍ରୀମଣ୍ଡଳର ଭିତିରି ପ୍ରକୃତ ଉଦ୍ଦେଶ୍ୟ । ନେତାଜୀଙ୍କର ଆଜାଦ୍ ହିନ୍ଦ୍ ଫୌଜ୍ ଗଠନେ, ତାଙ୍କର ଉଦ୍ଦୀପକ ଆକାଶବାଣୀ ମୂଳରେ ଥିଲା ଏକ ବିଶ୍ୱାସ ଯେ ଶତ୍ରୁପକ୍ଷ, ବିଶେଷତଃ ଜାପାନ ସହିତ ସହଯୋଗରେ ଭାରତରୁ ବ୍ରିଟିଶ ଶାସନକୁ ଯୁଦ୍ଧ ଭିତ୍ତିରେ ହଟାଇବା । ଜାପାନ ଭାରତକୁ ମାଡିଆସିଲାବେଳେ ପୂର୍ବ ଉପକୂଳରେ ଲୋକଶାସନ ଥିଲେ ତାଙ୍କର ସହାୟତା ଅଧିକ ଫଳପ୍ରଦ ହେବ । ଏହି ମନ୍ତ୍ରଣାରେ ନୀଳକଣ୍ଠବାବୁ, ଗୋଦାବରୀଶବାବୁ ପାରଳାଙ୍କୁ ମୁଖ୍ୟ କରି ମନ୍ତ୍ରିମଣ୍ଡଳ ଗଢ଼ିଥିଲେ ।

Digitized by srujanika@gmail.com

କଂଗ୍ରେସ ଏହାର ବିରୋଧୀ ଥିଲେ । ସେମାନେ ମଧ୍ୟ ବିରୋଧ କରୁଥିଲେ ବ୍ରିଟିଶ ଶାସନର ଭାରତକୁ ଯୁଦ୍ଧଗ୍ରସ୍ତ କରିବା । ଓଡିଶା ବିଧାନସଭାରେ ପାରଳା ମନ୍ତ୍ରିମଣ୍ଡଳ ବିରୁଦ୍ଧରେ ଏକ ଅନାସ୍ଥାପ୍ରସ୍ତାବ ଆସିଲା । କଂଗ୍ରେସ ଦଳ ଭୋଟକୁ ପଠାଇବାର ବିଫଳ ଚେଷ୍ଟା ହୋଇଥିଲା । ଅନାସ୍ଥାପ୍ରସ୍ତାବର ଆଲୋଚନା ପୂର୍ବରୁ ନବକୃଷ୍ଣ ଚୌଧରୀଙ୍କୁ ଗିରଫଦାର କରିନେଲେ; ତାଙ୍କ ପ୍ରଭାବ ଓ ତାଙ୍କ ଭୋଟ କମାଇ ଦେବା ଉଦ୍ଦେଶ୍ୟରେ । କଂଗ୍ରେସ ପକ୍ଷରୁ ମତେ ଆସି କହିଲେ, ଯାହା କରିବାର କଥା ଶୀଘ୍ର କରିବାକୁ । ମୁଁ ନବବାବୁଙ୍କର ଜାମିନ ପାଇଁ ମାଜିଷ୍ଟ୍ରେଟ କୋର୍ଟରେ ଦରଖାସ୍ତ କଲି । ସରକାରଙ୍କ ଚାପରେ ତାହା ନାମଞ୍ଜୁର ହେଲା । ସେସନ୍ସ କୋର୍ଟରେ ମଧ୍ୟ ତଥୈବଚ । ଗଲି ପାଟନାକୁ ହାଇକୋର୍ଟରେ ଦରଖାସ୍ତ କରିବାକୁ । ସେଠାରେ ଦୃଢ଼ ଆପତ୍ତି କଲେ ସିନିଅର ଆଡ଼ଭୋକେଟ୍ ଗଜେନ୍ଦ୍ରପ୍ରସାଦ ଦାସ, ଓଡିଶା ସରକାରଙ୍କ ପକ୍ଷରୁ । ଚିଫ୍ ଜଷ୍ଟିସ୍. ଏ.ଟି. ହାରିସ୍‌ଙ୍କ କୋର୍ଟରେ ଶୁଣାଣି ହୋଇ ଜାମିନ ମଞ୍ଜୁର ହେଲା ଏବଂ ମୋ ଅନୁରୋଧରେ କୋର୍ଟର ଜାମିନ ଆଦେଶ ଟେଲିଗ୍ରାମ ଦ୍ୱାରା କଟକ ଜେଲକୁ ପଠାହେଲା । ଡାକରେ ମଧ୍ୟ ସେ ଅର୍ଡର ଆସିଲା । ମୁଁ ସେହିଦିନ ସନ୍ଧ୍ୟା ଗାଡିରେ ପାଟନାରୁ ଆସିଲି କଲିକତାବାଟେ । କଟକରେ ପହଞ୍ଚିଲା ଦିନ ଅନାସ୍ଥା ପ୍ରସ୍ତାବ ଉପରେ ଭୋଟ ନେବା ସ୍ଥିର ହୋଇଥାଏ । ମୁଁ ସେତେବେଳେ ଲ ଲେକ୍‌ଚରର ଥିଲି । ଷ୍ଟେସନରୁ ଘରକୁ ନ ଆସି କଲେଜ ଗଲି କ୍ଲାସ ନେବାକୁ । ମୋ ଆସିବା ପୂର୍ବଦିନ ଜାମିନ ଟେଲିଗ୍ରାମ ପହଞ୍ଚି ସାରିଥିଲା । ମୁଁ ଧରିନେଇ ଥିଲି, ନବଭାଇ ଖଲାସ ହୋଇଯାଇଥିବେ । ମୁଁ କ୍ଲାସରେ ଅଛି, କଂଗ୍ରେସର ଦୁଇଜଣ ଯାଇ ପହଞ୍ଚି କହିଲେ, ଟେଲିଗ୍ରାମ୍ ପାଇ ମଧ୍ୟ ନବବାବୁଙ୍କୁ ଜେଲରୁ ଛାଡି ନାହାନ୍ତି । ଏତେ ଚେଷ୍ଟା, ଖର୍ଚ୍ଚ, କଷ୍ଟ ବିଫଳ ହେବାରେ ଦୁଃଖ ଲାଗିଲା । ମୁଁ କଲେଜ ଫୋନରୁ ପାଟନା ଚିଫ୍ ଜଷ୍ଟିସଙ୍କ ସେକ୍ରେଟାରୀଙ୍କୁ ଏ କଥା ଜଣାଇ ମୋ ଦୁଃଖ ପ୍ରକାଶ କଲି ଏବଂ ସଙ୍ଗେ ସଙ୍ଗେ କଲେଜରୁ ଆସିଲି କଲେକ୍ଟର ଚନ୍ଦ୍ରଶେଖର ଝାଙ୍କ କୋଠିକୁ । ପ୍ରାୟ ୯ଟା ସମୟ ସକାଳବେଳା । ମତେ ଦେଖି ସେ ହସିଲେ । ମୋ ମନ ବିରକ୍ତିରେ ଜଳୁଥାଏ । ଜେଲ ତାଙ୍କ ଅଧୀନସ୍ଥ । ଜାମିନ କଥା ଉଠାଇବାରୁ ସେ କହିଲେ, ମାନୁଏଲରେ ଅଛି ଟେଲିଗ୍ରାମ ଉପରେ ନିର୍ଭର କରି ଜେଲରୁ ମୁକ୍ତି ନଦେବା ପାଇଁ । ମୁଁ କହିଲି, ମୁଁ ଆପଣଙ୍କ ପାଖେ ଆଡଭୋକେଟ୍ ସ୍ୱରୂପ ଆଫିଡେଭିଟ୍ କରି କହିବାକୁ ପ୍ରସ୍ତୁତ ଯେ ଦୁଇଦିନ ତଳେ ପାଟନା ହାଇକୋର୍ଟରେ ନବବାବୁଙ୍କୁ ଜାମିନ ମଞ୍ଜୁର

Digitized by srujanika@gmail.com

ହୋଇଛି । ଏତିକିବେଳେ ଡାକ ଆସିଲା ଏବଂ ସେଥିରେ ହାଇକୋର୍ଟ ଅର୍ଡରଟି ଥିଲା । ଝା ବାଧ ହୋଇ (କୁଣ୍ଠା ଥିଲେ ମଧ) ଜେଲକୁ ଜଣାଇଲେ ନବବାବୁଙ୍କୁ ମୁକ୍ତି ଦେବାପାଇଁ । ମୁଁ ଆସିଲି କେତେକଟା ଆଶ୍ୱସ୍ତ ହୋଇ । ପ୍ରସେସନ୍ ଭିତରେ ଧ୍ୱନି ଦେଇ ନବବାବୁ ଯାଇ ପହଞ୍ଚିଲେ କଲେଜ ହଲ ବିଧାନସଭାରେ ସାଢ଼େ ଦଶଟାବେଳେ । ମନ୍ତ୍ରୀମଣ୍ଡଳଙ୍କ ମୁଖମଣ୍ଡଳରେ ଆଶ୍ଚର୍ଯ୍ୟ ଓ ବିଷାଦ ଦେଖାଦେଲା । ମୋ ଟେଲିଫୋନ୍ ବାର୍ତ୍ତା ଉପରେ ଚିଫ୍ ଜଷ୍ଟିସ୍ କଟକ କଲେକ୍ଟର ଓ ଜେଲ ସୁପରିଣ୍ଟେଣ୍ଡେଣ୍ଟଙ୍କ ବିରୁଦ୍ଧରେ କାର୍ଯ୍ୟ ଅନୁଷ୍ଠାନ ଆରମ୍ଭ କରୁଥିବା ଖବର ପାଇ ଚନ୍ଦ୍ରଶେଖର ଝା ମୋଠାରୁ ଗୋଟିଏ ଲେଖା ନେବାକୁ ଚାହିଁଲେ ଯେ ମୋ କଥା ଉପରେ ସେ ଜାମିନରେ ନବବାବୁଙ୍କୁ ମୁକ୍ତି ଦେବାପାଇଁ ଯାଉଥିଲା ବେଳେ, ଡାକରେ ଲିଖିତ ଜାମିନ ଅର୍ଡର ଆସି ପହଞ୍ଚିଲା । ଏକ ଆଡେ ମନ୍ତ୍ରୀମଣ୍ଡଳ, ଅନ୍ୟଆଡେ ହାଇକୋର୍ଟ, ଦୁଇ ମଝିରେ କଲେକ୍ଟରଙ୍କ ପ୍ରତି ସହାନୁଭୂତି ହେବା ସ୍ୱାଭାବିକ ।



Digitized by srujanika@gmail.com

# ବଡଲାଟଙ୍କ ଭୋଟ

ବିଶ୍ୱନାଥ ଦାସଙ୍କର ଖଲ୍ଲିକୋଟ ରଜାଙ୍କ ସଙ୍ଗେ ଅହି ନକୁଳ ସମ୍ପର୍କ । ରାଜାଙ୍କ ଜମିଦାରୀରେ ପ୍ରଜା ଆନ୍ଦୋଳନ କରାଇ ଦାସେ ରଜାଙ୍କ ରୋଷରେ ପଡିଥିଲେ । ବିଶ୍ୱନାଥବାବୁଙ୍କ ନିର୍ବାଚନ ଖର୍ଚ୍ଚ ତାଲିକା ଭ୍ରମାତ୍ମକ ବୋଲି କେସ୍ କରାଇ ତାଙ୍କୁ ଛଅବର୍ଷ ପାଇଁ ନିର୍ବାଚନରୁ ବଞ୍ଚିତ ହେବାର ଅର୍ଡର ହେଲା । ସେଥିରୁ ଅବ୍ୟାହତି ପାଇଁ କଟକ ସବ୍‌ଜଜ୍ କୋର୍ଟରେ ଏକ ମକଦ୍ଦମା ବିଶ୍ୱନାଥବାବୁଙ୍କ ପକ୍ଷରୁ ଆଗତ କଲି । ସେତେବେଳକୁ ବିଶ୍ୱନାଥବାବୁ ଜେଲରେ । ଅର୍ଜ୍ଜିତିଆରିରେ ପରାମର୍ଶ ନେବାପାଇଁ କଲିକତାର ବାରିଷ୍ଟର ଏସ୍.ସି.ମିତ୍ର (କାମାକ୍ ଷ୍ଟ୍ରୀଟ) ଙ୍କ ପାଖକୁ ଯାଇଥିଲି । ବିଶ୍ୱନାଥବାବୁଙ୍କର ସେ ପରିଚିତ ଥିଲେ । ବିନା ଫିସ୍‌ରେ ସାହାଯ୍ୟ କଲେ । ଦ୍ୱାରିକାନାଥ ଦାସ, ସବ୍‌ଜଜ୍ କୋର୍ଟରେ ମକଦ୍ଦମା ଚାଲିଲା । ସରକାରଙ୍କ ପକ୍ଷରୁ ଚିନ୍ତାମଣି ଆଚାର୍ଯ୍ୟ ହାଜର ହେଲେ । ନୂଆ ଭଙ୍ଗୀର ମକଦ୍ଦମା ଚଳାଇବାରେ ମୋର ଯଥାଶକ୍ତିର ପ୍ରୟୋଗରେ କୋର୍ଟ ଓ ଯେଉଁମାନେ ଲକ୍ଷ୍ୟ କରୁଥିଲେ ପ୍ରଶଂସାସୂଚକ ମନ୍ତବ୍ୟ ଦେଉଥିବାରୁ ଚିନ୍ତାମଣିବାବୁ ବିମୁଖ ହେଉଥାଆନ୍ତି । ମକଦ୍ଦମାରେ ସାକ୍ଷୀ ନଥିଲେ କୌଣସି ପକ୍ଷରେ । ପ୍ରଥମରୁ ଆର୍ଗୁମେଣ୍ଟ ହେଲା । ଆଠଦିନ ଅନ୍ୟକାମ ଛାଡି ମୁଁ ଲାଗିରହିଲି ସେଥିରେ । ରାୟରେ ଆମେ ହାରିଲୁ । କୋର୍ଟ ରେକର୍ଡକୁ କେତେଗୁଡିଏ କଥା ଆଣିବା ରାଜନୈତିକ ଦୃଷ୍ଟିରୁ ଆବଶ୍ୟକ ଥିବାରୁ ମକଦ୍ଦମା ଆଗତ କରାଯାଇଥିଲା । ରାୟ ବିରୁଦ୍ଧରେ ଅପିଲ କରାଗଲା ନାହିଁ । ତିନିପାହାଚରେ ଶେଷ ପର୍ଯ୍ୟନ୍ତ ଅପିଲକୁ ଆୟୁଷ ନଥିବ ।

ବିଶ୍ୱନାଥବାବୁ ଇଚ୍ଛାକଲେ ଆଉ କଅଣ ହୋଇପାରିବ ଦେଖିବାକୁ । ସର୍ବ ଉଚ୍ଚ ନ୍ୟାୟାଳୟକୁ ସାଧାରଣ ସ୍ୱାର୍ଥ ଦୃଷ୍ଟିରୁ ଆଇନଗତ ପ୍ରଶ୍ନ ବଡଲାଟ ପଠାଇ ପାରିବାର କ୍ଷମତା ଥିଲା, ୧୯୩୫ ମସିହା ଗଭର୍ଣ୍ଣମେଣ୍ଟ ଅଫ୍ ଇଣ୍ଡିଆ ଆକ୍ଟରେ । ତାହାର ସୁବିଧା ନିଆଯାଇପାରେ ବୋଲି ଜଣାଇବାରୁ, ବିଶ୍ୱନାଥବାବୁ ତାହା କରିବାକୁ

Digitized by srujanika@gmail.com

ଉଦ୍‌ଗ୍ରୀବ ହେଲେ । ମେମୋରେଣ୍ଡମର ଚିଠା ଉପରେ ପରାମର୍ଶ ପାଇଁ କଲିକତାର ବାରିଷ୍ଟର ନିର୍ମଳଚନ୍ଦ୍ର ଚାଟାର୍ଜୀଙ୍କ (ଥିଏଟର ରୋଡ) ନିକଟ ଗଲି । ସେ ମଧ୍ୟ ବିଶ୍ୱନାଥବାବୁଙ୍କ ପରିଚିତ । ମେମୋରେଣ୍ଡମ ଛପାଇ ସଙ୍ଗରେ ଧରି ଦିଲ୍ଲୀ ବାହାରିଲି । କଟକ ଷ୍ଟୁଡେଣ୍ଟ ଷ୍ଟୋରର ଶ୍ରୀଯୁକ୍ତ ଅନନ୍ତ ମିଶ୍ରେ ଦିଲ୍ଲୀକୁ ରେଳ ଟିକଟଟିଏ କରି ଦେଇଥିଲେ ବିଶ୍ୱନାଥବାବୁଙ୍କ ନିର୍ଦ୍ଦେଶରେ । ମୁଁ ମୋ ଆଡୁ ଦିଲ୍ଲୀ ଖର୍ଚ୍ଚ ପାଇଁ ପ୍ରସ୍ତୁତ ହୋଇ ଯାଇଥାଏ ।

ଦିଲ୍ଲୀରେ ପହଞ୍ଚି ବିଶ୍ୱନାଥବାବୁଙ୍କର ଅନ୍ୟ ଏକ ପରିଚିତ, ପ୍ରଭାବଶାଳୀ ସାମ୍ବାଦିକ, ବି.ଶିବ. ରାଓଙ୍କ ସାହାଯ୍ୟ ନେବାର ଥିଲା । ତାଙ୍କ ଘରକୁ ଯାଇ ତାଙ୍କର ବିଦେଶୀ ବିଦୁଷୀ ପତ୍ନୀଙ୍କର ସହାନୁଭୂତି ମିଳିଲା, ମାତ୍ର ତାଙ୍କ ସ୍ୱାମୀ ଧରାଛୁଆଁ ଦେଲେ ନାହିଁ । ସେଠାରୁ ନିରାଶ ହୋଇ ହୋଟେଲକୁ ଫେରିଲି । ପରଦିନ ଗଲି ବଡଲାଟଙ୍କ କାଉନସିଲର ଲ ମେମ୍ବର ସାର ଅଶୋକ ରାୟଙ୍କ କୋଠିକୁ । ବୋଧହୁଏ ମୋ ଖର୍ବ ଆକୃତି ଯୋଗୁ ପ୍ରଥମରୁ ପାସଙ୍ଗରେ ପକାଇଲେ ନାହିଁ । ମେମୋରେଣ୍ଡମଟି ତାଙ୍କରି ମନ୍ତ୍ରଣାଳୟର ପ୍ରାଥମିକ ବିଚାରର ବସ୍ତୁ । କେଉଁ ବିଷୟରେ ମେମୋରେଣ୍ଡମ ଶୁଣି ସେ ଉପହାସରେ ଉଡାଇଦେଲେ । କହିଲେ, କଟକରୁ ଡାକରେ ନ ପଠାଇ ଏତେବାଟ ଦିଲ୍ଲୀ କାହିଁକି ଆସିଛ ? ମୋର ଉତ୍ତର ହେଲା—ବିଷୟବସ୍ତୁ ବୁଝାଇବା ପାଇଁ ମୁଁ ଆସିଛି । ତାଙ୍କର ମନ୍ତବ୍ୟ—ଆମେ କଣ ବୁଝିପାରିବୁ ନାହିଁ ? ମୋର ଉତ୍ତର—କୋର୍ଟରେ ଅର୍ଜି, ଜବାବ କେବଳ ଦାଖଲ ହେଲେ ଶେଷ ହୁଏ ନାହିଁ । ପକ୍ଷକୁ ମଧ୍ୟ ଶୁଣାଯାଏ । ସାର୍ ଅଶୋକ ରାୟ ନିଜେ ଜଣେ ବାରିଷ୍ଟର । ଦେଖିଲି, ହାମ୍‌ବଡା ଲୋକ । ଅନ୍ୟ ପ୍ରତି ବେଖାତିର । ମେମୋରେଣ୍ଡମ ଦେଇଯିବାକୁ ବା ପଠାଇଦେବାକୁ କହିଲେ । ମୋ ଠାରୁ ସେ ବିଷୟରେ କିଛି ଶୁଣିବାକୁ ଇଚ୍ଛୁକ ହେଲେ ନାହିଁ । ସେଠାରୁ ଫେରିଲି ମେମୋରେଣ୍ଡମକୁ ସଙ୍ଗରେ ନେଇ ।

ତାର ପର ଦିନ ଗଲି ବଡଲାଟଙ୍କ ପ୍ରାଇଭେଟ ସେକ୍ରେଟାରୀ ଜେନ୍‌କିନସ୍ ଆଇ.ସି. ଏସ୍‌ଙ୍କ ପାଖକୁ, ପୂର୍ବରୁ ସମୟ ସ୍ଥିର କରି । ସେ ମଧ୍ୟ ତଦ୍ରୂପ କହିଲେ, ମେମୋରେଣ୍ଡମଟି ଛାଡିଦେଇ ଯିବାପାଇଁ । ମୁଁ ତାଙ୍କୁ ଅନୁରୋଧ କଲି ବଡଲାଟଙ୍କ କାନରେ ଟିକିଏ ପକାଇବାକୁ ଯେ ଦରଖାସ୍ତକାରୀ ଜେଲରେ, ମୁଁ ତାଙ୍କ ପକ୍ଷରୁ ଏତେ ଦୂରରୁ ଆସିଛି ତାଙ୍କ ହସ୍ତରେ ଆବେଦନ ପତ୍ରଟି ଦେବାପାଇଁ । ସେ ମୋଠାରୁ କିଛି ଶୁଣିବା ପାଇଁ ଇଚ୍ଛା ନ କଲେ ମଧ୍ୟ ମୋଠାରୁ ପତ୍ରଟି ଗ୍ରହଣ କରନ୍ତୁ; ଏହା

Digitized by srujanika@gmail.com

ମୋର ଇଚ୍ଛା । ମୁଁ ଫେରିଯାଇ ଦରଖାସ୍ତକାରୀଙ୍କୁ କହି ପାରିବି ଯେ ତାଙ୍କ ଆବେଦନପତ୍ର ବିଚାର ପାଇଁ ବଡଲାଟ ନେଲେ । ଜେନ୍‌କିନସ୍ କିଛି ସମୟ ଇତଃସ୍ତତ ହେଲେ । ସେ ଘରୁ ଅନ୍ୟତ୍ର ଯାଇ, କିଛି ସମୟ ପରେ ଫେରି କହିଲେ ଅଧଘଣ୍ଟାକ ପରେ ମୋ ପାଇଁ ପାଞ୍ଚମିନିଟ୍ ସମୟ ସ୍ଥିର କରାଇଛନ୍ତି ବଡଲାଟଙ୍କୁ ଆବେଦନ ପତ୍ରଟି ଦେବାପାଇଁ । ନାହିଁ ମାମୁଁଠୁ କଣାମାମୁଁ ଭଲ ।

ମତେ ଡକରା ଆସିଲା । ଏକ ସୁସଜ୍ଜିତ ଅପେକ୍ଷାକୃତ କ୍ଷୁଦ୍ର କୋଠରୀରେ ଉପବିଷ୍ଟ ଥିଲେ, ଲର୍ଡ ୱାଭେଲ, ବଡଲାଟ । ଉଠି କରମର୍ଦ୍ଦନ କଲେ । ସାର୍ ଅଶୋକ ରାୟଙ୍କର ବିପରୀତ । ଏତେ କଷ୍ଟ ସ୍ୱୀକାର କରି କାହିଁକି ଦିଲ୍ଲୀ ଆସିଛି ବୋଲି ପଚାରି ଆବେଦନ ପତ୍ରଟି ନେଲେ । ସମୟର ସ୍ୱଳ୍ପତା ଦୃଷ୍ଟିରୁ ମୁଁ ଅତି ସଙ୍କୁଚିତ ଭାବରେ ସଂକ୍ଷେପରେ ଅଳ୍ପ କହିଲି । ସେ କହିଲେ, ଏପରି ଦରଖାସ୍ତ ତ କେବେ ଆସିନାହିଁ, ଏହା ପୂର୍ବରୁ । ବିଷୟଟି କଅଣ ? ମୋର ବକ୍ତବ୍ୟ ବ୍ୟକ୍ତ କରିବାର ମଉକା ମିଳିଲା । ପାଞ୍ଚମିନିଟ୍ ପରେ ଏ.ଡି.ସି. ମୁହଁ ଦେଖାଇଲେ । ୱ୍ୟାଭେଲଙ୍କ ପାଖରେ ଲୁକାୟିତ ଘଣ୍ଟିରେ ମୃଦୁସ୍ୱର ମୁଁ ଶୁଣିଲି । କିନ୍ତୁ ମୋର ଭେଟ ପାଞ୍ଚମିନିଟରୁ ପଞ୍ଚଚାଳିଶ ମିନିଟ୍ ପର୍ଯ୍ୟନ୍ତ ଚାଲିଲା । ମୁଁ ତୃପ୍ତ ମୋ କାର୍ଯ୍ୟ କରି, ସେ ତୃପ୍ତ ମତେ ବାଧିତ କରି । ନିଃଶ୍ୱାସ ମାରି ମୁଁ ଫେରିଲି । ମୋ ହୋଟେଲ ଠିକଣା ପ୍ରାଇଭେଟ ସେକ୍ରେଟାରୀ ଜେନ୍‌କିନସ୍ ସାହେବ ଟିପି ରଖିଲେ ।

ପରଦିନ ଡାକରେ ଦୁଇଦିନ ପରର ବଡଲାଟ ଭବନର ଏକ ନୈଶ ଭୋଜନର ନିମନ୍ତ୍ରଣ ପାଇଲି । କଟକ ନ ଫେରି ଦୁଇଦିନ ରହିଲି । ରାତ୍ର ଭୋଜନର ଟେଲକୋର୍ଟ ପୋଷାକ ତିଆରି କରିବାକୁ ହେଲା, କାରଣ ନିମନ୍ତ୍ରଣ ପତ୍ରରେ ଉଲ୍ଲେଖ ଥିଲା । ସେଠାରେ ସାର୍ ଅଶୋକ ରାୟଙ୍କ ସହିତ ସାକ୍ଷାତ ହେବାରେ ସେ ଏକାବେଳେ ବିସ୍ମିତ । ମତେ ନିକଟକୁ ଡାକି ଅତି ଆଗ୍ରହରେ ମେମୋରେଣ୍ଡମ ବିଷୟରେ ପନ୍ଦରମିନିଟରୁ ଅଧିକ କଥାବାର୍ତ୍ତା ହେଲେ । ସେ କାଉନ୍‌ସିଲରୁ ବିଦାୟ ନେଇ କଲିକତା ଫେରିବା ପରେ କେତେଥର ତାଙ୍କ ସହିତ ଦେଖା ହୋଇଛି । ଘଟନାଚକ୍ରରେ ଉଡ ଷ୍ଟ୍ରୀଟ୍‌ରେ ପ୍ରାୟ ତାଙ୍କ ଘରର ପଡିଶା ଏକ ସ୍ଥାନରେ ଆମେ ଗୋଟିଏ ଘର ନିର୍ମାଣ କଲୁ । ସେତେବେଳକୁ ସେ ଅସୁସ୍ଥ, ଶଯ୍ୟାଗତ । ନିକଟରେ ତାଙ୍କର ପରଲୋକ ଘଟିଛି ।

Digitized by srujanika@gmail.com

ମାସାଧିକ କାଳ ପରେ ବଡଲାଟଙ୍କର ଉତ୍ତର ଆସିଲା ଯେ ସର୍ବ ଉଚ୍ଚନ୍ୟାୟଳୟକୁ ରେଫରେନ୍ସ କରିବାର ଆବଶ୍ୟକତା ସେ ଅନୁଭବ କରୁନାହାନ୍ତି । ମୋର ଅନୁମାନ, ଖୈର ଖାଁ ସାର୍ ଅଶୋକ ରାୟଙ୍କ ଅତ୍ୟଧିକ ରାଜଭକ୍ତି ସୂଚିତ ପରାମର୍ଶ ଯୋଗୁ ସେପରି ହେଲା । ତାହାର କେତେମାସ ପରେ ଲର୍ଡ ୱାଭେଲ କଟକ ଆସିଥିଲେ । ପାରଳାଖେମୁଣ୍ଡି ମହାରାଜା, ମୁଖ୍ୟମନ୍ତ୍ରୀ ଭାବରେ ତାଙ୍କୁ ଏକ ଚା ଭୋଜି ଦେଇଥିଲେ । ସେଠାରେ ମତେ ଦେଖି ୱାଭେଲ ପୂର୍ବକଥା ସ୍ମରଣ କରି କିଛି ସମୟ ସୌଜନ୍ୟ ପ୍ରକାଶ କଲେ । ପାରଳା ମହାରାଜା ପାଖରେ ଥାଇ ଶୁଣୁଥାଆନ୍ତି ।



Digitized by srujanika@gmail.com

# ଗଡଜାତ ମିଶ୍ରଣରେ ରଣପୁର

ଓଡିଶା ଗଡଜାତମାନଙ୍କରେ ପ୍ରଜା ଆନ୍ଦୋଳନ ଭାରତବର୍ଷରେ ଏକ ମୁଖ୍ୟ ଭୂମିକା ଗ୍ରହଣ କରିଥିଲା । ସେଥିରେ ଏକ ସରକାରୀ ତଦନ୍ତ କମିଟି ବଳବନ୍ତ ମେହେଟ୍ଟାଙ୍କ ଅଧକ୍ଷତାରେ ବସି ଦୁଷ୍ଟ ରାଜାମାନଙ୍କର ନଷ୍ଟ ପ୍ରକୃତି ଓ ପ୍ରଜା ପୀଡନର ବହୁ ଦୃଷ୍ଟାନ୍ତ ପ୍ରକାଶ କରିଥିଲେ । ଏହି ଆନ୍ଦୋଳନରେ ସାରଙ୍ଗଧର ଦାସ, ପବିତ୍ରମୋହନ ପ୍ରଧାନ ପ୍ରଭୃତି ବିଶେଷ ଅଂଶଗ୍ରହଣ କରିଥିଲେ । ଢ଼େଙ୍କାନାଳରେ ନିରୀହବାଳକ ବାଜିରାଉତ ଶହୀଦ ହୋଇଥିଲେ ଓ ତା ଉପରେ ସଚ୍ଚି ରାଉତରାୟଙ୍କ ଅମର ଲେଖନୀରୁ ଅତୁଳ୍ୟ କବିତା ନିର୍ଝରିତ ହୋଇଥିଲା । ରଣପୁର ଗଡଜାତରେ ଗୋରା ପଲିଟିକାଲ ଏଜେଣ୍ଟ ବେଜେଲଗେଟଙ୍କୁ ଉତ୍ୟକ୍ତ ଉତ୍‌ପୀଡିତ ପ୍ରଜାମାନେ ବାଟରେ ଅଟକାଇ ହତ୍ୟା କରିଦେଲେ ।

ରାଜା ଶାସିତ ରାଜ୍ୟ ଭାରତବର୍ଷରେ ଅନେକ ଥିଲା । ଓଡିଆଭାଷୀ ସେପରି ଥିଲା ଛବିଶ । ତା ମଧ୍ୟରେ ରଣପୁର ଏକ ଛୋଟ ରାଜ୍ୟ ଥିଲା । ସେଠାର ରାଜା ନାବାଳକ ବ୍ରଜେନ୍ଦ୍ରଙ୍କ ତରଫରୁ ତାଙ୍କ ମାତା ବସନ୍ତମଞ୍ଜରୀ ଶାସନ ବୁଝୁଥିଲେ । ନୀଳଗିରି ରାଜାଙ୍କ ଝିଅ ସେ । ଶିକ୍ଷିତା ସୌଜନ୍ୟନିପୁଣା । ତାଙ୍କର ଶାସନଗତ ବା ଆଇନଗତ କିଛି ଅସୁବିଧା ଉପୁଜିଲେ ସେ ମତେ ସଙ୍ଗରେ ନେଇ ପଲିଟିକାଲ ଏଜେଣ୍ଟ କର୍ଣ୍ଣେଲ ବେଦୀଙ୍କ ସହିତ ପରାମର୍ଶ କରୁଥିଲେ । କ୍ରମଶଃ ମୁଁ ଦେଖିଲି, ସେ ବ୍ୟତିବ୍ୟସ୍ତ ହେଉଛନ୍ତି । ମୁଁ ତାଙ୍କୁ ବୁଝାଇଲି । ତାଙ୍କ ରାଜ୍ୟ ଶାସନ ସେ ଓଡିଶା ସରକାରଙ୍କୁ ହସ୍ତାନ୍ତର କରିଦେଲେ ଭଲହେବ । ତାହା ସମ୍ଭବ ହୋଇପାରିଲେ, ଭଲହେବ ବୋଲି ତାଙ୍କର ହୃଦବୋଧ ହେଲା । ୧୯୪୫ ମେ ମାସରେ ଦ୍ୱିତୀୟ ମହାସମର ସମାପ୍ତି ପରେ, କଂଗ୍ରେସ ନେତୃବର୍ଗ ଜେଲରୁ ଖଲାସ ହେଲେ । ମହତାବ ଆସି ଓଡିଶାରେ ମନ୍ତ୍ରୀମଣ୍ଡଳ ଗଢ଼ିଲେ ୨୩ ଏପ୍ରିଲ ୧୯୪୬ରେ । ରଣପୁର ରାଜମାତାଙ୍କ ସହିତ ମୁଁ ମହତାବଙ୍କ ପାଖକୁ କଟକ କିଲ୍ଲା ମଧ୍ୟରେ ଥିବା ତାଙ୍କ

Digitized by srujanika@gmail.com

ସରକାରୀ ବାସଭବନକୁ ଯାଇ ରଣପୁର ଶାସନକୁ ଓଡିଶା ଶାସନରେ ମିଶାଇବାର ପ୍ରସ୍ତାବ ଦେଲି । ଆଇନଗତ ଭାବେ ତାହା କିପରି ସମ୍ଭବ ସେ ବିଷୟରେ ଆଲୋଚନା ହେଲା । ଗଡଜାତରେ ପ୍ରଜାମୂଳକ ଶାସନପାଇଁ ଦାବୀ ହେଉଥିଲା । କିନ୍ତୁ ଗଡଜାତ ଶାସନ ପ୍ରାଦେଶିକ ଶାସନ ସହିତ ମିଶ୍ରଣର କୌଣସି ସ୍ପଷ୍ଟ ଚିତ୍ର ଦାବୀକୁ ଆସି ନଥିଲା । ଇଂରେଜ ସରକାରଙ୍କ ସାର୍ବଭୌମତ୍ୱ ଅଧୀନରେ ରାଜାମାନଙ୍କର ସ୍ୱାଧୀନ ରାଜତ୍ୱ ଥିଲା ଭିନ୍ନ ଭିନ୍ନ ସନ୍ଧି ସର୍ତ୍ତ ଅନୁସାରେ । ପ୍ରାଦେଶିକ ଶାସନ ସେହି ସାର୍ବଭୌମତ୍ୱର ଅନ୍ତର୍ଗତ । ତେଣୁ ଉଭୟଙ୍କ ସମ୍ମତିରେ କୌଣସି ଏକ ଗଡଜାତର ଶାସନର ଦାୟିତ୍ୱ ଏକ ପ୍ରାଦେଶିକ ଶାସନ ଗ୍ରହଣ କରିପାରିବ ଏବଂ ଦୁଇ ଶାସନ ମିଳିତ (Integrated ) ହୋଇପାରିବ ବୋଲି ମୁଁ ବୁଝାଇଥିଲି । Integration ଶବ୍ଦଟି ମୁଁ ପ୍ରଥମେ ଏ କ୍ଷେତ୍ରରେ ଯଥାଯଥ ପ୍ରଯୁଜ୍ୟ ହେବ ବୋଲି କହିଥିଲି । ଘଟନାକ୍ରମେ, ୧୯୪୭ ଅଗଷ୍ଟ ୧୫ ତାରିଖରେ ଭାରତ ସ୍ୱାଧୀନତା ଲାଭ ପରେ ମହତାବଙ୍କ ଚେଷ୍ଟା ଓ ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କ ସୁଚତୁର ନେତୃତ୍ୱରେ ଭାରତବର୍ଷରେ ପ୍ରଥମ ଓଡିଆଭାଷୀ ସମସ୍ତ ଗଡଜାତ (ମୟୁରଭଞ୍ଜ ବ୍ୟତୀତ) କଟକ ଠାରେ ଦୁଇଦିନ ଭିତରେ ଓଡିଶା ପ୍ରଦେଶ ସଙ୍ଗେ ଚୁକ୍ତିପତ୍ର ମାଧ୍ୟମରେ ମିଶ୍ରଣ ହୋଇଗଲା । (Surrender) ସମର୍ପଣ ନ କହି ସେ ଚୁକ୍ତିକୁ (Integration) ମିଶ୍ରଣ କୁହାଗଲା । ଯେଉଁଦିନ କଟକରେ ଏହି ପର୍ବ ଚାଲିଥାଏ, ପାଟନା ହାଇକୋର୍ଟର ଏକ ସର୍କିଟ, କଟକରେ ମଧ୍ୟ ଚାଲିଥାଏ । ସେଥିରେ ମନୋହରଲାଲ ଓ ରାମସ୍ୱାମୀ ଦୁଇଜଣ ଆସିଥିଲେ । ନୀଳମଣି ସେନାପତି ଏହି ମିଶ୍ରଣ ସଂକ୍ରାନ୍ତରେ ମନୋହରଲାଲଙ୍କ ସଙ୍ଗେ ପରାମର୍ଶ ଲୋଡିଲେ । ରମସ୍ୱାମୀଙ୍କର (International Law) ଆନ୍ତର୍ଜାତିକ ଆଇନ ସମ୍ବନ୍ଧରେ ପଢ଼ାଶୁଣା ଥିଲା । କେଉଁ କାରଣରୁ କହିପାରିବି ନାହିଁ, ମନୋହରଲାଲ ମତେ ସନ୍ଧ୍ୟାବେଳେ ଡକାଇ ପଠାଇଲେ, ନୀଳମଣି ସେନାପତି ପଚାରୁଥିବା ବିଷୟ ଉପରେ ଆଲୋଚନା କରିବାକୁ । ମୁଁ ରଣପୁର ସମ୍ବନ୍ଧରେ ବର୍ଷକ ପୂର୍ବରୁ ଯେଉଁ ପ୍ରସ୍ତାବ ଉଠାଇଥିଲି ତାହା ଅଧିକତର ସହଜ ହୋଇ ଆସିଥିଲା ସ୍ୱାଧୀନତା ଲାଭ ପରେ । ସାର୍ବଭୌମତ୍ୱ ଇଂରେଜ ସରକାରଙ୍କର ଚାଲିଯିବା ପରେ ସ୍ୱାଧୀନ ଭାରତ, ରାଜାମାନଙ୍କୁ ପରାସ୍ତ ବା ବାଧ୍ୟ କରି ଅଥବା ସମ୍ମତି କ୍ରମେ ସେ ରାଜ୍ୟମାନଙ୍କର ଶାସନ ନିଜ କରାୟତ୍ତ କରିପାରେ । ସେତୁବନ୍ଧରେ ଗୁଣ୍ଡିଚି ମୂଷାର ନଗଣ୍ୟ ଅଂଶ ବୋଧହୁଏ ଅଜାଣତ ରହିଲା ତିନିଜଣଙ୍କ ଛଡା ଅନ୍ୟ ସମସ୍ତଙ୍କ ପାଖରେ ।

Digitized by srujanika@gmail.com

ପରେ ଶୁଣିଥିଲି (ବନମାଳୀ ପଟ୍ଟନାୟକଙ୍କ ଠାରୁ, ମୋତିଲାଲ ପଣ୍ଡିତଙ୍କ ଉପସ୍ଥିତିରେ) ମହାତ୍ମା ଗାନ୍ଧି ଗଡଜାତ ମିଶ୍ରଣ ଜବରଦସ୍ତି କରାଯାଉଛି ଭାବି ଆପତ୍ତି ଉଠାଇଥିଲାବେଳେ ମହତାବ ତାଙ୍କୁ ପତ୍ର ଲେଖି ଜଣାଇଥିଲେ ଯେ ସର୍ବପ୍ରଥମେ ରଣପୁର ରାଜ୍ୟ ତରଫରୁ ସ୍ୱଇଚ୍ଛାରେ ମିଶ୍ରଣ ପ୍ରସ୍ତାବ ମୁଁ ତାଙ୍କ ପାଖରେ ଉପସ୍ଥିତ କରାଇଥିଲି । ଏପରି ସେ ଗାନ୍ଧିଜୀଙ୍କୁ ଲେଖିଥିଲେ କିମ୍ବା ସେପରି ଲେଖିବାର ଆବଶ୍ୟକତା ଉଠିଥିଲା କି ନାହିଁ ମୁଁ କେବେ ମହତାବଙ୍କୁ ପଚାରି ନାହିଁ ।

ଗଡଜାତ ମିଶ୍ରଣ ପରେ ରଣପୁର ରାଜମାତା ବିଧାନସଭାକୁ ନିର୍ବାଚିତ ହୋଇ ଡେପୁଟି ମିନିଷ୍ଟର ହୋଇଥିଲେ । ତାଙ୍କ ପୁତ୍ର ବ୍ରଜେନ୍ଦ୍ର ମୋ ପୁଅ ବେବିର ଘନିଷ୍ଠ ବନ୍ଧୁ ହୋଇଥିଲେ । ମା' ପୁଅଙ୍କର ଅକାଳ ବିୟୋଗ ଘଟିଲା ପରେ ସେ ପରିବାରଟି ଶୋକାଚ୍ଛନ୍ନ ହୋଇ ପଡିଲା ।



Digitized by srujanika@gmail.com

# ବୁଝିବାରେ ଭ୍ରମ

ମୋ ଦୁର୍ଭାଗ୍ୟକୁ, ଭୁଲ୍ ବୁଝାମଣାରେ ମୁଁ ଶିକାର ହୋଇଛି କେତେଥର । ମୋର ଜଣେ ବାଲ୍ୟସାଥି ରାମୀ (ରାମଚନ୍ଦ୍ର ମିଶ୍ର) ମୁଁ ତା ବିବାହ ପ୍ରସ୍ତାବରେ ବାଧା ଦେଇଥିବାର ଭୁଲରେ ଭାବି ବହୁବର୍ଷର ବନ୍ଧୁତାକୁ ଉପେକ୍ଷା କରି ମୋ ସହିତ କଥାବାର୍ତ୍ତା ସୁଦ୍ଧା ବନ୍ଦ କରି ଦେଇଥିଲା ଅନେକ ବର୍ଷ । ମୁଁ ସେଥିରେ ମର୍ମାହତ ହୋଇଥିଲି । ସେ ପରେ ଜାଣିପାରିଲା, ଭୁଲ ବୁଝିଥିଲା ବୋଲି ।

'ଦେଶକଥା' ପତ୍ରିକା ବାହାର କରୁଥିଲେ ଲାଲା ନଗେନ୍ଦ୍ର ରାୟ । ସେଥିରେ ଅନେକଙ୍କୁ ସେ କଟୁ ସମାଲୋଚନା କରୁଥିଲେ । ବ୍ୟକ୍ତିଗତ ସମାଲୋଚନା ବାଦ୍ ଯାଉନଥିଲା । ପ୍ରତିଭାବାନ୍ ଲେଖକ, ବଳଶାଳୀ ଲେଖନୀ । ପାରଳା ମନ୍ତ୍ରୀମଣ୍ଡଳବେଳେ ବୀରକିଶୋର ରାୟ ଓଡିଶାର ପ୍ରଥମ ଆଡ୍‌ଭୋକେଟ୍ ଜେନେରାଲ ହେଲେ । ତାଙ୍କ ପତ୍ନୀ ଲତିକା ରାୟ ପରଦା ବାହାରକୁ ଆସି ଥାଆନ୍ତି ମୁଖ୍ୟତଃ ସରଳା ଦେବୀଙ୍କ ସଖ୍ୟତା ପ୍ରଭାବରେ । ଉଭୟ ନିଃସଙ୍କୋଚରେ ସାଧାରଣ ଓ ସାମାଜିକ କ୍ଷେତ୍ରରେ ଅଂଶ ଗ୍ରହଣ କରିବାରେ ଆଗ୍ରହୀ ଥିଲେ । ସେମାନଙ୍କ ପ୍ରତି ଆକ୍ଷେପସୂଚକ ଲେଖା 'ଦେଶକଥା'ରେ ବେଳେବେଳେ ବାହାରୁ ଥାଏ । ରଘୁ ରାଉତ ଜଣେ ମୁନିସିପାଲିଟିର କାଉନ୍‌ସିଲର ଥିଲେ । ଲଘା କି ପଘା ତାଙ୍କର ନ ଥିଲା । ଅସୁସ୍ଥ ଶରୀର । ପାନ ଓ ପାନୀୟରେ ଆସକ୍ତି ଯୋଗୁ ଅର୍ଥାଭାବରେ ପ୍ରାୟ ସର୍ବଦା ପଡ଼ନ୍ତି । ସାଧାରଣ କ୍ଷେତ୍ରର କର୍ମୀ ହିସାବରେ ଅନେକଙ୍କଠାରୁ ସାହାଯ୍ୟ ଲୋଡନ୍ତି ଓ ପାଆନ୍ତି । ମୋ ଠାରୁ ମଧ । ସେ ଏକ ପତ୍ରିକା ବାହାର କଲେ 'ସତକଥା' । ପର କୁତ୍ସା, ସତ ହେଉ, ମିଛ ହେଉ ତାଙ୍କ କାଗଜରେ ଛାପା ହୁଏ । ଲୋକେ ସେ ବିଷୟରେ କୁହାକୋହି ହେବା ସ୍ୱାଭାବିକ । ସେପରି ଲେଖାର ସମ୍ଭାବନା ପରୋକ୍ଷରେ ପ୍ରକାଶ କରି ପଇସା ମଧ ଆଦାୟ ହେଉଥିବାର ସନ୍ଦେହ ମୋର ଥିଲା । ଦିନେ ରଘୁ ରାଉତ ସକାଳେ ଆସି ଆମ ବାରନ୍ଦାରେ ବସିଥାନ୍ତି ମୋ ଅପେକ୍ଷାରେ । ପୁଲିସ ଇନ୍‌ସପେକ୍ଟର ଲକ୍ଷ୍ମଣ ମିଶ୍ରେ ସେତେବେଳେ ଆମ ଘରକୁ ଆସିଲାବେଳେ ରାଉତଙ୍କୁ ଭେଟିଲେ । ସେ ମୋ ସ୍ତ୍ରୀଙ୍କର

Digitized by srujanika@gmail.com

ଭିଶୋଇ, କଜେଇ ଝିଅ ଭଉଣୀଙ୍କୁ ବିବାହ କରିଥିଲେ । ମୋର ବି କଲେଜ ପଢ଼ିଲାବେଳୁ ବନ୍ଧୁ । ସେ ଓପରକୁ ଯାଇ ମୋ ସ୍ତ୍ରୀଙ୍କୁ କହିଲେ, ରଘୁ ରାଉତ ତଳେ ବସିଛନ୍ତି । ସ୍ତ୍ରୀଙ୍କ ପାଟିରୁ ବାହାରିଲା— ଟଙ୍କା ପାଇଁ ତ ଆସିଥିବେ ! ଲକ୍ଷ୍ମଣବାବୁ ତା ପରେ କଥା ପ୍ରସଙ୍ଗରେ ଏହି କଥା ପ୍ରକାଶ କରିଥିଲେ ବୀରବାବୁ ଓ ସରଳା ଦେବୀଙ୍କ ଆଗରେ । ସେମାନଙ୍କ ବିଷୟରେ 'ସତକଥା' ବେଳେବେଳେ ଲେଖେ । ରଘୁ ରାଉତ ମୋଠାରୁ କେବେ କେବେ ଆର୍ଥିକ ସାହାଯ୍ୟ ପାଉଥିବାରୁ, ମୁଁ 'ସତକଥା'ର ଲେଖା ପାଇଁ ଉତ୍ସାହିତ କରିବା ପାଇଁ ଟଙ୍କା ଦେଉଛି ବୋଲି ବୀରବାବୁ ପ୍ରଭୃତିଙ୍କର ଭ୍ରମ ଧାରଣା ହେଲା ଏବଂ ମୋ ପ୍ରତି ଥିବା ସେମାନଙ୍କର ଅନେକ ଦିନର ସୌହାର୍ଦ୍ଦ୍ୟରେ ବାଧା ଘଟିଲା । ମୋତେ ପଚାରିଲେ ନାହିଁ କି ସତ୍ୟାସତ୍ୟ ବୁଝିଲେ ନାହିଁ ।

ପ୍ରଥମ ପାରଳା ମନ୍ତ୍ରୀମଣ୍ଡଳବେଳେ ପ୍ରଥମ ଆଡ଼ଭୋକେଟ ଜେନେରାଲ ନିଯୁକ୍ତି ପ୍ରଶ୍ନ ଉଠିଥିଲା । ପାଟନା ହାଇକୋର୍ଟର ଚିଫ୍ ଜଷ୍ଟିସ୍ ସୁବୋଧଚନ୍ଦ୍ର ଚାଟାର୍ଜୀ ଆଡ଼ଭୋକେଟଙ୍କୁ ସେଥିନିମନ୍ତେ ସୁପାରିଶ କରିଥିଲେ । ଆମ୍ଭେମାନେ ବୀରବାବୁଙ୍କୁ ସେ ପଦବୀରେ ନିଯୁକ୍ତ କରିବା ପାଇଁ ପାରଳା ମହାରାଜା ଓ ଅନ୍ୟ ମନ୍ତ୍ରୀ ମାନଧାତା ଗୋରାଚାନ୍ଦ ପଟ୍ଟନାୟକଙ୍କ ନିକଟରେ ବାରମ୍ବାର କହି କୃତକାର୍ଯ୍ୟ ହୋଇଥିଲୁ । ବୀରବାବୁ ମୁଁ ଓକିଲାତି ଆରମ୍ଭ କରିବା ଠାରୁ ମୋ ପ୍ରତି ସଦୟ ଓ ସୁପ୍ରସନ୍ନ ଥିଲେ । କେତେକ ମକଦ୍ଦମାରେ ତାଙ୍କ ସହିତ କାର୍ଯ୍ୟ କରିଥିଲି । ଅନ୍ୟମାନଙ୍କ ସମକ୍ଷରେ ମୋ ବିଷୟରେ ଅକୁଣ୍ଠ ସଦ୍‌ଭାବ ଓ ପ୍ରଶଂସା ସେ ପ୍ରକାଶ କରୁଥିଲେ । ସବୁ ତପସ୍ୟା ଶୁଖୁଆ ପୋଡାରେ ଗଲା । ବୀରବାବୁଙ୍କର ଜଣେ ପୁଅ ସୁଭାଷ ବାୟୁସେନା ବାହିନୀରେ ଥିଲେ । ସେ ଯୁଦ୍ଧରେ ନିଖୋଜ ହୋଇଯିବାର ଟେଲିଗ୍ରାମ୍, ଆମେ କୋର୍ଟରେ ଥାଉ, ପହଞ୍ଚିଲା । ବୀରବାବୁ ଅତି ଅଧୀର ହୋଇ ପଡିଲେ । ମୁଁ ତାଙ୍କୁ ଧରି ମୋ ଗାଡିରେ ନେଇ ତାଙ୍କ ଘରକୁ ଗଲି ଏବଂ ରାତି ଅଧ ପର୍ଯ୍ୟନ୍ତ ସେଠାରେ ରହି ଦିଲ୍ଲୀ ସହିତ ଟେଲିଫୋନ ସଂଯୋଗ କରି ସଠିକ ଖବର ବୁଝିବାର ଚେଷ୍ଟା କଲି । ଗୋଟିଏ ରେଡିଓ ସେହି ସନ୍ଧ୍ୟାରେ କିଣି ତାଙ୍କ ଘରେ ରଖି ଯୁଦ୍ଧ ବିବରଣୀ ଶୁଣିବାର ବ୍ୟବସ୍ଥା କରାଇଲି । ତାପରେ ଦେଖିଲି ପୂର୍ବ ସଦିଚ୍ଛା ଫେରି ଆସିଲା ।

ଓଡିଶା ସ୍ୱତନ୍ତ୍ର ପ୍ରଦେଶ ହେଲେ ମଧ ପାଟନା ହାଇକୋର୍ଟ ଓ ପାଟନା ବିଶ୍ୱବିଦ୍ୟାଳୟ ଅଧୀନରେ ଥିଲା ଯଥାକ୍ରମେ ୧୯୪୮ ଓ ୧୯୪୩ ପର୍ଯ୍ୟନ୍ତ । ଓଡିଶା ସର୍କିଟକୋଟ ପୂର୍ବପରି ଚାଲୁ ରହିଥିଲା । ସୁବୋଧବାବୁଙ୍କୁ ଓଡିଶାରେ ଆଡଭୋକେଟ ଜେନେରାଲ ନ କରିବାରୁ, ପାଟନା ଚିଫ୍ ଜଷ୍ଟିସ ତାଙ୍କୁ ପାଟନା ହାଇକୋର୍ଟର ଜଜ୍

Digitized by srujanika@gmail.com

କରିନେଲେ, ତାଙ୍କ ସୁପାରିଶ ବଳରେ । ପ୍ରାୟ ତିନିବର୍ଷ ପରେ ସେ ଅବସର ନେବାରୁ ବୀରବାବୁ ଗଲେ ଜଜ୍ ହୋଇ ୧୯୪୫ ଜୁଲାଇ ମାସରେ । ହାଇକୋର୍ଟ ଜଜ୍, ପ୍ରଥମ ଓଡିଆ ସେ । ଏ ନିଯୁକ୍ତିରେ ଆନନ୍ଦ ଓ ଗର୍ବ ସମସ୍ତେ ଅନୁଭବ କରିବାର କଥା । ତାଙ୍କୁ ସମ୍ବର୍ଦ୍ଧନା ଦେବାରେ ତତ୍ପରତା ନ ଦେଖି ଆମ ଘରେ ଏକ ନୈଶ ଭୋଜିର ଯୋଗାଡ କଲି । ମୁଖ୍ୟମନ୍ତ୍ରୀ ମହତାବ, ବିଶ୍ୱନାଥ ଦାସ, ରେଭେନ୍ୟୁ କମିଶନର, କଲେକ୍ଟର, ସ୍ୱାମୀ ବିଚିତ୍ରାନନ୍ଦ ଦାସ ପ୍ରଭୃତି ଆସିଥିଲେ । ବୀରବାବୁ ଅତ୍ୟନ୍ତ ଖୁସି ହେଲେ । ପାଟନାରେ ପହଞ୍ଚି ଖଣ୍ଡିଏ ଚିଠି ଲେଖିଥିଲେ ।

Circuit House
Patna
16-7-45

My dear Harihar,

I have arrived here all safe and been putting up in the circuit house. It is very difficult to get a suitable house.

I shall always remember how kind you were to come out first with a sumptuous dinner celebrating my appointment. I appreciate the kindly spirit in it. To tell you frankly, some untoward circumstance intervened in our relationship which was so platonic & cordial. However, I hope, let us be united together all the more closely. I have nothing but love for you & hope you will reciprocate the same. With kindest regards.

To
Mr. H. Mohapatra M.A.B.L
Advocate
Chandinichowk
Cuttack.

Yours sincerely
B.K. Ray

କିଛି ଦିନ ପରେ ଲତିକା ଦେବୀ ମଧ୍ୟ ଏକ ଅନୁରୂପ ପତ୍ର ଦେଇଥିଲେ ।



Digitized by srujanika@gmail.com

# କନ୍ୟା ବିବାହ

କଟକରେ ତିନି ମିନି ଏକା ବୟସର ଥିଲେ । ପି.ଏମ୍. ଏକାଡେମୀ ସ୍କୁଲର ହେଡମାଷ୍ଟର ବସନ୍ତବାବୁଙ୍କ ଝିଅ ମିନି (ମିନତି), ଇଞ୍ଜିନିୟର କଣ୍ଟ୍ରାକ୍ଟର ଭାଗବତ ମହାନ୍ତିଙ୍କ ଝିଅ ମିନି (ପ୍ରିୟମ୍ବଦା) ଓ ମୋ ଝିଅ ମିନି (ସୁମିତ୍ରା) । ଘଟନା ଚକ୍ରରେ ଏ ତିନିହେଁ ସ୍କୁଲରେ ପଢ଼ିଲାବେଳେ, ନୃତ୍ୟ ଶିକ୍ଷା କଲେ ମେଦିନିପୁର ବାସୀ ବନ ବିହାରୀ ମାଇତିଙ୍କ ଠାରୁ । ସୁଠାମ ଯୁବକ ମାଇତି ପ୍ରଥମେ ଆସିଥିଲେ ଆମ ଘରକୁ ନୃତ୍ୟ ଟିଉସନ ସନ୍ଧାନରେ । ସେତେବେଳେ ଭଦ୍ରଲୋକ ଘର ଝିଅ ନାଚ ଆରମ୍ଭ କରି ନଥିଲେ ଓଡିଶାରେ । ସଂଗୀତ ଶିକ୍ଷା କିଛି କିଛି ହେଉଥିଲା । ବନବିହାରୀ ମାଇତି ଅନ୍ନସଂସ୍ଥାନ ଉଦ୍ଦେଶ୍ୟରେ କଟକ ଆସିଥିଲେ । ସେ ଜାଣିଥିଲେ କେବଳ ନୃତ୍ୟ । କେତେକାଳ ମେଦିନିପୁର, ଖଡଗପୁରରେ ଭଦ୍ର ପରିବାରରେ ନାଚ ଶିଖାଇ ଥିବାର ପ୍ରମାଣପତ୍ର ମତେ ଦେଖାଇଲେ । ଆମ ଘରେ ମିନିକୁ ସେ ଶିଖାଇବାକୁ ଆରମ୍ଭ କଲେ । ଅନ୍ୟ ଦୁଇ ମିନି ପରେ ଯୋଗଦେଲେ । ମିନତି (ବିବାହ ପରେ ମିନତି ମିଶ୍ର) ଓଡିଶୀ ନୃତ୍ୟରେ ସୁଦକ୍ଷା ଓ ସୁନିପୁଣା ହୋଇ ଦେଶବିଦେଶରେ ଖ୍ୟାତି ଅର୍ଜନ କରିଛନ୍ତି । ଅନ୍ୟ ମିନି ପ୍ରିୟମ୍ବଦା ମଧ୍ୟ ସେହିପରି କୃତିତ୍ୱ ଲାଭ କଲେ ଓ ତା ସଙ୍ଗେ ସଙ୍ଗେ ଲେଖା ପଢ଼ାରେ ଉନ୍ନତ ହୋଇ ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ ହୋଇଛନ୍ତି । ତାଙ୍କ କନ୍ୟା ଓଡିଶୀ ନୃତ୍ୟରେ ଅଗ୍ରସର ହେଉଛନ୍ତି । ମୋ ଝିଅ ନାଚ ଶିଖିଲା, ପ୍ରତିଯୋଗିତାରେ ଭାଗ ନେଲା; ଉତ୍ସବାଦିରେ ନୃତ୍ୟ ପ୍ରଦର୍ଶନ କଲା । କିନ୍ତୁ ବିବାହ ପରେ ସଂପୂର୍ଣ୍ଣ ଛାଡିଦେଲା ।

ଝିଅର ବିବାହ କଥା ଆମେ ଭାବୁଥିଲୁ । ନନା ମଧ୍ୟ ଭାବୁଥିଲେ । ଅପ୍ରତ୍ୟାଶିତ ଭାବରେ ପ୍ରସ୍ତାବଟିଏ ଆସିଲା, ଗୋଦାବରୀଶବାବୁଙ୍କ (ପଣ୍ଡିତ ଗୋଦାବରୀଶ ମିଶ୍ର) କନିଷ୍ଠ ପୁତ୍ର ରଙ୍ଗନାଥ ପାଇଁ । ପ୍ରସ୍ତାବ ପଠାଇଥିଲେ ଗୋଦାବରୀଶବାବୁ ନିଜେ ତାଙ୍କ ସାହାଯ୍ୟକାରୀ ଗୋପୀନାଥ ହାତରେ ମୋ ସ୍ତ୍ରୀଙ୍କ

Digitized by srujanika@gmail.com

ପାଖକୁ । ଆମେ ତତ୍‌କ୍ଷଣାତ୍ ରାଜି ହେଲୁ । ନନାଙ୍କୁ ଜଣାଇଲି । ସେ ମଧ୍ୟ ଖୁସି । ରଙ୍ଗନାଥ ବ୍ରତ ଘରକୁ ଲିଙ୍ଗରାଜବାବୁ, ରାଧାନାଥବାବୁ ଓ ମୁଁ ଏକାଠି ଯାଇଥିଲୁ, ଆମ ବେବି ଅଷ୍ଟିନ୍ ଗାଡିରେ ବାଣପୁର । ସେତେବେଳେ ଯାହା ରଙ୍ଗନାଥଙ୍କୁ ଦେଖିଥିଲି । ପ୍ରସ୍ତାବ ସମୟରେ ସେ ଏହ୍ଲାବାଦରେ ଏମ୍.ଏ.ଓ ଲ ପଢୁଥିଲେ । ଜାତକ କାହାରି ନଦେଖି ବିହାହ ଦିନ ସ୍ଥିର ହେଲା ୧୯୪୮ ଜାନୁଆରୀ ୧୮ ତାରିଖକୁ । ଆମଆଡୁ ଖୋଜାଖୋଜି ଆରମ୍ଭ ପୂର୍ବରୁ ଏପରି ଏକ ପ୍ରସ୍ତାବ ଆସିବା ଭଗବାନଙ୍କର କୃପା । ଦ୍ୱିତୀୟା କନ୍ୟା ବିଚିତ୍ରା ପାଇଁ ମଧ୍ୟ ସେହିପରି ଏକ ପ୍ରସ୍ତାବ ଆସିଲା ତେରବର୍ଷ ପରେ, ଆମ ଖୋଜାଖୋଜି ପୂର୍ବରୁ, କବିରାଜ ଲକ୍ଷ୍ମୀନାରାୟଣ ଆଚାର୍ଯ୍ୟଙ୍କ ଜ୍ୟେଷ୍ଠପୁତ୍ର ଗୌରୀଶଙ୍କରଙ୍କ ସମ୍ବନ୍ଧରେ । ସେ କ୍ଷେତ୍ରରେ ମଧ୍ୟ ଆମେ ତତ୍‌କ୍ଷଣାତ୍ ସମ୍ମତ ହେଲୁ ।

ବିବାହର ଆୟୋଜନ ସାଧ୍ୟମତ କରିବା ଆରମ୍ଭ କଲି । କଟକରେ କରିବାର ସ୍ଥିର ହେଲା । ସେତେବେଳକୁ ତାହିଁ ବଡ ଆକାରରେ ହେଲା । ଝିଅ ସାଙ୍ଗରେ ଅନ୍ୟାନ୍ୟ ଜିନିଷ ମଧ୍ୟରେ ସୋଫାସେଟ୍, ଖାଇବା ଟେବୁଲ ଚୌକି, ଡିନର ଓ୍ୟାଗେନ ପ୍ରଭୃତି ଦେଇଥିବାରୁ ଆଚାର୍ଯ୍ୟ ମହାଶୟ (ଆଚାର୍ଯ୍ୟ ହରିହର ଦାଶ) ମୋ ଉପରେ ରୁଷ୍ଟ ହୋଇ ବର୍ଷକ ପର୍ଯ୍ୟନ୍ତ ଆମଘରକୁ ଆସିନଥିଲେ । ଅଯଥା ବ୍ୟୟ ତାଙ୍କ ପାଖରେ ନିନ୍ଦନୀୟ ଥିଲା ।

ବିବାହ ଦିନର ଛଅଦିନ ପୂର୍ବରୁ ମହାତ୍ମା ଗାନ୍ଧି ୧୨/୧/୧୯୪୮ରୁ ଅନଶନ ଆରମ୍ଭ କଲେ । ଭାରତବର୍ଷରୁ ସ୍ୱାଧୀନତା ପ୍ରାପ୍ତ ସଙ୍ଗେ ସଙ୍ଗେ ପାକିସ୍ଥାନ ବିଭାଗ ହୋଇ ଯେଉଁ ସାଂପ୍ରଦାୟିକ ଜ୍ୱଳନ୍ତ ବିଦ୍ୱେଷରେ ସହସ୍ର ନରନାରୀ ଧନ ଜୀବନ ହରାଇଲେ, ତାହାର ବିଷାଦ ସମସ୍ତଙ୍କୁ ଆଚ୍ଛନ୍ନ କରିଥିଲା । ତାହା ସାଙ୍ଗକୁ ଗାନ୍ଧିଙ୍କର ଅନଶନ ଆହୁରି ଦୁଃଶ୍ଚିନ୍ତା ଆଣିଲା ସମସ୍ତଙ୍କ ପାଇଁ । ମୋ ମନରେ ବଡ ଇତଃସ୍ତତ ଭାବ ହେଉଥାଏ ସେହିପରି ଅବସ୍ଥାରେ କନ୍ୟା ବିବାହର ଉତ୍ସବ କରିବା ପାଇଁ । ସ୍ଥଗିତ ରଖିବା ପାଇଁ ଗୋଦାବରୀଶବାବୁଙ୍କ ପାଖରେ କହିବାକୁ ଭରସା ପାଉ ନଥାଏ । ବାହାରେ ସବୁ ଆୟୋଜନ କରୁଥାଏ, ମନ ଭିତରେ ବିଷାଦଗ୍ରସ୍ତ ଥାଏ । ୧୮ର ତାରିଖ ସକାଳେ ରେଡିଓରେ ଖବର ଆସିଲା, ଗାନ୍ଧିଜୀ ଅନଶନ ଭଙ୍ଗ କଲେ । ଆଶ୍ୱସ୍ତ ମନରେ ବିବାହ କାର୍ଯ୍ୟ ସେଦିନ ସମ୍ପନ୍ନ ହେଲା । ଆୟୋଜନର ବିପୁଳତାରେ ଗୋଦାବରୀଶବାବୁ ଅସନ୍ତୁଷ୍ଟ ହୋଇଥିବା ପରେ ଶୁଣିବାକୁ ପାଇଥିଲି ।

Digitized by srujanika@gmail.com

କିନ୍ତୁ କୈଳାସନାଥ କାଟଜୁ (ସେତେବେଳେ ଓଡିଶାର ଲାଟ ଥିଲେ) ସପରିବାର ବିବାହରେ ଯୋଗ ଦେଇ, ଫୁଲସଭାରେ ବସି, ନୈଶ ଭୋଜିରେ ମହତାବବାବୁ ପ୍ରଭୃତିଙ୍କ ସଙ୍ଗେ ଏକତ୍ର ଆହାର କରି ଓଡିଆଘରର ବିବାହର ଅନୁଭୂତି ପାଇବାରେ ଅତି ପ୍ରୀତ ହୋଇଥିଲେ । ପରେ ଅନେକ ଥର ସେ ବିଷୟରେ ଉଲ୍ଲେଖ କରିଥିଲେ । ପଣ୍ଡିତ ବାଳକୃଷ୍ଣ ଦାଶ (ଭିଙ୍ଗାରପୁରର) ବିବାହ ବେଦୀରେ ପୁରୋହିତ ଥିଲେ । ତାଙ୍କର ଶୁଦ୍ଧ ସଂସ୍କୃତ ଉଚ୍ଚାରଣ କାଟ୍‌ଜୁଙ୍କୁ ଅତି ଭଲ ଲାଗିଥିଲା । ସେହିପରି ସେ ପ୍ରଶଂସାମୁଖର ହେଲେ, ଫୁଲସଭାରେ (ଆର୍ଶୀବାଦ ସଭା) ମୋ ମାମୁଁ ପଣ୍ଡିତ ବିଶ୍ୱନାଥ ରଥଙ୍କ ପ୍ରଗଲ୍‌ଭ ସଂସ୍କୃତ ଭାଷଣରେ ।

କିଏ ଜାଣିଥିଲା ଗାନ୍ଧିଜୀଙ୍କ ଅନଶନ ଶଯ୍ୟା ଅନ୍ତିମଶଯ୍ୟାର ମାତ୍ର ପୂର୍ବାଭାସ ଥିଲା । ଜାନୁଆରୀ ୧୮ରେ (୧୯୪୮) ଅନଶନ ଭାଙ୍ଗିଲେ, ୨୦ ତାରିଖରେ ଜଣେ ବୋମା ପକାଇ ଲକ୍ଷ୍ୟ ଭ୍ରଷ୍ଟ ହେଲା । ୩୦ ତାରିଖ ସନ୍ଧ୍ୟା ୫ ଘଣ୍ଟା ୨୦ ମିନିଟ୍ ବେଳେ ମହାତ୍ମାଜୀ ପ୍ରାର୍ଥନାସଭାକୁ ଗଲାବେଳେ ନାଥୁରାମ ଗଡସେ ତାଙ୍କ ଉପରକୁ ପିସ୍ତଲରୁ ଗୁଳି ନିକ୍ଷେପ କରିବାରୁ, ହା ରାମ କହି ସେ ଟଳିପଡିଲେ । ଜାତିର ଆଲୋକ ସ୍ତମ୍ଭ ନିର୍ବାପିତ ହୋଇଗଲା ।



Digitized by srujanika@gmail.com

# ଓଡିଶା ହାଇକୋର୍ଟ

ଓଡିଶାରେ ବିଶ୍ୱବିଦ୍ୟାଳୟ ହେଲା ୧୯୪୩ରେ । ମେଡିକାଲ କଲେଜ ମଧ ହେଲା । ସ୍ୱତନ୍ତ୍ର ହାଇକୋର୍ଟ ୧୯୪୮ ଜୁଲାଇରେ (୨୬ ତାରିଖ, ଗୁରୁବାର ବୋଧହୁଏ) ସ୍ଥାପିତ ହେଲା, ସ୍ୱତନ୍ତ୍ର ପ୍ରଦେଶର ବାରବର୍ଷ ପରେ, ସ୍ୱାଧୀନତା ଲାଭର ବର୍ଷକ ଉତ୍ତାରୁ । କୈଳାସନାଥ କାଟଜୁ ସେତେବେଳକୁ ଓଡିଶାରୁ ଯାଇ ପଶ୍ଚିମ ବଙ୍ଗରେ ଲାଟ ହୋଇଥାଆନ୍ତି । ଆସଫ ଅଲି ଆସିଥାନ୍ତି ଓଡିଶାକୁ ଲାଟରୂପେ । ରହୁଥାନ୍ତି କଟକ ଲାଲବାଗ୍ କୋଠିରେ । ଯେଉଁ କୋଠାରେ ଜଜ୍ କୋର୍ଟ ହେଉଥିଲା, ପାଟନା ସର୍କିଟ୍ କୋର୍ଟ ଆସି ବସୁଥିଲା, ସେହିଠାରେ ହାଇକୋର୍ଟ ହେବା ସ୍ଥିର ହେଲା । ଏଠାରୁ ରୁଦ୍ର ପ୍ରସନ ମିଶ୍ର (ଯେ ହାଇକୋର୍ଟର ପ୍ରଥମ ଆସିଷ୍ଟାଣ୍ଟ୍ ରେଜିଷ୍ଟ୍ରାର ହେଲେ) ପାଟନା ଯାଇ ପାଟନା ହାଇକୋର୍ଟରୁ ପୂରା ହାଇକୋର୍ଟ ଚଳନି ସମ୍ପର୍କରେ ତାଲିମ ପାଇ ଆସିଲେ । ପ୍ରଥମରୁ ଚାରିଜଣ ଜଜ୍ ହେବା ସ୍ଥିର ହେଲା । ଜଣେ ଚାକିରୀରୁ ଅର୍ଥାତ୍ ଜିଲ୍ଲା ଜଜ୍ ପାହିଆରୁ, ଦୁଇଜଣ ଓକିଲଙ୍କ ମଧ୍ୟରୁ, ଜଣେ ଅଭିଜ୍ଞ ଚିଫ୍ ଜଷ୍ଟିସ୍ ବାହାରୁ । ନରସିଂହମ ସେତେବେଳେ ଲ ସେକ୍ରେଟାରୀ ଥାଆନ୍ତି । ସେ ଆଇ.ସି.ଏସ୍. କାଡରରେ ପ୍ରଥମେ ବିହାରରେ କାର୍ଯ୍ୟ କରୁଥିଲେ, ପରେ ଜୁଡିସିଆଲ ବିଭାଗକୁ ଆସିଲେ । ବିହାରରେ ଜିଲ୍ଲା ଜଜ୍ ଥାଇ, ଓଡିଶାକୁ ଆସିଥିଲେ କଟକର ଜିଲ୍ଲାଜଜ୍ ହୋଇ । ପରେ ସେକ୍ରେଟେରୀଅଟରେ ଲ ସେକ୍ରେଟାରୀ କାର୍ଯ୍ୟ କରୁଥିଲେ । ରେଭେନିଉ ସେକ୍ରେଟରୀ ମଧ କିଛି ଦିନ ଥିଲେ । ନିତ୍ୟାନନ୍ଦ କାନୁନଗୋ ଥାଆନ୍ତି ଲ ମନ୍ତ୍ରୀ । ଭାରତବର୍ଷର କୌଣସି ହାଇକୋର୍ଟ ନୂତନ ହୋଇ ବସିବାବେଳେ ଚାକିରୀ କରୁଥିବା ବ୍ୟକ୍ତିଙ୍କ ମଧ୍ୟରୁ ପ୍ରମୋସନ ଦେଇ ଜଜ୍ ନିଆଯାଉ ନଥିଲା । ନରସିଂହମଙ୍କ କଥାରେ ନିତ୍ୟାନନ୍ଦବାବୁ ଭଳିଗଲେ । ବୀରବାବୁଙ୍କ ପରେ ଲିଙ୍ଗରାଜ ପାଣିଗ୍ରାହୀ ଆଡଭୋକେଟ୍ ଜେନେରାଲ ହୋଇଥାଆନ୍ତି । ତାଙ୍କୁ ଜଜ୍ ରୂପେ ନେବାରେ ଔଚିତ୍ୟ ଥିଲା । ଅନ୍ୟ ଜଣକବେଳକୁ ଓଡିଶା ସରକାର ଗଲେ ମାନ୍ଦ୍ରାଜ ସହରକୁ, ଏଠାର

Digitized by srujanika@gmail.com

ସମସ୍ତଙ୍କୁ ଛାଡ଼ି । ବାବୁ ଜଗନ୍ନାଥ ଦାସ କେଉଁକାଳେ ବ୍ରହ୍ମପୁରରେ (ଗଞ୍ଜାମ) ଜନ୍ମ ହୋଇଥିଲେ । ସେ ତେଲୁଗୁ । ପାଠସାରି ଓକିଲାତି କରୁଥିଲେ ମାଡ୍ରାସରେ । ବିଶ୍ୱନାଥ ଦାସଙ୍କ ସଙ୍ଗେ ବନ୍ଧୁତା ଥିଲା । ତାଙ୍କ ନାମ କିପରି ଉଠିଲା ଓ କିପରି ମୁଖ୍ୟମନ୍ତ୍ରୀଙ୍କର (ମହତାବ) ସ୍ୱୀକୃତି ତାଙ୍କ ପାଇଁ ମିଳିଲା, ତାହା ରହସ୍ୟାବୃତ ହୋଇ ରହିଲା । କଟକରେ ଦୀର୍ଘକାଳ ସର୍କିଟ କୋର୍ଟରେ ଓକିଲାତି କରୁଥିବା ଅନେକ ପ୍ରବୀଣ, ସୁଦକ୍ଷ ଆଡଭୋକେଟ୍ ଥିଲେ ମଧ କାହାରିକୁ ନିଆ ହେଲା ନାହିଁ । ବାବୁ ଜଗନ୍ନାଥ କଂଗ୍ରେସର ଲୋକ ଥିଲେ । ଅଭିଜ୍ଞ ଚିଫ୍ ଜଷ୍ଟିସ ବାହାରୁ ଆସିବା କଥା । ସେଥିପାଇଁ ବୀରକିଶୋର ରାୟଙ୍କ କଥା ଉଠିଲା । ସେ ତିନିବର୍ଷ ପୂର୍ବରୁ ପାଟନା ହାଇକୋର୍ଟକୁ ଯାଇଥିଲେ । ମୁଖ୍ୟମନ୍ତ୍ରୀ, ଆଇନ ମନ୍ତ୍ରୀ ଅଧିକ ଦୀର୍ଘକାଳର ଅଭିଜ୍ଞତା ଇଚ୍ଛା କରୁଥିଲେ । ପାଟନା ହାଇକୋର୍ଟର ଅନ୍ୟଜଣେ ଜଜ୍‌ଙ୍କୁ ଆଣିବା ପାଇଁ ସେଠାର ଚିଫ୍ ଜଷ୍ଟିସ ମତ ଦେଇଥିଲେ । କିନ୍ତୁ ଶେଷରେ ରାୟଙ୍କୁ ଆଣିବା ସ୍ଥିର ହେଲା ।

ପାଣିଗ୍ରାହୀ ଜଜ୍ ହେଲେ, ତାଙ୍କ ସ୍ଥାନରେ ଆଡଭୋକେଟ୍ ଜେନେରାଲ ପାଇଁ ଚିଫ୍ ସେକ୍ରେଟାରୀ ବି.ସି. ମୁଖାର୍ଜୀ ମୋ ନାମ ପ୍ରସ୍ତାବ କଲେ । ଗଭର୍ଣ୍ଣର ଆସଫ ଅଲି ଏକମତ ହେଲେ । ମୁଖ୍ୟମନ୍ତ୍ରୀ ମଧ ରାଜି । ସେତେବେଳେ ହୀରାକୁଦ ବନ୍ଧ ନିର୍ମାଣ ବିରୋଧରେ ସମ୍ବଲପୁରରେ ଏକ ଆନ୍ଦୋଳନ ଆରମ୍ଭ ହୋଇଥାଏ । ବୋଧରାମ ଦୁବେ (ଓକିଲ) ତା'ର ନେତୃତ୍ୱ ନେଉଥିଲେ । ସେ କଂଗ୍ରେସର ଲୋକ । ବିଶ୍ୱନାଥ ଦାଶଙ୍କ ମନ୍ତ୍ରିମଣ୍ଡଳରେ ଯୋଗ ଦେଇଥିଲେ । ତାଙ୍କୁ ସମ୍ବଲପୁରରୁ ନେଇ ଆସିପାରିଲେ, ସେଠାର ପ୍ରତିରୋଧ ଦୁର୍ବଳ ହୋଇଯିବାର ଆଶାରେ ମୁଖ୍ୟମନ୍ତ୍ରୀ ତାଙ୍କୁ ନୂଆ ହାଇକୋର୍ଟର ଗଭର୍ଣ୍ଣମେଣ୍ଟ ଆଡ୍‌ଭୋକେଟ୍ ହେବାପାଇଁ କହିଲେ । ସେ ଆନନ୍ଦରେ ରାଜି ହେଲେ । ହାଇକୋର୍ଟ, ସର୍କିଟ କୋର୍ଟରେ କାର୍ଯ୍ୟ କରିବାର ଆଦୌ ଅଭିଜ୍ଞତା ନ ଥାଇ, ଗଭର୍ଣ୍ଣମେଣ୍ଟ ଆଡଭୋକେଟର ଦାୟିତ୍ୱ ଦେବା ଓ ନେବା କେଉଁଠି ଦେଖା ନଥିଲା । ରାଜନୀତି ପଶିଲା ପ୍ରଥମରୁ ହାଇକୋର୍ଟ ଆରମ୍ଭରେ ନିଯୁକ୍ତି ବେଳକୁ । ଦୁବେ ଯେତେବେଳେ ଜାଣିଲେ ମୋର ଆଡଭୋକେଟ୍ ଜେନ୍‌ରାଲ ହେବାର ପ୍ରସ୍ତାବ, ସେ କହିଲେ ସେ ଗଭର୍ଣ୍ଣମେଣ୍ଟ ଆଡଭୋକେଟ୍ ହୋଇ କଟକ ଆସିବେ କେବଳ (ସ୍ୱାମୀ) ବିଚିତ୍ରାନନ୍ଦ ଦାସ ଆଡଭୋକେଟ୍ ଜେନେରାଲ ହେଲେ । ଅନ୍ୟ କେହି ସେହି ପଦବୀରେ ରହିଲେ ସେ ଆସିବେ ନାହିଁ । ହାଇକୋର୍ଟ ସୁଯୋଗରେ ତାଙ୍କୁ ସମ୍ବଲପୁରରୁ ଅନ୍ତର କରିବାର ରାଜନୈତିକ ଆବଶ୍ୟକତା ଆଗରେ ଅନ୍ୟ

Digitized by srujanika@gmail.com

ବିଚାର ସବୁ ହାର ମାନିଲା । ମତେ ମହତାବବାବୁ ବୁଝେଇଥିଲେ କିପରି ଜରୁରୀ, ବୁଝାଇଥିଲେ । ଯୋଗ୍ୟତା ଓ ବୟସ ଦୃଷ୍ଟିରୁ ବିଚିତ୍ରାନନ୍ଦ ବାବୁ ଆଡଭୋକେଟ୍ ଜେନେରାଲ ହେବା ଯଥାର୍ଥ ହେଲା ।

ସ୍ୱତନ୍ତ୍ର ମଣ୍ଡପରେ ଚାରି ନୂତନ ବିଚାରପତି ଶପଥ ଗ୍ରହଣ କଲେ ଲାଟ ଆସଫ ଅଲିଙ୍କଠାରୁ । କଲିକତାରୁ କୈଳାସନାଥ କାଟଜୁ ଆସିଥିଲେ ସେ ଉତ୍ସବକୁ । ଦିଲ୍ଲୀରୁ ଆସିଥିଲେ ଫେଡରାଲ କୋର୍ଟର ଚିଫ୍ ଜଷ୍ଟିସ କାନିଆ । ଯୋଗ ଦେଇଥିଲେ ମନ୍ତ୍ରୀମଣ୍ଡଳର ସମସ୍ତେ ଓ ଅନ୍ୟାନ୍ୟ ଅନେକ ।

ହାଇକୋର୍ଟ ହେବାରୁ ହାଇକୋର୍ଟ ବାର ଆସୋସିଏସନ୍‌କୁ ଉପଯୋଗୀ କରିବା ଆବଶ୍ୟକ ହେଲା । ମୁଁ ସେତେବେଳେ ବାର ଆସୋସିଏସନ୍‌ର ସେକ୍ରେଟାରୀ ଥିଲି । କଲିକତା ପାର୍କ ଷ୍ଟ୍ରୀଟର ନିଉବିଲ୍ଟ ଫର୍ନିଚର ଦୋକାନରୁ ମିସ୍ତ୍ରୀ ଓ କାଠ, ପ୍ଲାଇ ଇତ୍ୟାଦି ଅଣାଇ ଲମ୍ବା ଲମ୍ବା ଟେବୁଲ, ଚୌକି ଓ ଅନେକ ଗୁଡିଏ ଲକର ତିଆରି କରାଇଲି ସାତହଜାର ଟଙ୍କାରୁ ଊର୍ଦ୍ଧ୍ୱ ବ୍ୟୟରେ । ସେ ଟଙ୍କା ବାର ଆସୋସିଏସନ୍ ପରେ, ଆସ୍ତେ ଆସ୍ତେ ଫେରାଇବାର କଥା ହୋଇଥିଲା । ଲକର ଆଡଭୋକେଟ୍‌ମାନେ ମାସକୁ ସାମାନ୍ୟ ଭଡାରେ ପାଇବାରେ ବଡ ସୁବିଧା ହେଲା । କାଗଜପତ୍ର, ଗାଉନ ଇତ୍ୟାଦି ଇତ୍ୟାଦି ସେଥିରେ ରଖିଲେ । ଚିଫ୍ ଜଷ୍ଟିସ୍ ନୂଆ ଫର୍ନିଚର ହେବା ପରେ ବାର ଆସୋସିଏସନ୍ ହଲ ଉଦ୍‌ଘାଟନ କଲାବେଳେ କହିଲେ, ଫର୍ନିଚର ବାବଦ ଟଙ୍କା ଛାଡିଦେବା ମୋ ପକ୍ଷରେ ଏତେ କଷ୍ଟକର ହେବ ନାହିଁ ଯେତେ କଷ୍ଟକର ହୋଇଛି ଫର୍ନିଚର କଲିକତାରୁ କରାଇବାରେ ।

ନୂଆ ହାଇକୋର୍ଟରେ ନୂଆ ଉତ୍ସାହରେ କାମ ଚାଲିଲା ।



Digitized by srujanika@gmail.com

# ପ୍ରଥମ ହେବିଅସ୍ କରପ୍ସ

ଢ଼େଙ୍କାନାଳରେ ନାନାରକମ ପ୍ରଜା ଉତ୍ପୀଡ଼ନ ଚାଲିଥାଏ । ସେଠାର ଜଣେ ଯୁବକ କର୍ମୀ ହରମୋହନ ପଟ୍ଟନାୟକଙ୍କ ଉପରେ ରାଜକୋପ ଦୃଷ୍ଟି ପଡିଲା । ତାଙ୍କ ବିରୁଦ୍ଧରେ ଗିରଫଦାରୀ ପରଓ୍ୱାନା ବାହାରିଲା । ସେ ତାହା ଜାଣିପାରି କଟକ ଚାଲି ଆସିବାର ଚେଷ୍ଟା କରୁଥିଲେ । ରାସ୍ତାବାଟେ ଆସିଲେ ଧରାପଡିବା ସହଜ । କୌଣସିମତେ ତାଳଚେର ଟ୍ରେନରେ ଆସିବା ପାଇଁ ଲୁଚି ଲୁଚି ଢ଼େଙ୍କାନାଳ ରେଳଷ୍ଟେସନରେ ପହଞ୍ଚିଲେ । ନିମକହାରାମ ସବୁବେଳେ ସବୁଠାରେ ଥାଆନ୍ତି । ସୁରାକ ପାଇ ଢ଼େଙ୍କାନାଳ ପୁଲିସ ଆସି ପ୍ଲାଟଫର୍ମ ଉପରେ ଗାଡି ଛାଡିଲା ବେଳକୁ ଗିରଫଦାର କଲେ । ଷ୍ଟେସନ ଢ଼େଙ୍କାନାଳ ରାଜ୍ୟ ଅନ୍ତର୍ଗତ ଆଇନ ଅନୁଯାୟୀ ଷ୍ଟେସନ ହତା ବ୍ରିଟିଶ ଶାସନାଧୀନ ଅର୍ଥାତ୍, ମୋଗଲ ବନ୍ଦୀ ଅଞ୍ଚଳ କୋର୍ଟ କର୍ତ୍ତୃତ୍ୱ ଭିତରେ । ତେଣୁ ଢ଼େଙ୍କାନାଳ ପୁଲିସ ତାଙ୍କୁ ଗିରଫ କରି ସେହି ଟ୍ରେନ୍‌ରେ ଆଣିଲେ କଟକ, କଟକ କୋଟରେ ହାଜର କରାଇବା ପାଇଁ । ଏକ୍‌ଷ୍ଟ୍ରାଡିକ୍‌ସନ୍ ବଳରେ କଟକ କୋର୍ଟରୁ, ଗିରଫଦାର ଆସାମୀ ଢ଼େଙ୍କାନାଳ କୋର୍ଟକୁ ପଠାଯିବା ପାଇଁ ଢ଼େଙ୍କାନାଳ ଶାସନ ତରଫରୁ ପ୍ରବଳ ତଦ୍‌ବିର ହେଲା । ଭାଗଗ୍ରାହୀ ମିଶ୍ର ସେତେବେଳେ କଟକର ଡେପୁଟି ମାଜିଷ୍ଟ୍ରେଟ୍, ଏସ୍.ଡି ଓ । ସେ ଅସୁସ୍ଥ ଥିବାରୁ ତେଲେଙ୍ଗା ବଜାରରେ ତାଙ୍କ ବସାଘରେ ଅଫିସ କରୁଥାଆନ୍ତି । ହରମୋହନ ଗିରଫଦାର ହୋଇ ଯେଉଁ ରାତିରେ କଟକକୁ ଅଣାହେଲେ, ସେହି ରାତିରେ କଂଗ୍ରେସର ନେତୃସ୍ଥାନୀୟ ଭାଗୀରଥି ମହାପାତ୍ରେ ଆସି ମତେ କହିଲେ, କୌଣସି ମତେ ହରମୋହନଙ୍କୁ ଢ଼େଙ୍କାନାଳ ନ ଛାଡିବା ପାଇଁ ଚେଷ୍ଟା କରିବା ପାଇଁ । ସେ ସେଠାକୁ ଗଲେ ଅତ୍ୟାଚାରରେ ପ୍ରାଣନାଶ ନିଶ୍ଚିତ ଥିଲା । ଭାଗୀରଥିବାବୁ ଓ ତାଙ୍କ ସଙ୍ଗେ ଆସିଥିବା କର୍ମୀମାନଙ୍କର ବ୍ୟାକୁଳତା ମତେ ବ୍ୟାକୁଳ କଲା । ଏପରି ଜରୁରୀବେଳରେ ଜରୁରୀ କାମରେ ବ୍ୟବସ୍ଥା ଜରୁରୀ ଆବଶ୍ୟକ । ଏକ୍‌ଷ୍ଟ୍ରାଡିକ୍‌ସନରେ ଆସାମୀକୁ ଗ୍ରେପ୍ତାର ପରଓ୍ୟାନା ଜାରି କରିଥିବା

Digitized by srujanika@gmail.com

କୋର୍ଟକୁ ପଠାଇବା ପୂର୍ବରୁ ଗିରଫଦାର ସଂକ୍ରାନ୍ତ ମାମଲାରେ ଆପାତତଃ ପ୍ରମାଣଯୋଗ୍ୟ ଅଭିଯୋଗ ଅଛି କି ନାହିଁ ତାହା ପରୀକ୍ଷା କରିବା ମୋଗଲବନ୍ଦୀ କୋର୍ଟର ପ୍ରାଥମିକ କର୍ତ୍ତବ୍ୟ ଏବଂ ତାହାର କାର୍ଯ୍ୟବିଧି ପ୍ରଥମେ କରାଯିବା ପାଇଁ ଆବେଦନ ଦରଖାସ୍ତ ନେଇ ମୁଁ ପ୍ରଥମ କଚେରୀବେଳକୁ ଭାବଗ୍ରାହୀବାବୁଙ୍କ ଘରେ ପହଞ୍ଚିଲି । ସେତେବେଳକୁ ଢ଼େଙ୍କାନାଳ ପୁଲିସ ସେଠାରେ ହାଜର ହୋଇସାରି ଥାଆନ୍ତି ଏବଂ ଅର୍ଡର କରାଇ ଆସାମୀକୁ ଢ଼େଙ୍କାନାଳ ନେଇଯିବା ପାଇଁ ବାହାରି ଥାଆନ୍ତି । ଆଉ ପାଞ୍ଚ, ସାତ ମିନିଟ୍ ବିଳମ୍ବ ହୋଇଥିଲେ, ସେମାନେ ଆମକୁ ଚିତାକାଟି ଦେଇଥାଆନ୍ତେ । ମୋ ଦରଖାସ୍ତ ପଢ଼ି ଅଯଥା ହଇରାଣରେ ପଡିଲେ ବୋଲି ଭାବୁଥିବାର ଭାବଗ୍ରାହୀବାବୁଙ୍କ ମୁହଁରୁ ଜଣାପଡିଲା; କିନ୍ତୁ ନାଚାର । ସେ ଧୀର ପ୍ରକୃତିର ଲୋକ । ଆଇନ ପରିସର ଭିତରେ କାମ କରିବାକୁ ଇଚ୍ଛୁକ, ଯଦିଓ ଉପରିସ୍ଥଙ୍କର ବିରାଗ ଭାଜନ ନ ହେବାରେ ସର୍ବଦା ଚେଷ୍ଟିତ । ଆସାମୀକୁ କଟକ ଜେଲକୁ ପଠାଇ ଦରଖାସ୍ତଟି ତା ପରିଦିନ ଶୁଣାଣି ପାଇଁ ରଖାହେଲା । ଶୁଣାଣିରେ ନା–ମଞ୍ଜୁର କଲେ, କିନ୍ତୁ ଅପିଲ କୋର୍ଟରୁ ଅର୍ଡର ଆଣିବା ପାଇଁ ତିନିଦିନ ସମୟ ଦେଲେ ଏବଂ ସେ ପର୍ଯ୍ୟନ୍ତ ଆସାମୀ ଢ଼େଙ୍କାନାଳ ନ ଯିବାର ହେଲା । ସେସନସ୍ ଜଜ୍ କୋର୍ଟରେ ମୁଁ ଅପିଲ କଲି ଏବଂ ଅପିଲ ଶୁଣାଣି ଶେଷଯାଏ, ଆସାମୀ କଟକ ଜେଲରେ ରହିବା ଅର୍ଡର ହେଲା । ଏହିପରି ମାସରୁ ଅଧିକ କାଳ ବିତିଗଲା । ଢ଼େଙ୍କାନାଳ ପୁଲିସ ତମ୍ବୁ ତୋଫାନ୍ କରି ପ୍ରତିଥର ଆସୁଥାନ୍ତି । ହାତକଡି, ଦଉଡିଧରି, ଫେରନ୍ତି ମୁହଁ ଶୁଖାଇ । ରଜା ସେ ଆଡେ ରକ୍ତଚାଉଳ ଚୋବାଉ ଥାନ୍ତି । ଜଜ୍‌ଙ୍କ ପାଖରେ ଅପିଲ ନାମଞ୍ଜୁର ହେଲା, କିନ୍ତୁ ହାଇକୋର୍ଟରେ ଦରଖାସ୍ତ କରିବା ପାଇଁ ସାତଦିନ ସମୟ ମିଳିଲା । ମୁଁ ଗଲି ପାଟନା । ସେତେବେଳକୁ ଗ୍ରୀଷ୍ମଛୁଟି ହୋଇଯାଇଥାଏ । ପାଟନା ହାଇକୋର୍ଟର ଚିଫ୍ ଜଷ୍ଟିସ ସାର୍ କୋର୍ଟିନ ଟେରେଲ ପରଲୋକ ପ୍ରାପ୍ତ ହୋଇଥିବାରୁ, ଓ୍ୟାର୍ଟ ସାହେବ ଜଜ୍ ଆକଟିଙ୍ଗ ଥାଆନ୍ତି । ଆମ ଦୁର୍ଭାଗ୍ୟକୁ, ମୁଁ ପାଟନାରେ ପହଞ୍ଚିବା ପୂର୍ବରୁ ବିଲାତର ଜଣେ ଇଂରେଜ ବାରିଷ୍ଟର ଏ.ଟି.ହାରିସ ପାଟନା ହାଇକୋର୍ଟର ଚିଫ୍ ଜଷ୍ଟିସ ହୋଇ ଆସିବା ସମ୍ବାଦ ପ୍ରକାଶ ପାଇଥାଏ । ଓ୍ୟାର୍ଟ ସାହେବ ମଧ୍ୟ ଇଂରେଜ ବାରିଷ୍ଟର ଏବଂ ଆଶା ଥିଲା, ସେ ସ୍ଥାୟୀ ଚିଫ୍ ଜଷ୍ଟିସ ହେବେ । ତାହା ନ ହେବାରୁ ସେ ରୁଷ୍ଟ ହେବା ସ୍ୱାଭାବିକ ।

ମୁଁ ଯେଉଁ ଦରଖାସ୍ତ ଦାଖଲ କରିବାକୁ ନେଇଥିଲି, ସେ ବିଷୟ ଶୁଣି ଗୋପାଳବାବୁ (ଗୋପାଳଚନ୍ଦ୍ର ଦାସ) ଓ ପୀତାମ୍ବରବାବୁ (ପୀତାମ୍ବର ମିଶ୍ର)

Digitized by srujanika@gmail.com

ପାଟନାରେ ଓକାଲତି କରୁଥିବା ଦୁଇ ଆଡଭୋକେଟ୍ ମୋତେ ନିବର୍ତ୍ତାଇଲେ । ଓ୍ୱାଟ୍ ସାହେବଙ୍କ ଘରକୁ ଯାଇ ଦରଖାସ୍ତ ଦାଖଲ କରିବା କେବଳ ନିରର୍ଥକ ନୁହେଁ, ଅସଙ୍ଗତ ହେବ । ଛୁଟି ଦିନରେ ସେ ଘରେ ଦରଖାସ୍ତ ଗ୍ରହଣ କରିବେ ନାହିଁ । ଓ୍ୱାର୍ଟ କଡା ପ୍ରକୃତିର ଲୋକ । ଏ ସବୁ ପରାମର୍ଶରେ ନିରୁତ୍ସାହିତ ହେଲେ ମଧ, ମୁଁ ଅନନ୍ୟୋପାୟ ହୋଇ ଘୋଡାଗାଡିଟିଏ ଭଡାକରି ଗଲି ଓ୍ୱାର୍ଟ ସାହେବଙ୍କ କୋଠିକୁ । ଗୋପାଳବାବୁ, ପୀତାମ୍ବରବାବୁ କେହି ମୋ ସାଙ୍ଗରେ ଯିବାପାଇଁ ଅମତ ହେଲେ । ଜଜ୍‌ଙ୍କ ବାରନ୍ଦାରେ ଚପରାସୀ କହିଲା, ସାହେବ ଓପରେ, ଓପର ମହଲାକୁ ଖବର ଦେବାପାଇଁ ଯିବା ମନା । ଏହି ସମୟରେ ସିଡିରେ ଜୋତା ଖଟ୍ ଖଟ୍ ଶବ୍ଦ ହେଲା । ସାହେବ ତଳକୁ ପ୍ରାତଃ ଭୋଜନ ପାଇଁ ଆସୁଥିଲେ । ଚପରାସୀ ମୋ କାର୍ଡ ନେଇ ଦେବାରୁ ଖାଇବା ଘରକୁ ନଯାଇ ଜଜ୍ ସାହେବ ଫେରିଗଲେ ଓପରକୁ । ଚପରାସୀ ବାରନ୍ଦାକୁ ଆସି କହିଲା, ମୋର ଅପେକ୍ଷା କରିବା ନିରର୍ଥକ । ମୁଁ ଇତସ୍ତତଃ ହେଉଥାଏ, ଏହିପରି ସମୟରେ ସିଢ଼ିରେ ପୁଣି ଶୁଭିଲା ଯୋତାର ଶବ୍ଦ । ଏଥର ଓ୍ୱାର୍ଟ ସାହେବ, ନିଜେ ବାରନ୍ଦାକୁ ଆସି ମତେ ଡାକିନେଲେ ତାଙ୍କ ଅଫିସ ଘରକୁ । କାହିଁକି ଯାଇଛି, ପଚାରିବାରୁ ମୁଁ ସଂକ୍ଷେପରେ ଉଦ୍ଦେଶ୍ୟ କହିଲି । ତାପରର ପ୍ରଶ୍ନ ଉତ୍ତର ମାମୁଲି ଧରଣରୁ ଭିନ୍ନ ଥିଲା ।

ଜଜ୍– ହାଇକୋର୍ଟ ଛୁଟିବେଳେ ଦରଖାସ୍ତ ଗ୍ରହଣ କରାଯାଏ ନାହିଁ ।

ଉତ୍ତର– ନାଗରିକ ଜୀବନ ଯେତେବେଳେ ବିପନ୍ନ ସେ ଆଇନର ସାହାଯ୍ୟ କିପରି ପାଇବ ?

ଜଜ୍– ମୁଁ କିଏ ଘରେ ଦରଖାସ୍ତ ଗ୍ରହଣ କରିବାକୁ ?

ଉତ୍ତର— You are my Lord the Chief Justice.

ଜଜ୍– ଅନ୍ୟ ଜଣେ ଚିଫ୍ ଜଷ୍ଟିସ ହେବା ସମ୍ବାଦ ପ୍ରକାଶିତ ହୋଇଛି ।

ଉତ୍ତର– You are still my Lord the Chief Justice.

ଜଜ୍– ହେଲେ ମଧ, ଘରେ କିପରି ଦରଖାସ୍ତ ଶୁଣିବି ?

ଉତ୍ତର– ମୁଁ ନଜିର ଆଣିଛି, ବିଲାତରେ ପ୍ରାୟ ଉଲଗ୍ନ ଅବସ୍ଥାରେ ଜଜ୍ ସସ୍ତ୍ରୀକ ସାଗର ସ୍ନାନରୁ ଉଠିଲାବେଳେ ବେଳାଭୂମିରେ ବାରିଷ୍ଟର ଦରଖାସ୍ତ ଦେଇ ଜାମିନ୍ ଆଣିଥିଲେ ଅଭିଯୁକ୍ତ ବ୍ୟକ୍ତିଙ୍କ ପାଇଁ ।

ଜଜ୍– ସେ ବିଲାତ କଥା, ସେଠାରେ ସେପରି ହୋଇପାରେ ।

Digitized by srujanika@gmail.com

ଉତ୍ତର– ସେହି ବିଲାତର ଇଂରେଜ ଜଜ୍ ଏଠାରେ କ'ଣ ଅସହାୟ ପାଲଟି ଯିବେ ? ଓ୍ୟାର୍ଟ ଦ୍ରବୀଭୂତ ହୋଇଗଲେ । ମତେ ବସିବାକୁ କହିଲେ । ପଚାରିଲେ କି ଦରଖାସ୍ତ ତମର ?

ଉତ୍ତର– ହେବିଅସ୍ କରପସ୍ ଦରଖାସ୍ତ ।

ଜଜ୍– ସେ ପ୍ରକାର ଦରଖାସ୍ତ ପୂର୍ବରୁ ଆସିଥିବାର ମୁଁ ଜାଣେ ନାହିଁ । ସବୁ ନୂଆ କଥା ଭିଆଣ କରୁଛ ।

ଉତ୍ତର– ସେପରି ଜରୁରୀ ନ ପଡିଥିଲେ ଆପଣଙ୍କ ଛୁଟିବେଳେ, ଅସମୟରେ ଏପରି ବିରକ୍ତ କରିବାର ଦୁଃସାହସ ମୁଁ କରି ନଥାନ୍ତି । ଏ ପ୍ରକାର କେବଳ ଆପଣଙ୍କ ଆଦର୍ଶରେ ପ୍ରତିଷ୍ଠିତ ହାଇକୋର୍ଟରେ ମଧ ନାଗରିକ ପକ୍ଷରେ ପ୍ରଯୁଜ୍ୟ ।

ଜଜ୍– ହେଉ, ତାହା ହୋଇପାରେ । କିନ୍ତୁ ତମର ଜରୁରୀଟା କଅଣ ?

ଉତ୍ତର– ଆପଣ ଯଦି ରକ୍ଷା ନ କରନ୍ତି, ତେବେ ଜଣେ ଦେଶପ୍ରେମୀ ଯୁବକ କେବଳ ତାହାର ଦେଶପ୍ରେମ ପାଇଁ ଅତ୍ୟାଚାରୀ ଗଡଜାତ ରାଜାର ଖାମଖିଆଲି ଆଦେଶରେ ମୃତ୍ୟୁ ଗହ୍ୱରକୁ ଠେଲି ହୋଇଯିବ ।

ଦରଖାସ୍ତର ବିଷୟବସ୍ତୁ ପଢ଼ି, ତା ଉପରେ ନିଜ ହାତରେ ଅର୍ଡର ଲେଖିଲେ, ଭାବଗ୍ରାହୀ ମିଶ୍ର ମାଜିଷ୍ଟ୍ରେଟ୍ ଓ କଟକ ଜେଲ ସୁପରିଣ୍ଟେଣ୍ଡେଣ୍ଟ ରାୟ ସାହେବ ସତ୍ୟବାଦୀ ନାୟକଙ୍କ ନାମ ଉଲ୍ଲେଖ କରି, ଯେ ସେମାନେ କାରଣ ଦର୍ଶାଇବେ, କାହିଁକି ହରମୋହନ ପଟ୍ଟନାୟକ, ଢ଼େଙ୍କାନାଳ ଜେଲକୁ ନଯାଇ, କଟକରୁ ଖଲାସ ନ ହେବେ ।

ମୋ ଅନୁରୋଧରେ ଏହି ଅର୍ଡର ଟେଲିଗ୍ରାଫ୍ ଦ୍ୱାରା ପଠାଇବା ପାଇଁ ମଧ ନିର୍ଦ୍ଦେଶ ଦେଲେ । ଛୁଟିପରେ ଦରଖାସ୍ତର ଶୁଣାଣୀ ହେବ ଏବଂ ଦରଖାସ୍ତର ଫଇସଲା ପର୍ଯ୍ୟନ୍ତ ହରମୋହନଙ୍କୁ ଢ଼େଙ୍କାନାଳ ପଠା ନ ହେବାର ଅର୍ଡର ହେଲା । ଜାମିନ ମଧ ମଞ୍ଜୁର ହେଲା । ମତେ ବିଦାୟ ଦେଇ ଓ୍ୟାର୍ଟ ସାହେବ ଭିତରକୁ ଗଲେ ତାଙ୍କ ବିଳମ୍ବିତ ପ୍ରାତଃରାଶ ପାଇଁ । ମୋର ତାପରେ ଭାବନା ହେଲା; ଦରଖାସ୍ତ ଉପରେ ସିନା ହାତଲେଖା ଅର୍ଡର ହେଲା, ତାହା ସରକାରୀ ଭାବରେ ସେହିଦିନ ଡାକ ଓ ଟେଲିଗ୍ରାମ ଦ୍ୱାରା ପଠା ନଗଲେ, ତାପର ଦିନ ହରମୋହନଙ୍କୁ ଢ଼େଙ୍କାନାଳ ପୁଲିସ ନେଇଯିବ, କାରଣ ସାତଦିନ ମିଳିଥିବା ମହଲତ ସରିଯିବ ସେଦିନ ।

Digitized by srujanika@gmail.com

ହାଇକୋର୍ଟ ରେଜିଷ୍ଟ୍ରାର ହ୍ୱାଇଟାକର ସାହେବଙ୍କ କୋଠି ଖୋଜି ଖୋଜି ପହଞ୍ଚିଲାବେଳକୁ ତାଙ୍କ ସ୍ତ୍ରୀ ଜଣାଇଲେ ଯେ ସ୍ୱାମୀ ଅସୁସ୍ଥ, ଉପର ମହଲାରେ ଅଛନ୍ତି, ଆସି ଦେଖାକରି ପାରିବେ ନାହିଁ । ମୁଁ ଓ୍ୟାର୍ଟଙ୍କର ଅର୍ଡର କଥା କହିବାରୁ ସେ ଦୟାପରବଶ ହୋଇ ସ୍ୱାମୀଙ୍କୁ ଜଣାଇଲେ । ସେ ତଳକୁ ଆସି ମୋ ଠାରୁ ସବିଶେଷ ଶୁଣି ଆଶ୍ଚର୍ଯ୍ୟ ହେଲେ କିପରି ଏପରି ଅର୍ଡର ଓ୍ୟାର୍ଟଙ୍କଠାରୁ ଘରେ ମିଳିପାରିଲା । ସେ ସେହି ଦରଖାସ୍ତ ଉପରେ ଲେଖିଦେଲେ ଡେପୁଟି ରେଜିଷ୍ଟ୍ରାରଙ୍କ ପାଖକୁ ସଙ୍ଗେ ସଙ୍ଗେ ଅର୍ଡର ଡାକ ଓ ଟେଲିଗ୍ରାମ ଦ୍ୱାରା କଟକ ପଠାଇବା ପାଇଁ । ପୁଣି ଖୋଜି ଚାଲିଲି ଡେପୁଟି ରେଜିଷ୍ଟ୍ରାରଙ୍କୁ । ବୃହଦକାୟ ବଙ୍ଗୀୟ ଭଦ୍ରବ୍ୟକ୍ତି; କାର୍ଯ୍ୟ ଅପେକ୍ଷା ବାକ୍ୟରେ ଅଧିକ ପ୍ରିୟ । ଅର୍ଡରର ଗୁରୁତ୍ୱ ଓ କ୍ଷିପ୍ର ପ୍ରତିପାଳନର ବାଧତା ଅନୁଭବ କରୁଥିଲେ ମଧ ମୋ ପ୍ରତି ଅନୁଗ୍ରହ ପ୍ରଦର୍ଶନ କରୁଥିବାର ଭାବ ଦେଖାଇ, ଟେଲିଗ୍ରାମ ପ୍ରଭୃତି ଲେଖି, ଦସ୍ତଖତ କରି, ସର୍ଭିସ ଷ୍ଟାମ୍ପ ଲଗାଇ ମୋ ହାତକୁ ଦେଲେ ଡାକଘରେ ଦେବାପାଇଁ । ଗରଜ ତ ମୋର, ଅପ୍ରସ୍ତୁତ ବୋଧ କରୁଥିଲେ ମଧ, ଡାକଘରକୁ ଆସି ଟେଲିଗ୍ରାମ ଓ ଡାକ ପଠାଇ ଟିକିଏ ନିଃଶ୍ୱାସ ମାରି ଗୋପାଳବାବୁଙ୍କ ବସାକୁ ଫେରିଲି । ସେ ଅତି ଆଶ୍ଚର୍ଯ୍ୟ ହେଲେ ସବୁକଥା ଶୁଣି । ମୁଁ ସେହି ରାତ୍ରରେ ଟ୍ରେନ୍‌ରେ କଟକ ଫେରିଲି ।

କଟକରେ ପହଞ୍ଚି ଶୁଣେ ହୁଲସ୍ଥୁଲ ବ୍ୟାପାର । ମାଜିଷ୍ଟ୍ରେଟ ଓ ଜେଲରଙ୍କ ବ୍ୟକ୍ତିଗତ ନାମରେ ସୋ କଜ ଅର୍ଡର ହୋଇଥିବାରୁ ସେମାନେ ବିଚଳିତ ଓ ମୋ ଉପରେ ଅତି ରୁଷ୍ଟ । ହେବିଅସ କରପ୍‌ସରେ ଯେ ସେପରି ନୋଟିସ ହେବାର କଥା, ସେମାନେ ଜାଣି ନଥିଲେ । ସେ ଦୁହେଁ ସରକାରୀ ଓକିଲଙ୍କ ପାଖକୁ ଦଉଡିଲେ ନୋଟିସର ଜବାବ ଲେଖାଇବାକୁ । ଚକେ ଗଲେ ବାରହାତ । କଂଗ୍ରେସ ଓ ପ୍ରଜାମଣ୍ଡଳ ବାଲା ଖୁସି ହେଲେ ଯେ ହରମୋହନ ରାଜ ଅତ୍ୟାଚାର ଓ ଆସନ୍ନ ମୃତ୍ୟୁର ଅନ୍ତତଃ ବର୍ତ୍ତମାନ ପାଇଁ ନିସ୍ତାର ପାଇଲେ । ମୁଁ କେତେ ହଇରାଣ ବା ଖର୍ଚ୍ଚାନ୍ତ ହୋଇଛି ସେ କଥା ଭାବିବା ବା ବୁଝିବା ସେମାନଙ୍କର ଆବଶ୍ୟକ ହେଲାନାହିଁ ।

ହାଇକୋର୍ଟ ଛୁଟି ସରିଲା । ନୂଆ ଚିଫ୍ ଜଷ୍ଟିସ୍ ହାରିସ ସାହେବ ଯୋଗଦେଲେ । ପ୍ରାୟ ଛଅମାସ ପରେ ଆମ ଦରଖାସ୍ତ ଶୁଣାଣୀକୁ ଉଠିଲା । ମୁଁ କଟକରୁ ଗଲି । କଂଗ୍ରେସ ଓ ପ୍ରଜାମଣ୍ଡଳ ଏ କେସ୍‌ପାଇଁ ଉଦ୍‌ଗ୍ରୀବ କିନ୍ତୁ କଂଗ୍ରେସ ସରକାର ତରଫରୁ କେସ୍‌ର ବିରୋଧ କରିବା ପାଇଁ ସରକାରୀ ଓକିଲ ଗଜେନ୍ଦ୍ରପ୍ରସାଦ

Digitized by srujanika@gmail.com

ଦାସ କୋର୍ଟରେ ହାଜର । ଚିଫ୍ ଜଷ୍ଟିସଙ୍କ କୋର୍ଟରେ ଶୁଣାଣୀ ଆରମ୍ଭ ହେଲା, ପାଟନା ହାଇକୋର୍ଟର ପ୍ରଥମ ହେବିଅସ୍ କରପସ୍ ଦରଖାସ୍ତ । ପି.ଆର.ଦାସ, ସାର୍ ସୁଲତାନ, ବି.ସି.ଦେଙ୍କ ପରି ତୁଙ୍ଗ ଆଇନଜିବୀ ଉପସ୍ଥିତ ଥିଲେ । ଅତି ସନ୍ତର୍ପଣର ସହିତ ମୁଁ ମୋର ବକ୍ତବ୍ୟ ଉପସ୍ଥାପିତ କରୁଥିଲି । ଢ଼େଙ୍କାନାଳ ରାଜ୍ୟର ପରଓ୍ୱାନା କିପରି ଏଠାରେ ରଦ୍ ହୋଇପାରିବ, ତାହା ଥିଲା ପ୍ରଧାନ ବିଚାର୍ଯ୍ୟ । ତିନିଦିନ ଶୁଣାଣୀ ପରେ, ମୁଁ କଟକ ଫେରିଲି, ଲୁଖୁରା ପ୍ରଶଂସା କାନିରେ ବାନ୍ଧି । କିଛି ଦିନ ପରେ ଦରଖାସ୍ତ ନାମଞ୍ଜୁର ଖବର ମିଳିଲା ।

ପୁଣି ଏକ ପର୍ବ, ଫେଡେରାଲ କୋର୍ଟରେ ଦିଲ୍ଲୀରେ ଅପିଲ । ତାହାର ସମସ୍ତ ବ୍ୟୟସାପେକ୍ଷ ଆୟୋଜନ କରି ଅପିଲ ଦାଖଲ କରି ପୂର୍ବର ରହିତାଦେଶ କାଏମ କରାଇ ଫେରିଲି । ତାହା ଫେଡରାଲ କୋର୍ଟର ସର୍ବ ପ୍ରଥମ କ୍ରିମିନାଲ ଅପିଲ ବୋଲି ଷ୍ଟେଟସମ୍ୟାନ୍ କାଗଜରେ ପ୍ରକାଶିତ ହେଲା । ଅପିଲର ଶୁଣାଣି ହୋଇଥାନ୍ତା । ଅନେକ ଦିନ ପରେ; ଅନ୍ତତଃ ବର୍ଷେ ଯାଇଥାଆନ୍ତା । ହରମୋହନ ପୂର୍ବପରି ନିଶ୍ଚିତ ଥାଆନ୍ତେ ।

କିନ୍ତୁ ସବୁ ଶ୍ରମ ପଣ୍ଡ ହେଲା, ସବୁଜିଦ୍ ପାଣି ଫୋଟକାରେ ମିଳାଇ ଗଲା । କାହାକୁ କିଛି ନପଚାରି, ହରମୋହନ ଢ଼େଙ୍କାନାଳ ରଜାଙ୍କ ସଙ୍ଗେ ହାତ ମିଳାଇ ଦେଲେ ଓ ତାଙ୍କ କଥାରେ ଫେଡରାଲ କୋର୍ଟରୁ ଅପିଲ ଉଠାଇ ଆଣିଲେ ଦରଖାସ୍ତ ଦେଇ । ମତେ ଟିକିଏ ଜଣାଇବା ଉଚିତ ମନେକଲେ ନାହିଁ । ସେ ବା ଅନ୍ୟ କେହି କଂଗ୍ରେସ ପ୍ରଜାମଣ୍ଡଳବାଲା । ମୁଁ ଦୁଃଖିତ ହେଲି, କିନ୍ତୁ ମୋ କାମ ମୁଁ ଯଥାସାଧ କରିଥିବାରୁ ମୋର ସନ୍ତୋଷ ରହିଲା ।



Digitized by srujanika@gmail.com

# ନାସ୍ତିର ପଞ୍ଚମ ଆହୂତି

ଜାନୁଆରୀ ୧୯୫୦ରୁ ଆମ ନୂଆ ସମ୍ବିଧାନ ଚାଲୁହେବାର କଥା । ସେଥିରେ ହାଇକୋର୍ଟ ଜଜ୍‌ଙ୍କର ଦରମା ତିନିହଜାର ପାଞ୍ଚଶ ଟଙ୍କା । ତା ପୂର୍ବରୁ ଥିଲା ଚାରିହଜାର ଟଙ୍କା । ନୂଆ ସମ୍ବିଧାନ ପ୍ରୟୋଗ ପୂର୍ବରୁ ହାଇକୋର୍ଟ ମାନଙ୍କରେ ଶୂନ୍ୟଥିବା ସ୍ଥାନ ପୂରଣ କରିବାର ଚେଷ୍ଟା ହୋଇଥିଲା, ସେମାନଙ୍କୁ, ପୂର୍ବ ପ୍ରଚଳିତ ଦରମାର ସୁବିଧା ଦେବାପାଇଁ । ପାଟନା ହାଇକୋର୍ଟରେ ଗୋଟିଏ ସ୍ଥାନ ଖାଲି ଥିଲା । ୧୯୪୯ ରେ ସେଠାରେ ଏଇଚ. ଆର.ମେରିଡିଥ ଚିଫ୍ ଜଷ୍ଟିସ ଥିଲେ । ଓଡିଶା ପାଟନା ହାଇକୋର୍ଟର ଅନ୍ତର୍ଗତ ଥିଲା ୧୯୪୮ ଜୁଲାଇ ପର୍ଯ୍ୟନ୍ତ । ମେରିଡିଥ ଇଛା କଲେ ପାଟନା ହାଇକୋର୍ଟର ଶୂନ୍ୟ ସ୍ଥାନଟି କଟକ ବାରରୁ ଜଣକୁ ନେଇ ପୂରଣ କରିବେ । ସେ ଓଡିଶା ହାଇକୋର୍ଟ ଚିଫ୍ ଜଷ୍ଟିସ ବୀରକିଶୋର ରାୟଙ୍କୁ ପତ୍ର ଲେଖିଲେ କଟକ ବାରରୁ ଜଣେ ଉପଯୁକ୍ତ ଆଡଭୋକେଟ୍‌ଙ୍କ ନାମ ପଠାଇବା ପାଇଁ । ବୀରବାବୁ ଗୋପାଳଚନ୍ଦ୍ର ଦାସଙ୍କ ନାମ ପଠାଇ ଦେଲେ । ଗୋପାଳବାବୁ, ପୀତାମ୍ବରବାବୁ ମୂଳରୁ ପାଟନା ହାଇକୋର୍ଟରେ ଆଇନ ବୃତ୍ତି କରୁଥିଲେ । ଓଡିଶା ହାଇକୋର୍ଟ ହେବାରେ କଟକ ଆସିଥାଆନ୍ତି । ସେମାନଙ୍କୁ ଓ ସେମାନଙ୍କର କାର୍ଯ୍ୟ ମେରିଡିଥ ସାହେବ ଜାଣିଥିଲେ । ଗୋପବାବୁଙ୍କୁ ମନୋନୀତ କରିବାକୁ ଇଚ୍ଛା ନକରି, ବୀରବାବୁଙ୍କୁ ଲେଖିଲେ ଅନ୍ୟଜଣେ ଉପଯୁକ୍ତ ବ୍ୟକ୍ତିଙ୍କର ନାମ ଦେବାପାଇଁ ଏବଂ ତତ୍‌ସଙ୍ଗେ ଉଲ୍ଲେଖ କରିଥିଲେ ଯୋଗ୍ୟତା ଦୃଷ୍ଟିରୁ ମୋ ନାମ ପଠାଯାଇପାରନ୍ତା । ଚିଠି ଯେଉଁଦିନ ପହଞ୍ଚିଲା କଟକରେ, ବୀରବାବୁ ତାଙ୍କ ପତ୍ନୀ ଲତିକାଦେବୀଙ୍କୁ କହିଲେ, ହରିହର ପାଟନାକୁ ଜଜ୍ ହୋଇ ଯାଉଛି । ଏ ବାକ୍ୟାଳାପ ବୀରବାବୁଙ୍କ ଜମାଦାର ହାକିମ ଶୁଣି ବାଞ୍ଛାନିଧି ମହାପାତ୍ର ଓକିଲଙ୍କୁ ଯାଇ କହିବାରେ, ବାଞ୍ଛାନିଧିବାବୁ ଆସିଲେ ମତେ ବଧାଇ ଦେବାପାଇଁ । ତାର ପରଦିନ କଟକ କ୍ଳବରେ ରଣପୁର ରାଜମାତା(ଡେପୁଟି ମିନିଷ୍ଟର) ମାନ୍ଦ୍ରାଜର ଜଣେ ମନ୍ତ୍ରୀ ଶ୍ରୀଯୁକ୍ତ ଟମାସଙ୍କ ଉଦ୍ଦେଶ୍ୟରେ ଏକ ରାତ୍ରି ଭୋଜନର ଆୟୋଜନ

Digitized by srujanika@gmail.com

କରି ଥାଆନ୍ତି । ବୀରବାବୁ ସସ୍ତ୍ରୀକ ଯାଇଥାନ୍ତି । ମୁଁ ମଧ । ସେଠାରେ ଏକାଧିକ ବ୍ୟକ୍ତିଙ୍କ ସମ୍ମୁଖରେ ଲତିକା ଦେବୀ ମତେ ଅଭିନନ୍ଦନ ଜଣାଇ ପାଟନାରୁ ଏପରି ମୋ ନାମ ଉଲ୍ଲେଖ କରି ଚିଠି ଆସିଥିବା ଏବଂ ବୀରବାବୁ ସେଥିରେ ସମ୍ମତ ହୋଇ ମୋ ନାମ ପଠାଉଥିବା କଥା ପ୍ରକାଶ କରିଦେଲେ । ବୀରବାବୁ ମତେ ଏ ବିଷୟରେ କହି ନାହାନ୍ତି କି, ପଚାରିଲେ । ମତେ କିଛି ସେ ପର୍ଯ୍ୟନ୍ତ କହି ନାହାନ୍ତି ବୋଲି ମୁଁ ଜଣାଇବାରେ ସେ ବିସ୍ମିତା ହେଲେ । ପରେ କଅଣ ହେଲା କେଜାଣି, ଯେଉଁ ଉତ୍ତର ବୀରବାବୁ ଦେବେ ବୋଲି ଭାବିଥିଲେ, ପଠାଇଲେ ନାହିଁ । ମାସକ ପରେ ମେରିଡିଥ ପୁଣି ପତ୍ର ଲେଖିଲେ, ମୋ ନାମ ଉଲ୍ଲେଖ କରି । ତୃତୀୟ ପତ୍ର ମଧ ଆସିଥିଲା ସେହି ମର୍ମରେ । କୌଣସି ପତ୍ରର ଉତ୍ତର ଗଲାନାହିଁ ବୀରବାବୁଙ୍କଠାରୁ । ଏପରି ହେଉ, ହେଉ ୧୯୪୯ ଡିସେମ୍ବର ସରି,ଜାନୁଆରୀ ଦ୍ୱିତୀୟ ସପ୍ତାହ ହେଲା । ଶେଷକୁ ଏକ ଟେଲିଗ୍ରାମରେ ମେରିଡିଥ ଉତ୍ତର ପାଇଁ ଅନୁରୋଧ କଲେ । ତଥାପି ନିରୁତ୍ତର ରହିଲେ ବୀରବାବୁ । ମୁଁ ଅନ୍ୟ ହାଇକୋର୍ଟରେ (ଓଡିଶା ହାଇକୋର୍ଟ) ସେତେବେଳେ ସଂଶ୍ଳିଷ୍ଟ ଥିବାରୁ, ଏଠା ଚିଫ୍ ଜଷ୍ଟିସଙ୍କ ପ୍ରାଥମିକ ସମ୍ମତି ଆବଶ୍ୟକ ଥିଲା; ନଚେତ୍ ମେରିଡିଥ ତାଙ୍କ ଇଚ୍ଛା କାର୍ଯ୍ୟକାରୀ କରି ପାରିଥାଆନ୍ତେ । ଜାନୁଆରୀ (୧୯୫୦) ୨୫ ତାରିଖ ସୁଦ୍ଧା କଟକରୁ ଉତ୍ତର ପାଇଁ ଅପେକ୍ଷା ରଖି, ସେହିଦିନ ଅପରାହ୍ନରେ ଦିଲ୍ଲୀକୁ ମେରିଡିଥ ଟେଲିଫୋନ୍ ଯୋଗେ ଜଣାଇଲେ, ପାଟନାର ଆଡଭୋକେଟ୍ ବି.ଏନ୍. ରାୟଙ୍କୁ ନିଯୁକ୍ତି ପାଇଁ । ୨୬ ତାରିଖ ସକାଳେ ଦିଲ୍ଲୀର ସମ୍ମତି ଆସିଲା ଏବଂ ବିନା ମେଡିକାଲ ବୋର୍ଡ ପରୀକ୍ଷାରେ ତାଙ୍କୁ ଶପଥ ଦେବାର କ୍ଷମତା ମେରିଡିଥଙ୍କୁ ମିଳିଲା । ବି.ଏନ୍.ରାୟ କିଛି ଜାଣିନଥିଲେ । ସେ ସବୁଦିନ ପରି, କୋର୍ଟକୁ ଆସିଥିଲେ ଓକାଲତି ପାଇଁ । ତାଙ୍କୁ ମେରିଡିଥ ଡକାଇ ତାଙ୍କ ନିଯୁକ୍ତି କଥା କହି ଜଜ୍ ରୂପେ ଶପଥ ନେବାପାଇଁ ପ୍ରସ୍ତୁତ ହେବାକୁ କହିଲେ । ଏପରି ହେଉ ହେଉ, ଦିନ ବାରଟା ବାଜିଗଲା । ଶପଥର ଆୟୋଜନ ସରିଲା ପ୍ରାୟ ଗୋଟାଏ ବେଳେ । ମଧାହ୍ନ ବିଶ୍ରାମ ପରେ ହାଇକୋର୍ଟରେ ବିଚାରପତି ଭାବେ ବସିଲେ ବି.ଏନ୍.ରାୟ । ରେଜିଷ୍ଟ୍ରାର (ନାକି ଇମାମ୍) ଶପଥ ପାଠର ବିବରଣୀ ନିଜ ସ୍ୱାକ୍ଷରରେ ଦିଲ୍ଲୀ ପଠାଇବାର କଥା । ସେ ସେଥିରେ ଦିନ ବାରଟା ପରେ (ଅର୍ଥାତ୍ ଅପରାହ୍ନ) ଶପଥ ନିଆଯାଇଥିବା ଉଲ୍ଲେଖ କଲେ । ଯେଉଁଥିପାଇଁ ଶେଷ ମୂହର୍ତ୍ତରେ ଏତେ ତରତରରେ ନିଯୁକ୍ତି ଓ ଶପଥ ଦିଆହେଲା; ସେଥିରେ ଅନ୍ତରାୟ ଆସିଲା, କାରଣ ଦିନ ବାରଟାଠାରୁ ପୂର୍ବ ପ୍ରଚଳିତ ମାସିକ

Digitized by srujanika@gmail.com

ବେତନ ଚାରିହଜାର ଟଙ୍କା ଆଉ ପ୍ରଯୁଜ୍ୟ ହୋଇ ପାରିବ ନାହିଁ । ବିହାରର ମୁଖ୍ୟମନ୍ତ୍ରୀ ଓ ଚିଫ୍ ଜଷ୍ଟିସ୍ ସେହିଦିନ ଦିଲ୍ଲୀ କର୍ତ୍ତୃପକ୍ଷଙ୍କଠାରୁ ସ୍ୱତନ୍ତ୍ର ଅନୁମତି ଆଣିଲେ ଯେ ଶପଥପାଠ ଅପରାହ୍ନରେ ହୋଇଥିଲେ ମଧ ସେଦିନ ପୂର୍ବାହ୍ନରେ ହୋଇଥିବାର ଧରାଯିବ, କାରଣ ନିଯୁକ୍ତି ସମ୍ବାଦ ପାଟନାରେ ମିଳିବାରେ ବିଳମ୍ବ ଘଟିଥିଲା । ଟେଲିଫୋନ୍‌ରେ ଏପରି ନିଯୁକ୍ତି ପତ୍ର ଓ ବିନା ମେଡିକାଲ ବୋର୍ଡରେ ଶପଥ ପାଠ ଓ ସ୍ୱତନ୍ତ୍ର ଆଦେଶରେ ପୂର୍ବର ବେତନ ହାର ମଞ୍ଜୁର, କେବେ ଘଟିନଥିଲା । ମୋର ନିଯୁକ୍ତି ନିଶ୍ଚିତ ହୋଇ, କଟକରୁ ନାମିକ ପତ୍ରକୁ ଛଅମାସ ଅପେକ୍ଷା ରଖି, ଶେଷରେ ବ୍ୟର୍ଥ ହେବାର ଅନ୍ୟ ଦୃଷ୍ଟାନ୍ତ ମଧ ନାହିଁ । ପାଟନା ହାଇକୋର୍ଟକୁ ୧୯୪୯ରେ ଯାହା ଯାଇଥାନ୍ତି, ତାହା ବିଳମ୍ବିତ ହେଲା ଦଶବର୍ଷ । ମେରିଡିଥଙ୍କ ପତ୍ରାବଳୀ ଦେଖିବାକୁ ମିଳିଥିଲା ପାଟନା ଯିବାପରେ । ତାହା ପୂର୍ବରୁ ତାଙ୍କଠାରୁ ଶୁଣିଥିଲି ମୌଖିକ । ସେ ବିସ୍ମିତ ହୋଇଥିଲେ ବୀରବାବୁଙ୍କ ନିରୁତ୍ତରତାରେ । ବି.ଏନ.ରାୟ ଧର୍ମପ୍ରାଣ ଲୋକ, ନିରହଙ୍କାରୀ, ପଣ୍ଡିଚେରୀ ଆଶ୍ରମ ଭକ୍ତ । ନିଜ ବେତନରୁ ମାସିକ ଏକହଜାର ଟଙ୍କା ସେ ଆଶ୍ରମକୁ ପଠାଉଥିଲେ । ତାଙ୍କ ନିଯୁକ୍ତିର ଅଘଟନ ଘଟନା ସେ ବିସ୍ତାରିତ ବର୍ଣ୍ଣନା କରିଥିଲେ ମୋ ପାଖରେ । ପରୋକ୍ଷରେ ମୋ ଯୋଗୁ ସେ ନିଯୁକ୍ତି ପାଇଲେ ବୋଲି ବାରମ୍ବାର କହନ୍ତି । ଶ୍ରୀମାଙ୍କ (ପଣ୍ଡିଚେରୀ) କୃପାରୁ ତାହା ଏପରି ଶେଷ ମୁହୂର୍ତ୍ତରେ ଘଟିଲା ବୋଲି ତାଙ୍କର ପୂର୍ଣ୍ଣ ବିଶ୍ୱାସ ଥିଲା ଜୀବନର ଶେଷକାଳ ପର୍ଯ୍ୟନ୍ତ । ମୁଁ ଜଜ୍ ଥିବାବେଳେ ସେ ମଧ ଜଜ୍ ଥିଲେ ଦୁଇବର୍ଷ ତାଙ୍କର ଅବସର ଗ୍ରହଣ ପୂର୍ବରୁ ।

ପୋଷ୍ଟ-ଗ୍ରାଜୁଏଟ୍ ସ୍କଲରସିପ୍, ଷ୍ଟେଟ ସ୍କଲରସିପ୍, ଡେପୁଟି ଚାକିରୀ, ଆଡଭୋକେଟ ଜେନେରାଲ ମନୋନୟନ ପରେ ଏ ହେଲା ନାସ୍ତିର ମୋ ପକ୍ଷରେ ପଞ୍ଚମ ଆହୂତି । ଈଶ୍ୱରଙ୍କ ଦୟାରୁ, ମନରେ ଦୁଃଖ ଆସିଛି, କ୍ଷୋଭ ଆସିନାହିଁ । ଭାଗ୍ୟର ଖେଳ କିପରି କାହାକୁ ସୁଦୟା କରୁଛି, ଦେଖି କୌତୁକ ଲାଗିଛି ।



Digitized by srujanika@gmail.com



୧୯୩୭

(ବସିଥିବା, ବାମରୁ) ପୁଅ ପ୍ରଭାତ, ନିଜେ, ପତ୍ନୀ ହରିପ୍ରିୟା, ପୁଅ ବସନ୍ତ ଓ
ଆମ ଦୁହିଁଙ୍କ ମଝିରେ ଠିଆ ଝିଅ ସୁମିତ୍ରା
(ପଛରେ, ଠିଆ) ଗୃହ ସହାୟକ ଶିଶୁ ଅନନ୍ତକୁ କାଖରେ ଧରି,
ଅନ୍ୟ ସହାୟକ ଗଦାଧର ଓ ବାଉରିବନ୍ଧୁ

Digitized by srujanika@gmail.com

# ପିଲାମାନେ

ସାନପୁଅ ଅନୁର (ଅନନ୍ତ) ବ୍ରତଘର ପୁରୀରେ କରିବାର ସ୍ଥିର କଲୁ । ସମୁଦ୍ର କୂଳରେ ଭାସ୍କର ମହାପାତ୍ର (କଲିକତାର)ଙ୍କ ଘରେ ରହିଲୁ ଏବଂ ସେଠାରେ ତାଙ୍କର ବିସ୍ତୃତ ବଗିଚାରେ ବେଦୀ କରି ଉପନୟନ କାର୍ଯ୍ୟ କରାହେଲା । ସନ୍ଧ୍ୟାବେଳେ ଫୁଲସଭା (ଆଶୀର୍ବାଦସଭା)ରେ ଏମାର ମଠ ମହନ୍ତ ମହାରାଜ ଗଦାଧର ରାମାନୁଜ ବସି ବହୁ ବେଳଯାଏ ସଂସ୍କୃତ ଶ୍ଳୋକର ଆବୃତ୍ତି କରାଇ ସମସ୍ତଙ୍କର ଆନନ୍ଦ ବର୍ଦ୍ଧନ କରିଥିଲେ । ଏହା ହୋଇଥିଲା ୧୯୪୯ ଗ୍ରୀଷ୍ମ ଅବକାଶ ସମୟରେ । ସେତେବେଳେ ସୈନ୍ୟବାହିନୀ ଅଫିସର ଶିକ୍ଷାର୍ଥୀ ପାଇଁ ନୋଟିସ୍ ବାହାରିଲା । ସ୍ୱାଧୀନ ଦେଶର ସୈନ୍ୟବାହିନୀରେ ସାହାଯ୍ୟ କରିବା ଏକ ଜାତୀୟ କର୍ତ୍ତବ୍ୟ । ଓଡିଶାରୁ କେହି ଯାଉନଥାନ୍ତି । ସେ ବର୍ଷ କେନ୍ଦ୍ର ପବ୍ଲିକ ସର୍ଭିସ କମିଶନ ପରୀକ୍ଷା ଓ ସାକ୍ଷାତକାର ପରେ ଶିକ୍ଷାର୍ଥୀ ବାଛିବେ । ଭାବିଲି ପୁଅଙ୍କ ଭିତରୁ ଜଣେ ଗଲେ ଭଲ ହୁଅନ୍ତା । ବସନ୍ତ ଆଇ.ଏସ୍.ସି. ପଢୁଥାଏ । ସେ ସମ୍ମତ ହେବାରୁ ଦରଖାସ୍ତ ଦିଆହେଲା । କଲିକତାରେ ଲିଖିତ ପରୀକ୍ଷା ପାଇଁ ତାକୁ ସଙ୍ଗରେ ନେଇ ଗଲି । ଓଡିଶାରୁ ସେ ଏକମାତ୍ର ପ୍ରାର୍ଥୀ । ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ, ସାକ୍ଷାତକାର ପାଇଁ ମିରଟ ଗଲା । ଶେଷ ବଛାବଛିରେ ଡେରାଡୁନରେ ଚାରିବର୍ଷର ଶିକ୍ଷା ଓ ଟ୍ରେନିଙ୍ଗ ପାଇଁ ମନୋନିତ ହେଲା । ମୋ ସ୍ତ୍ରୀଙ୍କର ସବୁଦିନ ପାଇଁ ଦୁଃଖ ଯେ ଏତେ ପିଲାଦିନୁ ସେ ବାହାରେ ରହିଲା । ଚାରିବର୍ଷ ପରେ କମିଶନ୍ ପାଇ, ଥାର୍ଡ କାଭାଲାରୀରେ ଯୋଗଦେଇ କ୍ରମଶଃ ପାହ୍ୟାରେ ଉଠି ମେଜର ଜେନ୍‌ରାଲ ହୋଇଛି । (A.V.S.M) ଅତି ବିଶିଷ୍ଟ ସେବା ପଦକ ଲାଭ କରିଛି । ସୈନ୍ୟବାହିନୀର ସଙ୍ଗଠନ ଓ ଯୋଜନା ପ୍ରସ୍ତୁତ କରିବାରେ ସିଦ୍ଧହସ୍ତତା ଓ ଦୃଷ୍ଟିକୋଣରେ ସ୍ୱତନ୍ତ୍ରତା ପାଇଁ ଏକାଧିକବାର ରାଷ୍ଟ୍ରୀୟ ଅନୁମୋଦନ ଓ ପ୍ରଶଂସା ଲାଭ କରିଛି । ସେହି ପାହ୍ୟାରେ ଓଡିଶାରୁ ସେ ପ୍ରଥମ । ଈଶ୍ୱରଙ୍କ ଇଛା ।

Digitized by srujanika@gmail.com

ବଡପୁଅ ପ୍ରଭାତ କନ୍‌ଭେଣ୍ଟ ସ୍କୁଲ, ଷ୍ଟୁଆର୍ଟ ସ୍କୁଲରୁ ପଢ଼ାସାରି କଲେଜରେ ଦୁଇବର୍ଷ ପଢ଼ି, ଆଧୁନିକ ଧରଣର ଗୋଟିଏ ଇଂରେଜୀ ପୁସ୍ତକ ଓ ମାସିକ ପତ୍ରର ଦୋକାନ ମଙ୍ଗଳାବାଗରେ ଆରମ୍ଭ କଲା । ଓଡିଶାର ପ୍ରଥମ ଇଂରେଜୀ ପୁସ୍ତକ ପ୍ରଦର୍ଶନୀ ରେଭେନ୍‌ସା କଲେଜ ହଲରେ ପ୍ରିନିସ୍‌ପାଲ ପରିଜାଙ୍କ ସମର୍ଥନରେ କରିଥିଲା । ବହି ଦୋକାନଟି କ୍ରମଶଃ ସହରର ଏକ ସାଂସ୍କୃତିକ କେନ୍ଦ୍ର ହୋଇ ଉଠିଲା । କଲେଜମାନଙ୍କରେ ଆବଶ୍ୟକ ପୁସ୍ତକ ପତ୍ରିକା ଆଦି ଲଣ୍ଡନ, ନିଉୟର୍କ, ପାରିସ ପ୍ରଭୃତିର ପ୍ରକାଶକମାନଙ୍କ ଠାରୁ ସିଧାଆଣି କଟକରେ ଯୋଗାଇବାରେ ତାର ସଫଳତା ସମସ୍ତଙ୍କର ପ୍ରଶଂସାଯୋଗ୍ୟ ହେଲା । ଯେଉଁ ଦିନ ମାଗ୍ରୋହିଲ କମ୍ପାନୀ (ନିଉୟର୍କ)ରୁ ଆସିଥିବା ବହି ପାର୍ଶଲ ଉପରେ ପ୍ରଭାତ ଦୋକାନର ନାମ–Pravat Ku. Mohapatra ସ୍ୱତନ୍ତ୍ର ଛପା ମରା ହୋଇଥିବାର ଦେଖିଲି, ମୁଁ ଅତ୍ୟନ୍ତ ଆନନ୍ଦ ଲାଭ କଲି ଏବଂ ସେଇ ଛପା ନାମ ସହିତ ଖୋଳଟି ମୋ ପାଖରେ ସ୍ମାରକୀ ରୂପେ ରଖିଲି । ମୁଁ ଓକାଲତି ଏକା ଏକା ଅନ୍ୟର ବିନା ସହାୟତାରେ ଆରମ୍ଭ କରିଥିଲା ପରି, ପ୍ରଭାତ ବହି ଦୋକାନ ଆରମ୍ଭରୁ ଚଳାଉଥିଲା ଏକା ଏକା, ନିଜ ଚିନ୍ତା ଓ କଳ୍ପନାରେ । ମୁଁ ସେଥିରେ ଗର୍ବ ଅନୁଭବ କରୁଥିଲି । ଭୁବନେଶ୍ୱର ରାଜଧାନୀ ତିଆରି ପରେ, ବିଶ୍ୱବିଦ୍ୟାଳୟ ସେଠାକୁ ସ୍ଥାନାନ୍ତରିତ ହେବାରୁ ବହି ଦୋକାନଟି ଭୁବନେଶ୍ୱରକୁ ନେଇଥିଲେ । ସେଠାରେ ଅନନ୍ତ ଦାୟିତ୍ୱରେ ତାହା ଚାଲିଲା ପୂର୍ବପରି । ପ୍ରଭାତ ରିୟଲ ଇଷ୍ଟେଟ୍ (ଗୃହସମ୍ପତ୍ତି) ରେ ଆଗ୍ରହୀ ହୋଇ ସେହି ଦିଗରେ ମନୋନିବେଶ କରିବା ପାଇଁ କଲିକତା ଗଲା । ନିଜର ଦୂରଦୃଷ୍ଟି ଓ ସତ୍‌ମାର୍ଗ ଯୋଗୁ ସେଥିରେ ପ୍ରଭୂତ ଓ ଅପ୍ରତ୍ୟାଶିତ ଉନ୍ନତି ଲାଭ କରିଛି, ଈଶ୍ୱରବିଶ୍ୱାସୀ ଈଶ୍ୱରଙ୍କ ଦୟା ଉପରେ ନିର୍ଭର କରି । ତାହାର ସୁନାମ ଓ ସ୍ୱଚ୍ଛଳତାରେ ଆମ୍ଭେମାନେ ଅତି ପ୍ରୀତ ।

ଅନୁ (ଅନନ୍ତ) ବି.ଏ.ପାସ୍ କରି ବହି ଦୋକାନକୁ ଆସିଲା । କିଛିକାଳ ପାଇଁ ପୁସ୍ତକ ବ୍ୟବସାୟରେ ତାଲିମ ନେଇଥିଲା । ତାହାର ମଞ୍ଚ କଳାରେ ଆଗ୍ରହ ବେଶି । ସେ ବିଷୟରେ ଅଧ୍ୟୟନ, ଚିନ୍ତା ଓ ଯୋଜନାରେ ସେ ଜଣେ ଅଗ୍ରଣୀ । କେତେକ ଫିଲ୍ମ ପ୍ରସ୍ତୁତି ଓ ନିର୍ଦ୍ଦେଶନାରେ ତାହାର ଦକ୍ଷତା ପ୍ରକାଶ ପାଇଛି ଓ ପ୍ରଶଂସିତ ହୋଇଛି । କାମ ପଡିଲେ କଠୋର ପରିଶ୍ରମ ଦିନରାତି କରିବାରେ ସେ ଅକୁଣ୍ଠ । ତୀକ୍ଷ୍ଣ ବୁଦ୍ଧି ଓ ନିର୍ଲିପ୍ତ ଭାବ ଯୋଗୁ ଅନୁକୂଳ, ପ୍ରତିକୂଳ ପରିସ୍ଥିତିର ସମ୍ମୁଖୀନ ହେବାର ସାହସ ସହଜେ ତାଠାରୁ ମିଳେ । ଅନ୍ୟର କାର୍ଯ୍ୟରେ ସହାୟ ହେବାପାଇଁ

Digitized by srujanika@gmail.com

ତତ୍ପରତା ତାର ଅସାଧାରଣ । ବହିଦୋକାନ ବନ୍ଦ କରି ସେ ଟ୍ରାଭେଲ ଏଜେନ୍‌ସି (ପରିବହନ ସଂସ୍ଥା) Travel Wings ନାମରେ ଚଳାଉଛି । ସେ ବସନ୍ତ ରୋଗରେ ଥରେ ପଡିଥିବାରୁ ମା'ତାର ସର୍ବଦା ତା ପ୍ରତି ଆତଙ୍କିତା । ରଙ୍ଗନାଥ (ଜାମାତା) ଏହ୍ଲାବାଦରୁ ଏମ୍.ଏ.ଏଲ୍.ଏଲ.ଏମ୍. ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ପାଶ୍ କରି ୧୯୫୦ରୁ ଓକାଲତି ଆରମ୍ଭ କଲେ ଓଡିଶା ହାଇକୋର୍ଟରେ । ନିଜର ଯୋଗ୍ୟତା, ଦକ୍ଷତା ଓ ସୌଜନ୍ୟ ଯୋଗୁ ବୃତ୍ତିରେ କୃତିତ୍ୱ ଲାଭକରି, ହାଇକୋର୍ଟ ଜଜ ଓ ଓ ଚିଫ୍ ଜଷ୍ଟିସ ହୋଇ ୧୯୮୩ ଏପ୍ରିଲ ମାସରୁ ସୁପ୍ରିମ କୋର୍ଟର ଅନ୍ୟତମ ବିଚାରପତି ହୋଇଛନ୍ତି । ସୁପ୍ରିମ କୋର୍ଟରେ ସେ ପ୍ରଥମ ଓଡିଆ । ଧର୍ମଚିନ୍ତକ, ଧର୍ମପ୍ରସାରରେ ଆଗ୍ରହାନ୍ୱିତ ।

ଅନ୍ୟ ଓ କନିଷ୍ଠ ଜାମାତା ଗୌରୀଶଙ୍କର (ଆଚାର୍ଯ୍ୟ) ମେଡିକାଲ କଲେଜରେ ଆସୋସିଏଟ୍ ପ୍ରଫେସର । ଲଣ୍ଡନରେ କ୍ୟାନସେର ବିଷୟରେ ଏକ ବର୍ଷ ସ୍ୱତନ୍ତ୍ର ଶିକ୍ଷା ଲାଭ କରି କଟକ କ୍ୟାନସେର ଇନ୍‌ଷ୍ଟିଚିଉଟରେ ବିଶେଷଜ୍ଞ ଭାବରେ ଅବସ୍ଥିତ । ନିଜର ସାସ୍ଥ୍ୟ ଓ କର୍ତ୍ତବ୍ୟ ସମ୍ପାଦନ ମଧରେ ସମନ୍ୱୟ ରକ୍ଷା କରିବାରେ ଅବହେଳା ଯୋଗୁ ସ୍ୱାସ୍ଥ୍ୟହାନି ଘଟି ନିଜେ ଓ ଅନ୍ୟ ସମସ୍ତେ ଚିନ୍ତାଗ୍ରସ୍ତ ହୋଇଥିଲେ । ଲଣ୍ଡନରେ ଚିକିତ୍ସା ଓ ଅପରେସନ୍ ପରେ ଆରୋଗ୍ୟ ଲାଭ କରି ପୁଣି କର୍ମରତ ଅଛନ୍ତି ।

ଆମେ ଥିଲୁ ତିନିଭାଇ ଚାରିଭଉଣୀ । ମଝିଆ ଭାଇ କୃଷ୍ଣ ଆତ୍ମହତ୍ୟା କଲା ଆଇ.ଏସ୍.ସି. ପଢ଼ିଲାବେଳେ । ମୋ ତଳ ଭଉଣୀ କ୍ଷେତ୍ରମଣି ବିବାହର ଅଳ୍ପଦିନ ପରେ ଶ୍ୱଶୁରାଳୟରେ କଲେରା ରୋଗରେ ଆକ୍ରାନ୍ତ ହୋଇ ପରଲୋକ ପ୍ରାପ୍ତ ହୋଇଥିଲା, ମୁଁ ପୁରୁଲିଆରେ ମାଟ୍ରିକ ପରୀକ୍ଷା ଦେଉଥିବା ବେଳେ । କନିଷ୍ଠଭ୍ରାତା ଡିନୁ (ଶରତଚନ୍ଦ୍ର) ପୁରୀ ଜିଲ୍ଲା ସ୍କୁଲରୁ (କିଛିଦିନ ବାଣପୁର ସ୍କୁଲରୁ) ପଢ଼ା ଶେଷ କରି ଗାଁରେ ଜମିବାଡିର ରକ୍ଷଣା ବେକ୍ଷଣରେ ଆଗ୍ରହୀ ହେଲା । କୁଟୀରଶିଳ୍ପ (ଚାଉଳ ହଲର, ଚୁଡା କଳ) ଗ୍ରାମରେ ପ୍ରଥମ ଆରମ୍ଭ କରି ଅନ୍ୟ ମାନଙ୍କର ପଥପ୍ରଦର୍ଶକ ହୋଇଛି । ତାର ତିନିପୁଅ ନିଜ ନିଜ ବ୍ୟବସାୟ କରୁଛନ୍ତି; ଏକମାତ୍ର କନ୍ୟା ସୁପାତ୍ରସ୍ଥ ହୋଇଛି, ସ୍ୱାମୀ ଏକ୍‌ସକ୍ୟୁଟିଭ ଇଞ୍ଜିନିୟର ।

ଭଉଣୀ ତାରାମଣି, ଆଚାର୍ଯ୍ୟ ହରିହର ଦାଶଙ୍କ କନିଷ୍ଠ ଭ୍ରାତା ଶଙ୍କର ଦାଶ ଡାକ୍ତରଙ୍କୁ ବିବାହ କରିଥିଲା, ମୁଁ ଓକାଲତି ଆରମ୍ଭ କରିବାର ମାତ୍ର କେତେମାସ

Digitized by srujanika@gmail.com

ପରେ । ବରଯାତ୍ରୀରେ ଆସିଥିଲେ, ଆଚାର୍ଯ୍ୟ ମହାଶୟ, ପଣ୍ଡିତ ଲିଙ୍ଗରାଜ ମିଶ୍ର, ମଦନମୋହନ ମିଶ୍ର ପ୍ରଭୃତି । ପରିବାରର ଖର୍ଚ୍ଚ ଦାୟିତ୍ୱ ବହନ କରିବା ସେହିଠାରୁ ମୋର ଆରମ୍ଭ ହେଲା । ଦୁର୍ଭାଗ୍ୟକୁ ଆମର, ଶଙ୍କର ଡାକ୍ତରୀ ବୃତ୍ତିରେ ପ୍ରତିଷ୍ଠିତ ହୋଇଥିଲା ବେଳେ ଅକାଳ ମୃତ୍ୟୁମୁଖରେ ପଡିଲେ । ତାରାର ବୈଧବ୍ୟରେ ପିତାମାତା ମ୍ରିୟମାଣ ହୋଇ ପଡିଲେ । ତାର ଦୁଇପୁତ୍ର ସୁଯୋଗ୍ୟ ଓ ପାଞ୍ଚକନ୍ୟା ସୁପାତ୍ରସ୍ଥା ହୋଇଛନ୍ତି । ତଳ ଭଉଣୀ କନକଲତା ଭିଙ୍ଗାରପୁରର ଚୌଧୁରୀ ଶ୍ୟାମସୁନ୍ଦର ଦାଶଙ୍କ ପତ୍ନୀ । ଜମିଦାରୀ ଉଚ୍ଛେଦ ପରେ ଅନଟନ ମଧ୍ୟରେ ସଂସାର ଚଳାଉଛନ୍ତି । ଜ୍ୟେଷ୍ଠ ପୁତ୍ର ନିରୁଦ୍ଦିଷ୍ଟ, ଅନ୍ୟ ଦୁଇସନ୍ତାନ ଅସୁସ୍ଥ । କନିଷ୍ଠ ଦୁଇପୁତ୍ର ସରକାରୀ କାର୍ଯ୍ୟରେ ନିଯୁକ୍ତ ଥାଇ ସଂସାର ନିର୍ବାହରେ ସାହାଯ୍ୟ କରୁଛନ୍ତି । ଅନ୍ୟ କନ୍ୟାମାନେ ପାତ୍ରସ୍ଥା । କନିଷ୍ଠା କନ୍ୟାର ବିବାହ ପ୍ରସଙ୍ଗ ଚାଲିଛି । ମୋର ସବା ସାନଭଉଣୀ ହେମଲତା ପୁରୀର ପ୍ରସିଦ୍ଧ କବିରାଜ ପୂର୍ଣ୍ଣଚନ୍ଦ୍ର ରଥ ବୈଦ୍ୟରତ୍ନଙ୍କର ଜ୍ୟେଷ୍ଠା ପୁତ୍ରବଧୂ । ସ୍ୱାମୀ ଡାକ୍ତର । ନିକଟରେ ସ୍ୱାମୀଙ୍କର କାଳ ହୋଇଅଛି । ତିନିପୁତ୍ର ସ୍ୱାବଲମ୍ବୀ କାର୍ଯ୍ୟରେ ନିଯୁକ୍ତ । ସାନପୁଅ ବିଚକ୍ଷଣ ଗବେଷଣାରେ ହିନ୍ଦୁ ବିଶ୍ୱବିଦ୍ୟାଳୟ (ବନାରସ) ରେ ଅନୁରକ୍ତ ରହିଛି । କନ୍ୟାମାନେ ଯୋଗ୍ୟପାତ୍ରସ୍ଥା ହୋଇ ଘର କରୁଛନ୍ତି ।

ପ୍ରଭାତର ବିବାହ ପାଇଁ ଗୋଦାବରୀଶବାବୁଙ୍କଠାରୁ ପ୍ରସ୍ତାବ ଆସିଲା ମେଦିନୀପୁର ଜିଲ୍ଲା ବାଲିଆବେଡ଼ାର ବିଶ୍ୱମ୍ଭର ପ୍ରହରାଜଙ୍କ କନିଷ୍ଠା କନ୍ୟା ମନୋରମା ବିଷୟରେ । ଗୋଦାବରୀଶବାବୁଙ୍କ ଝିଅର ଝିଅ ସେ । ଆମ୍ଭେମାନେ ରାଜି ହେଲୁ । ୧୯୫୧ ମେ ମାସରେ, ନନା, ଭାଇ ଓ ବନ୍ଧୁମାନଙ୍କୁ ନେଇ ବାଲିଆବେଡ଼ା ଯାଇ ବିବାହ କାର୍ଯ୍ୟ ସମ୍ପନ୍ନ ହେଲା ।

ବିଚିତ୍ରା (ନିନି) ପାଇଁ ପାତ୍ର ଅନୁସନ୍ଧାନ କରିବା ପୂର୍ବରୁ, ପରଲୋକଗତ ବୈଦ୍ୟରାଜ ବାଲୁଙ୍କେଶ୍ୱର ଆଚାର୍ଯ୍ୟଙ୍କ ପୁତ୍ର କବିରାଜ ଲକ୍ଷ୍ମୀନାରାୟଣ ଆଚାର୍ଯ୍ୟ ତାଙ୍କ ଜ୍ୟେଷ୍ଠପୁତ୍ର ଗୌରୀଶଙ୍କରଙ୍କର ବିବାହ ପ୍ରସ୍ତାବ ପଠାଇଲେ । ଲକ୍ଷ୍ମୀନାରାୟଣ ପଣ୍ଡିତ ଲିଙ୍ଗରାଜ ମିଶ୍ରଙ୍କର ଜାମାତା । ବାଲୁଙ୍କେଶ୍ୱର ଆଚାର୍ଯ୍ୟଙ୍କ ସମୟରୁ ସେ ପରିବାର ସହିତ ପରିଚୟ ଥିଲା । ସେଠାରେ ସମ୍ବନ୍ଧ ସ୍ଥିର ହେଲା ।

ବସନ୍ତ ସହିତ ଆମର ପ୍ରତିବେଶୀ ପ୍ରିୟନାଥ ସମାଦାରଙ୍କ (ଗଭର୍ଣ୍ଣରଙ୍କ ସେକ୍ରେଟେରୀଏଟରେ କାର୍ଯ୍ୟ କରୁଥିଲେ) ମଧ୍ୟମା କନ୍ୟା ଶକ୍ତିର ବିବାହ ପ୍ରସଙ୍ଗ ଉଠିଲା; ବସନ୍ତଆଡୁ । ସେମାନେ ବ୍ରାହ୍ମଣ, କିନ୍ତୁ ବଙ୍ଗୀୟ । କନ୍ୟା ପିତାଙ୍କର ପ୍ରଥମରୁ

Digitized by srujanika@gmail.com



୧୯୭୮

(ବସିଥିବା, ବାମରୁ) ପୁତ୍ର ପ୍ରଭାତ, ପତ୍ନୀ ହରିପ୍ରିୟା, ନିଜେ ଓ କନ୍ୟା ସୁମିତ୍ରା
(ଠିଆ ହୋଇଥିବା) ପୁତ୍ର ବସନ୍ତ, କନ୍ୟା ବିଚିତ୍ରା ଓ ପୁତ୍ର ଅନନ୍ତ

Digitized by srujanika@gmail.com

ଅମତ ଥିଲା । କନ୍ୟାମାତା ଦିନେ ସନ୍ଧ୍ୟାବେଳେ ଆମଘରକୁ ଆସି ଆମ ଠାକୁର ଘରକୁ ଯାଇ କହିଲେ, ସମ୍ବନ୍ଧ ସ୍ଥିର ହେଉ । ତାହା ହେଲା । ବସନ୍ତ ଓ ନିନିର ବିବାହ ୧୯୬୧ ମାର୍ଚ୍ଚ ମାସରେ ହେଲା । ଶକ୍ତି ସ୍କୁଲ ପଢ଼ାବେଳୁ ନିନିର ସଙ୍ଗାତ ଥିଲା । ବଙ୍ଗୀୟ ଦୁହିତାକୁ ଆଦରରେ ଗ୍ରହଣ କରିବାରେ ମୋ ସ୍ତ୍ରୀଙ୍କର କୌଣସି କୁଣ୍ଠା ପ୍ରକାଶ ପାଇନଥିଲା ।

ଅନନ୍ତ ତା ବୋଉଙ୍କ ପାଖରେ ଜଣାଇଲା ତାର ଇଚ୍ଛା ଡାକ୍ତର ଡେଭିଡ୍ ଆର.ଏନ.ସାହୁଙ୍କ ମଧ୍ୟମା କନ୍ୟା ସଂଯୁକ୍ତାକୁ ବିବାହ କରିବ । ସେମାନେ ଖ୍ରୀଷ୍ଟିଆନ୍ । ଆଶ୍ଚର୍ଯ୍ୟ ହେଲି ସ୍ତ୍ରୀଙ୍କର କୌଣସି ବିରୋଧ ବା ବିରାଗ ନ ଦେଖି । ନନା ଏ ପ୍ରସ୍ତାବ ଶୁଣି ବିଷାଦ ମଣିଲେ । ସାନଭାଇ ମଧ୍ୟ । ଗ୍ରାମବାସୀମାନେ ନାପସନ୍ଦ କରିବାର କଥା । ମୋର ବା ବେବିର ଆପତ୍ତି ନଥିଲା । ପାତ୍ରୀ ଯୋଗ୍ୟା, କେବଳ ଜାତି ଭିନ୍ନ । ପରିସ୍ଥିତିକୁ ଲକ୍ଷ୍ୟ ରଖି ନନା ଅତି କୁଣ୍ଠିତ ହୋଇ ଅନୁମତି ଦେଲେ । କନ୍ୟାପଟରେ ପିତାମହଙ୍କର ବିରୋଧ । କନ୍ୟା ପିତା ଓ ମାତାଙ୍କର ମଧ୍ୟ ପ୍ରସନ୍ନତା ନଥିଲା । ସେମାନେ କନ୍ୟାର ଅଭିଳାଷକୁ ଅତିକ୍ରମ କରିପାରିଲେ ନାହିଁ । କିନ୍ତୁ ପ୍ରକାଶ୍ୟରେ କନ୍ୟାର ବିବାହ ଆୟୋଜନ କରିବାର ସାହସ ବା ସୁବିଧା ସଂଗ୍ରହ କରିପାରିଲେ ନାହିଁ । ବନ୍ଧୁ ଶରତ୍‌ଙ୍କ ସ୍ତ୍ରୀ ଶାନ୍ତି, କନ୍ୟାପିତାଙ୍କର ସହପାଠିନୀ ଥିଲେ । ତାଙ୍କ କାଠଗଡା ସାହି ଘରକୁ କନ୍ୟା ଆସିବ ଏବଂ ଆମ୍ଭେମାନେ ସେଠାକୁ ଯାଇ ବିବାହ ରେଜେଷ୍ଟରୀ ହେବା ସ୍ଥିର ହେଲା । ତାହା ହିଁ ହେଲା । କନ୍ୟା ପିତାମାତା ସେଠାକୁ ଆସିଲେ ନାହିଁ । ଆମ ପିଲାଙ୍କର ବ୍ରତ, ବିବାହରେ ଯେ ପୌରୋହିତ୍ୟ କରନ୍ତି, ପଣ୍ଡିତ ବାମନ ଆଚାର୍ଯ୍ୟ, ମୁଁ ତାଙ୍କୁ ଟେଲିଗ୍ରାମ କରି ତାଙ୍କ ଗ୍ରାମରୁ ଡକାଇଲି । ସେ ଆସିଲେ, କିନ୍ତୁ ପ୍ରସ୍ତାବିତ ବିବାହରେ କାର୍ଯ୍ୟ କରିବା ପାଇଁ ଏକହଜାର ଟଙ୍କା ନେବେ, କହିଲେ । ଚୋରିମାନା ପରି ମୋର ମନେହେଲା । ମୁଁ ଅସମ୍ମତ ହୋଇ, ଅନ୍ୟଜଣେ ପୁରୋହିତଙ୍କୁ ସଙ୍ଗରେ ନେଇ କାଠଗଡା ସାହି ଶରତଙ୍କ ଘରେ ବିବାହ ରେଜେଷ୍ଟ୍ରୀ ପରେ ବୈଦିକ ରୀତିରେ (୧୯୬୪) ହୋମାଗ୍ନି ପାଖରେ ବିବାହ ସମ୍ପନ୍ନ କରାଇଲି । ବଡପୁଅ ପ୍ରଭାତର ଆନନ୍ଦ, ଉତ୍ସାହ ଓ ସାହସ ମୋର ପ୍ରଧାନ ସହାୟକ ଥିଲା । ମୋ ସାନଭାଇ ଆସି ନଥିଲେ । ନନା ଓ ବୋଉ ଆସି ପହଞ୍ଚିଲେ ସନ୍ଧ୍ୟାବେଳକୁ । ମୋ ସ୍ତ୍ରୀ ଲେଶମାତ୍ର ଦ୍ୱିଧା ନ ଥାଇ ପୁଅ ବୋହୁଙ୍କୁ କୋଳାଗ୍ରତ କରି ଘରକୁ ନେଲେ । ବିବାହବାସି ବାମନ ଆଚାର୍ଯ୍ୟ ଆସିଲେ ମୋ ସ୍ତ୍ରୀଙ୍କ ପାଖକୁ । ଚତୁର୍ଥୀ ଦିନ ଯେଉଁ

Digitized by srujanika@gmail.com

ହୋମାଦିବିଧି ତାହା ସେ କରାଇବେ ବୋଲି ନିଜ ଆଡୁ କହିଲେ । ସେ ଭାବି ନଥିଲେ ମୁଁ ତାଙ୍କୁ ଏକାବେଳକେ ପ୍ରତ୍ୟାଖାନ କରି ଅନ୍ୟ ପୁରୋହିତ ସାହାଯ୍ୟରେ ବିବାହକାର୍ଯ୍ୟ କରାଇନେବି । ଖ୍ରୀଷ୍ଟିଆନ କନ୍ୟା ବିବାହରେ ପୌରୋହିତ୍ୟ କରିବା ପାଇଁ ଆଦୌ ସମ୍ମତ ନହେବା ଏକ କଥା; କିନ୍ତୁ ଦାଉଁମାରି ଦଶଗୁଣ ଦକ୍ଷିଣା ଦାବୀ କରିବା ଅଗ୍ରହଣୀୟ । ଚତୁର୍ଥୀ ଦିନ ସେ ପୁରୋହିତ କାର୍ଯ୍ୟ ଯଥାରୀତି କଲେ ।

ସ୍ତ୍ରୀଙ୍କର ପୂଜାପାଠ, ଠାକୁର ପୂଜାରେ କୌଣସି ବ୍ୟାଘାତ ଘଟିନାହିଁ । ବୋହୂମାନଙ୍କ ସଙ୍ଗେ ବସି ଖାଇବା ପିଇବାରେ କିଛି ବ୍ୟତିକ୍ରମ ହୋଇନାହିଁ । ତାଙ୍କର ମାନବିକ ଶ୍ରଦ୍ଧା ଓ ଈଶ୍ୱର ବିଶ୍ୱାସ ସବୁବେଳେ ସବୁ କ୍ଷେତ୍ରରେ ସ୍ୱତଃ ପ୍ରକାଶ ପାଇଥାଏ ।



Digitized by srujanika@gmail.com

୧୯୭୯

(ପଛଧାଡ଼ି) ନାତି ସେବାନନ୍ଦ, ପ୍ରଶାନ୍ତ, ଦେବାନନ୍ଦ, ପ୍ରଦୀପ, ଜାମାତା ଗୌରୀଶଙ୍କର, ରଙ୍ଗନାଥ, ପୁତ୍ର ବସନ୍ତ, ପ୍ରଭାତ, ଅନନ୍ତ ଓ ନାତି ରାଜେନ୍ ।

(ମଝିଧାଡ଼ି) କନ୍ୟା ବିଚିତ୍ରା, ନାତୁଣୀବୋହୂ ଶୁଭଲକ୍ଷ୍ମୀ, ସୁଜାତା, ପତ୍ନୀ ହରିପ୍ରିୟା, ନିଜେ, କନ୍ୟା ସୁମିତ୍ରା, ପୁତ୍ରବଧୂ ମନୋରମା, ସଂଯୁକ୍ତା ଓ ଶକ୍ତି ।

(ତଳଧାଡ଼ି) ନାତୁଣୀ ରୋମା, ନୀତା, ରିନା ଓ ନାତି ଗୌତମ

Digitized by srujanika@gmail.com

# ସିଭିଲ ଲିବର୍ଟି କନଫରେନ୍ସ

ଯୁଦ୍ଧ (୧୯୩୯-୧୯୪୫) ବେଳେ Defence of India Act (ଭାରତ ପ୍ରତିରକ୍ଷା ଆଇନ) ପ୍ରଚଳନ ଥିଲା । ଯୁଦ୍ଧ ପରେ ମଧ୍ୟ ତାହା କାଏମ ରହିଥିଲା । ସେହି ଆଇନ ବଳରେ ଦୋଷୀଙ୍କୁ ଯେପରି ଅଭିଯୁକ୍ତ କରାଯାଉଥିଲା, ସ୍ୱାଧୀନଚେତା, ସ୍ୱାଧୀନ ବକ୍ତାଙ୍କୁ ସେହିପରି ଭୟଭୀତ କରାଇ ରଖିବାର ଚେଷ୍ଟା ହେଉଥିଲା । ଆମ୍ଭେମାନେ ଲୋକଙ୍କ ମନରେ ଦମ୍ଭ ଦେବା ଓ ଆବଶ୍ୟକ ସ୍ଥଳେ ଅଯଥା ଅଭିଯୁକ୍ତ ବ୍ୟକ୍ତିଙ୍କୁ ସାହାଯ୍ୟ ଦେବା ଉଦ୍ଦେଶ୍ୟରେ ନାଗରିକ ସ୍ୱାଧୀନତା ରକ୍ଷା ସମିତି (Civil liberty union) ଗଠନ କରିଥିଲୁ । ସେଥିରେ (Servants of India Society) ହିନ୍ଦ୍ ସେବକ ସଂଘର ଶ୍ୟାମସୁନ୍ଦର ମିଶ୍ର, ମୁରଲୀଧର ମହାନ୍ତି, ଦୀନବନ୍ଧୁ ସାହୁ ପ୍ରମୁଖ ଯୋଗ ଦେଇଥିଲେ । ମୁଁ ଥିଲି ସଭାପତି । ୧୯୪୬ ଏପ୍ରିଲ ୨୩ ରେ ହରେକୃଷ୍ଣ ମହତାବ ମନ୍ତ୍ରିମଣ୍ଡଳ ଗଠନ କଲାପରେ ମଧ୍ୟ ଏହି ସମିତି କାର୍ଯ୍ୟଚଞ୍ଚଳ ଥିଲା । ଓଡିଶାର କେତେକ ଅଞ୍ଚଳରେ ତାହାର ଅଳ୍ପ ବହୁତ ପ୍ରତିଧ୍ୱନି ଶୁଣାଯାଉଥିଲା । କଟକରେ ନାରୀସଂଘ ସଦନରେ ଓଡିଶା ନାଗରିକ ଅଧିକାର ସୁରକ୍ଷା ସମ୍ମିଳନୀ (Orissa Civil liberty Conference) କରିବାର ସ୍ଥିର ହେଲା । ପାଟନାର ପ୍ରଖ୍ୟାତ ବାରିଷ୍ଟର ପି.ଆର.ଦାସଙ୍କୁ (ଦେଶବନ୍ଧୁ ଚିତ୍ତରଞ୍ଜନ ଦାସଙ୍କର ଭାଇ) ସଭାପତି କରି ଆଣିଲୁ । ଆମ୍ଭମାନଙ୍କର ଏହି ଉଦ୍ୟମକୁ ମହତାବବାବୁ ସରକାର ବିରୋଧୀ ଭାବି ଭଣ୍ଡୁର କରିଦେବା ପାଇଁ କେବଳ ଅସହଯୋଗ କଲେ ନାହିଁ, ତାଙ୍କ 'ପ୍ରଜାତନ୍ତ୍ର' କାଗଜରେ ନିନ୍ଦାସୂଚକ ଲେଖା ଆରମ୍ଭ କଲେ । ମୋ ପ୍ରତି ବ୍ୟକ୍ତିଗତ କଟାକ୍ଷ ଦୁଇଟି ଅଗ୍ରଲେଖାରେ ପ୍ରକାଶିତ ହେଲା । ସେତେବେଳେ ଚିନ୍ତାମଣି ମିଶ୍ର 'ପ୍ରଜାତନ୍ତ୍ର' ସହିତ ସଂଶ୍ଳିଷ୍ଟ ଥିଲେ । ଜଣେ ଭଦ୍ରବ୍ୟକ୍ତି ମହତାବଙ୍କୁ ଏପରି ଲେଖାର ଅସଙ୍ଗତତା କଥା କହିବାରୁ ସେ ଚିନ୍ତାମଣି ମିଶ୍ରଙ୍କ ଉପରେ ଦୋଷ ଲଦିଦେଲେ । ଚିନ୍ତାମଣିବାବୁ ସେହିଦିନ ସନ୍ଧ୍ୟାରେ ମୋ ପାଖକୁ ଆସି ପ୍ରକୃତ କିଏ (ମହତାବବାବୁ) ଲେଖିଛନ୍ତି

Digitized by srujanika@gmail.com

ଜଣାଇଥିଲେ । ମୁଖ୍ୟମନ୍ତ୍ରୀଙ୍କୁ ନିମନ୍ତ୍ରଣପତ୍ର ପଠାଇବା ପରେ ବ୍ୟକ୍ତିଗତ ଭାବରେ ସାକ୍ଷାତ ନିମନ୍ତ୍ରଣ କରିବାକୁ ମୁରଲୀଧର ମହାନ୍ତି ଯାଇଥିଲେ । ମହତାବବାବୁ ସମ୍ମିଳନୀ ସମ୍ବନ୍ଧରେ କିଛି ଜାଣି ନାହାନ୍ତି କିମ୍ବା ନିମନ୍ତ୍ରଣ ପତ୍ର ପାଇନାହାନ୍ତି ବୋଲି କହିଲେ । ଯାହାହେଉ ନିର୍ଦ୍ଧାରିତ ଦିବସ ସକାଳେ ପୁରୀ ଏକ୍ସପ୍ରେସରେ ଏକ ସେଲୁନ ଡବାରେ ଆସି.ପି.ଆର.ଦାସ କଟକ ଷ୍ଟେସନରେ ବିପୁଳ ଉତ୍ସାହର ସହିତ ବହୁ ଲୋକଙ୍କ ଦ୍ୱାରା ଅଭ୍ୟର୍ଥିତ ହେଲେ । ସମ୍ମିଳନୀରେ ସହଯୋଗ ପାଇଁ ଓଡିଶାର ପ୍ରାୟ ସବୁ ଅଞ୍ଚଳରୁ ପ୍ରତିନିଧିମାନେ ଆସିଥିଲେ । ଆମ ଆଶା ଠାରୁ ଅଧିକ ସଫଳତାର ସହିତ ସମ୍ମିଳନୀ ଦୁଇଦିନ ହେଲା । ହାଇକୋର୍ଟ ଜଜଙ୍କ ମଧ୍ୟରୁ ନରସିଂହମ୍ ପ୍ରଥମ ଦିନ ଯୋଗ ଦେଇଥିଲେ । ପ୍ରଥମଦିନ ରାତ୍ରିରେ ଆମ ଘରେ ମୁଁ ଏକ ନୈଶ ଭୋଜନ ଶହେଜଣଙ୍କ ପାଇଁ ଆୟୋଜନ କରିଥିଲି, ପି.ଆର.ଦାସ ଓ ତାଙ୍କ ସଙ୍ଗେ ଆସିଥିବା ମିସେସ ସେନଙ୍କ ସମ୍ମାନାର୍ଥେ । ଅଧ୍ୟାପକ, ଉଚ୍ଚପଦସ୍ଥ କର୍ମଚାରୀ, ସିନିଅର ଓକିଲ, ଦୁଇଜଣ ଆଇ.ଏ.ଏସ୍. ଅଫିସର, ଦୂରାଗତ ପ୍ରତିନିଧି ଆସିଥିଲେ । ପଣ୍ଡିତ ଲିଙ୍ଗରାଜ ମିଶ୍ର (ମନ୍ତ୍ରୀ), ରାଧାନାଥ ରଥ ମଧ୍ୟ ଯୋଗ ଦେଇଥିଲେ । ମହାତାବବାବୁ ଆସିଲେ ନାହିଁ । କଲିକତାର ସମ୍ବାଦପତ୍ରରେ ସମ୍ମିଳନୀର ବିବରଣୀ ପ୍ରକାଶ ପାଇଥିଲା । ସେହି ସମୟରେ ଓଡିଶା ବିଧାନସଭା ବସିଥାଏ । ଏହି ସମ୍ମିଳନୀକୁ ସରକାର ତରଫରୁ ଉତ୍ସାହିତ ନକରି ବିରୋଧ କରାଯାଇ ଥିବାର ଅଭିଯୋଗ କରି କେତେକ ସଭ୍ୟ ସେ ପ୍ରସଙ୍ଗ ଉଠାଇବାରୁ, ଡେପୁଟିମିନିଷ୍ଟର ଭୈରବଚନ୍ଦ୍ର ମହାନ୍ତି ଉତ୍ତର ଦେଲେ ଯେ ଯଦି ସରକାର ବିରୋଧ କରିଥାନ୍ତେ, ହରିହର ମହାପାତ୍ର ତାଙ୍କ ଘରେ ଶହେଜଣଙ୍କୁ ଡାକି.ପି.ଆର ଦାସଙ୍କୁ ଡିନର କ'ଣ ଦେଇପାରି ଥାଆନ୍ତେ ? ମହାତାବବାବୁଙ୍କର ଏକ ବିଶେଷତ୍ୱ ଲକ୍ଷ୍ୟ କରିଛି, ସେ ତାତ୍କାଳୀକ ବିରୋଧକୁ ସଂପୃକ୍ତ ଘଟଣା ପରେ ଜେର ଟାଣନ୍ତି ନାହିଁ । ପୂର୍ବର ବା ପରର ସଦ୍‌ଭାବ ପ୍ରକାଶରେ କୁଣ୍ଠା ରହେ ନାହିଁ ।

୧୯୫୦ ମେ ୧୨ ତାରିଖରୁ ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ହୋଇ, ମହତାବ କେନ୍ଦ୍ର ମନ୍ତ୍ରିମଣ୍ଡଳକୁ ଗଲେ । ତାହାପରେ ଉତ୍କଳ ବିଶ୍ୱବିଦ୍ୟାଳୟର ମେଡିକାଲ କଲେଜ ପରୀକ୍ଷା ନେଇ ଯେଉଁ କେସ୍ ସୁପ୍ରିମ କୋର୍ଟକୁ ଗଲା, ସେଥିରେ ମୁଁ ଦିଲ୍ଲୀ ଯାଇଥିବାବେଳେ ମହତାବବାବୁଙ୍କ ଆତିଥ୍ୟ ପାଇଥିଲି ଏବଂ ସେହି କେସ୍ ବିଷୟରେ ବକ୍‌ସି ଟେକଚାନ୍ଦ (ଅବସରପ୍ରାପ୍ତ ବିଚାରପତି, ସୁପ୍ରିମ କୋର୍ଟରେ ସିନିଅର

Digitized by srujanika@gmail.com

ଆଡଭୋକେଟ୍ ଭାବେ କାର୍ଯ୍ୟ କରୁଥାଆନ୍ତି) ଙ୍କ ସହିତ ପରାମର୍ଶ କରିବାକୁ ମୁଁ ଗଲାବେଳେ ମହତାବ ଘଣ୍ଟାଧିକ କାଳ ମୋ ସଙ୍ଗେ ଯାଇ ସେଠାରେ ଯୋଗ ଦେଇଥିଲେ । କୋର୍ଟ ଖର୍ଚ୍ଚର ଅଭାବ ଘଟିବାରୁ ସେ ହଜାରେ ଟଙ୍କା ଧାର ଦେଇଥିଲେ । ସେତେବେଳେ ଦିନେ ସନ୍ଧ୍ୟାବେଳେ ତାଙ୍କ ବାରନ୍ଦାରେ ବସିଥିବା ସମୟରେ 'ପ୍ରଜାତନ୍ତ୍ର' କାଗଜରେ ମୋ ପ୍ରତି ଆକ୍ଷେପ କରି ଲେଖା ପ୍ରକାଶିତ ହୋଇଥିବାର ସ୍ମରଣ କରି ଦୁଃଖ ପ୍ରକାଶ କରିଥିଲେ । ମୁଁ ନିରବ ରହିଲି ।

୧୯୫୧ ମସିହା ଅଗଷ୍ଟ ଆଠ ତାରିଖରେ ରାଜସ୍ଥାନ ଜୟପୁରରେ ପବ୍ଲିକ ସର୍ଭିସ କମିଶନର ଚେଆରମ୍ୟାନ ଥିଲାବେଳେ ତ୍ରିପାଠୀ ସାହେବ (ଶ୍ୟାମଚନ୍ଦ୍ର ତ୍ରିପାଠୀ)ଙ୍କ ହଠାତ୍ ହୃଦରୋଗରେ ପରଲୋକ ଘଟିଥିବା ସମ୍ବାଦ ଟେଲିଫୋନ୍‌ରେ କଟକରେ ପାଇ, ତାଙ୍କ ପୁତ୍ର ନୀଳମଣିଙ୍କୁ ସଙ୍ଗରେ ନେଇ ଉଡାଜାହାଜରେ ଯେତେବେଳେ ଯାଇ ଦିଲ୍ଲୀରେ ପହଞ୍ଚିଲି, ମହତାବବାବୁ ବିମାନ ବନ୍ଦରକୁ ଗାଡି ପଠାଇ ଆମ ଦୁହିଁଙ୍କୁ ତାଙ୍କ ଘରକୁ ନେଇଥିଲେ ଏବଂ ପରଦିନ ପ୍ରାତଃକାଳରେ ମଟର ଦ୍ୱାରା ଜୟପୁର ଯିବାର ବନ୍ଦୋବସ୍ତ କରିଦେଇଥିଲେ । ସେଠାରେ ଅନ୍ତ୍ୟେଷ୍ଟି କ୍ରିୟା ସାରି ଦିଲ୍ଲୀ ଫେରି ମହତାବବାବୁଙ୍କ ଘରେ ରାତି କଟାଇ କଲିକତାବାଟେ କଟକ ଫେରିଲୁ । ମହତାବାବାବୁଙ୍କର ସହୃଦୟତା ଓ ସମବେଦନା ଆମକୁ ବହୁ ସାହାଯ୍ୟ ଓ ଆଶ୍ୱାସନା ଦେଇଥିଲା । ଜୟପୁରଠାରେ ଶବଦାହବେଳେ, ରେଭେନ୍ସା କଲେଜର ପୂର୍ବତନ ଇଂରେଜୀ ଅଧ୍ୟାପକ ଭି.ଜନ ରାଜସ୍ଥାନ ବିଶ୍ୱବିଦ୍ୟାଳୟର କୁଳପତି ଥାଇ ଆସି ନୀଳମଣିଙ୍କୁ ବୋଧ ଦେଇଥିଲେ । ଦିଲ୍ଲୀଠାରେ ଭୁବନାନନ୍ଦ ଦାସ, ବିଶ୍ୱନାଥ ଦାସ ପ୍ରଭୃତି ମହତାବଙ୍କ ଘରକୁ ଆସି ନୀଳମଣିଙ୍କୁ ସାନ୍ତ୍ୱନା ଦେଇଥିଲେ ।

ସିଭିଲ ଲିବର୍ଟି ସମ୍ମିଳନୀ ବେଳର ବିରୋଧ ଭାବ ମୁଁ ଆଉ ମହତାବ ବାବୁଙ୍କଠାରେ ଲକ୍ଷ୍ୟ କରି ନାହିଁ । ରାଜନୀତିର ବିରୋଧ ସାମାଜିକତାର ବିରୋଧ ନୁହେଁ ।



Digitized by srujanika@gmail.com

# ଅଦ୍ଭୁତ ଠାକୁର

ପୁରୀ ସମୁଦ୍ର ପାଖରେ ଖଣ୍ଡିଏ ଜାଗା କିଣିଥିଲି । ୧୯୫୪ ଜୁନ୍ ୨୧ ତାରିଖ ସକାଳେ ସେଠାରେ ଘର ତିଆରିର ଶୁଭ ଦିଆହେଲା । ଜଗନ୍ନାଥ ବଲ୍ଲଭର ପଣ୍ଡିତ ନରହରି ମିଶ୍ର ପୁରୋହିତ ଆସିଥିଲେ । ନନାଙ୍କ ହାତରେ ଶୁଭ ଦିଆଇଲି । ସେ ସମୟରେ ହାଇକୋର୍ଟର ଗ୍ରୀଷ୍ମ ଅବକାଶ ଥାଏ । ଆମେମାନେ ଭଡାନେଇ ଗୋଟିଏ ଘରେ ରହୁଥାଉ । ହାଇକୋର୍ଟ ଖୋଲିବାରୁ ଆମେ କଟକ ଫେରି ଆସିଲୁ । ନନା ଗାଁରେ ରହୁଥିଲେ । ମାର୍କଣ୍ଡ ସାହିର ନରସିଂହ ମିସ୍ତ୍ରୀ କାମ କରାଉଥାଏ । ମୁଁ ପ୍ରାୟ ପ୍ରତି ରବିବାର ପୁରୀ ଯାଇ କାମ ଦେଖୁଥିଲି । ଘର ସରିବା ପରେ ପଣ୍ଡିତ ବାମନ ଆଚାର୍ଯ୍ୟଙ୍କୁ ନେଇ ପ୍ରତିଷ୍ଠା କରାହେଲା । ନନା ଖୁସି ଯେ ପୁରୀରେ ଘରଟିଏ ହେଲା । କିଏ ଜାଣିଥିଲା ଯେ ସେଠାରେ ତାଙ୍କର ଅନ୍ତିମ ଦିବସ ଯାପିତ ହେବ ।

ଛୁଟି ଅବସରରେ ପୁରୀ ଯିବାକଥା । ନଚେତ ଘର ଚାବିବନ୍ଦ ଥାଏ । ମଝିରେ ମଝିରେ ସୁବିଧା ହେଲେ ୨/୪ ଦିନ ପାଇଁ ଯାଉ । ଥରେ ସେହିପରି ଯାଇଛୁ । ମନ୍ଦିରରେ ଜଗନ୍ନାଥ ଦର୍ଶନ, ମହାପ୍ରସାଦ ଭୋଜନ, ସମୁଦ୍ର ତଟରେ ବିଚରଣ ପାଇଁ ପୁରୀ ଯାଉ । ଘର ପିଣ୍ଡାରେ ସମୁଦ୍ରପବନ ଅତି ଶାନ୍ତିପ୍ରଦ ଲାଗେ । ସେଥର ଯିବାଦିନ ସନ୍ଧ୍ୟାବେଳେ ମନ୍ଦିରକୁ ଯାଇ ପାରିଲୁ ନାହିଁ । ତା ପରଦିନ ସକାଳେ ନନା ଗ୍ରାମରୁ ଆସିଲେ । ମନ୍ଦିରକୁ ଯାଇ ହେଲା ନାହିଁ । ସନ୍ଧ୍ୟାବେଳକୁ ଗ୍ରାମରୁ କେତେଜଣ ଆସିବାରୁ ଘରୁ ବାହାରିବାର ସୁବିଧା ହେଲା ନାହିଁ । ତା ପରଦିନ ସନ୍ଧ୍ୟା ପୂର୍ବରୁ କଟକ ଫେରିବାର କଥା । ଆମେ ସାଧାରଣତଃ ସନ୍ଧ୍ୟାବେଳେ ମନ୍ଦିରକୁ ଯାଉ । ସ୍ତ୍ରୀ ଫୁଲଦୀପ ବିମଳା, ଲକ୍ଷ୍ମୀ ଓ ଜଗନ୍ନାଥଙ୍କ ପାଖରେ ବସାନ୍ତି । ସେ ଗଲେ ଫୁଲବିକାଳି ତାଙ୍କୁ ଘେରି ଯାଆନ୍ତି । ସେ ତାଙ୍କ ସଙ୍ଗେ ଖୁସି ବାସିରେ ମନଇଚ୍ଛା ଫୁଲ କିଣନ୍ତି । ଦଇତା ଗଙ୍ଗୁଦାସ ସର୍ବଦା ଆମ ସାଙ୍ଗରେ ମନ୍ଦିରକୁ ଯା'ନ୍ତି । ବଡବଡ ଦୀପରେ ଘିଅ ଭର୍ତ୍ତିକରି ଆଣି ଦିଅନ୍ତି ବରାଦ ଅନୁସାରେ । ଭୋଗେଇପୂର୍ଣ୍ଣ ଭୋଗ ଆସେ । ଏ ସବୁ ବ୍ୟୟରେ ସ୍ତ୍ରୀ ମୁକ୍ତ ହସ୍ତ । ଆନନ୍ଦ ଲାଭ କରନ୍ତି । ସେଥର ସେ ମନ୍ଦିରକୁ ଯାଇନପାରି ଥିବାରୁ ଅତ୍ୟନ୍ତ ଦୁଃଖିତ ବିମର୍ଷ ଥାଆନ୍ତି । ଆମେ କଟକ

Digitized by srujanika@gmail.com

ଫେରିବା ପୂର୍ବରୁ ସକାଳ ଓଳି ରୋଷେଇ ଘରେ ପନିକିରେ ବସି ପରିବା କାଟୁଥିଲେ ଓ ମନ୍ଦିର ଯାଇ ନ ପାରିଥିବା ଦୁଃଖରେ ଆଖିରୁ ଲୁହ ଆସୁଥିଲା । ପୂଜାରୀ ଠିଆଚୂଲିରେ ଭାତ ବସାଇ ଠିଆ ହୋଇଥାଏ । ଚୂଲି ଉପର ବଡ ଥିବାରୁ ଖଣ୍ଡିଏ ଭଙ୍ଗାଇଟା ରଖି ଡେକ୍‌ଚି ରଖିଥାଏ । ମୋ ସ୍ତ୍ରୀ ସେଆଡେ ଚାହିଁଲାବେଳକୁ ଦେଖିଲେ ଜଳନ୍ତା ଚୂଲି ଉପର ଭଙ୍ଗା ଇଟାର ଗୋଟିଏ ପଟରେ ଏକ ରୂପ ଛାୟା । ସେ ପୂଜାରୀକୁ କହିଲେ ଇଟାଖଣ୍ଡି ବାହାର କରିଦେବା ପାଇଁ । କଟକ ଉପରଓଳି ଫେରିବାବେଳେ ସେ ଇଟାଖଣ୍ଡି ରୋଷାଇଘର ଖୋଲା କାନ୍ଥ ଆଲମାରୀ ଥାକରେ ରଖିଦେଇ ଆସିଲେ ।

ତାପରେ କେତେଦିନ ଛାଡି ପୁରୀ ଯିବାରେ ଦେଖିଲେ ସେହି ଭଙ୍ଗା ତିନିପା ଇଟାରେ ଦୁଇଚକ୍ଷୁର ରୂପ ପ୍ରକାଶ ପାଇଛି । ସେଥର ମଧ୍ୟ ସେହି ଇଷ୍ଟକ ସେଇ ଥାକରେ ଛାଡି ଆସିଲେ । ତୃତୀୟ ଥର ଯେତେବେଳେ ଯାଉ, ମୁଖାକୃତି ଇଷ୍ଟକ ଉପରେ । ପୂର୍ବରୁ ମତେ କିଛି କହି ନଥିଲେ । ସେହିଥର ଦେଖାଇଲେ । ମୁଁ ତଟସ୍ଥ । ତାଙ୍କ ପ୍ରତି ଭଗବାନଙ୍କର ଅପରିସୀମ ଦୟା । ସେଥର ଆମେ ସାଷ୍ଟାଙ୍ଗ ପ୍ରଣିପାତ କରି ଇଟା ଠାକୁରଙ୍କୁ ସଙ୍ଗରେ କଟକ ଆଣି ପ୍ରତ୍ୟହ ପୂଜା ନିବେଦନ କଲୁ ।

ପୂର୍ବରୁ ଚାନ୍ଦିନିଚଉକରେ ଘର ତିଆରି ପରେ ପରେ ଅତି ଅପ୍ରତ୍ୟାଶିତ ଭାବରେ ମୋର ପିଇସିଙ୍କର ଜୁଆଇଁ ବନାରସପ୍ରବାସୀ ଖଲ୍ଲିକୋଟ ରାଜପୁରୋହିତ ବଂଶଜ ପଣ୍ଡିତ ମହେଶ୍ୱର ମିଶ୍ରେ ରାମ, ଲକ୍ଷ୍ମଣ ସୀତାଙ୍କର ତିନିଗୋଟି ସ୍ୱରୂପ ପିତଳ ମୂର୍ତ୍ତି ଆଣି ଆମ ନୂଆ ଠାକୁର ଘରେ ବସାଇ ଦେଇଥିଲେ । ଠାକୁର ଆପେ ଆପେ ବିରାଜମାନ କରିବାରେ ଆମେ ଅଭିଭୂତ ହୋଇଥିଲୁ ଏବଂ ତାଙ୍କର ଚରଣାଶ୍ରିତ ହୋଇ ରହିଲୁ । ମୋ ସ୍ତ୍ରୀ ଅତି ବାଲ୍ୟକାଳରୁ ତାଙ୍କ ବିଧବା ପିତାମହୀଙ୍କ ନିର୍ଦ୍ଦେଶରେ ତାଙ୍କ ମନ୍ଦିରରେ ଶ୍ରୀରାମଙ୍କ ପାଦରେ ଶହେଆଠ ତୁଳସୀପତ୍ରରେ ଚନ୍ଦନରେ 'ଶ୍ରୀରାମ' ଲେଖି ଅର୍ପଣ କରି ଆସୁଥିଲେ, ବିବାହ ପରେ ଆମଘରକୁ ଆସିବା ପର୍ଯ୍ୟନ୍ତ । ତାଙ୍କ ପାଖକୁ ଶ୍ରୀରାମ ବିଜେ କରିବାରେ ସେ କୃତଜ୍ଞତା ସର୍ବଦା ନିବେଦନ କରନ୍ତି । ସେହି ବର୍ଷଠାରୁ ଶ୍ରୀରାମ ନବମୀ ପୂଜା ନଅଦିନ କରି ଆସୁଛନ୍ତି । ବର୍ତ୍ତମାନ ପୁରୀ ଘର ଜଳନ୍ତା ଚୂଲୀ ଉପରୁ ଭଗ୍ନଇଟାରେ ଜଗନ୍ନାଥଙ୍କ ରୂପ ନିଦର୍ଶନ ପାଇ କୃତ୍ୟକୃତ୍ୟ ହେଲେ । କ୍ରମଶଃ ସେ ରୂପ ସଷ୍ଟ ହେବାକୁ ଲାଗିଲା ଏବଂ ଇଟାର ଅନ୍ୟ ପାର୍ଶ୍ୱମାନଙ୍କରେ ସ୍ୱତନ୍ତ୍ର ଭାବେ ଚକ୍ଷୁ, ମୁଖ, ନାସିକା ପ୍ରକାଶ ପାଇଲା । ଆମେ ପାଟନା ଯାଇଥିଲାବେଳେ ସେ ଅଦ୍ଭୁତ ଠାକୁରଙ୍କୁ ନେଇଥିଲୁ । ସେଠାରେ କଳିକତା ଗୌଡୀୟ ମଠର ସ୍ୱାମୀ ମହାରାଜ, ବୃଦ୍ଧ, ଅଶକ୍ତ, ଚୌକିରେ ବସି ଟେକାହୋଇ ଦ୍ୱିମହଲା ଠାକୁର ଘରକୁ ଯାଇଥିଲେ ଦର୍ଶନ କରିବାକୁ । ସେ ବିମୋହିତ ହୋଇ ବସି ରହିଲେ ପ୍ରାୟ ଘଣ୍ଟାବଧି ।

Digitized by srujanika@gmail.com

ସ୍ୱାମୀ ମୋହନାନନ୍ଦ ମହାରାଜ ବର୍ଷକେ ଥରେ ପାଟନା ଯାଆନ୍ତି ତାଙ୍କ ଶିଷ୍ୟମାନଙ୍କ ଆମନ୍ତ୍ରଣରେ । ତାଙ୍କର କୀର୍ତ୍ତନ ଅତି ରସାମୃତ । ସେ ଆସିଥିଲେ ଠାକୁର ଦର୍ଶନରେ । ସ୍ପର୍ଶ କରିବାକୁ ଚାହିଁଲେ ଏବଂ ଦୁଇହାତରେ ଧରି ବିମୁଗ୍ଧ ଭାବରେ ବସିଲେ ଅନେକ ସମୟ । ବିଦାୟବେଳେ କହିଲେ, ଏ ରୂପ Formation (ଗଠନ) ଅଦ୍ଭୁତ । ସେ ପୁରୀ ଆସନ୍ତି ରଥଯାତ୍ରାବେଳେ କୌଣସି କୌଣସି ବର୍ଷ । ଆମେ ସାକ୍ଷାତ କରିବାକୁ ଗଲେ ତନ୍ମୟତାର ସହିତ ପଚାରନ୍ତି ଇଟାଠାକୁରଙ୍କ କଥା । ଜଣେ ଜଟାଧାରୀ ଝୋଟ (ଅଖା) ବସ୍ତ୍ର ପରିହିତ ସାଧୁ ଏକାଧିକବାର ଆରାଧନା କରିବାକୁ ଆସିଥିଲେ । ଅଯୋଧ୍ୟାର ମହାରାଜ ଯେ ପାଟନା ସର୍ପେଣ୍ଟାଇନ ରୋଡରେ ପଞ୍ଚମନ୍ଦିର ପ୍ରତିଷ୍ଠା କରିଛନ୍ତି, ସେ ପାଟନା ଆସିଲେ ଦୈହିକ ଅସୁବିଧା ହେଲେ ମଧ୍ୟ ଦର୍ଶନ ନକରି ଫେରନ୍ତି ନାହିଁ । ଅନେକ ଭଦ୍ର ମହିଳା ଆସି ରାମଧୂନ୍ ଭଜନ କରନ୍ତି । ଗଜେନ୍ଦ୍ରବାବୁଙ୍କ (ଗଜେନ୍ଦ୍ରପ୍ରସାଦ ଦାସ) ସ୍ତ୍ରୀ ସେଥିରେ ଅଗ୍ରଣୀ ଥିଲେ ।

ଜଣେ ଥରେ ମହୀଶୂରରୁ ହାତୀଦାନ୍ତରୁ ପ୍ରସ୍ତୁତ କେତେକ ମୂର୍ତ୍ତି ଓ ଅନ୍ୟ ପଦାର୍ଥ ବିକ୍ରୀ ଉଦ୍ଦେଶ୍ୟରେ କଟକ ଆସିଥିଲେ । ଆମ ଘରକୁ ଆସିଥିଲେ ଏବଂ ଗୋଟିଏ କମନୀୟ ଶ୍ରୀକୃଷ୍ଣ ମୂର୍ତ୍ତି ଦେଲେ କୌଣସି ମୂଲ୍ୟ ନ ନେଇ । ଶ୍ରୀରାମ ଆସିଥିଲେ, ଜଗନ୍ନାଥ ଆସିଥିଲେ, ଶ୍ରୀକୃଷ୍ଣ ଆସିଲେ ।

ରଙ୍ଗନାଥଙ୍କ ପୁତ୍ର ଦେବାନନ୍ଦର ଉପନୟନ ଶ୍ରୀଗୁଣ୍ଡିଚା ଦିନ (୧୯୬୨) ବାଣପୁରରେ ହେଉଥିଲା । ନନା, ବୋଉ ମୁଁ ଅତି ଭୋରରୁ କଟକରୁ ଗଲୁ । ମୋ ସ୍ତ୍ରୀ ଯିବେ ନାହିଁ କିମ୍ବା ପରେ ଯିବେ ବୋଲି କହିଲେ । ଆମେ ବାଣପୁରରେ ଥାଉ, ସେ ଯାଇ ପହଞ୍ଚିଲେ ପାଞ୍ଚଟାବେଳେ । କହିଲେ, କଟକ ଗଲେ ଆଉ ଗୋଟିଏ ଅଦ୍ଭୁତ କଥା ଦେଖିବ । ରାତିକୁ ଆମେ ସମସ୍ତେ ଫେରିଲୁ । ବିହାରରୁ ଜଣେ ଖଣ୍ଡିଏ ବଡ ଆକାରର ମୋଟା ଚନ୍ଦନକାଠ ପଠାଇ ଥିଲେ । କାଠଟି ଦୁଇଖଣ୍ଡ କଲେ ଚନ୍ଦନ ବାଟିବା ପାଇଁ ସୁବିଧା ହେବ ଭାବି ସ୍ତ୍ରୀ କଟୁରୀରେ କାଟିବାକୁ ଆରମ୍ଭ କଲାବେଳେ ଦେଖିଲେ କାଠର ଏକ ଭାଗରେ ଚକ୍ଷୁ ନାସିକା ପ୍ରଦର୍ଶିତ । ଚନ୍ଦନ କାଠଟି ଡାକ ପାର୍ଶଲରେ ଆସି, ପାର୍ଶଲ ଖୋଲା ହୋଇ, ଠାକୁର ଘରେ ରଖା ହୋଇଥିଲା ପ୍ରାୟ ପନ୍ଦରଦିନ ପୂର୍ବରୁ । ଚନ୍ଦନ କାଠ କାଟିବେ କଅଣ, ହାତରେ ନେଇ ଖଟୁଲିରେ ବସାଇଲେ । ପରେ କ୍ରମଶଃ ମୁଖାକୃତି ଫୁଟିଉଠିଲା । ସେହିଦିନଠାରୁ ସେ ଆରାଧ୍ୟ ।

ଏ ସବୁ ଭଗବାନଙ୍କ ଅପାର କରୁଣାର ନିଦର୍ଶନ ।



Digitized by srujanika@gmail.com

# ଗାଁରେ ମାଇନର ସ୍କୁଲ

ନନା ଆମ ଗାଁର ପ୍ରଥମ ସରକାରୀ କାର୍ଯ୍ୟରେ ପ୍ରବେଶ କରିଥିଲେ । ସେ ପ୍ରଥମେ ଚାଲି ଚାଲି କଟକ ଆସି ନର୍ମାଲ ଟ୍ରେନିଙ୍ଗ ସ୍କୁଲରେ ପଢ଼ି ପାଶ୍ କରିଥିଲେ । ମଧୁସୂଦନ ରାଓ, ଚନ୍ଦ୍ରମୋହନ ମହାରଣା ଶିକ୍ଷକ ଥିଲେ । ସେମାନଙ୍କ ଗୁଣ, ମହାନୁଭବତା ନନାଙ୍କଠାରୁ ମୁଁ ଅନେକବାର ଶୁଣିଥିଲି । ଆମ ଗାଁରେ ଗୋଟିଏ ଅପର ପ୍ରାଇମେରୀ ସ୍କୁଲ ଥିଲା । ମାଇନର ସ୍କୁଲଟିଏ ହେବା ଆବଶ୍ୟକ ହେଲା । ମୁଁ ସାମାନ୍ୟ କିଛି ଟଙ୍କା ଦେଇ ନନାଙ୍କ ନାମରେ କାଶୀନାଥ ମି.ଇ. ସ୍କୁଲ ବସିଲା । ନନା ଅତ୍ୟନ୍ତ ଖୁସୀ ହେଲେ । ସ୍କୁଲ କମିଟିରେ ମୋ ଦଦେଇଙ୍କ ବଡପୁଅ ପୁରୀର ଓକିଲ, ଗଙ୍ଗାଧର ପ୍ରେସିଡେଣ୍ଟ ହେଲେ । ଏବେ ହାଇସ୍କୁଲର ଶ୍ରେଣୀ ଆରମ୍ଭ ହୋଇଛି । ଅପର ପ୍ରାଇମେରୀ, ମିଡିଲ ସ୍କୁଲ, ହାଇସ୍କୁଲ ସ୍ୱତନ୍ତ୍ର ଭାବେ ଚାଲିବାର କଥା । ହାଇସ୍କୁଲ ପାଇଁ ଅର୍ଥ ସାହାଯ୍ୟ ଦେବାର ଇଚ୍ଛା ମୋର ହେବା ସ୍ୱାଭାବିକ । କର୍ତ୍ତବ୍ୟ ମଧ । ଗାଁଟି ଆମର ମୂଳପିଣ୍ଡ । ସେଠାରୁ ବିଚ୍ୟୁତି କେବେ ନ ହେଉ । ଆମ ପିଲାଦିନର ଗାଁ ବଦଳିଯାଇଛି । ଏବେ ୩୦ ବର୍ଷ ତଳର କେହି ଧୋତି ପିନ୍ଧନ୍ତି ନାହିଁ । ପ୍ୟାଣ୍ଟ କିମ୍ବା ପାଇଜାମା । ଲୁଙ୍ଗିପିନ୍ଧା ଛାଡ । ଅଣ୍ଡା ଘରେ ପଶିବା ବାରଣ ନାହିଁ । ଚା ସମସ୍ତଙ୍କ ଘରେ । ସିଗାରେଟ ଦିଆସିଲି ପକେଟ୍‌ରେ ଅଛପା ନୁହେଁ । କିନ୍ତୁ ହଳରେ ହାତ ପଡିନାହିଁ ବ୍ରାହ୍ମଣଙ୍କର । ପାଠପଢୁଆ ଅନେକ । ସମସ୍ତେ ଚାହାଁନ୍ତି ଚାକିରୀ । ସେମାନଙ୍କ ଥଇଥାନରେ ସାହାଯ୍ୟ କରିବା ପାଇଁ ମୁଁ ଚେଷ୍ଟା କରିଥାଏ । ଗାଁ ସ୍କୁଲରେ ମାଷ୍ଟର ହେବାପାଇଁ କହିଲେ, ଆଳ ଦେଖାଇ ନାରାଜ ହୁଅନ୍ତି । ଗାଁ ମଝିରେ ଗୋଟିଏ ଲାଇବ୍ରେରୀ ଘର ଅଛି । ସେଥିପାଇଁ ସରକାରରୁ କିଛି ଆର୍ଥିକ ସାହାଯ୍ୟର ବ୍ୟବସ୍ଥା କରାହୋଇଛି । ଗାଁ ପୂର୍ବ ମୁଣ୍ଡରେ ମହାଦେବଙ୍କ ପାଖରେ ଗୋଟିଏ ପଥର କୂଅ ଓ ଚଟାଣ ମୋ ସ୍ତ୍ରୀ କରାଇ ଦେଇଛନ୍ତି ।

ଆମ ଗାଁର ଇଷ୍ଟଦେବତା ଗୋପୀନାଥ ଦେବଙ୍କର ଯାନିଯାତ୍ରାରେ ବିମାନ ବୁହନ୍ତି ପାଣିଭଣ୍ଡାର ଗାଁର ଚଷାମାନେ । କାଳକାଳ ଧରି ଏହା ଚାଲି ଆସୁଥିଲା ।

Digitized by srujanika@gmail.com

ତାଙ୍କ ଗାଁରେ ଅଛନ୍ତି ଥାନପତି ଠାକୁରାଣୀ । ଠାକୁରାଣୀଙ୍କ ଆଜ୍ଞାମାଳ ଆସିଲେ, ଗାଁ ମନ୍ଦିରରେ ଷୋହଳଦିନ ଦୁର୍ଗାପୂଜା ହୁଏ । ଗାଁରୁ ବିମାନ ଯାଇ ଆଜ୍ଞାମାଳ ଆସେ । ପାଣିଭଣ୍ଡାରରେ ଥିବା ବଡ ପୋଖରୀର ଗୋପୀନାଥଦେବଙ୍କ ନାମରେ ସତ୍ୱଲିପି । ବ୍ୟବହାର କରନ୍ତି ସେଠା ଗ୍ରାମବାସୀ । ପୋଖରୀହୁଡାରେ ନଡିଆଗଛ ପୋତାହୋଇ ଫଳ ଫଳିଲାରୁ କଳିଗୋଳ ଆରମ୍ଭ ହେଲା, କିଏ ନଡିଆ ନେବ । ଚଷା କହିଲେ, ସେ ନେବେ, ବ୍ରାହ୍ମଣ କହିଲେ କୋଠ ନେବ । କେତେ ବା ନଡିଆ ? ପାଣିଭଣ୍ଡାରିଆ ଅଡିବସିଲେ, ବିମାନ କାନ୍ଧେଇବାକୁ ଆସିଲେ ନାହିଁ । ବ୍ରାହ୍ମଣେ ପାଟିରେ ଟାଣ, କାନ୍ଧରେ ଅଧମ । ଶଗଡରେ ଅଧା ବିମାନ ରଖି, ହାତରେ ଟାଣି ଗୋପୀନାଥଙ୍କୁ ଆତଯାତ କଲେ । ଚଷାଏ ତାଙ୍କ ଗାଁ ଠାକୁରାଣୀଙ୍କର ଘର ତାଲା ପକାଇଦେଲେ, ଆଜ୍ଞାମାଳ ପାଇଁ ଶଗଡ ଉପରେ ବିମାନ ପହଞ୍ଚିଲାବେଳକୁ । ପୁଲିସ ଆସିଲେ ଶାନ୍ତିରକ୍ଷାକୁ । ମକଦ୍ଦମା ଚାଲିଲା ଦୁଇପକ୍ଷଙ୍କ ଭିତରେ ଚାରିବର୍ଷ । ଭଲଲୋକି କରିବା ପାଇଁ ଥରେ ମୁଁ ପାଣିଭଣ୍ଡାରକୁ ଯାଇଥିଲି, କିଛି ଫଳ ହେଲା ନାହିଁ । ଉଭୟ ପକ୍ଷ ଆଠଦଶଥର ଆସିଥିଲେ ମୋ ପାଖକୁ । ଏବେ ଅପୋଷେ ମୀମାଂସା ହୋଇଛି । ବିମାନ ଉପରେ ଗୋପୀନାଥ ଚଷାଙ୍କ କାନ୍ଧରେ ବସି ଦାଣରୁ ଚାହିଁ ବ୍ରାହ୍ମଣଙ୍କ ଘର ଭିତରେ ଭୋଗ ଖାଉଛନ୍ତି । ପାଣି ଭଣ୍ଡାରରେ ଘର ଘରକେ ସାଇକେଲ, ଟର୍ଚ୍ଚ, ରେଡିଓ । ତାଙ୍କ ପିଲାଏ ଆସୁଛନ୍ତି ଆମ ଗାଁ ସ୍କୁଲକୁ । କ୍ଲାସରେ ସଇସମାନ ହୋଇ ବସୁଛନ୍ତି । ସେମାନଙ୍କ ବାପ ଭାଇ କାହିଁକି ଅଧସ୍ତନ ହେବେ ? ଏବେ ବ୍ରାହ୍ମଣ ଚଷା ମିଶିକରି ବା ପାଳିକରି ବିମାନ କାନ୍ଧାନ୍ତୁ ନଇଲେ ବିମାନରେ ଚକା ଲଗାଇ ଟାଣନ୍ତୁ ।

ସ୍କୁଲ ପାଇଁ ପାଣିଭଣ୍ଡାରିଆଙ୍କର ଆଗ୍ରହ ଆସିଲାଣି । କେତୋଟି ମାସିକ ବୃତ୍ତି କରାଇବାର ମୋର ଇଚ୍ଛା । ସେଥିରେ ଅଧିକ ପିଲା ସେ ଗାଁରୁ ଆସି ପାରିବେ । ଆଗେ ମନ୍ଦିର, ଦେବତାଙ୍କୁ ନେଇ ପଡା ଗାଁମାନ ମୁଖ୍ୟ ଗାଁ ସଙ୍ଗେ ସଂଯୁକ୍ତ ରହୁଥିଲା । ଏବେ ସ୍କୁଲ ମାଧ୍ୟମରେ ତାହା ହେବ ସମାନ୍ତରାଳ ଭାବରେ ।



Digitized by srujanika@gmail.com

# ପ୍ରହରାଜ ହତ୍ୟା ମକଦ୍ଦମା

ପୂର୍ଣ୍ଣଚନ୍ଦ୍ର ଭାଷାକୋଷ ପ୍ରଣେତା ଗୋପାଳଚନ୍ଦ୍ର ପ୍ରହରାଜ ଓକିଲାତି କରୁଥିଲେ । କଞ୍ଚା ଓଡିଆରେ ଧାରାବାହିକ 'ନନାଙ୍କ ବସ୍ତାନି' ଉତ୍କଳ ସାହିତ୍ୟରେ ଲେଖି ଏକ ନୂଆ ଶୈଳୀ ଦେଖାଇଥିଲେ । ଅନ୍ୟାନ୍ୟ ଲେଖା ତାଙ୍କର ଉତ୍କଳ ସାହିତ୍ୟରେ ଅମର ରହିଛି । ମତେ ଦିନେ ସକାଳବେଳା ତାଙ୍କ ଘରକୁ ଡକାଇ ପଠାଇଲେ । ତଳେ ମସିଣା ଉପରେ ବହି, କାଗଜ ମେଲାଇ ବସି ଥାଆନ୍ତି । ମତେ ପାଖରେ ବସାଇ ପାଞ୍ଚଟଙ୍କିଆ ନୋଟ ଖଣ୍ଡିଏ ମୋ ହାତକୁ ଦେଇ କହିଲେ, ଏଇଟା ରିଟେନର । ମୁଁ ଅବାକ୍ ହେଲି । ତାଙ୍କ କଥାରେ ବାତୁଳି ବାଛେ ନାହିଁ । କହି ଚାଲିଲେ, ବୟସ ହୋଇଗଲା, କେତେବେଳେ କଅଣ ହେବ, କିଏ ଜାଣେ, ମୁଁ ଏ ଘରଟି ପିତାମ୍ବରୀକୁ ଦତ୍ତ କରିଛି । ଏହି ସେହି କାଗଜ । ମୋ ପୁଅ, ନାତିମାନେ ବାଧା ଦେଇପାରନ୍ତି । ଯଦି କେସ୍ ହୁଏ ତୁ ପୀତାମ୍ବରୀକୁ ସାହାଯ୍ୟ କରିବୁ । ସେଥିପାଇଁ ଏହି ପାଞ୍ଚଟଙ୍କା ନାମକୁ ମାତ୍ର ରିଟେନର ଫିସ୍ ଦେଉଛି । ତୁ ଆଜି ତାରିଖରେ ତୋ ଡାଇରୀରେ ଟିପି ରଖିବୁ । ଭାଷାକୋଷର ସ୍ୱତ୍ୱ ପୀତାମ୍ବରୀକୁ ଉଇଲ କରି ଦେଇଛି । ଗାଁ ଘର, ଜମିବାଡି ସବୁ ପିଲାଏ ନିଅନ୍ତୁ । ଦେଖିଲି, ବଡ ବିଚଳିତ ସେ । ପାଞ୍ଚଟଙ୍କାଟି ଫେରାଇ ଦେଲି । ଦରକାର ହେଲେ ଅବଶ୍ୟ ପୀତାମ୍ବରୀଙ୍କୁ କେସ୍‌ରେ ସାହାଯ୍ୟ କରିବି ବୋଲି ପ୍ରତିଶ୍ରୁତି ହୋଇ ଫେରିଲି ।

ଏ ଘଟନାର ଅଳ୍ପ କେତେମାସ ପରେ, ସକାଳୁ ଦିନେ ଶୁଣିଲି, ପ୍ରହରାଜଙ୍କର ହଠାତ୍ ପରଲୋକ ହୋଇଛି । ତାଙ୍କ ଘରକୁ ଯାଇ ଦେଖେ, ଲୋକ ଗହଳି । ପୁଲିସ ହାଜର । ତାଙ୍କ ପିଇବା ଦୁଧରେ ବିଷ କିଏ ଦେଇଥିବାରୁ ମୃତ୍ୟୁ ଘଟିଥିବାର ସନ୍ଦେହ ପ୍ରକାଶ ପାଇଲା । ତାଙ୍କ ଘରେ ରହୁଥିଲେ ସେ ଓ ତାଙ୍କର ଶାଳୀ ପୀତାମ୍ବରୀ । ପୁଲିସ ପୀତାମ୍ବରୀଙ୍କୁ ହତ୍ୟା ଅଭିଯୋଗରେ ଗିରଫ କରି କେସ୍ ଆରମ୍ଭ ହେଲା । ପ୍ରହରାଜେ ମୋଠାରୁ ପ୍ରତିଶ୍ରୁତି ନେଇଥିଲେ ପୀତାମ୍ବରୀଙ୍କ ସିଭିଲ୍ କେସ୍ ପାଇଁ । ଫୌଜଦାରୀ କେସ୍‌ରେ ସେ ପ୍ରତିଶ୍ରୁତି ମତେ ରକ୍ଷା କରିବାକୁ ପଡିଲା ।

Digitized by srujanika@gmail.com

ସେ ସେତେବେଳେ ଏପରି ଅସହାୟ ଯେ କହିଲେ ନ ସରେ । ଚଳୁଥିଲେ ଅୟସରେ, ହଠାତ୍ ଆସାମୀ ହୋଇ ଜେଲକୁ ଗଲେ ବିଚାର ପ୍ରତୀକ୍ଷାରେ ।

ପ୍ରହରାଜେ ବିବାହ ହୋଇଥିଲେ ଆମ ଗାଁକୁ ଲାଗିଥିବା ଚୂଆ ଗାଁରେ । ତାଙ୍କର କନ୍ୟାଙ୍କୁ ବିବାହ କରିଥିଲେ ପୁରୀର ଜମିଦାର ଓ ଓକିଲ ଲୋକନାଥ ମିଶ୍ର ଯେ ପରେ ସରକାରୀ ଓକିଲ, ବିଧାନସଭା ସଦସ୍ୟ ଓ ରାୟବାହାଦୁର ହେଲେ । ପତ୍ନୀଙ୍କ ଅକାଳ ବିୟୋଗ ପରେ ଲୋକନାଥବାବୁ ଆଉ ବିବାହ କଲେ ନାହିଁ । ପ୍ରହରାଜଙ୍କ ପୁତ୍ର ଚନ୍ଦ୍ରଶେଖର ପଢ଼ାପଢ଼ିରେ ବେଶି ଆଗେଇଲେ ନାହିଁ । ବାପାଙ୍କ ସହିତ ସଦ୍ଭାବରେ ବ୍ୟାଘାତ ଘଟିଲା । ପ୍ରହରାଜଙ୍କର ପୈତୃକ ଘର କଟକ ପାଖ ସିଦ୍ଧେଶ୍ୱରପୁରରେ । ଭୂସମ୍ପତ୍ତି ଥିଲା ଅନେକ । ପ୍ରହରାଜ କଟକ କୋଠାଟି କରିଥିଲେ ଓକାଲତ ଆୟରେ । ଇଂରେଜ ସରକାରଙ୍କ ସହଯୋଗୀ ସେ ଥିଲେ ଆଦ୍ୟରୁ ଶେଷ ପର୍ଯ୍ୟନ୍ତ । ରାୟବାହାଦୂର ଉପାଧି ପାଇଥିଲେ । ତାଙ୍କ ଶାଳୀ ପୀତାମ୍ବରୀ ବାଲ୍ୟବିଧବା; ଗାଁରେ ରହୁଥିଲେ । ପରେ କଟକ ଆସିଲେ ପ୍ରହରାଜଙ୍କ ଘରକୁ । ଭାଷାକୋଷ ପ୍ରଣୟନରେ ସେ ସାହାଯ୍ୟ କରୁଥିବା ପ୍ରହରାଜେ ଉଲ୍ଲେଖ କରିଛନ୍ତି ଏକାଧିକ ସ୍ଥାନରେ । ତାଙ୍କ ସହିତ ପୀତାମ୍ବରୀ ପାଟନା, ଦିଲ୍ଲୀ, କଲିକତା ପ୍ରଭୃତି ସ୍ଥାନକୁ ଅନେକବାର ଯିବାଆସିବା କରନ୍ତି । ଶୁଣିଲି, ସ୍ତ୍ରୀ ଏ ପ୍ରକାର ବ୍ୟବହାର ପସନ୍ଦ ନ କରି ସିଦ୍ଧେଶ୍ୱରପୁରରେ ରହିଲେ । ସେଠାରେ ତାଙ୍କର ବିୟୋଗ ଘଟିଲା । କେହି ହତ୍ୟା କରିଥିବାର ସନ୍ଦେହ ହେଲା । ତାଙ୍କର ଗହଣା ସ୍ୱାମୀ ହିସାବରେ ପ୍ରହରାଜେ ଦାବୀ କରି ପାଇଲେ । ଲୋକନାଥବାବୁ ଓ ତାଙ୍କ ପୁତ୍ର ସେ ଗହଣାରୁ ତାଙ୍କ ଦାବୀ ସ୍ୱଇଚ୍ଛାରେ ପରିତ୍ୟାଗ କରି ଲେଖି ଦେଇଥିଲେ । ଏହି ପୃଷ୍ଠଭୂମିରେ ପ୍ରହରାଜ ଓ ପୀତାମ୍ବରୀ କଟକ ଘରେ ରହୁଥିବାବେଳେ, ଅକସ୍ମାତ ମୃତ୍ୟୁ ମୁଖରେ ପଡିଲେ ପ୍ରହରାଜ ।

ପୀତାମ୍ବରୀଙ୍କ ବିରୁଦ୍ଧରେ ହତ୍ୟା ଅଭିଯୋଗର ପ୍ରାଥମିକ ବିଚାର ମାଜିଷ୍ଟ୍ରେଟ୍ କୋର୍ଟରେ ହୋଇ ଦୌରା ସୁପର୍ଦ ହେଲା । ସେସନ୍ସ୍ ଜଜ୍ ଚାରୁଚନ୍ଦ୍ର କୁଆରୀଙ୍କ କୋର୍ଟରେ କେସ୍ ଚାଲିଲା ଅନେକ ଦିନ ଧରି । ମତେ ଏକାକୀ ସବୁ କୋର୍ଟରେ ଚଳାଇବାକୁ ପଡିଲା । କାରଣ ଅନ୍ୟ ଓକିଲ ନିଯୁକ୍ତି ପାଇଁ ସମ୍ବଳ ନଥିଲା । ମୋ ପାଖରେ ଥିବା ଜୁନିଅର ମତେ ସାହାଯ୍ୟ କରୁଥାଆନ୍ତି । ପୀତାମ୍ବରୀଙ୍କ ପ୍ରତି ସହାନୁଭୂତି କେଉଁଆଡୁ ଦେଖୁ ନଥାଏ । ବିଷ ଦୁଧବାଟିରେ କିଏ ଦେଲା ବା ଦେଇପାରିଥିବ, ଏହାର ଆଲୋଚନା ସର୍ବତ୍ର ହେଉଥାଏ । ପ୍ରତ୍ୟକ୍ଷଦର୍ଶୀ, ପ୍ରତ୍ୟକ୍ଷ ପ୍ରମାଣର ଅଭାବର ସୁଯୋଗ ନେଇ ମୁଁ ଚେଷ୍ଟା କରୁଥାଏ ଏକାଧିକ ବ୍ୟକ୍ତିଙ୍କ ଉପରେ ସନ୍ଦେହର ସମ୍ଭାବନା

Digitized by srujanika@gmail.com

ପ୍ରତିପାଦିତ କରିବାକୁ, ସାକ୍ଷୀମାନଙ୍କ ଜେରାରେ ଓ ଆର୍ଗୁମେଣ୍ଟରେ । ଏହା ସେତେବେଳେ ଏକ ଚହଳପକା କେସ୍ ହୋଇଥିଲା । କୋର୍ଟରେ ଶହ ଶହ ଜମା ହୁଅନ୍ତି ପୀତାମ୍ୱରୀଙ୍କୁ ଆସାମୀ ଗଡାରେ ଦେଖିବାକୁ । ଶେଷରେ ରାୟ ହେଲା ପୀତାମ୍ୱରୀ ନିର୍ଦ୍ଦୋଷରେ ଖଲାସ ପାଇଲେ । ପ୍ରହରାଜଙ୍କୁ ସ୍ମରଣ କରି ମୁଁ ଟିକିଏ ନିଃଶ୍ୱାସ ମାଇଲି ।

ପୀତାମ୍ୱରୀଙ୍କର ଦୁଃଖ ସରିଲା ନାହିଁ । ପ୍ରହରାଜ ଦତ୍ତ କରି ଦେଇଥିବା ଘର ଦାବୀକରି ପୁଅ ଓ ନାତିମାନେ ପୀତାମ୍ୱରୀଙ୍କ ବିରୁଦ୍ଧରେ ଦେଓ୍ୟାନୀ ମକଦ୍ଦମା କଲେ କଟକ ସବ୍‌ଜଜ କୋର୍ଟରେ । ଚିନ୍ତାମଣି ଆଚାର୍ଯ୍ୟ ସେମାନଙ୍କ ପକ୍ଷରୁ ମକଦ୍ଦମା ଚଳାଉ ଥାଆନ୍ତି । ପ୍ରହରାଜଙ୍କ ପାଖେ ମୁଁ ପ୍ରତିଶ୍ରୁତିରେ ଆବଦ୍ଧ ଥିଲି ଏ ମକଦ୍ଦମା ପୀତାମ୍ୱରୀଙ୍କ ପକ୍ଷରୁ ଲଢ଼ିବାକୁ । ଗୋପବନ୍ଧୁ ମିଶ୍ର ସବ୍‌ଜଜ୍‌ଙ୍କ କୋର୍ଟରେ ଅନେକ ଦିନ କେସ୍ ଚାଲିଲା । କଟକ ଘର ପୈତୃକ ସମ୍ପତ୍ତି ଆୟରୁ ହୋଇଥିବା ଏବଂ ତାକୁ ପ୍ରହରାଜଙ୍କର ଏକାଏକା ଦତ୍ତ କରିଦେବାର ଅଧିକାର ନଥିବା ଏବଂ ଇଜମାଇଲି ପରିବାରର ଅନ୍ୟ ସରିକଦାରମାନେ, ଅର୍ଥାତ୍ ପୁଅ, ନାତିମାନେ ହକ ସ୍ୱତ୍ୱାଧିକାରୀ ଥିବା ଥିଲା ବାଦୀମାନଙ୍କ ଯୁକ୍ତି । ପ୍ରହରାଜଙ୍କର ସ୍ୱହସ୍ତ ଲିଖିତ କଟକ ଘର ତିଆରି ଖର୍ଚ୍ଚ ଖାତା, ଓକାଲତି ଆୟର ହିସାବ ଓ ଘରର ଖଜଣା, ଟିକସ ଆଦି ପଇଠରେ ପ୍ରହରାଜଙ୍କ ନାମ ଉଲ୍ଲେଖ ଇତ୍ୟାଦି ଉପରେ ନିର୍ଭର ଥିଲା ପୀତାମ୍ୱରୀଙ୍କର ଦାବୀ ରେଜିଷ୍ଟରୀ ଦତ୍ତପତ୍ର ଓ ଦାଖଲ ଖାରଜବଲରେ । କେସ୍‌ର ରାଏରେ ଦତ୍ତପତ୍ର କାଏମ ରହିଲା । ତା ବିରୁଦ୍ଧରେ ହାଇକୋର୍ଟରେ ଅପିଲ କଲେ ପ୍ରହରାଜଙ୍କ ପୁଅ ଓ ନାତିମାନେ । ଘର ତିଆରିରେ କାଠଯୋଡି ନଈରୁ ବାଲି ଆସିଥିଲା । ସେ ନଈରେ ସିଦ୍ଧେଶ୍ୱରପୁର ପ୍ରହରାଜ ବଂଶର ଜମିଦାର ହିସାବରେ କିଛି, ଅତି ତୁଚ୍ଛ ହେଲେ ମଧ୍ୟ, ସରିକଦାରୀ ସ୍ୱତ୍ୱ ଥିଲା । ସୁତରାଂ ସେହି ହିସାବରେ ଇଜମାଇଲି ସମ୍ପତ୍ତିର କିଛି ଆୟ ଗୃହ ନିର୍ମାଣରେ ବ୍ୟୟ ହୋଇଥିବାରୁ ତାହା ପ୍ରହରାଜଙ୍କ ସ୍ୱ ଉପାର୍ଜିତ ସମ୍ପତ୍ତି ନଥିଲା ବୋଲି ହାଇକୋର୍ଟ ରାୟ ଦେଇ ଅପିଲ ମଞ୍ଜୁର କଲେ । ତା ଉପରେ ପୀତାମ୍ୱରୀ ଉପରକୁ ଅପିଲ କରିବାକୁ ଇଚ୍ଛୁକ ହେଲେ ନାହିଁ । ମୋ ବିଚାରରେ ହାଇକୋର୍ଟର ବିଚାର ଅବଶ୍ୟ ଭ୍ରାନ୍ତ ସାବ୍ୟସ୍ତ ହୋଇଥାଆନ୍ତା । ଶୁଣିଥିଲି ପୁଅ ନାତିମାନଙ୍କ ସଙ୍ଗେ କିଛି ଆପୋଷ ମୀମାଂସା ହେବାର ଆଶାରେ ସେ ଉପର କୋର୍ଟକୁ ଯିବାରୁ କ୍ଷାନ୍ତ ରହିଲେ । କିନ୍ତୁ ନିରାଶ ହେଲେ । ଅତି ଦୟନୀୟ ଅବସ୍ଥାରେ କାଳାତିପାତ କରୁଛନ୍ତି ।



Digitized by srujanika@gmail.com

# ରାତି ଅଧରେ ଜାମିନ

କଟକ ଗୋପାଳ ଜିଉ ମଠ ମହନ୍ତଙ୍କର ସାଲେପୁର ଥାନାରେ ଅନେକ ଚାଷଜମି ଥାଏ । ପ୍ରଜାମାନଙ୍କ ସଙ୍ଗେ ଗୋଳମାଳ ହେବାରୁ, ପୁଲିସ ତାଙ୍କୁ ମଠରୁ ସନ୍ଧ୍ୟାପରେ ଗିରଫ କରି ଲାଲବାଗ ଥାନାକୁ ଆଣିଲେ । ଅଭିଯୋଗ ଯାହା, ଜାମିନରେ ପୁଲିସ ଛାଡି ପାରନ୍ତା କିମ୍ୱା ଦିନରେ ଗିରଫ କରିଥିଲେ ମାଜିଷ୍ଟ୍ରେଟ କୋର୍ଟରେ ହାଜର କରିପାରି ଥାଆନ୍ତା । ଇଚ୍ଛା କରି ପୁଲିସ ସନ୍ଧ୍ୟା ପରେ ଗିରଫ କରିଛନ୍ତି ଯେପରି ସେ ରାତି ହାଜତରେ ରହିବା ପାଇଁ ବାଧହେବେ ଏବଂ ତା ଆରଦିନ ପୁଲିସ ତାଙ୍କ ସୁବିଧାରେ କୋର୍ଟକୁ ନେବେ । ମହନ୍ତଙ୍କୁ ଅପଦସ୍ତ ଓ ହଇରାଣ କରିବା ପୁଲିସର ମତଲବ । ମହନ୍ତଙ୍କ ଲୋକ ଜାମିନ୍ ପାଇଁ ପୁଲିସ ପାଖରେ ପ୍ରାର୍ଥନା କଲେ । ହଁ, ଦେଖିବା, ହଁ ଦବା, ଏପରି କହି ରାତି ଦଶଟା ବେଳକୁ ନାହିଁ କରି ଦେଲେ । ସେମାନେ ମୋ ପାଖକୁ ଆସିଲେ । ମୁଁ ପୁଲିସକୁ ଟେଲିଫୋନ୍‌ରେ ପଚାରିଲି । ଡି.ଏସ୍.ପି. ଶ୍ରୀକାନ୍ତ ଘୋଷ ମନା କରିଛନ୍ତି ଜାମିନ ଦେବାକୁ, ଜାଣିଲି । ଘୋଷଙ୍କୁ ଟେଲିଫୋନ୍ କରନ୍ତେ, ସେ ମିଛରେ କହିଲେ କିଛି ଜାଣି ନାହାନ୍ତି ଏବଂ ଅଫିସର ଇନଚାର୍ଜ ଉପରେ ଜାମିନ ଦେବା ନଦେବା ନିର୍ଭର କରେ । ଏସ୍.ପିଙ୍କୁ ଫୋନ୍‌କରି ପାଇଲି ନାହିଁ । ଜାମିନ ଦରଖାସ୍ତ ପ୍ରସ୍ତୁତ କଲାବେଳକୁ ରାତି ଏଗାରଟା ବାଜିଯାଇଥାଏ । ତିନିପ୍ରସ୍ତ ଦରଖାସ୍ତ କଲି; ଗୋଟିଏ ଏସ୍.ଡି.ଓ ଙ୍କ ପାଇଁ, ସେ ମନାକଲେ,ଆଉ ଗୋଟିଏ ସେସନ୍‌ସ ଜଜ୍‌ଙ୍କ ପାଇଁ, ସେ ମନାକଲେ, ତୃତୀୟଟି ହାଇକୋର୍ଟ ଜଜ୍‌ଙ୍କ ପାଇଁ । ସର୍କିଟକୋଟ୍ ସେତେବେଳେ କଟକରେ ଥାଏ । ସବୁ ଦରଖାସ୍ତ ନେଇ ଗଲି ଏସ୍.ଡି.ଓ ଖାଁ ସାହେବ ମୁସାହେବ ଖାଁଙ୍କ ଘରକୁ । ରାତି ବାରଟା । ଘରଠାରୁ ଦାଣ୍ଡ ଫାଟକ ପାଖ । ଦ୍ୱିଧାର ସହିତ ଡାକିଲି । କେତେକ ସମୟ ପରେ ଭିତରୁ କିଏ ପଚାରିଲେ, କିଏ ଡାକୁଛ ? ମୋ ନାମ ପ୍ରକାଶ ପରେ, ନିରବରେ ଆମେ ଅପେକ୍ଷା

Digitized by srujanika@gmail.com

କଲୁ । ମୁସାହେବ ଖାଁ ମତେ ଜାଣିଥିଲେ ଭଲଭାବରେ ଅନେକ ଦିନୁ । ମୋ ପ୍ରତି କିଛି ଉଚ୍ଚ ଧାରଣା ତାଙ୍କର ଥିବାର ମୁଁ ଅନୁମାନ କରୁଥିଲି । ବ୍ୟସ୍ତତାର ସହିତ ବାହାରକୁ ଆସି ଫାଟକ ଫିଟାଇ ବାରନ୍ଦା ଉପରକୁ ନେଇ ପଚାରିଲେ, କଅଣ ଘଟନା । ସବୁ ଶୁଣି କହିଲେ, କାଲି ଦିନବେଳେ କଚେରୀରେ ତ ଜାମିନ ଦରଖାସ୍ତ ହୋଇଥାଆନ୍ତା । ମୁଁ ଉତ୍ତର ଦେଲି, ଜଣେ ପୁଲିସ ଡି.ଏସ୍.ପିଙ୍କ ମନମୁଖୀ ହୁକୁମରୁ ତ୍ରାହିର ବାଟ ମୁଁ ଖୋଜୁଛି । ସେଥିପାଇଁ ଏ ତିନି ଦରଖାସ୍ତ ନେଇ ଆସିଛି, ରାତି ଭିତରେ ଗୋଟିକ ପରେ ଗୋଟିଏ ଚେଷ୍ଟା କରିବି, ଆବଶ୍ୟକ ହେଲେ । ସେ କହିଲେ, ଏତେକାଳ ଚାକିରି ମୁଁ କଲିଣି; ଏପରି ରାତି ଅଧରେ କାଉଳା ମୁଁ ଦେଖିନାହିଁ । ଆପଣ ଆସିଛନ୍ତି, ମୁଁ ଆଉ କଅଣ କହିବି, ଦିଅନ୍ତୁ । ଦରଖାସ୍ତ ଉପରେ ଜାମିନ ମଞ୍ଜୁର କରି ଲେଖିଦେଲେ । ମହନ୍ତଙ୍କ ଲୋକକୁ ଥାନା ପାଖରେ ଛାଡି ମୁଁ ଘରକୁ ଫେରିଲି ରାତି ଗୋଟାଏବେଳେ । ଶୁଣିଲି ପୁଲିସ ଇନ୍‌ସପେକ୍ଟର ଏସ୍.ଡି.ଓଙ୍କ ଅର୍ଡର ଦେଖି ତାଟକା ହେଲେ, ଡି.ଏସ୍.ପିଙ୍କ ଘରକୁ ଯାଇ ନିଦରୁ ଉଠାଇଲେ । ସେ ରାଗରେ ଡାଟିଆ କାମୁଡିଲେ । ନାଚାର ହୋଇ ମହନ୍ତଙ୍କୁ ସଙ୍ଗେ ସଙ୍ଗେ ଜାମିନରେ ଛାଡିଦେଲେ । ତା ଆର ଦିନ କଚେରୀରେ ଚହଳ ପଡିଲା ରାତି ଅଧରେ ଜାମିନ କିପରି ମିଳିଲା । ଡି.ଏସ୍.ପିଙ୍କୁ ବୋଧହୁଏ କିଛି ଶିକ୍ଷା ମିଳିଥିବ । ଚୋର ମାଆ କାନ୍ଦେ ନାହିଁ, କାନ୍ଦିଲେ ଦୁଆର ଦେଇ କାନ୍ଦେ ।



Digitized by srujanika@gmail.com

# ମାଜିଷ୍ଟ୍ରେଟଙ୍କ ସିଗାରେଟ

ଭାବଗ୍ରାହୀ ମିଶ୍ରେ କଟକର ଏସ୍.ଡି.ଓ ଥିଲାବେଳେ ଗୋଟିଏ (ରାଜନୈତିକ) କ୍ରିମିନାଲ କେସରେ ତାଙ୍କ କୋର୍ଟରେ ଅଭିଯୁକ୍ତ ଆସାମୀ ପକ୍ଷରେ ଓକାଲତି କରୁଥିଲି । ପୁଲିସ ଇନ୍‌ସପେକ୍ଟର ପରମାନନ୍ଦ ମିଶ୍ରେ କୋର୍ଟ ଇନ୍‌ସପେକ୍ଟର ରୂପେ ଅପର ପକ୍ଷରେ ଲଢୁଥାଆନ୍ତି । ପୁଲିସ ସାକ୍ଷୀମାନଙ୍କ ଜମାନବନ୍ଦୀ ଓ ଜେରା ସରିଲା ପରେ, ଜବାବ ସୁଆଲ ଆରମ୍ଭ ହେଲା । ପରମାନନ୍ଦବାବୁ ଦକ୍ଷ ଲୋକ । ସବୁ କେସ୍‌ରେ ଲଢ଼ନ୍ତି ଜୋରରେ । ତାଙ୍କର ଆର୍ଗୁମେଣ୍ଟ ସରିବା ପରେ ମୁଁ ଆରମ୍ଭ କଲି । ମଝିରେ ଭାବଗ୍ରାହୀବାବୁଙ୍କୁ କଲେକ୍ଟର ଡକାଇ ପଠାଇବାରୁ ସେ ଉଠି ଚାଲିଗଲେ । ଆମେ ଅପେକ୍ଷା କରି ରହିଲୁ । ପ୍ରାୟ ଅଧଘଣ୍ଟାକ ପରେ ଭାବଗ୍ରାହୀବାବୁ ଫେରିଲେ କୋର୍ଟକୁ ଖଣ୍ଡିଏ ସିଗାରେଟ ମୁହଁରେ ଧରି । ଅନ୍ୟ ଦିନମାନଙ୍କରେ କେସ୍ ଚାଲିଥିଲାବେଳେ, ମଝିରେ ମଝିରେ ସେ ସିଗାରେଟ୍ ଖାଉଥିବାର ମୁଁ ଶୁଣିଥିଲି । ଏପରି କରିବା କଥା ନୁହଁ । ଭାବଗ୍ରାହୀବାବୁଙ୍କ ପରି ଭଦ୍ର ବ୍ୟବହାରର ଲୋକ ପକ୍ଷରେ ଏହା କିପରି ସମ୍ଭବ ହେଉଥିଲା, ମୁଁ ଆଶ୍ଚର୍ଯ୍ୟ ମଣୁଥିଲି । ଓକିଲମାନଙ୍କ ପ୍ରତି ତାଚ୍ଛଲ୍ୟ ଭାବ ନଥିଲେ କେହି ମାଜିଷ୍ଟ୍ରେଟ ଏପରି କରିବ ନାହିଁ । ଓକିଲ ମୁକ୍ତାରମାନେ ଭାବଗ୍ରାହୀବାବୁଙ୍କର କୋର୍ଟରେ ସିଗାରେଟ ଖାଇବାରେ ଅସନ୍ତୁଷ୍ଟ ଥିଲେ, ପଛରେ ସମାଲୋଚନା କରୁଥିଲେ । ମୁଁ ନିଜେ ଆଗରୁ କେବେ ଦେଖିନଥିଲି । କଲେକ୍ଟରଙ୍କ ପାଖରୁ ଫେରିଲାବେଳେ ବାଟରେ ଯେଉଁ ସିଗାରେଟ୍ ଧରାଇଥିଲେ, ତାକୁ ମୁହଁରେ ରଖିଆସି ଇଜଲାସରେ ବସିଲେ । ମୋର ଆର୍ଗୁମେଣ୍ଟ ଚଳାଇବାର କଥା । ମୁଁ ନିରବ ବସି ରହିବାରୁ, ମୋ ଆଡକୁ ଥରେ ଦୁଇଥର ଚାହିଁ କହିଲେ Please continue. ମୁଁ ଉତ୍ତର ଦେଲି; I shall do so after you finish enjoying your smoke. ମୁହଁ ତାଙ୍କର କଳାକାଠ ପଡିଗଲା । ସଙ୍ଗେ ସଙ୍ଗେ ସିଗାରେଟ ଫୋପାଡି ଦେଲେ ଏବଂ ମୁହଁ ତଳକୁ କଲେ । ତାଙ୍କୁ ଏପରି ବାଧିବାର ଦେଖି ମତେ

Digitized by srujanika@gmail.com

ବାଧିଲା । ମୁଁ କିଛି ସେ ବିଷୟରେ ନ କହି, ମୋର କେସ ଉପରର ବକ୍ତବ୍ୟ ପ୍ରକାଶ କଲି । କେସ୍ ସରିବା ଭିତରେ ଭାବଗ୍ରାହୀବାବୁ ମୁହଁ ଟେକି ମତେ ଚାହିଁ ନଥିଲେ । କେସ୍ ସରିଲା, ମୁଁ ଘରକୁ ଫେରିଲି । ତାଙ୍କର ଅନ୍ୟକାମ ଶେଷରେ ଭାବଗ୍ରାହୀବାବୁ ଘରକୁ ଫେରିଥିବେ । ସନ୍ଧ୍ୟା ପରେ ମୁଁ ଆମ ଅଫିସ ଘରେ କାମ କରୁଛି, ଭାବଗ୍ରାହୀବାବୁ ଆସି ଦୁଆର ମୁହଁରେ ଠିଆହେଲେ । ବୈଠକଖାନାକୁ ନେବାପାଇଁ ମୁଁ ଉଠି ଆସିଲି । ପ୍ରଥମ କଥା ତାଙ୍କ ମୁହଁରୁ ବାହାରିଲା, ଆଚ୍ଛା ଚଟି ମାରିଲେ ଆପଣ ଆଜି । ମୁଁ ତାଙ୍କ ହାତଧରି ଭିତରକୁ ନେଲି । ତାଙ୍କ ମନରେ ଦୁଃଖ ଦେଇଥିବାରୁ ଦୁଃଖ ପ୍ରକାଶ କଲି । ତାଙ୍କୁ ବୁଝାଇବାକୁ ଚେଷ୍ଟା କଲି ଯେ ସେ ସିଗାରେଟ ଖାଉଥିବାବେଳେ ମୁଁ ଜବାବ ସୁଆଲ କରିଥିଲେ ଅନ୍ୟ ଓକିଲମାନଙ୍କ ଆଗରେ ମୁଁ ଅତି ହୀନ ମନେ ହୋଇଥାଆନ୍ତି । ତାଙ୍କ ସିଗାରେଟ ଖିଆରେ ସେମାନେ ଅପମାନିତ ବୋଧ କରୁଥିଲେ, କିନ୍ତୁ କିଛି କହିବାକୁ ସାହସ କରୁନଥିଲେ; କାଳେ ସେ ଅସନ୍ତୁଷ୍ଟ ହେବେ । କୋର୍ଟକୁ ଅସନ୍ତୁଷ୍ଟ କରିବାକୁ ସେ କୋର୍ଟରେ ସବୁବେଳେ କାର୍ଯ୍ୟ କରୁଥିବା ଓକିଲ ଇଚ୍ଛା ନ କରିବା ସ୍ୱାଭାବିକ । ଭାବଗ୍ରାହୀବାବୁ ବୁଝିଲେ ତାଙ୍କ ଭୁଲ ଏବଂ ବାରମ୍ବାର କହିଲେ ତାଙ୍କର ସେ ଦିନ ଏକ ଶିକ୍ଷା ହେଲା । କିନ୍ତୁ ତାଙ୍କ ମନରେ ପ୍ରଶ୍ନ ଥିଲା, ମୁଁ ଘରୋଇ ଭାବରେ ନ କହି ସମସ୍ତଙ୍କ ଆଗରେ କୋର୍ଟରେ ଏପରି 'ସରୁ ଚାପୁଡା' କାହିଁକି ଦେଲି । ସେ ସିଗାରେଟ ଶେଷ କରିବା ପର୍ଯ୍ୟନ୍ତ ମତେ ଆର୍ଗୁମେଣ୍ଟ କରିବାକୁ ଥରକୁ ଥର ନ କହିଥିଲେ, ମୁଁ କୋର୍ଟରେ ତାଙ୍କୁ ଖୁଣ୍ଟା ନଦେଇ ଘରେ ଘରୋଇ ଭାବରେ କହିଥାଆନ୍ତି । ସେ ବୁଝିଲେ । ଆମର ପୂର୍ବର ସୌହାର୍ଦ୍ଦ୍ୟ ବ୍ୟାହତ ହେଲା ନାହିଁ, ତାଙ୍କର ଉଦାରତା ଯୋଗୁ ।



Digitized by srujanika@gmail.com

# ବାରିଷ୍ଟରଙ୍କ ଅସଙ୍ଗତି

ମଧୁପୁର ରାଜା (ଜମିଦାର) ଦେଶମିଶ୍ରଣରେ ଜଣେ ଆଗୁଆ ଥିଲେ । ବିହାର ଓଡିଶା କାଉନସିଲର ମେମ୍ବର ନିର୍ବାଚିତ ହୋଇଥିଲେ । ସାଧାରଣ କ୍ଷେତ୍ରରେ କାର୍ଯ୍ୟ କରିବାରେ ତାଙ୍କ ସହିତ ପରିଚୟ ଥିଲା । ତାଙ୍କ ଲ ଏଜେଣ୍ଟ ତାଙ୍କର ଗୋଟିଏ କେସ୍‌ରେ ମତେ ନିଯୁକ୍ତ କରିବାକୁ ଆସିଲେ । ହାଇକୋର୍ଟରେ ଅପିଲ କରିବାର କଥା, କରାହେଲା । ବାବୁ ଜଗନ୍ନାଥ ଦାସ ଜଜ୍‌ଙ୍କ କୋର୍ଟରେ ସେ ଅପିଲର ପ୍ରାଥମିକ ଶୁଣାଣି ମୁଁ କଲି । ସେ ପ୍ରଥମ ଶୁଣାଣିବେଳେ ତନ୍ନ ତନ୍ନ କରି ଦେଖନ୍ତି । ତେଣୁ ପ୍ରାୟ ଅଧ ଦିନଟିଏ ଗଲା ଶୁଣାଣିରେ । ଅପିଲ ଗୃହୀତ ହେଲା । ମଧୁପୁର ରାଜା ରାତିକୁ ଆମ ଘରକୁ ଆସି ତାଙ୍କ ସନ୍ତୋଷ ବ୍ୟକ୍ତ କଲେ । ସେ ଅପିଲ ଶେଷ ଶୁଣାଣି ପାଇଁ ଧାର୍ଯ୍ୟ ଦିନରେ ଜଗନ୍ନାଥ ଦାସଙ୍କ କୋର୍ଟ ଲିଷ୍ଟରେ ଉଠିଲା । ମୁଁ ମୋ ପାରୁପର୍ଯ୍ୟନ୍ତ ପ୍ରସ୍ତୁତ ହୋଇ କୋର୍ଟକୁ ଗଲି । ଯାଇ ଦେଖେ, ସେହି ଅପିଲରେ ମଧୁପୁର ରାଜାଙ୍କ ପକ୍ଷରୁ କଲିକତାରୁ ବାରିଷ୍ଟର ଏ.ଏନ୍. ରାୟ ଆସିଛନ୍ତି । ସେ ଦିନ ଅପିଲ ପଡିଲା ନାହିଁ । କୋର୍ଟ ବାହାରେ ଏ.ଏନ୍.ରାୟ ଅପିଲ ସମ୍ବନ୍ଧରେ ମୋ ସହିତ ବସି ଆଲୋଚନା କଲେ । ତା ପରଦିନ କଚେରୀ ବାରନ୍ଦାରେ ସେ କହିଲେ ଯେ ମହକିଲ ତାଙ୍କୁ କହିଛନ୍ତି ସେ ଆର୍ଗୁମେଣ୍ଟ କରିବେ । ଆପଣ କରିପାରନ୍ତି କହି ମୁଁ ଅନ୍ୟ କୋର୍ଟକୁ ଗଲି । ଅତି ଅଳ୍ପ ହେଲେ ମଧ ସେ ମୋ ଠାରୁ ଜୁନିଅର । କୋର୍ଟର ପରମ୍ପରା ଓ ବିଧି ଅନୁଯାୟୀ ମୋର ଆର୍ଗୁମେଣ୍ଟ କରିବାର କଥା । ସେ କଲିକତାରୁ ଆସିଥିବାରୁ ଏବଂ ବାରିଷ୍ଟର ହୋଇଥିବାରୁ ଏ ପ୍ରକାର ଗଉଁ କରି ପୌଢ଼ିତ୍ୱ ପ୍ରକାଶ କରିବାକୁ ଇଚ୍ଛା କରୁଥିଲେ । ମୁଁ କୋର୍ଟରେ ଉପସ୍ଥିତ ଥିଲେ ଓ ମୁଁ ପ୍ରକାଶ୍ୟ ସ୍ୱୀକୃତି ନ ଜଣାଇଥିଲେ କୋର୍ଟ ତାଙ୍କୁ ଆର୍ଗୁମେଣ୍ଟ କରିବାକୁ ଅନୁମତି ନ ଦେବାର କଥା । ଅଥବା, ମୋ ସ୍ୱଇଚ୍ଛାରେ ବା ମହକିଲର ପ୍ରକାଶ୍ୟ ଇଚ୍ଛାରେ ମୁଁ କେସ୍‌ରୁ ଅନ୍ତର ହୋଇଥିଲେ, ସେ ଆର୍ଗୁମେଣ୍ଟ କରିପାରନ୍ତେ । ମୁଁ କଥା ବଢ଼ାଇବାକୁ ଆଦୌ ଇଚ୍ଛୁକ ନ ଥିଲି ।

Digitized by srujanika@gmail.com

ସୁତରାଂ ମୁଁ ସେ କେସରେ ହାଜର ନ ରହିବା ସ୍ଥିର କଲି । କେସ ପଡିଲାବେଳେ ଜଗନ୍ନାଥ ଦାସ ଜଜ୍, ଏ. ଏନ୍.ରାୟ ଠିଆ ହେବାରୁ ପଚାରିଲେ, ମୁଁ ନାହିଁ କାହିଁକି । ରାୟ କହିଲେ, ମୁଁ ଅନ୍ୟତ୍ର କାର୍ଯ୍ୟ ବ୍ୟସ୍ତ ଅଛି । ମୁଁ ଆସିଲେ କେସ୍ ନିଆଯିବ କହି ଅନ୍ୟ କେସ୍ ଧରିଲେ । ଏ.ଏନ. ରାୟ ବିଚଳିତ ହୋଇ ମୋ ନିକଟକୁ ଆସି ଚାହିଁଲେ ମୁଁ କୋର୍ଟକୁ ଯିବାପାଇଁ । ମୋର ନାସ୍ତିରେ ସେ ଦୁଃଖିତ ହେଲେ । କେସ ପୁଣି ଡକାହେଲେ ବାଞ୍ଛାନିଧି ମହାପାତ୍ର ଆଡଭୋକେଟ ଯେ ଅପର ପକ୍ଷରେ ଥିଲେ, ସେ କୋର୍ଟକୁ ଜଣାଇଦେଲେ କେଉଁ କାରଣରୁ ମୁଁ କେସରେ ଉପସ୍ଥିତ ହେବାପାଇଁ ମନା କରିଛି । କୋର୍ଟ ଏ.ଏନ.ରାୟଙ୍କୁ ମୃଦୁ ଭର୍ତ୍ସନାରେ ମନ୍ତବ୍ୟ କଲେ ଯେ (ଅର୍ଥାତ ମୁଁ) ମୂଳରୁ ଏ ପର୍ଯ୍ୟନ୍ତ କେସ ଚଳାଇ ଆସିଛନ୍ତି ତାଙ୍କୁ ନ ଆଣିବା କଅଣ ଆପଣଙ୍କର ଉଚିତ ହେଲା ? ରାୟଙ୍କ ଆର୍ଗୁମେଣ୍ଟ ଶୁଣା ହେଲା । ଶୁଣାଣି ପାଇଁ ମୁଁ ପାଇଥିବା ସମସ୍ତ ଫିସ ମୁଁ ମଧୁପୁର ରାଜାଙ୍କ ପାଖକୁ ସେହିଦିନ ଫେରାଇ ଦେଇଥିବାରୁ, ସେ ତାଙ୍କ ମାନେଜରଙ୍କୁ ସନ୍ଧ୍ୟାବେଳେ ମୋ ପାଖକୁ ପଠାଇ ଥିଲେ । ମୁଁ ଫିସ ନେବା ଉଚିତ ମନେ କରି ନଥିଲି । ଘଟନାଟିର ସ୍ମରଣ ରହିଲା ଅନେକ ଦିନ ରାୟଙ୍କର ଓ ରାଜାଙ୍କର । ରାଜା କେତେଦିନ ପରେ ନିଜେ ଆସି ଦୁଃଖ ପ୍ରକାଶ କରି ଗତ କଥା କ୍ଷମା ଦେଇ ତାଙ୍କର ଅନ୍ୟ କେସ ଫେରାଇ ନ ଦେବାକୁ କହିବାରୁ ମୁଁ ସେଥିରେ ସମ୍ମତ ହେଲି । ସେ ବୟସରେ ଜ୍ୟେଷ୍ଠ, ମାନ୍ୟଗଣ୍ୟ ବ୍ୟକ୍ତି । ସେ ସିନିଅର ଜୁନିଅର କଥା ଜାଣି ନଥିଲେ ।

ଏ.ଏନ୍. ରାୟଙ୍କ ସହିତ କଲିକତାରେ ଯେତେବେଳେ ସାକ୍ଷାତ ହେଲା, ସେ ଜଷ୍ଟିସ ଲଙ୍କ (କଲିକତା ହାଇକୋର୍ଟ) ସମକ୍ଷରେ ପୂର୍ବ ଘଟନା ଉଲ୍ଲେଖ କରି ମୁଁ ଫିସ ଫେରାଇ କେସ୍ ଛାଡିବାରେ ସେ କିପରି ଯଥାର୍ଥରେ ଅପ୍ରସ୍ତୁତ ହୋଇଥିଲେ ପ୍ରକାଶ କଲେ । ଜଷ୍ଟିସ ଲ ସବୁ ଶୁଣି କହିଲେ ସିନିଅର ଜୁନିଅର ବିଧି କଲିକତାରେ ସର୍ବାଧିକ ପ୍ରଚଳିତ । ଏବଂ ତାହା ସର୍ବତ୍ର ଅକ୍ଷୁର୍ଣ୍ଣ ନ ରହିଲେ ଆଇନ ବୃତ୍ତିର ମର୍ଯ୍ୟାଦା, ଧନ ଅର୍ଜନର କାରସାଦିରେ ନଷ୍ଟ ହୋଇଯିବ । ପରେ ସେ ହାଇକୋର୍ଟରେ (କଲିକତା) ଜଜ୍ ହେଲେ, ସୁପ୍ରିମ କୋର୍ଟରେ ଜଜ୍ ହେଲେ; ଶେଷରେ ସେଠାରେ ଚିଫ୍ ଜଷ୍ଟିସ ହୋଇ ଅବସର ଗ୍ରହଣ କରି ବର୍ତ୍ତମାନ ଧର୍ମଚର୍ଚ୍ଚା ଓ ଅଭ୍ୟାସରେ ଅନେକ ସମୟ କଟାଉଛନ୍ତି । ଯେତେବେଳେ ଦେଖାହୁଏ ସୌହାର୍ଦ୍ଦ୍ୟ ଓ ସୌଜନ୍ୟରେ ସେ ଆଗଭର ।

Digitized by srujanika@gmail.com

ମୋ ଠାରୁ ଅନେକ ସିନିଅର ଓକିଲଙ୍କ କେସ୍‌ରେ ମୁଁ ଆର୍ଗୁମେଣ୍ଟ କରିବା ପାଇଁ ସେମାନଙ୍କ ଦ୍ୱାରା ନିଯୁକ୍ତ ହେଉଥାଏ । କୋର୍ଟରେ ପ୍ରଥମେ ସେମାନେ ମତେ ଅନୁମତି ଦେବା ପ୍ରକାଶ କରିବା ପାଇଁ ମୁଁ ବାଧ କରିଥାଏ । ଯୁଗଳକିଶୋର ଦତ୍ତ, ହରିହର ଦାସ, ଯଦୁନାଥ ମିତ୍ର, ରେବତୀକାନ୍ତ ଘୋଷ, ରାୟବାହାଦୁର ଲୋକନାଥ ମିଶ୍ର, ବ୍ରହ୍ମପୁରର ଭୁବନେଶ୍ୱର ରଥ, ଦୀନବନ୍ଧୁ ଦାସ, ଗାଦିନାରାୟଣ ମୂର୍ତ୍ତି, ସୁବା ରାଓ ପ୍ରଭୃତି ଏପରି ଅନେକ ଥର କରିବାର ମନେ ପଡୁଛି । ଏହାଦ୍ୱାରା କୋର୍ଟରେ ଏକ ସୌହାର୍ଦ୍ଦ୍ୟପୂର୍ଣ୍ଣ ବାତାବରଣ ରହେ ।



Digitized by srujanika@gmail.com

# ରାଜାଙ୍କ ବିରାଗ

କନିକା ରାଜାଙ୍କର କେତେକ କେସ ମୋ ପାଖରେ ହେଉଥିଲା । ରେଭିନ୍ୟୁ କିମ୍ବା କ୍ରିମିନାଲ ତଳ କୋର୍ଟର କେସ ତାଙ୍କର ଅନ୍ୟ ଓକିଲ କରୁଥିଲେ । ତାଙ୍କର ଲ ଏଜେଣ୍ଟ ଆସି ମୋ ସଙ୍ଗରେ ପରାମର୍ଶ ଓ କେସ୍‌ମାନଙ୍କରେ ତଦ୍‌ବୀର କରୁଥିଲେ । କନିକା ଟିକାୟତ ଶୈଳେନ୍ଦ୍ରନାରାୟଣ ଭଞ୍ଜଦେଓ ଓ ମୋତିଲାଲ ପଣ୍ଡିତଙ୍କ ମଧ୍ୟରେ ଏକ ମ୍ୟୁନିସିପାଲିଟି ଇଲେକ୍‌ସନ କେସ୍ ହେଲା । ଏହା ଓଡିଶା ହାଇକୋର୍ଟ ହେବା ପୂର୍ବର । ବାଞ୍ଛାନିଧିବାବୁ (ମହାପାତ୍ର) ଥାଆନ୍ତି ପଣ୍ଡିତଙ୍କ ପକ୍ଷରୁ, ମୁଁ ଟିକାୟତଙ୍କ ପକ୍ଷରୁ । ମୋତିବାବୁଙ୍କର ନିର୍ବାଚନ ବିରୁଦ୍ଧରେ ଆମର ଆପତ୍ତି । ତାଙ୍କ ନିର୍ବାଚନ ଫଳ ପ୍ରକାଶ ନ ପାଇବା ପାଇଁ ଆମେ କଟକ ଇଲେକ୍‌ସନ ଅଫିସରଙ୍କ (ଏଇଚ୍.ଲାଇ. ଆଇ.ସି.ଏସ୍.) ପାଖେ ଚେଷ୍ଟା କରି ବିଫଳ ହେଲୁ । ପାଟନା ମୁଁ ଗଲି ହାଇକୋର୍ଟରେ ରହିତ ଆଦେଶ ଆଣିବା ପାଇଁ । ଆମେ ଯାଉଥିବାର ଜାଣି, ମୋତିଲାଲ ପଣ୍ଡିତଙ୍କ ତରଫରୁ ବାଞ୍ଛାନିଧିବାବୁ ମଧ୍ୟ ପାଟନା ଗଲେ । ଆମ ପକ୍ଷରେ ପାଟନାର ଆଡଭୋକେଟ୍ ଜେନେରାଲ ମହାବୀର ପ୍ରସାଦ ନିଯୁକ୍ତ ହୋଇ ସେ, ମୁଁ ଓ ମୁରଲୀଧର ମହାନ୍ତି ବାରିଷ୍ଟର, କଚେରୀ ଆରମ୍ଭରେ କୋର୍ଟରେ ଦରଖାସ୍ତ ପେସ୍ କରିବାକୁ ଗଲୁ । ମହାବୀର ପ୍ରସାଦ ଜଣାଇଲେ ଯେ ସେ ସଂପୂର୍ଣ୍ଣରୂପେ କେସ୍ ସମ୍ବନ୍ଧରେ ଅବଗତ ହେବାର ସମୟ ପାଇ ନାହାନ୍ତି । ମୁଁ କେସରେ ମୂଳରୁ ଥାଇ ଅବଗତ ଅଛି ଏବଂ ଦରଖାସ୍ତ ସପକ୍ଷରେ ବକ୍ତବ୍ୟ ପ୍ରକାଶ କରିବି । ତାହା ହେଲା । ରହିତ ଆଦେଶ କୋର୍ଟରୁ ମିଳିଲା । ମୁଁ ସିଡ଼ିରେ ଓହ୍ଲାଇ ଆସିଲାବେଳକୁ ପି.ଆର.ଦାସ ବାରିଷ୍ଟରଙ୍କୁ ଧରି ବାଞ୍ଛାନିଧିବାବୁ କୋର୍ଟରେ ପହଞ୍ଚିଲେ । ଆମକୁ ଡକାଇ ଆଉଥରେ ରହିତାଦେଶ ଦରଖାସ୍ତର ବିଚାର ହେବାପାଇଁ ପି.ଆର.ଦାସ ଯେତେ ଲଗାଇଲେ, କୋର୍ଟଙ୍କର ଗୋଟିଏ ଉତ୍ତର, ଆପଣ ମହାପାତ୍ରଙ୍କୁ ରାଜି କରାଇ ଆଣନ୍ତୁ ପୁନର୍ବିଚାର ପାଇଁ କିମ୍ବା ରହିତାଦେଶ ରଦ୍ଦ କରିବା ପାଇଁ ଆପଣ ଦରଖାସ୍ତ ଦିଅନ୍ତୁ, ତାହା ଯଦି

Digitized by srujanika@gmail.com

ପ୍ରାଥମିକ ବିଚାରରେ ଗୃହୀତ ହେବ ତେବେ ଅପର ପକ୍ଷକୁ ଯଥାଯଥ ସମୟ ଓ ନୋଟିସ ଦେଇ ବିଚାର କରାଯାଇ ପାରିବ । ଯେଉଁ ରହିତାଦେଶ କୋର୍ଟରୁ ହୋଇ ସାରିଛି ତାହା ମହାପାତ୍ରଙ୍କ ବିନା ସମ୍ମତିରେ ପରିବର୍ତ୍ତିତ ହୋଇପାରିବ ନାହିଁ । ଭଗ୍ନ ମନୋରଥ ହୋଇ ପି.ଆର.ଦାସ ଓ ବାଞ୍ଛାନିଧିବାବୁ ଫେରିଲେ । କଟକରେ ଦେଖା ହେବାରେ ବାଞ୍ଛାନିଧିବାବୁ ମତେ କହିଲେ, କଅଣ ମାରିନେଲେ ମହାପାତ୍ରେ, ଚାହିଁଥିବ ଛଳକା । ମୁଁ ଉତ୍ତର ଦେଲି, ଦିପଟରେ ତ ଦି' ମହାପାତ୍ରେ । ହସି ହସି ସେ କହିଲେ, ତମ ଚେଇଁକା ପଣରେ ଆମେ ଶିଶୁପାଳ ହୋଇ ଫେରିଲୁ । ବାଞ୍ଛାନିଧିବାବୁ ଅତି ସରସ ପ୍ରକୃତର ସଦାଚାରୀ ଲୋକ । ମୋ ପ୍ରତି ଅତି ପ୍ରସନ୍ନ ସବୁବେଳେ ।

ପାଟନାରୁ କନିକା ରଜାଙ୍କୁ ଟେଲିଗ୍ରାମରେ ରହିତାଦେଶ ଜଣାଇଥିଲି । ମୂଳକେସ୍ ଶୁଣାଣି ହେବା ପରେ । ସେ କଥାକୁ ନଜର ନ ରଖି ରଜାଘର ଭାବିଲେ ତାଙ୍କର ଜିତାପଟ ହୋଇଗଲା । ମୁଁ ଟ୍ରେନ୍‌ରୁ ଓହ୍ଲାଇଲାବେଳକୁ ଗାଡି ପଠାଇ ଥିଲେ ଷ୍ଟେସନକୁ ତାଙ୍କ କୋଠିକୁ ଯିବାପାଇଁ । ମୁଁ ଆଳ ଦେଖାଇ ସେଠାକୁ ନ ଯାଇ ଘରକୁ ଆସିଲି । ମୋତିବାବୁଙ୍କ ନିର୍ବାଚନ ହୋଇ, ନ ହୋଇ ରହିଲା, କେସ୍ ଶୁଣାଣି ପର୍ଯ୍ୟନ୍ତ । ମୋତିବାବୁ ଅତି ଦୁଃଖିତ ହେଲେ ଯେ ତାଙ୍କ ପକ୍ଷରୁ ଏତେ ଖର୍ଚ୍ଚ ହୋଇ ମଧ ତାଙ୍କ ତରଫର କଥା କହିବାର ମଉକା ମିଳିଲା ନାହିଁ । ସନ୍ଧ୍ୟାକୁ କନିକା ଲ ଏଜେଣ୍ଟ ଆସିଲେ, ମତେ କୋଠିକୁ ନବାପାଇଁ ରଜା କେସ୍ ସମ୍ବନ୍ଧରେ ପରାମର୍ଶ କରିବେ । ମୁଁ ଅତି ବିନୀତ ଭାବରେ କହିଲି, ପରାମର୍ଶ ପାଇଁ ଓକିଲ ମହକିଲଙ୍କ ପାଖକୁ ଯିବା ଅସଙ୍ଗତ ଓ ବିଧି ବହିର୍ଭୂତ । ରାଜାଙ୍କ ପ୍ରତି ମୋର ସମ୍ମାନ ଓ କୃତଜ୍ଞତା ଅଛି କିନ୍ତୁ କେସ୍‌ର ପରାମର୍ଶ ପାଇଁ ତାଙ୍କ କୋଠିକୁ ଯାଇପାରିବି ନାହିଁ । ପାଟନା କିମ୍ବା କଲିକତାର କୌଣସି ବଡ ଓକିଲଙ୍କୁ ଦେଇଥିଲେ ସେ କଅଣ ତାଙ୍କ ଘରକୁ ଡକାଇ ଥାଆନ୍ତେ ? ମତେ ଡକାଉଛନ୍ତି, ଗାଁ କନିଆଁ ସିଙ୍ଘାଣିନାକୀ । ଏଜେଣ୍ଟ ଫେରିଯାଇ କଅଣ କହିଲେ କେଜାଣି, ଶୁଣିଲି ରାଜା ଘୋର ଅସନ୍ତୁଷ୍ଟ ହେଲେ । ସେ ଅସନ୍ତୋଷ କଥା ବନେଇ ଚୁନେଇ ଲ ଏଜେଣ୍ଟ ମୋ ପାଖରେ ପ୍ରକାଶ ନ କରି ଛାଡିଲେ ନାହିଁ ଏବଂ ପ୍ରକାରାନ୍ତରେ କହିଲେ ବୋଧହୁଏ ମୋ ହାତରୁ ସେ କେସଟି ନେଇଯିବାକୁ ହେବ । ମୋତେ ନିରୁତ୍ତର ଦେଖି ପୁଣି କହିଲେ; ଆପଣ ଥରେ ବୁଲିଆସନ୍ତୁ । ମୁଁ କହିଲି, ଥରେ କାହିଁକି, ଶହେ ଥର ଯାଇପାରେ । ମୁଁ କଅଣ ଯାଏ ନାହିଁ କି ? କିନ୍ତୁ କେସ୍‌ର ପରାମର୍ଶ ପାଇଁ ଯାଇପାରିବି ନାହିଁ, କେସ ରହୁ ବା ଯାଉ । କନିକା ବୁଦ୍ଧିମାନ,

Digitized by srujanika@gmail.com

ଅଭିଜ୍ଞ ଲୋକ । ମୋ ଉପରେ ତାଙ୍କର ଗଭୀର ପ୍ରସନ୍ନତା ରହିଥାଏ ମୁଁ କଲେଜରେ ପଢ଼ିଲା ବେଳୁ । ମତେ ଅନେକ କ୍ଷେତ୍ରରେ ସାହାଯ୍ୟ କରିବାପାଇଁ ସେ ଇଚ୍ଛୁକ ଓ ପ୍ରସ୍ତୁତ ଥିଲେ । ମୁଁ ଲ ଏଜେଣ୍ଟଙ୍କ ହାତରେ ଯିବାପାଇଁ ମନା କରିବାରେ ତାଙ୍କ ମାନରେ ବାଧା ଲାଗିଲା । ସେଥିପାଇଁ ଅପାତତଃ ବିରାଗ ଜନ୍ମିବା ସ୍ୱାଭାବିକ । ପରେ ସେ ଅବଶ୍ୟ ବୁଝିପାରିଥିବେ ମୋ ପଟର କଥା । ସେ ବିଷୟରେ ସେ କେବେ କୌଣସି କଥା ଉଠାଇ  ନାହାନ୍ତି କି କେସ୍ ଫେରାଇ ନେବାର ଇଙ୍ଗିତ ଦେଇଥିବାର ମୁଁ ଜାଣି ନଥିଲି । କିନ୍ତୁ ତାଙ୍କ ଅଭିମାନ ସୁସ୍ପଷ୍ଟ ରହିଲା ଅନେକ ଦିନ ।



Digitized by srujanika@gmail.com

# ଓଡିଶାର ପ୍ରଥମ ଖଣି ମକଦ୍ଦମା

ଭାଗବତ ମହାନ୍ତି ଇଞ୍ଜିନିୟରିଂ ପାସ୍ କରି କଣ୍ଟ୍ରାକ୍ଟରୀ କଲେ, ସରକାରୀ ଚାକିରୀରେ ନ ପଶି । ଆଉ ଜଣେ ତାଙ୍କ ସାଥୀ ସାମୁଏଲ୍ ପଣ୍ଡା ସେଇଆ କଲେ । ଓଡିଶାରେ ସେ ଦୁଇଜଣ ପ୍ରଥମ ଇଞ୍ଜିନିଅର କଣ୍ଟ୍ରାକ୍ଟର । ସାମୁଏଲଙ୍କ ବ୍ୟବସାୟ କଥା ମୁଁ କହିପାରିବି ନାହିଁ । ଭାଗବତବାବୁ ବରାବର ମୋ ପାଖକୁ ଯା ଆସ କରୁଥିଲେ ସୁବିଧା ଅସୁବିଧା ବେଳେ । ଖର୍ବକାୟ, ରୋକଠୋକ କଥାବାର୍ତ୍ତା, କାମରେ ସଚ୍ଚୋଟ, ପାଉଣାରେ ନଛୋଡବନ୍ଧା । କାନଟରାଟି କାମରେ ଖଟଣି ଅନୁପାତରେ ଲାଭ ଅପେକ୍ଷା କ୍ରୋମାଇଟ ଖଣିରେ ବେଶି ଲାଭ ଆଶାରେ ସେଥିକି ସେ ମନ ଦେଲେ । କେନ୍ଦୁଝରରେ ସିରାଜଉଦ୍ଦିନ ଜଣେ ବଡ ଖଣିବାଲା ଥିଲେ । ରାଜାଙ୍କଠାରୁ ଖଣିପଟ୍ଟା ନେଇ, ସେ ଖଣିରୁ କ୍ରୋମାଇଟ୍ ପଥର ଆମଦାନୀ କରି ବାହାରକୁ ରପ୍ତାନିରେ ପ୍ରଚୁର ଧନ ଉପାର୍ଜନ କରୁଥିଲେ । ମିଜାଜ ଥିଲା ତାଙ୍କର ବାଦସାହୀ । କେନ୍ଦୁଝର ଗଡରୁ ଚାଇବାସା ଯିବା ରାସ୍ତାରେ ତାଙ୍କ ଘର । ପାଠପଢ଼ି ନଥିଲେ । ଜୀବିକା ଆରମ୍ଭ କରିଥିଲେ ଗଧ ଉପରେ ଚଢ଼ି ଜିନିଷ ବୁକୁଚାରେ ବାନ୍ଧି ହାଟକୁ ହାଟ ବୁଲି ଦି ପଇସା ରୋଜଗାରେ । ମୁସଲମାନ ହେଲେ ମଧ ହିନ୍ଦୁଆନୀ ଚଳଣି । ମା ଲକ୍ଷ୍ମୀ ପ୍ରସନ୍ନ ହେବାରେ ଖଣି ବ୍ୟବସାୟରେ ଅଳ୍ପଦିନରେ ଲକ୍ଷପତି ହେଲେ । ରାଜାଙ୍କଠାରୁ ଆରମ୍ଭ କରି ମନ୍ତ୍ରି ପର୍ଯ୍ୟନ୍ତ, କିରାଣୀଙ୍କଠାରୁ ଆରମ୍ଭ କରି ପଲିଟିକାଲ ଏଜେଣ୍ଟ ପର୍ଯ୍ୟନ୍ତ ତାଙ୍କ ପଇସାରେ କିଣା ଥିଲେ । ତାଙ୍କ ସାଙ୍ଗେ ଭାଗୁଆଳି ହୋଇ ଭାଗବତବାବୁ ଖଣିବ୍ୟବସାୟରେ ପଶିଲେ, ରାଜାଙ୍କର ସ୍ୱୀକୃତି ନେଇ । ଗଡଜାତ ମିଶ୍ରଣବେଳକୁ ଦିହିଙ୍କ ଭିତରେ ମନ ଫଟାଫଟି ହେଲା । ଭାଗବତବାବୁଙ୍କ ସଙ୍ଗେ ମିଶିଥାଆନ୍ତି ବଂଶୀଧର ପଟ୍ଟନାୟକ କେନ୍ଦୁଝର ଗଡର, ସେହି ବ୍ୟବସାୟରେ । ଖଣିର ଦଖଲ ନେଇ ବିବାଦ ଉପୁଜିଲା । ଭାଗବତବାବୁ ଓ ବଂଶୀବାବୁ ମୋ ସାଙ୍ଗେ ପରାମର୍ଶ କଲେ । କାଗଜପତ୍ର ତନଖି କରିବାରେ ଅନେକ ଦିନଗଲା । ଅର୍ଜି ମୁଁ ତିଆରି କଲି । ଏହ୍ଲାବାଦ ଗଲୁ ପ୍ରଖ୍ୟାତ ଓକିଲ ସାର ତେଜବାହାଦୁର ସାପ୍ରୁଙ୍କ ଦ୍ୱାରା ଅର୍ଜି

Digitized by srujanika@gmail.com

ଆବଶ୍ୟକମତେ ସଂଶୋଧନ କରାଇବାକୁ । ସେ କିଛି ଅସୁସ୍ଥ ଥାଆନ୍ତି । ଆମେ ଦୂରରୁ ଯାଇଥିବାରୁ ସାକ୍ଷାତ କରିବାକୁ ରାଜି ହେଲେ । ଅର୍ଜିଦେଖି, ଠିକ୍ ଅଛି ବୋଲି ଓପର ଠାଉରିଆ ଭାବରେ କହି ବିଦାୟ କରିଦେଲେ । କେସ୍‌ର ଜଟିଳତା ଭିତରକୁ ପଶିବାକୁ ଇଚ୍ଛା କଲେ ନାହିଁ । ଆରାମ ଚୌକିରେ ହୁକା ଟାଣୁଟାଣୁ ମୋ ସଙ୍ଗେ କିଛି ସମୟ ଗଳ୍ପ କଲେ । ଆମ ଶ୍ରମ ଓ ବ୍ୟୟ କିଛି ସାର୍ଥକ ହେଲା ବୋଲି ମନେ ହେଲା ନାହିଁ । ଗଲାବେଳକୁ ଭାଗବତବାବୁ ଓ ମୁଁ ଉଡାଜାହାଜରେ କଲିକତାରୁ ଯାଇଥିଲୁ । ମୋର ତାହା ପ୍ରଥମ ବିମାନ ଯାତ୍ରା । ଭାରତ ଏଆରୱେଜ ବିମାନ ଚଳୁଥାଏ । ଯାତ୍ରୀମାନଙ୍କୁ ଓଜନ କରାଯାଉଥାଏ । ମାଲପତ୍ରତ ଓଜନ ହେବାର କଥା, ହୁଏ । ଫେରିଲୁ ଟ୍ରେନ୍‌ରେ । ଆନନ୍ଦପୁର ମୁନସଫ୍ କୋର୍ଟରେ ଦେୱାନୀ ମକଦ୍ଦମା ଦାଏର ହେଲା । ଓଡିଶାରେ ପ୍ରଥମ ଖଣି ମକଦ୍ଦମା । ସିରାଜଉଦ୍ଦିନ ଚାଇବାସାରୁ ଓକିଲ ଆଣିଲେ । ଆମେ ଯାଉ କଟକରୁ । ସିରଜଉଦ୍ଦିନ ଆସିଥାଆନ୍ତି । ବେପରୱା, ସିଗାରେଟ୍ ପାନରେ ସମସ୍ତଙ୍କୁ ଆପ୍ୟାୟିତ କରୁଥାନ୍ତି, ଭାଗବତବାବୁ ଓ ବଂଶୀବାବୁଙ୍କୁ ମଧ । ପାନ ସିଗାରେଟ୍ ମୋର ଚଳୁନଥିବାରୁ ମୋ ଭାଗ୍ୟରେ ଜୁଟେ ନାହିଁ । ବହୁଦିନ କେସ ଚାଲିଲା ମୁନସିଫ ବ୍ରଜସୁନ୍ଦର ଦାସଙ୍କ କୋର୍ଟରେ । କୋର୍ଟରେ ଧସ୍ତାଧସ୍ତି ଦୁଇପକ୍ଷର ଓକିଲ କିନ୍ତୁ ପକ୍ଷ ପ୍ରତିପକ୍ଷଙ୍କ ଭିତରେ ଅପ୍ରୀତି ଆଦୌ ନଥିଲା । ଆମ ପକ୍ଷରୁ ଜଣେ ଓକିଲ, ସିରାଜଉଦ୍ଦିନ ଆଣନ୍ତି ତିନ ବା ଚାରି । ତାଙ୍କରି ଖର୍ଚ୍ଚରେ ପଇସାର ସୁଅ, ଆମ ପଟରେ ଟାଣଟୁଣ । ମକଦ୍ଦମାରେ ଆମେ ଜିତିଲୁ । ସିରାଜଉଦ୍ଦିନ ଅପିଲରେ ଗଲେ କେନ୍ଦୁଝର ଗଡ ସବ୍‌ଜଜ୍ କୋର୍ଟକୁ । ଅପିଲ ଦାଖଲ କରିବାକୁ ଆସିଥିଲେ ମାନ୍ଦ୍ରାଜର ଆଡଭୋକେଟ୍ ଜେନେରାଲ ରାଜା ଆୟାର, ହାଇଦରାବାଦର ନର୍ସୁରାଜୁ (ଯେ ପରେ ଆନ୍ଧ୍ରର ଆଡଭୋକେଟ ଜେନେରାଲ ହେଲେ) । ତାଙ୍କ ସଙ୍ଗରେ ଥାଆନ୍ତି ଚାଇବାସାର ତିନି ଓକିଲ । ଅପିଲ ଦାଖଲ କରି ଦଖଲ ପ୍ରତି ରହିତଆଦେଶ ନେବାର ଚେଷ୍ଟା ତାଙ୍କର ଥିଲା । ତେଣୁ ଭାଗବତବାବୁ ମତେ ନେଇ ଯାଇଥାଆନ୍ତି । ଏତେ ବଡ ବଡ ଓକିଲ ଏତେ ଦୂରରୁ ଆଣିପାରି ଥିବାରୁ ସିରାଜଉଦ୍ଦିନଙ୍କର ସେ ଦିନ ଯେ ଉଲ୍ଲାସ ଦେଖିଥିଲି ତାହା ମନେ ପଡିଲେ ତୃପ୍ତିଲାଗେ । କେସ କଥା ବୋଧହୁଏ ସେ କିଛି ବୁଝୁ ନଥିଲେ, ବା ବୁଝିପାରୁ ନଥିଲେ । ଲଢ଼ିବାରେ ଆନନ୍ଦ ଓ ପୌଢ଼ି । ଆମ ପକ୍ଷ ଆପତ୍ତି ଗୃହୀତ ହୋଇ ଅପିଲ ଫଇସଲା ପର୍ଯ୍ୟନ୍ତ କୌଣସି ପକ୍ଷର ବେଦଖଲ ଜନିତ କୌଣସି କ୍ଷତି ନ ଘଟିବାର ବ୍ୟବସ୍ଥା ହେଲା ।

ଅପିଲ ଶୁଣାଣି ହେଲା ଗତିକୃଷ୍ଣ ମିଶ୍ର ସବ୍‌ଜଜ୍‌ଙ୍କ ପାଖରେ ପାଞ୍ଚ ଦିନ । ଗତିବାବୁ ପରେ ଚାକିରି ଛାଡି ଆଡଭୋକେଟ୍ ହେଲେ ଏବଂ ପରେ ଓଡିଶା

Digitized by srujanika@gmail.com

ହାଇକୋର୍ଟର ଜଜ୍ ଓ ଚିଫ୍ ଜଷ୍ଟିସ ହୋଇ ଖ୍ୟାତିର ସହିତ ଅବସର ଗ୍ରହଣ କରିଛନ୍ତି । ସିରାଜଉଦ୍ଦିନଙ୍କ ତରଫରୁ ରାଜା ଆୟାର, ନର୍ସୁରାଜୁ ପ୍ରଭୃତି ଆସି ଥିବାରୁ କୋର୍ଟରେ ଲୋକ ଗହଳି ଥାଏ । ରାଜା ଆୟାର ମୋରିପରି ଅଳ୍ପ ଉଚ୍ଚ କିନ୍ତୁ ଅତି ଦକ୍ଷ, କାର୍ଯ୍ୟପ୍ରାଣ, ଭଦ୍ର ଓ ଧୀର । ସେ ଆର୍ଗୁମେଣ୍ଟ କଲାବେଳେ କୋର୍ଟ ଆଡକୁ ନ ଚାହିଁ ତାଙ୍କ ବାମପଟକୁ ଚାହିଁ କହନ୍ତି । ପାଞ୍ଚଦିନ ମଧ୍ୟରେ ତିଳେ ମାତ୍ର ତିକ୍ତତା, କଟୁଉକ୍ତି ବା ଆକ୍ଷେପ ପ୍ରତିପକ୍ଷ ଓକିଲ ପ୍ରତି ପ୍ରକାଶ କରି ନଥିଲେ । ସେହି ବୋଧହୁଏ ମୋ ମନେ ପଡିବାର ଏକମାତ୍ର କେସ୍ ଯେଉଁଥିରେ ଦୁଇପଟର ପକ୍ଷ ବା ଓକିଲଙ୍କ ମଧ୍ୟରେ କୋର୍ଟ ଭିତରେ ବା ବାହାରେ କୌଣସି ପ୍ରକାରର ଅପ୍ରୀତିକର ବାକ୍ୟାଳାପ ଘଟି ନଥିଲା । ଶୁଣାଣିର କେତେଦିନ ପରେ ଦୀର୍ଘ ରାୟରେ ଆମ ପକ୍ଷର ଦାବୀ ସ୍ୱୀକୃତ ହେଲା ।

ସିରାଜଉଦ୍ଦିନ ତାପରେ ଗଲେ ପାଟନା । କଟକରୁ ଗୋପାଳବାବୁଙ୍କୁ (ଗୋପାଳଚନ୍ଦ୍ର ଦାସ) ନେଇ ପାଟନା ହାଇକୋର୍ଟ ଜଜ୍ ପଦରୁ ଅବସର ନେଇଥିବା ମନୋହର ଲାଲ ବାରିଷ୍ଟରଙ୍କ ପାଖକୁ । ତାଙ୍କୁ ଆଣି ଓଡିଶା ହାଇକୋର୍ଟରେ ଅପିଲ ଦାଖଲ କଲେ । ତାହା ସେକେଣ୍ଡ ଅପିଲ ହୋଇଥିବାରୁ କିଛି କଷ୍ଟସାଧ୍ୟ ହେବାର କଥା । ବିଚକ୍ଷଣ ମନୋହର ଲାଲ ସିରାଜଉଦ୍ଦିନଙ୍କୁ ପରାମର୍ଶ ଦେଲେ ଭାଗବତବାବୁ, ବଂଶୀବାବୁଙ୍କ ସଙ୍ଗରେ ରଫା କରିବାକୁ । ଗତିବାବୁଙ୍କ ରାୟ ପ୍ରଶଂସାଯୋଗ୍ୟ ହୋଇଥିବାର ମନ୍ତବ୍ୟ କୋର୍ଟରେ ଜଷ୍ଟିସ ନରସିଂହମ ପ୍ରକାଶ କରିଥିଲେ । ଦୁଇପକ୍ଷ ତାଙ୍କ ଭିତରେ ରଫା କଥା ଆରମ୍ଭ କଲେ । ସିରାଜଉଦ୍ଦିନ ଦିଲଦାରିଆ ଲୋକ । ଭାଗବତବାବୁ ମଧ୍ୟ ଚତୁର । ଉଭୟପକ୍ଷ ସ୍ଥିର କଲେ ତିନିଲକ୍ଷ ଟଙ୍କା ନଗଦ ନେଇ ଭାଗବତବାବୁ ଓ ବଂଶୀବାବୁ ତାଙ୍କର ସମସ୍ତ ଦାବୀ ଖଣିରେ ପରିତ୍ୟାଗ କରିଦେବେ । ସେତେବେଳର ତିନିଲକ୍ଷ ଏବର ତିରିଶ ଲକ୍ଷ । ନଗଦ ଟଙ୍କା ଲୋଭରେ ବୋଧହୁଏ ଭାଗବତବାବୁ ବିପୁଳ ଖଣିଜ ସମ୍ପଦର ମୋହ ଛାଡିଲେ । ରଫାନାମା କୋର୍ଟରେ ଦାଖଲ ହେଲା । ସେହିଦିନଠାରୁ ଭାଗବତବାବୁଙ୍କୁ ମୁଁ ଆଉ ଦେଖିବାକୁ ପାଇନାହିଁ । ଭାବିଲେ ଆଶ୍ଚର୍ଯ୍ୟ ଲାଗେ । ମୋର ପ୍ରାପ୍ୟ ଫିସ୍ ଅନେକ ବାକୀ ରହିଲା ।



Digitized by srujanika@gmail.com

# ବମ୍ବେରୁ ସାହାଯ୍ୟ ପାଣ୍ଠି

ବନ୍ୟା ବିପତ୍ତି ଓଡିଶାର ସହଚର । ଯେତେବେଳେ ଆସେ, କଟକରେ ରିଲିଫ୍ କମିଟି ଗଢ଼ାହୁଏ ବିପନ୍ନ ଲୋକଙ୍କୁ ସାହାଯ୍ୟ ପାଇଁ । ସରକାରଙ୍କ ପକ୍ଷରୁ ଆଜିକାଲି ଯେପରି ବିପୁଳ ଅର୍ଥ, ପଦାର୍ଥ ବଣ୍ଟାଯାଉଛି, ତାହା ସେତେବେଳେ ସମ୍ଭବ ନଥିଲା । ବେସରକାରୀ ଅନ୍ୟ ସାହାଯ୍ୟ ସଂସ୍ଥା ମଧ ବାହାରୁ ନଥିଲେ । କଲିକତା ମାରଓ୍ୟାଡି ସୋସାଇଟି କିଛି ସାହାଯ୍ୟ କରୁଥିଲେ । ୧୯୩୪ରେ ବନ୍ୟା ସାହାଯ୍ୟ ପାଇଁ ଓଡିଶା ରିଲିଫ୍ କମିଟି ତରଫରୁ ଲକ୍ଷ୍ମୀନାରାୟଣ ସାହୁ, ଶ୍ୟାମସୁନ୍ଦର ମିଶ୍ର (ହିନ୍ଦ ସେବକ ସଂଘର ଉଭୟ ସଭ୍ୟ) ଓ ମୁଁ ବମ୍ବେ ଯିବା ସ୍ଥିର ହେଲା । ରିଲିଫ କମିଟିର ସଭାପତି ଥାଆନ୍ତି ସ୍ୱାମୀ ବିଚିତ୍ରାନନ୍ଦ ଦାସ । ମୁଁ ଥାଏ ଯୁଗ୍ମ ସମ୍ପାଦକ । ଆମେ ଟ୍ରେନରେ ଯାଇ ବମ୍ବେରେ ହିନ୍ଦ୍ ସେବକ ସଂଘ ଅଫିସ ଘରେ ରହିଲୁ । ସେଠାରେ ଥିଲେ ଅମୃତଲଲାଲ ଠକ୍କର (ଠକ୍କର ବାପା) । ୧୯୨୦-୨୧ ପୁରୀ ଜିଲ୍ଲା ଡଭାର ଅଞ୍ଚଳ ବନ୍ୟାବେଳୁ ସେ ଓଡିଶା ବିପତ୍ତି ସହିତ ପରିଚିତ । ଗୋପବନ୍ଧୁ ବାବୁଙ୍କ (ପଣ୍ଡିତ ଗୋପବନ୍ଧୁ ଦାଶ) ସଙ୍ଗେ ବିପନ୍ନ ଲୋକଙ୍କୁ ସାହାଯ୍ୟ କରିବା ପାଇଁ ମହାତ୍ମାଗାନ୍ଧି ତାଙ୍କୁ ପଠାଇ ଥିଲେ । ସେହିଦିନ ଠାରୁ ବହୁ ସମୟରେ ସେ ଓଡିଶା ଆସୁଥିଲେ ଏବଂ ସମସ୍ତଙ୍କ ପାଖରେ ଠକ୍କର ବାପା ବୋଲି ଆଦରଣୀୟ ଥିଲେ । ବମ୍ବେ ଯିବା ମୋର ପ୍ରଥମ । ଭାରତ ସେବକ ସଂଘର ଅଫିସ ଘରେ ନିରାଡମ୍ବର ବାସ ଓ ଖାଦ୍ୟରେ କୌଣସି ଅସୁବିଧା ନଥିଲା ।

ଠକ୍କର ବାପା ପ୍ରତ୍ୟୁଷରୁ ଉଠି ପ୍ରସ୍ତୁତ ହେବା ପୂର୍ବରୁ ଆମକୁ ନିତ୍ୟକର୍ମ ସାରି ରିଲିଫ୍ ପାଇଁ ଅପିଲ କାଗଜ, ରସିଦ ବହିଧରି ଅପେକ୍ଷା କରିବାକୁ ହୁଏ । ସେ ନିରଳସ, କର୍ମଠ, ସ୍ୱଳ୍ପବାକ୍ । ଲମ୍ବା ପାହୁଣ୍ଡରେ ତାଙ୍କ ଚାଲିସାଙ୍ଗେ ଖାପ ଦେଲାବେଳକୁ ମୁଁ ନାକେଦମ । ବ୍ୟବସାୟୀ ମହଲରୁ ଭିନ୍ନ ଭିନ୍ନ ସ୍ଥାନକୁ ସେ ଆମକୁ ନେଇ ଯାଆନ୍ତି । କୌଣସି ଠାରୁ ଖାଲି ହାତରେ ଫେରୁନାହିଁ । ସାର୍ ପୁରୁଷୋତ୍ତମ ଦାସ ଠାକୁର

Digitized by srujanika@gmail.com

ଦାସଙ୍କ ପାଖକୁ ଯିବା ଏକ ଅପୂର୍ବ ଅନୁଭୂତି । ଶିଳ୍ପପତି ସେ । ଧନରେ ଯେତେ ଉଚ୍ଚ, ବିନୟରେ ସେତେ ନମ୍ର । ଠକ୍କର ବାପାଙ୍କ ପ୍ରତି ଅଚଳା ଶ୍ରଦ୍ଧା ଓ ସମ୍ମାନ ଦେଖାଇ ଆମକୁ ବନ୍ୟା ପରିସ୍ଥିତି ଓ ସାହାଯ୍ୟ ବିତରଣ ବିଷୟରେ ପଚାରିଲେ । ନିଜେ ଯାହା ଦେଲେ, ଅନ୍ୟମାନଙ୍କ ଠାରୁ ସାହାଯ୍ୟ ଅଣାଇବାର ବ୍ୟବସ୍ଥା କଲେ । ତାଙ୍କୁ ସମସ୍ତେ ଡାକନ୍ତି (Sir P.T.) ସାର୍ ପି.ଟି. । ଦେଶର ଜଣେ ଅଗ୍ରଣୀ ଶିଳ୍ପପତି ଜନହିତରେ ଏତେ ମନୋଯୋଗୀ ଥିବା ପ୍ରଥମ ମୁଁ ଦେଖିଲି । ଖାଇବା ସମୟ ବ୍ୟତୀତ ସକାଳ ଆଠଟାରୁ ଅପରାହ୍ନ ୫ଟା ପର୍ଯ୍ୟନ୍ତ ଠକ୍କର ବାପାଙ୍କ ସହିତ ଚାନ୍ଦା ଆଦାୟରେ ଯାଏ । ଆମକୁ ପହଞ୍ଚାଇ ଦେଇ, ସେ ଚୁପ୍ ହୋଇ ଖବର କାଗଜ ପଢ଼ନ୍ତି ପ୍ରତି ଜାଗାରେ । ଲକ୍ଷ୍ମୀନାରାୟଣବାବୁ ଧରାଇ ଦିଅନ୍ତି, ମତେ ଭିକ୍ଷା ଝୁଲି । ଶ୍ୟାମବାବୁ ରସିଦ କାଟନ୍ତି । କେତେକ ସ୍ଥାନକୁ ଠକ୍କର ବାପା ଆଗରୁ ଟେଲିଫୋନ୍ କରି ଆମକୁ ପଠାନ୍ତି । ଆମେ ଠିକଣା ଖୋଜି ପହଞ୍ଚୁ । ପରିମାଣ ଯାହା ହେଉ, କୌଣସିଠାରେ ଦେବାରେ କୁଣ୍ଠା ଦେଖିଲି ନାହିଁ କିମ୍ବା କେହି ବୁଝିଲେ ନାହିଁ, ଅନ୍ୟମାନେ କେତେ ଦେଇଛନ୍ତି । ଧନ କୁବେରଙ୍କର ନିର୍ଧନଙ୍କ ପ୍ରତି ତାଚ୍ଛଲ୍ୟ ନ ଥିଲା । ଲକ୍ଷ୍ୟ କଲି ଗୋଟିଏ କଥା, ପ୍ରାୟ ସମସ୍ତେ ଏ ପ୍ରକାର ସାହାଯ୍ୟ ଦାନ ପାଇଁ କିଛି ଅଲଗା ପାଣ୍ଠିର ବ୍ୟବସ୍ଥା ରଖିଥାନ୍ତି । କର୍ମ ବହୁଳତା ମଧ୍ୟରେ ସାତଟି ଦିନ କଟିଲା । ତିରିଶ ହଜାରରୁ କିଛି ଉର୍ଦ୍ଧ୍ୱ ଟଙ୍କାନେଇ କଟକ ଫେରିଲୁ । ଫେରିଲା ପରେ ଲକ୍ଷ୍ମୀନାରାୟଣବାବୁ ଏକ କବିତା ରଚିବହି ଛାପିଲେ, ବମ୍ବେ ଯାତ୍ରା ।



Digitized by srujanika@gmail.com

# ରୂଢ଼ତାର ପ୍ରତିବାଦ

ବୀରକିଶୋର ରାୟ ଓଡିଶା ହାଇକୋର୍ଟରେ ପ୍ରଥମ ଚିଫ୍ ଜଷ୍ଟିସ ହୋଇ ଅବସର ନେବା ପରେ ବାବୁ ଜଗନ୍ନାଥ ଦାସ ଚିଫ୍ ଜଷ୍ଟିସ ହେଲେ । ସେ କଂଗ୍ରେସ ପନ୍ଥୀ । ଧୋତି, ମୁଣ୍ଡରେ ଟୋପି ପିନ୍ଧନ୍ତି । ଔଚିତ୍ୟ ଜ୍ଞାନ ତାଙ୍କର ସର୍ବାଧିକ ବୋଲି ମନେ କରନ୍ତି । ଅନ୍ୟମାନଙ୍କ ତ୍ରୁଟି ତାଙ୍କର ଆଖିରେ ଆଗ ଦିଶେ । ସେ ଚିଫ୍ ଜଷ୍ଟିସ ହେଲାପରେ, ଓକିଲମାନଙ୍କର ମକଦ୍ଦମା ପରିଚାଳନାରେ ମନ୍ତବ୍ୟ ଅନେକ ସମୟରେ ଦେବା ଆରମ୍ଭ କଲେ । ୧୯୫୩ ଜାନୁଆରୀ ଆଠତାରିଖ ଦିନ ତାଙ୍କ କୋର୍ଟ ରେ ଏକ ଅପ୍ରୀତିକାର ଘଟନା ଘଟିଲା । ଉଦୟନାଥ ରଥ ଆଡ଼ଭୋକେଟ୍ କୋର୍ଟ ବାରନ୍ଦାରେ ଅନ୍ୟମାନଙ୍କ ସହିତ କଥାବାର୍ତ୍ତା ହେଉଥିଲେ । ଜଗନ୍ନାଥ ଦାସ କୋର୍ଟରେ ଥିବା ପୁଲିସ କନେଷ୍ଟବଲକୁ ଡାକି କହିଲେ, ଯେ କୋର୍ଟ ବାହାରେ କଥାବାର୍ତ୍ତା କରୁଛନ୍ତି ଡାକି ଆଣିବାକୁ । ସେ ଯାଇ ଉଦୟନାଥବାବୁଙ୍କୁ ଭିତରକୁ ଡାକି ଆଣିଲା । ବାହାରେ କାହିଁକି ଗୋଳମାଳ କରୁଛନ୍ତି ବୋଲି ପଚାରି ଏକ ପ୍ରକାର ଭର୍ତ୍ସନା କଲେ । ମୁଁ ଅନେକ ବର୍ଷ ହାଇକୋର୍ଟ ବାର ଆସୋସିଏସନ୍‌ର ସମ୍ପାଦକ ଥିଲି । ସେତେବେଳେ ମଧ ଥିଲି । ସତ୍ୟନାରାୟଣ ସେନଗୁପ୍ତ ସେତେବେଳେ ଆସୋସିଏସନ୍‌ର ସଭାପତି । ସେହିଦିନ ଅପରାହ୍ଣରେ ଆସୋସିଏସନ୍‌ର ଏକ ଜରୁରୀ ମିଟିଙ୍ଗ୍ ମୁଁ ଡାକିଲି, ଚିଫ୍ ଜଷ୍ଟିସଙ୍କ କୋର୍ଟରେ ହୋଇଥିବା ଘଟନାର ଆଲୋଚନା ପାଇଁ । ସଭାରେ ଅନେକ ଓକିଲ ଚିଫ୍ ଜଷ୍ଟିସଙ୍କ ବ୍ୟବହାରର କଟୁ ସମାଲୋଚନା କଲେ । ଉଦୟନାଥବାବୁଙ୍କ ପ୍ରତି ହୋଇଥିବା ବ୍ୟବହାର ଓକିଲମାନଙ୍କ ପ୍ରତି ଅପମାନସୂଚକ ବୋଲି ମତ ପ୍ରକାଶ ପାଇଲା । ସେହି ଅନୁସାରେ ଗୋଟିଏ ପ୍ରତିବାଦ ପ୍ରସ୍ତାବ ମୁଁ ଚିଠା କରି ମିଟିଙ୍ଗରେ ଉପସ୍ଥାପିତ କଲି । ତାହା ସର୍ବ ସମ୍ମତିକ୍ରମେ ଗୃହୀତ ହେବାରୁ, ତାହାର ପ୍ରତିଲିପି ସଙ୍ଗେ ସଙ୍ଗେ ଚିଫ୍ ଜଷ୍ଟିସଙ୍କ ପାଖକୁ ପଠାଇ ଦେଲି । ଚିଫ୍ ଜଷ୍ଟିସଙ୍କର ଏହା ଅପ୍ରତ୍ୟାଶିତ ଥିଲା । ସେ ସେଥିରେ ରୁଷ୍ଟ ହେବା ସ୍ୱାଭାବିକ । ସବୁବେଳେ ସବୁ

Digitized by srujanika@gmail.com

କ୍ଷେତ୍ରରେ ଦୋମୁହାଁ ଲୋକ କିଛି ଥାଆନ୍ତି । ଯେଉଁମାନେ ମିଟିଙ୍ଗରେ ଶତମୁଖରେ ନିନ୍ଦା କରି ଟାଣ ବକ୍ତୃତା ଦେଇଥିଲେ, ତାଙ୍କ ମଧ୍ୟରୁ ଦୁଇଜଣ (ସେମାନଙ୍କର ନାମ ମତେ ଚିଫ୍ ଜଷ୍ଟିସ ପରେ କହିଥିଲେ ତାଙ୍କ ଧାରଣାର ସତ୍ୟତା ପ୍ରତିପାଦନ ପାଇଁ) ଚିଫ୍ ଜଷ୍ଟିସଙ୍କୁ ଜଣାଇଦେଲେ ଯେ ମୋ ଆଗଭରିତାରେ ମିଟିଙ୍ଗ ଓ ପ୍ରତିବାଦ ପ୍ରସ୍ତାବ ହୋଇଥିଲା । ସୁତରାଂ ଚିଫ୍ ଜଷ୍ଟିସଙ୍କର କ୍ରୋଧ ମୋ ଉପରକୁ ଆସିବାର କଥା । ସେହି ସନ୍ଧ୍ୟାରେ ମୁଁ ଶୁଣିବାକୁ ପାଇଲି ଯେ ପରଦିନ କୋର୍ଟ ଅବମାନନା ନୋଟିସ ମତେ ଓ (ସତ୍ୟନାରାୟଣ ସେନଗୁପ୍ତ) ସଭାପତିଙ୍କୁ ଚିଫ୍ ଜଷ୍ଟିସ ଦେବେ । ଶୁଣିଥିଲି ଜଷ୍ଟିସ ଲିଙ୍ଗରାଜ ପାଣିଗ୍ରାହୀ ସେଥିରେ ଏକମତ ଥିଲେ । ଜଷ୍ଟିସ ନରସିଂହମ୍ ହଠାତ୍ ସେପରି କାର୍ଯ୍ୟାନୁଷ୍ଠାନ ନ କରିବାକୁ ସତର୍କ କରାଇଥିଲେ । ଓକିଲଙ୍କ ଭିତରେ ଉତ୍ତେଜନା ପ୍ରକାଶ ପାଉଥାଏ । ପୀତାମ୍ବର ମିଶ୍ରେ ସେତେବେଳେ ଆଡଭୋକେଟ୍ ଜେନେରାଲ ଥାଆନ୍ତି । ସେ ପ୍ରତ୍ୟକ୍ଷ ଅଂଶ ଗ୍ରହଣ ନ କଲେ ମଧ୍ୟ ଆମ ସହିତ ଏକମତ ଥାଆନ୍ତି । ବୋଧହୁଏ ମୁଖ୍ୟମନ୍ତ୍ରୀ (ନବକୃଷ୍ଣ ଚୌଧୁରୀ) କହିବା ଅନୁଯାୟୀ, ପୀତାମ୍ବରବାବୁ ଆମ ଘରକୁ ଦୁଇଥର ଆସି ପରାମର୍ଶ କଲେ, କିପରି କଥାଟାର ସମାଧାନ ହେବ । ଚିଫ୍ ଜଷ୍ଟିସ ଚାହାନ୍ତି, ପ୍ରସ୍ତାବ ବାର ଆସୋସିଏସନ୍ ପ୍ରତ୍ୟାହାର କରିନେଉ । ସେହିକଥା ଆଲୋଚନା ହେଲା, ତାଙ୍କ ଘରେ, ପୀତାମ୍ବରବାବୁ ଓ ମୁଁ ଉପସ୍ଥିତ ଥାଇ । ସେତେବେଳେ ସେ ପ୍ରକାଶ କରିଥିଲେ, କିଛି କ୍ଷୋଭର ସହିତ, ଯେ ଏପରି ଦୃଢ଼ ଭାଷାରେ ପ୍ରତିବାଦ ପ୍ରସ୍ତାବ ମୁଁ ମିଟିଙ୍ଗ ଡକାଇ କରାଇଥିବାର ଦୁଇଜଣ ଆଡ୍‌ଭୋକେଟ୍ (ନାମ ପ୍ରକାଶ କରିଥିଲେ) ତାଙ୍କୁ ଜଣାଇଥିଲେ । ସେହି ଦୁଇଜଣ ମିଟିଙ୍ଗର ଆଲୋଚନାରେ ଭାଗ ନେଇଥିବାର ମୁଁ ମିଟିଙ୍ଗ ବିବରଣୀ ବହିରୁ ତାଙ୍କୁ ଦେଖାଇବାରୁ ସେ ଅଳ୍ପ ଅପ୍ରତିଭ ବୋଧ କଲେ । ମୁଁ ଅତି ନମ୍ର ଭାବରେ ତାଙ୍କୁ ଜଣାଇଥିଲି ସେଦିନ ଯେ ସେ ନିଜେ କଂଗ୍ରେସ ଆନ୍ଦୋଳନରେ କର୍ମୀ ଥିଲେ ଏବଂ ଅବଶ୍ୟ ଅନୁଭବ କରିଥିବେ ଯେ ଅନ୍ୟମାନଙ୍କର ଇଚ୍ଛା ଓ ଭାବନା ଭାଷାରେ ଉପସ୍ଥାପିତ ହୁଏ, ଜଣକ ଦ୍ୱାରା । ମୋର ସେହି କାର୍ଯ୍ୟ ହୋଇଥିଲା ସମ୍ପାଦକ ଭାବରେ । ଚିଫ୍ ଜଷ୍ଟିସଙ୍କ ପ୍ରତି ବ୍ୟକ୍ତିଗତ କ୍ରୁରତା ମୋର ଅଧିକ ନଥିଲା । ପ୍ରତିବାଦରେ ଅନ୍ୟମାନେ ମୋ ସହିତ ଏକ ମତ ଥିଲେ । ଏକତରଫା ବାର ଆସୋସିଏସନ ପ୍ରସ୍ତାବ ପ୍ରତ୍ୟାହାର କରିବା ଅସମ୍ଭବ । ଚିଫ୍ ଜଷ୍ଟିସଙ୍କର ଆପତ୍ତି ଥିଲା ଯେ ପ୍ରସ୍ତାବରେ କେବଳ ଉଦୟନାଥବାବୁଙ୍କ ଘଟଣାକୁ ଲକ୍ଷ୍ୟ ନଥାଇ, ଓକିଲମାନଙ୍କ ପ୍ରତି କୋର୍ଟରେ

Digitized by srujanika@gmail.com

ଦେଖାଯାଉଥିବା ବ୍ୟବହାରର ପ୍ରତିରୋଧ ଉଲ୍ଲେଖ ଥିଲା । ଗୋଟିଏ ମୁଖ୍ୟ ଘଟଣାର ଆଲୋଚନାବେଳେ ପ୍ରାସଙ୍ଗିକ ଘଟଣାମାନ ବିଚାରକୁ ଆସିବା ସ୍ୱାଭାବିକ ବୋଲି ମୁଁ ଜଣାଇବାରେ ତାଙ୍କ କ୍ରୋଧ କିଛି ପ୍ରଶମିତ ହେଲା ବୋଧହୁଏ । ମୁଁ ତାଙ୍କୁ ପ୍ରସ୍ତାବ ଦେଲି ଯେ ସେ ଉଦୟନାଥବାବୁଙ୍କୁ ଡକାଇ ତାଙ୍କ ମନବେଦନା ହ୍ରାସ କରାନ୍ତୁ (ଅର୍ଥାତ୍ ଅପ୍ରତ୍ୟାଶିତ ଘଟଣା ପାଇଁ ଦୁଃଖ ପ୍ରକାଶ ) ଏବଂ ଓକିଲମାନଙ୍କ ପ୍ରତି ପ୍ରଦର୍ଶିତ ବ୍ୟବହାରରେ କଟୁକ୍ତି ପ୍ରକାଶ ତାଙ୍କର କଦାପି ଇଚ୍ଛାକୃତ ନୁହେଁ ବୋଲି ଖଣ୍ଡିଏ ଚିଠି ବାର ଆସୋସିଏନକୁ ଲେଖି ପଠାନ୍ତୁ । ସେ ହଁ ବା ନାହିଁ କଲେ ନାହିଁ । ପୀତାମ୍ବରବାବୁ ଓ ମୁଁ ଫେରିଆସିଲୁ ତାଙ୍କ ଘରୁ । ପାଞ୍ଚଦିନ ପରେ ଜାନୁଆରୀ ୧୫ ତାରିଖରେ ସେ ଗୋଟିଏ ଦୀର୍ଘପତ୍ର ସଭାପତିଙ୍କ ଉଦ୍ଦେଶ୍ୟରେ ଲେଖି ମୋ ପାଖକୁ ପଠାଇଲେ । ସେଥିରେ ଆମ ପ୍ରସ୍ତାବ ଓ ପ୍ରସ୍ତାବର ଭାଷାର ଅସଙ୍ଗତି ଦେଖାଇ ଲେଖିଲେ ଯେ କୋର୍ଟର ମର୍ଯ୍ୟାଦା ଦୃଷ୍ଟି ଓ ରକ୍ଷାପାଇଁ ତାଙ୍କର ସତତ ଚେଷ୍ଟା ଗୂଢ଼ ପ୍ରତୀୟମାନ ହେଉଥିବା ଭାଷା ଓ ବ୍ୟବହାରରେ ପ୍ରକାଶ ପାଇ ପାରୁଥାଏ ମାତ୍ର ତାଙ୍କର ଓକିଲମାନଙ୍କ ପ୍ରତି ସର୍ବଦା ସମ୍ମାନ ରହି ଆସିଅଛି ଓ ରହିବ । ଆଉ ମଧ ଉଲ୍ଲେଖ କରିଥିଲେ ଯେ ସେ ଉଦୟନାଥ ରଥଙ୍କ ସହିତ କଥାବାର୍ତ୍ତା କରି ଅପ୍ରୀତିକର ଘଟନାଟି ଅପ୍ରତ୍ୟାଶିତ ଭାବରେ ହୋଇଯାଇ ଥିବାର ବୁଝାଇ ଦେଇଅଛନ୍ତି ଏବଂ ସେ ଘଟନା ପାଇଁ ସେ ନିଜେ ଯେ ଦୁଃଖିତ ତାହା ଉନୟନାଥବାବୁ ହୃଦୟଙ୍ଗମ କରିଥିବା ତାଙ୍କର ବିଶ୍ୱାସ । ଚିଠିରେ ଉଦାର ଭାବର ଅଭାବ ଆମେ ଲକ୍ଷ୍ୟ କଲୁ । ଅଧିକନ୍ତୁ, ଚିଠିର ଅନ୍ୟଏକ ଅଂଶରେ ଆସୋସିଏସନର ପ୍ରସ୍ତାବ ଉପରେ, ସେ ଅବସର ଗ୍ରହଣ କରିବାକୁ ଛଅମାସରୁ ଅଧିକ ସମୟ ବାକୀ ନଥିବା ଦୃଷ୍ଟିରୁ କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିବା ଚିନ୍ତାରୁ ବିରତ ରହିଥିଲେ ବୋଲି ଉଲ୍ଲେଖ କରିଥିଲେ । ତାଙ୍କ ମାନ ସେ ରଖିବାକୁ ଚେଷ୍ଟା କଲେ, ଅନୁଦାର ଭାବରେ । ଆମେ ସେ ଚିଠିରେ ସନ୍ତୋଷ ପ୍ରକାଶ ବା ଆମ ପ୍ରତିବାଦ ପ୍ରସ୍ତାବର ପ୍ରତ୍ୟାହାର ବା ପୁନର୍ବିଚାରର ପ୍ରଶ୍ନ ଉଠିଲା ନାହିଁ । ଚିଫ୍ ଜଷ୍ଟିସ କ୍ଷୁବ୍ଧ ହୋଇ ରହିଲେ ।

ଏ ଘଟଣାର କିଛି ଦିନ ପରେ ରାଷ୍ଟ୍ରପତି ରାଜେନ୍ଦ୍ରପ୍ରସାଦ କଟକ ଆସିଥିଲେ । ତାଙ୍କର ଏକ ସମ୍ବର୍ଦ୍ଧନା ହାଇକୋର୍ଟ ତରଫରୁ ଚିଫ୍ ଜଷ୍ଟିସ ଆୟୋଜନ କଲେ ବାର ଆସୋସିଏସନ୍ ହଲରେ । ସେଥିରେ ଆମର ସହଯୋଗର ଅଭାବ ନଥିଲା । ସମ୍ବର୍ଦ୍ଧନା ପତ୍ରରେ ସେ (ଚିଫ୍ ଜଷ୍ଟିସ) କଂଗ୍ରେସ ଆନ୍ଦୋଳନରେ

Digitized by srujanika@gmail.com

ମହାତ୍ମାଗାନ୍ଧି, ରାଜେନ୍ଦ୍ରପ୍ରସାଦଙ୍କର ଜଣେ ଆଜ୍ଞାବହ କର୍ମୀ ରୂପେ କାର୍ଯ୍ୟ କରିଥିବାର ଉଲ୍ଲେଖକୁ ଆମ୍ଭେମାନେ ପସନ୍ଦ କରିନଥିଲୁ । ସେଥିପାଇଁ ସେ ପୁଣି କ୍ଷୁବ୍ଧ ହେଲେ । ଅଳ୍ପଦିନ ପରେ ତାଙ୍କର ସୁପ୍ରିମକୋର୍ଟ ଜଜ୍ ରୂପେ ନିଯୁକ୍ତି ମିଳିଲା । ଫଜଲ ଅଲି ସେତେବେଳେ ଓଡିଶାର ଗଭର୍ଣ୍ଣର ଥିଲେ । ତାଙ୍କଠାରୁ ପରେ ଶୁଣିଥିଲି ଯେ ବାର ଆସୋସିଏସନ୍‌ର ପ୍ରସ୍ତାବ ପରେ ଚିଫ୍ ଜଷ୍ଟିସ୍ ଜଗନ୍ନାଥ ଦାସ ଫଜଲ ଅଲିଙ୍କ ପାଖକୁ ଯାଇ ଇସ୍ତଫା ଦେବାର ଇଚ୍ଛା ପ୍ରକାଶ କରିଥିଲେ । ଫଜଲ ଅଲି ସେତେବେଳକୁ ତାଙ୍କର ସୁପ୍ରିମ କୋର୍ଟକୁ ଯିବା କଥା ଉଠିଥିବାରୁ ତାଙ୍କୁ ସେ ପ୍ରକାର ପଦକ୍ଷେପରୁ ବିରତ କରାଇ ଥିଲେ ।

ଓଡିଶା ହାଇକୋର୍ଟରୁ ପ୍ରଥମ ହୋଇ ଜଣେ ଜଜ୍ ସୁପ୍ରିମ କୋର୍ଟକୁ ଉନ୍ନିତ ହେଉଥିବାରେ ଯେଉଁ ବିପୁଳ ଆନନ୍ଦ କୋର୍ଟରେ, ଓକିଲମାନଙ୍କ ମଧ୍ୟରେ ପ୍ରକାଶିତ ହୋଇଥାଆନ୍ତା, ତାହାର ଅଭାବ ସମସ୍ତେ ଅନୁଭବ ଓ ଲକ୍ଷ୍ୟ କଲେ । ଜଗନ୍ନାଥ ଦାସ ନିଜେ ମଧ୍ୟ । କୋର୍ଟରେ ତାଙ୍କର ରୂଢ଼ଭାଷା ପ୍ରୟୋଗରେ ସେ ସମସ୍ତଙ୍କର ଶ୍ରଦ୍ଧା ହରାଇଲେ । ବାରଆସୋସିଏସନ୍‌ର ପ୍ରତିବାଦ ପ୍ରସ୍ତାବ ପ୍ରତ୍ୟାହୃତ ବା ପରିବର୍ତ୍ତିତ କରାଇବାକୁ ସେ ବ୍ରହ୍ମପୁରରୁ ଆସିଥିବା ଦୁଇଜଣ ଆଡଭୋକେଟଙ୍କ ମାଧ୍ୟମରେ ଚେଷ୍ଟା କରି ସଫଳ ହୋଇନଥିଲେ । ମୁଁ ଇଚ୍ଛା ଓ ଚେଷ୍ଟା କଲେ ତାହା ହୋଇପାରିବ ବୋଲି ପରୋକ୍ଷରେ ମତେ ଏକାଧିକବାର ଜଣାଇ ଦିଆଗଲା । ମୁଁ ଜାଣି ନ ଜାଣିଲାପରି ଚୁପ୍ ରହିଲି । ତାଙ୍କ ପତ୍ରର ଶେଷ ଅଂଶ ପ୍ରତ୍ୟାହାର କଲେ ବା ସେହି ଅନୁରୂପ ଖଣ୍ଡିଏ ପତ୍ର ଲେଖିଲେ, ବାରଆସୋସିଏସନ୍ ପଦକ୍ଷେପ ନେବ ବୋଲି ମୁଁ କହିବାରୁ ବ୍ରହ୍ମପୁରର ଦୁଇବନ୍ଧୁ ବୋଧହୁଏ ଅସନ୍ତୁଷ୍ଟ ହେଲେ । ହୁଏତ ଚିଫ୍ ଜଷ୍ଟିସଙ୍କୁ ସେ କଥା କହିଥିବେ । ସେ ଯାହାହେଉ, ସୁପ୍ରିମ କୋର୍ଟରେ ଜଗନ୍ନାଥ ଦାସ ଜଜ୍ ହୋଇ କୌଣସି ରୂଢ଼ ବ୍ୟବହାର ଦେଖାଇ ନଥିଲେ । ମୁଁ ଥରେ ଗୋଟିଏ କେସ୍‌ରେ ସୁପ୍ରିମ କୋର୍ଟକୁ ଯାଇଥିଲା ବେଳେ, ସେ ଶୁଣିପାରି ମତେ ଚେମ୍ବରକୁ ଡକାଇ ଅତି ସହୃଦୟତା ପ୍ରକାଶ କରିଥିଲେ । ତା ପରଦିନ ମୁଁ ମୋ ଆତ୍ମୁ ତାଙ୍କ ବାସଭବନକୁ ଗଲାବେଳେ, ସୁପ୍ରିମ କୋର୍ଟର ଅନ୍ୟତମ ଜଜ୍ ଭେଙ୍କଟରମଣ ଆୟାର ସେଠାରେ ଉପସ୍ଥିତ ଥିଲେ । ତାଙ୍କ ସମ୍ମୁଖରେ ମତେ ସାଧୁବାଦ ଓ ପ୍ରଶଂସାସୂଚକ ଏତେକଥା କହିଲେ ଯେ ମୁଁ ଅତ୍ୟନ୍ତ ଅପ୍ରତିଭ ବୋଧ କଲି । କଟକରେ ତାଙ୍କ ରୂଢ଼ତାର ପ୍ରତିବାଦ କରି ଆମେ ଅଧିକ ରୂଢ଼ତା ପ୍ରକାଶ କରିଥିଲୁ କି, ମୋ ମନରେ କିଛି ସମୟ ପାଇଁ ସନ୍ଦେହ ହେଲା । ସେ ବିଷୟ ସେ କିମ୍ବା ମୁଁ ଉଠାଇ ନ ଥିଲୁ ।

Digitized by srujanika@gmail.com

ଓଡିଶା ହାଇକୋର୍ଟର ଦୁର୍ଭାଗ୍ୟ, ପ୍ରଥମ ଚିଫ୍ ଜଷ୍ଟିସ ବୀରକିଶୋର ରାୟ ଅବସର ଗ୍ରହଣବେଳେ ଅନ୍ୟ ଜଜ୍‌ମାନଙ୍କ ଅନିଚ୍ଛା ଯୋଗୁ, କୋର୍ଟରେ ବିଦାୟ ସମ୍ଭାଷଣ ଯେପରି ଦେବାର କଥା ତାହା ହୋଇପାରି ନ ଥିଲା । ଦ୍ୱିତୀୟ ଚିଫ୍ ଜଷ୍ଟିସ ଜଗନ୍ନାଥ ଦାସ ଯିବାବେଳକୁ ବାରଆସୋସିଏନ୍ ସଙ୍ଗେ ଅପ୍ରୀତି ହେତୁ ଅନୁକୂଳ ପରିସ୍ଥିତିରେ ବ୍ୟାହତ ଘଟିଲା । ତାଙ୍କ ପରେ ଯେ ଚିଫ୍ ଜଷ୍ଟିସ ହେଲେ, ଲିଙ୍ଗରାଜ ପାଣିଗ୍ରାହୀ; ସେ ଅବସର ନେଲାବେଳେ ଅଧିକ ଦୁଃଖଦାୟକ ଘଟନାରେ କୌଣସି ସମ୍ବର୍ଦ୍ଧନା ଜ୍ଞାପନ କରାଯାଇ ନଥିଲା ।



Digitized by srujanika@gmail.com

# ପାଣିଗ୍ରାହୀଙ୍କ କ୍ରୋଧ

ଲିଙ୍ଗରାଜ ପାଣିଗ୍ରାହୀ ପ୍ରଥମରୁ ଆସ୍କାରେ କିଛି କାଳ ଓକାଲତି ବୃତ୍ତିକରି ବ୍ରହ୍ମପୁରକୁ ଆସିଲେ । ସୁଦୃଶ୍ୟ, ସୁପୁରୁଷ, ଗୌରକାନ୍ତି, ଲମ୍ବା ସ୍ୱାସ୍ଥ୍ୟବାନ । ଇଂରାଜୀରେ କହିପାରନ୍ତି ଖୁବ୍ ଭଲ । ଦେଶ ପ୍ରୀତି ଯୋଗୁ ଦେଶ ମିଶ୍ରଣ କାର୍ଯ୍ୟରେ ବହୁ ଅଂଶଗ୍ରହଣ କରୁଥିଲେ । ବ୍ରହ୍ମପୁରରେ ଓକାଲତିରେ ନାମ କଲେ । ସେଠାରେ ତେଲୁଗୁ ଓକିଲଙ୍କ ସଂଖ୍ୟା ଓ ଟେକ ଅଧିକ ଥିଲା । ଲିଙ୍ଗରାଜ ପାଣିଗ୍ରାହୀ, ମଧୁସୂଦନ ପାଣିଗ୍ରାହୀ, ଭୁବନେଶ୍ୱର ରଥ, ରାମକୃଷ୍ଣ ରଥ, ଦୀନବନ୍ଧୁ ଦାସ, ଗୋରାଚାନ୍ଦ ପଟନାୟକ, କେତେଜଣ ଓଡିଆ ଓକିଲ ଟକ୍କର ଦେଇ ନାଁ କରିଥିଲେ । ଉତ୍କଳ ସମ୍ମିଳନୀ କାର୍ଯ୍ୟରେ ସେ ସମସ୍ତେ ସକ୍ରିୟ ଭାବରେ ସଂପୃକ୍ତ ମଧ ଥିଲେ । ସେହି ସୂତ୍ରରେ ଆମ୍ଭମାନଙ୍କ ସଙ୍ଗେ ଘନିଷ୍ଠ ପରିଚୟ ଥାଏ । ବ୍ରହ୍ମପୁର ଜିଲ୍ଲା ଜଜ୍ କୋର୍ଟକୁ ମୁଁ ପ୍ରଥମ ଯେଉଁ କେସରେ ଯାଇଥିଲି, ସେଠାରେ ପ୍ରତିପକ୍ଷରେ ଲିଙ୍ଗରାଜବାବୁଙ୍କ ସମ୍ମୁଖୀନ ହୋଇଥିଲି । ସାକ୍ଷାତ ପରିଚୟ ସେଠାରେ ପ୍ରଥମ । ମୋ ସାଥିରେ ଥିଲେ ଲିଙ୍ଗରାଜବାବୁଙ୍କ ପାଖରେ ଜୁନିଅର ତାଲିମ ପାଇଥିବା ଅଭିମନ୍ୟୁବାବୁ । ସେ ମତେ ଲିଙ୍ଗରାଜବାବୁଙ୍କ ପରି ଜଣେ ଦକ୍ଷ ଓକିଲ ପ୍ରତିପକ୍ଷରେ ଲଢୁଥିବା ଏବଂ ଗୋରା ଜିଲ୍ଲା ଜଜ୍‌ଙ୍କ ପାଖେ ତାଙ୍କର ଖାତିର ଥିବା କହି ଆଗରୁ ସତର୍କ କରାଇଥିଲେ । କୋର୍ଟରେ ଶୁଣାଣିବେଳେ ମୁଁ ଯେତେଦୂର ସମ୍ଭବ ସମ୍ମାନ, ନମ୍ରତାର ସହିତ ଆମ ପକ୍ଷର ବକ୍ତବ୍ୟ ଉପସ୍ଥାପନ କରିବା ପରେ, ଲିଙ୍ଗରାଜବାବୁ ଆମ ପ୍ରତି ତାଚ୍ଛଲ୍ୟପୂର୍ଣ୍ଣ ଗୌରଚନ୍ଦ୍ରିକା ପରେ ତାଙ୍କ ଯୁକ୍ତି ବାଢ଼ିଥିଲେ । ଦୈବକ୍ରମେ, ଶୁଣାଣି ପରେ ପରେ ଜିଲ୍ଲା ଜଜ୍ ଆମ ସପକ୍ଷରେ ରାୟ ଡାକିଦେଲେ । ପୁରୀ ଉତ୍ତରପାର୍ଶ୍ୱ ମଠ ମହନ୍ତଙ୍କ ବିରୁଦ୍ଧରେ ଏକ ଫୌଜଦାରୀ ଅପିଲରେ ମୁଁ ହାଜର ହୋଇଥିଲି ଗଞ୍ଜାମ-ପୁରୀ ଜିଲ୍ଲାଜଜ୍ ରାମଲିଙ୍ଗମ ଆଇ.ସି.ଏସଙ୍କ କୋର୍ଟରେ, ପୁରୀଠାରେ । ମହନ୍ତଙ୍କ ତରଫରୁ ବୀରବାବୁ (ବୀରକିଶୋର ରାୟ) ଓ ଲିଙ୍ଗରାଜବାବୁ ଲଢୁଥିଲେ । କୋର୍ଟରେ ମୋ

Digitized by srujanika@gmail.com

ଯୌକ୍ତିକ ବକ୍ତୃତା ଜଜ୍ କେତେ ପସନ୍ଦ କଲେ କି ନାହିଁ, ବୀରବାବୁ ପ୍ରକାଶ୍ୟରେ ସେଠାରେ ତାରିଫ କରିବାରୁ ପାଣିଗ୍ରାହୀଙ୍କୁ ସୁଖ ନ ଲାଗିବା ଜଣା ପଡିଲା । ପାଟନା ହାଇକୋର୍ଟର ସର୍କିଟ ବେଞ୍ଚ କଟକକୁ ଆସୁଥିବା ବେଳେ ପାଣିଗ୍ରାହୀ ବେଳେ ବେଳେ କଟକ ଆସୁଥିଲେ । କେତେଥର ଆମ ଘରେ ମଧ୍ୟ ରହୁଥିଲେ । କଟକରେ ହାଇକୋର୍ଟ ହେବାର ଅଳ୍ପ ପୂର୍ବରୁ ବ୍ରହ୍ମପୁର ଛାଡି କଟକ ଆସିଲେ । ରାଷ୍ଟ୍ରପତିଶାସନ କାଳରେ ଆଡଭୋକେଟ୍ ଜେନେରାଲ ହେଲେ । ପରେ ହାଇକୋର୍ଟ ଆରମ୍ଭରୁ ଜଜ୍ ହେଲେ । ସେ ଆଡଭୋକେଟ୍ ଜେନେରାଲ ଥିବାରୁ ଜଗନ୍ନାଥ ଦାସଙ୍କ ଠାରୁ ସିନିଅର ବିବେଚିତ ହେବାପାଇଁ ଦାବୀ କରିଥିଲେ କିନ୍ତୁ କେନ୍ଦ୍ରସରକାର ଆଇନ ବୃତ୍ତି କାଳ ଅଧିକ ଥିବା ଦୃଷ୍ଟିରୁ ଦାସଙ୍କୁ ସିନିୟର ନିରୂପିତ କଲେ । ତେଣୁ ଜଗନ୍ନାଥ ଦାସଙ୍କ ପରେ ସେ ଚିଫ୍ ଜଷ୍ଟିସ ହେଲେ ।

କଟକିଆଙ୍କୁ ଖୁଣ୍ଟା ଦେଇପାରିଲେ ସେ ଖୁସି ମଣୁଥିଲେ । ତାଙ୍କର ଏକ ଭ୍ରାନ୍ତଧାରଣା ଥିଲା, କଟକିଆ ତାଙ୍କୁ ସୁଖ ପାଉ ନଥିଲେ । ବ୍ରହ୍ମପୁର ଛାଡି ସେ କଟକ ଆସିବା ପରେ ମିଳାମିଶାରେ ସେ ଭାବର ବୋଧହୁଏ ପରିବର୍ତ୍ତନ ହୋଇଥିବ । ମୋ ପ୍ରତି ସଦ୍‌ଭାବ, ଅନ୍ତତଃ ବାହାରକୁ, ଅବ୍ୟାହତ ଥାଏ । କିନ୍ତୁ ବନ୍ଧୁମେଳରେ ଥଟ୍ଟା ପରିହାସରେ ଦକ୍ଷିଣ ଲୋକଙ୍କ ଟେକ ରଖି କଥା କହନ୍ତି । ସେ ଲମ୍ବା ମଣିଷ, ତାଙ୍କର ଥାଏ ଫୋର୍ଡ ୧୦, ଛୋଟ ମଟର ଗାଡିଟିଏ । ମୁଁ ଛୋଟିଆ ମଣିଷ, ମୋର ଥାଏ ଖୁବ୍ ଲମ୍ବା ପଣ୍ଟିଆକ ଗାଡି । ସେ ଥଟ୍ଟା କରନ୍ତି, ସାନକୁ ବଡ ବଡକୁ ସାନ । ଜଜ୍ ହେବା ପରେ ବୀରବାବୁଙ୍କ ପ୍ରତି ଅସୂୟାଭାବ ତାଙ୍କର ହେଲା । ବୀରବାବୁ ଯେଉଁ ଦିନ ଅବସର ନେଲେ, ସେଦିନ ପାଣିଗ୍ରାହୀଙ୍କ ପାଇଁ କୋର୍ଟରେ କୌଣସି ଲିଷ୍ଟ ରଖିଲେ ନାହିଁ । ବୀରବାବୁ ଓ ଜଗନ୍ନାଥ ଦାସ ସେଦିନ କେବଳ ଅର୍ଡର ପାଇଁ ଅତି ଛୋଟ ଲିଷ୍ଟ କରି ଡିଭିଜନ ବେଞ୍ଚରେ ବସିଲେ । ଲିଷ୍ଟ ସରିବା ମାତ୍ରେ ଦାସେ ଉଠି ପଡିଲେ, ବାର ତରଫରୁ ବିଦାୟ ସମ୍ବର୍ଦ୍ଧନା ପୂର୍ବରୁ । ଅଗତ୍ୟା ବୀରବାବୁଙ୍କୁ ଉଠିଯିବାକୁ ହେଲା । ପରେ ସେ ଏକାକୀ କୋର୍ଟକୁ ଆସିଲେ, ବାର ତରଫରୁ ଆମେ ବିଦାୟ ସମ୍ବର୍ଦ୍ଧନା ଜଣାଇଲୁ, ଉଭୟ ପକ୍ଷରୁ ଶୃଙ୍ଖଳା ମୁହଁରେ । କାର୍ଯ୍ୟକାଳର ଶେଷ ଦିନରେ ସହକର୍ମୀ ଜଜ୍‌ମାନଙ୍କର ଏତାଦୃଶ ବ୍ୟବହାର ଆମ୍ଭମାନଙ୍କୁ ବ୍ୟଥିତ କଲା । ଆମେ ଚାହିଁଥିଲୁ ସବୁ ଜଜ୍ ଏକାଠି ଫୁଲ ବେଞ୍ଚରେ ବସି, ବିଦାୟୀ ପ୍ରଥମ ଚିଫ୍ ଜଷ୍ଟିସଙ୍କୁ ସସମ୍ମାନ ବିଦାୟ ସମ୍ବର୍ଦ୍ଧନା ଜ୍ଞାପନ କରିବାକୁ । ସେହି ସମୟରେ ଖଣ୍ଡିଏ ମୁଦ୍ରିତ ବେନାମୀ ପୁସ୍ତିକାରେ ବୀରବାବୁଙ୍କର ନାନା କୁତ୍ସା ରଚନା କରି ପ୍ରଚାର

Digitized by srujanika@gmail.com

କରାଯାଇଥିଲା । କାହା ଇଙ୍ଗିତ ବା ଉଦମ୍ୟରେ ତାହା ହେଲା, ସେ ବିଷୟରେ କେତେ ସନ୍ଦେହ ପ୍ରକାଶ ପାଇଲା । ବାରଆସୋସିଏନର ଏକ ଜରୁରୀ ମିଟିଙ୍ଗ ଡାକି ଏ ହୀନ ଅପଚେଷ୍ଟାର ନିନ୍ଦା କରାଯାଇଥିଲା । ମୁଁ ସମ୍ପାଦକ ଥିବାରୁ ତାହା କରାଇବା ମୋର କର୍ତ୍ତବ୍ୟ ମନେ କରିଥିଲି । ପାଣିଗ୍ରାହୀ ଏଥିରେ ମୋ ଉପରେ ରୁଷ୍ଟ ହେଲେ, ମୁଁ ଓପରେ ପଡି ଏହା କଲି ବୋଲି ।

ପାଣିଗ୍ରାହୀ ଚିଫ୍ ଜଷ୍ଟିସ ହେବା ପରେ ଓଡିଶା ଆଇନଜୀବୀ ସମ୍ମିଳନୀ କଟକରେ ବସାଇବାକୁ ଆମ୍ଭେମାନେ ଚେଷ୍ଟା କଲୁ । ଅଭ୍ୟର୍ଥନା ସମିତିର ମୁଁ ସମ୍ପାଦକ ରହିଲି । ବାରଆସୋସିଏସନ ହଲରେ ସମ୍ମିଳନୀ କରିବାକୁ ଆମେ ସ୍ଥିର କରିଥିଲୁ । ମୁଁ ଚିଫ୍ ଜଷ୍ଟିସ ପାଣିଗ୍ରାହୀଙ୍କୁ ସେ କଥା ଜଣାଇ ଅନୁମତି ଲୋଡିବାରେ ସେ ଅନିଚ୍ଛା ପ୍ରକାଶ କଲେ । ତାହା ପୂର୍ବରୁ ବାରଆସୋସିଏସନ ହଲରେ ଜୁଡିସିଆଲ ଅଫିସରମାନଙ୍କର ସଭା ଓ ରାତ୍ର ଭୋଜନ ପାଇଁ ସେ ଅନୁମତି ଦେଇଥିଲେ ଓ ନିଜେ ମଧ୍ୟ ଉପସ୍ଥିତ ହୋଇଥିଲେ । ସେହିକଥା ମୁଁ ଦର୍ଶାଇ ଆଇନଜୀବୀ ସମ୍ମିଳନୀ ପାଇଁ କାହିଁକି ଆପତ୍ତି ହେଉଛି, ମୁଁ ଯୁକ୍ତି କରିବାରୁ, ସେ ଦୁଇଘଟନା ସମାନ ନୁହେଁ ବୋଲି ସଂକ୍ଷେପରେ କହି ନିରବ ରହିଲେ । ଯଥାର୍ଥ ଉତ୍ତର ଅଭାବରେ ଭିତରେ ଭିତରେ ଅତି କ୍ରୋଧାନ୍ୱିତ ହୋଇଥିବାର ମୁଁ ପରେ ଜାଣିବାକୁ ପାଇଲି । ସମ୍ମିଳନୀ ଆମେ ନାରୀସଂଘ ସଦନରେ କଲୁ । ବାରଆସୋସିଏସନ୍ ହଲ ବ୍ୟବହାର ପାଇଁ ଅନୁମତି ନ ମିଳି ଥିବାରୁ ଦୁଃଖ ଓ ପ୍ରତିବାଦ ଜଣାଇ ପ୍ରସ୍ତାବ କରାଗଲା । ସିନିଅର ଆଡଭୋକେଟ୍ ସୁବାରାଓ ସେ ପ୍ରସ୍ତାବ ଆଗତ କରିଥିଲେ । ପାଣିଗ୍ରାହୀଙ୍କ ରାଗ ହେଲା, ମୁଁ କରାଇଛି । ଚତୁରତାର ସହିତ ମୋର ଅନିଷ୍ଟ କରିବା ପାଇଁ ବାଟ ଖୋଜିଲେ ।

୧୯୫୩/୫୪ ବେଳକୁ ମୋର ପ୍ରାକ୍ଟିସ୍ ବଢ଼ିଯାଇଥାଏ । ଅନେକ ସମୟରେ ଅନ୍ୟ ଓକିଲ ବନ୍ଧୁମାନେ ସେମାନଙ୍କ କେସ୍‌ରେ ମତେ ଆର୍ଗୁମେଣ୍ଟ କରିବାକୁ ନିଯୁକ୍ତ କରୁ ଥାଆନ୍ତି । ସେ ପ୍ରକାର ନିଯୁକ୍ତି ପାଇଁ ଓକାଲତନାମା ଗ୍ରହଣ ବାଧ୍ୟତାମୂଳକ ନଥିଲା । ମେମୋ ଅଫ ଆପିୟରେନ୍‌ସ (Memo of appearance) ଯଥେଷ୍ଟ । ତାହା ମଧ୍ୟ ନଦେଇ ମୂଳ ଓକାଲତନାମା ଗ୍ରହଣ କରିଥିବା ଓକିଲ କୋର୍ଟରେ ଉପସ୍ଥିତ ଥିଲେ, ଅନ୍ୟଜଣେ ଓକିଲ ସିନିଅର ଭାବେ ଆର୍ଗୁମେଣ୍ଟ କରିବାପାଇଁ ତାଙ୍କର ମୌଖିକ ସମ୍ମତି ଥିବା ବିବେଚିତ ହୁଏ । ଗୋଟିଏ କ୍ରିମିନାଲ ରିଭିଜନ ମଧୁସୂଦନ ମହାନ୍ତି ଓକିଲାତିନାମା ଗ୍ରହଣ କରି ହାଇକୋର୍ଟରେ ଦାଖଲ କରିଥିଲେ । ପାଣିଗ୍ରାହୀଙ୍କ

Digitized by srujanika@gmail.com

କୋର୍ଟରେ ତାହା ଆଡମିସନ ପାଇଁ ଉଠିଲା । ମଧୁବାବୁ ମତେ ତାହା ଆର୍ଗୁମେଣ୍ଟ କରିବାକୁ କହିବାରୁ, ସେ ଉପସ୍ଥିତ ଥାଇ ମୁଁ ଆର୍ଗୁମେଣ୍ଟ କରିଥିଲି ଏବଂ ତାହା ଆଡମିଟ୍ ହୋଇଥିଲା । ମଧୁବାବୁ ବା ତାଙ୍କ ମହକିଲ ମତେ ସେଥିପାଇଁ କୌଣସି ଫିସ ଦେଉନଥିଲେ । ମଧୁବାବୁଙ୍କ ଅନୁରୋଧରେ, ତାଙ୍କୁ ସହାୟତା କରିବାପାଇଁ ମୁଁ ସେପରି କରିଥିଲି । ଏପ୍ରକାର ସାହାଯ୍ୟ ମୁଁ ଅନେକଙ୍କ ପାଇଁ କରିଥାଏ । ମଧୁବାବୁଙ୍କ କେସ ଆଡମିଟ୍ ହେବାର କେତେଦିନ ପରେ ଓର ଖୋଜି ପାଣିଗ୍ରାହୀ ମୋ ବିରୁଦ୍ଧରେ ଗୋଟିଏ ଅଭିଯୋଗ ଆରମ୍ଭ କଲେ ଯେ, ବିନା ଓକାଲତନାମା ଗ୍ରହଣ କରି ମୁଁ ପକ୍ଷ ପାଇଁ କୋର୍ଟରେ ହାଜର ହୋଇ ଆର୍ଗୁମେଣ୍ଟ କରିବା ଦ୍ୱାରା ଆଇନ ବୃତ୍ତିର ଖିଲାପ କରିଛି ଏବଂ ତାହାର ବିଚାର ପାଇଁ ତିନିଜଣ ଓକିଲଙ୍କୁ ନେଇ ଗୋଟିଏ ଟ୍ରାଇବୁନାଲ ବସାଇଲେ । ବାଞ୍ଛାନିଧି ମହାପାତ୍ରଙ୍କୁ ତାହାର ଚେୟାରମ୍ୟାନ କଲେ । ଏକଥା ଭିତରେ ଭିତରେ ଗୁମୁରି ଗୁମୁରି କେତେ ଦିନଧରି ଚାଲିଥିବାର ମୁଁ କିଛି ସୁରାକ ପାଇ ନଥିଲି । ଅତି ଗୋପନୀୟତା ରକ୍ଷା କରାଯାଇଥିଲା ପାଣିଗ୍ରାହୀଙ୍କ ଦ୍ୱାରା । ମତେ ଅପମାନିତ ଓ ଦଣ୍ଡିତ କରିବା ପାଇଁ ଏହି ଚକ୍ରାନ୍ତ ଯେଉଁଦିନ ପ୍ରକାଶ ପାଇଲା, ବାରରେ ସମସ୍ତେ ଆଶ୍ଚର୍ଯ୍ୟ ଓ କ୍ଷୁବ୍ଧ ହେଲେ । ସ୍ୱାମୀ ବିଚିତ୍ରାନନ୍ଦ ଦାସ ମତେ କହିଲେ, ଚାଲ ପାଣିଗ୍ରାହୀଙ୍କ ପାଖକୁ ଯିବା, ଏ ଅଭିଯୋଗ ପତ୍ର ପ୍ରତ୍ୟାହାର କରିବାକୁ କହିବା । ମୁଁ ଉତ୍ତରରେ ନିବେଦନ କଲି, ଆପଣମାନଙ୍କ ପରି ବୟୋଜ୍ୟେଷ୍ଠ ଓକିଲ କାହାରିକୁ କିଛି ନ କହି କିମ୍ୱା ମତେ କିଛି ନ ପଚାରି ସେ (ପାଣିଗ୍ରାହୀ) ଯେତେବେଳେ ଅଭିଯୋଗ ପତ୍ର ପ୍ରସ୍ତୁତ କଲେ, ଟ୍ରାଇବୁନାଲ ଗଠନ କରି ସାରିଛନ୍ତି, ସେତେବେଳେ ତାଙ୍କ ପାଖକୁ ଯିବା ମାନେ ଖୋସାମତ କରିବା ବା କ୍ଷମାପ୍ରାର୍ଥନା କଲାପରି ହେବ । ମୋ ସମ୍ମାନ ଓ ସୁଖ୍ୟାତି ଆହତ ହୋଇଥିବାରୁ, ମୁଁ ଅତ୍ୟନ୍ତ କ୍ଷୁବ୍ଧ ହେଲି । ପ୍ରଶାସନିକ ବିଧିର ଛଳନା କରି, ଅତି ନଗଣ୍ୟ ଏକ ଘଟନାକୁ ବିକୃତ ରୂପ ଦେଇ ଏପରି ବିରୁଦ୍ଧାଚରଣ ଦୃଷ୍ଟାନ୍ତ ନ୍ୟାୟାଳୟରେ ଶୁଣା ନାହିଁ । ପରବର୍ତ୍ତୀ କାଳରେ ସୁପ୍ରିମ କୋର୍ଟର ବିଚାରପତି (ପରେ ସୁପ୍ରିମ କୋର୍ଟର ଚିଫ୍ ଜଷ୍ଟିସ୍) ବି.ପି.ସିହ୍ନା ଏହି ଘଟନାକୁ ଲକ୍ଷ୍ୟ କରି ପାଟନା ହାଇକୋର୍ଟର ଦୁଇଜଣ ଜଜ୍, କହ୍ନେୟା ସିଂହ ଓ ଅନନ୍ତ ସିଂହଙ୍କ ସମକ୍ଷରେ ଏହାକୁ ବିଚାରାଳୟର ଘୋର ଅପବ୍ୟବହାର ବୋଲି ବର୍ଣ୍ଣନା କରିଥିଲେ ।

ଟ୍ରାଇବୁନାଲ ବସିଲା । ମଧୁବାବୁଙ୍କ କେସ୍ ଯୋଗୁ ମୋର ଏପରି ଘଟିଥିବାରୁ, ସେ ଅତିଶୟ ଦୁଃଖିତ ହେଉଥାଆନ୍ତି । ଟ୍ରାଇବୁନାଲ ପାଖରେ ସେ

Digitized by srujanika@gmail.com

ସ୍ୱତଃପ୍ରବୃତ୍ତ ହୋଇ ଏକ ଆଫିଡେଭିଟ୍ ପତ୍ର ଦାଖଲ କଲେ ଯେ ପ୍ରଥମରୁ ସେ ଓକାଲତନାମା ଗ୍ରହଣ କରି ରିଭିଜନ ଫାଇଲ କରିଥିଲେ ଏବଂ ଆଡମିସନ ଦିନ ତାଙ୍କ ଅନୁରୋଧରେ ଓ କୋର୍ଟରେ ତାଙ୍କ ଉପସ୍ଥିତିରେ ମୁଁ ଆର୍ଗୁମେଣ୍ଟ କରିଥିଲି । ଓକାଲତନାମାର ସର୍ତ୍ତ ଅନୁଯାୟୀ ତାଙ୍କର ଅଧିକାର ଥିଲା; ଅନ୍ୟ ଓକିଲଙ୍କ ସାହାଯ୍ୟ ଆବଶ୍ୟକ ବୋଧକଲେ ନେଇପାରିବେ । ଯେତେ ଖୋଜିଲେ କଅଣ ହେବ, ଅଭିଯୋଗ ଭିତ୍ତିହୀନ ବୋଲି ଟ୍ରାଇବୁନାଲ ଲିପିବଦ୍ଧ କଲେ । ଆଇନତଃ, ଟ୍ରାଇବୁନାଲର ନିଷ୍ପତ୍ତି କୋର୍ଟରେ ବିଚାରକୁ ଆସିବାର କଥା । ପାଣିଗ୍ରାହୀ ତାକୁ ପକାଇ ରଖିଲେ ସେ ବିଦାୟ ହେବାଯାଏ । ତାଙ୍କ ପରେ, ନରସିଂହମ (R.L. Narsinham) ଚିଫ୍ ଜଷ୍ଟିସ ହେବାର ପ୍ରାୟ ବର୍ଷାଧିକ କାଳ ପରେ ତିନିଜଣ ଜଜ୍‌ଙ୍କୁ ନେଇ ଏକ ବେଞ୍ଚରେ ଟ୍ରାଇବୁନାଲର ନିଷ୍ପତ୍ତି ବିଚାରକୁ ଆସିଲା ଏବଂ ସେମାନେ ଏପରି ଏକ ବୃଥା ଅଭିଯୋଗ ଏତେଦିନ ଅଯଥା ପଡି ରହିଥିବାର ଉଲ୍ଲେଖ କରି ଟ୍ରାଇବୁନାଲର ନିଷ୍ପତ୍ତିକୁ କାଏମ ରଖି ଅଭିଯୋଗକୁ ରଦ୍ଦ କଲେ । ପାଣିଗ୍ରାହୀ ସେତେବେଳକୁ ବିଧାନସଭାରେ ଥାଆନ୍ତି, ମନ୍ତ୍ରୀ ମଧ ହୋଇଥିଲେ । ପରେ ବାଚସ୍ପତି ହେଲେ । ପାଣିଗ୍ରାହୀ ଚିଫ୍ ଜଷ୍ଟିସ କାର୍ଯ୍ୟ ଶେଷରେ ବିଦାୟ ହେଲାବେଳେ, ବାର ଆସୋସିଏସନ୍ ତରଫରୁ କୌଣସି ସମ୍ବର୍ଦ୍ଧନା ଦିଆଯାଇ ନଥିଲା; ନା କୋର୍ଟରେ, ନା ବାହାରେ ।

ଟ୍ରାଇବୁନାଲରେ ଓ ପରେ ଫୁଲବେଞ୍ଚରେ ଅଭିଯୋଗ ବିଚାରବେଳେ କୌଣସି ପ୍ରଖ୍ୟାତ ଓକିଲଙ୍କୁ ବାହାରୁ ଆଣିବା ପାଇଁ ମତେ ଅନେକ ଶୁଭେଚ୍ଛୁ ଓ ବନ୍ଧୁ ଲଗାଇଥିଲେ ଏବଂ ସେମାନେ ତାହାର ଆୟୋଜନ କରିବାକୁ ଚାହିଁଥିଲେ । ମୁଁ ରାଜି ହୋଇନଥିଲି । ବିପଦସଙ୍କୁଳ ଅବସ୍ଥାରେ ଏକାକୀ ଭଗବାନଙ୍କ ଉପରେ ନିର୍ଭର ରଖି ଠିଆ ହେବାକୁ ସ୍ଥିର କରିଥିଲି । ଯାହାକୁ ରଖିବେ ଅନନ୍ତ, କି କରିପାରେ ବଳବନ୍ତ ।



Digitized by srujanika@gmail.com

# ଗିରିଶିଖର

ସମୁଦ୍ରକୂଳିଆ ପୁରୀପାଖ ଶାସନ ଗାଁ ଲୋକ ମୁଁ । ପାହାଡ ବୋଇଲେ, ଖୋର୍ଦ୍ଧାର ବରୁଣେଇ ଦେଖିଥିଲି ପିଲାଦିନେ । ପଢ଼ିଲାବେଳେ ଶୁଣିଥିଲି ସାହେବ ମାନେ ଖରାଦିନେ ହିଲଷ୍ଟେସନକୁ ଯାଉଥିଲେ । ଦୂରରୁ ପର୍ବତ ସୁନ୍ଦର । ଦେଖିବାର ଇଚ୍ଛା ଥାଏ କିନ୍ତୁ ମିଳୁ ନଥାଏ । ଓକାଲତି ଆରମ୍ଭ ପରେ, ପ୍ରାୟ ପ୍ରତି ଛୁଟିରେ ପୂଜାବେଳେ ପିଲାଙ୍କୁ ନେଇ ଯାଏ ପୁରୀ ବା ଭୁବନେଶ୍ୱରକୁ । ନେଉଳ ଧାଉଡି କିଆବାଡ ଯାଏ । ଥରେ ଗଲୁ ରାଞ୍ଚି । ତା ପର ବର୍ଷ ଦାର୍ଜିଲିଂରେ ଦେଖିଲି ବରଫାବୃତ କାଞ୍ଚନଜଙ୍ଘାର ଅଭୁଲା ଦୃଶ୍ୟରାଜି । ସୁଦୂର ଉଟୃକାମଣ୍ଡରେ ପ୍ରାୟ ମାସେ କଟାଇବାର ଅନୁଭୂତି ଏବେ ବି ମୋ ସ୍ତ୍ରୀଙ୍କର ବାରମ୍ବାର ମନେ ପଡେ । ସେଠାକୁ କୋଏମ୍ବାଟୁରରୁ ଅଣଓସାରିଆ ସର୍ପିଣୀ ରେଲପଥରେ ଉଟିକୁ ବାହାରିଲାବେଳେ କଦଳୀପତ୍ରରେ ବନ୍ଧା ଉପମା କଫି ପ୍ରଥମେ ଖାଇଥିଲୁ । ଯଥାର୍ଥ ନୀଳଶୈଳ ଉଟକାମଣ୍ଡ । ସମଗ୍ର ପାହାଡ ଇୟୁକାଲିପଟସ୍‌ର ସୁନୀଳ ପତ୍ରରେ ଘନ ଆବୃତ୍ତ । Blue mountain ବୋଲି କହନ୍ତି । ସେଠାରେ ଟାଟା କମ୍ପାନୀଙ୍କର ଆର୍ମି ଅଫିସରଙ୍କ ଛୁଟି ରହଣି ପାଇଁ ମୁଖ୍ୟତଃ ଉଦ୍ଦିଷ୍ଟ ଏକ ହୋଟେଲ ଅଛି-Ratan Tata ହୋଟେଲ । ସ୍ଥାନ ଖାଲିଥିଲେ ଅସାମରିକ ବ୍ୟକ୍ତିଙ୍କୁ ଅନୁମତି ମିଳେ ପରିଚାଳକଙ୍କଠାରୁ । କଷ୍ଟରେ ଗୋଟିଏ ରୁମ୍ ପାଇଲୁ ଦିନ ଚାରିଟାବେଳକୁ । ସେହି ସନ୍ଧ୍ୟାରେ ହୋଟେଲରୁ ଜଣେ କାରରେ ୱେଲିଙ୍ଗଟନ ଯାଇଥାଆନ୍ତି । ହୋଟେଲ ମ୍ୟାନେଜର ଆମକୁ କହିଲେ ସେଥିରେ ଯାଇ ବୁଲି ଆସିବାକୁ । ସ୍ତ୍ରୀଙ୍କର ଆଗ୍ରହ ନଥିଲା । କହିବାରୁ ବାହାରିଲେ । ପାହାଡି ଶୀତ । ଗାଡିର ଚାରିଝରକା କାଚ ବନ୍ଦ । ଯେଉଁ ଇୟୁରୋପୀୟ ବ୍ୟକ୍ତିଙ୍କୁ ନେଇ ଗାଡି ଯାଉଥିଲା, ସେ ନିବୁଜ ଗାଡି ଭିତରେ ସିଗାରେଟ୍ ଫୁଙ୍କୁ ଥିଲେ ବେଶି, ଆଳାପ କରୁଥିଲେ କମ୍ । ସିଗାରେଟ୍ ଧୂଆଁରେ ମୋ ସ୍ତ୍ରୀଙ୍କୁ ଯେ ଅତି ଅଶ୍ୱସ୍ତି ଲାଗୁଥାଏ; ତାହା ସେ କହିଲେ ନାହିଁ କି ମୁଁ ଜାଣି ପାରିଲି ନାହିଁ । ସାୟାହ୍ନର ସ୍ୱଳ୍ପାଲୋକରେ

Digitized by srujanika@gmail.com

ପାହାଡର ନିମ୍ନଗାମୀ ବହୁ ବକ୍ର ରାସ୍ତାର ଦୃଶ୍ୟରେ ମୋ ମନ ମଜ୍ଜି ଥାଏ । କୋଡିଏ ମାଇଲ ତଳକୁ ୱେଲିଙ୍ଗଟନ । ଏକ ପ୍ରଖ୍ୟାତ ସାମରିକ ଅଫିସରଙ୍କ ପ୍ରଶିକ୍ଷଣ କଲେଜ । ରମଣୀୟ ସ୍ଥାନରେ ସାମରିକ ଶୃଙ୍ଖଳା ପରିପାଟିରେ ତିଆରି ବହୁ ଗୃହସ୍ଥଳୀ । ବୃକ୍ଷ ଅନ୍ତରାଳରେ ଚାରିଆଡେ ମିଟି ମିଟି ଆଲୁଅ । ରମଣୀୟତା ଅପୂର୍ବ । ସାହେବ ଓହ୍ଲାଇଗଲେ, ବିଦାୟ କରମର୍ଦ୍ଦନରେ । ଗାଡି ଫେରିଲା ପାହାଡ ଚଢ଼ାଣିରେ । ପାଖରେ ଦେଖିଲି ସ୍ତ୍ରୀ ପ୍ରାୟ ଅଚେତ । ଗାଡିରେ ଏକମାତ୍ର ଅପରିଚିତ ଡ୍ରାଇଭର । ଅର୍ଦ୍ଧଶାୟିତ ଅବସ୍ଥାରେ ସ୍ତ୍ରୀଙ୍କୁ ଧରି ବସିଥାଏ କୌଣସି ଜନବସତି ଅପେକ୍ଷାରେ । ଉଟିର ପ୍ରବେଶ ପଥରେ ପଚାରିଲି କୌଣସି ଡାକ୍ତରଙ୍କର ଠିକଣା । ପାହାଡର ଉଚ୍ଚତାମଣ୍ଡିତ ବାୟୁମଣ୍ଡଳ ଓ ଅଧିକ ଶୀତର ପ୍ରକୋପଯୋଗୁ ଆଗନ୍ତୁକ କାହାରି କାହାରି ଏପରି ଘଟେ ବୋଲି ସେ କହି ସ୍ତ୍ରୀଙ୍କୁ ଗାଡି ମଧରେ ପରୀକ୍ଷା କରି ବ୍ୟସ୍ତ ନ ହେବାର ସାନ୍ତ୍ୱନା ଦେଲେ । ଔଷଧ ନ ଦେଇ କହିଲେ ହୋଟେଲକୁ ଫେରି ଗରମ ପାଣିରେ ଅଳ୍ପ ବ୍ରାଣ୍ଡି ପିଇବାକୁ । ବ୍ରାଣ୍ଡିପିଇ କାୟା ଅଶୁଦ୍ଧ କରିବା ନୋହିଲା । ପରେ ଜାଣିଲି, ସିଗାରେଟ ଧୂଆଁରେ ଅସ୍ଥିର ହୋଇ ସେପରି ହୋଇଗଲେ । ସିଗାରେଟଖିଆ ସ୍ୱାମୀ ଘରେ ଚଳିଥିଲେ ଏପରି ଘଟିନଥାନ୍ତା ।

ମୃଦୁବର୍ଷଣରେ ସଦ୍ୟସ୍ନାତ ଇୟୁକାଲିପଟ୍‌ସ୍ ନୀଳପତ୍ର ରାଜିର ଅପୂର୍ବ ଚିକ୍‌କଣ ଶୋଭା, ସୂର୍ଯ୍ୟ କିରଣର କୋମଳ ଉତ୍ତାପ, ସ୍ନିଗ୍ଧ ସୌରଭଭରା ସରୁ ସରୁ ରାସ୍ତାରେ ବିହ୍ୱଳିତ ନରନାରୀଙ୍କର ମନ୍ଥର ପଦଚାରଣ ଦେଖୁ ଦେଖୁ ପ୍ରାୟ ମାସେ କଟିଗଲା । ଆମେ ମାଡ୍ରାସ, ଭାଇଜାଗରେ ଦୁଇ ଚାରିଦିନ ରହି କଟକ ଫେରିଲୁ । ଯେତେ ଜାଗାକୁ ଯାଇଛୁ, ଉଟିକଥା ସ୍ତ୍ରୀ ବହୁ ସମୟରେ ମନେ ପକାନ୍ତି ।

ସିମଳା ଯେଉଁ ଚାରିଥର ଯାଇଥିଲି, ଦୁଇଥରର କଥା ମନରେ ଲାଗିଛି । ଥରେ ସେଠାରେ ଦେଖାହେଲା ମାଳତୀ ଚୌଧୁରୀଙ୍କ (ମିନୁଦି) ଭାଇ.ପି.କେ. ସେନ୍‌ଙ୍କ ସଙ୍ଗେ । ସେ ଇନ୍‌କମଟିକସ କମିଶନର ହୋଇ ସେଠାକୁ ସଦ୍ୟ ଯାଇଥାନ୍ତି । ଗୋଟିଏ ଭଡାଘରେ ଏକାକୀ ଥାଆନ୍ତି । ଆସବାସ ପତ୍ର ଅପେକ୍ଷା ଆମ୍ବ ବେଶି ଥାଏ ଘରେ । ଆମ୍ବ ଖାଇ, ଗଳ୍ପ କରି ସାହିତ୍ୟଠୁ ସାମ୍ୟବାଦ ପର୍ଯ୍ୟନ୍ତ ପର୍ଯ୍ୟାଲୋଚନା କରାଗଲା ଦିନପରେ ଦିନ । ମୁଁ ହୋଟେଲରେ ଥାଏ । ମିନୁଦିଙ୍କ ଦୁଇ ଭାଇଙ୍କୁ ଦେଖିଛି, ଉଭୟେ ଆଦର୍ଶବାଦୀ, ଉଚ୍ଚ ଚାକିରୀରେ ଥିଲେ ସଂସାର ନିର୍ବାହ ପାଇଁ, ଚିନ୍ତା ଓ ମନ ଅନୁଧାବନ କରୁଥିଲା ମହାତ୍ମା ଗାନ୍ଧିଙ୍କର ଜନସେବା ତପସ୍ୟାକୁ । ନବଭାଇଙ୍କୁ (ନବଚୌଧୁରୀ)

Digitized by srujanika@gmail.com

ମିନୁଦି ବିବାହ ପୂର୍ବରୁ କିପରି ତାଙ୍କ ପରିବାରରେ ବିରୋଧର ସ୍ୱର ଉଠିଥିଲା ସେ କଥା ସେନ ମହାଶୟ ବିସ୍ତାରିଲାବେଳେ ଉଭୟଙ୍କର ହାସ୍ୟରୋଳ ଏବେ ମନେ ପଡୁଛି । ମିନୁଦିଙ୍କ ମା'ଙ୍କ ଆଖିରେ କଂଗ୍ରେସଧର୍ମୀ ନବଚୌଧୁରୀଙ୍କ ଗ୍ରାମ୍ୟ ଆଭିମୁଖ୍ୟ ତାଙ୍କ କନ୍ୟାଙ୍କ ଉପଯୋଗୀ ନଥିଲା । ଅଗ୍ନିପ୍ରଭା ଦୁହିତା ଦୃଢ଼ମନା । ଦୂରଦୃଷ୍ଟିରେ ମା ଝିଅ ଶେଷକୁ ଏକ ହେଲେ ।

ଆଉ ଥରେ ସିମଳାରେ ଥିଲାବେଳେ ପ୍ରାୟ ପ୍ରାଣଗତ ଅବସ୍ଥା ମୋର । ଶୀତ ପ୍ରବଳ ଥିଲା । ଅପରାହ୍ନରୁ ବର୍ଷା ପବନ ଆରମ୍ଭ ହେଲା । ହୋଟେଲ କୋଠରୀରେ ନିଆଁ ଜଳୁଥିଲା ଫାୟାର ପ୍ଲେସ୍‌ରେ । ମୁଁ ଖାଇସାରି ରାତିରେ କୋଠରୀକୁ ଆସିଲାବେଳେ ଅତି ଥଣ୍ଡା ବୋଧକଲି । ଝରକା ବନ୍ଦ କରି କିଛି ପଢୁ ପଢୁ, ଶୋଇପଡିଲି । ରାତି ଦୁଇଟା ବେଳକୁ ଶ୍ୱାସରୁଦ୍ଧ ହୋଇ ନିଦ ଭାଙ୍ଗିଲାବେଳକୁ ଘରସାରା ଧୂମ ମଣ୍ଡଳ, କିଛି ଦେଖା ଯାଉନଥାଏ । କଷ୍ଟରେ ଅଣ୍ଡାଳି ଦରଜା ଖୋଲି କରିଡରକୁ ଆସି ଅନେକ କ୍ଷଣ ନିଶ୍ଚଳ ହୋଇ ବସିରହିଲା ପରେ ଶୀତରେ କାତର ହୋଇ ହୋଟେଲ ପରିଚାରକଙ୍କ ସନ୍ଧାନ ପାଇଁ ବାରମ୍ବାର ବେଲ ମାରିବା ପରେ ଜଣେ ଆସି ମୋ ଦୁରବସ୍ଥାରେ ବ୍ୟଥିତ ହୋଇ ଅନ୍ୟ ଗୋଟିଏ କୋଠରୀରେ ରାତ୍ରିର ଅବଶିଷ୍ଟ ଅଂଶ କଟାଇବାର ବ୍ୟବସ୍ଥା କରିଦେଲେ । ପରଦିନ ଅନୁସନ୍ଧାନ ପରେ ଜଣାଗଲା, ଫାୟାର ପ୍ଲେସର ଚିମିନି ମଧ ଭାଗରେ ଭାଙ୍ଗି ଯାଇ ଧୂଆଁ ଯିବା ରାସ୍ତା ବନ୍ଦ ହୋଇଯାଇଥିଲା । ତେଣୁ ସମସ୍ତ ଧୂଆଁ ଘର ଭିତରେ ମୋର ଶ୍ୱାସରୋଧ କରୁଥିଲା । ଆଉ କିଛି ସମୟରେ ସଂପୂର୍ଣ୍ଣ ଶ୍ୱାସରୋଧ ଘଟିଥାଆନ୍ତା ।

ସିମଳା ଇଂରେଜ ଅମଳର ଏକ ପ୍ରଧାନ କୀର୍ତ୍ତି । ଶୀତପ୍ରଧାନ ଦେଶର ଗୋରାସାହେବ ମେମଙ୍କୁ ଉଦ୍ରପ୍ରସ୍ଥର ସୂର୍ଯ୍ୟଦାହରୁ ରକ୍ଷା ପାଇଁ ଏହାର ଆବିଷ୍କାର ଘଟିଥିଲା । ବଡଲାଟ ଓ ତାଙ୍କ କେନ୍ଦ୍ର ଦପ୍ତରର ଉଚ୍ଚ ପାହିଆ ସମସ୍ତଙ୍କର ଗ୍ରୀଷ୍ମ ଆବାସ ହେଲା ସିମଳା । ବର୍ଷକେ ପ୍ରାୟ ଛଅମାସ କଟିଯାଏ, ସିମଳା ଯିବା ଆସିବା ଆୟୋଜନ ଓ ସେଠାରେ ରହଣିରେ । ସେଠାର ଆଦବ କାଏଦା ସ୍ୱତନ୍ତ୍ର । ତାକୁ କହୁଥିଲେ Simla Culture । ରାଜକାର୍ଯ୍ୟ ଅପେକ୍ଷା ବେଶିହୁଏ ସାମାଜିକତା । ବ୍ରିଟେନର ଆଶାୟୀ ତରୁଣୀମାନେ ଆସନ୍ତି ପାତ୍ରଲାଭର ସମ୍ଭାବନାରେ । ସଫଳକାମ କାମିନୀ ପର୍ବତର ଶୀଳା ଗାତ୍ରରେ ନାମ ଖୋଦନ କରି ପର୍ବତରାଜ ଶିବକୁ ପାର୍ବତୀ ସ୍ମରଣରେ ଅର୍ଘ୍ୟ ନିବେଦନ କରିଥିବାର ନିଦର୍ଶନ ଏବେ ବି ଦେଖିବାକୁ ମିଳେ ।

Digitized by srujanika@gmail.com

ସନ୍ଧ୍ୟାରେ ସିମଳା ହୁଏ ଏକ ଆଲୋକ କୁଞ୍ଜ । ଲୁଚିରହିଥିବା ସବୁ ଘର ନିଶାଣ ଖୋଲେ କ୍ଷୀଣ ଦୀପ ରେଖାରେ । ପ୍ରାୟ ଅଦୃଶ୍ୟ ଜହ୍ନାଲୋକର ବାର୍ତ୍ତାବହ ସେମାନେ । ସିମଳା ଏବେ ହିମାଚଳ ପ୍ରଦେଶର ରାଜଧାନୀ, କୋଳାହଳମୟ କଳହ-ନିନାଦିତ ପର୍ବତନଗରୀ । ସ୍ୱପ୍ନ ବିଲମ୍ବିତ ପୂର୍ବର ସିମଳା ପାର୍ବତ୍ୟ ପଥଚାରୀର ପ୍ରୀତି ରୋମନ୍ଥନ ହୋଇ ରହିଛି ।

ମସୋରୀ ଅନ୍ୟ ଏକତୁଙ୍ଗ ଶିଖରୀ ଚୂଳ । ପାଦଦେଶରେ ସେନା ପ୍ରଶିକ୍ଷଣ ଡେରାଡୁନ୍ ଅବସରପ୍ରାପ୍ତ ଦର୍ପନିମିଳିତଙ୍କର ଶାନ୍ତି ଅନ୍ବେଷଣର ପ୍ରଶସ୍ତି ଗାଥା । କୋଡ଼ିଏ ବର୍ଷର ସଞ୍ଚିତ ଅଭିଳାଷ କୋଡ଼ିଏ ମାଇଲ ଉଚ୍ଚ ଆରୋହଣରେ, ପାଦରେ ନୁହେଁ, ଯାନରେ, ପୂରଣ ହେଲା । କୋଳାହଳ ବିବର୍ଜିତ କ୍ଷୁଦ୍ର ବାସପଲ୍ଲୀ । ଏବେ ବଢ଼ିଗଲାଣି । ଉଚ୍ଚ ପ୍ରଶାସନିକ ଅଫିସରଙ୍କ ତାଲିମ କେନ୍ଦ୍ର ସେଠାରେ ନିଭୃତ ନିବାସ ବାସନ୍ଦ କରିଦେଲାଣି । ତିନିଥର ଯାଇ ମସୋରୀର ପୂର୍ବ ମିସ୍‌ଟିସିଜିମ୍ ଅନୁଭବରେ ଆଣିବାର ସୁଯୋଗ ଜୀବନର ଏକ ଦୁର୍ଲ୍ଲଭ ଯୋଗ । ନିରୋଳା ଅଙ୍କାବଙ୍କା ରାସ୍ତା ଧାରରେ ଛାୟାଲୋକ ଏକ ଅସ୍ତନୀତ ପରିତୃପ୍ତ ଆଶାର ସୂଚନା ଦେଉଥାଏ । ଗଛମୂଳରେ ଘଣ୍ଟା ଘଣ୍ଟା ବସି ରହିଲେ କେହି ନିରବତା ଭଙ୍ଗ କରେ ନାହିଁ । ନିର୍ଜନତା ସେଠାରେ ମୁଖର ।

ଥରେ ଡେରାଡୁନ୍‌ରେ କେସ୍ ସମ୍ପର୍କରେ କାମ ଥିଲା । ପୂର୍ବର ସ୍ମୃତିକୁ ସତେଜ ରଖିବା ପାଇଁ ମସୋରୀରେ ବିଳମ୍ବିତ ଅପରାହ୍ନ ଓ ରାତ୍ରିଯାପନ କରୁଥାଏ, ପାଦ ଦେଶରେ କାର୍ଯ୍ୟ ପର୍ଯ୍ୟନ୍ତ । ଅନ୍ୟ ଏକ ଆକର୍ଷଣ ମୋର ଥିଲା । ମଝିଆ ପୁଅ ବସନ୍ତ ୧୯୫୦ ରୁ ୧୯୫୪ ପର୍ଯ୍ୟନ୍ତ ଡେରାଡୁନର ନ୍ୟାସନାଲ ଡିଫେନ୍‌ସ ଏକାଡେମୀରେ ପଢୁଥିଲା କାଡେଟ୍ ଭାବରେ । ଚାରିବର୍ଷ ପରେ ରାଷ୍ଟ୍ରୀୟ କମିଶନ ପାଇ ଆରମଡ କୋରରେ ଯୋଗଦେଲା । ତାକୁ ଦେଖିବାକୁ ଥରେ ଯାଇଥିଲି । ସେତେବେଳେ ବର୍ତ୍ତମାନର ଲବ୍ଧପ୍ରତିଷ୍ଠ ସାହିତ୍ୟିକ, ଗାଳ୍ପିକ ଦୁର୍ଗାମାଧବ ମିଶ୍ର, ଆଇ.ପି.ଏସ୍. ଗୋବିନ୍ଦଚନ୍ଦ୍ର ସେନାପତି, ଆଇ.ପି.ଏସ୍. ପ୍ରଭୃତି ସେଠାରେ ଟ୍ରେନିଙ୍ଗ ନେଉଥିବା ଓଡ଼ିଆ ଅଫିସର ସମସ୍ତଙ୍କୁ ଏକ ଚା' ବନ୍ଧୁମିଳନରେ ହ୍ୱାଇଟ୍ ହାଉସ ହୋଟେଲରେ ଭେଟିଥିଲି । ପ୍ରବାସରେ ସ୍ୱବାସୀ ମାନଙ୍କର ସୌହାର୍ଦ୍ଦ୍ୟ ବେଶି ମିଳେ । ସେଦିନର ଫଟୋଚିତ୍ର ଦୁର୍ଗାମାଧବବାବୁଙ୍କ ପାଖରେ ଅଛି, ସେ କହୁଥିଲେ ।

ନଇନିତାଲ ଶୈଳନିବାସ ଏକ ଭିନ୍ନ ରୂପ । ଗିରିକନ୍ଦରରେ ଜଳସ୍ଥଳର ଅଭିନବ ସଂଯୋଗ । ଶିଳ୍ପୀର ଖୋଦନରେ ନିର୍ମିତ ହେଲାପରି ଏକ ସ୍ୱପ୍ନଶାୟିତ ହ୍ରଦ

Digitized by srujanika@gmail.com

ଶିଖରକୁ ଛାୟା ରୂପେ ଅନ୍ତରରେ ଧାରଣ କରିଛି । ହ୍ରଦ ତୀରରେ ସ୍ୱଚ୍ଛ ଜନପଦ ସମତଳ ପ୍ରଦେଶର ଅନୁରୂପ । କେତେବେଳେ ହ୍ରଦ ଉପରେ, କେତେବେଳେ କୂଳରେ, ପାହାଡ ଉପରେ ତ ହୋଟେଲ କେନ୍ଦ୍ରରେ, ଏହିପରି ମାସେ କଟାଇଲୁ । ପ୍ରଥମେ ଆମେ ଯାଇଥିଲୁ ତିନିଜଣ । ସ୍ତ୍ରୀ, କନିଷ୍ଠା କନ୍ୟା ନିନି ଓ ମୁଁ । ପରେ ଯୋଗଦେଲେ ପୁଅ ବେବି, ବୋହୂ ନୁଙ୍କୁ, ନାତି ଗନି । ଉଦୟଶଙ୍କର, ଅମଳାଶଙ୍କରଙ୍କ ନୂପୁର ଧ୍ୱନି ଆଲମୋରାରୁ ଶୁଣୁଥିଲୁ ସ୍ୱପ୍ନରେ । ଆଲମୋରା ବାଟ ନଇନିତାଲ ଦେଇ । ରାଣୀକ୍ଷେତ ଅଳ୍ପ ଦୂରରେ ଆହୁରି ଉଚ୍ଚରେ । ସେଠାରେ ଅଛି ସେନା ଛାଉଣୀ । ବାଟରେ ଉଦ୍ୟାନମାଳା, ଫଳଗଛରେ ପୂର୍ଣ୍ଣ । ସ୍ୱାମୀ ଯୋଗାନନ୍ଦଙ୍କ ଅଘଟନ ଘଟନାବଳୀରେ ରାଣୀକ୍ଷେତ କଥା ପଢ଼ିଥିଲି । ବାଟରେ ଗଲାବେଳେ ସେହି ସ୍ଥାନ ଆଖି ଖୋଜୁଥାଏ । ଦିବ୍ୟ ଆଖିତ ନାହିଁ, ଚମଆଖି ହେଲେ ସାର୍ଥକ ହେଉ । ନଇନିତାଲ ସ୍ମୃତିରେ ଏକ ଶୋକ ଜଡିତ ରହିଛି । କଟକ ଫେରିବାର ଚାରିଦିନରେ ଗୋଦାବରୀଶବାବୁଙ୍କର (ପଣ୍ଡିତ ଗୋଦାବରୀଶ ମିଶ୍ର) ବିୟୋଗ ଘଟିଲା । ମୁଁ ଫେରିଲାବେଳକୁ ସେ ଡାକ୍ତରଖାନା ନର୍ସିଙ୍ଗ ହୋମରେ । ପାଖରେ ପହଞ୍ଚି ଦେହ ଆଉଁସୁଚି, ନୀଳକଣ୍ଠବାବୁ (ପଣ୍ଡିତ ନୀଳକଣ୍ଠ ଦାସ) ଆସିଲେ । ଦ୍ୱାରପାଖରେ ଠିଆହୋଇ ଚାହିଁଲେ । ଭିତରକୁ ଗଲେ ନାହିଁ । ମୁଁ ବାରନ୍ଦାକୁ ଆସିଲି । ସେ କହିଲେ, ବିମର୍ଷ ବଦନରେ, ମତେ କିଛି ଭଲ ଦିଶୁନି । ସେଇଆ ହେଲା । ପରଦିନ ସକାଳେ ମୁଦ୍ରିତ ନୟନରେ ଏକ ଉଜ୍ଜଳ କିରଣ ନିର୍ବାପିତ ହୋଇଗଲା । ତା ପୂର୍ବଦିନର ଶେଷ ପଦକ କଥା ମୁଁ ତାଙ୍କ ତୁଣ୍ଡରୁ ଶୁଣିଥିଲି—କଅଣ କରିବା । ଉତ୍ତର ମୋଠାରେ ନଥିଲା । ଉତ୍ତର ଅନ୍ୱେଷଣରେ ସେ ଗଲେ ପରପାରିକୁ । ଶେଷ ନିଃଶ୍ୱାସର ଅବ୍ୟବହିତ ପୂର୍ବରୁ ମିନି (ତାଙ୍କ ବୋହୂ, ମୋ କନ୍ୟା) କିଞ୍ଚିତ ଜଳ ତାଙ୍କୁ ଦେଇଥିଲା । ମୃତ୍ୟୁ ସମ୍ବାଦ ପାଇ ରାଧାନାଥବାବୁ (ରାଧାନାଥ ରଥ, ସମାଜ) ଆସିଲେ । ଅନ୍ୟମାନେ ରୁଣ୍ଡହେଲେ । ସେଠାରୁ ଶବାଧାର ନେଇ ଆମ୍ଭେମାନେ ସତ୍ୟବାଦୀ ବନବିଦ୍ୟାଳୟ ନିକଟସ୍ଥ ଗୋପବନ୍ଧୁଙ୍କ ସମାଧି କ୍ଷେତ୍ରକୁ ଗଲୁ । ନୀଳକଣ୍ଠବାବୁ, ଆଚାର୍ଯ୍ୟ ହରିହର ପ୍ରଭୃତିଙ୍କ ଉପସ୍ଥିତିରେ ଏକ ବିଚିତ୍ର ଜୀବନର ଶେଷ ଚିହ୍ନ ଚିତାଭସ୍ମରେ ପର୍ଯ୍ୟବସିତ ହେଲା ।



Digitized by srujanika@gmail.com

# କଟକ ଛାଡିଲି

ସୁଧୀରଞ୍ଜନ ଦାସ, ଦେଶବନ୍ଧୁ ଚିତ୍ତରଞ୍ଜନ ଦାସଙ୍କ ଭାଇ । ସେ କଲିକତାରେ ବାରିଷ୍ଟର ଥିଲାବେଳେ, ସେଠା ହାଇକୋର୍ଟର ଜଜ୍ ହେଲେ । ପରେ ସୁପ୍ରିମ କୋର୍ଟକୁ ଜଜ ହୋଇ ଦିଲ୍ଲୀ ଗଲେ । ପଣ୍ଡିତ ଗୋବିନ୍ଦବଲ୍ଲଭ ପନ୍ଥ କେନ୍ଦ୍ରରେ ସ୍ୱରାଷ୍ଟ୍ର ମନ୍ତ୍ରୀ ଥିଲାବେଳେ, ସେ ସୁପ୍ରିମ କୋର୍ଟର ଚିଫ୍ ଜଷ୍ଟିସ ହୋଇଥାଆନ୍ତି । ଓଡିଶାରେ ସେତେବେଳେ ମହତାବ ମୁଖ୍ୟମନ୍ତ୍ରୀ ଓ ସୁଖ୍ଥାଙ୍କର ଗଭର୍ଣ୍ଣର । ଦେଶରେ ସଂହତି ରକ୍ଷା ଦିଗରେ ଅନ୍ୟଏକ ପଦକ୍ଷେପ ସ୍ୱରୂପ ପନ୍ଥଜୀଙ୍କ ପରାମର୍ଶରେ କେନ୍ଦ୍ର କାବିନେଟରେ ସ୍ଥିର ହେଲା ଯେ ଦେଶର ହାଇକୋର୍ଟ ଗୁଡିକରେ ଏକ ତୃତୀୟାଂଶ ଜଜ୍ କ୍ରମଶଃ ଅନ୍ୟ ପ୍ରଦେଶବାସୀ ହେବେ । ଅଦଳବଦଳ କରି ନୁହେଁ । ପ୍ରଥମ ନିଯୁକ୍ତିବେଳୁ ସଂପୃକ୍ତ ବ୍ୟକ୍ତିଙ୍କ ସମ୍ମତି ସହିତ ଅନ୍ୟ ପ୍ରଦେଶର ହାଇକୋର୍ଟରେ ସ୍ଥାପିତ ହେଲେ, ଏହି ବିଧିରେ ସାଫଲ୍ୟ ଆସିବାର ସମ୍ଭାବନା ଥିଲା । ଏଥିପାଇଁ ଚିଫ୍ ଜଷ୍ଟିସ ସୁଧୀରଞ୍ଜନ ଦାସ ଏକ ସଫରରେ ବାହାରିଲେ, ଦେଶର ସବୁ ହାଇକୋର୍ଟକୁ । ଉଦ୍ଦେଶ୍ୟ, ସବୁ ହାଇକୋର୍ଟର ଓକିଲମାନଙ୍କ ମଧ୍ୟରୁ ବାଛି ଏକ ରାଷ୍ଟ୍ରୀୟ ତାଲିକା ପ୍ରସ୍ତୁତ ହେବ ଏବଂ କୌଣସି ହାଇକୋର୍ଟରେ ଜଜ୍ ନିଯୁକ୍ତି ଆବଶ୍ୟକ ହେଲେ ସେହି ତାଲିକାରୁ ଭିନ୍ନ ପ୍ରଦେଶବାସୀ ବାଛିବା ସହଜ ହେବ । ତଳ ଚାକିରୀରୁ ଯେ ପ୍ରମୋସନ ପାଇବେ ତାର ମଧ୍ୟ ଏକ ସମୂହ ତାଲିକା ହେଉଥାଏ । ଏସ୍.ଆର.ଦାସ ତାଙ୍କ ଗସ୍ତକ୍ରମରେ ୧୯୫୮ ରେ ଲାଟଙ୍କର ଅତିଥି ହେଲେ । ସେଠାରେ ୪/୫ ଜଣ ଓକିଲଙ୍କୁ ସାକ୍ଷାତ ପାଇଁ ଡାକିଲେ । ହାଇକୋର୍ଟରେ ଚିଫ୍ ଜଷ୍ଟିସଙ୍କ ପରାମର୍ଶରେ ଅବଶ୍ୟ ତାହା ହୋଇଥିବ । କୋର୍ଟରେ କାର୍ଯ୍ୟ ଚାଲିଥିବାବେଳେ ସେ ମଧ୍ୟ ଆସି ବସିଥିଲେ । ମୋର ସୁଆଲ ଚାଲିଥାଏ । ମୋ ସହିତ ସାକ୍ଷାତବେଳେ, ପ୍ରଥମରୁ କହିଲେ— ମୁଁ ଆପଣଙ୍କୁ ଚିଲିକା ମାଛମରା କେସ୍ ବେଳୁ ଜାଣେ । ବହୁ ଆଗରୁ ଆପଣ ଜଜ୍ ହେବା ଉଚିତ ଥିଲା । ଏବେ କେଉଁଠାକୁ ଯିବେ, କଲିକତା ନା

Digitized by srujanika@gmail.com

ପାଟନା ?— ଏପରି ସିଧା କଥାବାର୍ତ୍ତା ସବୁବେଳେ ସୁବିଧାଜନକ ନୁହେଁ । ଓଡିଶା ବାହାରକୁ ଜଜ ହୋଇ ଯିବା ପ୍ରଶ୍ନ ମନରେ ଆସିନଥିଲା । ମୋର ଇତଃସ୍ତତ ଭାବ ଦେଖି ସେ ତାଙ୍କର ସ୍ୱଭାବଜ ଅମାୟିକତାରେ ଗୋଟିଏ ପଦ କହି ମୋର ନିଃଶବ୍ଦ ସମ୍ମତି କାଢ଼ିନେଲେ । କହିଲେ I know, you have already made your pile. Now you should sacrifice for us. କଥାରେ ସତ୍ୟତା ଥାଉ ନଥାଉ, ସହୃଦୟତା ଥିଲା ପୂରାପୂରି । ପୂର୍ବରୁ ଦିଲ୍ଲୀରେ ସୁପ୍ରିମ କୋର୍ଟରେ ତାଙ୍କ ବେଞ୍ଚରେ ମୁଁ ଅଳ୍ପ କେତୋଟି କେସ୍ କରିଥିଲି । ଚିଲିକା ମତ୍ସ୍ୟଜୀବୀ ଆନନ୍ଦ ବେହେରାର ସରକାରଙ୍କର ବିରୁଦ୍ଧରେ ଏକ ଅପିଲ ୩/୪ ଦିନ ତାଙ୍କ ପାଖରେ ଚାଲିଥିଲା । ଅପର ପକ୍ଷରେ ଆଟର୍ଣ୍ଣି ଜେନେରାଲ ଶୀତଲବାଦ ଓ ସଲିସିଟର ଜେନେରାଲ ଦପ୍ତରୀ ଅତି ଦକ୍ଷତାର ସହିତ ମୋ ଯୁକ୍ତିର ପ୍ରତିରୋଧ କରୁଥାନ୍ତି । କେସ୍ ଶେଷରେ ସୁଧୀରଞ୍ଜନ ବେଞ୍ଚରୁ ମନ୍ତବ୍ୟ କଲେ—We have drawn only dry net. Anand Behera is having all the fish in Chilka. ମୃଦୁ ହାସ୍ୟରୋଳରେ କେସ୍‌ର ଯବନିକା ପଡିଲା । ସେହିଦିନୁ, ଦେଖାହେଲେ, ହାସ୍ୟ କୌତୁକରେ ସୁଧୀରଞ୍ଜନ ମତେ ପଚାରନ୍ତି ଚିଲିକାମାଛ ଖବର କଣ ? କଟକ ଆସିବା ଦିନ ତାଙ୍କ ସମ୍ବର୍ଦ୍ଧନାରେ ରାତ୍ରି ଭୋଜନରେ ସମସ୍ତଙ୍କ ଶୁଣିବାରେ ସେହି ପ୍ରଶ୍ନ କରିବାରୁ, କେସର ଇତିହାସ ମତେ ଆବୃତ୍ତି କରିବାକୁ ପଡିଥିଲା । କଟକରୁ ବିଦାୟ ପୂର୍ବରୁ ପୁଣି ଥରେ ଡାକି, କଲିକତା, ପାଟନା ମଧ୍ୟରୁ କେଉଁଠାକୁ ଯିବା ମୋର ଇଚ୍ଛା ପଚାରିବାରେ ମୁଁ ପାଟନାକୁ ମଗିଥିଲି । ପରେ ତାଙ୍କଠାରୁ ଜାଣିଥିଲି, ସେ ରାଷ୍ଟ୍ରୀୟ ସ୍ତରରେ ଯେଉଁ ପାନେଲ ପ୍ରସ୍ତୁତ କରିଥିଲେ ସେଥିରେ ମୋ ନାମ ପ୍ରଥମରେ ରଖିଥିଲେ । ପାଟନାରେ ଦୁଇଟି ସ୍ଥାନ ଖାଲି ଥିବାରୁ ପନ୍ଥଜୀଙ୍କ ନୂତନ ନୀତି ଅନୁଯାୟୀ ବିହାର ପ୍ରଦେଶ ବାହାରୁ ମତେ ସେଠାର ନିଯୁକ୍ତି ପାଇଁ ସେ ମନୋନୀତ କଲେ, ଓଡିଶାର ଗଭର୍ଣ୍ଣର, ମୁଖ୍ୟମନ୍ତ୍ରୀ ଓ ମୁଖ୍ୟ ବିଚାରପତିଙ୍କ ସମ୍ମତିକ୍ରମେ । ବିହାର ମୁଖ୍ୟ ବିଚାରପତି ସେତେବେଳେ ରାମସ୍ୱାମୀ(ଆଇ.ସି.ଏସ୍.), ମୁଖ୍ୟମନ୍ତ୍ରୀ ଶ୍ରୀକୃଷ୍ଣସିଂହ । ସେମାନଙ୍କର ସମ୍ମତି ଆସିଲା । ୧୯୫୮ ଦୋଳବେଳକୁ ରାଷ୍ଟ୍ରପତିଙ୍କ ସ୍ୱୀକୃତି ମିଳିଲା । ସେ ଖବର ଭୁବନେଶ୍ୱରକୁ ଅସରକାରୀ ଭାବେ ଆସିଲା । ସେଦିନ ପ୍ରଭାତ (ପୁଅ) ଭୁବନେଶ୍ୱରରେ ଖବର ଶୁଣି ତରତରରେ କଟକ ଫେରିଲା, କାଳେ ଖବର କଟକକୁ ଆସି ସାରିଥିବ । ଖବର ଆସିଲା ବର୍ଷେ ଚାରିମାସ ପରେ ୧୯୫୯ ଜୁଲାଇ ମାସରେ ରେଡିଓରେ । ପ୍ରଥମେ ଶୁଣିଲେ ଗତିବାବୁ

Digitized by srujanika@gmail.com

(ଗତିକୃଷ୍ଣ ମିଶ୍ର)। ସେ ଖବରଦେଲେ ଆମକୁ । ପରେ ଜଣାଗଲା ଏ ବିଳମ୍ବର କାରଣ । ପାଟନା ହାଇକୋର୍ଟରେ ଅନ୍ୟ ନିଯୁକ୍ତି ପାଇଁ ମୁଖ୍ୟମନ୍ତ୍ରୀ, ମୁଖ୍ୟ ବିଚାରପତି ଏକମତ ହୋଇ ନାମ ସ୍ଥିର କରୁ କରୁ ବର୍ଷେ ବିତିଗଲା । ଦୁଇଟି ନିଯୁକ୍ତି ଏକସଙ୍ଗେ ହେବାର ସ୍ଥିର ହୋଇଥିବାରୁ, ମୋ କଥା ଅଟକି ରହିଲା । ଦୁଇ ନିଯୁକ୍ତି ପ୍ରକାଶ ପାଇଲାବେଳେ, ମୋ ନିଯୁକ୍ତି ଆଗରୁ ସ୍ୱୀକୃତ ହୋଇ ରହିଥିବାରୁ ମୋର ସିନିଅରଟି ଉଲ୍ଲେଖିତ ରହିଲା ।

ମୁଁ ସେତେବେଳକୁ ଆଡଭୋକେଟ ଜେନେରାଲ ହୋଇଥାଏ । ତେଣୁ ପାଟନା ଯିବାକୁ ଆଉ ଇଚ୍ଛୁକ ନ ଥିଲି । ମହତାବବାବୁ ନିଯୁକ୍ତି ପ୍ରକାଶର କିଛିଦିନ ଆଗରୁ ମତେ ଜଣାଇବାରୁ ମୁଁ ତାଙ୍କୁ ବିଶେଷ ଅନୁରୋଧ କରିଥିଲି ଦିଲ୍ଲୀକୁ ଜଣାଇ ମତେ ନିଯୁକ୍ତିରୁ ଅବ୍ୟାହତି ଦେବାପାଇଁ କିମ୍ବା ମୋ ବଦଳରେ ଓଡିଶାରୁ ଅନ୍ୟ ଜଣକୁ ପାଟନା ପଠାଇବାର ବ୍ୟବସ୍ଥା କରିବାକୁ । ସେ ନାସ୍ତି କଲେ; ମତେ ବୁଝାଇଲେ, ମୁଁ ନ ଗଲେ, ଓଡିଶାରୁ ଆଉ ନିଯୁକ୍ତି ହୋଇପାରିବ ନାହିଁ । ଗୋଟିଏ ସୁଯୋଗ ଆମେ ହରାଇବା । ଯୁପକାଠରେତ ମୁଣ୍ଡ ଆଗରୁ ପୂରାଇ ସାରିଛି । ଫାସ ମୁକୁଳିଲା ନାହିଁ, ମନେ ପଡିଲା ୧୯୪୯ ମସିହାରେ ପାଟନା ହାଇକୋର୍ଟକୁ ଯିବାର ସ୍ଥିରତା କିପରି ପ୍ରତିହତ ହୋଇଥିଲା ଜଣକ ଉଦ୍ଦେଶ୍ୟମୂଳକ ନିରବତା ଯୋଗୁ । ସେଇ ପାଟନାର ଡାକରା ପୁଣି ଆସି ପହଞ୍ଚିଲା । ଯୋଗ ଏପରି ହେଲା ଯେ ମୋ ନିଯୁକ୍ତି ପରେ ଆଉ କୌଣସିଠାରେ ପ୍ରଦେଶ ବାହାରୁ କେହି ନିଆହେଲେ ନାହିଁ । ପଞ୍ଚଜୀଙ୍କ ନୀତିରେ ଡୋର ବନ୍ଧାହେଲା, ମୋରି ପରେ । ଚବିଶ ବର୍ଷ ପରେ ପୁଣି ସେହି ନୀତିର ଉଦ୍ଧାର ପାଇଁ ଚେଷ୍ଟା ଚାଲିଛି ଏବେ ।

ସେତେବେଳେ ଓଡିଶା ମନ୍ତ୍ରୀମଣ୍ଡଳରେ ଥିଲେ କେବଳ ତିନି ଜଣ ମହତାବବାବୁ, ବଲାଙ୍ଗୀର ମହାରାଜ ରାଜେନ୍ଦ୍ରନାରାୟଣ ସିଂହଦେଓ ଓ ରାଧାନାଥ ରଥ । ପାଟନା ନିଯୁକ୍ତି ପାଇଁ ଅଭିନନ୍ଦନ ଜଣେଇବା ଲାଗି ନାରୀସଂଘ ସଦନରେ ହାଇକୋର୍ଟର ସରକାରୀ ଆଡଭୋକେଟ୍ ଗଙ୍ଗାଧର ରଥ ଏକ ଚା'ଭୋଜି ସଭା କରାଇଥିଲେ । ତିନି ମନ୍ତ୍ରୀ ସେଥିରେ ଯୋଗଦେଇ ଶୁଭ ଇଚ୍ଛା ପ୍ରକାଶ କଲେ । ବାର ଲାଇବ୍ରେରୀରେ ଓ ଅନ୍ୟାନ୍ୟ ସ୍ଥାନରେ ଆଉ କେତେଗୁଡିଏ ଭୋଜି ଦିଆ ହୋଇଥିଲା । ସୁବୋଧବାବୁ, ବୀରବାବୁ ଯେତେବେଳେ ପାଟନା ଯାଇଥିଲେ, ସେତେବେଳେ ଓଡିଶା ପାଟନା ହାଇକୋର୍ଟ ଅଧୀନ ଥିଲା । ୧୯୪୮ ଠାରୁ ସ୍ୱତନ୍ତ୍ର

Digitized by srujanika@gmail.com

ହାଇକୋର୍ଟ ଓଡିଶାରେ ହୋଇଥିବାରୁ, ମୋର ନିଯୁକ୍ତିକୁ ଗୁରୁ ଦୃଷ୍ଟିରେ ଅଭିନନ୍ଦନ କରାଗଲା ।

କଲିକତାର ସତ୍ୟଭୁଷଣ ବର୍ମନ ଓଡିଶା ହାଇକୋର୍ଟରେ ନିଯୁକ୍ତି ପାଇଥିଲେ, ଅନ୍ୟଏକ ପରିସ୍ଥିତିରେ । ଲିଙ୍ଗରାଜ ପାଣିଗ୍ରାହୀ ସେତେବେଳେ ଲ ମିନିଷ୍ଟର ଥିଲେ । ନରସିଂହମ ମୁଖ୍ୟ ବିଚାରପତି । ଜଣେ ଗୋପବନ୍ଧୁ ମିଶ୍ର (ଜିଲ୍ଲା ଜଜ୍), ଆଉ ଜଣେ ରୁଦ୍ରପ୍ରସନ୍ନ ମିଶ୍ର (ଜିଲ୍ଲା ଜଜ୍)ଙ୍କୁ ହାଇକୋର୍ଟକୁ ଆଣିବା ପାଇଁ ଦୃଢ଼ମତ ଦେବାରୁ, ମୁଖ୍ୟମନ୍ତ୍ରୀ ତୃତୀୟ ପନ୍ଥା ବାହାର କରି ସୁପ୍ରିମକୋର୍ଟର ମୁଖ୍ୟ ବିଚାରପତି ସୁଧୀରଞ୍ଜନ ଦାସଙ୍କ ଉପରେ ନିଷ୍ପତ୍ତି ଭାର ଛାଡିଦେଲେ । ସେ ମହାଶୟ ବାରିଷ୍ଟରୀ କଲାବେଳେ ତାଙ୍କର ଜୁନିଅର ଭାବେ କାର୍ଯ୍ୟ କରିଥିବା ସତ୍ୟଭୂଷଣ ବର୍ମନଙ୍କ ନାମ ପ୍ରସ୍ତାବ କରିଥିଲେ ଓ ସେଥିରେ ଓଡିଶାର ଲ ମନ୍ତ୍ରୀ ଓ ମୁଖ୍ୟ ବିଚାରପତି ରାଜି ହୋଇଗଲେ । ଘଇତା ପଛକେ ମରୁ, ସଉତୁଣୀ ରାଣ୍ଡ ହେଉ । ଓଡିଶାର କେହି ଜଣକ ନିଯୁକ୍ତି କାଟ ଖାଇଗଲା । ବଡବଡିଆଙ୍କ ବିଚାର ସମୟେ ସମୟେ ଏପରି ହୁଏ !

ଏତେଲୋକଙ୍କର ଶୁଭ ଇଚ୍ଛା ମୋ ପ୍ରତି ଥିଲା, ପାଟନା ବାହାରିବା ପୂର୍ବରୁ ମୁଁ ଜାଣିନଥିଲି । ମୁଖ୍ୟ ବିଚାରପତି ନରସିଂହମ ସେତେବେଳେ କଟକରୁ ଅନୁପସ୍ଥିତ ଥିଲେ । ମାଡ୍ରାସରୁ ଚିଠି ଲେଖିଲେ । ଇୟୁନିଭରସିଟି ଓ ଅନ୍ୟ ଅନେକ ଗୁଡିଏ ଅନୁଷ୍ଠାନ ସହିତ ମୁଁ ସକ୍ରିୟ ଭାବେ ସଂପୃକ୍ତ ଥିବାରୁ ସେମାନେ ସ୍ୱତନ୍ତ୍ରଭାବେ ଶୁଭ ଇଚ୍ଛା ଜ୍ଞାପନର ଆୟୋଜନ କରିବାରେ, ଏକପ୍ରକାର ରାଜନୈତିକ ହିଲ୍ଲୋଳ ପରି ଜଣାଗଲା । ଅପ୍ରତିଭ ଲାଗିଲେ ସୁଦ୍ଧା, ମୁଁ ନାଚାର । ଜୁଲାଇ ୨୨ ତାରିଖ ରବିବାର (୧୯୫୯) ରାତି ପୁରୀ ଏକ୍ସପ୍ରେସ୍ ଗାଡିରେ କଟକ ଛାଡିଲି ବହୁ ବନ୍ଧୁ ଶୁଭେଚ୍ଛୁଙ୍କଠାରୁ ଷ୍ଟେସନ୍‌ରେ ବିଦାୟ ନେଇ । ପୁଅ ଅନନ୍ତ ରହିଲା ଏକାକୀ କଟକ ଘରେ । ବଡପୁଅ ପ୍ରଭାତ, ତା ସ୍ତ୍ରୀ ଓ ମଝିଆ ପୁଅ ବସନ୍ତ ସେତେବେଳେ ଯାଇଥାନ୍ତି ଇଉରୋପ ଭ୍ରମଣରେ ।



Digitized by srujanika@gmail.com

# ନୂତନ ଅଧ୍ୟାୟ

ପାଟନା ଯିବାକୁ ନାରାଜ ଥିଲି । ଗଲା ପରେ ମନ ବଦଳିଗଲା ପୂରାପୂରି । ଜୁଲାଇ ୨୪ ତାରିଖ ମଙ୍ଗଳବାର (୧୯୫୯) ସକାଳେ ପହଞ୍ଚି ଦେଖେ ତ ଷ୍ଟେଟ୍‌ସମାନ୍ କାଗଜରେ ପ୍ରଥମ ପୃଷ୍ଠାରେ ଫଟୋ ସହିତ ମୋ ନିଯୁକ୍ତି ପ୍ରକାଶ ପାଇଛି । ସ୍ଥାନୀୟ ଇଂରେଜୀ ଦୁଇ କାଗଜରେ ଓ ହିନ୍ଦୀ କାଗଜରେ ମଧ୍ୟ ଛବି ସହ ବାହାରିଛି, ମୁଁ ସେଦିନ ଯୋଗଦେବାର ଖବର । ମୋ ସଙ୍ଗେ ଅନ୍ୟ ଜଣେ (ତାରକେଶ୍ୱର ନାଥ) ପାଟନାର ଓକିଲ ଯେ ନିଯୁକ୍ତି ପାଇଲେ ଓ ଶପଥ ନେଲେ, ତାଙ୍କ ସମ୍ବାଦ କାହିଁକି ଗୁରୁତ୍ୱ ଲାଭ କଲା ନାହିଁ ସ୍ଥାନୀୟ ବା ବାହାରର ଖବର କାଗଜରେ, ବୁଝିପାରିଲି ନାହିଁ । ପ୍ରଥମ ଦିନ କୋର୍ଟରେ ମାମୁଲି ସମ୍ବର୍ଦ୍ଧନା ପରିବର୍ତ୍ତେ ଏତେ ଉଚ୍ଛ୍ୱସିତ ଅଭିନନ୍ଦନ ମିଳିଲା ଯେ ମୁଁ ଆଶ୍ଚର୍ଯ୍ୟ ହେଲି । ଉତ୍ତରରେ ମୁଁ ମଗଧ ଓ କଳିଙ୍ଗର ଅତୀତ ନିଗୂଢ଼ ସମ୍ବନ୍ଧର କଥା ଉଲ୍ଲେଖ କରିବାରେ ମୋର ନିଯୁକ୍ତି ଏକ ପରଂପରାର ନୂତନ ଅଭିଲେଖ ରୂପେ ଆପେ ଆପେ ଗୃହୀତ ହୋଇଗଲା ପରି ମନେ ହେଲା । ଘଟନାକ୍ରମେ ପ୍ରଥମ ଦିନର ସନ୍ଧ୍ୟାରେ ଏକ ସାନ୍ଧ୍ୟ ଭୋଜିରେ ବିହାରର ରାଜ୍ୟପାଳ ଜାକୀର ହୋସେନ ଓ ମୁଖ୍ୟମନ୍ତ୍ରୀ ଶ୍ରୀକୃଷ୍ଣ ସିଂହ, ମୁଁ ଅନ୍ୟ ପ୍ରଦେଶରୁ ଯାଇଥିବାରୁ, ସମସ୍ତଙ୍କ ସମକ୍ଷରେ ମତେ ଅଧିକ ଶିଷ୍ଟାଚାର ପ୍ରଦର୍ଶନ କରିବାରେ, ଅନ୍ୟମାନଙ୍କର ସଦୟ ଦୃଷ୍ଟି ଓ ସହୃଦୟତା ମୋ ପ୍ରତି ବୋଧହୁଏ ମାତ୍ରାଧିକ୍ୟ ଗ୍ରହଣ କଲା । ନୂତନ ସ୍ଥାନରେ ନିଯୁକ୍ତିର ପ୍ରଥମ ଦିନରେ ଏତେ ବିଶିଷ୍ଟ ଲୋକଙ୍କର ସଦୟ ପରିଚିତି ଏକ ଅପ୍ରତ୍ୟାଶିତ — ଭଗବାନଙ୍କ ଦୟାର ନିଦର୍ଶନ ।

ପ୍ରଥମ ଦିନର ଆଉ ଦୁଇଟି ଘଟନା ମତେ ସ୍ପର୍ଶ କଲା । ସୁପ୍ରିମ କୋର୍ଟର ବିଚାରପତି ଭୁବନେଶ୍ୱରୀ ପ୍ରସାଦ ସିହ୍ନା (B.P.Sinha) ଯେ ଅଳ୍ପ ଦିନ ପରେ ଭାରତର ମୁଖ୍ୟ ବିଚାରପତି ହେଲେ, ସେଦିନ ପାଟନାରେ ଥିଲେ, ସୁପ୍ରିମ କୋର୍ଟର ଗ୍ରୀଷ୍ମ ଅବକାଶରେ । ଦୟା ପରବଶ ହୋଇ ସେ ଆସି ପହଞ୍ଚିଲେ ସର୍କିଟ ହାଉସରେ

Digitized by srujanika@gmail.com

ମତେ ସଙ୍ଖୋଳିବାକୁ । ପାଟନା ଲ କଲେଜରେ ମୁଁ ତାଙ୍କର ଛାତ୍ର ଥିଲି । ସେହି ସମୟରେ ତାଙ୍କର ସଦୟ ବ୍ୟବହାର ଲାଭ କରିଥିଲି । ଆମେ ପ୍ରଥମେ ସର୍କିଟ ହାଉସର ଦୁଇଟି ଘରେ ରହିଥିଲୁ । କିଛିଦିନ ପରେ ୧୪ ନମ୍ବର ବେଲି ରୋଡ କୋଠିକୁ ଗଲୁ । ପ୍ରକାଣ୍ଡ ଘର, ବଡ ହତା । ସେ ଘରେ ଆଗରୁ ସାର୍ ଖାଜା ମହମ୍ମଦ ନୁର ରହୁଥିଲେ । ଓପରତାଲା ବାରନ୍ଦାରେ ପରଦାସୀନ ବେଗମଙ୍କ ସୁବିଧା ପାଇଁ ବାହାର ଖିଲାନ ସବୁ ପ୍ରାୟ ନିବୁଜ ରହିଥିଲା । ସେତକ ଆମେ ଖୋଲାଇ ଦେବାରୁ ପ୍ରଶସ୍ତ ବାରନ୍ଦା ଅତି ଆରାମଦାୟକ ହୋଇଗଲା । ମୁଖ୍ୟ ଘରେ ଷୋହଳ ବଖରା ଘର । ତାଛଡା ଆଉ ଆଠବଖରା ବାହାର ଘର । ପାଟନା ରାଜଧାନୀ ନିର୍ମାଣ ପରେ ଏ ଘର ଲାଟସାହେବଙ୍କ ଏକ୍ସକୁଟିଭ କାଉନସିଲ ମେମ୍ବରଙ୍କର ବାସଗୃହ ଥିଲା । ସେତେବେଳେ ମଟରକାର, ବିଜୁଳି, ପାଣିକଳ ନଥିଲା । ତେଣୁ ବହୁ ପରିଜନ, ଘୋଡାଗାଡି, କୋଚଓ୍ୟାନ, ସଇସ, ପାଣିବୁହାଳି, ମେହେନ୍ତର, ଧୋବା, ପଙ୍ଖା ଟଣାବାଲା,ଗାଈ ଓ ଗାଈଆଳ, ସମସ୍ତଙ୍କର ବସବାସର ବ୍ୟବସ୍ଥା ଥିଲା । ରହୁଥିଲେ ମୁନିବ, ମୁନିବିଆଣୀ ଦୁଇଜଣ । ଆମେ ସର୍କିଟ ହାଉସରେ ଥିଲାବେଳେ ବି.ପି.ସିହ୍ନା ଆସି ଦେଖିଲେ, ଆମ ଠାକୁର ବସିଛନ୍ତି ଶୋଇବା ଘର କୋଣରେ । ଟିକିଏ ବିସ୍ମିତ ହେଲେ ବୋଧହୁଏ, ଓପରକୁ ସାହେବିଆନା; ଭିତରେ ପୁରୁଣାକାଳିଆ ଦେଖି । କିଛି ସମୟ ମୁରବିଆନା ଆଳାପ କରି ବିଦାୟ ନେଲେ । ଆମେ କୃତଜ୍ଞ ବୋଧ କଲୁ ତାଙ୍କ ବ୍ୟବହାରରେ । ତାଙ୍କ ପଛକୁ ଆସିଲେ ଆଉ ଜଣେ, ସାର୍ ଆଶୁତୋଷ ମୁଖାର୍ଜୀଙ୍କ ପୁତ୍ର ରମାପ୍ରସାଦ ମୁଖାର୍ଜୀ । ସେ କଲିକତା ହାଇକୋର୍ଟ ଜଜ ପଦରୁ ଅବସର ନେଇ ଇଲେକସନ୍ ଟ୍ରାଇବୁନାଲରେ ପାଟନା ଆସିଥାନ୍ତି । ଖବର କାଗଜରୁ ମୁଁ ଆସିଥିବା ଜାଣି ଆସିଥିଲେ । ମୋର ପରିଚୟ ଆଗରୁ ନଥିଲା । ବହୁ ସମୟ ରହିଲେ, ଦୁଇଟି ଆମ୍ବ ଦେଇଗଲେ । ମୋ ସାନଝିଅ ନିନି (ବିଚିତ୍ରା) ଓ ନାତି ରନି (ପ୍ରଦୀପ) କୁ କଥା ଓ ଗେଲରେ ଅସ୍ତବ୍ୟସ୍ତ କରିପକାଇଲେ । Indian Law Institute ଓ ବିଶ୍ୱ ହିନ୍ଦୁ ପରିଷଦରେ ଆମେ ଉଭୟ ସକ୍ରିୟ ସହଯୋଗରେ ଏକତ୍ର ହେବାର ସୁଯୋଗ ଆସିଲା, ପରେ ।

ପ୍ରଥମ ଦିନର ଅନ୍ୟ ଏକ ଘଟନା ପାଟନା ଅଧିବାସୀ ଦୁଇଜଣ ବିଶିଷ୍ଟ ଓଡିଆଙ୍କ ସଙ୍ଗେ ଘନିଷ୍ଠତାର ଆରମ୍ଭ । ଚାକିରୀ ନ କରି, ଘରୋଇ ପ୍ରାକ୍ଟିସ କରୁଥିଲେ, ଡାକ୍ତର ମହେନ୍ଦ୍ର ପଟ୍ଟନାୟକ । ଖଡିଆଳର ଲୋକ । ସେ ଆସି ପରିଚୟ ଦେଲେ ।

Digitized by srujanika@gmail.com

ପାଟନା ମେଡିକାଲ କଲେଜରେ ସେ ନାମ ଲେଖାଇଲାବେଳେ ମୁଁ ସାହାଯ୍ୟ କରିଥିବାର କହିଲେ । ସେ ଓ ତାଙ୍କ ସ୍ତ୍ରୀ ଆମର ଅତି ଅନ୍ତରଙ୍ଗ ହେଲେ । ମୋ ସ୍ତ୍ରୀ ହେଲେ ତାଙ୍କର ନାନୀ ଓ ମୁଁ ହେଲି ଭାଇନା । ପାଟନା ଆମେ ଛାଡ଼ିଲୁ କିନ୍ତୁ ଅନ୍ତରଙ୍ଗତା ଅକ୍ଷତ ରହିଛି । ସ୍ୱାମୀ ସ୍ତ୍ରୀ ଉଭୟ ଧର୍ମପ୍ରାଣ, ଠାକୁରଙ୍କ ଉପରେ ପୂରା ନିର୍ଭର । କଷ୍ଟସାଧ ରୋଗ ଓ ରୋଗୀର ଚିକିତ୍ସାରେ ଠାକୁରଙ୍କ ଫୁଲ ତାଙ୍କ ପ୍ରେସକ୍ରିପସନ୍ ଉପରେ ରହେ । ସୁଦକ୍ଷ ଡାକ୍ତର, ସହୃଦୟ ବନ୍ଧୁ । ଗୋଟିଏ ଝିଅ ଏବେ ଡାକ୍ତର ହୋଇ ଶ୍ରୀନଗରରେ ଅଛି । ଅନ୍ୟ ଝିଅ ସିକାଗୋ ବିଶ୍ୱବିଦ୍ୟାଳୟରେ ଭୂଗୋଳ ବିଦ୍ୟାରେ ଗବେଷଣାରତ । କନିଷ୍ଠ ଝିଅଟି ତାଙ୍କର ଏବେ ବିବାହ ହୋଇଛି, ଅବସରପ୍ରାପ୍ତ ଅଧାପକ ଓ ପ୍ରଶାସନିକ ହରିବନ୍ଧୁ ମହାନ୍ତିଙ୍କ ସୈନ୍ୟବାହିନୀ ଅଫିସର ପୁଅକୁ । ମହେନ୍ଦ୍ରବାବୁଙ୍କ ଏକମାତ୍ର ପୁତ୍ର କମ୍ପାନୀ ଚାକିରୀରେ ଲବ୍ଧପ୍ରତିଷ୍ଠ । ତାଙ୍କ ସ୍ତ୍ରୀ ପ୍ରେମ, ପ୍ରଖ୍ୟାତ ନାରୀକବି ଅନ୍ନପୂର୍ଣ୍ଣାଙ୍କ କନ୍ୟା; ଅବସରପ୍ରାପ୍ତ ସ୍କୁଲ ପରିଦର୍ଶିକା ମନୋରମା ପଟ୍ଟନାୟକଙ୍କ କନିଷ୍ଠା ଭଗିନୀ । ମହେନ୍ଦ୍ରବାବୁ ପରଲୋକ କରିଛନ୍ତି ୧୯୮୫ ମଧ ଭାଗରେ ।

ଦ୍ୱିତୀୟ ପାଟନା ଅଧିବାସୀ ଯାହାଙ୍କ ଆଗମନରେ ଆମେ ସେଦିନ ଅନୁଗୃହୀତ ହେଲୁ—ଗଜେନ୍ଦ୍ରପ୍ରସାଦ ଦାସ । ମୂଳରୁ ଆଇନ ବୃତ୍ତି କରୁଥିଲେ ପାଟନା ହାଇକୋର୍ଟରେ । ଓଡ଼ିଶା ବିଧାନସଭାର ପ୍ରଥମ ବାଚସ୍ପତି ମୁକୁନ୍ଦପ୍ରସାଦ ଦାସଙ୍କ (ବାଲେଶ୍ୱର) କନିଷ୍ଠ ଭ୍ରାତା । ଆଗରୁ ଜଣାଶୁଣା ଥିଲା । ଶିଷ୍ଟାଚାରରେ ସେ ଆସିଥିଲେ ସର୍କିଟ ହାଉସକୁ । ପୂର୍ବରୁ ଓକିଲାତି କାର୍ଯ୍ୟରେ ମୁଁ ପାଟନା ଆସୁଥିଲାବେଳେ, ପ୍ରତିପକ୍ଷରେ ଓଡ଼ିଶା ସରକାରଙ୍କର ପାଟନାସ୍ଥିତ ଓକିଲ ଭାବରେ ତାଙ୍କର ମୁଁ ସମ୍ମୁଖୀନ ହେଉଥିଲି । ମୋ ପ୍ରତି ସେ ସେତେବେଳେ ବୋଧହୁଏ ସେତେ ସଦୟ ନ ଥିଲେ । ବର୍ତ୍ତମାନ ପରିବର୍ତ୍ତିତ ଅବସ୍ଥାରେ ତାଙ୍କର ଆଗମନ ଅତି ସ୍ୱାଗତଯୋଗ୍ୟ ଥିଲା । ମୋ ସ୍ତ୍ରୀଙ୍କ ସହିତ ତାଙ୍କ ସ୍ତ୍ରୀଙ୍କର ଘନିଷ୍ଠତା ଅତିଶୀଘ୍ର ହୋଇଗଲା । ଉଭୟ ଦୀର୍ଘ ସମୟ ଅନେକ ଦିନ ରାମନାମ ଗାୟନରେ କଟାଉଥିଲେ । ବେଳେବେଳେ ସେ ଘରୁ ବୁଝିକରି ଆସି ଦିନେ ଦି'ଦିନ ମୋ ସ୍ତ୍ରୀଙ୍କ ପାଖେ ରହିଯାଉଥିଲେ । ତାଙ୍କ ଘରେ ସେ ସାପ୍ତାହିକ ରାମଧୂନ ବୈଠକ ଆରମ୍ଭ କଲେ । ଅନେକ ବିହାରୀ ମହିଳା ସେଥିରେ ଯୋଗ ଦେଉଥିଲେ । ଧର୍ମକାର୍ଯ୍ୟରେ ତାଙ୍କର ଆଗ୍ରହ ରହିଥାଏ । ଦକ୍ଷତା ଓ ସୁନାମ ଯୋଗୁ ଗଜେନ୍ଦ୍ରବାବୁ ଓକାଲତିରେ ସର୍ବଦା ବ୍ୟସ୍ତ ରହୁଥିଲେ । ଦୁର୍ଭାଗ୍ୟର

Digitized by srujanika@gmail.com

କଥା, ଅତି ଅପ୍ରତ୍ୟାଶିତ ଭାବରେ, ପ୍ରାୟ ଅହେତୁକ, ତାଙ୍କ ସ୍ତ୍ରୀ ଦିନେ ଜୀବନାଶ ଘଟାଇଲେ ଗାଧୁଆ ଘର ଭିତରେ ଦ୍ୱାରରୁଦ୍ଧକରି । ଅସ୍ଥିର ମନ ତାଙ୍କର ଏପରି ଅଧୀର କାହିଁକି ହେଲା; କେହି ବୁଝିପାରିଲେ ନାହିଁ । ଗଜେନ୍ଦ୍ରବାବୁଙ୍କର ମୃତ୍ୟୁ ମଧ୍ୟ ଆସିଲା ଅତର୍କରେ । କଟକ ଆସିଥିଲେ ଝିଅ (ବାଣୀ) ପାଖକୁ । ବାଣୀ ସୁପରିଚିତ ଦକ୍ଷ ଚିକିତ୍ସକ ଗିରିଜା ଦାସ ମହାପାତ୍ରଙ୍କର ପତ୍ନୀ । ଗଜେନ୍ଦ୍ରବାବୁ କିଛିଦିନ ରହି ପାଟନା ଫେରିବାକୁ ବାହାରିଲେ । ଝିଅ କହିଲେ ଆଉ ରହିବାକୁ । ପିତା ଉତ୍ତର ଦେଲେ, ପକ୍ଷୀ ଚାରିଆଡେ ସିନା ଉଡୁଥାଏ, କିନ୍ତୁ ତା ମନ ଥାଏ ତା ନୀଡରେ । ସେ ଫେରିଯାଏ ସେଠାକୁ ପ୍ରତି ସନ୍ଧ୍ୟାରେ । ଏ ଉକ୍ତିର ସୂଚନା, ବକ୍ତା ବା ଶ୍ରୋତା ବୁଝି ନ ଥିଲେ । ଗଜେନ୍ଦ୍ରବାବୁ ପାଟନା ଫେରିଯିବାର ଦୁଇଦିନ ପରେ ନିଜ ଅଫିସ ଘରେ ସନ୍ଧ୍ୟାବେଳେ କାମ ସାରି ଘର ଭିତରକୁ ଗଲାବେଳକୁ ଅଫିସ ଦୁଆର ଉପରେ ହାତରେ ଭରା ଦେଉ ଦେଉ ତଳେ ପଡିଗଲେ । ସେହି ହେଲା ଶେଷ ନିଦାନ । ଶୀତରାତି, ଖବରପାଇ, ମୁଁ ଆସିଲି । ବ୍ୟଥିତ ବନ୍ଧୁମାନେ କର୍ମଠ, ଦୃଢ଼ମନା ଗଜେନ୍ଦ୍ରବାବୁଙ୍କର ପ୍ରଶଂସା ସ୍ମରୁ ଥାଆନ୍ତି । ଏକମାତ୍ର ପୁତ୍ର ବିକ୍ରମ, କଲେଜରେ ଇଂରେଜୀ ଅଧ୍ୟାପକ ସେତେବେଳେ ଖେଳରେ ଗୋଡଭାଙ୍ଗି ପଡିଥାଏ । ସହଧର୍ମିଣୀ ଗଲାଦିନୁ ଗଜେନ୍ଦ୍ରବାବୁ ଏକକ ବୋଧରେ ମ୍ଳାନ ହୋଇ ଯାଇଥିଲେ । ମୁହଁଟାଣ ରଖିଥାଆନ୍ତି ପୁଅ ବୋହୂଙ୍କ ପାଖରେ, ଭରସା ଦେବାକୁ । ପାଟନାରେ ପ୍ରଥମ ଦିନରେ ତାଙ୍କର ଆନ୍ତରିକତା ପ୍ରକାଶ ମନେ ପଡି ଦୁଇ ବିଗତ ଆତ୍ମାପ୍ରତି ଶ୍ରଦ୍ଧା ନିବଦେନ କରୁଛି ।



Digitized by srujanika@gmail.com

# ପାଟନା ଅଧିବାସ

ପାଟନାରେ ଦଶବର୍ଷ ଜୀବନର ଏକ ଗୁରୁତ୍ୱପୂର୍ଣ୍ଣ ଅଧ୍ୟାୟ । କାର୍ଯ୍ୟରେ ତୃପ୍ତି ଓ ଏତେ ଲୋକଙ୍କର ସହୃଦୟତା କ୍ୱଚିତ ମିଳେ । ମୋ ମନ ମାଫିକି କାମ ମତେ ମିଳିଲାପରି ଲାଗିଲା । ଭାଗ୍ୟକୁ କୋର୍ଟରେ ମୋ ବିଚାରଧାରା ଓ ବ୍ୟବହାର ସମସ୍ତଙ୍କର ହୃଦୟଗ୍ରାହୀ ହେଲା । ଦିନେ କୌଣସି ଅପ୍ରୀତିକର ଘଟନା ମୋ କୋର୍ଟରେ ଘଟିନଥିବା, ଈଶ୍ୱରଙ୍କର ଏକ ଅନୁଗ୍ରହ । କିପରି ହେଲା କହିପାରୁନାହିଁ, ପ୍ରଥମ ପନ୍ଦରଦିନ ପରଠାରୁ ଶେଷ ପର୍ଯ୍ୟନ୍ତ ସର୍ବଦା ବେଞ୍ଚରେ ମୁଁ ସିନିଅର ବା ଏକକ ଭାବେ ବସି ଆସିଛି । ଦୁଇଟି କଥାରେ ମୋର ସ୍ୱତନ୍ତ୍ରତା ଥିବାର ବାରରେ ପ୍ରଶଂସାସୂଚକ ମନ୍ତବ୍ୟ ପ୍ରକାଶ ପାଉଥିଲା । ଅଧିକାଂଶ କେସ୍‌ରେ ଶୁଣାଣି ଶେଷ ସଙ୍ଗେ ସଙ୍ଗେ କୋର୍ଟରେ ଜଜ୍‌ମେଣ୍ଟ ଡାକିଦେବା ଓ ଗୀଷ୍ମ,ପୂଜା ଛୁଟିବେଳକୁ କୌଣସି ଜଜ୍‌ମେଣ୍ଟ ବାକୀ ନ ରଖିବା । ମୁଖ୍ୟ ବିଚାରପତି ଓ ଅନ୍ୟ ଜଜ୍ ବନ୍ଧୁମାନେ ଏହା କିପରି ହୋଇପାରୁଛି ବୋଲି ମତେ କେତେଥର ପଚାରିଛନ୍ତି । ବିନା ଆୟାସରେ ତାହା ମୋର ଅଭ୍ୟାସ ହୋଇଥିଲା । ବେଶିଭାଗ ଗୁରୁଭାର କେସ୍ ମୋ ପାଖକୁ ଆସୁଥିଲା । ତେଣୁ ଶ୍ରେଷ୍ଠ ଓ ସିନିଅର ଓକିଲମାନଙ୍କର ସାହାଯ୍ୟ କୋର୍ଟରେ ମିଳିବାର ସୁଯୋଗ ଘଟୁଥିଲା । ଦୈନନ୍ଦିନ ପ୍ରତିଷ୍ଠିତ ଆଇନଜୀବୀ ପି.ଆର.ଦାସ, ସାର୍ ସୁଲତାନ, ମହାବୀର ପ୍ରସାଦ, ବଙ୍କିମ ଦେ, ଲାଲ ନାରାୟଣ ସିହ୍ନା, କୈଳାଶ ରାଏ, ଜଗଦୀଶ ସିହ୍ନା, ଗଂଗାଚରଣ ମୁଖାର୍ଜୀ, ଆର.ଏସ୍.ଚାଟାର୍ଜୀଙ୍କର ସହଯୋଗରେ କାର୍ଯ୍ୟ କରିବା ଅତି ସୁଖକର ଥିଲା । ସାଧାରଣତଃ ଶୁଣାଣିରେ ମହଲତ ଓକିଲମାନେ ନିଅନ୍ତି । ସେଥିରେ କେସ୍ ଫଇସଲା ବିଳମ୍ବିତ ହୁଏ । ମୁଁ ମୂଳରୁ ଗୋଟିଏ ପ୍ରଣାଳୀ ଠିକ୍ କରିନେଲି । ତାହା ଅଚିରେ ସମସ୍ତଙ୍କୁ ଜଣା ପଡିଗଲା । ସେହି ଅନୁସାରେ ଚାଲିବାରୁ ମହଲତ ନେଇ ଅସୁବିଧା ଉପୁଜିଲା ନାହିଁ । ପକ୍ଷଠାରୁ instructions (ଅର୍ଥାତ, ବାସ୍ତବତଃ ଫିସ) ମିଳି ନ ଥିବାର ଉଲ୍ଲେଖ ହେଲେ, ଥରେ ମହଲତ; ସିନିଅର ବା ନିଜେ ଅନ୍ୟ

Digitized by srujanika@gmail.com

କେସ୍‌ରେ ଅନ୍ୟ କୋର୍ଟରେ ଆଗରୁ ପାଏ ବନ୍ଦ ଥିଲେ, ଆଉ ଥରେ ମହଲତ ଓକିଲଙ୍କ ଅସୁସ୍ଥ ଘଟିଲେ; ତୃତୀୟଥର ମହଲତ ପରେ ଆଉ ଶୁଣାଣି ମୋ କୋର୍ଟରେ ସ୍ଥଗିତ ରହିବ ନାହିଁ ବୋଲି ସମସ୍ତେ ନିର୍ବିବାଦରେ ଓ ସହଜରେ ନିଜ ନିଜ କାର୍ଯ୍ୟ ସୁଧାରି ନେଉଥିଲେ । ଦିନେ ମୁଁ କୋର୍ଟକୁ ଆସି ଦେଖିଲି ପି.ଆର.ଦାସ ଟେବୁଲରେ ହାତ ଉପରେ ମୁଣ୍ଡଦେଇ ବସିଛନ୍ତି । ସେ ଦିନର ପ୍ରଥମ ଅପିଲ କେସ୍ ତାଙ୍କର ଥାଏ । ତାଙ୍କର କେସ୍ ଥିଲେ, ଡାକରା ହେବା ଆଗରୁ ସେ କୋର୍ଟରେ ଉପସ୍ଥିତ ଥାଆନ୍ତି । ସେ ପୂରା ପ୍ରସ୍ତୁତ ନ ହୋଇ କେସରେ ଆପିଅର ହେବା ମୁଁ କେବେ ଦେଖିନାହିଁ । ଆଶକ୍ତ ହୋଇ ପଡିବାରୁ, ବୟାସାଧିକ୍ୟ ଯୋଗୁ, ସେ ବସିରହି ସୁଆଲ କରନ୍ତି । ସେଦିନ ସେ ଅତି କ୍ଲାନ୍ତ ଦିଶୁଥିଲେ । ମୁଁ ପଚାରିବାରେ ସେ କହିଲେ, ମୋ କେସ୍ ଆଗରୁ ଦୁଇଥର ମହଲତ ହୋଇସାରିଛି । ଆଉ ମହଲତ ମିଳିବ ନାହିଁ, ତେଣୁ ଆସିଛି । ମୁଁ କହିଲି, ଆପଣ ଅତି କାନ୍ତ ଦିଶୁଛନ୍ତି । ଘରକୁ ଯାଆନ୍ତୁ । କେସ୍ ମୁଲତବି ରହିବ । ଦାସେ ଉଠି କରିଡରରେ ପାଟିକରି ବାରମ୍ବାର କହି ଯାଉଥାନ୍ତି, Justice Mahapatra saved me । କିଏ ଜାଣିଥିଲା, ସେହି ତାଙ୍କର ଶେଷ କୋର୍ଟକୁ ଆସିବା । ଘରକୁ ଯାଇ ସେ ଶଯ୍ୟା ଯେ ଧରିଲେ, ଆଉ ଉଠି ନାହାନ୍ତି । ଦୁଇ ଦିନ ପରେ କୋର୍ଟରେ ସମ୍ବାଦ ମିଳିଲା, ପି.ଆର.ଦାସ ଚାଲିଗଲେ । ମୁଁ ଓ ଅନ୍ୟାନ୍ୟ କେତେକ ଗଲୁ ତାଙ୍କ ବାସଭବନକୁ ଶେଷ ଦର୍ଶନ ଓ ସମ୍ମାନ ପାଇଁ । ଶୁଭ୍ର ପାଇଜାମା, ସିଲ୍‌କ ପଞ୍ଜାବୀ ପିନ୍ଧି ମହାନିଦ୍ରାରେ ଶୋଇଥିଲେ । ଭାରତବର୍ଷର ଜଣେ ପ୍ରଖ୍ୟାତ ବାରିଷ୍ଟର, ବୁଦ୍ଧିଜୀବୀ ଜୀବନର ଶେଷ ଅଂଶରେ ଅସହାୟତାର ସମ୍ମୁଖୀନ ହୋଇଥିଲେ । ଦେଶବନ୍ଧୁ ଚିତ୍ତରଞ୍ଜନଙ୍କର ସେ ସହୋଦର ଭ୍ରାତା । କଲିକତାରେ ବାରିଷ୍ଟରୀ କରୁଥିଲେ । ୧୯୧୮ରେ ପାଟନା ହାଇକୋର୍ଟ ହେବାରେ ପାଟନାକୁ ଆସିଲେ । ଅଳ୍ପକାଳ ଜଜ୍ ହୋଇଥିଲେ —ଆଡିସିନାଲ । ପରିସ୍ଥିତିର ତାଡନାରେ ଇସ୍ତଫା ଦେଲେ । ସେତେବେଳେ ସାର୍ କୋର୍ଟନି ଟେରେହ—ଚିଫ୍ ଜଷ୍ଟିସ । ଇସ୍ତଫା ପରେ ପୁଣି ବାରିଷ୍ଟରୀ କରିବା ପାଇଁ ହାଇକୋର୍ଟ ମନାକଲା । ପ୍ରିଭି କାଉନସିଲ ଶେଷରେ ଅନୁମତି ଦେବାରୁ, ଦାସଙ୍କର ଜିଗର ରହିଲା । ବହୁ ଅର୍ଥ ଉପାର୍ଜନ କଲେ, କିନ୍ତୁ ଶେଷବେଳକୁ ଅର୍ଥର ଅନଟନ ଯୋଗୁ ଅଶକ୍ତ ଦେହରେ ମଧ କୋର୍ଟକୁ ଆସିବାକୁ ପଡୁଥିଲା, ନିଜର ଏକକ ସଂସାର ଚଳାଇବାକୁ । ମୃତ୍ୟୁଦିନ ତାଙ୍କ ନାତି ସିଦ୍ଧାର୍ଥଶଙ୍କର ରାୟ—ଗୋଟିଏ କେସ୍‌ରେ କଲିକତାରୁ ପାଟନା ଆସି ଥାଆନ୍ତି ।

Digitized by srujanika@gmail.com

ସେ ମୁଖାଗ୍ନି ଦେଇ ଶବ ସତ୍କାର କରାହେଲା ଗୁଣମୁଗ୍ଧ ଜନବହୁଳଙ୍କ ଉପସ୍ଥିତିରେ ଗଙ୍ଗାକୂଳ ବଂଶଘାଟରେ । ପ୍ରିୟରଞ୍ଜନ (ପି.ଆର) ବୈଷ୍ଣବ ଧର୍ମାନୁରାଗୀ ହୋଇ ଶେଷ ଜୀବନରେ ନାମ କୀର୍ତ୍ତନ କରୁଥିଲେ । ବବୃଚି ପାକରେ ଏକବେଳା ମାତ୍ର (ରାତ୍ରିରେ) ନିରାମିଷ ଅନ୍ନ ଆହାର କରୁଥିଲେ । କଲିକତା ହାଇକୋର୍ଟକୁ ତାଙ୍କ ନିଜ ପୁସ୍ତକାଗାର ବିକ୍ରୀ କରି ଦେଇଥିଲେ । ମୃତ୍ୟୁ ପରେ ସେମାନେ ତାହା ସ୍ଥାନାନ୍ତର କଲେ । ଅପର୍ଯ୍ୟାପ୍ତ ଅର୍ଥ ଉପାର୍ଜନ ସତ୍ତ୍ୱେ ଶେଷ ଜୀବନରେ ଅନଟନର କଷାଘାତ ଭୋଗିବାର ଅନ୍ୟ ଏକ ଦୃଷ୍ଟାନ୍ତ ଦେଖିଥିଲି ସାର ସୁଲତାନଙ୍କୁ । ବିଶ୍ୱବିଦ୍ୟାଳୟ ଭାଇସ ଚାନ୍ସେଲଉଠାରୁ ଆରମ୍ଭ କରି ଭାଇସରାୟ ଏକ୍ସିକ୍ୟୁଟିଭ କାଉନସିଲର ପର୍ଯ୍ୟନ୍ତ ବହୁ ଉଚ୍ଚଆସନ ମଣ୍ଡନ କରିଥିଲେ ସେ । ପାଟନାରେ ତାଙ୍କ ଘରକୁ ସୁଲତାନ ପାଲେସ କୁହାଯାଏ । ବାରିଷ୍ଟରୀରେ ଅମାପ ରୋଜଗାର କରିଥିଲେ । ଜରାକ୍ଳିଷ୍ଟ ହୋଇ ମଧ୍ୟ ଏକାବେଳେ ରହିଯିବା ପର୍ଯ୍ୟନ୍ତ କୋର୍ଟକୁ ଆସୁଥିଲେ ଖର୍ଚ୍ଚ ତୁଲାଇବାକୁ । ପରେ ପାଲେସ ଚାଲିଗଲା । ଗ୍ରାମକୁ ଯାଇ ଦୀନ ଭାବରେ ପଲ୍ଲୀବାସରେ ମୃତ୍ୟୁବରଣ କଲେ । ନିଜର ଆୟ ଓ ସମ୍ପତ୍ତି ଉପରେ ପୋଷ୍ୟପୁତ୍ରକୁ ଅଧିକାର ଛାଡିଦେଇ, ଏ ଦଶା ଭୋଗିଥିଲେ । ପ୍ରିୟରଞ୍ଜନ ଦାସ ସେହିପରି ଏକ ଆତ୍ମୀୟର ଅଧିକାର ବଶବର୍ତ୍ତୀ ହୋଇ ଦୁର୍ଦ୍ଦଶା ଭୋଗିଲେ ଶେଷକୁ । କଟକରେ ମଧୁବାବୁ (ମଧୁସୂଦନ ଦାସ)ଙ୍କର ମଧ୍ୟ ସେହି ଦଶା ଘଟିଥିଲା, ତାଙ୍କୁ ଋଣ ପରିଶୋଧ କରି ନପାରି ଇନସଲଭେଣ୍ଟ ବୋଲି କୋର୍ଟରେ ଜାହୀର କରାଇବାକୁ ପଡିଥିଲା । ଭାଗ୍ୟର ବିଡମ୍ବନା !

ଥରେ ରାତି ଅଧରେ ଘରେ କୋର୍ଟ କରିବାକୁ ପଡିଥିଲା । ସମ୍ବିଧାନ ସଂକ୍ରାନ୍ତ କେସ୍ ବିଚାର ସେତେବେଳେ ଆମ ବେଞ୍ଚରେ ହେଉଥାଏ । ଜଣେ ବି.ଏ. ପରୀକ୍ଷାର୍ଥୀ ରାତି ଦଶଟାବେଳେ ଆସି ଜଣାଇଲେ ଯେ ସେହିଦିନ ସନ୍ଧ୍ୟାରେ ବିଶ୍ୱବିଦ୍ୟାଳୟ ନୋଟିସ ବୋର୍ଡରେ ଲଘୁ ଉପସ୍ଥାନ ସଂଖ୍ୟା ଦୋଷ ଦେଖାଇ ତାଙ୍କୁ ପରଦିନ ପୂର୍ବାହ୍ନରେ ଆରମ୍ଭ ହେଉଥିବା ପରୀକ୍ଷାରୁ ବଞ୍ଚିତ ହୋଇଥିବା ନୋଟିସ ପ୍ରକାଶ ପାଇଛି । ପୂର୍ବରୁ ପାଇଥିବା ଅନୁମତି ରଦ୍ଦ କରାଯାଇଛି । ପରୀକ୍ଷାର୍ଥୀଙ୍କ ଆବେଦନର ଜରୁରୀ ପ୍ରାଥମିକ ବିଚାର ଆବଶ୍ୟକ ମନେହେଲା । ନଚେତ ପରଦିନ କୋର୍ଟବେଳକୁ ପରୀକ୍ଷାରୁ ସେ ବଞ୍ଚିତ ହୋଇ ସାରିଥିବେ । ମୋ ସାଙ୍ଗରେ ବସୁଥିବା ଅନ୍ୟ ଜଜ୍ ବନ୍ଧୁଙ୍କୁ ଜଣାଇବାରେ ସେ ଆମ ଘରକୁ ଆସିଲେ । ପରୀକ୍ଷାର୍ଥୀଙ୍କ ଆବେଦନ ନିରୀକ୍ଷା କରି, କେସର ଶେଷ ବିଚାର ପର୍ଯ୍ୟନ୍ତ, ବିଶ୍ୱବିଦ୍ୟାଳୟର ନିଷେଧ

Digitized by srujanika@gmail.com

ନିର୍ଦ୍ଦେଶନାମା ସ୍ଥଗିତ ରଖିବାର ଆଦେଶ ହେଲାବେଳକୁ ରାତ୍ରି ଦ୍ୱିପହର । ପରଦିନ ପ୍ରାତଃକାଳ ପୂର୍ବରୁ ଆଦେଶ ଭାଇସଚାନ୍‌ସେଲରଙ୍କୁ ଅବଗତ କରାଇବା ପାଇଁ ଡେପୁଟି ରେଜିଷ୍ଟ୍ରାରଙ୍କୁ ନିର୍ଦ୍ଦେଶ ଦେଲୁ । ଅତ୍ୟାବଶ୍ୟକ ସ୍ଥଳେ ଏପରି କାର୍ଯ୍ୟ ବିଧିସଙ୍ଗତ ହେଲେ ମଧ୍ୟ କ୍ୱଚିତ କରାଯାଇଥାଏ । ଜଜ୍‌ର ବିଚାର ଅଧିକାର ତା ନିଜ ନିୟନ୍ତ୍ରଣରେ । ସେଥିରେ ସେ ଚିଫ୍ ଜଷ୍ଟିସ ବା ଅନ୍ୟ କାହାରି ଅଧୀନସ୍ଥ ନୁହେଁ ।

ବିହାରରେ ପଞ୍ଚାୟତ ନିର୍ବାଚନ ପରେ ବହୁ କେସ୍ ନିର୍ବାଚନ ବିରୁଦ୍ଧରେ କୋର୍ଟକୁ ଆସିଲା । ନିର୍ଦ୍ଧାରିତ ସମୟର ଶେଷ ଦିନ ଶେଷବେଳକୁ ଶତାଧିକ କେସ୍ ଫାଇଲ ହାଇକୋଟର ଶପଥ କମିଶନର ବା ପେସକାର ବା ଷ୍ଟାମ୍ପ ଭେଣ୍ଡର କାମ ତୁଲାଇ ନପାରିବାରୁ କେତେକ ଆଡଭୋକେଟ୍ ଆସି ମୁଁ ବସିଥିବା କୋର୍ଟରେ ଅସୁବିଧା ଓ ଆପତ୍ତି ଜଣାଇଲେ । ଆବେଦନପତ୍ର ଗ୍ରହଣ କରିବାର ପାଳି ସେଦିନ ଆମ କୋର୍ଟରେ । ଅବସ୍ଥା ଦୃଷ୍ଟିରେ ଅପରାହ୍ନ ଚାରିଟା ପରେ ଆଉ ଦୁଇଘଣ୍ଟା ବସି ଆମେ ସମସ୍ତ ଆବେଦନପତ୍ର ଗ୍ରହଣ କଲୁ ଏବଂ ଆଭିଡେଭିଟ୍ ଓ ଷ୍ଟାମ୍ପ ରିପୋଟ୍ ପରଦିନ ଦାଖଲ ହୋଇପାରିବ ବୋଲି ନିର୍ଦ୍ଦେଶ ଦେଲୁ । ଏହାର ପରବର୍ତ୍ତି ଫୁଲ୍ କୋର୍ଟ ମିଟିଙ୍ଗରେ ଜଣେ ବନ୍ଧୁ ଜଜ୍ ସେ ଘଟନା ଉଲ୍ଲେଖ କରିବାରେ ନୀତିଗତ ପ୍ରଶ୍ନ ନେଇ ଆଲୋଚନା ହେଲା ଏବଂ ଆମ କାର୍ଯ୍ୟର ଯଥାର୍ଥତା ବିଚାର କେବଳ ଆମରି ବେଞ୍ଚର ପରିସରଭୁକ୍ତ ଥିବାର ସ୍ୱୀକୃତ ହେଲା ।

ଦିନେ ଜଣେ ଆଡଭୋକେଟ ତାଙ୍କ ଦ୍ୱାରା ଦାଖଲ ହୋଇଥିବା ଏକ କ୍ରିମିନାଲ କେସରେ ଏକ ଜରୁରୀ ଆବେଦନପତ୍ର କରିବାକୁ ଆମ କୋର୍ଟରେ ସେ ଦିନର ଶେଷଅଂଶରେ ଜଣାଇଲେ । ଚିଫ୍ ଜଷ୍ଟିସଙ୍କ କୋର୍ଟରେ ଏହା ଜଣାଇବା ବିଧି । ସେ ଦିନ ସେ ଅସୁସ୍ଥ ଥିବାରୁ କୋର୍ଟକୁ ଆସି ନଥିଲେ । ସ୍ୱତନ୍ତ୍ର କ୍ରିମିନାଲ ବେଞ୍ଚ ମଧ୍ୟ ସେ ଦିନ ବସି ନଥିଲା । ଆବେଦନପତ୍ର ସାଢ଼େ ତିନିଟା ବେଳେ ଆମେ ଶୁଣିବୁ ବୋଲି, କେସ୍ ରେକର୍ଡ ସେହି ସମୟକୁ ଉପସ୍ଥାପିତ ହେବାପାଇଁ ନିର୍ଦ୍ଦେଶ ଦେଲୁ । ଅଫିସର ଅସୁବିଧା ଯୋଗୁ ରେକର୍ଡ ଆସି ପାରିଲା ନାହିଁ । ତା ପରଦିନ ଲିଷ୍ଟରେ ପ୍ରଥମ ସେ କେସ୍ ଉଲ୍ଲେଖ କରିବାକୁ ନିର୍ଦ୍ଦେଶ ଦେଇ ଆମେ ଉଠିଗଲୁ । ତା ପରଦିନ ମଧ୍ୟ ସ୍ୱତନ୍ତ୍ର କ୍ରିମିନାଲ ବେଞ୍ଚ ନ ଥିଲା । ଆମ କୋର୍ଟ ଲିଷ୍ଟରେ ମଧ୍ୟ ସେ କେସର ଉଲ୍ଲେଖ ନଥିଲା । କୋର୍ଟ ଆରମ୍ଭରେ ସେହି ଆଡଭୋକେଟ୍ ଆସି ପୁନର୍ବାର ଅଭିଯୋଗ କଲେ ଯେ ତାଙ୍କ ଜରୁରୀ ଆବେଦନ ବିଚାରକୁ ନ ଆସିବାରୁ

Digitized by srujanika@gmail.com

ଆବେଦନକାରୀ ବିଶେଷ ଅସୁବିଧାଗ୍ରସ୍ତ ହେଉଛି । ସାମାନ୍ୟ କଥାଟିରେ ଅଯଥା ବିଳମ୍ବ ବା ହେଳା କୋର୍ଟ ପକ୍ଷରୁ ହେଉଥିବାରୁ ଆମେ ଲଜ୍ଜାବୋଧ କଲୁ । ଉଭୟ ପକ୍ଷ ଓକିଲଙ୍କୁ ଦୁଇଟାବେଳେ ଉପସ୍ଥିତ ରହିବାକୁ ଅନୁରୋଧ କରି, ସେମାନଙ୍କ ନଥିର କାଗଜ ଦେଖି ଜରୁରୀ ଆବେଦନ ଉପରେ ଆମର ନିର୍ଦ୍ଦେଶ ଲିପିବଦ୍ଧ କରି ରେଜିଷ୍ଟ୍ରାରଙ୍କୁ ପଠାଇଦେଲୁ ଏବଂ ଡେପୁଟି ରେଜିଷ୍ଟ୍ରାରଙ୍କୁ, ଯାହାଙ୍କ ଉପରେ ଲିଷ୍ଟ ପ୍ରସ୍ତୁତ କରିବାର ଦାୟିତ୍ୱ, ଆମର ପୂର୍ବଦିନର ନିର୍ଦ୍ଦେଶ ଅମାନ୍ୟ କରିଥିବାରୁ କୋର୍ଟ ଅବମାନନା ଦୋଷର ନୋଟିସ ମଧ୍ୟ ଦେଲୁ । ଏଥିରେ ଅଳ୍ପ ସମୟ ଭିତରେ କୋର୍ଟର ସର୍ବତ୍ର ଚାଞ୍ଚଲ୍ୟ ପ୍ରକାଶ ପାଇଲା । ସେ ଦିନ ସନ୍ଧ୍ୟାରେ ଚିଫ୍ ଜଷ୍ଟିସ ମତେ ଟେଲିଫୋନ୍‌ରେ କିପରି ଏ କଥାର ସମାଧାନ ହୋଇ ପାରିବ, ପଚାରିଲେ । ଉତ୍ତରରେ କହିଲି କୋର୍ଟର ନିର୍ଦ୍ଦେଶ ଲଙ୍ଘନ କଲେ ଯଦି ସରକାରୀ କର୍ମଚାରୀ ଦଣ୍ଡିତ ହେଉଛନ୍ତି, ରେଜିଷ୍ଟ୍ରାର କାହିଁକି ବାଦ୍ ଯିବେ ?

ପ୍ରତିଦିନର ଲିଷ୍ଟ ବିଷୟରେ ରେଜିଷ୍ଟ୍ରାର ବା ଡେପୁଟି ରେଜିଷ୍ଟ୍ରାର ଚିଫ୍ ଜଷ୍ଟିସଙ୍କ ପରାମର୍ଶ ନିଅନ୍ତି । କ୍ରିମିନାଲ ବେଞ୍ଚରେ ସବୁ କ୍ରିମିନାଲ କେସ୍ ଦରଖାସ୍ତ ଉଠାଇବାକୁ ସେ କହିଥିବେ ଏବଂ ସେଥିପାଇଁ ଆମ କୋର୍ଟର ସ୍ୱତନ୍ତ୍ର ନିର୍ଦ୍ଦେଶ ପାଳନରେ ଖିଲାପ ହୋଇଗଲା । ଏହି କଥା କୈଫିୟତରେ ଉଲ୍ଲେଖ କଲେ ଚିଫ୍ ଜଷ୍ଟିସ କାଳେ କୋର୍ଟ ଅବମାନନାରେ ପଡିଯିବେ ବୋଲି ଡେପୁଟି ରେଜିଷ୍ଟ୍ରାର ନିର୍ଦ୍ଦିଷ୍ଟ ଦିନ କୋର୍ଟରେ ଉପସ୍ଥିତ ହୋଇ ନିଜ ଭୁଲବଶତଃ ସ୍ୱତନ୍ତ୍ର ନିର୍ଦ୍ଦେଶ ପାଳିତ ହୋଇପାରି ନଥିବା ଉଲ୍ଲେଖ କରି କ୍ଷମା ପ୍ରାର୍ଥନା କଲେ । ଭୁଲଟି ଗର୍ହିତ ହୋଇଥିବା ମନ୍ତବ୍ୟ ଦେଇ, ଅକୁଣ୍ଠ କ୍ଷମା ପ୍ରାର୍ଥନା ଦୃଷ୍ଟେ ତାଙ୍କୁ ଅବ୍ୟାହତି ଦିଆହେଲା ।

ଜାକୀର ହୋସେନ୍ ବିହାରର ରାଜ୍ୟପାଳ ଥିଲାବେଳେ ରାଜଭବନର ସିଷ୍ଟାଚାର ଉଲ୍ଲେଖଯୋଗ୍ୟ ଥିଲା । ତାଙ୍କ ପରେ ଆସିଲେ ଲୋକସଭାର ପୂର୍ବତନ ବାଚସ୍ପତି ଅନନ୍ତଶୟନମ୍ ଆୟଙ୍ଗାର । ସେ କଥା କହନ୍ତି ବେଶି । ଶୁଣିଥିଲି ଲୋକସଭାର ବାଚସ୍ପତି ଥିଲାବେଳେ ସଭ୍ୟଙ୍କ ତୁଳନାରେ ତାଙ୍କ ମନ୍ତବ୍ୟ କିଛି କମ୍ ନଥିଲା । ରାଜ୍ୟପାଳ ହୋଇ ନିଜ ଅଧିକାର ବିଷୟରେ ଅନ୍ୟଙ୍କୁ ପରୋକ୍ଷରେ ସଚେତନ ରଖିବାରେ ଆଗ୍ରହୀ ଥିଲେ । ବିଚାର ବିଭାଗୀୟ ଅଫିସରଙ୍କ ଏକ ସମ୍ମିଳନୀରେ ସେ ଉଦ୍‌ଘାଟକ ଓ ଚିଫ୍ ଜଷ୍ଟିସ ମୁଖ୍ୟ ଅତିଥି ହୋଇଥିଲେ । ଆମେ ଅନ୍ୟ ଜଜମାନେ ଉପସ୍ଥିତ ଥିଲୁ ଏବଂ ଆମ ଭିତରୁ କେହି କିଛି ନିର୍ଦ୍ଦିଷ୍ଟ ବିଷୟରେ କହିବାର ଥିଲା ।

Digitized by srujanika@gmail.com

ରାଜ୍ୟପାଳ ତାଙ୍କ ଅଭିଭାଷଣରେ ମୁନସିଫମାନଙ୍କ ସମ୍ବନ୍ଧରେ କେତେକ କଟୁ ମନ୍ତବ୍ୟ ପ୍ରକାଶ କରିବାରୁ ସଭାରେ ମୂଳରୁ ଅପ୍ରୀତିକର ଚାଞ୍ଚଲ୍ୟ ପ୍ରକାଶ ପାଇଲା । ମୁଖ୍ୟ ଅତିଥି ଚିଫ୍ ଜଷ୍ଟିସ ତାଙ୍କ ବକ୍ତୃତାରେ ସେ ମନ୍ତବ୍ୟ ସମ୍ପର୍କରେ କିଛି ନ କହି ଶେଷ କଲେ । ଆମ ଭିତରୁ ତିନିଜଣ କହିବାକୁ ଥିଲା । ମୋ ପାଳି ଶେଷରେ ପଡିଲା । ଏବଂ ମୁଁ ଲାଟ ସାହେବଙ୍କର ମନ୍ତବ୍ୟ ନିମ୍ନ ବିଚାର ବିଭାଗର କାର୍ଯ୍ୟପ୍ରଣାଳୀ ସମ୍ବନ୍ଧରେ ସଂପୂର୍ଣ୍ଣ ଅବହିତ ନ ଥିବାରୁ କିମ୍ବା ସେ (ଲାଟ ସାହେବ ) ଯେଉଁ ସମୟରେ ଓ ଯେଉଁଠାରେ ଆଇନ ବୃତ୍ତି କରୁଥିଲେ, ତାହାର କୌଣସି ତିକ୍ତ ଅନୁଭୂତି ଯୋଗୁ ବୋଧହୁଏ ପ୍ରକାଶ ପାଇଛି ବୋଲି କହିଲାବେଳେ ବିପୁଳ କରତାଳି ପଡିବା କିଛି ଅସ୍ୱାଭାବିକ ନଥିଲା । ତାହା ବୋଧହୁଏ କାହାରି ବିଶେଷ ଦୃଷ୍ଟି ଆକର୍ଷଣ କରି ନଥିଲା । କିନ୍ତୁ ସମ୍ମିଳନୀର ଦ୍ୱିତୀୟ ଦିବସରେ ତିନୋଟି ପ୍ରସ୍ତାବ ଗୃହୀତ ହେଲା । ଆମ୍ଭେମାନେ କେହି ସେ ଦିନ ଉପସ୍ଥିତି ନ ଥିଲୁ । ପ୍ରଥମ ପ୍ରସ୍ତାବରେ ରାଜ୍ୟପାଳଙ୍କର କଟୁମନ୍ତବ୍ୟର ପ୍ରତିବାଦ କରାଗଲା । ଦ୍ୱିତୀୟ ପ୍ରସ୍ତାବରେ ଚିଫ୍ ଜଷ୍ଟିସ ବିଚାର ବିଭାଗୀୟ ଅଫିସରମାନଙ୍କୁ ଲାଟସାହେବଙ୍କ ଅବାଞ୍ଛିତ ମନ୍ତବ୍ୟରୁ ରକ୍ଷା (Protection) କରିବାକୁ ଲେଶମାତ୍ର ଚେଷ୍ଟା ନ କରି ଥିବାରୁ କ୍ଷୋଭ ପ୍ରକାଶ । ତୃତୀୟ ପ୍ରସ୍ତାବ ହେଲା ମୁଁ ସେ ସମ୍ବନ୍ଧରେ ଯଥାଯଥ ଆଲୋଚନା କରିଥିବାରୁ କୃତଜ୍ଞତା ଜ୍ଞାପନ । ଖବର କାଗଜରେ ଏ ସବୁ ପ୍ରକାଶ ପାଇବାରୁ ଲାଟଙ୍କର ଖପା କହିଲେ ନ ସରେ । ଚିଫ୍ ଜଷ୍ଟିସ ମର୍ମାହତ ହେଲେ ଭୁଲରେ ସେ ବିଷୟରେ କିଛି ନ କହିଥିବାରୁ । ମୁଁ ପଡିଲି ଅଡୁଆରେ ଦିହିଁଙ୍କ ପାଖରେ, ମତେ ଫାଉରେ ପ୍ରଶଂସା ମିଳିଥିବାରୁ । ଆମମାନଙ୍କ ଅନୁରୋଧ ଓ ପରାମର୍ଶରେ, ଚିଫ୍ ଜଷ୍ଟିସ ଗୋଟିଏ ଦୀର୍ଘପତ୍ର ରାଜ୍ୟପାଳଙ୍କୁ ଲେଖିଲେ ଯେ ବିଚାର ବିଭାଗ ପ୍ରତି ତାଙ୍କର ଆକ୍ଷେପସୂଚକ ମନ୍ତବ୍ୟ ପ୍ରକୃତ ତଥ୍ୟମୂଳକ ନୁହେଁ । ସେଥିରେ ରାଜ୍ୟପାଳଙ୍କ କ୍ରୋଧ ଅଧିକ ହେଲା । ଦୁଇଜଣ ଜିଲ୍ଲା ଜଜ୍ ରାଜ୍ୟପାଳଙ୍କର ପ୍ରକାଶ୍ୟ ମନ୍ତବ୍ୟଦ୍ୱାରା ବିଚାର ବିଭାଗର ଅବମାନନା ହୋଇଛି ବୋଲି, ହାଇକୋର୍ଟରେ ଅଭିଯୋଗପତ୍ର ଦାଖଲ କରିବାର ମସୁଧା ହେଉଥିବାର ଜାଣିପାରି ରାଜ୍ୟପାଳ ଦିନେ ସନ୍ଧ୍ୟାବେଳେ ନିଜେ ମତେ ଟେଲିଫୋନ୍ କଲେ ତାଙ୍କ ପାଖକୁ ଯିବାପାଇଁ । ରାଜଭବନର ଅତି ନିକଟରେ ମୁଁ ରହୁଥିବାରୁ ବେଳେବେଳେ ସେ ଏପରି ଡାକନ୍ତି ଏବଂ ନାନା ବିଷୟରେ ଆଳାପ କରନ୍ତି— ବିଶେଷକରି ସମ୍ବିଧାନ ଅନୁସାରେ ରାଜ୍ୟପାଳଙ୍କ କ୍ଷମତାର ପରିସର ଉପରେ । ସେ

Digitized by srujanika@gmail.com

ଦିନ ଡାକିବାର ଉଦ୍ଦେଶ୍ୟ ଭିନ୍ନ ଥିଲା । ବିଚାର ବିଭାଗ ଅଫିସରଙ୍କ ସମ୍ମିଳନୀରେ ତାଙ୍କର ଭାଷଣ ନେଇ ଯେଉଁ ଦ୍ୱନ୍ଦ ଉପୁଜିଛି, ତାହାର ସମାଧାନ କିପରି ହେବ । ଚିଫ୍ ଜଷ୍ଟିସଙ୍କ ପତ୍ରର ଉତ୍ତର ଟିକିଏ ବାଗେଇ କରିଦେଲେ ଏବଂ ସେଥିରେ ତାଙ୍କର ଭାଷଣରେ ସେ କାହା ପ୍ରତି ବା ବିଚାର ବିଭାଗ ପ୍ରତି କୌଣସି ଆକ୍ଷେପ କରିବାର ଆଦୌ ଅଭିପ୍ରାୟ ନ ଥିଲା ବୋଲି ଉଲ୍ଲେଖ କଲେ, ମୋ ସାଧମତ କଥାଟା ତୁଟାଇବାର ଚେଷ୍ଟା କରିବି କହି ମୁଁ ବିଦାୟ ନେଲି । ଦୁର୍ଭାଗ୍ୟକୁ ପରିସ୍ଥିତି ଜଟିଳ ହେଲା ଅଧିକ, ଅନ୍ୟ ଏକ ଘଟନା ସଂଯୋଗରେ । ହାଇକୋର୍ଟରେ ଚିଫ୍ ଜଷ୍ଟିସଙ୍କ ପରକୁ ଥିଲେ ଜଜ୍ ଖଲିଲ ଅହମ୍ମଦ । ବିଚାର ବିଭାଗର ପ୍ରଶାସନିକ କାର୍ଯ୍ୟ ତାଙ୍କ ଦାୟିତ୍ୱରେ ଥିଲା—J.A.D ଭାବରେ । ସେ ଦାୟିତ୍ୱ ଚିଫ୍ ଜଷ୍ଟିସ ଅନ୍ୟଏକ ଜଜ୍ ସତୀଶଚନ୍ଦ୍ର ମିଶ୍ରଙ୍କୁ ଦେବାରୁ; ଖଲିଲ ଅହମ୍ମଦ କ୍ଷୁର୍ଣ୍ଣ ହେଲେ । ଚିଫ୍ ଜଷ୍ଟିସଙ୍କ ଉପରେ କୁହୁଳୁଥିବା ରାଜ୍ୟପାଳଙ୍କୁ ଖଲିଲ ଅହମ୍ମଦ ସମର୍ଥନ ଓ ସହାନୁଭୂତି ଦେବାରୁ, ରାଜ୍ୟପାଳଙ୍କ ଉତ୍ତର ଆସିବାରେ ବିଳମ୍ବ ଘଟିଲା । ମୁଁ ଦିନେ ରାତ୍ରି ଭୋଜନକୁ ରାଜ୍ୟପାଳ ଓ ଚିଫ୍ ଜଷ୍ଟିସଙ୍କୁ ଆମ ଘରକୁ ଡାକିଲି ଓ ଉଭୟଙ୍କର ମାନ ରଖି ଖଣ୍ଡିଏ ଉତ୍ତର ଚିଠା କରାଗଲା । ପରଦିନ ଚିଫ୍ ଜଷ୍ଟିସ ଜିଲ୍ଲା ଜଜ୍ ଦୁଇଜଣଙ୍କୁ ଡକାଇ ତାଙ୍କ ପ୍ରୟାସରୁ ନିବୃତ୍ତ କଲେ ଏବଂ ସେ ରାଜ୍ୟପାଳଙ୍କଠାରୁ ପାଇଥିବା ଉତ୍ତରର ଏକ ନକଲ ବିଚାର ବିଭାଗୀୟ ଅଫିସର ଆସୋସିଏସନର ପ୍ରେସିଡେଣ୍ଟଙ୍କ ପାଖକୁ ପଠାଇବାରୁ, ସେ ଆସୋସିଏସନ କାର୍ଯ୍ୟକାରୀ କମିଟି ଧନ୍ୟବାଦର ସହିତ ପତ୍ରର ପ୍ରାପ୍ତି ସ୍ୱୀକାର ରାଜ୍ୟପାଳଙ୍କୁ ଜଣାଇଦେଲେ । କଥାର ସମାପ୍ତି ଘଟିଲା ଏକ ପ୍ରକାରେ ।

ଚିଫ୍ ଜଷ୍ଟିସ ରାମସ୍ୱାମୀ ଧର୍ମପରାୟଣ ଥିଲେ । ନିଜର ପାଣ୍ଡିତ୍ୟ ଓ ପଦବୀର ଅଭିମାନ ମଧ ଥିଲା ଅଧିକ । ସେ ରାଜଭବନର ନିମନ୍ତ୍ରଣ ଛଡା, କେଉଁଠାକୁ ବା କାହା ଘରକୁ ଯାଆନ୍ତି ନାହିଁ । ମୁଁ ପାଟନା ଯିବାର ଦ୍ୱିତୀୟ ଦିନ ସନ୍ଧ୍ୟାରେ ସସ୍ତ୍ରୀକ ତାଙ୍କ ଘରକୁ ସୌଜନ୍ୟମୂଳକ ସାକ୍ଷାତ ପାଇଁ ଯାଇଥିଲି । ସେ ଓ ତାଙ୍କ ସ୍ତ୍ରୀ ଅତି ଆପ୍ୟାୟିତ ବୋଧକଲେ । ସେ ଉଭୟେ ଆମ ଘରକୁ ଆସିବା ଆରମ୍ଭ କଲେ । ରାମସ୍ୱାମୀ ଆସିଲେ ଆମ ଠାକୁର ଘରେ ସାଷ୍ଟାମ ପ୍ରଣିପାତ କରନ୍ତି । ଅନ୍ୟ ଜଜ୍‌ମାନେ କୌତୁହଳ ପ୍ରକାଶ କଲେ, ସେ କିପରି ଆମ ଘରକୁ ଆସୁଛନ୍ତି, ଆଉ କାହା ଘରକୁ ଯାଆନ୍ତି ନାହିଁ କିମ୍ବା କାହାକୁ ତାଙ୍କ ଘରକୁ ଡାକନ୍ତି ନାହିଁ । ମୁଁ ଚିଫ୍ ଜଷ୍ଟିସଙ୍କୁ ଦିନେ ରାତ୍ରି ଭୋଜନକୁ ଡାକି ଅନ୍ୟ ସମସ୍ତ ଜଜ୍‌ଙ୍କୁ ଡାକିଲି । ସେ ଦିନ ଖାଇବାବେଳେ ପ୍ରସ୍ତାବ କଲି ଯେ ପ୍ରତି ମାସରେ ଥରେ ଅନ୍ତତଃ ଗୋଟିଏ ଶନିବାର ସନ୍ଧ୍ୟାରେ ଜଣେ

Digitized by srujanika@gmail.com

ଜଜ୍‌ଙ୍କ ଘରେ ସମସ୍ତେ ମିଳିତ ହେବା । ସମସ୍ତେ ଆଗ୍ରହରେ ସମ୍ମତ ହେଲେ । ଏହି ଆୟୋଜନରେ ସମସ୍ତଙ୍କ ଭିତରେ ସଦ୍‌ଭାବ ବଢ଼ିଲା । ବାରରେ ଏକଥା ଆଲୋଚିତ ହୋଇ, ଗୋଟେ ନୂଆ ପରଂପରା ମୁଁ ଆରମ୍ଭ କଲି ବୋଲି ପ୍ରଚାର ହୋଇଗଲା ।

ହାଇକୋର୍ଟରେ ଦୁଇଟି ଲିଫଟ୍ ଥାଏ ଜଜ୍‌ମାନେ ତଳ ମହଲା ଚେମ୍ବରମାନଙ୍କରୁ ଓପର ମହଲା କୋର୍ଟ ରୁମ୍‌ମାନଙ୍କୁ ଯିବା ପାଇଁ । ମୁଁ ଲକ୍ଷ୍ୟ କଲି ବୟସ୍କ ଓ ଅସୁସ୍ଥ ଆଡଭୋକେଟ୍‌ମାନେ ଓପର ମହଲା ଦୁଇ ଓକିଲଖାନାକୁ ଆଡଭୋକେଟ୍‌ସ ଆସୋସିଏସନ୍ ଓ ବାର ଅସୋସିଏସନ୍, (ବାରିଷ୍ଟରଙ୍କର) ଲମ୍ବା ସିଡ଼ିରେ ଚଢ଼ି ଯିବାପାଇଁ କଷ୍ଟବୋଧ କରୁଥିଲେ । ସେମାନେ ଦିନକୁ ଥରେ ଓପରକୁ ଯିବା ଓ ଓହ୍ଲାଇବା ପାଇଁ ଲିଫ୍‌ଟ ବ୍ୟବହାର କରିବା ପାଇଁ ଅନୁମତି ଦିଆହେଲେ ଭଲ ହେବ ବୋଲି ମୁଁ ଚିଫ୍ ଜଷ୍ଟିସଙ୍କୁ କହିବାରେ ସେ ପ୍ରଥମରୁ ଥତମତ ହୋଇ ପରେ ରାଜି ହେଲେ । ସେହି ମର୍ମରେ ବାରକୁ ଜଣାଇ ଦେବାରେ ଏତେ ପ୍ରଶଂସା ପ୍ରକାଶ ପାଇଲା ଯେ କହିଲେ ନ ସରେ । ସେଥିରୁ ମୋ ଭାଗରେ କମ୍ ନଥିଲା ।

ବଳଭଦ୍ରପ୍ରସାଦ ସେତେବେଳେ ପାଟନା ବିଶ୍ୱବିଦ୍ୟାଳୟର ଭାଇସ୍ ଚାନ୍‌ସେଲର ଥିଲେ । ସେ କଟକରେ ଥିଲାବେଳେ ଆମେ ଦୁହେଁ ଉତ୍କଳ ବିଶ୍ୱବିଦ୍ୟାଳୟରେ ମୂଳରୁ ସଂପୃକ୍ତ ଥିଲୁ । ମୋର ପାଟନା ଯିବା ସଙ୍ଗେ ସଙ୍ଗେ ସେ ମୋତେ ପାଟନା ବିଶ୍ୱବିଦ୍ୟାଳୟ ସହିତ ସଂପୃକ୍ତ କରାଇ ଦେଲେ; ବିଶେଷ ଭାବରେ ପାଟନା ଲ କଲେଜ ସଙ୍ଗେ । ପାଟନା ଛାଡିବା ପର୍ଯ୍ୟନ୍ତ ତାହା ରହିଥିଲା, ଅନ୍ୟ-ଭାଇସଚାନ୍‌ସେଲରମାନଙ୍କ ସମୟରେ ମଧ୍ୟ । ଇୟୁନିଭରସିଟିର ଛାତ୍ର ସଂସ୍ଥା, ହଷ୍ଟେଲର ବାର୍ଷିକ ଉତ୍ସବ, ସାମୟିକ ତର୍କସଭା, ସେମିନାର ପ୍ରଭୃତିରେ ମୁଖ୍ୟଅଂଶ ଅନେକ ସମୟରେ ଗ୍ରହଣ କରିବାକୁ ପଡିଲା । ଡକ୍ଟର କେ.କେ. ଦତ୍ତ ଭାଇସଚାନସେଲର ଥିଲାବେଳେ ୟୁନିଭରସିଟି ଆଇନ ଶିକ୍ଷାରେ ପରିବର୍ତ୍ତନର ଆବଶ୍ୟକତା ଅନୁଧ୍ୟାନ କରିବା ପାଇଁ ମୋ ଅଧ୍ୟକ୍ଷତାରେ ଏକ କମିଟି ବସାଇ ଥିଲେ । ଲ କଲେଜର ପ୍ରିନିସ୍‌ପାଲ ଦେଶପାଣ୍ଡେ ତାହାର ସମ୍ପାଦକ, ଆଡଭୋକେଟ୍ ଜେନେରାଲ ମହାବୀର ପ୍ରସାଦ, ଗଭର୍ଣ୍ଣମେଣ୍ଟ ଆଡଭୋକେଟ୍ ଲାଲା ନାରାୟଣ ସିହ୍ନା ତାହାର ମେମ୍ବର ଥିଲେ । ସାକ୍ଷ୍ୟ ଗ୍ରହଣ, ଅନୁଧ୍ୟାନ, ଆଲୋଚନା ପରେ ଆମ ଦେବା ରିପୋର୍ଟର ପରାମର୍ଶ (ମହାପାତ୍ର କମିଟି ରେକମେଣ୍ଡେସନ୍) ପାଟନା ଓ ଉତ୍ତର ଭାରତର ଅନ୍ୟ କେତେକ ବିଶ୍ୱବିଦ୍ୟାଳୟରେ ଗୃହୀତ ହୋଇ ଲ କଲେଜମାନଙ୍କରେ ୧୦ଟା

Digitized by srujanika@gmail.com

ଠାରୁ ଦିନବେଳା ପୂରା ସମୟ କାର୍ଯ୍ୟ କରିବା ଅଧ୍ୟାପକମାନଙ୍କ ଦ୍ୱାରା ତିନିବର୍ଷର ପାଠ୍ୟକ୍ରମର ପ୍ରବର୍ତ୍ତନ କରାଯାଇଥିଲା ।

ବିଶ୍ୱବିଦ୍ୟାଳୟ ଛାତ୍ର ସଂସଦର ଏକ ବାର୍ଷିକ ଉତ୍ସବରେ ଏକ ଅପ୍ରତ୍ୟାଶିତ ଘଟନା ଅନେକ ଦିନ ପର୍ଯ୍ୟନ୍ତ ସାଧାରଣରେ ଆଲୋଚିତ ହୋଇଥିଲା । ଶ୍ରୀକୃଷ୍ଣ ସିଂହ ମୁଖ୍ୟମନ୍ତ୍ରୀ ଉକ୍ତ ଉତ୍ସବ ଉଦ୍‌ଘାଟନ କରିବାର କଥା ଥିଲା । ରାଜ୍ୟପାଳ ଜାକିର ହୁସେନ୍ ସଭାପତି ଓ ମୁଁ ମୁଖ୍ୟବକ୍ତା ଥିଲୁ । ସମୟ ଅନୁସାରେ ରାଜ୍ୟପାଳ ଓ ମୁଁ ଉପସ୍ଥିତ ହେଲୁ । ସହସ୍ରାଧିକ ଛାତ୍ରଛାତ୍ରୀ ଓ ବହୁ ସଂଖ୍ୟକ ଅଧ୍ୟାପକ ଓ ଆମେ ଅପେକ୍ଷା କରି ରହିଲୁ ମୁଖ୍ୟମନ୍ତ୍ରୀଙ୍କୁ । ସଭାକାର୍ଯ୍ୟ ଆରମ୍ଭ କରିବା ପାଇଁ ରାଜ୍ୟପାଳ ଅନିଚ୍ଛୁକ ହେଲେ । ଏପରି ପ୍ରାୟ କୋଡିଏ ମିନିଟ୍ ବିତିଲା ପରେ, ମୁଁ ଠିଆ ହୋଇ ଉପସ୍ଥିତ ସମସ୍ତଙ୍କୁ ନମ୍ରତାର ସହିତ ପଚାରିଲି, କୌଣସି ଅସୁବିଧାବଶତଃ ମୁଖ୍ୟମନ୍ତ୍ରୀ ଆସିବାରେ ବିଳମ୍ବ ଘଟିଛି । ରାଜ୍ୟପାଳ ସୌଜନ୍ୟ ରକ୍ଷା କରି ଅପେକ୍ଷା ରଖିଛନ୍ତି । ଛାତ୍ରଛାତ୍ରୀମାନେ ଅଧୀର ଅନୁଭବ କରିବା ଜଣାପଡୁଛି । ଯଦି ଆପଣମାନଙ୍କ ସମ୍ମତି ହୁଏ, ତେବେ ମୋର ଯାହା ସାମାନ୍ୟ ବକ୍ତବ୍ୟ, ମୁଁ ତାହା ନିବେଦନ କରିପାରେ । ମୁଖ୍ୟମନ୍ତ୍ରୀ ଆସିଲେ ଆନୁଷ୍ଠାନିକ ସଭାକାର୍ଯ୍ୟ ଚାଲିପାରେ । ବିପୁଳ କରତାଳିରେ ସମ୍ମତି ମିଳିଲା ଏବଂ ମୁଁ ଆରମ୍ଭ କଲି ମୋର ସାମାନ୍ୟ କଥନ । କିଛି ସମୟ ପରେ ମୁଖ୍ୟମନ୍ତ୍ରୀ ଆସିଲେ ଏବଂ ମୋର କାର୍ଯ୍ୟକୁ କେବଳ ପସନ୍ଦ କଲେ ତାହା ନୁହେଁ ଅତି ପ୍ରସନ୍ନତାର ସହିତ କୌତୁକରେ ପ୍ରକାଶ କଲେ— ଜଜମାନେ କେବଳ କୋର୍ଟରେ ନୁହେଁ, ବାହାରେ ମଧ୍ୟ ବାଟ ଦେଖାନ୍ତି । ମୋ ମାନ ଆଜି ଜଜ ସାହେବ ରକ୍ଷା କରିଛନ୍ତି, ମୁଁ ସେଥିପାଇଁ କୃତଜ୍ଞତା ଜ୍ଞାପନ କରିବା ସଙ୍ଗେ ଆପଣମାନଙ୍କଠାରୁ, ବିଶେଷରେ ରାଜ୍ୟପାଳଙ୍କ ପାଖେ, କ୍ଷମା ମାଗୁଛି.......। ସଦିଚ୍ଛାର ବାତାବରଣରେ ସଭା ଚାଲିଲା । କଥା ରଟିଲା, ମୁଖ୍ୟମନ୍ତ୍ରୀ ରୁଷ୍ଟ ନ ହୋଇ, ତୁଷ୍ଟ ହେଲେ କେମିତି ।

ଶ୍ରୀକୃଷ୍ଣ ସିଂହ ଥିଲେ, ଅତି ଉଦାର ସ୍ୱଭାବର । ପଠନାଭ୍ୟାସ ଥିଲା ପ୍ରସାରିତ । ସୌଜନ୍ୟରେ ଥିଲେ ଅପରୂପ । ଏକ ମଙ୍ଗଳ ମୁହୂର୍ତ୍ତରେ ବୋଧହୁଏ ମୋର ସାକ୍ଷାତ ଘଟିଥିଲା ତାଙ୍କ ସଙ୍ଗେ । ମୋ ବାସସ୍ଥଳୀ ଥିଲା ତାଙ୍କ କୋଠିର ଅଦୂରବର୍ତ୍ତୀ । ଦିନେ ରବିବାର ପୂର୍ବାହ୍ନରେ ମୁଁ ଗଲି ତାଙ୍କ ପାଖକୁ । ଗୋଡରେ ପୀଡାଥିବାରୁ ହଳଦି ଲଗାଇ ବସି ଥାଆନ୍ତି । ଓଡିଶା ପ୍ରସଙ୍ଗ କଥା ହେବାପାଇଁ ସେ ଖବର ଦେଇଥିଲେ । ପ୍ରାୟ ଅଧଘଣ୍ଟା କଥାବାର୍ତ୍ତା ଭିତରେ ସିଂହଭୂମି, ଷଢ଼େଇ

Digitized by srujanika@gmail.com

କଲା, ଖରସୁଆଁ ଓଡିଶାରେ ମିଶିବା କଥା ପଡିଲା । ସେକ୍ରେଟେରିଅଟରୁ ତିନିଟି ଫାଇଲା ଅଣାଇଲେ । ମ୍ୟାପ ବାହାରିଲା । ଜାମସେଦ୍‌ପୁରକୁ ବାଦ୍‌ଦେଇ ଷଢ଼େଇକଳା ଓଡିଶାରେ ମିଶିବାପାଇଁ ସେ ରାଜିହେଲେ ଏବଂ ତାହା ସେ ବିଧାନ ପରିଷଦରେ ମନାଇ ନେଇ ପାରିବେ ଯଥା ସମୟରେ ଓ କେନ୍ଦ୍ରକୁ ମଧ ମଙ୍ଗାଇ ନେବେ ବୋଲି ସ୍ଥିର ଭାବରେ କହିଲେ । ଖରସୁଆଁ ମିଶିବାର ଆପତ୍ତି ନଥିଲା । ସିଂହଭୂମିର ଅନ୍ୟ ଅଂଶ କଥା ପଛକୁ ରହିଲା । ଜାମ୍‌ସେଦପୁର ସହିତ ଜଗନ୍ନାଥ ପୁର ଥାନାଟିକୁ ବିହାରରେ ଛାଡିଦେଲେ ସମସ୍ୟାର ଜଟିଳତା କଟିଯିବ ବୋଲି ତାଙ୍କର ଧାରଣା ଥିଲା । ଏ ବିଷୟରେ ତାଙ୍କର ନିର୍ଭର ନିଷ୍ପତ୍ତି ଗୋପନୀୟତାର ସହିତ ମୁଁ ଓଡିଶାର ମୁଖ୍ୟମନ୍ତ୍ରୀ ମହତାବବାବୁଙ୍କୁ ଜଣାଇବା ଓ କେନ୍ଦ୍ରରେ ମୋରାରଜୀ ଦେଶାଇଙ୍କ ସମର୍ଥନ ଅବିଳମ୍ବେ ସଂଗ୍ରହ କରିବା ସ୍ଥିର ହେଲା । କିପରି ଓ କାହିଁକି ଶ୍ରୀକୃଷ୍ଣ ସିଂହ ଏତେ ସରଳ ଭାବେ ଏ ବିଷୟ ମୋ ସହିତ ଆଲୋଚନା କରି, ମୋ ମାଧମରେ ଏ ଦାୟିତ୍ୱ ସ୍ୱୀକାର କଲେ, ମୁଁ ଜାଣି ପାରି ନଥିଲି । ଓଡିଶାର ଆକାଂକ୍ଷିତ ଏକ ପ୍ରଶ୍ନର ସମାଧାନର ଆଶୁ ଆଶାରେ ମୁଁ ଆନନ୍ଦ ଲାଭ କରିବା ସ୍ୱାଭାବିକ । ଷଢ଼େଇକଳା ରାଜା ସାହେବ ପାଟନା ଆସିଲେ ମୋ ସହିତ ସାକ୍ଷାତ ହେଉଥିଲା । ଗୋଟିଏ ଥାନାକୁ ବାଦ ଦେଇ (ବର୍ତ୍ତମାନ ପାଇଁ) ଷଢ଼େଇକଳା ଓଡିଶାରେ ମିଶିବା ପାଇଁ ସେ ବ୍ୟଗ୍ର ଥିଲେ, ଯଦିଓ ଦଶବର୍ଷ ପୂର୍ବେ ୧୯୪୭/୪୮ ବେଳେ ତାଙ୍କରି ପ୍ରରୋଚନାରେ ଓଡିଶା ମିଶ୍ରଣରୁ ଷଢ଼ାଇକଳାକୁ ସେ କାଢ଼ି ନିଆଇଥିଲେ । ବିହାରରେ ଷଢ଼େଇକଳା, ଖରସୁଆଁ ଓଡିଶାକୁ ପୁନରାବର୍ତ୍ତନ ବିରୁଦ୍ଧରେ ଏକ ବଳିଷ୍ଠ ଗୋଷ୍ଠୀ ଥାଆନ୍ତି । ବିହାରର ପୂର୍ବତନ ଆଡଭୋକେଟ୍ ଜେନେରାଲ ବଳଦେବ ସହାୟ ତାହାର ଅଗ୍ରଣୀ । ଶ୍ରୀକୃଷ୍ଣ ସିଂହ ତାଙ୍କୁ ତାଙ୍କ ପ୍ରସ୍ତାବରେ ରାଜି କରାଇଥିଲେ । ଏ କଥାବାର୍ତ୍ତାର ଅଳ୍ପଦିନ ପରେ ମୋରାରଜୀ ଦେଶାଇ ଭୁବନେଶ୍ୱରକୁ ଆସୁଥିବାର ପୂର୍ବଦିନ ମୁଁ ପାଟନାରୁ ଆସି କଟକରେ ପହଞ୍ଚିଲି । ମହତାବବାବୁଙ୍କୁ ସବୁକଥା କହିଲି ଏବଂ ତାଙ୍କ କହିବା ଅନୁସାରେ, ଭୁବନେଶ୍ୱର ବିମାନ ବନ୍ଦରରୁ ମୋରାରଜୀଙ୍କ ସହିତ (ମହତାବ ବାବୁ, ରାଜେନ୍ଦ୍ର ନାରାୟଣ ସିଂହଦେଓ ମଧ ଥିଲେ) ଗେଷ୍ଟ ହାଉସକୁ ଆସିଲୁ । ସେଠାରେ ଶ୍ରୀକୃଷ୍ଣ ସିଂହ କହିଥିବା ସମସ୍ତ କଥା ବିସ୍ତାରିତ ଭାବରେ ମୁଁ କହିବା ପରେ, ମୋରାରଜୀ କେନ୍ଦ୍ରର ସମ୍ମତି ଓ ସମର୍ଥନ ମିଳିବାର ଦାୟିତ୍ୱ ନେବେ ବୋଲି ସ୍ପଷ୍ଟ କହିଲେ । ଠିକ୍ କେଉଁ ଅଂଶ ବାଦଦେଇ ଷଢ଼େଇକଳା ଓଡିଶାରେ ପୁଣି

Digitized by srujanika@gmail.com

ମିଶିବା କଥା ହେଉଛି ତାହା ମାନଚିତ୍ରରେ ଦେଖିବା ପାଇଁ ରାଜେନ୍ଦ୍ର ନାରାୟଣ ସିଂହଦେଓ ଓ ମୁଁ ତାଙ୍କ ବାସଭବନକୁ ଗଲୁ ଏବଂ ସେଠାରେ ମାନଚିତ୍ରରେ ଦାଗ ଦେଇ, ମିଶ୍ରଣ କିପରି ଭାବରେ ଚିଠା କରାଯିବ, ତାହାର ଆଲୋଚନା ହେଲା । ଦ୍ୱିପହର ଭୋଜନ ମୋରାରଜୀଙ୍କ ସମ୍ମାନରେ ଗେଷ୍ଟ ହାଉସରେ ମୁଖ୍ୟମନ୍ତ୍ରୀଙ୍କ ତରଫରୁ ଆୟୋଜିତ ହୋଇଥିଲା । ମୁଁ ସେଥିରେ ଯୋଗ ଦେବାପାଇଁ ଅନିଚ୍ଛୁକ ଥିଲେ ମଧ ମହତାବ ବାବୁଙ୍କ ଅନୁରୋଧ ଏଡାଇ ପାରିଲି ନାହିଁ । ସେହି ରାତ୍ରରେ ମୁଁ ପାଟନା ଫେରି ଗଲି ଏବଂ ଶ୍ରୀକୃଷ୍ଣ ସିଂହଙ୍କୁ ମୋରାରଜୀଙ୍କ ସଙ୍ଗେ ହୋଇଥିବା କଥାବାର୍ତ୍ତା ଜଣାଇ ଦେଲି । ସେ ତତ୍ପରତାର ସହିତ କାର୍ଯ୍ୟଟି କରିଦେବେ ବୋଲି ନିର୍ଭର ସ୍ୱୀକୃତି ଜଣାଇଲେ । ମୋ ମନରେ ଆହ୍ଲାଦ ହେଲା ଯେ ଓଡିଆ ଜାତିର ଏକ ଆକାଂକ୍ଷା ପୂରଣରେ ମୁଁ ଘଟନାକ୍ରମେ କିଛି ସହାୟକ ହୋଇ ପାରିଲି । ମନେ ହେଲା, ମୁଁ ବୋଧହୁଏ ପାଟନା ଆସିଥିଲି ଏଇଥିପାଇଁ । ମନର ସୁଖ ମନରେ ରହିଲା କେବଳ । ଦୁର୍ଭାଗ୍ୟକୁ, ଭୁବନେଶ୍ୱରରେ ଏ ଗୁପ୍ତ ପ୍ରସ୍ତାବ ପଦାକୁ ଫୁଟି ପଡିଲା । କାହା ଆଡୁ ହେଲା, କହି ପାରିବି ନାହିଁ । ମୋରାରଜୀଙ୍କ ନିର୍ଭର ପ୍ରତିଶ୍ରୁତି ପରେ ମିଶ୍ରଣ ପ୍ରସ୍ତାବ ନିଶ୍ଚୟ କାର୍ଯ୍ୟକାରୀ ହେବାରେ ସନ୍ଦେହ ନ ଥିଲା । ରାଜେନ୍ଦ୍ର ନାରାୟଣ ଗମ୍ଭୀର ପ୍ରକୃତିର ଲୋକ । ବଲାଙ୍ଗୀର ମହାରାଜା ସେ ଥିଲେ, କିନ୍ତୁ ଷଢ଼େଇକଳା ରାଜାଙ୍କର ପୁତ୍ର ସେ । ସେ ବୋଧହୁଏ ସବୁ କଥା ତାଙ୍କ ପିତାଙ୍କୁ ଜଣାଇଥିବେ ଏବଂ ସେ ଆଡୁ କଥାଟା ବାହାରକୁ ଫିଟିଥାଇପାରେ କିମ୍ବା ଜଣେ ଉଚ୍ଚପଦସ୍ଥ କର୍ମଚାରୀ ଯେ ଏକଥା ଭୁବନେଶ୍ୱରରେ କିଛି ଅବଗତ ହୋଇଥିଲେ, ଆଉ କାହାକୁ ଜଣାଇଥିବେ । ଯେଉଁ ସୂତ୍ରରୁ ହେଉ, କଥାର କିଛି ଅଂଶ ପଦାରେ ପଡିବାରୁ ବୋଧହୁଏ କାହାରି କାହାରି ଧାରଣା ବା ସନ୍ଦେହ ହେଲା ମହତାବବାବୁ, ରାଜେନ୍ଦ୍ର ନାରାୟଣ କୌଣସି ଅଭିସନ୍ଧି ରଖି, ଜାମ୍‌ସେଦପୁରକୁ ଯେଉଁଠାରେ ଭାରତର ସେତେବେଳର ସର୍ବଶ୍ରେଷ୍ଠ ଇସ୍ପାତ କାରଖାନା ଥାଏ, ବିହାରକୁ ଦେଇ ଦେଉଛନ୍ତି । ଅତି ଅଳ୍ପଦିନ ବ୍ୟବଧାନରେ ଓଡିଶା ବିଧାନସଭାରେ ଯଦୁମଣି ମଙ୍ଗରାଜ ଏକ ପ୍ରଶ୍ନ ପଚାରି ବସିଲେ, ଶୁଣାଯାଉଛି ଓଡିଶା ସରକାର ଜାମସେଦପୁରକୁ ବାଦଦେଇ ଷଢ଼େଇକଳାକୁ ଓଡିଶାକୁ ଆଣିବାକୁ ରାଜି ହୋଇଛନ୍ତି — ଏକଥା କଣ ସତ ? ଏ ପ୍ରଶ୍ନର ବିବରଣୀ ଖବର କାଗଜରେ ବାହାରିବାରୁ ପାଟନାରେ ବିହାର ବିଧାନସଭାରେ ପ୍ରଶ୍ନ ପଚରାଗଲା, ବିହାର ସରକାର ଷଢ଼େଇକଳାକୁ ବିହାରରୁ ଅନ୍ତର କରିବାକୁ ସମ୍ମତ ହୋଇଛନ୍ତି କି ? ମୁଖ୍ୟମନ୍ତ୍ରୀ

Digitized by srujanika@gmail.com

ଶ୍ରୀକୃଷ୍ଣ ସିଂହ ଅଡୁଆରେ ପଡି ବିଧାନ ସଭାରେ ନାସ୍ତିବାଣୀ ଶୁଣାଇଲେ । ସେହି ଦିନ ରାତି ପ୍ରାୟ ଆଠଟା ବେଳେ ମତେ ନିଜେ ଟେଲିଫୋନ୍‌ରେ ଡାକି କହିଲେ, ଏ କଣ ବିଭ୍ରାଟ ହୋଇଗଲା ? ମୁଁ କିଛି ବୁଝିନପାରି, ତାଙ୍କ କୋଠିକୁ ସଙ୍ଗେ ସଙ୍ଗେ ଗଲି । ଅତି ବିଷର୍ଣ୍ଣତାର ସହିତ ସେ କହିଲେ ଓଡିଶା ବିଧାନସଭାରେ ଉଠିଥିବା ପ୍ରଶ୍ନ ଉପରେ ଉତ୍ୟକ୍ତ ହୋଇ ବିହାର ବିଧାନସଭାରେ ତାଙ୍କୁ (ଶ୍ରୀ କୃଷ୍ଣ ସିଂହଙ୍କୁ) ଚକ୍ରାନ୍ତ କରୁଥିବାର ଅଭିଯୋଗ କିପରି କରାହେଲା ଏବଂ ସେ ବାଧହୋଇ ଏହା ଏକ ଗୁଜବ ଓ ଏଥିରେ କୌଣସି ସତ୍ୟତା ନାହିଁ ବୋଲି ପ୍ରକାଶ କଲେ । ସେ ବିମର୍ଷ ଥିଲେ, ମୁଁ ନିରାଶ ବୋଧ କଲି । ତାଙ୍କ କଥାରୁ ଜାଣିଲି ସେ ଆଉ ଏ ବିଷୟରେ ହଲିଲା ପାଣିକୁ ଗୋଡ ଦେବେ ନାହିଁ । ଗୋଟିଏ ବଡ ଆଶା ଭଣ୍ଡୁର ହୋଇଗଲା ଅତି ଅକାରଣରେ । ରକ୍ଷା ହେଲା, ମୁଁ ଏ ବିଷୟରେ ସଂଶ୍ଳିଷ୍ଟ ଥିବା ବିହାରରେ ଶ୍ରୀକୃଷ୍ଣ ସିଂହଙ୍କ ଛଡା ଆଉ କେହି ଜାଣିଲେ ନାହିଁ । ମଙ୍ଗରାଜେ (ଯଦୁମଣି) ଟିକିଏ ସାବଧାନତା ଅବଲମ୍ବନ କରିଥିଲେ, ଏ ଦୁର୍ଭାଗ୍ୟ ଘଟି ନଥାନ୍ତା । ପରେ ସେ ଦୁଃଖିତ ହେଲେ, ପ୍ରକୃତ କଥା ସବୁ ଜାଣି । କିନ୍ତୁ ଲେଡି ଗୁଡ କହୁଣିକୁ ବୋହି ଯାଇଥିଲା ସେତେବେଳକୁ ।



Digitized by srujanika@gmail.com

# ଠାକୁରଙ୍କ ମହିମା

ପାଟନାରେ କେବଳ ଜଜ୍‌ରୂପେ ମୁଁ ପରିଚିତ ନଥିଲି । ମୋ ସ୍ତ୍ରୀ ମଧ୍ୟ ଉପର ଶ୍ରେଣୀର ଅନେକ ପରିବାରଙ୍କର ପ୍ରିୟପାତ୍ରୀ ହେଲେ, ଆମ ଘର ଠାକୁରଙ୍କ ସଂପର୍କରେ । ପ୍ରଖ୍ୟାତ ଆଡଭୋକେଟ୍ ଗଜେନ୍ଦ୍ରପ୍ରସାଦ ଦାସଙ୍କ ସହଧର୍ମିଣୀଙ୍କ ସହିତ ପ୍ରଥମ ଆଳାପ ଦିନୁ ଘନିଷ୍ଠ ସଖ୍ୟତା ଆରମ୍ଭ ହୋଇଥିଲା ଦୁହିଁଙ୍କ ମଧ୍ୟରେ । ବହୁଦିନରୁ ସେ ପାଟନା ବାସିନ୍ଦା ଥିଲେ । ତାଙ୍କର ଜଣାଶୁଣା ମହଲରେ ଆମ ଠାକୁରଙ୍କ କଥା ସେ କଥା ପ୍ରସଙ୍ଗରେ କହିବା ଫଳରେ ଅନେକ ସ୍ତ୍ରୀ ଲୋକ ତାଙ୍କ ସଙ୍ଗରେ ଆମ କୋଠିକୁ ଠାକୁର ଦର୍ଶନ କରିବାକୁ ଆସିବା ଆରମ୍ଭ କଲେ । ଖଣ୍ଡିଏ ଭଙ୍ଗାଇଟାର ଚତୁଃପାର୍ଶ୍ୱରେ ଚକ୍ଷୁ ସ୍ୱତଃ ପ୍ରକାଶିତ ହେବା ଏବଂ ଏକ ଅଂଶରେ ନାଶିକା ସହିତ ମୁଖ ସୂଚିତ ହେବା ଅତ୍ୟାଶ୍ଚର୍ଯ୍ୟ ନିଶ୍ଚୟ ଥିଲା । ଆମେ ଈଶ୍ୱରାନୁଗ୍ରହରେ କୃତଜ୍ଞ ଥାଇ ନମ୍ରତାର ସହିତ ସେ ସମ୍ପର୍କରେ ଚଳୁଥାଉ । ବାହାରେ କାହା ପାଖରେ ପ୍ରୌଢ଼ି ଦେଖାଇବା ତ ଦୂରର କଥା, ସେ ବିଷୟରେ ଉଲ୍ଲେଖ ସୁଦ୍ଧା କରୁ ନ ଥିଲୁ । ମନରେ ଭୟ ଓ ସଂଶୟ ଥାଏ, ଯେ ଅନୁଗ୍ରହ କରି ଏପରି ଅପୂର୍ବ ଦର୍ଶନ ଦେଇଛନ୍ତି, କାଳେ କେତେବେଳେ ସେହିପରି ଅଦୃଶ୍ୟ ହୋଇଯିବେ । ସ୍ତ୍ରୀଙ୍କର ଦିନରାତି ସେହି ଭାବନା ଥାଏ ଏବଂ ସବୁବେଳେ ଶଙ୍କିତ ମନରେ ଥାଆନ୍ତି । ଗଜେନ୍ଦ୍ରବାବୁଙ୍କ ସ୍ତ୍ରୀ ଆଗଚଲା ଲୋକ । ଧର୍ମଭାବପନ୍ନା । ସେ ସଂଭ୍ରାନ୍ତ ପରିବାରର ସ୍ତ୍ରୀ ଲୋକଙ୍କୁ ସାଙ୍ଗରେ ଠାକୁରଙ୍କୁ ଦେଖାଇବାକୁ ଆଣିଲେ, ତାଙ୍କୁ ବାଧା ଦେବା ବା ସେଥିରେ ପରୋକ୍ଷରେ ଆପତ୍ତି ପ୍ରକାଶ କରିବା ମୋ ସ୍ତ୍ରୀଙ୍କ ପକ୍ଷେ ସମ୍ଭବ ବା ସମୀଚୀନ ନ ଥିଲା । ବରଂ ଅନ୍ୟମାନଙ୍କ ପ୍ରଶଂସାସୂଚକ ମନ୍ତବ୍ୟ ତାଙ୍କ ମନରେ ପ୍ରଫୁଲ୍ଲତା ନ ଆଣୁଥିଲା ବୋଲି କହି ପାରିବି ନାହିଁ । ଏହି ପର୍ବ ଚାଲୁଥାଏ, ଦିବସର ଅପରାହ୍ନରେ କିମ୍ବା ବିଳମ୍ବିତ ପୂର୍ବାହ୍ନରେ; ଯେତେବେଳେ ମୁଁ ହାଇକୋର୍ଟରେ ଥାଏ । କ୍ରମଶଃ ଏହାର ପ୍ରସାର ଘଟିଲା ଆପେ ଆପେ । ହିନ୍ଦୁ ମହିଳାମାନଙ୍କର ମାନସିକ ସ୍ଥିତି ଓ ଅଭିଳାଷ ସର୍ବତ୍ର ସମାନ । ଜଜ୍

Digitized by srujanika@gmail.com

ବନ୍ଧୁମାନଙ୍କ ମଧ୍ୟରୁ କାହାରି ପତ୍ନୀ, ଭଗିନୀ, ମାତା ଆସୁଥାଆନ୍ତି ଏବଂ ମୁଁ ହାଇକୋର୍ଟରେ ମଧ୍ୟାହ୍ନ ବିଶ୍ରାମ ସମୟରେ ଶରବ୍ୟ ହେଉଥାଏ । ବନ୍ଧୁମାନଙ୍କ ଅଭିଯୋଗରେ— ତାଙ୍କୁ କାହିଁକି ଆଗରୁ ଠାକୁରଙ୍କ କଥା କହି ନଥିଲି ବୋଲି । ଠାକୁର କଣ ସାଂସାରିକ ଆଡମ୍ବରର ଅଭିବ୍ୟକ୍ତି ଯେ ମୁଁ ସମସ୍ତଙ୍କୁ ସେ କଥା ବଖାଣୁ ଥାନ୍ତି ? ଚିଫ୍ ଜଷ୍ଟିସ ରାମସ୍ୱାମୀ ଓ ତାଙ୍କ ସ୍ତ୍ରୀ ଦିନେ ସନ୍ଧ୍ୟାରେ ଆସିଲେ ଠାକୁର ଦର୍ଶନ ପାଇଁ । ଉଭୟ ସାଷ୍ଟାଙ୍ଗ ପ୍ରଣିପାତ କରି ଦର୍ଶନରେ ଅଭିଭୂତ ହୋଇ, ମୂର୍ତ୍ତି ପ୍ରକାଶର ଆରମ୍ଭରୁ ସବୁ କଥା ମୋ ସ୍ତ୍ରୀଙ୍କଠାରୁ ଦରଖଣ୍ଡିଆ ହିନ୍ଦୀରେ ଶୁଣିବାକୁ ଲାଗିଲେ । ସେମାନେ ତାମିଲିଆନ, ଆମେ ଓଡିଆ । ଉଭୟ ହିନ୍ଦୀରେ ଅନଭ୍ୟସ୍ତ । ସୁତରାଂ ଭାଷାଠାରୁ ଭାବ ଦୁହିଁଙ୍କର ଅଧିକ ଅନୁସନ୍ଧନୀୟ । ରାମସ୍ୱାମୀ ପାଟନାରୁ ଦିଲ୍ଲୀକୁ ସୁପ୍ରିମ କୋର୍ଟରେ ଜଜ୍ ହୋଇଯିବା ପରେ, ଆର.ଏଲ. ନରସିଂହମ କଟକରୁ ତ ଆମ ସଙ୍ଗେ ଜଣାଶୁଣା ଥିଲା; କିନ୍ତୁ ସେ ଜଣାଶୁଣାରେ ବାହ୍ୟିକ ଘନିଷ୍ଠତା ପ୍ରକାଶ ପାଉ ନଥିଲା । ନରସିଂହମ ଆଇ.ସି.ଏସ୍. ଚାକିରିର ଲୋକ । ଜିଲ୍ଲାଜଜ୍, ଆଇନ ବିଭାଗ ସେକ୍ରେଟେରୀ, ତାପରେ ୧୯୪୮ରେ ଓଡିଶା ହାଇକୋର୍ଟ ଆରମ୍ଭବେଳୁ ହାଇକୋର୍ଟ ଜଜ୍ ହୋଇ ଚିଫ୍ ଜଷ୍ଟିସ ହୋଇଥିଲେ । ମୁଁ ଥାଏ କଟକରେ ଓକିଲ । ଓକିଲଙ୍କ ସଙ୍ଗେ ବାହାରେ ମିଳାମିଶାର ସେ ବିରୋଧୀ ଥିଲେ । କାଳେ କିଏ କୋର୍ଟର ବିଚାରରେ ତାଙ୍କୁ ପକ୍ଷପାତିତା ଦୋଷ ଦେଇଦେବ, ଏହି ଆଶଙ୍କାରେ ସେ ସତର୍କତା ଅବଲମ୍ବନ କରିବା ପାଇଁ ଦୂରେଇ ରହୁଥାନ୍ତି । ନିଜର ଦରକାରବେଳେ କେତେଥର, କଚେରୀରେ, କଟକରେ ମତେ ଚେମ୍ବରକୁ ଡକାଇ ପରାମର୍ଶ ଲୋଡୁଥିଲେ ବା ଆଲୋଚନା କରୁଥିଲେ ଏବଂ ପ୍ରତିଥର ପ୍ରକାରାନ୍ତରେ ସୂଚାଉଥିଲେ ଯେ ଅନ୍ୟମାନେ ସେ କଥା ନ ଜାଣିଲେ ଭଲ । ଓକିଲଙ୍କୁ ଟିକିଏ ହୀନ ଦୃଷ୍ଟିରେ ସେ ଦେଖୁଥିଲେ । ଅଧିକାଂଶ ଆଇ.ସି.ଏସ୍. ଜଜ୍‌ଙ୍କର ଏହି ମନୋଭାବ ମୁଁ ଲକ୍ଷ୍ୟ କରିଛି । ଓକିଲ ଜଜ୍ ହୋଇଗଲେ ଜାତି ବାସନ୍ଦ କଟିଯାଏ ତାଙ୍କ ପାଖରେ । ପାଟନାରେ ଚିଫ୍ ଜଷ୍ଟିସ ଥିଲାବେଳେ ନରସିଂହମ ଦିନେ ଅନ୍ୟଜଣେ ଜଜ୍ (ନନ୍ଦଲାଲ ଉଚ୍ଚଆଲିଆ) କଚେରୀ ବାହାରେ ଓକିଲମାନଙ୍କ ସଙ୍ଗେ ବେଶି ମିଳାମିଶା କରୁଛନ୍ତି ବୋଲି ଆକ୍ଷେପମୂଳକ ମନ୍ତବ୍ୟ ପ୍ରକାଶ କରନ୍ତେ ଏକ ଅପ୍ରତିଭ ପରିସ୍ଥିତିରେ ପଡିଥିଲେ । ଅଭିଯୁକ୍ତ ଜଜ୍ ତତ୍‌କ୍ଷଣାତ୍ ତାଙ୍କୁ ପଚାରିଲେ, ଆପଣ ତ କଚେରୀ ବାହାରେ ସରକାରୀ ଉଚ୍ଚ କର୍ମଚାରୀମାନଙ୍କ ସଙ୍ଗେ ଅବାଧ ମିଳାମିଶା କରୁଛନ୍ତି । ସେମାନଙ୍କ ତୁଳନାରେ ଓକିଲମାନେ କଣ ଦୂଷଣୀୟ ଗୋଷ୍ଠୀର

Digitized by srujanika@gmail.com

ଲୋକ ? ନିରବରେ ଉଭୟ ପକ୍ଷ ନିଜ ନିଜର ଦୁର୍ବଳତା ଅନୁଭବ କଲେ ଏବଂ ପରେ ସେ ଦିଗରେ ସେ ଦୁହିଁଙ୍କର ସଂଶୋଧିତ ପରିବର୍ତ୍ତନ ଆମ ଦୃଷ୍ଟି ବହିର୍ଭୂତ ହେଲା ନାହିଁ । ଜଜ୍ ହେଲେ ଟିକିଏ ଦୂରତା ରକ୍ଷା କରି ଚଳିବାକୁ ପଡେ । ଯେ ତାହା ନକରେ ବା ନ କରିପାରେ, ସେ ଅଯଥା ହେଲେ ମଧ, ସମୟେ ସମୟେ ସନ୍ଦେହ ବାତ ଆରପଟରୁ କେହି ଉଙ୍କିମାରୁଥିବାର ଦେଖିବାକୁ ପାଏ ।

ନରସିଂହମ୍ ପାଟନାକୁ ଚିଫ୍ ଜଷ୍ଟିସ ହୋଇ ଆସିଲା ପରେ ଆମ ସଙ୍ଗେ ଘନିଷ୍ଠତା ବଢ଼ିଗଲା । କଟକରେ ଥିଲାବେଳେ ସେ ଯେ ମୋ ଓକାଲତି କାର୍ଯ୍ୟର ଏତେ ପ୍ରଶଂସକ ଥିଲେ, ତାହା ମୁଁ ପୂର୍ବରୁ ଜାଣି ନଥିଲି ବା ସେ କୁତ୍ରାପି ତାହା ପ୍ରକାଶ କରିବାର ଶୁଣି ନଥିଲି । ଦିନେ ଜଜ୍‌ମାନଙ୍କର ଏକ ସଭାରେ ସେ ପ୍ରସଙ୍ଗ କ୍ରମେ କହି ପକାଇଲେ, ସେ କଟକକୁ ଜିଲ୍ଲାଜଜ୍ ହୋଇ ଯେତେବେଳେ ଗଲେ, ଦେଖିଲେ କଟକ ଓକିଲଙ୍କ ଭିତରେ ଯେ ସମସ୍ତଙ୍କଠାରୁ ଆକାରରେ କ୍ଷୁଦ୍ର (ଅର୍ଥାତ ମୁଁ); ତା ହାତରେ ସର୍ବାଧିକ ସଂଖ୍ୟାରେ କେସ୍ ରହିଛି । କଥାରେ ଅବଶ୍ୟ ଅତିରଞ୍ଜନ ଥିଲା । ରାମସ୍ୱାମୀଙ୍କ ପରି ସେ ତାଙ୍କ ସ୍ତ୍ରୀ ଆମ କୋଠିକୁ ଆସନ୍ତି ଠାକୁରଙ୍କ ଦର୍ଶନ ପାଇଁ । ଭାଗବତ ଚର୍ଚ୍ଚାରେ ସେ ଆଗ୍ରହୀ ଥିଲେ । ତାଙ୍କ ସ୍ତ୍ରୀ ଥିଲେ ବୀଣା ବାଦକୀ ।

କଲିକତାର ମୋହନାନନ୍ଦ ମହାରାଜଙ୍କର ଅନେକ ଶିଷ୍ୟ ପାଟନାରେ ଥାଆନ୍ତି । ସେ ପ୍ରାୟ ବର୍ଷକୁ ଥରେ ପାଟନା ଆସନ୍ତି । ସେହିପରି ସେ ଯାଆନ୍ତି ଭାରତବର୍ଷର ବହୁ ସ୍ଥାନକୁ ଓ ଇଉରୋପ, ଆମେରିକାକୁ । କୀର୍ତ୍ତନରେ ତନ୍ମୟତା, ଅତି ମଧୁର କଣ୍ଠ, ସୁଲଳିତ ସ୍ୱରରେ ଭଜନ ତାଙ୍କ ଆସରରେ ଅଭିନବ ଆକର୍ଷଣ । ଏକ୍‌ଜିବିସନ ରୋଡରେ ଜଣେ ବଙ୍ଗୀୟ ଶିଷ୍ୟଙ୍କ ଘରେ ସେ ରହୁଥିଲେ । ଦିନେ ସନ୍ଧ୍ୟାରେ ମୁଁ ସସ୍ତ୍ରୀକ ସେଠାକୁ ଯାଇଥିଲି, ସେ ରହିବାର କେତେଦିନ ପରେ । ପରିଚିତ ହେବା ସଙ୍ଗେ ସଙ୍ଗେ ସେ ମୋ ସ୍ତ୍ରୀଙ୍କୁ ପଚାରିଲେ, ଶୁଣିଛି ତମ ଘରେ ଅଦ୍ଭୁତ ଠାକୁରଙ୍କର ଆବିର୍ଭାବ ହୋଇଛି । ଯିବାକୁ ଇଚ୍ଛା, କିନ୍ତୁ ଜଜ୍ ସାହେବ ଘର ତ । ଯାଇପାରିବି କି ? ଅତି ମଧୁର ବଚନ, ସସ୍ନେହ ଦୃଷ୍ଟି । ମୁଁ ନିବେଦନ କଲି, ଆସିବା ତାଙ୍କର ଅନୁଗ୍ରହ, ଆମେ ବାଧିତ ହେବୁ । ପରଦିନ ଓପରବେଳା ସେ ଆସିଲେ, ଶିଷ୍ୟ, ଶିଷ୍ୟା ସମଭିବ୍ୟାହାରରେ । ଠାକୁର ବସିଥାନ୍ତି କ୍ଷୁଦ୍ର ସିଂହାସନରେ ଏକ ବୃହତ୍ କକ୍ଷରେ ଅହର୍ନିଶ ପ୍ରଦୀପ ସମ୍ମୁଖରେ । ସ୍ତ୍ରୀ ପ୍ରଣିପାତ ହୋଇ ତାଙ୍କୁ ଅଭ୍ୟର୍ଥନା ଜଣାଇବା ପୂର୍ବରୁ ସେ ଠାକୁରଙ୍କ ସମୀପରେ ଚକାରୂଢ଼ ହୋଇ ବସିପଡିଲେ

Digitized by srujanika@gmail.com

ଆସନ ବିବର୍ଜିତ ଚଟାଣ ଉପରେ । ଧର୍ମଗୁରିମାନେ ବିନା ଆସନରେ ଉପବେଶନ କରନ୍ତି ନାହିଁ । ଆମେ ସମସ୍ତେ ନିର୍ବାକ । ସେ ମଧ୍ୟ । ବହୁକ୍ଷଣ ପରେ ମତେ ପଚାରିଲେ, ଆମି ଏକଟୁ ସ୍ପର୍ଶ କରତେ ପାରି ? ତାଙ୍କର ଇଚ୍ଛା ବା କାର୍ଯ୍ୟ କଅଣ ଆମର ଅନୁମତିସାପେକ୍ଷ ? ସେ ସଜଳ ନୟନରେ ଇଷ୍ଟକ ଖଣ୍ଡ ଉପରେ ସ୍ୱର୍ଣାଭ ଅଙ୍ଗୁଳି ଚାଳନା କରୁଥାନ୍ତି ନିଶ୍ଚଳ ଶରୀରରେ । ସ୍ତ୍ରୀ ବସିଥିଲେ । ଅବନତ ଶିର ତାଙ୍କ ପାଖରେ । ମୁଁ ଦଣ୍ଡାୟମାନ, ଶିଷ୍ୟ ଶିଷ୍ୟାମାନେ ମଧ୍ୟ । ସତ୍‌ସଙ୍ଗର ଅପୂର୍ବ ଶିହରଣ କ୍ୱଚିତ ଆସେ । ଜୀବନର ଅତି ଅଳ୍ପ ଗଭୀର ସ୍ମୃତିର ଏହା ଏକ ପ୍ରତିଲିପି । କେତେ ସମୟ ପରେ ସେ ସମସ୍ତଙ୍କୁ କହିଲେ, ବଦ୍ରୀନାଥଠାରେ ଏକ ପ୍ରସ୍ତର ଗାତ୍ରରେ ରୂପ ସଙ୍କେତ ସେ ଦେଖିଥିଲେ । ଦ୍ୱିତୀୟବାର ଯାହା ଏବେ ଦେଖୁଛନ୍ତି ତାହା ପ୍ରଭୁଙ୍କର ଦୟା ପ୍ରକାଶ । ତା ପରେ ଯେତେଥର ଯେଉଁଠି ମୋହନାନନ୍ଦ ମହାରାଜଙ୍କ ସଙ୍ଗେ ସାକ୍ଷାତ ଘଟିଛି , ସେ ପଚାରନ୍ତି ଠାକୁରଙ୍କ କଥା । ରଥଯାତ୍ରା ସମୟରେ ଥରେ ସେ ପୁରୀ ଆସିଥିଲେ । ସେହି କଥା । ମହାରାଜଙ୍କୁ ଦେଖିଲେ, ଯୀଶୁଖ୍ରୀଷ୍ଟଙ୍କ ମୁଖମଣ୍ଡଳ ମନକୁ ଆସେ ।

କଲିକତାସ୍ଥିତ ଗୌଡୀୟ ମିଶନର ଗୋଟିଏ ଶାଖା ପାଟନାରେ ଥାଏ । ମନ୍ଦିର, ଅଧିବାସ ପ୍ରଭୃତିର ବ୍ୟବସ୍ଥା ଅତି ଶୃଙ୍ଖଳିତ । ହାଇକୋର୍ଟର ଜଣେ ବଙ୍ଗୀୟ ଓକିଲଙ୍କ ପରିବାର ସେ ମଠର ପୃଷ୍ଠପୋଷକମାନଙ୍କ ମଧ୍ୟରୁ ଅନ୍ୟତମ । ଶୁଣିଲି, ସେମାନେ କୋଡିଏ ହଜାର ଟଙ୍କା ସେ ମଠ ନିର୍ମାଣରେ ସାହାଯ୍ୟ ଦେଇଥିଲେ । ଆମେ ସେଠାକୁ ବେଳେବେଳେ ଯାଉ ସନ୍ଧ୍ୟା ଆରତି ବେଳେ । ବଡ ଶାନ୍ତ ପରିବେଶ । ଗୌଡୀୟ ମଠର ପ୍ରଧାନାଧକ୍ଷ ବର୍ଷକେ ଥରେ ସେଠାକୁ ଆସନ୍ତି । ଦିନେ ମୁଁ ହାଇକୋର୍ଟରୁ ଫେରି ଶୁଣିଲି, ସେ ଦିପହରେ ଆମ କୋଠିକୁ ଆସିଥିଲେ, ଠାକୁରଙ୍କୁ ଦେଖିବା ପାଇଁ । ଅତି ବୃଦ୍ଧ, ଦୁର୍ବଳ ଶରୀର । ଚାଲିବାକୁ, ବିଶେଷତଃ ପାହାଚ ଉଠିବାକୁ ଅକ୍ଷମ । ତେଣୁ ତାଙ୍କୁ ଦୁଇଶିଷ୍ୟ ଚୌକିରେ ବସାଇ ଟେକିକରି ନେଇଥିଲେ ଆମ ଦୋତାଲା ଠାକୁର ଘରକୁ । ଶୁଣିଲି, ବହୁକ୍ଷଣ ସ୍ତ୍ରୀଙ୍କ ସହିତ ଠାକୁରଙ୍କ ବିଷୟ ଆଳାପ କରି ଅତି ପ୍ରୀତ ହୋଇ ଫେରିଥିଲେ । ଅନ୍ୟ ଏକ ବର୍ଷ ମଧ୍ୟ ସେ ସେହିପରି ଆସିଥିଲେ । ତାଙ୍କ ଭାବନାରେ ଭଗ୍ନ ଇଷ୍ଟକ ଖଣ୍ଡରେ ପ୍ରଭୁ ଦୟାପରବଶ ହୋଇ ସ୍ୱୟଂ ପ୍ରକାଶିତ ହୋଇଛନ୍ତି । ତାଙ୍କର ଜଣେ ଉଚ୍ଚସ୍ତରୀୟ ଶିଷ୍ୟ ପ୍ରକାରାନ୍ତରରେ ପରେ ପ୍ରସ୍ତାବ କରିଥିଲେ, ମଠ ମନ୍ଦିରରେ ସ୍ୱତନ୍ତ୍ର ପୂଜା ପାଇ ଆମ ଠାକୁରଙ୍କୁ

Digitized by srujanika@gmail.com

ନେବାପାଇଁ । ସ୍ତ୍ରୀ ଅବାକ କିନ୍ତୁ ନିଶ୍ଚିତ ଭାବେ ଅମଙ୍ଗ ହେବା ସ୍ୱାଭାବିକ । ସର୍ବଶ୍ରେଷ୍ଠ ଭରସାକୁ ଇଚ୍ଛାକୃତ ବିସର୍ଜନ କିଏ ଦେବ ? ପରେ ମଠର ଏକ ବାର୍ଷିକ ଉତ୍ସବରେ ଜଜ୍ ବନ୍ଧୁ ସତୀଶଚନ୍ଦ୍ର ମିଶ୍ର ଓ ମୁଁ ସଭାପତି ଓ ମୁଖ୍ୟ ଅତିଥି ଭାବରେ ଯୋଗ ଦେଇଥିଲୁ । ସେଠାରେ ମଠାଧ୍ୟକ୍ଷ ଉପସ୍ଥିତ ଥିଲେ । ଆମେ ତ ଯାହା ସାମାନ୍ୟ କିଛି କହିଲୁ । କିନ୍ତୁ ଅଶୀତିପର ବୃଦ୍ଧ ମଠାଧୀଶ ଯେପରି ଦୃଢ଼ ଉଚ୍ଚସ୍ୱରରେ ହିନ୍ଦୁ ପରଂପରାକୁ ଭ୍ରଷ୍ଟ କରୁଥିବା ଆଧୁନିକଭାବାପନ୍ନ ଲୋକଙ୍କ ଉଦ୍ଦେଶ୍ୟରେ କଟୂକ୍ତି ପ୍ରକାଶ କଲେ, ଆମେ ବିସ୍ମିତ ହେଲୁ । ଶରୀର ସିନା ଦୁର୍ବଳ, ବିଶ୍ୱାସ ଏତେ ସବଳ ଯେ ସବୁ ବାଧାର ମୁକାବିଲା କରିବାକୁ ସେ ଅଦ୍ୟାପି ସମର୍ଥ ବୋଲି ମଣୁଥିଲେ । ସନାତନ ଧର୍ମର ତାକତ ଯେ ବୁଝିଛି, ଜାଣିଛି ।

ଅଯୋଧ୍ୟାରେ ବହୁ ମଠବାଡି, ମନ୍ଦିର ଶ୍ରୀରାମଙ୍କ ଅବଲମ୍ବନରେ । ଆମେ ଥରେ ପାଞ୍ଚଦିନ ପାଇଁ ସେଠାରେ ଯାଇ ରହିଲୁ । ରାମାୟଣ ଶୁଣିବା, ଭାବିବାରେ ଦିନରାତି କଟୁଥାଏ । ମୋ ସ୍ତ୍ରୀ ପିଲାଦିନୁ ତାଙ୍କ ପିତାମହୀଙ୍କ ପ୍ରଶ୍ରୟରେ ଶ୍ରୀରାମ ଆରାଧନାରେ ଅଭ୍ୟସ୍ତ । ଅଯୋଧ୍ୟା ତାଙ୍କୁ ସ୍ୱର୍ଗପୁରୀ ପରି ଲାଗିଲା । ସରଜୁ ନଦୀରେ ସ୍ନାନ, ମଠ ଦର୍ଶନରେ କ୍ଳାନ୍ତି ନଥାଏ । ଗୋଟିଏ ମଠରେ ସେତେବେଳେ ଏକ ଯଜ୍ଞ ହେଉଥାଏ । ଏକଶତ ଆଠ ବ୍ରାହ୍ମଣ ଅଖଣ୍ଡ ସଂସ୍କୃତ ରାମାୟଣ ପାଠ କରୁଥାନ୍ତି । ପ୍ରଥମ ଥର ଆମେ ଯାଇ ନିରବରେ ଏକପାର୍ଶ୍ୱରେ ବହୁ ସମୟ ଠିଆ ହୋଇ ଫେରିଲୁ । ଅପରାହ୍ନ ପ୍ରାୟ ୫ଟାବେଳେ ମଠାଧିକାରୀ ଆମେ ରହୁଥିବା ସ୍ଥାନରେ ଉପସ୍ଥିତ ହେବାରେ ଆମେ ଆଶ୍ଚର୍ଯ୍ୟ ଓ ଆପ୍ୟାୟିତ ହେଲୁ । ଆମେ ପୂର୍ବାହ୍ନରେ ତାଙ୍କ ମଠରୁ ଫେରିଲା ପରେ ସେ କାହାଠାରୁ ଆମର ପରିଚୟ ପାଇ ଭାବିଲେ, ଆମେ ହୁଏତ ଅଭ୍ୟର୍ଥିତ ନ ହୋଇଥିବାରୁ ଅସନ୍ତୁଷ୍ଟ ହୋଇଥିବୁ । ଯଜ୍ଞସ୍ଥଳକୁ ଆମେ କ'ଣ ଜଜ୍ ହୋଇ ଯାଇଥିଲୁ କି ? ଅଯୋଧ୍ୟାରେ ପହଞ୍ଚିବା ପରେ, ଆମ ସାଥୀରେ ଯାଇଥିବା ଚପରାସୀକୁ ତାଙ୍କ ପଦବୀସୂଚକ ଚପକନ ଓ ହୁଦା, ପଗଡି ବ୍ୟବହାର ନ କରିବାକୁ ମୁଁ କହିଥାଏ । ସେ ଆମ ସଙ୍ଗେ ସର୍ବତ୍ର ଓ ସର୍ବଦା ଯାଉଥାଏ, ସହଯୋଗୀ ପରିଚାରକ ଭାବରେ । ଆମେ ଇଚ୍ଛାମତ ବୁଲାବୁଲି କରୁଥାଉ, କାହାରି ବିଶେଷ ଦୃଷ୍ଟି ଆକର୍ଷଣ ନ କରି । ମଠର ମହନ୍ତଙ୍କ ନିକଟରେ ପରିଚୟ ପ୍ରକାଶ ପାଇବା ପରେ, ଅବଶିଷ୍ଟ ଦୁଇଦିନ ଆମ ଗତିବିଧିରେ କିଛି କଟକଣା ଆପେ ଆପେ ଆସିଗଲା ଏବଂ ସେଠାର ପ୍ରଶାସନିକ ଅଧିକାରୀ ପୁଲିସ ପ୍ରଭୃତି ଆମ ବାସସ୍ଥାନ ଓ ଗନ୍ତବ୍ୟ ସ୍ଥଳରେ ମୁତୟନ

Digitized by srujanika@gmail.com

କରିଦେବାରୁ ତାହା (କଟକଣା) ଅଧିକ ବଢ଼ିଗଲା । ତାପରେ, ଯଜ୍ଞସ୍ଥଳରେ ଆମେ କେବଳ ଦର୍ଶକ ହେଲୁ ନାହିଁ; ଯଜ୍ଞାହୁତି ଦେବାରେ ଅଂଶଗ୍ରହଣ କରିବାର ଅନୁଗ୍ରହ ପାଇଲୁ । ମଠାଧିକାରୀ ମଧ ଆଳାପ ପ୍ରସଙ୍ଗରେ ଆମ କଟକ ଘରକୁ, କାଶୀଧାମରୁ ରାମ, ଲକ୍ଷ୍ମଣ, ସୀତା ମୂର୍ତ୍ତିଙ୍କର ଆକସ୍ମିକ ଆଗମନ ଓ ଇଷ୍ଟକ ଦେବତାଙ୍କର ପୁରୀରେ ଆର୍ବିଭାବ କଥା ଜାଣିବାକୁ ପାଇଲେ । ଅଯୋଧ୍ୟାରୁ ଆମେ ଫେରିବାର ପ୍ରାୟ ଦୁଇମାସ ପରେ, ଦିନେ ସନ୍ଧ୍ୟାରେ ମହନ୍ତ ମହାଶୟ ପଞ୍ଚ ଅନୁଚରଙ୍କ ସହ ଆମ କୋଠିରେ ଉପସ୍ଥିତ, ଠାକୁର ଦର୍ଶନ ପାଇଁ । ସେହିଦିନୁ ବହୁଥର ସେ ଆସିଛନ୍ତି, କହନ୍ତି ପାଟନା ସେ ଆସନ୍ତି ଦର୍ଶନ ପାଇଁ । ସଙ୍ଗରେ ଆଣିଥାଆନ୍ତି ପାଚିଲା କଦଳୀ ଭୋଗପାଇଁ । ରାମାୟଣ ଆବୃତ୍ତି ତାଙ୍କ କଣ୍ଠରେ ଅତି ସୁମଧୁର । କେତେ ସନ୍ଧ୍ୟାରେ ଠାକୁର ଘରେ ତାଙ୍କ ସ୍ୱରରେ ଆମେ କୃତାର୍ଥ ବୋଧ କରିଛୁ ।

ପାଟନା ବେଲିରୋଡରେ ଆମେ ଥାଉ । ତା ନିକଟରେ ସର୍ପେଣ୍ଟାଇନ ରୋଡ । ଦୁଇ ରାସ୍ତାର ଛକରେ ପଞ୍ଚମନ୍ଦିର । ଶ୍ରୀରାମ ପୂଜାର ଏକ ଜନପ୍ରିୟ [illegible] । ଅଯୋଧ୍ୟାର ଅନ୍ୟ ଜଣେ ମଠାଧିକାରୀ ତାହାର ତତ୍ତ୍ୱାବଧାରକ । ମଝିରେ ମଝିରେ ସେ ଆସି ପଞ୍ଚମନ୍ଦିରରେ ଦୀର୍ଘଦିନ ଅବସ୍ଥାନ କରନ୍ତି । କେଉଁ ପ୍ରସଙ୍ଗରୁ କିପରି ତାଙ୍କ ସହିତ ଆଳାପ ହେବା ପରେ, ସେ ତାଙ୍କ ପାଟନା ଅବସ୍ଥାନ ସମୟରେ ବହୁଥର ଦିପହରରେ ଆମ କୋଠିକୁ ଆସନ୍ତି ଠାକୁର ଦର୍ଶନ ପାଇଁ । ତାଙ୍କର ମହିଳା ମହଲରେ ବହୁ ପରିଚିତି । ପଞ୍ଚମନ୍ଦିରକୁ ବହୁ ସ୍ତ୍ରୀ ଲୋକଙ୍କର ସମାଗମ ଥାଏ । ମୁଁ ଅନେକ ଥର ସନ୍ଧ୍ୟା ଆରତିବେଳକୁ ଯାଇଛି । ଅନ୍ୟ ଲୋକେ ମଧ ଆସନ୍ତି । ପାଟନା ଛାଡି ଆସିବା ପରେ, ବାର୍ଷିକ ସୀତାବିବାହ ଉତ୍ସବ ପାଇଁ ପଞ୍ଚମନ୍ଦିରକୁ ପୂର୍ବପରି ଯତ୍ ସମାନ୍ୟ ନୈବେଦ୍ୟ ପଠାଇ ଆସୁଛୁ । ମହନ୍ତଙ୍କର ତିରୋଧାନ ପରେ ତାଙ୍କର ଉତ୍ତରାଧିକାରୀଙ୍କ ସଙ୍ଗେ ମୋ ସ୍ତ୍ରୀଙ୍କର ସାମୟିକ ପତ୍ରାଳାପ ଏବେ ବି ରହିଛି, ଯଦିଓ ସାକ୍ଷାତର ସୁଯୋଗ ଘଟିନାହିଁ । ପୁରୀ କଟକ ଆସିବେ ବୋଲି ଲେଖିଛନ୍ତି, ଆସିନାହାନ୍ତି । ତାଙ୍କ ସଙ୍ଗେ ସମ୍ବନ୍ଧ, ପୂର୍ବାଚାର୍ଯ୍ୟଙ୍କ ସ୍ନେହାସିକ୍ତ ସଂଯୋଗର ସ୍ମୃତି ଚାରଣରେ । ଗୌଡୀୟମିଶନ୍‌ର ପ୍ରଧାନାଧକ୍ଷଙ୍କ ବିୟୋଗ ପରେ ତାଙ୍କ ଅନୁଷ୍ଠାନ ସହିତ ଆଉ ଯୋଗାଯୋଗ ନାହିଁ । ମୁଁ ବା ସ୍ତ୍ରୀ କାହାରିଠାରୁ ଦୀକ୍ଷା ବା ଶିଷ୍ୟତ୍ୱ ନେଇନାହୁଁ । ତେଣୁ ଗୋଷ୍ଠୀ ଅପେକ୍ଷା ବ୍ୟକ୍ତି ସମ୍ପର୍କରେ ଆମ ସୀମା ଆବଦ୍ଧ ରହି ଯାଉଛି ।

Digitized by srujanika@gmail.com

ଗୌଡୀୟମିଶନ ମୂଳପୀଠର ସ୍ୱତ୍ୱ ନେଇ ଦ୍ୱନ୍ଦ ବହୁକାଳ ହେଲା କଲିକତା ହାଇକୋର୍ଟରେ ଚାଲିଛି । ପାଟନାରେ ମୁଁ ତାହା ଶୁଣିଥିଲି; ବିଶେଷ ଅବଗତ ନଥିଲି । ପାଟନାରୁ ଫେରିବା ପରେ, ପୁରୀ ଘରେ ଖରାଦିନରେ ଥରେ ରହୁଥିଲା ବେଳେ ବିବଦମାନ ଅପରପକ୍ଷ ଆସିଥିଲେ, ପୁରୀ ବଡଦାଣ୍ଡରେ ତାଙ୍କର ନବନିର୍ମିତ ମଠର ଏକ ଅଂଶର ଭିତ୍ତିପ୍ରସ୍ତର ସ୍ଥାପନରେ ମୁଖ୍ୟାଂଶ ଗ୍ରହଣ ପାଇଁ କହିବାକୁ । ପାଟନାର ଅନ୍ୟ ଗୋଷ୍ଠୀ ସହିତ ସମ୍ପର୍କ ମନେ ପଡିଲା, ବ୍ୟକ୍ତିତ୍ୱର ପାର୍ଥକ୍ୟ ଲକ୍ଷ୍ୟ କଲି । ଧର୍ମ କାହାର ମଜ୍ଜାଗତ, କାହାର ବହିରାବରଣ । ଏ ଗୋଷ୍ଠୀର ମଧ୍ୟ ପଟ ପରିବର୍ତ୍ତନ ଘଟିଯାଇଛି । ବର୍ତ୍ତମାନର ଆଚାର୍ଯ୍ୟ କଟକ ଘରେ ପୂର୍ବେ ରହିବାର ଅବକାଶ ମିଳିଛି । ଆତ୍ମୀୟତା ଆସିପାରି ନାହିଁ ।

ଏକଥା ସତ ଠାକୁରଙ୍କୁ ନେଇ ମୋ ସ୍ତ୍ରୀଙ୍କର ବହୁଳ ପରିଚିତି ପାଟନାରେ, ପାଟନାବାସୀଙ୍କ ଛରିଆରେ, ରାଞ୍ଚି, ଗୟା, ଦରଭଙ୍ଗା, କଲିକତାରେ । ପାଟନାରୁ ଫେରିବା ପରେ, କଟକ, ଭୁବନେଶ୍ୱର, ପୁରୀ, ରାଉରକେଲା ପ୍ରଭୃତି ସ୍ଥାନରେ ମଧ୍ୟ । ବ୍ରହ୍ମପୁର (ଗଞ୍ଜାମ)ର ଡାକ୍ତର ଏସ୍.ବି.ପାଲିତଙ୍କ ପିତା ଇନ୍ଦୁଭୂଷଣ ପାଲିତ ସ୍କୁଲ ଇନ୍‌ସପେକ୍ଟର ହୋଇ ଅବସର ଗ୍ରହଣ କରିଥିଲେ । ସେ ଓ ତାଙ୍କ ସ୍ତ୍ରୀ ଭୁବନେଶ୍ୱରରେ ସାମୟିକ ଅବସ୍ଥାନ କରୁଥିଲେ । ସେଠାରେ ମୋ ସ୍ତ୍ରୀଙ୍କ ସହ ପରିଚୟ ଘଟିଥିଲା । ତାଙ୍କ ସହ ପରିଚୟ ମାନେ ଠାକୁରଙ୍କ ସଙ୍ଗେ ପରିଚୟ । ସେ ବ୍ରହ୍ମପୁର ଫେରିଯାଇ ପତ୍ରାଳାପ କରୁଥିଲେ । ଠାକୁର ଓ ମୋ ସ୍ତ୍ରୀଙ୍କର ଗଭୀର ଅନୁରକ୍ତି କଥା ବର୍ଣ୍ଣନା କରି ଓଡିଆ ପଦ୍ୟରେ ଖଣ୍ଡିଏ ପୁସ୍ତକ ନିଜ ବ୍ୟୟରେ ପ୍ରକାଶ କରିଥିଲେ । ଆମେ ଡାକରେ ସେଥିରୁ ଖଣ୍ଡିଏ ପାଇ ଆଶ୍ଚର୍ଯ୍ୟ ହେଲୁ । ତାଙ୍କ ଅନ୍ତେ, ତାଙ୍କ ସ୍ତ୍ରୀ ଶେଷକାଳ ଯାଏ ସେହି ସ୍ନେହଯୋଗ ରଖିଥିଲେ । ଗଭୀର ଅନୁଭୂତିର ଏକମାତ୍ର ସୋପାନ, ଦୃଢ଼ ବିଶ୍ୱାସ, ଏକାନ୍ତ ନିର୍ଭରତା । ମାଗିଲେ ମିଳେ ନାହିଁ । ଡାକିଲେ ମିଳେ ।



Digitized by srujanika@gmail.com

# ନାନା କାର୍ଯ୍ୟ

ପାଟନାରେ ବଙ୍ଗୀୟ ଅଧିବାସୀ ଅନେକ ଓ ପ୍ରଭାବଶାଳୀ । ପୂର୍ବରୁ ଅଧିକ ଥିଲା, କ୍ରମଶଃ କମି ଆସୁଛି । ଓଡିଶାରେ ଯେପରି ଥିଲା, ବିହାରରେ ମଧ୍ୟ ସେହିପରି, ସରକାରୀ ଚାକିରି ଓ ଉପାର୍ଜ୍ଜନକ୍ଷମ ବୃତ୍ତିମାନଙ୍କରେ ବଙ୍ଗାଳୀମାନେ ସବୁ ଜିଲ୍ଲା ମହକୁମାମାନଙ୍କରେ ଅଗ୍ରଣୀ ଥିଲେ । ଶିକ୍ଷା କ୍ଷେତ୍ରରେ ମଧ୍ୟ ତଦ୍ରୂପ । ବିହାର ଓଡିଶା ସ୍ୱତନ୍ତ୍ର ପ୍ରଦେଶ ଭାବରେ ବଙ୍ଗଳାରୁ ୧୯୧୨ ରେ ପୃଥକ ହେବା ପୂର୍ବରୁ ମଧ୍ୟ ଅବସ୍ଥା ସେହି ପ୍ରକାର ଥିଲା । ଓଡିଶା ସହିତ ପାର୍ଥକ୍ୟ ଥିଲା ଯେ ବିହାରରେ କୌଣସି ଜମିଦାରୀ ବଙ୍ଗୀୟ ହସ୍ତଗତ ହୋଇପାରି ନଥିଲା ।

ପାଟନା ଯାଇ ପ୍ରଥମେ କିଛିଦିନ ରହିଥିଲି ସର୍କିଟ ହାଉସରେ । ସାମନାରେ ରବୀନ୍ଦ୍ର ଭବନ । ମୁଖ୍ୟତଃ ବଙ୍ଗାଳୀମାନଙ୍କର ସାଂସ୍କୃତିକ କାର୍ଯ୍ୟ କେନ୍ଦ୍ର । ସଭା, ଆଲୋଚନା, ଅଭିନୟ, ସଂଗୀତ ଇତ୍ୟାଦିରେ ତାହା କର୍ମତତ୍ପର ଥାଏ । ମୁଁ ଯାଉ ଯାଉ ସେଥିରେ ସାମିଲ ହୋଇଗଲି; ଜଣେ ବଙ୍ଗୀୟ ଜଜ୍ ବନ୍ଧୁ ହେମନ୍ତ କୁମାରଙ୍କ ଆଗ୍ରହାତିଶଯ୍ୟରୁ । ସାମିଲ ଏତେ ହେଲି ଯେ ଦଶବର୍ଷଯାକ ସେଠାର କାର୍ଯ୍ୟକ୍ରମରେ ଅଧିକାଂଶ ସମୟରେ ମୁଖ୍ୟାଂଶ ଅସ୍ୱୀକାର କରିବା ସମ୍ଭବ ହେଉ ନଥିଲା । ମୁଁ ପାଟନାରେ ପହଞ୍ଚିବା ପୂର୍ବରୁ ଜଜ୍ ହେମନ୍ତ କୁମାରଙ୍କ କାନରେ ମୋର ତଥାକଥିତ ସାହିତ୍ୟିକ ଅଭିରୁଚି କଥା ପଡିଥାଏ । ପାଟନା ଯିବା କଥା ଜଣାପଡିବା ପରେ, ତାଙ୍କର ଜଣେ ପୂର୍ବ ପରିଚିତ କଟକବାସୀ ପତ୍ର ଲେଖିଲାବେଳେ ମୋ କଥା କୁଆଡେ ବିସ୍ତାରିତ ଲେଖିଥିଲେ । ପ୍ରଥମେ ହେମନ୍ତ କୁମାରଙ୍କ ସଙ୍ଗେ ସାକ୍ଷାତବେଳେ ସେ, ସବୁଜ ସାହିତ୍ୟ ସମିତି, ଯୁଗବୀଣା, ଇତ୍ୟାଦି କଥା ଜାଣିଥିବା ପ୍ରକାଶ କରିବାରେ ମୁଁ ଆଶ୍ଚର୍ଯ୍ୟ ବୋଧ କରିଥିଲି । ପରେ ସେ କହିଲେ କେଉଁ ସୂତ୍ରରୁ ଖବର ତାଙ୍କ ପାଖେ ପହଞ୍ଚିଥିଲା । ହେମନ୍ତ କୁମାର ସିନା ମତେ ନେଇ ରବୀନ୍ଦ୍ର ଭବନରେ ଯୁଟାଇଲେ, ନିଜେ କିନ୍ତୁ ସକ୍ରିୟ ରହିଲେ ନାହିଁ । ତାଙ୍କ ସ୍ତ୍ରୀ ଓ ଝିଅ ବରଂ ଆସୁଥିଲେ ବେଳେ ବେଳେ । ବୃହତ କଳା ଆଲସେସିଆନ କୁକୁର ତାଙ୍କୁ ଅଧିକ ପ୍ରୀତ ରଖୁଥିଲା ।

Digitized by srujanika@gmail.com

ଗଭର୍ଣ୍ଣର ଜାକୀର୍ ହୋସେନଙ୍କ ପରେ ଲୋକସଭାର ପୂର୍ବତନ ବାଚସ୍ପତି ଅନନ୍ତଶୟନ ଆୟଙ୍ଗାର ଆସିଲେ । ତାପରେ ଆସିଲେ ଗୁଜୁରାଟରୁ ନିତ୍ୟାନନ୍ଦ କାନୁନଗୋ । ଏମାନେ ରବୀନ୍ଦ୍ର ଭବନର କାର୍ଯ୍ୟକ୍ରମକୁ ବର୍ଷରେ ଥରେ ଅଧେ ଆସନ୍ତି । ଦିନେ ଏକ କୌତୂହଳ ସୃଷ୍ଟି ହେଲା କାନୁନ୍‌ଗୋଙ୍କ ଉପସ୍ଥିତିରେ । ରବୀନ୍ଦ୍ରନାଥ, ଓଡିଶା ଓ ଓଡିଆ ସାହିତ୍ୟ ବିଷୟରେ ମୋର କହିବାର ଥିଲା, ନିତ୍ୟାନନ୍ଦବାବୁ ସଭାପତି । ଶ୍ରୋତାମଣ୍ଡଳୀ ଅଣ ଓଡିଆଙ୍କ ମଧ୍ୟରୁ ଜଣେ ଦୀର୍ଘକାୟ ଦ୍ରୁତପଦ ମଞ୍ଚଉପରକୁ ଆସନ୍ତେ, କାନୁନ୍‌ଗୋ ମହାଶୟ ଠିଆହୋଇପଡି ତାଙ୍କୁ କୁଣ୍ଢାଇ ଓଡିଆରେ ତୁ ତା କରି ଉଚ୍ଚ ସ୍ୱରରେ ଆଳାପ ଆରମ୍ଭ କରିଦେଲେ । ସେ ବ୍ୟକ୍ତି ଡାକ୍ତର ଶରଦିନ୍ଦୁ ଘୋଷାଲ କଟକ କଲେଜିଏଟ ସ୍କୁଲର ପୂର୍ବତନ ଛାତ୍ର, ବର୍ତ୍ତମାନ ମେଡିକାଲ କଲେଜର ପ୍ରଫେସର, ଜନପ୍ରିୟ, ଛାତ୍ରପ୍ରିୟ । ପ୍ରତିଦିନ ସେ ଅତି କମରେ ବାରମାଇଲ ଚାଲନ୍ତି, ବ୍ୟାୟାମ ପାଇଁ । ଖେଳପାଇଁ ଯେପରି ଆଗ୍ରହୀ, ଅଭିନୟରେ ସେହିପରି ଦକ୍ଷ । କଥାବାର୍ତ୍ତାରେ ବାଟୁଳି ବାଜେ ନାହିଁ । ଧାରୁଆ ରହିବେ ନାହିଁ କାହା ପାଖରେ । ଥରେ କଲିକତାରୁ ଦିଲ୍ଲୀ ଏକ୍ସପ୍ରେସରେ ମୁଁ ଫେରୁଥାଏ ପାଟନା । ହାଓଡ଼ା ଷ୍ଟେସନ ପ୍ଲାଟଫର୍ମ ଉପରେ ଦେଖିଲି, ଡାକ୍ତର ଶରଦିନ୍ଦୁ ଏପଟ ସେପଟ ହେଉଛନ୍ତି ଟ୍ରେନରେ ସ୍ଥାନ ପାଇଁ । ଆସିବା ଜରୁରୀ କିନ୍ତୁ ଜାଗା ମିଳୁନାହିଁ । ମୋ ପାଇଁ ଗୋଟିଏ କୁପେ ଥାଏ । ଉପର ବାର୍ଥ ଖାଲି । ଡାକିଲି, ଆନନ୍ଦରେ କିନ୍ତୁ ଟିକିଏ ଅପ୍ରତିଭ ହୋଇ ଉଠିଲେ । ପାଟନାରେ ଓହ୍ଲାଇଲାବେଳେ ଗୋଟିଏ ଟିକଟର ମୂଲ୍ୟ ମତେ ଯାଚିଲେ । ମୁଁ ତ ଦେଇ ନଥାଏ, ନେବି ବା କାହିଁକି ? ଗୋଟିଏ ଟିକଟରେ ଯୋଡିଏ ବାର୍ଥର ଗୋଟିଏ କୁପେ ମିଳେ ଜଜମାନଙ୍କୁ । ଡାକ୍ତରଙ୍କ ମନରେ ଖଟକା ଲାଗିଲା । ରାତିଯାକ ଟ୍ରେନରେ ଆସିଲେ, ରେଳଭଡ଼ା ନ ଦେବେ କିପରି ? ଛଟପଟରୁ ତ୍ରାହି ପାଇଲେ, ଗୋଟିଏ ଟିକଟର ପୂରାମୂଲ୍ୟ ଏକ ଦାତବ୍ୟ ଅନୁଷ୍ଠାନକୁ ଦେଇ । ଏପରି ନୀତିବାନ ଲୋକ, ଅଳ୍ପ ହେଲେ ମଧ୍ୟ, ଅଛନ୍ତି ବୋଲି ସମାଜ ତିଷ୍ଠିଛି । ଘୋଷାଲ ନିତ୍ୟାନନ୍ଦବାବୁଙ୍କର ସହପାଠୀ ଥିଲେ, ଛତରା ବୋଲି ପରସ୍ପରକୁ ସମ୍ବୋଧନ କରୁଥିଲେ । ବହୁକାଳ ଅନ୍ତରରେ ସାକ୍ଷାତ ସମ୍ଭ୍ରାନ୍ତପଦବୀ ବାଡ଼ଦେଇଁ ପିଲାଦିନର ଉଚ୍ଛୃଙ୍ଖଳ ଉଲ୍ଲାସ, କେବଳ ଦୁଇବନ୍ଧୁଙ୍କୁ ନୁହେଁ, ସଭାଗୃହର ସମସ୍ତଙ୍କୁ ଆନନ୍ଦ ବିହ୍ୱଳ କଲା । ପଦବୀର ଚାପରେ ଭାବନା ଚେତନାକୁ ଦାବି ରଖେ । ଚେତନା ଭାବନାକୁ ଅତିକ୍ରମ କଲେ ଅସମ୍ଭାଳ ହେବା ସ୍ୱାଭାବିକ ।

Digitized by srujanika@gmail.com

ଡ଼ିଙ୍କିଶାଳକୁ ଢ଼େଙ୍କାନାଳ ଚାଲିଗଲି । ଆଉ ଦିନେ ଆଲୋଚିତ ହୋଇଥିଲା ରବୀନ୍ଦ୍ର ଭବନରେ, ରବୀନ୍ଦ୍ର ସାହିତ୍ୟ ଓଡ଼ିଆରେ ଅନୁବାଦିତ ହୋଇନାହିଁ କାହିଁକି । ଭାରତବର୍ଷର ଅନ୍ୟସବୁ ଭାଷାରେ, ଭାରତ ବାହାରର ବହୁ ଭାଷାରେ ତାହାର ପ୍ରସାର ହୋଇଥିବା ସ୍ଥଳେ ଓଡ଼ିଆ ଭାଷାନ୍ତର କ୍ୱଚିତ ଘଟିଛି । ମୁଁ ତ ଏକମାତ୍ର ବକ୍ତା ହେବାର କଥା ହେଲି । ଆପାତଶ୍ରାବ୍ୟ ବଙ୍ଗୀୟ ବିରୋଧ ବହୁକଥାର ଅବତାରଣା ଅପରିହାର୍ଯ୍ୟ ଥିଲା । କେତେଗୁଡ଼ିଏ ବଙ୍ଗୀୟଙ୍କ ପକ୍ଷରେ ଅପ୍ରୀତିକର ଐତିହାସିକ ଘଟନା ଓ ତତ୍‌ସଂଲଗ୍ନ ସାମାଜିକ ପରିସ୍ଥିତିର ପ୍ରଭାବରେ ବଙ୍ଗଭାଷାର ବହୁଳ ପ୍ରଚଳନ ଫଳରେ ଅଧିକାଂଶ ଓଡ଼ିଆ ପାଠକଙ୍କ ନିକଟରେ ରବୀନ୍ଦ୍ରନାଥ ରଚନାବଳୀ ବଙ୍ଗଭାଷାରେ ସ୍ୱତଃ ଆଦୃତ ହୋଇ ଆସିଥିବାରୁ, ଅନୁବାଦର ଆବଶ୍ୟକତା ଉପଲବ୍ଧି ହୋଇ ନଥିବା ମୁଁ ଦର୍ଶାଇବାର ଚେଷ୍ଟା କରିଥିଲି । ଆନୁଷ୍ଠାନିକ ପ୍ରଶଂସା ବାଦ୍ ଦେଇ ସାଧାରଣ କଥୋପକଥନରୁ ଲକ୍ଷ୍ୟ କଲି, ଆଲୋଚନା ବୋଧହୁଏ ତିକ୍ତତା ବା ରୁଷ୍ଟତା ସେପରି କିଛି ଜାତ କରି ନଥିଲା ।

ଓଡ଼ିଆ ସାହିତ୍ୟରେ ସବୁଜ ସାହିତ୍ୟ ସମିତି ଓ ନବଯୁଗ ସାହିତ୍ୟ ସଂସଦର ଚେଷ୍ଟା ସମ୍ବନ୍ଧରେ ଏକ ବକ୍ତୃତା ମୁଁ ଗୋଟିଏ ସଭାରେ ଦେବା ପରେ, ସେହି ସମୟର ବଙ୍ଗ ସାହିତ୍ୟରେ ତରୁଣଙ୍କ ଅବଦାନ ଉପରେ ତିନିଗୋଟି ଆଲୋଚନା ଏକ ଆଲୋଡ଼ନ ସୃଷ୍ଟି କରିଥିଲା । ପରେ ଜାଣିଲି, ମୋର କୌଣସି କୌଣସି ଇଂରେଜୀରେ ଲେଖା ପ୍ରବନ୍ଧ (ରବୀନ୍ଦ୍ରନାଥଙ୍କ ଉପରେ) ବଙ୍ଗ ଭାଷାନ୍ତର କରି, ଅନ୍ୟମାନଙ୍କ ପ୍ରବନ୍ଧ ସଙ୍ଗେ ପୁସ୍ତକାକାରରେ ପ୍ରକାଶିତ ହେଲା ।

ହିନ୍ଦି ସାହିତ୍ୟ ପରିଷଦ (ନାମରେ ଭୁଲ ଥାଇପାରେ ) ଅନ୍ୟ ଏକ ସ୍ଥାନରେ ଥିଲା । ସେଠାରେ ସାହିତ୍ୟ ଆଲୋଚନା ଛଡ଼ା, ଅନ୍ୟ ସମ୍ବନ୍ଧୀୟ ସଭାସମିତି ହୁଏ । ରବୀନ୍ଦ୍ର ଭବନ ପରି କର୍ମତତ୍ପର ନୁହେଁ । ଭଜନ ସମାରୋହ ମଝିରେ ମଝିରେ ସେଠାରେ କରାଯାଏ । ଜାତିସଂଘ ଦିବସ ପରି ଗୁରୁତ୍ୱପୂର୍ଣ୍ଣ ସଭା ସେଠାରେ ହୁଏ କାରଣ ଜନବହୁଳ ସ୍ଥାନରେ ହଲଟି ଥିବାରୁ ବେଶି ଲୋକଙ୍କର ଉପସ୍ଥିତି ସହଜରେ ଘଟେ । କେତେଥର ମୁଁ ସେଠା କାର୍ଯ୍ୟକ୍ରମରେ ମୁଖ୍ୟାଂଶ ଗ୍ରହଣ କରିଛି ।

ଥିଓସଫିକାଲ ସୋସାଇଟିର ନିଜସ୍ୱ ଗୃହ ପାଟନା କଲେଜ ନିକଟବର୍ତ୍ତୀ । ସାପ୍ତାହିକ ବୈଠକ ଛଡ଼ା, ବିଶେଷ ଅଧିବେଶନ ଅନେକ ହୁଏ । କିପରି ହେଲା କେଜାଣି, ସେଠାକୁ ବହୁଥର ଅଂଶଗ୍ରହଣ କରିବାକୁ ମୁଁ ନିମନ୍ତ୍ରିତ ହେଉଥିଲି । ସେହି ଅବସରରେ ଥିଓସଫି ସମ୍ବନ୍ଧରେ କେତେକ ପୁସ୍ତକ ପଢ଼ିବାର ସୁଯୋଗ ମିଳିଲା ।

Digitized by srujanika@gmail.com

ବିହାରର ରାଜ୍ୟପାଳ ଅନନ୍ତଶୟନ ଆୟଙ୍ଗାରଙ୍କ ସଙ୍ଗେ ଏକାଧିକବାର ସେଠାରେ ଆଲୋଚନାରେ ଯୋଗଦେବାବେଳେ ଦେଖିଲି, ଆୟଙ୍ଗାର ଜଣେ ଭଲ ପ୍ରବକ୍ତା, ଧର୍ମ ଅନୁସନ୍ଧିତ୍ସୁ; ଥିଓସଫି ସଂସ୍ଥାର ମୂଳାଧାର ମାଡ୍ରାସର ଆଡୟାର ସମ୍ବନ୍ଧରେ ବହୁ ଅବଗତ । ଅଭ୍ୟାସ ଓ ବିଶ୍ୱାସରେ ଥିଓସଫିଷ୍ଟମାନେ ଏକନିଷ୍ଠ, ସେମାନଙ୍କ କାର୍ଯ୍ୟ ପ୍ରଣାଳୀ ସଂଯତ, ବାକ୍ୟାଳାପ ଶୃଙ୍ଖଳିତ ।

ମୁଁ ପାଟନାରେ ଥିଲାବେଳେ English speaking union ଆରମ୍ଭ ହେଲା, କେତେଜଣ ଉତ୍ସାହୀ ଅଧ୍ୟାପକଙ୍କ ଚେଷ୍ଟାରେ । ମୂଳରୁ ମତେ ସଭାପତି କରାଗଲା । ପାଟନା ଛାଡିବା ପର୍ଯ୍ୟନ୍ତ ସେହି ଦାୟିତ୍ୱରେ ଥିଲି । ଏ ସଂସ୍ଥାର ମୂଳ ଲଣ୍ଡନରେ । କମନୱେଲଥର ବହୁ ଅଂଶରେ ଏହାର ଶାଖା । ଭାରତବର୍ଷର ଅନେକ ସ୍ଥାନରେ ମଧ୍ୟ । ଏକ ସୁନିୟନ୍ତ୍ରିତ ଅନୁଷ୍ଠାନ । ଇଂରେଜୀ ଭାଷାର ପୃଷ୍ଠପୋଷକତା ସଙ୍ଗେ ସଙ୍ଗେ ସଭ୍ୟତା ଓ ଶାନ୍ତିର ପରିପୂରକ ସଚେତନତା ସୃଷ୍ଟି ଏହାର ଲକ୍ଷ୍ୟ । ଇଂରେଜୀ ଭାଷା ଅଭିଜ୍ଞ ସାବାଳକ ଏହାର ସଭ୍ୟଶ୍ରେଣୀଭୁକ୍ତ ହୁଅନ୍ତି । ସକ୍ରିୟ ରାଜନୀତି ବାହାରେ ଏହାର ପରିସର । ବଡ ଉତ୍ସାହରେ ଏହି ଅନୁଷ୍ଠାନ ଚାଲିଥାଏ ଏବଂ ଏହାର ମାଧ୍ୟମରେ କମନୱେଲଥର ବିଭିନ୍ନ ଶାଖା ଓ ମୂଳ ସଂସ୍ଥା ସହିତ ସମ୍ପର୍କ ଯୋଗୁ ଇୟୁନିଅନର ଆଭିମୁଖ୍ୟରେ ଏକ ଉଦାର ମନୋଭାବ ପ୍ରକାଶ ପାଉଥାଏ । ଆମେରିକାରେ ମଧ୍ୟ ଏ ସଂସ୍ଥା ପ୍ରଚଳିତ,English speaking Union of U.S.A ନାମରେ । ପ୍ରତି ମାସରେ ଅନ୍ୟୂନ ଦୁଇଥର ଅଧିବେଶନ ହୁଏ । ବହିରାଗତ ଅତିଥି ବେଳେବେଳେ ଆସନ୍ତି । ନିର୍ଦ୍ଧାରିତ ବିଷୟରେ ଆଲୋଚନା ହୁଏ । ଥରେ ଲଣ୍ଡନରୁ ଏକ ଦମ୍ପତି ଆସିଥିଲେ । ସେମାନେ କେନ୍ଦ୍ରୀୟ ସଂସ୍ଥା ସଂପୃକ୍ତ । ସ୍ୱାମୀ ଅବସରପ୍ରାପ୍ତ ଇଞ୍ଜିନିୟର (?), ସ୍ତ୍ରୀ ସମାଜସେବିକା, ସ୍ନେହଶୀଳା, ମେଳାପୀ । ତାଙ୍କର ପରିଚୟ ଦେଲାବେଳେ ଜଣେ ଅଧ୍ୟାପକ ମହିଳାଙ୍କୁ ବର୍ଣ୍ଣନା କଲେ Homely lady । ମହିଳାଙ୍କ ମୁହଁ ଅପ୍ରତିଭ ଦେଖାଗଲା । ସ୍ୱାମୀ ତାଙ୍କୁ ଚାହିଁଲେ । ମୁଁ ଅପ୍ରସ୍ତୁତ ବୋଧ କଲି । ସୌନ୍ଦର୍ଯ୍ୟରେ ଖର୍ବତା ବା ବିଶେଷ ସୌନ୍ଦର୍ଯ୍ୟର ଅଭାବ ଥିଲେ, Homely lady କୁହାଯାଏ । ଅଧ୍ୟାପକ ସେ ଉଦ୍ଦେଶ୍ୟରେ କହି ନଥିଲେ, କଥାବାର୍ତ୍ତାରେ ସମସ୍ତଙ୍କ ସଙ୍ଗେ ଅତି ଆପଣାର ପରି ବ୍ୟବହାର କରୁଥିବାରୁ, ସେ ମହିଳା ଅତିଥିଙ୍କୁ Homely କହିଲେ ଯଥାର୍ଥ ହେବ ବୋଲି, ସେ ଶବ୍ଦ ବ୍ୟବହାର କରିଥିଲେ । ମୁଁ କହିଲାବେଳେ ଏଇ କଇଫିଅତ ଦେବାରୁ ଅତିଥିଦ୍ୱୟଙ୍କର ଅପମାନ ବୋଧ ଘୁଞ୍ଚିଗଲା । ୧୯୬୭ ମେ ମାସରେ କମନୱେଲେଥ ଇଙ୍ଗିଲିସ୍ ସ୍ପିକିଙ୍ଗ୍ ୟୁନିଅନର କେନ୍ଦ୍ରୀୟ ଅଫିସ, ଲଣ୍ଡନର

Digitized by srujanika@gmail.com

ଡାର୍ଟମୁଥ ହାଉସରେ (Dartmouth House, Charles Street)ମୋ ଉଦ୍ଦେଶ୍ୟରେ ଏକ ମଧ୍ୟାହ୍ନ ଭୋଜନରେ ମୁଁ ପାଟନାର ଏହି ହୋମ୍‌ଲି ଉପଖ୍ୟାନ କହିଲାବେଳେ ଏକ ହାସ୍ୟରୋଳ ସୃଷ୍ଟି ହୋଇଥିଲା । ଭାଷାର ପ୍ରୟୋଗରେ ସ୍ପଷ୍ଟ, ସଠିକ ଧାରଣା ନ ଥିଲେ, କିପରି ବିଭ୍ରାଟ ଘଟେ ଓ ବୁଝାମଣା ଅଯଥା ବ୍ୟାହତ ହୁଏ ତାହାର ଏହା ଏକ ନିଦର୍ଶନ ।

ଶ୍ରୀ ମହେଶ ଯୋଗୀ ପାଟନାକୁ ଆସିଥିଲେ । ତାଙ୍କ ପ୍ରବଚନ ଶୁଣିବା ପାଇଁ ଏକ ଜନବହୁଳ ସଭା ହୋଇଥିଲା । ସେକ୍ରେଟେରିଅଟର କେତେଜଣ ଆଇ.ଏ.ଏସ୍. ସେକ୍ରେଟେରୀ ତାହାର ଆୟୋଜନ କରିଥିଲେ । ତାଙ୍କରି ମଧ୍ୟରୁ ଜଣଙ୍କ ଘରେ ସ୍ୱାମୀଜୀ ରହୁଥିଲେ । ମତେ ସଭାପତି ହେବାପାଇଁ ପୂର୍ବରୁ କହିଥିଲେ । ଆମେରିକା ହାରଭାର୍ଡ ବିଶ୍ୱବିଦ୍ୟାଳୟରେ Transdental meditation କିଛି ଶିକ୍ଷା ଦେଇ ସ୍ୱାମୀଜୀ ସଦ୍ୟ ଫେରିଥାନ୍ତି । ସେ ବିଷୟରେ ବିସ୍ତୃତ ବୟାନ ଦେଲାବେଳେ, ସଭାରେ ବହୁ ଅନୁସନ୍ଧିତ୍ସା ପ୍ରକାଶ ପାଇଲା ଏବଂ ପାଟନାରେ ଗୋଟିଏ T.M. ଶାଖା ଖୋଲିବାର ସ୍ଥିର ହେଲା । ସଙ୍ଗେ ସଙ୍ଗେ ୩୬ ଜଣ ସଭ୍ୟ ହେଲେ । ଏ.ବି.ଏନ୍. ସିହ୍ନା ଆଡଭୋକେଟ୍‌ଙ୍କ ଘର ନିକଟବର୍ତ୍ତୀ ଏକ ସ୍ଥାନରେ ତାହାର କାର୍ଯ୍ୟ ଚାଲିବା ଧାର୍ଯ୍ୟ ହେଲା । ୩୬ ଜଣ ସଭ୍ୟଙ୍କ ମଧ୍ୟରୁ ଅଧିକାଂଶ ଉଚ୍ଚ କର୍ମଚାରୀ, ଓକିଲ, ଇଞ୍ଜିନିଅର, ଅଧ୍ୟାପକ । ଜଣେ ଡାକ୍ତର ଥିଲେ । ମୁଁ ସଭାପତି ହେଲି । ସଭାର ପରବର୍ତ୍ତୀ ରବିବାର ଶାଖାର କାର୍ଯ୍ୟ ସୁରୁହେଲା । ମହେଶ ଯୋଗୀଙ୍କର ଜଣେ ଅନୁଚର T.M. ଆମକୁ ଦେଖାଇଲେ ଓ ଶିଖାଇଲେ । ତା ପୂର୍ବରୁ କେହି କେହି ସ୍ୱାମୀଜୀଙ୍କ ନିକଟରୁ ତାହାର ପ୍ରକ୍ରିୟା ବୁଝିଥାଆନ୍ତି । ମହେଶ ଯୋଗୀଙ୍କ ବୟାନ ଆକର୍ଷଣୀୟ । ତାଙ୍କ ବ୍ୟବହାରରେ ଗୁରୁଚାପ ନଥାଏ । ବିଶ୍ଳେଷଣରେ ବୈଜ୍ଞାନିକ ଦୃଷ୍ଟି । ସହଜ ଭାବରେ ମନୋନିବେଶ (Concentration) ତାଙ୍କ ପରାମର୍ଶର ମୂଳଭିତ୍ତି । ସଂଯୋଗରେ ଉତ୍ସାହ ସୃଷ୍ଟି ତାଙ୍କ ବ୍ୟକ୍ତିତ୍ୱର ଅନ୍ତର୍ଭୁକ୍ତ । କିନ୍ତୁ ସେ ପାଟନା ପରିତ୍ୟାଗ କରିବାର ଛଅମାସ ମଧ୍ୟରେ ଆମ ଶାଖା ଆସ୍ତେ ଆସ୍ତେ ମଉଳିଗଲା ।

ପାଟନାର ଅନ୍ୟ ଏକ ବନ୍ଦନୀୟ ସ୍ଥାନ ଶିଖ ଗୁରୁଦ୍ୱାର, ଗୁରୁ ଗୋବିନ୍ଦଙ୍କର ଜନ୍ମପୀଠ । ସମସ୍ତଙ୍କ ପାଇଁ ତାହା ଏକ ତୀର୍ଥସ୍ଥଳୀ । କିପରି ମୁଁ ସେଥିରେ ସଂଶ୍ଳିଷ୍ଟ ହେଲି ମନେ ନାହିଁ । ସେଠାରୁ ବେଳେ ବେଳେ ଲୋକେ ଆସନ୍ତି ତାଙ୍କ ଧର୍ମଗ୍ରନ୍ଥ ଓ ତତ୍ ସମ୍ବନ୍ଧୀୟ ଅନ୍ୟାନ୍ୟ ପୁସ୍ତକ (ଇଂରାଜୀ ଅନୁବାଦ) ମତେ ପଢ଼ିବାକୁ ଦେବାପାଇଁ । ନାନକ, ଗୁରୁଗୋବିନ୍ଦ ପ୍ରଭୃତିଙ୍କ ଉଦ୍ଦେଶ୍ୟରେ ସଭାମାନଙ୍କରେ ଅଧକ୍ଷତା

Digitized by srujanika@gmail.com

କରିବାପାଇଁ ପ୍ରସ୍ତୁତ ହୋଇ ଯିବାକୁ ପଡେ । ଏ ପ୍ରକାର ଯୋଗାଯୋଗର କେତେକଙ୍କ ସଙ୍ଗେ ଆତ୍ମୀୟତା ଜନ୍ମିଥିଲା । ଉଚ୍ଚ କର୍ମଚାରୀଙ୍କ ମଧ୍ୟରେ କେତେଜଣ ଶିଖ ଧର୍ମାବଲମ୍ବୀ ସେତେବେଳେ ପାଟନାରେ ଥିଲେ । ପଂକ୍ତି ସଚେତନତା ସେମାନଙ୍କର ସ୍ପଷ୍ଟ ।

ଏସବୁ କାର୍ଯ୍ୟକଳାପ ସାଙ୍ଗକୁ ଥିଲା ରୋଟାରୀ । କଟକରେ ୧୯୪୪ରେ ରୋଟାରୀ କ୍ଲବ ଆରମ୍ଭ କରିବା ଉଦ୍ୟୋକ୍ତାଙ୍କ ମଧ୍ୟରେ ମୁଁ ଥିଲି । ତାର ପ୍ରଥମ ଦୁଇବର୍ଷ ସେକ୍ରେଟାରୀ, ୧୯୫୫-୫୬ରେ ସଭାପତି ହୋଇଥିଲି । କଟକ ପୂର୍ବରୁ ପାଟନାରେ ରୋଟାରୀ କ୍ଲବ ସ୍ଥାପିତ ହୋଇଥିଲା । ମୁଁ ଆସିବା ସଙ୍ଗେ ସଙ୍ଗେ ରୋଟାରୀ କ୍ଲବରେ ଯୋଗଦେବା ପାଇଁ ତାର ତତ୍କାଳୀନ ସଭାପତି କହିବା ମୁଁ ଆଶା କରୁଥିଲି । ତାହାହିଁ ହେଲା । ଜଜ୍‌ଙ୍କ ଭିତରୁ କେହି ରୋଟାରୀରେ ନଥିଲେ, ଯଦିଓ ପାଟନା ରୋଟାରୀ କ୍ଲବର ପ୍ରଥମ ସଭାପତି ଥିଲେ ଚିଫ୍ ଜଷ୍ଟିସ ସାର୍ ସି.ଏମ୍.ଅଗ୍ରୱାଲ । ମୁଁ ଗଲାବେଳକୁ ତାଙ୍କର ଦେହାନ୍ତ ହୋଇଯାଇଥିଲା । ସେଠାର ଆଉ ଜଣଙ୍କୁ ଆଗରୁ ଜାଣିଥିଲି—ଇଲିସେନ୍ । ଲମ୍ୱା ଚଉଡା ଲୋକ, ମଟରଗାଡି ମରାମତି କାରଖାନା, ହୋଟେଲ ବ୍ୟବସାୟ ତାଙ୍କର । ରାମକୃଷ୍ଣ ମିଶନରେ ଅନୁରକ୍ତ । ତାଙ୍କର ସନ୍ତାନହୀନା ପତ୍ନୀ ଚକ୍ଷୁହୀନା ହୋଇଯିବାରେ ବଡ ମ୍ରିୟମାଣ ଥାଆନ୍ତି । ତାଙ୍କ ଚିକିତ୍ସା ପାଇଁ ବହୁ ଶ୍ରମ ଓ ବ୍ୟୟରେ ବିଫଳ ହୋଇଯାଇଥିଲେ । ପତ୍ନୀ ବିୟୋଗ ପରେ, ବ୍ୟବସାୟର ଅଧିକାଂଶ ଲାଭ ମିଶନକୁ ଦେଉଥିଲେ । ସେ ବିଶେଷ କରି ଲଗାଇଲେ ରୋଟାରୀରେ ମୁଁ ଯୋଗଦେବା ପାଇଁ । ଥରେ ପଶିଲେ, କାର୍ଯ୍ୟର ପରିସର ମଧ୍ୟରେ ବ୍ୟାପୃତ ନ ହୋଇ ରହିହେଲା ନାହିଁ । ସେଠାରେ ଥିଲାବେଳେ, ୧୯୬୭-୬୮ ବର୍ଷ ପାଇଁ ମୁଁ ରୋଟାରୀ ଡିସଟ୍ରିକ୍ଟ ଗଭର୍ଣ୍ଣର ନିର୍ବାଚିତ ହୋଇଥିଲି । ଡିସଟ୍ରିକ୍ଟ ୩୨୫ରେ ବଙ୍ଗ, ବିହାର, ଓଡିଶା, ଆସାମ, ମଧ୍ୟପ୍ରଦେଶ, ନେପାଳ, ଭୁଟାନ, ସିକିମ୍, ବଙ୍ଗଳାଦେଶ, ବର୍ମା ଅନ୍ତର୍ଭୁକ୍ତ ଥିଲା । ହାଇକୋର୍ଟ କାମ ସାଙ୍ଗରେ ସେ କାମ ତୁଲାଇବାରେ ବହୁ ପରିଶ୍ରମ ଓ କଷ୍ଟ ସ୍ୱୀକାର କରିବାକୁ ପଡିଥିଲା । ସେ ବର୍ଷର କନ୍‌ଫରେନ୍‌ସ କଲିକତାରେ ୧୯୬୮ ମାର୍ଚ୍ଚ ମାସରେ କରାଇଥିଲି, କଲିକତାରେ ଥିବା ରୋଟାରୀ କ୍ଲବମାନଙ୍କ ସାହାଯ୍ୟରେ । ଭଲରେ, ଭଲରେ ହୋଇଗଲା । ଆସେମ୍ବ୍ଲି କଲିକତା ବାଟା ନଗରରେ ହେଲା ଏବଂ ପର ଆସେମ୍ବ୍ଲି ଦିଘା ସମୁଦ୍ର ତୀରରେ । ଏ ସବୁରେ ରୋଟାରୀ ବନ୍ଧୁମାନଙ୍କର ଅକୁଣ୍ଠ ସାହାଯ୍ୟ ମିଳିଥିଲା । ରୋଟାରୀ ମାସିକ ପତ୍ର ବର୍ଷ

Digitized by srujanika@gmail.com

ସାରା ଛାପାଇବା ଓ ପ୍ରତି କ୍ଲବ ଓ ଅନ୍ୟାନ୍ୟ ସ୍ଥାନକୁ ପଠାଇବା ମୋ ପକ୍ଷରେ ସମ୍ଭବ ହୋଇ ନଥାନ୍ତ । ଯଦି ବେବି (ବଡପୁଅ ପ୍ରଭାତ) ତାହାର ଦାୟିତ୍ୱ ସୁଚାରୁରୂପେ ତୁଲାଇ ନଥାନ୍ତା କଲିକତାରୁ । ମୋ କଲବଲ ଦେଖି ଜଜ୍ ବନ୍ଧୁମାନେ ଉପହାସ କରୁଥାନ୍ତି, ବାପ ରାଣ ଡ଼ିଙ୍କି ଗିଳିଲି କାହିଁକି ? କିନ୍ତୁ ଦାୟିତ୍ୱ ଆସିଲେ, ତାର ମୁକାବିଲା ନ କରି ଚାରା କଅଣ ?

ପାଟନାରୁ ମୁଁ ଅବସର ନେବା ପାଖେଇଲାବେଳକୁ ବିଜୁ ପଟ୍ଟନାୟକଙ୍କର ଏକ ଚିଠି ମିଳିଲା ୨୮/୭/୬୬ ତାରିଖରେ ।

My dear Dada,

I understand that you are retiring soon. Since you are young and willing, why not join the club of the scoundrels and go to Loka sabha.

Please let me know what you think.

Affectionately
Biju

Harihar Mahapatra
Justice
Patna Highcourt
Patna

ଉତ୍ତର ଦେଲି କୃତଜ୍ଞତାର ସହିତ ନାସ୍ତି ବାଣୀରେ । ଶାନ୍ତିପ୍ରିୟ ବିଚାର କାର୍ଯ୍ୟରୁ ଯାଇ ସେ ଝାମଲାରେ ପଶିବାର ଉତ୍ସାହ ନଥିଲା । କେତେବର୍ଷ ପରେ ଆଉଥରେ ମଧ୍ୟ ତାଙ୍କଠାରୁ ତଦ୍ରୂପ ପ୍ରସ୍ତାବ ପାଇଥିଲି । ଅମଙ୍ଗ ହୋଇ କ୍ଷମା ଚାହିଁଲି ।

ଏହିପରି କାମଦାମ ମଧ୍ୟରେ ଭଲରେ ଭଲରେ ପାଟନା ରହଣି ଶେଷ ହେଲା ।



Digitized by srujanika@gmail.com

# ପୁଣି ପାଟନା

ଅକ୍ଟୋବର ୧୯୬୬ରେ କଟକକୁ ଫେରିଲାବେଳକୁ ରଙ୍ଗନାଥଙ୍କର ତୁଳସୀପୁରରେ ଘର ତିଆରି ସରି ଯାଇଥିଲା । ତିନିଦିନ ପରେ ୨୩ ତାରିଖରେ (୨୩/୧୦/୬୬) ପ୍ରତିଷ୍ଠା ହେଲା । କେଶରପୁର ଭଡାଘର ଛାଡିଲେ । ମାସକ ଭିତରେ ଅଫିସ ସେଠାକୁ ଗଲା । ୧୯୩୭ ମସିହାରୁ ଚାନ୍ଦିନିଚଉକ ଘରେ ଅଫିସ ଆରମ୍ଭ ହୋଇଥିଲା । ରଙ୍ଗନାଥ ଓକିଲାତି ଆରମ୍ଭ କଲାଦିନୁ ମୋ ସାଙ୍ଗରେ ସେହି ଅଫିସରେ କାମ କରୁଥିଲେ । ମୁଁ ପାଟନା ଗଲାପରେ ମଧ୍ୟ ଅଫିସ ସେଠାରେ ଚାଲିଥିଲା । ମୁଁ ଫେରିଲା ପରେ, କଟକ ହାଇକୋର୍ଟରେ ଓକାଲତି କରିପାରି ଥାଆନ୍ତି । ଚେମ୍ବର ପ୍ରାକ୍ଟିସ ମଧ୍ୟ । କରିଥିଲେ ଅଫିସ ପୂର୍ବପରି ଚାଲିଥାଆନ୍ତା । ମାତ୍ର ମୁଁ ସ୍ଥିର କରିଥିଲି ତାହା କରିବି ନାହିଁ । ଭାରତବର୍ଷ ଛଡା, ଅନ୍ୟ କେଉଁଠାରେ ଜଜ୍‌ମାନେ ଅବସରନେବା ପରେ ପ୍ରାକ୍‌ଟିସ ବା ଚେମ୍ବର ପ୍ରାକ୍ଟିସ କରନ୍ତି ନାହିଁ । ଅନ୍ୟାନ୍ୟ ଦେଶରେ ସେମାନଙ୍କ ପେନସନ୍ ଆମ ତୁଳନାରେ ଅଧିକ । ଆମେରିକାରେ ବେତନ ସଙ୍ଗେ ପେନସନ୍ ସମାନ । ଇଂଲଣ୍ଡରେ ବେତନର ଚଉଠେ ବାଦ୍ ଦେଇ ପେନସନ୍ । ଆମର ଅଳ୍ପ ଥିବାରୁ କେହି କେହି ଜଜ୍ ଅବସର ପରେ ପୁଣି ପ୍ରାକ୍‌ଟିସ୍ କରନ୍ତି, ସମୟ କଟାଇବା, ଗୁଜୁରାଣ ମେଣ୍ଟାଇବା ପାଇଁ । ଏହା କରଣୀୟ ନୁହେଁ । ଆମେରିକାର ସୁପ୍ରିମକୋର୍ଟ ଚିଫ୍ ଜଷ୍ଟିସ୍, ଦିଲ୍ଲୀ ସୁପ୍ରିମକୋର୍ଟ ବାର ଆସୋସିଏସନ୍‌ରେ ଅବସର ପ୍ରାପ୍ତ କେତେକ ହାଇକୋର୍ଟ ଜଜଙ୍କୁ ଦେଖି ବିସ୍ମୟ ପ୍ରକାଶ କରିଥିଲେ । ଆମ ସମ୍ବିଧାନରେ ସୁପ୍ରିମକୋର୍ଟ ଜଜ୍‌ମାନେ ପ୍ରାକ୍‌ଟିସ କରିବା ବାରଣ ଅଛି । ହାଇକୋର୍ଟ ଜଜ୍‌ଙ୍କ ପାଇଁ ସେହିବିଧି ଲାଗୁହେବା ଉଚିତ । ସର୍ବତ୍ର ପ୍ରଚଳିତ ପରଂପରା ସହିତ ତାହାର ସଙ୍ଗତି ରହିବ । ଆମର ନିୟମ, ଯେଉଁ ହାଇକୋର୍ଟରେ ଜଜ୍ କାର୍ଯ୍ୟ କରିଥିବେ ସ୍ଥାୟୀଭାବରେ, ସେହି ହାଇକୋର୍ଟ ବ୍ୟତିରେକ, ଅନ୍ୟ ହାଇକୋର୍ଟ ବା ସୁପ୍ରିମକୋର୍ଟରେ ପ୍ରାକ୍ଟିସ କରିପାରିବେ । ଚେମ୍ବର ପ୍ରାକ୍ଟିସ ସମ୍ବନ୍ଧରେ କିଛି ଉଲ୍ଲେଖ ନାହିଁ । ଦେଖାଯାଏ

Digitized by srujanika@gmail.com

ଅଧିକାଂଶ ଜଜ୍ ଅବସର ସଙ୍ଗେ ସଙ୍ଗେ ସିନିଅର ଆଡ୍‌ଭୋକେଟ୍ ଭାବେ ନାମ ଦରଜ କରାନ୍ତି । ସେପରି କଲେ, ନିୟମାନୁଯାୟୀ, ଚିଠିର ଶିରୋନାମାରେ ବା ଅନ୍ୟତ୍ର ଜଷ୍ଟିସ ବା ପ୍ରାକ୍ତନ ବିଚାରପତି ଉଲ୍ଲେଖ ନିଷିଦ୍ଧ । ଆଡଭୋକେଟ୍ ଆଇନର ଶୃଙ୍ଖଳାରେ ସେ ଆବଦ୍ଧ ।

ମୁଁ ଫେରିଲାବେଳକୁ ଓଡିଶାରେ କଂଗ୍ରେସ ଶାସନ । ସଦାଶିବ ତ୍ରିପାଠୀ ମୁଖ୍ୟମନ୍ତ୍ରୀ, ଦୀନବନ୍ଧୁ ସାହୁ ଆଡଭୋକେଟ୍ ଜେନେରାଲ । ବିଧାନସଭା ନିର୍ବାଚନ ଆସନ୍ନ । ଦୀନବନ୍ଧୁ ନିର୍ବାଚନରେ ପ୍ରାର୍ଥୀ ହେବାକୁ ଇଚ୍ଛୁକ । ପୂର୍ବରୁ ସେ କେବଳ ବିଧାୟକ ନ ଥିଲେ, ମନ୍ତ୍ରୀ ମଧ ହୋଇଥିଲେ । ଆଡଭୋକେଟ୍ ଜେନେରାଲ କାର୍ଯ୍ୟ ନ ଛାଡିଲେ ପ୍ରାର୍ଥୀ ହୋଇପାରିବେ ନାହିଁ । ମୋ ସାଙ୍ଗେ ଆସି ଲଗାଇଲେ ସେ ଓ ସଦାଶିବ ତ୍ରିପାଠୀ, ଆଡଭୋକେଟ୍ ଜେନେରାଲ ହେବାପାଇଁ । ତାଙ୍କ ସାଙ୍ଗକୁ ମିଶିଲେ, ଖଲିଲ ଅହମଦ, ଯେ ପାଟନାରୁ ଓଡିଶା ହାଇକୋର୍ଟକୁ ଚିଫ୍ ଜଷ୍ଟିସ ହୋଇ ଆସିଥାନ୍ତି, ମୋର ଜଣେ ଘନିଷ୍ଠ ବନ୍ଧୁ । ଏପରି ଚାପ ତିନିହେଁ ପକାଇଲେ ୧୦/୧୫ ଦିନ ଧରି ଯେ ମତେ ସ୍ୱୀକାର କରିବାକୁ ପଡିଲା । ସ୍ଥିର କଲି, କେବଳ ଆଡଭୋକେଟ୍ ଜେନେରାଲ କାର୍ଯ୍ୟ କରିବି; ଅନ୍ୟ ପ୍ରାକ୍‌ଟିସ କରିବି ନାହିଁ । ଚାନ୍ଦିନିଚୌକ ଘରୁ ଓକାଲତି ଅଫିସ ତୁଳସିପୁର ଉଠିଯାଇ ଥାଏ, ବହି, ଆଲମାରୀ, ଆସବାସପତ୍ର ସହିତ । ଖାପଛଡା ମତେ ଲାଗିଲା, ଆଡଭୋକେଟ୍ ଜେନେରାଲ ହେବା । ଚିଫ୍ ଜଷ୍ଟିସ ଖଲିଲ ଅହମଦ ମୋ ସମ୍ବର୍ଦ୍ଧନା ପାଇଁ ଏକ ବଡ ଚା'ଭୋଜି ଦେଲେ, କଲିକତାରୁ ମିଷ୍ଟାନ ମଗାଇ । ମୋ ମନ କିନ୍ତୁ ମାନୁ ନଥାଏ; ଯଦିଓ ଅନ୍ୟମାନଙ୍କର ପ୍ରସନ୍ନତା ମୁଁ ଦେଖୁଥାଏ । ସରକାର ଓ ହାଇକୋର୍ଟ ମଧରେ ଜିଲ୍ଲା ଜଜ୍‌ମାନଙ୍କ ନିଯୁକ୍ତି ଓ ବଦଳି ସଂକ୍ରାନ୍ତ ଏକ ଦ୍ୱନ୍ଦ୍ୱ ହାଇକୋର୍ଟରେ କେସ୍ ଆକାରରେ ଉଠିଲା । ସରକାରଙ୍କ କ୍ଷମତା ସମର୍ଥନର ଦାୟିତ୍ୱ ମତେ ନେବାକୁ ପଡ଼ିଲା, ଖଲିଲ୍ ଅହମଦ ହାଇକୋର୍ଟ ସପକ୍ଷରେ କେସ ଚଳାଇବା ପାଇଁ କଲିକତାରୁ ଜଣେ ଅବସରପ୍ରାପ୍ତ ବାରିଷ୍ଟର ଜଜ ଜେ.ପି.ମିତ୍ରକୁ ନିଯୁକ୍ତ କଲେ । ତାଙ୍କୁ ସହାୟତା କରୁଥାନ୍ତି ବୀରେନ୍ଦ୍ର ମୋହନ ପଟ୍ଟନାୟକ ବାରିଷ୍ଟର । କେସ କୌତୁହଳ ସଙ୍ଗେ କିଛି ଅଂଶରେ ତିକ୍ତତା ସୃଷ୍ଟି କରୁଥାଏ । ଶେଷରେ ତିନି ଜଜ୍‌ଙ୍କ ମଧରୁ ଦୁଇ ଜଜ୍‌ଙ୍କ ରାୟରେ ହାଇକୋର୍ଟର କ୍ଷମତା ପକ୍ଷରେ ନିଷ୍ପତ୍ତି ହେଲା । ଭିନ୍ନ ମତ ଦେଲେ ଜଜ୍ ସତ୍ୟଭୂଷଣ ବର୍ମନ । ଖଲିଲ ଅହମଦଙ୍କ ସଙ୍ଗେ ସ୍ୱୀକୃତି ଦେଇଥିଲେ ଜଜ୍ ଗତିକୃଷ୍ଣ ମିଶ୍ରେ ।

Digitized by srujanika@gmail.com

ନିର୍ବାଚନରେ କଂଗ୍ରେସ ହାରିଲା । ଦୀନବନ୍ଧୁ ମଧ । ରାଜେନ୍ଦ୍ରନାରାୟଣ ସିଂହଦେଓ ମୁଖ୍ୟମନ୍ତ୍ରୀ ହେଲେ । ଅଶୋକ ଦାସଙ୍କୁ ଆଡଭୋକେଟ୍ ଜେନେରାଲ କଲେ । ତାହା ପୂର୍ବରୁ ମୋ ସହିତ ସୌଜନ୍ୟ ରକ୍ଷାକରି ନ ଥିଲେ । ଅଯୋଧ୍ୟାନାଥ ଖୋସଲା ସେତେବେଳେ ଗଭର୍ଣ୍ଣର । ମୁଁ ତାଙ୍କୁ ସେ ବିଷୟରେ ଏକ ପତ୍ର ଲେଖିଥିଲି । ରାଧାନାଥବାବୁ 'ସମାଜ'ରେ ତାହା ମୋ ଅଜାଣତରେ ପ୍ରକାଶ କରିଦେବାରୁ, କଲିକତା ପାଟନାର ଇଂରାଜୀ ପ୍ରତିକାମାନଙ୍କରେ ତାହା ବାହାରିଗଲା ଏବଂ ଓଡିଶା ସରକାରଙ୍କୁ ନ ସୁହାଇଲା ପରି କେତେକ ମତାମତ ଲେଖାଲେଖି ଚାଲିଲା । ରାଜ୍ୟପାଳ ଖୋସଲା ଖଣ୍ଡିଏ ବ୍ୟକ୍ତିଗତ ପତ୍ର ଉଦାରତାର ସହିତ ଲେଖିଥିଲେ । ଜଣେ ସାମ୍ବାଦିକ (କଟକର ନୁହେଁ) ତାକୁ ପ୍ରକାଶ କରିଦେବା ଚେଷ୍ଟାରୁ ନିବୃତ୍ତ ରହିବା ପାଇଁ ମତେ ବହୁତ ଅନୁରୋଧ କରିବାକୁ ପଡିଲା ।

ଏ ଘଟନାର ଅଳ୍ପ ଦିନ ପରେ ପାଟନାରୁ ଚିଠି ପାଇଲି, ପୁଣି ହାଇକୋର୍ଟକୁ ଜଜ୍ ହୋଇ ଯିବାପାଇଁ ସ୍ୱୀକୃତ ହେବାକୁ । ସମ୍ବିଧାନ ଅନୁସାରେ ରାଷ୍ଟ୍ରପତି ଆବଶ୍ୟକ ବୋଧକଲେ ଅବସରପ୍ରାପ୍ତ ଜଜ୍‌ଙ୍କୁ ପୁଣି କାର୍ଯ୍ୟଭାର ଅସ୍ଥାୟୀ ଭାବରେ ଗ୍ରହଣ କରିବାକୁ ଅନୁରୋଧ କରି ପାରନ୍ତି । ସେଥିରେ ସ୍ୱୀକୃତ ହେବା ବାଧ୍ୟତାମୂଳକ ନ ହେଲେ ମଧ୍ୟ, ସକ୍ଷମତା ଥାଇ ନାସ୍ତି କରିବା ଅସମୀଚୀନ । ମୁଁ ସ୍ୱୀକୃତି ଦେଲି ଏବଂ ପୁଣି ଗଲି ପାଟନା ଦୁଇବର୍ଷ ପାଇଁ । ନରସିଂହମ ଥାଆନ୍ତି ଚିଫ୍ ଜଷ୍ଟିସ । ସେଲକମିଶନର ଚେୟାରମ୍ୟାନ ହୋଇ ଦିଲ୍ଲୀ ଯିବା ପରେ ସତୀଶଚନ୍ଦ୍ର ମିଶ୍ର ଚିଫ୍ ଜଷ୍ଟିସ ହେଲେ । ଦୁଇବର୍ଷ ପରେ ପୁଣି ଆଉ ବର୍ଷେ ରହିବା ପାଇଁ ତାଙ୍କର ପ୍ରସ୍ତାବରେ ରାଜି ହେବାପାଇଁ ମନ ବଳିଲା ନାହିଁ । ରାଷ୍ଟ୍ରପତିଙ୍କ ଯାଏ କଥାଟା ଚାଲିଯାଇଥିଲେ, ମୁଁ ନାହିଁ କରିପାରି ନଥାନ୍ତି ।

ଏଥର ପାଟନା ଯାଇ ପୂର୍ବପରି କାର୍ଯ୍ୟ ଭଉଁରୀରେ ପଡିଲି । ତଫାତ୍ କେବଳ ରହିବା ବେଲି ରୋଡରେ ନ ହୋଇ ସର୍ପେଣ୍ଟାଇନ ରୋଡ ବଙ୍ଗଳାରେ । ଯିବାର ଅଳ୍ପଦିନ ପରେ ଗୋଟିଏ କମିଶନ୍‌ର ଦାୟିତ୍ୱ ନେବାକୁ ପଡିଲା । ପାଟନା ଇମ୍‌ପ୍ରୁଭମେଣ୍ଟ ଟ୍ରଷ୍ଟ ପାଟନା ମ୍ୟୁନିସିପାଲିଟି ଅଞ୍ଚଳର ବହୁ ବାସପଯୋଗୀ ପ୍ଲଟ ଲୋକମାନଙ୍କୁ ଦେବାରେ ଆପତ୍ତି, ଅଭିଯୋଗ, ଅସନ୍ତୋଷ ପ୍ରକାଶ ପାଇବାରୁ ସେ ବିଷୟରେ ତଦନ୍ତ କରିବା ନିମନ୍ତେ ରାଜ୍ୟ ସରକାର ମୋର ଏକକ ଦାୟିତ୍ୱରେ କମିଶନ ବସାଇଲେ । ସେ କାର୍ଯ୍ୟ ମୁଁ ନିର୍ବାହ କରୁଥାଏ । ପ୍ରତିଦିନ ଓପରଓଳା

Digitized by srujanika@gmail.com

କୋର୍ଟ ଗୃହରେ । ସକାଳବେଳା କରେ କୋର୍ଟ କାର୍ଯ୍ୟ । କମିଶନ୍ ରିପୋର୍ଟ ଦେଲାବେଳକୁ ନିତ୍ୟାନନ୍ଦ କାନୁନ୍‌ଗୋ ରାଜ୍ୟପାଳ ହୋଇ ଆସିଥାନ୍ତି । ମୋ ଜାଣିବାରେ କମିଶନ ରିପୋର୍ଟ ସଙ୍ଗେ ସଙ୍ଗେ ସରକାରଙ୍କ ଦ୍ୱାରା ଗୃହୀତ ଓ କାର୍ଯ୍ୟକାରୀ ହେବା କ୍ୱଚିତ ଘଟନା ମଧ୍ୟରୁ ଏହା ଅନ୍ୟତମ ଥିଲା । ରିପୋର୍ଟରେ କେତେକ ମନ୍ତ୍ରୀ, ଉଚ୍ଚ କର୍ମଚାରୀ, ପ୍ରଭାବଶାଳୀ ବ୍ୟକ୍ତିଙ୍କର ଅସଙ୍ଗତ ଜମି ପ୍ରାପ୍ତି କଟି ଯାଇଥିଲା । ରିପୋର୍ଟର ସୁପାରିଶକ୍ରମେ ନୂଆ କଲୋନିରେ ଜମି ବଣ୍ଟନ କରାଗଲା । ସାଧାରଣରେ କମିଶନର କାର୍ଯ୍ୟ ସମର୍ଥିତ ହେବାରେ ସନ୍ତୋଷ ମତେ ମିଳିବା ସ୍ୱାଭାବିକ ।

ଶେଷ ବିଦାୟ ନେଇ କଟକ ଫେରିଲି ୧୯୬୯ ମଧ୍ୟ ଭାଗରେ ।



Digitized by srujanika@gmail.com

# କମନୱେଲଥର ଆତିଥ୍ୟ

ଭାରତୀୟ ବ୍ରିଟିଶ କାଉନସିଲ ଆନୁକୂଲ୍ୟରେ କମନୱେଲଥର ଆତିଥ୍ୟ ମତେ ମିଳିଥିଲା ନଅଦିନ ପାଇଁ ୧୯୬୭ ମେ ୧୧ରୁ ୧୯ ତାରିଖ ପର୍ଯ୍ୟନ୍ତ । ରହଣି ଥିଲା ପ୍ରଖ୍ୟାତ Waldrof ହୋଟେଲରେ । ଭାରତବର୍ଷ ହାଇକମିଶନ୍ ଅଫିସର ଅତି ନିକଟ । ଶୁଣିଲି, ଜବାହରଲାଲ ନେହେରୁ ଲଣ୍ଡନ ଗସ୍ତବେଳେ ସେଠାରେ ରହନ୍ତି । ୧୧ ତାରିଖ ଦିପହରେ ହିଦ୍‌ରୋ ବିମାନ ବନ୍ଦରରେ ପହଞ୍ଚି କମନୱେଲଥ ଅଫିସର ଦୁଇଜଣଙ୍କୁ ଏ.ଲଭଲକ, ସି.ଜେ. ଡେଭିସଙ୍କୁ ଭେଟିଲି । ଅନ୍ୟଜଣେ ଥିଲେ ମିସ୍ ଏବ୍. ଆଇ.କାପ୍‌ଲାନ୍, ଜଣେ ବରିଷ୍ଠ ବାରିଷ୍ଟରଙ୍କ କନ୍ୟା, କମନୱେଲଥ ଅଫିସରେ କାମ କରନ୍ତି । ସେ ହେଲେ ମୋର ୯ ଦିନ ପାଇଁ ଫ୍ରେଣ୍ଡ, ଫିଲୋସଫର, ଗାଇଡ । ଅଫିସ ଗାଡି ବା ଟାକ୍‌ସି ଧରି ସକାଳ ୯ଟା ପୂର୍ବରୁ ହୋଟେଲରେ ହାଜିର, ଘଣ୍ଟାକଣ୍ଟା ଅନୁସାରେ ପ୍ରୋଗାମ ମାଫିକ ଠାଆକୁଠାଆ ଚାଲ । ଆତିଥ୍ୟରେ ଏତେ କଟକଣା ପୁଣି । ସନ୍ଧ୍ୟାବେଳକୁ ହୋଟେଲରେ ପହଞ୍ଚାଇ, (ଦିନକର ରିପୋର୍ଟ ଲେଖିବାକୁ ବୋଧହୁଏ) ତରତରରେ ଯାଆନ୍ତି ଘରକୁ ବା ଅଫିସକୁ ।

ପ୍ରଥମ ଦିନ ଅପରାହ୍ଣରେ ଅନ୍ୟ ଜଣେ ଉଚ୍ଚ ଅଫିସର ଏସ୍.ଏସ୍. ହର୍ଡନଙ୍କ ନିମନ୍ତ୍ରଣ ଥିଲା କେନ୍ଦ୍ରୀୟ ଅଫିସରେ ଚା' ପାନ ପାଇଁ । ସେଠାରେ ଅନେକ କ୍ଷଣ ଆଳାପ ହେଲା ଆମ ପାଞ୍ଚଜଣଙ୍କ ମଧ୍ୟରେ । କେହି କାହାକୁ ଜଣା ନୁହଁନ୍ତି । ସ୍ୱାଧୀନତା ପୂର୍ବ ଓ ପରର ଭାରତବର୍ଷର ଖବର ତାଙ୍କ ପାଖରେ ଥାଏ । ମତେ ପ୍ରୋଗ୍ରାମ ବୋଲି ଲେଖାଏ କାଗଜ ଦେଲେ । କ୍ଲାନ୍ତି ଯୋଗୁ, ମୁଁ ନ ପଢ଼ି 'ବ୍ୟାଗରେ ରଖିଦେଲି ।

ପରଦିନ ସକାଳେ ବାହାରିଲାବେଳକୁ କାପ୍‌ଲାନ'କହିଲେ ଲ କୋର୍ଟସକୁ ଯିବା । ଅତି ପାଖରେ, ଚାଲିକରି ଯାଇହେବ । ଭାବିଲି, କଚେରୀ ଘର, ହତା ଦେଖାଇବେ । ସେଠାରେ ପହଞ୍ଚି ଜୀବନର ଏକ ଅତି ଅପ୍ରତ୍ୟାଶିତ ଘଟଣାର ସମ୍ମୁଖୀନ ହେଲି । ପୋର୍ଟିକୋରେ ସର୍ବ ଉଚ୍ଚ ନ୍ୟାୟାଳୟର ଜଣେ ବିଚାରପତି ଉପସ୍ଥିତ ମତେ

Digitized by srujanika@gmail.com

ପାଛୋଟି ନେବାପାଇଁ । ତା ପରେ ଅନ୍ୟାନ୍ୟମାନଙ୍କ ସହିତ ପରିଚୟ, ସଂଯତ ଅଭ୍ୟର୍ଥନା । କୋର୍ଟରେ ବିଚାରପତିଙ୍କ ସହ ବସିବା ପ୍ରସ୍ତାବରେ ମୁଁ ଆନନ୍ଦରେ ପ୍ରାୟ ସ୍ତମ୍ଭୀଭୂତ ହୋଇଗଲି । ଇଂଲଣ୍ଡର କୁଇନ୍‌ସ ବେଞ୍ଚରେ ବସିବି, ଏ କଳ୍ପନା ବା ଦୂରାଶା କାହିଁକି କରିବି ? କୋର୍ଟରେ ବସିବାବେଳେ, ବିଚାରପତି ଓ ଉପସ୍ଥିତ ବାରିଷ୍ଟରମାନଙ୍କର ସୌଜନ୍ୟ ଅଭିଭୂତ କଲା ମତେ । ଯେଉଁ କୋର୍ଟର ଢାଞ୍ଚାରେ ଆମ ଦେଶର ସବୁ ହାଇକୋର୍ଟ ଗଢ଼ା, ଯେଉଁ କୋର୍ଟର ନଜିରକୁ ବେଦବାକ୍ୟ ବୋଲି ଆମେ ମାନିଆସିଛୁ, ସେ କୋର୍ଟରେ ମୋ ପରି ଜଣେ ଅକିଞ୍ଚନ ବସିଲାବେଳେ ମନରେ କୃତାର୍ଥ ବୋଧ କରୁଥିଲି । ତା ପରକୁ ଆସିଲା ଆଟର୍ଣ୍ଣି ଜେନେରାଲ ସାର୍ ଏଲଉଇନ ଜୋନସଙ୍କର ଗ୍ରେଜ ଇନ୍‌ରେ ମଧ୍ୟାହ୍ନ ଭୋଜନରେ ମୋର ସମ୍ବର୍ଦ୍ଧନା । ସେଠାରେ ସବୁ ଜଜ୍, କୁଇନ୍‌ସ କାଉନସିଲମାନେ ଯୋଗ ଦେଇଥିଲେ । ନମ୍ରତାରେ ମୁଁ ଅଧୀର । ବିରାଡି କପାଳକୁ ଶିକା ଛିଣ୍ଡିଲା ପରି ଲାଗୁଥାଏ । ସୌଜନ୍ୟରେ ଇଂରେଜଙ୍କୁ କେହି ବଳିବ ନାହିଁ । ତା ପରଦିନ ଖବର କାଗଜରେ ବାହାରିଲା, କ୍ୱିନସ୍ ବେଞ୍ଚରେ ବିହାର ହାଇକୋର୍ଟ ଜଜ୍ । ଜଜ୍ ହେବାରେ ଯେଉଁ ସାର୍ଥକତା ଅନୁଭବ କରିଥିଲି, ତାଠାରୁ ଅଧିକ ମନେହେଲା ଏହି ସୁଯୋଗ ପାଇବାରେ ।

ରୟାଲ କୋର୍ଟସ ଅଫ୍ ଜଷ୍ଟିସର (Royal Courts of Justice) ପ୍ରଧାନ ଗୃହ ୧୮୮୨ ମସିହାରେ ତିଆରି । ନୂଆ କୋର୍ଟ ଘର ଆଉ କେତେ ବଢ଼ିଛି ତାପରେ । ଏବେ ୪୪ଟି କୋର୍ଟ ବସୁଛି ସେଠାରେ । ପ୍ରକାଣ୍ଡ କୋଠାରେ ରୁମ୍ ସଂଖ୍ୟା ଏଗାର ଶହ । ହାଇକୋର୍ଟର ତିନି ଡିଭିଜନ କାମ କରେ । ଗୋଟିଏ ହେଲା, କୁଇନସ ବେଞ୍ଚ, ରଜା ରାଜତ୍ୱ କରୁଥିଲାବେଳେ ତାକୁ କୁହାଯାଏ କିଙ୍ଗସ ବେଞ୍ଚ । ଦ୍ୱିତୀୟଟି ଚାନସରି ଡିଭିଜନ । ଅନ୍ୟଟି ପ୍ରୋବେଟ, ଡାଇଭୋର୍ସ ଓ ଆଡମିରାଲଟି । ଦେଓ୍ୱାନି ମକଦ୍ଦମାର ଏହା ପ୍ରଧାନ ଉଚ୍ଚ ନ୍ୟାୟାଳୟ । ଏହା ପରେ ଅଛି ପ୍ରିଭିକାଉନସିଲ ଓ ହାଉସ ଅଫ୍ ଲର୍ଡସ । ତାହା ଭିନ୍ନ ସ୍ତରର । ଫୌଜଦାରୀ ମାମଲାର ଅପିଲ ବିଚାର ହୁଏ ଓଲଡ ବେଲିଠାରେ କେନ୍ଦ୍ରୀୟ ଫୌଜଦାରୀ କୋର୍ଟରେ ।

ମଧ୍ୟାହ୍ନ ଭୋଜନବେଳେ ଜଣେ ବିଚାରପତି ପଚାରିଲେ ପାଟନା ହାଇକୋର୍ଟର ପୂର୍ବତନ ମୁଖ୍ୟ ବିଚାରପତି ସାର ଏ.ଟି.ହାରିସଙ୍କ କଥା । ସେ ତାଙ୍କ ପାଖରେ ଜୁନିଅର ବାରିଷ୍ଟର ହୋଇ କାମ କରୁଥିଲେ, ହାରିସ ପ୍ରାକ୍ଟିସ କଲାବେଳେ । ହାରିସ୍ ଅବିବାହିତ ଥିଲେ । ଉଚ୍ଚକୋଟୀର ଲୋକ । ଯେପରି ବିଚକ୍ଷଣ ସେହିପରି

Digitized by srujanika@gmail.com

ବାସ୍ତବବାଦୀ । ଶେଷବେଳକୁ କଲିକତା ହାଇକୋର୍ଟର ପ୍ରଧାନ ବିଚାରପତି ହେଲେ ଏବଂ ଅବସର ନେବା ପରେ ମୁଖ୍ୟମନ୍ତ୍ରୀ ଡାକ୍ତର ବିଧାନଚନ୍ଦ୍ର ରାୟଙ୍କ ଅନୁରୋଧରେ ପଶ୍ଚିମ ବଙ୍ଗର ସମ୍ବିଧାନ ଉପଦେଶକ ଭାବରେ ଦାୟିତ୍ୱ ଗ୍ରହଣ କରିଥିଲେ । ସେଠାରେ ତାଙ୍କର ପରଲୋକପ୍ରାପ୍ତି ହେଲା । ତାଙ୍କ ବିଷୟରେ ଗୋଟିଏ କୌତୁକ କଥା ମୁଁ ସେ ମଧ୍ୟାହ୍ନ ଭୋଜିବେଳେ ପ୍ରକାଶ କରିବାରେ ସମସ୍ତେ ଆମୋଦ ଅନୁଭବ କରିଥିଲେ । ଥରେ ହାରିସ କଟକକୁ ସର୍କିଟ କୋର୍ଟରେ ଆସିଥାଆନ୍ତି । ତାଙ୍କ ବେଞ୍ଚରେ ମୋର ଗୋଟିଏ କେସ୍ ଉଠିଲା । ଜଣେ ସ୍ୱାମୀ ତା ସ୍ତ୍ରୀକୁ ମାଡ ମାରିଥିବାରୁ, ସ୍ୱାମୀର ବିପକ୍ଷ ଲୋକ ସ୍ତ୍ରୀକୁ ଭୁଲାଇ ଗୋଟିଏ କେସ୍ କରି ସ୍ୱାମୀକୁ ଜୋରିମାନା ଦଣ୍ଡ ଦିଆଇ ଥାଆନ୍ତି । ସେହି ଦଣ୍ଡ ବିରୁଦ୍ଧରେ ହାଇକୋର୍ଟରେ ରିଭିଜନ ଦରଖାସ୍ତ ମୁଁ ପେଶ କରି ସୁଆଲ କରୁଥାଏ ଯେ ସ୍ୱାମୀ ସ୍ତ୍ରୀକୁ ମାରିବା ପୃଥିବୀର ସର୍ବତ୍ର ସମାଜସ୍ୱୀକୃତ ଓ ପାରିବାରିକ ଚଳନି ଅନ୍ତର୍ଭୁକ୍ତ, ବିଶେଷ କରି ସମାଜର ଅନୁନ୍ନତ ଶ୍ରେଣୀ ମଧ୍ୟରେ । ଉଚ୍ଚ କୁଳରେ ମଧ୍ୟ ତାହା ବିରଳ ନୁହେଁ । ତିନୋଟି ଇଂରେଜୀ ନାଟକରେ ସ୍ୱାମୀ ସ୍ତ୍ରୀ କଳି ଓ ମାଡ ଉଲ୍ଲେଖ ଥିବାର ମୁଁ ଦେଖାଇଲାବେଳେ କୋର୍ଟରେ ସମସ୍ତେ ହସି ଉଠିଲେ । ହାରିସ୍ (ଅବିବାହିତ) କହିଲେ, I have no experience of that either in my country on in this country. କୋର୍ଟରେ ଆହୁରି ହସ ହେଲା । କିନ୍ତୁ ଶେଷରେ ମୋ ମହକିଲ ଦୋଷରୁ ଛାଡ ପାଇଲା ।

ଅପରାହ୍ନରେ ଗ୍ରେଜ ଇନର ଲାଇବ୍ରେରିଆନ ବି.କକ୍ସଙ୍କ ସଙ୍ଗେ ବୁଲି ଦେଖିବା ପରେ ଗଲୁ ଚାନସରି ଲେନରେ ଲ ସୋସାଇଟିକୁ । ଏକ ବୃହତ ସଂସ୍ଥା । ଏକୋଇଶ ହଜାର ସଲିସିଟର ତାର ମେମ୍ବର ହୋଇ ପ୍ରାକ୍‌ଟିସ କରୁଛନ୍ତି । ସେମାନଙ୍କର ଶିକ୍ଷା, ଟ୍ରେନିଙ୍ଗର ବନ୍ଦୋବସ୍ତ ଲ ସୋସାଇଟିର ଦାୟିତ୍ୱ । ଏହାର ସ୍ୱୀକୃତି ନ ପାଇଲେ କେହି ସଲିସିଟର ହୋଇ ପାରିବେ ନାହିଁ । ସଲିସିଟର କୋର୍ଟ ବାହାରର ଯାବତୀୟ ଆଇନ ସଂକ୍ରାନ୍ତ କାର୍ଯ୍ୟ କରନ୍ତି, ଦଲିଲ ଦସ୍ତାବିଜ ଲେଖିବା ତାଙ୍କର ଏକଚାଟିଆ କାର୍ଯ୍ୟ, ଶୁଣାଣି କେସରେ ବାରିଷ୍ଟରଙ୍କୁ ତଥ୍ୟ ଯୋଗାଇବା ଅନ୍ୟଏକ ଦାୟିତ୍ୱ । ଲ ସୋସାଇଟିର ସହକାରୀ ସେକ୍ରେଟରୀ ଜେ.ଏମ୍.ଡି ହଏଲ ସବୁ ବୁଝାଇଲେ ।

ପାର୍ଲିଆମେଣ୍ଟକୁ ଗଲା ଦିନ ସ୍ୱତନ୍ତ୍ର ଗାଇଡ ଜଣେ ମିଶିଲେ ସାଙ୍ଗରେ । Palace of Westminister କହନ୍ତି ତାକୁ । ଦ୍ୱିତୀୟ ଉଇଲିଅମ ଇଂଲଣ୍ଡର ରାଜା ଥିଲାବେଳେ ୧୦୯୭ ଖ୍ରୀଷ୍ଟାବ୍ଦରେ Westminister Hall (ଓ୍ୱେଷ୍ଟମିନିଷ୍ଟର ହଲ)

Digitized by srujanika@gmail.com

ତିଆରି କରାଇଥିଲେ । ଚତୁର୍ଦ୍ଦଶ ଶତାବ୍ଦୀ ଶେଷ ଭାଗରେ ତାହା ବର୍ଦ୍ଧିତ ହୋଇଥିଲା । ଅଦ୍ୟାପି ରହିଛି ତାହା । ୧୮୩୪ ଖ୍ରୀଷ୍ଟାବ୍ଦରେ ପୁରାତନ ଗୃହର ଅଧିକାଂଶ ଅଗ୍ନି ସଂଯୋଗରେ ଧ୍ୱଂସ ହେବାରେ ସାର ଚାର୍ଲସ ବେରୀ ପୁନଃ ନିର୍ମାଣ କରିଥିଲେ । ଦ୍ୱିତୀୟ ମହାସମରବେଳେ ୧୯୪୧ ମେ ମାସରେ ଶତ୍ରୁର ବିମାନ ଆକ୍ରମଣରେ House of Commons (ହାଉସ ଅଫ୍ କମନ୍ସ) ଚେମ୍ବରଟି ନଷ୍ଟ ହୋଇ ଯାଇଥିଲା । ୧୯୫୦ ବେଳକୁ ତାହା ପୂର୍ବପରି ଠିକ୍ ରଖି ଆଉଥରେ ନିର୍ମିତ ହୋଇଅଛି । ପାର୍ଲିଆମେଣ୍ଟ ବୋଇଲେ ହାଉସ ଅଫ୍ କମନସ ଓ ହାଉସ ଅଫ୍ ଲର୍ଡସକୁ ବୁଝାଏ । ଶହ ଶହ ବର୍ଷ ତଳର ପୁରାତନ ବିଧି ଏବେ ବି ଅକ୍ଷତ ରହିଛି । ସେହି ଢ଼ାଞ୍ଚାରେ ଆମର ଲୋକସଭା ଆଉ ରାଜ୍ୟସଭା ଗଢ଼ିବାର ପ୍ରୟାସ ହୋଇଛି । ମୁଁ ଗଲାବେଳେ European Common Market ନେଇ ତର୍କ ବିତର୍କ ଚାଲିଥାଏ । ପାର୍ଲିଆମେଣ୍ଟ ସେକ୍ରେଟାରୀ କେତେଜଣ ବିରୁଦ୍ଧ ଭୋଟ ଦେବାରେ ପଦଚ୍ୟୁତ ହେଲେ । Labour party (ଶ୍ରମିକ ଦଳ) ୩୬ ଜଣ କମନ ମାର୍କେଟ ବିପକ୍ଷରେ ଭୋଟଦେଲେ । କମନ୍ସ ସଭା ଗୃହରେ ହଟଗୋଳ; ହଲ୍ଲାପଟା ମଧ୍ୟରେ ସଂଯମ, ଶୃଙ୍ଖଳା, ସୌଜନ୍ୟ ଆଖିରେ ପଡୁଥିଲା ।

ପ୍ରିଭି କାଉନସିଲ ଦେଖାଇଲେ ସେଠାର ରେଜିଷ୍ଟ୍ରାର ୧୬ ତାରିଖ ଓପରବେଳା । କୋର୍ଟର କାର୍ଯ୍ୟ ହେଉ ନଥାଏ । ଭାବିଥିଲି ଯାହା, ଦେଖିଲାବେଳକୁ ବିପରୀତ । କୋର୍ଟରୁମ ଭଳିଆ ନୁହେଁ । ଛୋଟ ହଲଟିରେ ଟେବୁଲ ଦୁଇପଟରେ ସାମନା ସାମନି ବସନ୍ତି ମେୟର (ଜଜ୍) ଓ ବାରିଷ୍ଟରମାନେ । ପ୍ରିଭି କାଉନସିଲ ରାଜାଙ୍କୁ ପରାମର୍ଶ ଦେବାକୁ ଗଠିତ ହୋଇଥିଲା । ଭାରତବର୍ଷରେ ଫେଡରାଲ କୋର୍ଟ ହେବା ପୂର୍ବରୁ ହାଇକୋର୍ଟ ବିଚାର ପରେ ଅପିଲ ପ୍ରିଭି କାଉନସିଲକୁ ଯାଉଥିଲା । ତର୍ଜମା ଓ ବିଚାରରେ ବିଚକ୍ଷଣତା ପାଇଁ ତାଙ୍କର ସିଦ୍ଧାନ୍ତ ସର୍ବତ୍ର ଆଦୃତ ହେଉଥିଲା । ବ୍ରିଟିଶ ସାମ୍ରାଜ୍ୟର ସବୁ ଅଂଶରେ ସେହି ପ୍ରଥା ଚାଲୁଥାଏ । ଓକାଲତିବେଳେ ମୁଁ ଗୋଟିଏ ଫୌଜଦାରୀ କେସ ପ୍ରିଭି କାଉନସିଲକୁ ପଠାଇଥିବା ମନେ ପଡିଲା । ଲାଇବ୍ରେରୀ ବୃହତ୍, ସୁସଜ୍ଜିତ । ସଦସ୍ୟ ସମସ୍ତେ ଦକ୍ଷ, ଅଭିଜ୍ଞ, ବୟସ୍କ ।

ଆର୍ଟ ଗ୍ୟାଲେରୀ, ଅକ୍ସଫୋର୍ଡ, କେମ୍ବ୍ରିଜ ବିଶ୍ୱବିଦ୍ୟାଳୟ, ଥିଏଟର ପ୍ରଭୃତି ଆଗରୁ ଦେଖିଥିଲି । ଏବେ ଦେଖିଲି ଆତିଥ୍ୟ ସୂତ୍ରରେ ଭିନ୍ନ ପ୍ରକାରରେ ଅଧିକାରୀମାନଙ୍କ ସହାୟତାରେ, ସୌଜନ୍ୟ ସହକାରେ । କାର୍ଯ୍ୟ ପ୍ରଣାଳୀ ବିଷୟରେ ଅଧିକ ଖବର ଜଣାପଡିଲା ସେଥିପାଇଁ ।

Digitized by srujanika@gmail.com

ଇଙ୍ଗଲିଶ୍ ସ୍ପିକିଙ୍ଗ୍ ୟୁନିଅନର ହେଡକ୍ୱାର୍ଟରସ ଲଣ୍ଡନ ଡାର୍ଟମୁଥ ହାଉସରେ । ୟୁନିଅନର ଗଭର୍ଣ୍ଣର କର୍ଣ୍ଣେଲ ସାର ଷ୍ଟୁଆର୍ଟ ମାଲିନସନ୍ ମୋ ଉଦ୍ଦେଶ୍ୟରେ ଏକ ମଧ୍ୟାହ୍ନ ଭୋଜନର ବ୍ୟବସ୍ଥା କରିଥାଆନ୍ତି । ଅନେକ ପୁରୁଖା ଓ ତରୁଣ, ପୁରୁଷ, ସ୍ତ୍ରୀ, ଆସିଥିଲେ । ଭୋଜନ ଅପେକ୍ଷା ପାନୀୟ ସେ ସ୍ଥଳରେ ବେଶି ଚାଲେ । ମୋର ସେଥିରେ ଦକ୍ଷତା ନ ଥିବାରୁ ଅସାମାଜିକ ଦୋଷରୁ ମୁକ୍ତି ପାଇଁ ଲେମୋନେଡ ବା ସିଡାର ଗ୍ଲାସଧରି ମୁଁ ଆଳାପରେ ଯୋଗଦିଏ । ଅନ୍ୟ ପାନୀୟ ଯାଚିଲେ, ଅଳ୍ପ କଥାରେ ଏଡାଇ ଦିଏ । ଅପିଆ ବଡାଇ ପାଇଁ କାହାରି କାନ ବା ଖେଆଲ ନଥାଏ । ସେଦିନ ଗୋଟିଏ ଘଟନା ଘଟିଲା ଯେଉଁଥିରେ କିଛି ଆଲୋଡନ ପ୍ରକାଶ ପାଇଲା ଖାଇବା ଟେବୁଲ ଉପରେ । ଆନୁଷ୍ଠାନିକ ଭୋଜିରେ ଟୋଷ୍ଟ ଏକ ଅଂଶ । ସେଥିରେ ଅନୁଷ୍ଠାନର ସଫଳତା କାମନା କରି ମୃଦୁପାନୀୟ ହସ୍ତରେ ସମସ୍ତେ ଅନୁଷ୍ଠାନର ନାମ ଗ୍ରହଣ କରନ୍ତି, ଜଣେ ମୁଖ୍ୟ ତାହା ପ୍ରଥମେ ଉଚ୍ଚାରଣ କଲା ପରେ ଗ୍ଲାସ ଉତ୍ତୋଳନ କରି । କିନ୍ତୁ ତାହା ପୂର୍ବରୁ ରାଣୀଙ୍କ (ରାଜ ସିଂହାସନରେ ନ ଥିବାରୁ) ସମ୍ମାନାର୍ଥେ ତାଙ୍କ ଉଦ୍ଦେଶ୍ୟରେ ଟୋଷ୍ଟ ସେହିପରି ପ୍ରକାଶିତ ହେବା ବିଧେୟ । ମୁଁ ମୁଖ୍ୟ ଅତିଥି ଥିବାରୁ ମୋର ତାହା କରଣୀୟ । ମୁଁ କହିଲି, ଦି କୁଇନ, ଅନ୍ୟ ସମସ୍ତେ କହିଲେ ଆଓ୍ୱାର (Our)(queen)କୁଇନ୍ । ତା ପରେ ହେଲା English speaking union ର ଟୋଷ୍ଟ ମୋ ଦ୍ୱାରା । ତା ପରେ ହେଲା ପାଟନା ଶାଖାର ସମ୍ମାନରେ ଟୋଷ୍ଟ ଗଭର୍ଣ୍ଣରଙ୍କ ଦ୍ୱାରା । ସେ ମଧ ମୋ ଉଦ୍ଦେଶ୍ୟରେ ଟୋଷ୍ଟ ଦେଲେ । ରାଣୀଙ୍କ ପାଇଁ ଟୋଷ୍ଟବେଳେ ମୁଁ Our queen ନ କହିବାରେ ଅନେକଙ୍କ ଚାହାଣୀରେ ଟିକିଏ ବିସ୍ମୟ ଲକ୍ଷ୍ୟ କରିଥିଲି, ସାର ଷ୍ଟୁଆର୍ଟ ମତେ ଏପରି ବ୍ୟତିକ୍ରମ କାହିଁକି ହେଲା ବୋଲି ପଚାରିବାରେ ମୁଁ ବୁଝାଇବାକୁ ଚେଷ୍ଟା କଲି; ବ୍ରିଟେନର ରାଣୀ ସ୍ୱାଧୀନ ଭାରତର ଆଉ ରାଣୀ ନୁହନ୍ତି । ଭାରତବାସୀ ପକ୍ଷରେ ତେଣୁ ଆମ ରାଣୀ କହିବା ଅସଙ୍ଗତି । ବୋଧହୁଏ ଅନେକ କଥାଟା ବୁଝିଲେ, ତାଙ୍କ ସ୍ମିତହାସରୁ ମନେହେଲା । କମନୱେଲଥ ଅଫିସକୁ ସେ ଘଟନା ରିପୋର୍ଟ ହୋଇଥିବା ମୁଁ ଜାଣିପାରିଲି, ସେଠା ସିନିଅର ଇନଫରମେସନ୍ ଅଫିସର ଏସ୍.ଏସ୍. ହର୍ଡନଙ୍କ ସଙ୍ଗେ ରହଣି ଶେଷଦିନ ମଧ୍ୟାହ୍ନ ଭୋଜନ ସମୟରେ ।

ଗାଇଡ ଦିନେ ନେଇଗଲେ ସିଟିଜନ ଆଡଭାଇସ ବ୍ୟୁରୋ (Citizen Advice Bureau) ଅଫିସକୁ । ୧୯୩୯ ରେ ଆରମ୍ଭ ହୋଇଥିଲା ନାଗରିକମାନଙ୍କୁ

Digitized by srujanika@gmail.com

ସାହାଯ୍ୟ (ଆର୍ଥିକ ନୁହେଁ) କରିବାକୁ । ସେତେବେଳକୁ ଇଂଲଣ୍ଡ, ସ୍କଟଲାଣ୍ଡ, ଓ୍ୱେଲସରେ ୪୬୦ଟି ସେପରି କେନ୍ଦ୍ର ହୋଇସାରିଥିଲା । ବର୍ଷକୁ ପ୍ରାୟ ଦଶଲକ୍ଷ ଲୋକ ବ୍ୟକ୍ତିଗତ ଓ ପାରିବାରିକ ସମସ୍ୟାର ସମାଧାନ ଦିଗରେ ସହାୟତା ପାଆନ୍ତି ବିନା ବ୍ୟୟରେ । ଅଫିସ ଖର୍ଚ୍ଚ ବହନ କରନ୍ତି ମ୍ୟୁନିସପାଲିଟି । ବ୍ୟୁରୋର କାର୍ଯ୍ୟ ଅହରହ ଚାଲେ ପୁରୁଷ, ମହିଳା ସ୍ୱେଚ୍ଛାସେବୀଙ୍କ ଦ୍ୱାରା । ଅବସରପ୍ରାପ୍ତ ଲୋକ ବେଶି । କେତେକ ତରୁଣ, ତରୁଣୀଙ୍କୁ ଦେଖିଲି ଉତ୍ସାହର ସହିତ ଲୋକଙ୍କ ସମସ୍ୟା ଅନୁଧାନ କରୁଛନ୍ତି । ପଚାରିବାରେ କହିଲେ, ତାଙ୍କ ଜୀବିକା ଅର୍ଜନ ପାଇଁ ଧନ୍ଦା ଜୁଟିନାହିଁ । ସେମାନେ ବେକାରୀ ଭତ୍ତା ପାଉଛନ୍ତି, ସମୟ ଏହି ସ୍ୱେଚ୍ଛା ସେବାରେ କଟାଇଲେ ଅନ୍ୟ ଦଶଜଣଙ୍କର କିଛି ଉପକାର ହୋଇପାରୁଛି । ପରିବାରର ମନୋମାଳିନ୍ୟଠାରୁ ଆରମ୍ଭ କରି ଇନକମଟିକସ ରିଟର୍ଣ୍ଣ ପୂରଣ ପର୍ଯ୍ୟନ୍ତ ନାନା ବିଷୟରେ ଲୋକେ ଆସନ୍ତି ବ୍ୟୁରୋକୁ ପରାମର୍ଶ, ସାହାଯ୍ୟ ପାଇଁ । ଅଶକ୍ତ ଲୋକଙ୍କ ଘରେ ଯାଇ ବ୍ୟୁରୋ ଲୋକେ ପହଞ୍ଚନ୍ତି ଆବଶ୍ୟକବେଳେ । ରୋଷ୍ଟରରେ ଯେଉଁ ଦିନ ଯେଉଁ ସମୟରେ ଯାହାର ପାଳି, ସେ ଆସି ଉପସ୍ଥିତ ରହନ୍ତି ବ୍ୟୁରୋରେ ସାହାଯ୍ୟ ପ୍ରାର୍ଥୀଙ୍କ ଅପେକ୍ଷାରେ । ନିରଭିମାନ, ନିରଳସ କାର୍ଯ୍ୟ ଅବିଚ୍ଛନ୍ନ ଚାଲିଛି । କେନ୍ଦ୍ର ବ୍ୟୁରୋର ଅଧକ୍ଷା ମିସେସ୍ ଏ. ହକିନସ ବହୁ ସମୟ ଧରି କାଗଜପତ୍ର ଦେଖାଇ ବୁଝାଇଲେ କିପରି ଲୋକେ ବିନା ବ୍ୟୟ, ଅଳ୍ପ ସମୟ ମଧ୍ୟରେ ଅତି ସହଜରେ ଉପକୃତ ହୋଇପାରୁଛନ୍ତି । ଜନସେବା ଏକୁଇ କହିବା ।

ମ୍ୟୁନିସିପାଲିଟି ଶାସନର ନମୁନା ଦେଖିଲି ଗ୍ରେଟର ଲଣ୍ଡନ କାଉନସିଲରେ (Greater London Council) । ୬୨୦ ବର୍ଗମାଇଲ ତାଙ୍କ କାର୍ଯ୍ୟ ପରିସର । ଲୋକସଂଖ୍ୟା ୮୦ ଲକ୍ଷ । ୧୯୬୫ ପୂର୍ବରୁ ଛୋଟ ଛୋଟ କାଉଣ୍ଟି ମ୍ୟୁନିସିପାଲଟି ଯେତେ ସବୁ ଥିଲା, ତାକୁ ଭାଙ୍ଗି ଦେଇ ସେହିବର୍ଷ ଏପ୍ରିଲ ପହିଲା ଠାରୁ G.L.C.କଲେ । କେବଳ ରଖିଛନ୍ତି ବ୍ୟତିକ୍ରମ ଭାବେ ଐତିହାସିକ ସିଟି ଅଫ୍ ଲଣ୍ଡନର ଛୋଟ କାଉଣ୍ଟିକୁ । ଜି.ଏଲ. ସିର କ୍ଲାର୍କ ସାର ଇଉଲିୟମ ହାର୍ଟ, ଅନ୍ୟ ଦୁଇଜଣ କର୍ମଚାରୀ ଆର.ଆନ୍‌ଷ୍ଟିସ, ଡି.ଓ. ରବିନସନଙ୍କୁ ସଙ୍ଗରେ ରଖି ମତେ ବୁଝାଉଥାଆନ୍ତି ଦୈନନ୍ଦିନ କାର୍ଯ୍ୟ ପ୍ରଣାଳୀ । ରାସ୍ତାରୁ ବରଫ, ଘରୁ ଅଳିଆବୋଝ, ବଜାରର ଆବର୍ଜନା, ପରିତ୍ୟକ୍ତ ଆସବାସ, କିପରି ଲୋକଲୋଚନ ଅଗୋଚରରେ ଯଥା ସ୍ଥାନକୁ ସ୍ଥାନାନ୍ତରିତ ହୋଇ ପୁଣି ଅନ୍ୟ କାର୍ଯ୍ୟ ଉପଯୋଗୀ ହେବାର ବ୍ୟବସ୍ଥା ଚାଲିଛି, ଦେଖି ଆଶ୍ଚର୍ଯ୍ୟ

Digitized by srujanika@gmail.com

ଲାଗିଲା । ମନେପଡିଲା କଟକ ରାସ୍ତାରେ ମେହେନ୍ତର ମହିଳାଙ୍କ ମୁଣ୍ଡରେ ମଳବୋଝ ଦିନ ଦିପହରେ ।

ବେଲିନଘାମ୍‌ରେ ସେଇ୍ ହିଲ ସ୍କୁଲ ଅନ୍ୟ ଧରଣର (Mixed Comprehensive School ) । ବୃହଦକାୟ ଅନୁଷ୍ଠାନ, ବିଭିନ୍ନ ବୟସର ପୁରୁଷ, ମହିଳା ଶିକ୍ଷାର୍ଥୀ, ନାନା କିସମର ଧନ୍ଦା ଉପକରଣ, ପଢ଼ାପଢ଼ି, ଗୀତ, ବାଦ୍ୟ ନୃତ୍ୟ, ଡ୍ରଇଙ୍ଗ, ଡ୍ରିଲ ସବୁ ଚାଲିଛି ଅଲଗା ଅଲଗା ସ୍ଥାନରେ, ଗଛତଳେ, ଘର ଭିତରେ, ଉନ୍ମୁକ୍ତ ପ୍ରାଙ୍ଗଣରେ । ଶିକ୍ଷକ କିଏ, ଶିକ୍ଷାର୍ଥୀ କିଏ ଜାଣିବା ମୁସ୍କିଲ । ଆନନ୍ଦ ଲହରୀ ଖେଳୁଛି ଚାରିଆଡେ । ଠାଏ ଦେଖିଲି, ତରୁଣୀ ମା ପିଲାଧରି ବସିଛନ୍ତି ପ୍ରାୟ ପଚିଶଜଣ, ହାସ୍ୟରୋଳ ମଧରେ ପିଲାଙ୍କ ଯତ୍ନ ଓ ଶିକ୍ଷା ନେଇ ସ୍ଲାଇଡ ସୋ ଚାଲିଛି । ଲୋକଙ୍କ ପାଇଁ, ଭବିଷ୍ୟତ ପାଇଁ କେତେ ଚେଷ୍ଟା ! ଆଉ ଆମେ ? ସ୍କୁଲର ହେଡମାଷ୍ଟର ଜେ.ଇ ବ୍ରାଉନ ଆପ୍ୟାୟିତ କଲେ ମଧ୍ୟାହ୍ନ ଭୋଜନରେ । ଅକୁଣ୍ଠ ଆଗ୍ରହ ସ୍କୁଲରେ ତାଙ୍କର । ଜୀବନରେ ଯେପରି ତାହା ଏକମାତ୍ର କାମ୍ୟ । ପତ୍ନୀ ଓ କନ୍ୟା ମଧ ସ୍କୁଲରେ ଲାଗିଛନ୍ତି । ଛାତ୍ରଙ୍କ ଧର୍ମଘଟ କି ମାଷ୍ଟ୍ରଙ୍କ ଶୋଭାଯାତ୍ରା ନାହିଁ । ସେ କଥା ତାଙ୍କ କଳ୍ପନା ବାହାରେ ।

ଅନ୍ୟ ଏକ ସଂସ୍ଥା ଦେଖି ଚକ୍ଷୁ ସ୍ଥିର । ଜରା ନିବାସ । ଏସେକ୍ସରେ ବେନେଟ ଲଜ । ୬୨ ଜଣ ବୃଦ୍ଧବୃଦ୍ଧା ଥିଲେ । ଦୁଇଟି ଦମ୍ପତି ୯୦ ବର୍ଷରୁ ଉର୍ଦ୍ଧ୍ୱ, ଚାଲିବାକୁ ଅକ୍ଷମ । ଦୋତାଲା ଘର । ଅହରହ ସ୍ୱାସ୍ଥ୍ୟ ସେବାର ଆୟୋଜନ । ମେଟ୍ରନ ଓ ନର୍ସ ରହିଥାନ୍ତି ପାଖେ ପାଖେ । ଘଣ୍ଟି ଘଣ୍ଟ ବାଜିଲେ ଦୂରକୁ ଦଉଡନ୍ତି । ଗାଧୁଆକୁଣ୍ଡକୁ କି ଯତ୍ନରେ, ମମତାର ସହ ନେଉଥାନ୍ତି ଅଶକ୍ତ ବୃଦ୍ଧଙ୍କୁ । ସମସ୍ତଙ୍କୁ ଚଳାଇ ବା ହୁଇଲ ଚେୟାରରେ ଏକାଠି କରନ୍ତି ଦିପହରେ ଖାଇବାବେଳେ, ସନ୍ଧ୍ୟାରେ ମନୋରଞ୍ଜନ କାର୍ଯ୍ୟପାଇଁ । ବୟସାଧିକ ଜୀର୍ଣ୍ଣ ଶରୀର, ଭଗ୍ନ ସ୍ୱାସ୍ଥ୍ୟଙ୍କ ନିମନ୍ତେ ଘର, ପରିବାର ପରିବେଶର ଅଭାବ ମୋଚନ ପାଇଁ ଅକ୍ଲାନ୍ତ ଉଦ୍ୟମ ଚାଲିଛି ଏ ନିବାସରେ । କେତେକଙ୍କ ସଙ୍ଗେ ଆଳାପ କଲି । ସେମାନେ କୃତଜ୍ଞ ଯେଉଁ ସ୍ନେହ, ସେବା ପାଉଛନ୍ତି । ଅପେକ୍ଷା ରଖନ୍ତି ଖ୍ରୀସ୍‌ମସକୁ (ବଡଦିନ) ସ୍ୱଜନଙ୍କ ସାକ୍ଷାତ ପାଇଁ । ଏ ଜରାନିବାସର ବହୁଳ ଖର୍ଚ୍ଚ କିପରି ଉଠେ, ପଚାରିଲି । ନିବାସୀମାନେ କିମ୍ବା ସେମାନଙ୍କ ସନ୍ତାନାଦି, କେତେକ ଅଂଶ ମାସୁଆରୀ ଦିଅନ୍ତି । ଅବଶିଷ୍ଟ ସରକାରୀ ଅନୁଦାନ, ବେସରକାରୀ ଦାତବ୍ୟ । ଶେଷୋକ୍ତ ଦାନ ଅଗଣିତ ଲୋକଙ୍କଠାରୁ ଅପେ ଆସେ । ସଭ୍ୟତାର ଏକ ମାପକାଠି ।

Digitized by srujanika@gmail.com

ମାକ୍‌ସନ କ୍ରଫଟରେ ଅନ୍ୟ ଏକ ଜରାନିବାସ ଅନ୍ୟ ପ୍ରକାରର । ଲ୍ୟାମେଥର ଲଣ୍ଡନ ବ୍ୟୁରୋଦ୍ୱାରା ତାହା ପରିଚାଳିତ । ଏଥିରେ ସଂଲଗ୍ନ ହୋଇଛି ୨୧ ଟି ଛୋଟ ଫ୍ଲାଟ । ସେଥିରେ ଶାରୀରିକ ସାମର୍ଥ୍ୟ ଥାଇ ନିଜେ ଚଳିପାରୁ ଥିବା ବୟସ୍କ ବୟସ୍କାମାନେ ପୃଥକଭାବେ ରହନ୍ତି । ଖାଆନ୍ତି ନିବାସର ଅନ୍ୟ ସମସ୍ତଙ୍କ ସାଙ୍ଗେ ଏକାଠି । ନିବାସର ସମସ୍ତ ସାମୁହିକ କାର୍ଯ୍ୟରେ ତାଙ୍କର ଅଂଶ ଥାଏ । ମିସେସ୍ ମୋଲନର ସେଠାର ମେଟ୍ରନ ଥିଲେ । ସବୁ ନିବାସୀ ତାଙ୍କ ପରିବାରର ଲୋକପରି ସେ ମଣନ୍ତି । କେତେ ଦୟା, ଶ୍ରଦ୍ଧା ରଖିଥାନ୍ତି ହୃଦୟରେ ! ଦରମା ପାଇଁ ଖଟନ୍ତି ନାହିଁ । ଖଟନ୍ତି ସେବାଗ୍ରାହୀଙ୍କ ମୁହଁରେ ହସ ଟିକିଏ ଦେଖିବା ପାଇଁ । ଭି.ସେରଗୋଲଡ ଥିଲେ ଅଫିସର-ଇନଚାର୍ଯ୍ୟ ଅଫ ରେସିଡେନସିଆଲ ହୋମସ୍ । ମୁଁ ଦିନିକିଆ ଅଭ୍ୟାଗତ, ବିଦେଶୀ । ମତେ ବୁଝାଉଥାଆନ୍ତି ଟିକିନିଖି କରି, ଯେପରି ଅବା ମୋ ଉପରେ ନିର୍ଭର କରୁଛି ତାଙ୍କର ପୂରା ସଂସ୍ଥା ।

ନଅଦିନର ଆତିଥ୍ୟ ମୋ ପକ୍ଷରେ ଅଭୁଲା ଅନୁଭୂତିର ସଞ୍ଚୟ ହୋଇ ରହିଛି । ତାପରେ ଲଣ୍ଡନ କେତେଥର ଯାଇଛି; କିନ୍ତୁ ତାହାର ସମକକ୍ଷ ପାଇନାହିଁ ।



Digitized by srujanika@gmail.com

# ଦେଶ ପର୍ଯ୍ୟଟନ

ଅନେକ ଦିନୁ ଇଚ୍ଛାଥିଲା ବିଭିନ୍ନ ଦେଶ ପର୍ଯ୍ୟଟନ ପାଇଁ । ୧୯୬୭ ଏପ୍ରିଲ ମାସରେ ବାହାରିଲି କଲିକତାରୁ । ଟିକଟ କଲାବେଳେ ବଡପୁଅ ପ୍ରଭାତର ପରାମର୍ଶରେ ସ୍ଥିର ହେଲା ଆଗ ପୂର୍ବପଟକୁ ଯାଇ, ସେଠାରୁ ଆମେରିକା ତାପରେ ୟୁରୋପ ଓ ଶେଷରେ ରୁଷିଆ ହୋଇ ଫେରିବି । ଯାତ୍ରା ଦୀର୍ଘ, ରହଣି ସ୍ଥାନ ଅନେକ । ବିଦେଶୀ ମୁଦ୍ରା ସେହି ଅନୁସାରେ ରିଜର୍ଭ ବ୍ୟାଙ୍କରୁ ଯାହା ମିଳିଲା, ସେଥିରେ ହୋଟେଲ ଖର୍ଚ୍ଚ ଯାଇ ହାତରେ ବଳନ୍ତି ଅଳ୍ପ, ତେବେ ଚଳନୀୟ । ଏକାକୀ ଯାଉଥିବାରୁ, ଆଗରୁ କେଉଁ ସ୍ଥାନରେ କେଉଁ ହୋଟେଲରେ ସ୍ଥାନ ନିଶ୍ଚିତ ନ ହୋଇଥିଲେ, ଅସୁବିଧା ଘଟିଥାଆନ୍ତା । କଲିକତାର ଏୟାର ଫ୍ରାନ୍ସ ସେ ଦିଗରେ ସାହାଯ୍ୟ କରିଥିଲେ । ସେହି ଅବସରରେ ରୋଟାରୀ କାର୍ଯ୍ୟପାଇଁ ଆମେରିକାର ଲେକ୍ ପ୍ଲାସିଡଠାରେ ଏକ ସପ୍ତାହ କଟାଇବାର ଥିଲା ଏବଂ ସେ ସଂକ୍ରାନ୍ତରେ ବ୍ୟୟ ତୁଲାଇବା ପାଇଁ କିଛି ଅର୍ଥ ମଧ୍ୟ ମିଳିଥିଲା । ତେଣୁ ମୋଟ ଉପରେ ଦୁଇମାସରୁ ଅଳ୍ପ ବେଶି ବିଦେଶ ଯାତ୍ରାରେ ବିତାଇବାର ଖସଡା କରି ବାହାରିଲି । ଫେରିବାକୁ ସମୟ ଲାଗିଲା ଆଉକିଛି ଅଧିକ । ଫିଲିପାଇନସ, ଥାଇଲାଣ୍ଡ, ଜାପାନ, ପୂର୍ବପଟର ତିନି ପ୍ରଧାନ ଦେଶ । ପ୍ରଥମ ଦୁଇଟିରେ ଦ୍ୱିତୀୟ ମହାସମର ପରେ, ଆମେରିକାର ଛାପ ସୁସ୍ପଷ୍ଟ । ବ୍ୟାଙ୍ଗକକ୍‌ରେ ହୋଟେଲରେ ପହଞ୍ଚୁ ପହଞ୍ଚୁ ଘେରିଗଲେ ଗାଇଡ ବୁଲାଇ ନବାକୁ । ମୋ ଗନ୍ତବ୍ୟ ସ୍ଥାନମାନଙ୍କ ସମ୍ବନ୍ଧରେ ସାଧାରଣ ଜ୍ଞାତବ୍ୟ ବିଷୟ ଓ ଦର୍ଶନୀୟ ସ୍ଥାନମାନଙ୍କର ହାରାହାରି ଦୂରତ୍ୱ ଆଗରୁ ସଂଗ୍ରହ କରିଥିବାରୁ, ଗାଇଡଙ୍କର ଦୌରାତ୍ମ୍ୟ ଭୋଗିବାକୁ ପଡିଲା ନାହିଁ । ପ୍ରତି ସ୍ଥାନରେ (conducted tour) ବିଜ୍ଞାପିତ ଟୁରମାନଙ୍କର ସବିଶେଷ ବିବରଣୀ ହୋଟେଲରେ ଥାଏ । ତାହାର ସାହାଯ୍ୟ ନେଲେ ବହୁ ସୁବିଧା । ୨୦/୨୫ ଜଣ ସହଯାତ୍ରୀ ମିଳନ୍ତି ଭିନ୍ନ ଦେଶବାସୀ,ଭିନ୍ନ ଭାଷାଭାଷୀ । ଆରାମଦାୟକ ମିଳେ ବସିବାକୁ, ଅବଗାହୀ, ଇଂରେଜୀ ଅଭିଜ୍ଞ, ଲାଇସେନ୍‌ସ ପ୍ରାପ୍ତ

Digitized by srujanika@gmail.com

ଗାଇଡ ଥାଏ । ପ୍ରାଞ୍ଜଳ ଭାବରେ ଐତିହାସିକ, ଭୌଗୋଳିକ, ଲୋକ ମୁଖରୁ ସଂଗୃହୀତ ତଥ୍ୟାବଳୀ ବୟାନ କରେ । ବ୍ୟୟ ମଧ କମ୍ । ଅଳ୍ପ ସମୟ ମଧରେ ସମସ୍ତ ଦର୍ଶନୀୟ ପ୍ରଧାନ ସ୍ଥାନ ଦେଖିବାର ଏହା ଏକ ସହଜ ସୁଯୋଗ । ପ୍ରଥମ ଦିନ ମୁଁ କଟାଏ ପୂର୍ବାହ୍ନ ଏହି ପ୍ରକାର ଟୁର୍‌ରେ । ସନ୍ଧ୍ୟାର ଅନ୍ୟଏକ ଟୁର ମିଳେ; ଆଲୋକ ସଜ୍ଜିତ ଅଟ୍ଟାଳିକା, ପାର୍କ, ହ୍ରଦ, ନଦୀତୀର, ନୌକାଭେଳା, ଲୋକ ନୃତ୍ୟ ଦେଖିବାକୁ । ସେ ସୁଯୋଗ ମୁଁ ଗ୍ରହଣ କରେ । ଦ୍ୱିତୀୟ ଦିନ ମୁଁ ଯାଏ ଏକୁଟିଆ, ଉଚ୍ଚନ୍ୟାୟାଳୟ, ବିଧାନସଭା ଗୃହ, ପାଠାଗାର, ସଂଗ୍ରହାଳୟ, ଆର୍ଟ ଗାଲେରୀ, ପରିଦର୍ଶନରେ । ତୃତୀୟ ଦିନ ବିପଣୀସଜ୍ଜା ଆକର୍ଷଣରେ କଟେ । ଚତୁର୍ଥ ଦିନ ପ୍ରତ୍ୟୁଷରେ ପ୍ରସ୍ଥାନ । ଏହି ଥିଲା, ସବୁ ସ୍ଥାନରେ ମୋର ନିର୍ଘଣ୍ଟ । ଟୋକିଓ, ନିଉୟର୍କ, ଲଣ୍ଡନ, ପ୍ୟାରିସ, ନିସ୍, ବର୍ଲିନ, ମସ୍କୋରେ ରହିଥିଲି ପାଞ୍ଚଦିନରୁ ସାତଦିନ ଲେଖାଏ । ବ୍ୟାଙ୍ଗକକ୍, ମାନିଲା, ହନଲୁଲୁ, ଲସଆଞ୍ଜେଲସ, ସେଣ୍ଟଲିଉସ୍, ସାନ୍‌ଫ୍ରାନ୍‌ସିସକୋ, ସିକାଗୋ, ଓ୍ୟାସିଙ୍ଗଟନ, କୁପେନହେଗେନ, ଆମଷ୍ଟାରଡମ, ମ୍ୟୁନିକ, ଷ୍ଟୁଟଗାର୍ଟ, ଆଥେନସ, ଭିଏନା, ଫ୍ରାଙ୍କଫର୍ଟ, ଡସେଲ ଡ୍ରଫ ପ୍ରଭୃତି ସ୍ଥାନରେ ତ୍ରିରାତ୍ର ନିବାସ ।

ସବୁ ସହରରେ ଚଳଣି ଢ଼ାଞ୍ଚା ଏକପ୍ରକାର । ହୋଟେଲମାନଙ୍କରେ ରହିବା, ଖାଇବା ପ୍ରାୟ ସମାନ, ପାର୍ଥକ୍ୟ ମୂଲ୍ୟରେ । ପର୍ଯ୍ୟଟକଙ୍କ ପାଇଁ ଆଞ୍ଚଳିକ ଭିତ୍ତି କେଉଁଠି ନାହିଁ । ତମେ ଯଦି ସ୍ଥାନୀୟ ଖାଦ୍ୟ, ସ୍ଥାନୀୟ ମୌଳିକ ପୁରାତନ ବସବାସ, କୁଟୀରଶିଳ୍ପ ଦେଖିବାକୁ ଚାହିଁବ, ତେବେ ତାର ଆୟୋଜନ ସହଜଲଭ୍ୟ । ମୁଁ ସବୁଠାରେ ତାହାର ସୁଯୋଗ ନେଇଛି । ତା ନ ଦେଖିଲେ, ନ ଜାଣିଲେ, ସ୍ଥାନର ଅସଲ ମର୍ଯ୍ୟାଦା ବୁଝାପଡେ ନାହିଁ । ଏବେ ଦ୍ରୁତ ଗମନାଗମନର ସୁବିଧା ଯୋଗୁ କୌଣସି ଦେଶର ସ୍ୱତନ୍ତ୍ରତା ଅକ୍ଷତ ରହିପାରି ନାହିଁ । ଅନ୍ୟ ଦେଶବାସୀ ଆଗନ୍ତୁକମାନଙ୍କ ପାଇଁ ସର୍ବତ୍ର ଦ୍ୱାର ସାଦର ଉନ୍ମୁକ୍ତ । ତାଙ୍କ ରୁଚିରେ ଆଘାତ ନ ଆଣିବାର ପ୍ରୟାସରେ ନିଜ ଦେଶର ମୌଳିକ ସତ୍ତାକୁ ଚାପିରଖି, ସର୍ବଜନ ଆଦୃତ ଏକ ଆବରଣରେ ବସବାସ, ଖାଦ୍ୟପେୟ, ପଣ୍ୟ ସାମଗ୍ରୀ, ଯାନବାହନ ଆଚ୍ଛାଦିତ ହୋଇଥିବା ଆଖିରେ ପଡେ । ସବୁଦେଶର ଅହରହ ଉଦ୍ୟମ ଅନ୍ୟ ଦେଶକୁ ରପ୍ତାନି କରି ବାଣିଜ୍ୟରୁ ଲାଭ ଉଠାଇବା । ଆନ୍ତର୍ଜାତିକତାରେ ସମସ୍ତେ ସବୁସ୍ତରରେ ମୋହାଚ୍ଛନ୍ନ, କେବଳ ଭୌଗୋଳିକ ସୀମାଛଡା । ଶୀତ ପ୍ରଧାନ ଦେଶରେ ନରନାରୀଙ୍କ ଅଙ୍ଗସୌଷ୍ଠବ ଯେପରି ଓଭର କୋଟ ପରିଧାନ ଯୋଗୁ ଦର୍ଶକର ଦୃଷ୍ଟିର ଅଗୋଚରରେ ରହି

Digitized by srujanika@gmail.com

ସମସ୍ତେ ସମାନ ଦିଶନ୍ତି, ସେହିପରି କେତେକ ଆନ୍ତର୍ଜାତୀୟ ସମାନତା ଆଗକୁ ଆଣି, ସବୁଦେଶ ନିଜନିଜର ସ୍ଥାନ ଉପଯୋଗୀ ପରଂପରାଗତ ସ୍ୱାତନ୍ତ୍ର୍ୟକୁ ପଛକୁ ଠେଲି ଦେଉଛନ୍ତି । ବହୁ ସ୍ଥଳରେ ସମ୍ଭ୍ରାନ୍ତସ୍ତରରୁ ତାହା ଲୋପ ପାଇଗଲାଣି । ଅଶିକ୍ଷିତ, ଅନୁନ୍ନତ, ଅବହେଳିତ ଅଞ୍ଚଳକୁ ଯାଇ ତାକୁ ଖୋଜିବାକୁ ପଡୁଛି । କାରିଗରୀ କୌଶଳ ପଛରେ ସମସ୍ତଙ୍କ ଦୌଡ । ଶିଳ୍ପସମୃଦ୍ଧ, ସାମରିକ ସମ୍ଭାର ଅଗ୍ରସର କେତେକ ବଳିଷ୍ଠ ଦେଶର ଅନୁକରଣରେ, ବିଭିନ୍ନ ଦେଶ ଓ ଜାତି ନିଜର ସଂସ୍କୃତିକୁ ଅକାତରରେ ବା ଅଜାଣତରେ କିପରି ବଳି ଦେଉଛନ୍ତି, ତାହା ତାଙ୍କର ନୂତନ ଆରୋପିତ ସଭ୍ୟତାର ଅଗଭୀରତାରୁ ଜଣାପଡୁଥାଏ । ଆମ ନିଜ ଦେଶର ଅବସ୍ଥା କିଛି ଅଲଗା ନୁହେଁ । ସବୁ ପ୍ରଧାନ ସହରର ସଂଗ୍ରହାଳୟକୁ ଗଲେ ଏ ଅନ୍ଧଦୌଡ ସୁସ୍ପଷ୍ଟ ହୋଇଯାଏ ।

ବ୍ୟାଙ୍ଗକକ୍‌ରେ ଅଦ୍ୟାପି ରାମଲୀଳା ଦେଖି ଆଶ୍ଚର୍ଯ୍ୟ ଲାଗିଲା । ସେଠାରେ ବିହାର, ଉତ୍ତର ପ୍ରଦେଶର ଅନେକ ଗଉଡ ଶ୍ରେଣୀର ଲୋକ ଅଛନ୍ତି । ବିଶ୍ୱାସରେ ସେମାନେ ଏକଯୁଟ । ସ୍ୱଦେଶ ସହିତ ସମ୍ପର୍କ ଅବିଚ୍ଛିନ୍ନ । ଯେ ଯାହା ଘରକୁ ଟଙ୍କା ପଠାନ୍ତି ଅଲଗା ଅଲଗା ନୁହେଁ, ଭାରତବର୍ଷର ଅଳ୍ପ କେତୋଟି ନିର୍ଦ୍ଦିଷ୍ଟ ସ୍ଥାନକୁ ଟଙ୍କା ଆସେ ଏବଂ ସେଠାରୁ ଭିନ୍ନ ଭିନ୍ନ ଗାଁକୁ ଜଣଜଣଙ୍କ ମାଡବରିରେ ଯାଏ ଏବଂ ଶେଷରେ ପହଞ୍ଚେ ଇପ୍‌ସିତ ପରିବାର ପାଖରେ । ବ୍ୟାଙ୍ଗକକ୍‌ରେ ଥିବାଲୋକେ ସର୍ଦ୍ଦାରକୁ ଟଙ୍କା ଦେଇ ଦିଅନ୍ତି ବିଶ୍ୱାସରେ, ବିନା ରସିଦରେ । ବାଟମାରଣା ହେବାର ଅଭିଯୋଗ ନାହିଁ । କାରବାର ଅଧିକାଂଶ ମୁହଁ କଥାରେ ।

ବ୍ୟାଙ୍ଗକକ୍ ସହର ପାଖରେ ନଈ, ପାଣିରେ ଭାସୁଛି ପଣ୍ୟଭରା ନୌକାଭେଳା । Floating market । ସ୍ୱଦେଶୀ ଓ ପର୍ଯ୍ୟଟକ ସମସ୍ତଙ୍କର ଆଗ୍ରହ ସ୍ଥଳ । ସେଠାରେ ଗୋଟିଏ ପ୍ରକାର ସୁଗନ୍ଧ ବୃହତ୍ ବୃକ୍ଷର ଚେର ହାତେ ଲମ୍ବରେ କଟାହୋଇ ବିକ୍ରୀ ହେଉଥାଏ । ଅନେକ ନେଉଥିଲେ । ବର୍ଷକ ଭିତରେ ସେ ଚେର ପୋତିଲେ ଗଛ ହେବାର ଛାପା ବିଜ୍ଞାପନ ଦେଖି ଖଣ୍ଡିଏ କିଣିଲି । ପୃଥିବୀର ବହୁ ଅଞ୍ଚଳକୁ ସୁଟକେଶରେ ନେଇ, ମାତ୍ର ତିନିମାସ ପରେ କଟକରେ ଅତି ଯତ୍ନରେ ପୋତି ନିରାଶ ହେଲି ।

ଫିଲିପାଇନ୍‌ସର ରାଜଧାନୀ ମାନିଲା । ସଂପୂର୍ଣ୍ଣ ଆମେରିକା ଅଧସ୍ତନ । ସେଠାରେ ଉଚ୍ଚ ନ୍ୟାୟାଳୟ ଓ ବାରଆସୋସିଏସନ ଅଟ୍ଟାଳିକା ଦେଖିଲାଭଳି । ରାଷ୍ଟ୍ର ମୁଖ୍ୟଙ୍କ ସଙ୍ଗେ ସାକ୍ଷାତ ଲୋଡି ଅଧଘଣ୍ଟାଏ କଟାଇଥିଲି ।

Digitized by srujanika@gmail.com

ଟୋକିଓରେ ପହଞ୍ଚିଲି ସନ୍ଧ୍ୟାର ଅବ୍ୟବହିତ ପୂର୍ବରୁ । ତାଏଚି ହୋଟେଲରେ ପାଦଦେଲା ବେଳକୁ ଅଭ୍ୟର୍ଥନାର ଫୁଟନ୍ତ ରକ୍ତଗୋଲାପ ଗୁଚ୍ଛ ଉପହାର, ନାମାଙ୍କିତ କାର୍ଡ ସହ । ରହିବା କୋଠରୀ କ୍ଷୁଦ୍ର । ଟେବୁଲ ଉପରେ ନେଲିଆ ଚା'ପକେଟ, କପ୍ ଫ୍ଲାସ୍କ । ଦୁଧ ବା ଚିନି ନାହିଁ । ଖାଲି ଚା' ଯେତେ ପିଇବ, ବାରଣ ନାହିଁ । ଦୁଧ, ଚିନି ପାଇଁ ପଇସା ପଡେ । ରହିଲି ଛଅଦିନ, ଗଲି ଅନେକଆଡେ । ଅଲମ୍ପିକସ୍‌ର ବିରାଟତା, ରାଜପ୍ରାସାଦର ବିସ୍ତୃତି, ଭୂତଳ ରେଳର କ୍ଷିପ୍ରତା ସାଙ୍ଗକୁ ଅତି ଓସାରିଆ ରଙ୍ଗମଞ୍ଚରେ ଏକାବେଳକେ ଏକାଧିକ କାବୁକି ଦୃଶ୍ୟ ନାଟିକାରେ ମନ୍ଥର ନୃତ୍ୟ, ଧୀରବାଦ୍ୟ । ଗୀତ ଲାଳିତ୍ୟ, ଅପଲକ ନେତ୍ର, ନିସ୍ତବ୍ଧ ସହସ୍ର ଦର୍ଶକମଣ୍ଡଳୀ, ଦୁଇ ବିପରୀତବୋଧ ପ୍ରକାଶ କରେ । ଲୋକେ ରହନ୍ତି ଛୋଟ ଘରେ, ରଖନ୍ତି ତାକୁ ଛବିରେ ଆଙ୍କିଲାପରି । ଘରଭିତର ସୁବୁବେଳେ ସଫାସୁତରା, ସଜଡା ହୋଇଥାଏ ବିଛଣା, ଘର ସାମଗ୍ରୀ । ପରିବାର ସେ ଘରେ ଚଳାଚଳ ହେଉଥିବା ଜଣାପଡେ ନାହିଁ । ଧର୍ମର ଆକଟ ଘରେ ନାହିଁ । ଗୋଟିଏ ଇଞ୍ଜିନିୟରଙ୍କ ଘରେ ଦେଖିଲି, ବାପ ବୌଦ୍ଧ, ମା (ସ୍ୱାମୀ କହିବା ଅନୁସାରେ) ଅଧେ ସମୟ ଖ୍ରୀଷ୍ଟାନ, ଅଧେ ନାସ୍ତିକ । ଅବିବାହିତ କନ୍ୟା ଭାବି ସ୍ୱାମୀଙ୍କ ଅନୁକ୍ରମରେ ନିକଟରେ ଇସଲାମ ଧର୍ମ ଗ୍ରହଣ କରିଛି । ଜାପାନୀ ପରିଚ୍ଛଦରେ ଇଉରୋପୀୟ, ଅନ୍ତତଃ ଚାଳିଶବର୍ଷ ବୟସ ତଳର ସମସ୍ତେ । ଖାଦ୍ୟରେ ରୁଚି ସ୍ୱଦେଶ ଅବଲମ୍ବୀ । ଶୃଙ୍ଖଳା ଓ ସମୟ ଜ୍ଞାନ ବାନ୍ଧିରଖିଛି ତାଙ୍କର ପ୍ରତିଦିନର ଚବିଶ ଘଣ୍ଟା । ଦ୍ୱିତୀୟ ମହାସମରରେ ଛାରଖାର ହୋଇଗଲେ; ପୃଥିବୀର ଅନ୍ୟତ୍ର ଯାହା ଘଟି ନଥିଲା । ହିରୋସୀମା, ନାଗାସାକୀରେ ଆମେରିକାର ଆଣବିକ ବୋମା ମାଡରେ ଧନଜୀବନ, ବସବାସ, ସବୁ ଧ୍ୱଂସ ହୋଇଗଲା । ମୁଁ ଗଲାବେଳକୁ ମାତ୍ର କୋଡିଏ ବର୍ଷ ବିତିଥାଏ, ଯୁଦ୍ଧ ପରେ । ଜାପାନର ସହର ବା ଦୂରବର୍ତ୍ତୀ ସ୍ଥାନର ସମୃଦ୍ଧି ଓ ପ୍ରାଚୁର୍ଯ୍ୟକୁ ଦେଖିଲେ ଯୁଦ୍ଧ ପରାହତ ଜାତି ବୋଲି ସୂଚନା ମିଳେ ନାହିଁ । ସ୍ୱଳ୍ପକାଳ ମଧ୍ୟରେ ସମଗ୍ର ବିକାଶ ଓ ବିନ୍ୟାଶରେ ପୃଥିବୀର ଅନ୍ୟ କୌଣସି ଦେଶ ବା ଜାତି ତାଙ୍କର ସମକକ୍ଷ ହୋଇ ନାହାନ୍ତି ।

ଗୋଟିଏ ବଡ ଇଞ୍ଜିନିଅରିଂ ସଂସ୍ଥା ଦେଖିବାକୁ ଯାଇଥିଲି । ଯେ ଗାଡି ପାଖରୁ ପାଛୋଟି ନେଇ ସବୁଆଡ ବୁଲାଇ ଦେଖାଇ ତାଙ୍କ ଅଫିସରେ ଚା'ପାନରେ ଆପ୍ୟାୟିତ କଲେ, ସେ ସେଠାର ସର୍ବମୟ କର୍ତ୍ତା, ଏହା ଜାଣିଲି ବିଦାୟବେଳେ । ପୋଷାକ ଉପରେ ପିନ୍ଧିଥିଲେ ଓଭରହଲ, ସାଧାରଣ କାରିଗରୀ କର୍ମଚାରୀ ପରି,

Digitized by srujanika@gmail.com

ଚାଲୁଥିଲେ ନିରଳସ ଭଙ୍ଗୀରେ, ଠା'କୁ ଠାଏ ନିଜହାତରେ ମେସିନ୍ ଚଳାଇ ବୁଝାଉଥିଲେ ଉତ୍ପାଦନର ଦକ୍ଷତା ଓ ସ୍ୱଳ୍ପ ବ୍ୟୟିତା । କେତେଗୁଡିଏ କକ୍ଷରେ କୋଡିଏ ଜଣ ଲେଖାଏ ମହିଳା ତଳେ ବସି ପିଢ଼ା ଉପରେ ହାତରେ କାମ କରୁଥାନ୍ତି । ଆମେ ଗଲୁ, କର୍ତ୍ତା ବୁଝାଇଲେ, କିନ୍ତୁ କାର୍ଯ୍ୟରତ ଜଣେ କେହି ମୁଣ୍ଡଟେକି ଆମ ଆଡେ ଦୃଷ୍ଟି ପକାଇଲେ ନାହି, କି କର୍ତ୍ତାଙ୍କୁ ସମ୍ଭାଷଣ ଜଣାଇଲେ ନାହିଁ । ପଚାରି ଜାଣିଲି, କାମବେଳେ ଅନ୍ୟମନସ୍କ ହେବା ନିଷିଦ୍ଧ । ଆମ ନିଜଦେଶ କାରଖାନାରେ ବିଧି ବିପରୀତ: କଥା କଥାକେ କୋଳାହଳ, ବାକ ଯୁଦ୍ଧ ।

ମୁଁ ଥିଲାବେଳେ, କାଗଜରେ ଦେଖିଲି, ନିର୍ବାଚନ ପୂର୍ବଦିନ ଶେଷ ହୋଇଛି । ଭୋଟ ଦିଆହେଲା, ମୁଁ ଜାଣିପାରିଲି ନାହିଁ କିପରି । କାନ୍ଥବାଡରେ, ବତୀଖୁଣ୍ଟରେ , କେଉଁଠି କିଛି ପ୍ରଚାରପତ୍ର ଦୃଷ୍ଟିରେ ପଡିଲା ନାହିଁ । ବୁଝିଲି, ନିୟମ ହେଉଛି, ପ୍ରଚାରପତ୍ର କେବଳ ନିର୍ଦ୍ଦିଷ୍ଟ ସ୍ଥାନ ଛଡା ଅନ୍ୟତ୍ର ଦିଆଯାଏ ନାହିଁ । ଯେ ପ୍ରଚାରପତ୍ର ଲଗାଇଥିବେ, ନିର୍ବାଚନ ଶେଷରେ ତାହାକୁ ଉଠାଇ ସଫା କରିବେ । ରାସ୍ତାରେ ମାଇକ ପ୍ରଚାର ନିଷେଧ । ହାରି କରିବାପାଇଁ (ଜାଣିଶୁଣି ଜୀବନ ନାଶ କରିବା) ଏ ଲୋକ ଯେପରି ଉଦ୍‌ବେଗ ଶୂନ୍ୟ, ଶୃଙ୍ଖଳା ରକ୍ଷା ପାଇଁ ସେପରି ନିଜର ସ୍ୱାଚ୍ଛନ୍ଦ୍ୟ ତ୍ୟାଗ କରିବାକୁ ଅକୁଣ୍ଠିତ ।

ଗୋଟିଏ ବଡ ଜଳପ୍ରପାତ ଦେଖିବାକୁ ଯାଇଥିଲି, ସକାଳ ନଅଟା ସମୟରେ । ସେଠାରେ ଦ୍ୱିପହର ପର୍ଯ୍ୟନ୍ତ ରହିବାର କଥା । ମୁଁ ପହଞ୍ଚିବାର ପନ୍ଦର ମିନିଟ୍ ପରେ ୩ଟି ବଡ ମଟର ବସ ଆସିଲା । ଲୁହା କାରଖାନାରୁ ତରଳଲୁହା ବାହାରିଲାପରି, ଧାଡିବାନ୍ଧି ବାହାରିଲେ ବିସଭିତରୁ ୩ ବର୍ଷରୁ ୫ ବର୍ଷର ପୁଅଝିଅ ପ୍ରାୟ ଦୁଇଶହ, ଏକାପୋଷାକ ସମସ୍ତଙ୍କର । ସାଙ୍ଗରେ ୨୦ ଜଣ ମହିଳା ତତ୍ତ୍ୱାବଧାରକ । ସଜ ଫୁଲ ଫୁଟିଲା ପରି ଚେହେରା । ଜଳପ୍ରପାତଠାରୁ ଅଧିକ ଦର୍ଶନୀୟ ହେଲେ ସେମାନେ । ତତ୍ତ୍ୱାବଧାରକଙ୍କ ମଧ୍ୟରୁ, ଦୁଇଜଣ ଇଂରେଜୀ ଜାଣିଥିଲେ । କହିଲେ, ଅନ୍ୟ ଚାରୋଟି ସ୍ଥାନକୁ ଏହିପରି ତିନିଟି ଲେଖାଏଁ ବସ୍ ପିଲାଙ୍କୁ ନେଇ ଯାଇଛି । ତତ୍ତ୍ୱାବଧାରକଙ୍କ ମଧ୍ୟରେ, ଜଣେ ଡାକ୍ତର, ଜଣେ ନର୍ସ । ପିଲାଙ୍କ ହେପାଜତ କରନ୍ତି ଘରଠାରୁ ବେଶି । ଜାତିର ଭବିଷ୍ୟତ ଗଠନ ହୁଏ ଶୃଙ୍ଖଳିତ, ନିୟମିତ କାର୍ଯ୍ୟ ପ୍ରଣାଳୀରେ, ଆମ ଦେଶର ଭାଷଣ ସର୍ବସ୍ୱ ନୀତିରେ ନୁହେଁ । ଏହି ବ୍ୟୟବହୁଳ ଶିଶୁ ବିନୋଦନ ସମସ୍ତଙ୍କ ପାଇଁ ଅଭିପ୍ରେତ, ଧନୀ, ନିର୍ଦ୍ଧନ, ଉଚ୍ଚନୀଚ,

Digitized by srujanika@gmail.com

ସମର୍ଥ ଅସମର୍ଥ । ଜାପାନରେ ସାମରିକ ପ୍ରସ୍ତୁତି, ସୈନ୍ୟବାହିନୀରେ ଖର୍ଚ୍ଚ ନ ହେଉଥିବାରୁ, ବିକାଶମୂଳକ କାର୍ଯ୍ୟରେ ବ୍ୟୟର ଅକୁଳାନ ହେଉ ନଥିଲା ।

ଜଣକ ଘରକୁ ରାତିରେ ଖାଇବାକୁ ଯିବାର ଥିଲା । ଠିକଣା ସେ ଦେଇଥିଲେ । ଭୂତଳ ଟ୍ରେନରେ ଗଲି । ପତ୍ତା ନ ପାଇ ଫେରି ଆସିଲି ହୋଟେଲକୁ । ଟେଲିଫୋନ୍‌ରେ ଜଣାଇଲି ମୋର ଅପାରଗତା । ପୁଣି ନିର୍ଦ୍ଦେଶନାମା ମିଳିଲା, କେଉଁଠି କେଉଁ ରାସ୍ତା ଧରିବି ଏବଂ ତତ୍‌ସଙ୍ଗେ କାନରେ ମୋର ବାଜିଲା ତରୁଣୀ କଣ୍ଠର ଉପହାସର ହାସ୍ୟରୋଳ । ହସିବାର କଥା, ଟୋକିଓ ସହରରେ ବିଜୁଳି ଆଲୁଅରେ ସନ୍ଧ୍ୟା ସାତଟାବେଳେ ଗନ୍ତବ୍ୟ ସ୍ଥାନ ଖୋଜି ନ ପାଇବା ଗୋଟିଏ ସଭ୍ୟ ଦେଶର ଜଜ୍‌ପରି ଜଣେ ଲୋକ ପକ୍ଷରେ କିପରି ସମ୍ଭବ । ମୁଣ୍ଡକାନ ଆଉଁସି ପୁଣି ଥରେ ବାହାରିଲି । ଠାକୁରଙ୍କୁ ଡାକି ଡାକି ଯାଉଥାଏ, ପୁଣି ଥରେ ଅପଦସ୍ତ ଯେପରି ନ ହୁଏ । ମୋର ଦୟନୀୟ ଅବସ୍ଥା ଏକ ପଥଚାରୀ ଦମ୍ପତିଙ୍କ ଦୟାରୁ ସମ୍ଭାଳି ହୋଇଗଲା । ଦୁଆର ବେଲରେ ହାତ ଦଉ ଦଉ, ହାସ୍ୟବିହ୍ୱଳା ଗୃହକର୍ତ୍ତ୍ରୀ କହିଲେ, ତମ ଦେଶ ଲୋକେ ଏଭରେଷ୍ଟକୁ ଯାଇ ପାରୁଛନ୍ତି, ଆଉ ତମେ ଆମ ଏଠିକି ଆସିପାରିଲ ନାହିଁ ? ତୁଣ୍ଡ ଗାଲୁରେ କହିଲି, ଏଭରେଷ୍ଟକୁ ରାସ୍ତା ପର୍ବତ ଉପରେ, ତମ ଘରକୁ ବାଟ ଭୁଇଁତଳେ । ହସ ହେଲା, ଲଜ୍ଜା ମୋ ମନରେ ରହିଲା । ଖାଇସାରି ଫେରିଲାବେଳକୁ ରାତି ଏଗାର । କୃପା କରି ସ୍ୱାମୀ ସ୍ତ୍ରୀ ଟିଉବ ଷ୍ଟେସନରେ ନ ପହଞ୍ଚାଇ ଥିଲେ, ପୁଣି ହୁଏତ ବାଟବଣା ହୋଇଥାନ୍ତି । ତା ପରଦିନ ସକାଳେ ଟୋକିଓରୁ ବିଦାୟ ।

ହନଲୁଲୁ ଏକ ଅପରୂପ ସ୍ଥାନ । ସାଗର କୂଳରେ ରୌଦ୍ରଦାହ ପାଇଁ ଶତ ଶତ ନରନାରୀ ନିମ୍ନତମ ଆବରଣକୁ ଶରୀରରେ ରଖିଥାନ୍ତି ଅନିଚ୍ଛାରେ । ଦିନ କାଟନ୍ତି ସାଗରବେଳାରେ, ରାତିପାହେ ନୃତ୍ୟଶାଳାରେ । ସମସ୍ତଙ୍କର ସମୟ ଅସରନ୍ତି, ବ୍ୟୟ ତଦ୍ରୂପ । ମୋ ପରି ଡଲାରକାଙ୍ଗାଳ ଚାହୁଁଥାଏ ଆବାକାବା ହୋଇ । ସହରର ଏକ ଅଂଶ ଜାପାନୀବହୁଳ । ମୁଁ ଥିବା ହୋଟେଲର ବର୍ହିପ୍ରାଙ୍ଗଣର ପ୍ରାନ୍ତରେ ଏକ ବିଶାଳ ବଟବୃକ୍ଷ । ଆଶ୍ଚର୍ଯ୍ୟ ହେଲି, ତା ଉପରେ କଣ୍ଟକବିଦ୍ଧ ଫଳକ ଦେଖି । କଲିକତା ଶିବପୁର ବଟାନିକାଲ ଗାର୍ଡନର ପୃଥିବୀ ପ୍ରସିଦ୍ଧ ବିଶାଳାୟତନ ବଟବୃକ୍ଷରୁ ଏକ ଅଂଶ ଯାଇ ସେଠାରେ ବିରାଜିତ । ସେହି ବୃକ୍ଷ ତଳେ କବି ରବର୍ଟ (?) କବିତା ଲେଖିଥିଲେ ବୋଲି ତାହାର ପ୍ରସିଦ୍ଧି ବଢ଼ିଛି । ମୋର ପରୋକ୍ଷ ଯୋଗସୂତ୍ର ହନଲୁଲୁ

Digitized by srujanika@gmail.com

ସଙ୍ଗେ ମିଳିଗଲା । କବିତା ଲେଖିପାରିଲି ନାହିଁ, କବିତା କିଛି ପଢ଼ିଲି ସେ ଗଛମୂଳେ ବସି ।

ସେଣ୍ଟଲୁଇସର ବିରାଟ ପ୍ରସ୍ତର ଖିଲାଣ ପ୍ରସିଦ୍ଧ । ତାହା ପୃଥିବୀରେ ସର୍ବ ବୃହତ୍ । ସେଠାରେ ରହଣି ଆନନ୍ଦଦାୟକ ହେଲା, ପତ୍ରାଳାପରେ ପରିଚିତ ଏକ ବନ୍ଧୁଙ୍କର ସହୃଦୟତା ଯୋଗୁ । ସେ ଓ ତାଙ୍କ ପତ୍ନୀ ହେଲେ ମୋର ଏକ ଦିନର ଗାଇଡ । ଖିଆହେଲା ତାଙ୍କ ଘରେ । ଅନ୍ୟ ଦୁଇଦିନ ଅନ୍ୟ କାର୍ଯ୍ୟକ୍ରମରେ କଟିଲା । ରୋକ୍‌ଠୋକ୍ ବନ୍ଧୁ କହିଲେ ଗୋଟିଏ ଦିନରୁ ଅଧିକ ସେ ଦେଇପାରିବେ ନାହିଁ । ଆମ ଦେଶରେ ଏପରି ସ୍ପଷ୍ଟବାଦ ଅଚଳ । ତାଙ୍କର ତାହା ଦେହସୁହା । ବକ୍ତା ଦ୍ୱିଧାହୀନ, ଶ୍ରୋତା ଅପମାନିତ ।

ସାନ୍‌ଫ୍ରାନସିସ୍କୋ ଉଚ୍ଚାନୀଚା ସହର । ଦ୍ୱିତୀୟ ଯୁଦ୍ଧ ପରେ ଏହିଠାରେ (U.N.O.) ଜାତିସଂଘର ଚାର୍ଟର ସ୍ୱାକ୍ଷରିତ ହୋଇଥିଲା । ଅଦ୍ୟାପି ରହିଛି, ସେହି ଦୁଆତ, କଲମ କାଗଜ । ଅତି କ୍ଷୁଦ୍ର ମଞ୍ଜିରୁ ବରଗଛ ବାହାରିଲା ପରି, ଆଜି U.N.O. ସମଗ୍ର ପୃଥିବୀକୁ ଛାଇ ରହିଛି, ସମରହୀନ ଶାନ୍ତି କାମନାରେ । ଅନ୍ୟଏକ ଦ୍ରଷ୍ଟବ୍ୟ ମୁଣ୍ଡିଆ ଉପରେ ବୃହତ୍‌କାୟ ପଥର କ୍ରସ । ତାହାଠାରୁ ବଡ ବା ତାହାର ସମକକ୍ଷ ଆକାରର କ୍ରସ ଖ୍ରୀଷ୍ଟିଆନ ଜଗତର କେଉଁଠି ନାହିଁ । ଅଖ୍ରୀଷ୍ଟିଆନ ଅଞ୍ଚଳରେ ତ ନ ରହିବାର କଥା । ଧର୍ମ ଓ କଳା ଦିଗରୁ ଏହାର ପ୍ରଶଂସା ସମସ୍ତଙ୍କ ନିକଟରେ ।

ସିକାଗୋରେ ରହିଲାବେଳେ ରାତିରେ ଝଡ ଆସିଲା । କବାଟ, ଝରକା କଟ କଟ ହୋଇ କହିଲା, ବିପଦ ଘନେଇ ଆସୁଛି । ସତର୍କଘଣ୍ଟି ବାଜିଲା । ହୋଟେଲ ପରିଚାରକ ଲଣ୍ଠନ ହାତରେ ଘର ଘର ବୁଲି ଅଭୟ ଦେଲେ, ଚକଲେଟ ବାଣ୍ଟିଲେ- Last supper କି ? ଭୋର କେତେବେଳେ ହେଲା ଜାଣେ ନାହିଁ । ପ୍ରାତଃ ଭୋଜନବେଳେ ପରସ୍ପର ସଙ୍ଗୋଳିହେଲେ ବିପଦରୁ ଉଧୁରିଲେ ବୋଲି । ସିକାଗୋରେ କୃଷ୍ଣକାୟଙ୍କର ଚଳପ୍ରଚଳ କମ ନୁହେଁ । ଆକାର ଓ ରୁକ୍ଷତା ପାଇଁ ତାଙ୍କୁ ଅଭୟ ଦୃଷ୍ଟିରେ ପର୍ଯ୍ୟଟକମାନେ ଦେଖନ୍ତି ନାହିଁ । ଏଠାର ବୃହତ୍ ହ୍ରଦ, ଅଟ୍ଟାଳିକା ଦର୍ଶନୀୟ । ରୋଟାରୀ କ୍ଳବ ଏଠାରେ ଆରମ୍ଭ ହୋଇଥିଲା ୧୯୦୫ ଫେବୃଆରୀ ୨୩ ତାରିଖରେ ଜଣେ ଓକିଲଙ୍କ ଦ୍ୱାରା, ତିନିବନ୍ଧୁଙ୍କ ସହଯୋଗରେ, ଇଭାନଷ୍ଟାନ ଅଞ୍ଚଳ ଡିଅରବର୍ଣ୍ଣ ଷ୍ଟ୍ରୀଟର ଏକ କ୍ଷୁଦ୍ର କୋଠରୀରେ । ପଲହାରିସ ତାଙ୍କ ନାମ । ଅଜ୍ଞାତ, ଅଖ୍ୟାତ କହିଲେ ଚଳେ । ବନ୍ଧୁତ୍ୱ ଆହରଣ ପାଇଁ ତିନିଜଣ ପରିଚିତଙ୍କୁ ନେଇ ଗୋଟିଏ କ୍ଳବ

Digitized by srujanika@gmail.com

କଲେ ସପ୍ତାହରେ ଥରେ ଏକତ୍ର ହେବାପାଇଁ । ଚାରିଜଣଙ୍କ କର୍ମସ୍ଥଳୀରେ ବୁଲି ବୁଲି ବସୁଥିବାରୁ, କ୍ଲବ ନାମ ହେଲା ରୋଟାରୀ । ୧୯୪୭ ରେ ପଲ ହାରିସଙ୍କର ତିରୋଧାନ ଘଟିଲା । ସେତେବେଳକୁ ରୋଟାରୀ ଇଣ୍ଟରନାସନାଲ ଏକ ବୃହତ ସଂସ୍ଥା । ଏବେ ଏହା ପୃଥିବୀର ସବୁ ଦେଶରେ (କମ୍ୟୁନିଷ୍ଟ ଅଞ୍ଚଳ ବ୍ୟତୀତ) ପ୍ରସାରିତ । କମ୍ୟୁନିଷ୍ଟ କ୍ରମଶଃ ଆସୁଛନ୍ତି, ଏହା ସର୍ବବୃହତ୍ ବେସରକାରୀ ଆନ୍ତର୍ଜାତିକ ସେବାସଂସ୍ଥା । ଯୁବକ ଯୁବତୀଙ୍କ ନିଜ ଦେଶ ବାହାରେ ଶିକ୍ଷାଦାନର ବ୍ୟବସ୍ଥାରେ ଏହି ସଂସ୍ଥା ସର୍ବାଧିକ ବୃତ୍ତି ପ୍ରତିବର୍ଷ ଦେଇଥାଏ । ସମଗ୍ର ମାନବ ସମାଜ ମଧ୍ୟରେ ପ୍ରୀତି ଓ ଶାନ୍ତି ସ୍ଥାପନ ଏହାର ମୁଖ୍ୟ ଉଦ୍ଦେଶ୍ୟ । ବିପୁଳ ଜନସେବା ଏହା ମାଧ୍ୟମରେ ସର୍ବତ୍ର ସମ୍ଭବପର ହୋଇପାରୁଛି । ପୃଥିବୀରୁ ପୋଲିଓ ରୋଗ ସଂପୂର୍ଣ୍ଣ ନିରାକରଣ ପାଇଁ ପ୍ରସାରିତ ଉଦ୍ୟମ ଚାଲୁ କରା ହୋଇଛି । ଆମ ଓଡ଼ିଶା, ମଧ୍ୟପ୍ରଦେଶରୁ କେତେକ ଅଂଶ ମିଶି ଏକ ରୋଟାରୀ ଜିଲ୍ଲା କରାଯାଇଛି । ସେଥିରେ ରୋଟାରୀ କ୍ଲବଗୁଡ଼ିକ କେନ୍ଦ୍ରୀୟ ସୂଚନା ଅନୁସାରେ ବିଭିନ୍ନ ସେବା କାର୍ଯ୍ୟରେ ବ୍ରତୀ ରହିଛନ୍ତି । ଅଧୁନା ଯୁବ ସଂପ୍ରଦାୟ ଭିତରେ ଶୃଙ୍ଖଳା, ସେବା ମନୋଭାବ, ମାନବିକ ସହୃଦୟତା ଓ ସର୍ବୋପରି ଶାନ୍ତି କାମନା ଜାଗ୍ରତ କରିବାର ବହୁମୁଖୀ କାର୍ଯ୍ୟକ୍ରମ ଜୋରସୋରରେ ଗ୍ରହଣ କରାଯାଇଛି । ରୋଟାରୀର କେନ୍ଦ୍ର ମହକୁମା ସିକାଗୋର ଇଭାନଷ୍ଟୋନରେ । ସେଠାକୁ ଯାଇ ତୀର୍ଥସ୍ଥଳ ପରି ମଣିଲି । ସିକାଗୋ ଏବେ ପୃଥିବୀ ବିଖ୍ୟାତ ହୋଇଯାଇଛି, ନିଉୟର୍କରେ ଏମ୍ପାୟାର ବିଲିଡିଂକୁ ଟପି ଉଚ୍ଚତମ ଅଟ୍ଟାଳିକା ହ୍ରଦତୀରରେ ନିର୍ମାଣ କରି । ତଳେ ଠିଆହୋଇ ଉପରକୁ ଚାହିଁଲେ ମୁଣ୍ଡ ବୁଲାଏ; ଓପରକୁ ଯାଇ ତଳକୁ ଚାହିଁଲେ ମୁଣ୍ଡ ଘାରି ହୋଇଯାଏ । ଏହା ଅବଶ୍ୟ ମୋ ପରି ମଳିମୁଣ୍ଡିଆଙ୍କର ଘଟେ ।

ୱାସିଙ୍ଗଟନ ତ ସହଜେ ଆମେରିକାର ରାଜଧାନୀ । ସେହି ଅନୁପାତରେ ସବୁ ହେବାର କଥା । ମୁଁ ଅଭିଭୂତ ହେଲି ଫେଡରାଲ ସୁପ୍ରିମ କୋର୍ଟର ଚିଫ୍ ଜଷ୍ଟିସଙ୍କ ସୌଜନ୍ୟରେ । ସେ ଭାରତବର୍ଷକୁ ଆସିଥିଲାବେଳେ ସାକ୍ଷାତ ଓ ସାମାନ୍ୟ ପରିଚୟ ଘଟିଥିଲା । ଟେଲିଫୋନ୍‌ରେ ଶୁଭଇଚ୍ଛା ଜଣାଇଲାବେଳେ, ସୁପ୍ରିମ କୋର୍ଟକୁ ଯିବାପାଇଁ ଡାକିଲେ । ମୋ ପାଇଁ ଅପୂର୍ବ ସୁଯୋଗ । ଗଲାବେଳକୁ ଦେଖେ କୋର୍ଟର ସେଦିନ ଛୁଟି । ବସିଛନ୍ତି ଚିଫ୍ ଜଷ୍ଟିସ ମୋ ଅପେକ୍ଷାରେ । ସଙ୍କୋଚ ବୋଧକଲି । ସେ ନିରୁଦ୍‌ବେଗ । ତାଙ୍କ ଟେବୁଲ ଉପରେ କାଗଜକଟା କମନୀୟ ଛୁରିଟିଏ ଥିଲା । ମୁଁ ହାତକୁ ନେଇ ଦେଖୁଥାଏ । ସେ ପଚାରିଲେ, ଆଶ୍ଚର୍ଯ୍ୟ ହେଉଛ କି ? ଏ ପ୍ରଶ୍ନରେ ମୁଁ

Digitized by srujanika@gmail.com

ଆଶ୍ଚର୍ଯ୍ୟ ହେଲି । ସେତେବେଳ ଯାଏ ମୁଁ ଲକ୍ଷ୍ୟ କରି ନଥିଲି ଛୁରିଟି ଜାପାନ ତିଆରି । ସେ କହିଲେ, ଆମେରିକାରେ ଜାପାନ ଜିନିଷ ଭରପୂର, କାରଣ ତାହା ଅପେକ୍ଷାକୃତ ସୁଲଭ । ଉତ୍ପାଦନ ବ୍ୟୟ ସେଠାରେ କମ୍ ଥିବାରୁ ଆମେରିକା ଉତ୍ପାଦନକାରୀମାନେ ଜାପାନରେ ଶିଳ୍ପାନୁଷ୍ଠାନ ଆରମ୍ଭ କଲେଣି । ଅଧିକ ଆଶ୍ଚର୍ଯ୍ୟ ମଣିଲି, ସେ ଯେତେବେଳେ ବଡ ଚାବି ପେଣ୍ଟାଟିଏ ପକେଟରେ ଧରି ବାହାରିଲେ, କୋର୍ଟ କୋଠାର ବିଭିନ୍ନ ଅଂଶ ଦେଖାଇବାକୁ । ନିଜେ ଖୋଲୁଥାନ୍ତି ଦୁଆର, ଆଲୁଅ ଜାଳୁଥାନ୍ତି, ପୁଣି ଘର ଦରଜା ବନ୍ଦ କରୁଥାନ୍ତି ଦ୍ୱିଧାହୀନ ଭାବରେ । ଆମ ଦେଶରେ କୋର୍ଟରେ ଗଣ୍ଡା ଗଣ୍ଡା ପରିଚାରକ । ଜଜ୍ ଚାବି ଧରିବା କଳ୍ପନାତୀତ । ଯୁକ୍ତରାଷ୍ଟ୍ରର ସର୍ବାଧିକ ସମ୍ମାନର ଅଧିକାରୀ ସୁପ୍ରିମ କୋର୍ଟର ପ୍ରଧାନ ବିଚାରପତି । ଏତାଦୃଶ ପ୍ରତ୍ୟକ୍ଷ ଶ୍ରମ ସ୍ୱୀକାର ପଶ୍ଚାତରେ ଯେଉଁ ମୌଳିକ ସମତାବୋଧ ନିବିଷ୍ଟ ଥିଲା, ତାହାର ସ୍ପର୍ଶ ମୁଁ ଅନୁଭବ କରୁଥାଏ । ଅଧଘଣ୍ଟାଏ ଏପରି ଚାଲିଲା । ସୌଜନ୍ୟ ମୁଗ୍ଧ ସମ୍ମାନ କୃତଜ୍ଞତା ଜଣାଇ ମୁଁ ବିଦାୟ ନେଲି ।

ହ୍ୱାଇଟ୍ ହାଉସ, କାପିଟାଲ ଅଟ୍ଟାଳିକା ଇତ୍ୟାଦି ତ ଦେଖିବାର କଥା । ପୂର୍ବରୁ ଥରେ ଦେଖିଥିଲି । ପୁଣି ଦେଖିଲି ଅଧିକ ଯତ୍ନର ସହିତ ।

ନିଉୟର୍କରେ ମୂଳରୁ କ୍ଲାନ୍ତି । ମୁଁ ରହିଥାଏ ସେଣ୍ଟ୍ରାଲ ପାର୍କପାଖେ ପ୍ଲାଜା ହୋଟେଲରେ । ସବୁ ବିଷୟରେ ବୃହଦ ସଂସ୍କରଣର କଳ୍ପନା ମନରେ ନ ରଖିଲେ, ଅତ୍ୟଧିକ ଦୃଶ୍ୟରେ ମନରେ କ୍ଲାନ୍ତି ଆସେ । ଲାଇବ୍ରେରୀରେ ଦେଖିଲି, ଅମୃତ ବଜାର ପତ୍ରିକାର ପ୍ରଥମ ସଂଖ୍ୟାଠାରୁ ସବୁ ରହିଛି । ସଂଖ୍ୟା ବା ଆକାର ବଢ଼ିଲେ, ମାଇକ୍ରୋଫିଲମ କରି ସ୍ଥାନାଭାବ ପୂରଣ କରୁଛନ୍ତି । ନିଉୟର୍କରେ ସବୁଠାରୁ କଷ୍ଟକର ଗାଡି ପାର୍କ କରିବା । ଜଣେ ବନ୍ଧୁ ଟେଲିଫୋନ୍ କରିଥିଲେ ଆସିବେ ବୋଲି । ପଞ୍ଚଚାଳିଶ ମିନିଟ ଅପେକ୍ଷା କରି ମୁଁ ନିରାଶ ହେଲାବେଳକୁ ବାର୍ତ୍ତା ଆସିଲା, ସେ ହୋଟେଲ ଦ୍ୱାର ଦେଶରେ ଉପସ୍ଥିତ । ପ୍ରାୟ ଘଣ୍ଟେକାଳ ସେ ଗାଡିଧରି ହୋଟେଲ ଚାରିପଟେ ବୁଲୁଥାନ୍ତି ଗାଡି ରଖିବା ସ୍ଥାନ ଟିକିଏ ପାଇବାକୁ । ହକ ପଇସା ଦେବେ, କିନ୍ତୁ ଜାଗା ନାହିଁ । ପେଟ୍ରୋଲ କିଣା ତାଙ୍କୁ ସବୁ ବାଧେ ନାହିଁ, ନ ହେଲେ କିଏ ଗାଡି ଚଳାଉଥିବ ଘଣ୍ଟାଏ, ଗାଡିରୁ ଓହ୍ଲାଇବାକୁ । ଏ ଯାତ୍ରାରେ ନିଉୟର୍କ ଦୁଇଥର ପଡିଲା । ଗୋଟିଏ ଦିନ କେବଳ ପାର୍କ ସବୁ ବୁଲିଲି । ବୟସ୍କ ଲୋକଙ୍କର ଦିବସର ଅନେକ ଅଂଶ କଟେ ପାର୍କରେ, ପିଲାଙ୍କର ମଧ୍ୟ । ଆମୋଦକାରୀ ତରୁଣ ତରୁଣୀ କାଁ ଭାଁ

Digitized by srujanika@gmail.com

ଆସନ୍ତି । ତାଙ୍କ ପାଇଁ ନୃତ୍ୟଶାଳା, ଭୋଜନାଗାର, ଥିଏଟର କନସର୍ଟରେ ଡାକରା । ପାର୍କରେ ଦେଖିବା ଶୁଣିବା ପାଇଁ ଆୟୋଜନ ରହିଛି ଯଥେଷ୍ଟ । ଇଚ୍ଛାକଲେ, ଦୀର୍ଘ ସମୟ ଆରାମରେ କଟିପାରିବ । ଗୋଟିଏ ବେଞ୍ଚରେ ଯାଇ ବସିଲି, ଆଉ ତିନି ଜଣ ବସିଥିଲେ ଆଗରୁ । ଜଣେ ବୟସାଧିକ ଅନ୍ୟ ଦୁଇ ସ୍ୱାମୀ ସ୍ତ୍ରୀ— ମଧ୍ୟ ବୟସର । ସ୍ପେନରୁ ଆସିଛନ୍ତି । ବୃଦ୍ଧ କନ୍ୟାର ପିତା, ଝିଅ ଜୋଇଁଙ୍କ ସଙ୍ଗରେ ଦେଶ ଭ୍ରମଣରେ ବାହାରିଛନ୍ତି । କହିଲେ ନିଉୟର୍କର ଜନଗହଳିରେ ସେ ଆକ୍ରାନ୍ତ । ହୋଟେଲରେ ଭିଡ, ଦୋକାନରେ ଭିଡ, ସିନେମାରେ ଭିଡ, ରାସ୍ତାରେ ଭିଡ ଗାଡିର । ସେ ନିରବିଳରେ ଥିଲେ ମାଡ୍ରିଡ ସହର ଉପକଣ୍ଠରୁ ୩୦ ମାଇଲ ଦୂର ମାତ୍ର ଶହେ ଲୋକଙ୍କ ଏକ ବସତିରେ । କହୁ କହୁ କାଲିପଙ୍ଗ କଥା (ଦାର୍ଜିଲିଙ୍ଗ୍ ନିକଟ) କହିଲେ ଭାବୋଚ୍ଛ୍ୱାସରେ । ୩୫ ବର୍ଷ କଟାଇଥିଲେ ଭାରତବର୍ଷରେ ମିଶନାରୀ ହୋଇ । କଟକେ ମିଶନ୍ ରୋଡରେ ପୋଖରୀ ଉପର ଘରେ (ଷ୍ଟୁଆର୍ଟ ସ୍କୁଲ ସାମନା) ମଧ୍ୟ ରହିଥିଲେ । ମୁଁ କଟକର ଲୋକ ଜାଣିବା ପରେ, ମନେପଡିଲା ତାଙ୍କର, କଟକଚଣ୍ଡୀ, କୁଷ୍ଠାଶ୍ରମ, ମିଶନ ପ୍ରେସ, ମିଶନ ସ୍କୁଲ, ରେଭେରେଣ୍ଡ ବ୍ରଜାନନ୍ଦ ଦାସ, ଆଇଜାକ ସାନ୍ତରାଙ୍କ କଥା । ଓଡିଆ ରାଜମିସ୍ତ୍ରୀ, ବଢ଼େଇଙ୍କର ତାରିଫ ନିଉୟର୍କର ସେଣ୍ଟ୍ରାଲ ପାର୍କରେ ଶୁଣି ମୋ ଛାତି କୁଣ୍ଢେ ମୋଟ । ଝିଅ ତାଙ୍କର ପଚାରୁଥାଏ, ବର୍ଷର କେଉଁ ସମୟରେ ଭାରତକୁ ଆସିଲେ ସୁବିଧା ହେବ । ବାପା କହିଲେ, ବର୍ଷର ଛଅ ଋତୁ ଏକାବେଳକେ ଭିନ୍ନ ଭିନ୍ନ ସ୍ଥାନରେ ଭାରତରେ ମିଳିବ । ଏକା ସଙ୍ଗେ ଚେଷ୍ଟନଟ୍ ଖାଇ, ପରସ୍ପର ଠିକଣା ଦିଆନିଆ କରି, ବିଦାୟ ନେଲି—ଭାବୁଥାଏ ଏ ପୃଥିବୀଟା କେତେ ଛୋଟ । ବିଶ୍ୱନାଥପୁରରୁ କଟକ ଯେତେ, କଟକରୁ ମାଡ୍ରିଡ, ନିଉୟର୍କ ବୋଧହୁଏ ତାଠାରୁ କମ ବାଟ । ଆଖିବୁଲାଇଲେ ପଡିଶା ପଡୋଶୀ ସବୁଠାଇଁ ମିଳିବେ ।

ଜାତିସଂଘ ନ ଦେଖି ନିଉୟର୍କ କେହି ଛାଡେ ନାହିଁ । ସେଠାକୁ ଯିବାପାଇଁ ଉଚାଣିଆ ରାସ୍ତା । ପ୍ରଥମରୁ ଆଖିରେ ପଡେ ସବୁ ରାଷ୍ଟ୍ରର ପତାକାମାଳା । ମୋ ପରିଚୟ ପତ୍ରରୁ କିଛି ସୁବିଧା ମିଳିଲା । ଟୁରିଷ୍ଟ ମେଳରୁ ମତେ ଅଲଗା କରିଦେଲେ ଜଣେ ଜୁନିଅର ଅଫିସର । ତିନିଘଣ୍ଟା ବୁଲାଇଲେ, ସେକ୍ରେଟେରୀ ଜେନେରାଲଙ୍କ ସଙ୍ଗେ ପରିଚିତ କଲେ, କଫି ଖୁଆଇଲେ, ବିଜୟଲକ୍ଷ୍ମୀ ପଣ୍ଡିତ ସଭାନେତ୍ରୀ ଥିଲାବେଳେ ଯେଉଁ କକ୍ଷ ଓ ଚୌକିରେ ବସିବାକୁ ଭଲ ପାଉଥିଲେ, ଦେଖାଇଲେ । କୃଷ୍ଣ ମେନନ ଯେଉଁ ସ୍ଥାନରୁ ମାରାଥନ ବକ୍ତୃତା ଦେଇଥିଲେ, ଚିହ୍ନାଇ ଦେଲେ; ସିକ୍ୟୁରିଟି କାଉନସିଲ

Digitized by srujanika@gmail.com

ଘରକୁ ନେଇ, ଭେଟୋ କିପରି ଲାଗୁ କରାଯାଏ, ବୁଝାଇଲେ, UNESCO, WHO ଇତ୍ୟାଦିର କାର୍ଯ୍ୟ ବିଭାଗକୁ ନେଲେ, ଶେଷରେ କଫି ଖୁଆଇ ଗାଡି ଦୁଆର ପାଖେ ବିଦାୟ ଦେଲେ । ମୋର ଫଟୋ କାହିଁକି ନେଲେ ଜାଣିପାରିଲି ନାହିଁ ।

ଲିବର୍ଟି (ସ୍ୱାଧୀନତା) ମୂର୍ତ୍ତି ଦେଖିବାକୁ ବୋଟରେ ଯିବାକୁ ହୁଏ ଗୋଟିଏ ଦ୍ୱୀପକୁ । ବେକ ନ ଭାଙ୍ଗିଲେ ମୂର୍ତ୍ତି ଦିଶେନାହିଁ । ଅତି ଉଚ୍ଚ ପିଣ୍ଡିଉପରେ ଠିଆ ହୋଇଛି ମୂର୍ତ୍ତି, ହାତରେ ସ୍ୱାଧୀନତା ବର୍ତ୍ତିକା ଧରି । ଭଲକରି ଦେଖିବାକୁ ଇଚ୍ଛାକଲେ, ନିଶୁଣିମିଳେ ଚଢ଼ିବାକୁ ।

କୁପେନହେଗେନ ବିମାନଘାଟୀରେ ମୋ ନାମ ବାଜୁଥାଏ ମାଇକ୍‌ରେ । ଶୁଣିଲି ମିସେସ୍ ହେରେଲଫ୍ ଅପେକ୍ଷା କରୁଛନ୍ତି ମୋ ପାଇଁ । ତାଙ୍କ ସ୍ୱାମୀ ଫିଲ୍ମ ଧନ୍ଦାର ଲୋକ । କେତେବର୍ଷ ପୂର୍ବେ ଆସିଥିଲେ କୋଣାର୍କ ମନ୍ଦିରର ଡକୁମେଣ୍ଟ ଫିଲ୍ମ କରିବା ପାଇଁ । ରହିଥିଲେ କଟକରେ ଆମଘରେ । ଲଘାନାହିଁ, ପଘାନାହିଁ ଲୋକ । ସେ ଭଲ କି ତାଙ୍କ କ୍ୟାମେରା ଭଲ । ମୋ ସ୍ତ୍ରୀ, ପୁଅ ଝିଅଙ୍କ ସଙ୍ଗେ ଘଣ୍ଟାକ ଭିତରେ ଏତେ ଭାବ ହୋଇଗଲା ଯେ ଯେଉଁ ପନ୍ଦରଦିନ ସେ ରହିଲେ, ଘର ମଣିଷ ପରି ଚଳିଲେ । ଗୁରୁବାରରେ ସ୍ତ୍ରୀଙ୍କର ମୁରୁଜ, ଦିଅଁଙ୍କ ଘର, ମିନିର (ସୁଚିତ୍ରା) ନାଚ, ସବୁ ଫିଲ୍ମରେ ଉଠାଇଲେ । ବେବି (ପ୍ରଭାତ) ସଙ୍ଗେ କଟକରୁ ପିପିଲି ବାଟେ କୋଣାର୍କ ଯାଏ ବଳଦଗାଡି, ଲୋକଚାଲି, ଗଛରୁ ଆମ୍ବତୋଳା ଇତ୍ୟାଦି ଛୋଟ, ଛୋଟ କଥାକୁ କୋଣାର୍କର ବିସ୍ତୃତି ସଙ୍ଗେ ଯୋଡି ଅପୂର୍ବ ଗାଥା ରଚନା କଲେ ଫିଲ୍ମରେ । ବେବୀ ହେଲା ପ୍ରଧାନ ସଙ୍ଗୀ, ଆଡଭାଇଜର, ଫିଲସଫର ତାଙ୍କର । ସେ ଫେରିଗଲା ପରେ, ତାଙ୍କ ଝିଅ ଯୋଉଁ ଆସିଲେ ଭାରତବର୍ଷକୁ । କଟକ ଆସି ରହିଲେ ଆମ ସାଙ୍ଗେ କିଛିଦିନ । ବିଦାୟ ନେଇ ଟ୍ରେନକୁ ଗଲାବେଳେ ଆମ ଫାଟକ ପାଖେ ଝିଅ ଚୁମ୍ବନ ଦେଲା ମୋ ଗାଲରେ, ତା ବାପକୁ ଯେମିତି ଦେଇଥାଆନ୍ତା । ମୋହରୀର ହରେକୃଷ୍ଣ, ଆମ ମାଳି ପ୍ରଭୃତି ଠିଆ ହୋଇଥିଲେ, କାବାହେଲେ ଏ ବିଦାୟୀ ଦୃଶ୍ୟ ଦେଖି । ମତେ ବି ଅପ୍ରତିଭ ଲାଗିଲା । ହେର୍‌ଲଫ ଜାଣିଥିଲେ ମୁଁ ଆସୁଛି ବୋଲି । କିନ୍ତୁ ତାଙ୍କ ପତ୍ନୀ ବିମାନ ବନ୍ଦରକୁ କଷ୍ଟକରି ଆସିବା ମୁଁ ଆଶା କରିବାର ନଥିଲା । ମୋର ହୋଟେଲକୁ ଯିବାର କଥା । ଟାକ୍‌ସିରେ ଗଲୁ, ହୋଟେଲରେ ଜିନିଷପତ୍ର ରଖି, ବାହାରିଲୁ ବୁଲି ଦେଖିବାକୁ । ସେତେବେଳେ ଜଣାପଡିଲା ବନ୍ଧୁପତ୍ନୀଙ୍କର ହାତବ୍ୟାଗ ଟାକ୍‌ସିରେ ଛାଡି ଯାଇଛନ୍ତି । ଘରଚାବି ଥିଲା ସେଥିରେ ।

Digitized by srujanika@gmail.com

ମହିଳାଙ୍କ ହାଣ୍ଡବ୍ୟାଗରେ ନଥାଏ କଅଣ ? ଗୃହସ୍ଥଳୀଠାରୁ ଅଧିକ ମମତାବଦ୍ଧ ଜୀବନନାଟିକା ତାଙ୍କର ସେ ବ୍ୟାଗ । ପୁଲିସରେ ଖବର ଦିଆହେଲା ନାମକୁ ମାତ୍ର । ଟ୍ରାକ୍ସିନମ୍ବର, ଡ୍ରାଇଭର ନାମ, ବ୍ୟାଗର ଚିହ୍ନ, କିଛି ନଥାଏ ଆମପାଖରେ । ଆମେ ପୁଣି ବାହାରିଲୁ ଅନ୍ୟ ଏକ ଟ୍ୟାକ୍ସିରେ । ବାଟରେ ବାରମ୍ବାର ଓ୍ୱାଆରଲେସ୍‌ରେ ଶୁଭୁଥାଏ, ଗୋଟିଏ ଲେଡିଜ ହ୍ୟାଣ୍ଡବ୍ୟାଗ ଗୋଟିଏ ଟ୍ୟାକ୍ସିରେ ଦିନ ୧୦ଟା ବେଳେ ରହିଯାଇଛି; ଅମୁକ ହୋଟେଲରେ ପହଞ୍ଚାଇ ଦିଅ । ଦିନ ୨ଟାବେଳକୁ ହୋଟେଲକୁ ଫେରି ଦେଖେ, ରିସେପ୍‌ସନ୍‌ରେ ରହିଛି ମିସେସ ହେରଲଫଙ୍କ ହ୍ୟାଣ୍ଡବ୍ୟାଗ, ଭିତର ବାହାର ଅକ୍ଷତ । ଭାବିଲି, ଆମ ଦେଶରେ ଏହା ସମ୍ଭବ ହୁଅନ୍ତା ତ ?

ବନ୍ଧୁ ପତ୍ନୀ ଜଣାଇଲେ, ସ୍ୱାମୀ କାର୍ଯ୍ୟାନ୍ତରରେ ସହର ବାହାରକୁ ଯାଇଛନ୍ତି, ସନ୍ଧ୍ୟାକୁ ଫେରିବେ, ମତେ ଯିବାକୁ ହେବ ତାଙ୍କ ଘରେ ରହିବା ପାଇଁ, ବୋଧହୁଏ ଆତିଥ୍ୟର ପ୍ରତିଦାନରେ ଆଗ୍ରହୀ । ଗଲି ତାଙ୍କ ସଙ୍ଗେ । ଘର ବୋଇଲେ ଛୋଟ ଦୁଇବଖରା, ଗୋଟିଏ ଗାଧୁଆଘର, ଯାହାର ତିନିଭାଗରୁ ଦୁଇଭାଗ ବାକ୍ସ, ସୁଟକେସ୍, ଫିଲ୍ମ ରୋଲରେ ଛାତପର୍ଯ୍ୟନ୍ତ ଲାଗିଛି, ଅନ୍ୟ ଅଂଶରେ, ତାଙ୍କର ବେସିନ, କମୋଡ । ଗାଧୋଇବା ଆବଶ୍ୟକ ମନେକଲେ ଯାଆନ୍ତି ଗଳିମୁଣ୍ଡ ସ୍ନାନାଗାରକୁ । ଲୁଗାପଟା ଧୋଇବାକୁ ଯାଆନ୍ତି, ଦରକାର ହେଲେ ଧୁଆ ମେସିନ୍‌ଶାଳାକୁ । ରାନ୍ଧନ୍ତି ବୈଠକଖାନାର ଏକ ଅଂଶରେ ଏକ ପଖିଆ ଇଲେକ୍ଟ୍ରିକ୍ ଚୁଲିରେ । ଖାଇବା ସାମଗ୍ରୀର ଅଧିକାଂଶ ଅଧାରନ୍ଧା ପାକେଟରେ ଥାଏ । ଟିକିଏ ନାଁକୁ ଗରମ କରି ଟେବୁଲ ଉପରକୁ ଆସେ । ଏକମାତ୍ର ଶୟନ କକ୍ଷ ଦୁଇଟି ଖଟ, ଗୋଟିଏ ଆଲମାରୀ, ଖଣ୍ଡିଏ ଛୋଟ ଡ୍ରେସିଙ୍ଗ ଟେବୁଲରେ ପୂର୍ଣ୍ଣ, ଦେହ ମାପରେ ଜାଗା ରହିଛି ଯିବା ଆସିବା ପାଇଁ । ମୁଁ ଦୁଇଦିନ ରହିଲି ଅସ୍ନାତ, କିନ୍ତୁ ପରିତୃପ୍ତ ସ୍ୱାମୀସ୍ତ୍ରୀଙ୍କର ସହୃଦୟତାରେ ।

ପୃଥିବୀର ସବୁଠାରୁ ବେଶି ସାଇକେଲ୍ ବ୍ୟବହୃତ ହୁଏ ଆମଷ୍ଟ୍ରାଡମରେ । ସାଗର କୂଳରେ ଯେତେକ ଘର, ସମସ୍ତଙ୍କର ଦାଣ୍ଡ ଦୁଆର ଉପରକୁ ପଦାକୁ ବାହାରି ରହିଛି ବଡ ବଡ କାଠ । ଆଗେ ଜାହାଜ ସବୁ କୂଳକୁ ଆସିଲେ, ସେହି କଡି କାଠରେ ବନ୍ଧା ହେଉଥିଲା । ଏବେ କଳ ଲଙ୍ଗରର ଜାହାଜ ଭାସୁଛି ସାଗର ବକ୍ଷରେ ।

ବିଶ୍ୱବିଦ୍ୟାଳୟରେ ସିଢ଼ିରେ ଦୋତାଲାକୁ ଉଠି ଏକ ବ୍ରୋଞ୍ଜ ମୂର୍ତ୍ତିର ପଶ୍ଚାତରେ ଗୋଟିଏ ଘରେ ଦେଖିଲି ଭାଡିକି ଭାଡି ତାଳପତ୍ର ପୋଥୀ । ଧୂଳି, ଜଳ,

Digitized by srujanika@gmail.com

ବାୟୁ କିମ୍ବା କୌଣସି ହସ୍ତ ତାକୁ ସ୍ପର୍ଶ କରିବାର ସାଧ ନାହିଁ । ଆମ ମ୍ୟୁଜିୟମ କଥା ମନେ ପଡିଲା । କି ଦୟନୀୟ ଅବସ୍ଥାରେ ରହିଛି ଅମୂଲ୍ୟ ପୋଥୀ ସମ୍ପଦ ଆମର । କାଳଗର୍ଭରୁ ଉଦ୍ଧାର କରିବାକୁ ଯାଇ ଅକାଳରେ ତାହାର ଧ୍ୱଂସ ଡାକି ଆଣୁଥାଇ ଆମେ ।

ସେଠାର କେନାଲରେ ନୌବିହାର ପର୍ଯ୍ୟଟକଙ୍କର ଏକ ଆକାଂକ୍ଷିତ ବିଳାସ । ସାରାଦିନ, ଇଚ୍ଛାକଲେ ରାତ୍ରିମଧ୍ୟ, କଟାଇ ହୁଏ ସେଥିରେ । ଆହାର ବିହାର, ଗୀତ, ବାଦ୍ୟ, ନୃତ୍ୟ, ସବୁର ବ୍ୟବସ୍ଥା ସୁନିୟନ୍ତ୍ରିତ । ଅଣ୍ଟାରେ ପଇସା ଥିଲେ ହେଲା । ମୋ ବଜେଟରେ ତିନିଘଣ୍ଟାରୁ ବେଶି ସେଥିରେ କଟିଲା ନାହିଁ । ଆମ ଦେଶରେ ଫିଲପ୍ କମ୍ପାନୀ ଇଲେକଟ୍ରିକ ଜିନିଷ ପାଇଁ ଜଣାଶୁଣା । ତାଙ୍କର କେନ୍ଦ୍ର ଏଠାରେ ଏବଂ ଦର୍ଶନୀୟ । ଛେନା (Cheese) ବହୁ ପ୍ରକାରର, ଭିନ୍ନ ଭିନ୍ନ ସ୍ୱାଦ, ଗନ୍ଧ, ବର୍ଣ୍ଣର ମିଳେ । ମୂଲ୍ୟାଧିକାର ନେଳିଆ ଛେନା ଗନ୍ଧରେ ନାକ ଫାଟି ପଡେ, ଆମ ପାଟିକୁ ଯିବା ଦୁସ୍କର । ସମୁଦ୍ରରେ କୋଡିଏ ମାଇଲ ମଟର ନୌକାରେ ଗଲେ ଗୋଟିଏ ଦ୍ୱୀପ ପଡେ । ସେଠାରେ ପ୍ରାଚୀନ କାଳର ଗଉଡ ବସତି ସଂରକ୍ଷିତ ରହିଛି । ପୁରୁଣା କାଳର ପୋଷାକ ପିନ୍ଧି ଗଉଡ ଗଉଡୁଣୀ ମାନେ ଅପେକ୍ଷାରେ ଥାଆନ୍ତି ପର୍ଯ୍ୟଟକଙ୍କ ଆଦର ଗ୍ରହଣ କରିବାକୁ । ବଡ କୌତୁକ ଲାଗିଲା ସେଠାକୁ ଯାଇ ।

ପଶ୍ଚିମ ଜର୍ମାନୀର ଷ୍ଟୁଟଗାର୍ଟ ଯାଇଥିଲି କେବଳ ମୋ ଭଣଜା ଲଖୁକୁ (ଲକ୍ଷ୍ମୀନାରାୟଣ ଦାଶ, ଶୀତତାପ ନିୟନ୍ତ୍ରଣ ଇଞ୍ଜିନିୟର) ଦେଖିବାକୁ । ସେ ସେଠାରେ ପାଠ ପଢ଼ିସାରି ଚାକିରୀ କରୁଥାଏ । ମୋ ଅଭିପ୍ରାୟ ଥିଲା ତାକୁ ଦେଶକୁ ଫେରିବା ପାଇଁ ପ୍ରବର୍ତ୍ତାଇବା । ସେ ବିମାନ ବନ୍ଦରକୁ ଆସିଥିଲା । ମୁଁ ରହିଲି ହୋଟେଲରେ । ରାତିରେ ଏକାଠି ଖାଇଲାବେଳେ ସେ ଅସଙ୍କୋଚରେ ଲଘୁ ପାନୀୟ ମଗାଇଲା । ମୁଁ ପାନ ନ କରିବାରୁ ଦ୍ୱିଧାଗ୍ରସ୍ତ ହେଲା । ମୁଁ ବଳାଇବାରେ ନିଜ ଅଭ୍ୟାସ ପୂରଣ କଲା । ଦେଶକୁ ଫେରିବାପରେ ତାର ସେ ଅଭ୍ୟାସ ଜର୍ମାନିରେ ରହିଗଲା ।

ଜର୍ମାନୀର ଡସଲଡ୍ରଫ ଗଲି ଜଣେ ଶିଖ ବନ୍ଧୁଙ୍କୁ ସନ୍ଧୋଳିବାପାଇଁ । ସେ ଘର ତୋଳିଥିଲେ ମୁକ୍ତ ଆକାଶକୁ ବୈଠକଖାନାରୁ କାଚଛାତ ଦେଇ ଦେଖିବାକୁ । ମୁଁ ପହଞ୍ଚିଲା ବେଳକୁ ସେ ଦେଶାନ୍ତରରେ । ତାଙ୍କର ଜଣେ ବନ୍ଧୁଙ୍କୁ କହିଯାଇଥାନ୍ତି; ମୋ ରହିବା, ଖାଇବା ବୁଝିବାପାଇଁ । ମୁଁ ନିରାଶ ହେଲି । ଭାବିଲି, ମୁଁ

Digitized by srujanika@gmail.com

କରୁଥାଇ ମୋର, ମୋର, ତୁ କରୁଥାଉ ପର । ରହିଲି ବାଧ ହୋଇ ତିନିଦିନ । ବନ୍ଧେ ବନ୍ଧୁ ପ୍ଲାଇବୋର୍ଡ ବ୍ୟବସାୟୀ, ଦିନରାତି ଉତ୍ପାଦନ, ବିତରଣର ଯୋଗ, ବିୟୋଗ ହିସାବରେ ବ୍ୟସ୍ତ ଥାଆନ୍ତି । ମୁଁ ଆପେ ଆପେ କଳ କାରଖାନା କିଛି ବୁଲି ଦେଖୁଥାଏ ।

ପଶ୍ଚିମ ବର୍ଲିନ ପହଞ୍ଚି ପୂର୍ବ ବର୍ଲିନ ଯିବାର ଉଦ୍ୟମ କଲି । ଏକା ସହର, ଦ୍ୱିତୀୟ ଯୁଦ୍ଧ ପରେ, ମିତ୍ରପକ୍ଷ ଓ ରୁଷିଆ ଆଧିପତ୍ୟରେ ଦୁଇଭାଗ ହୋଇଗଲା । ମଝିରେ ଲୁହା ବାଡ । ଅତିକ୍ରମ ନିଷିଦ୍ଧ । ଦୁଇ ଅଂଶର ଶାସନ ମଧ ସ୍ୱତନ୍ତ୍ର । ଲୁଚା ଚୋରାରେ ଆତ୍ମୀୟମାନେ ଏପାଖ ସେପାଖ ହେବା ଚେଷ୍ଟା କରି ଗୁଳିମାଡରେ ଭୂତଳଶାୟୀ ହୋଇଛନ୍ତି ଅନେକ । ମୋ ଜଜୟତି ଏଠାରେ କାମ ଦେଲା । ପୂର୍ବ ଜର୍ମାନୀ ବାରଘଣ୍ଟା ଯିବାପାଇଁ ଅନୁମତି ଆସିଲା । ଲୁହାବାଡ ଥରେ ଡେଇଁଲେ, କୌଣସି ପ୍ରଭେଦ ଆଖିରେ ପଡେନାହିଁ । ସେ ପଟେ ପ୍ରସିଦ୍ଧ ହିଡେଲବର୍ଗ ବିଶ୍ୱବିଦ୍ୟାଳୟ । ବିହାରର ରାଜ୍ୟପାଳ ଜାକିର୍ ହୁସେନ, କଟକର ଡକ୍ଟର ଶ୍ରୀରାମଚନ୍ଦ୍ର ଦାଶ ସେଠାରୁ ଡ୍ରିଗୀ ନେଇଥିଲେ । କିଛି ସମୟ କଟାଇଲି ସେହି ଶିକ୍ଷାୟତନରେ । ସେଠା ରେଷ୍ଟୋରାଣ୍ଟରେ ଦିପହରେ ଖାଇଲାବେଳେ ଲକ୍ଷ୍ୟ କଲି ଶଙ୍କା, ସନ୍ଦେହର ଚୁପ୍ ଚାପ୍ ଠାର । ସନ୍ଧ୍ୟାରେ ପଶ୍ଚିମ ବର୍ଲିନ ହୋଟେଲକୁ ଫେରି ବୁଝିଲି, ରୁଷ ପକ୍ଷର ସାଧାପୋଷାକ ଧାରୀ ଗୁଇନ୍ଦାମାନେ ପୂର୍ବ ବର୍ଲିନରେ ପ୍ରତି ଖାଇବା ଘରେ, ସିନେମା ଘରେ, ଦୋକାନ ବଜାରରେ ସତର୍କ ଦୃଷ୍ଟି ରଖିଥାନ୍ତି; କିଏ କାଳେ ପଶ୍ଚିମ ବର୍ଲିନର ଆନୁଗତ୍ୟ ଲୋଡୁଥିବ । ଜନ୍ମଗତ ବନ୍ଧନ ଉପରେ ଏ ଆକ୍ରମଣ ସଭ୍ୟ ଜଗତ କିପରି ସହ୍ୟ କରୁଛି ! ଦ୍ୱିତୀୟ ଯୁଦ୍ଧ ଆରମ୍ଭ କଲେ ହିଟଲର ବର୍ଲିନରୁ । ଶେଷ ଚିହ୍ନ ରହିଛି ସେହି ବର୍ଲିନରେ । ଲୌହବାଡ ଓ ଯୁଦ୍ଧ ବନ୍ଦୀଶାଳା । ଘନବନାନୀ ମଧରେ ପ୍ରକାଣ୍ଡ ଗୃହ ମଧରେ ବନ୍ଦୀ ରହିଛନ୍ତି ମାତ୍ର ଜଣେ । ଦ୍ୱାରଦେଶ ପର୍ଯ୍ୟନ୍ତ ଯାଇ ଫେରିଲି ଭାବି ଭାବି; ଯୁଦ୍ଧରେ ଜିତିଲା କିଏ ?

ମ୍ୟୁନିକ୍ ସହର କାରଖାନାରେ ପୂର୍ଣ୍ଣ । ସେଠାର ପୌର ସଂସ୍ଥାର ଆୟୋଜନ ପର୍ଯ୍ୟଟକଙ୍କ ଆଖିରେ ପଡେ । ଅସ୍ତ୍ରାଗାର, ଅସ୍ତ୍ରବିପଣୀ ଦେଖିବାଭଳି । ସନ୍ତକସ୍ୱରୂପ ଖଣ୍ଡିଏ ଛୁରି କିଣିଲି । ଜର୍ମାନୀରୁ ବିଦାୟ ନେଲାବେଳେ ମନେ ପଡିଲା ଗୋଟିଏ କୌତୁକ କଥା । କହନ୍ତି, ଜଣେ ଇଂରେଜ ଯେଉଁଠି ଥାଏ, ସେ ଗୋଟିଏ ଦୋକାନ କରେ, ଦୁଇ ଜଣ ଇଂରେଜ ହେଲେ ବାଣିଜ୍ୟ କରନ୍ତି, ତିନି ଇଂରେଜ ଏକାଠି ହେଲେ ଗୋଟିଏ ସାମ୍ରାଜ୍ୟ ଗଢ଼ନ୍ତି । ଜଣେ ଜର୍ମାନ୍, ହାତରେ କଳକବ୍ଜା

Digitized by srujanika@gmail.com

ତିଆରି କରେ; ଦୁଇ ଜଣ ଜର୍ମାନୀ ହେଲେ କାରଖାନା ବସାନ୍ତି, ତିନି ଜଣ ଜର୍ମାନ୍ ଜୁଟିଲେ ଯୁଦ୍ଧ ଆରମ୍ଭ କରନ୍ତି । ଜଣେ ଭାରତୀୟ ଦାର୍ଶନିକ ତତ୍ତ୍ୱ ବାଢ଼େ, ଦୁଇ ଭାରତୀୟ ଏକାଠି ହେଲେ ଦିଅଁ ବସାନ୍ତି; ତିନି ଭାରତୀୟ ଏକାଠି ହେଲେ ଗୋଟିଏ ଜାତି (ସଂପ୍ରଦାୟ) ଗଢ଼ନ୍ତି ।

ପାରିସ୍‌ରେ ଯେତେଦିନ ରହିଲେ ବି ଦେଖା ସରେ ନାହିଁ । ରାତିରେ ପାରିସ୍‌ର ଭିନ୍ନ ରୂପ, ରାତି ଦଶଟା ପରେ । ଦିନେ ସହର ବାହାରେ ବିଶ୍ୱ ବିଦ୍ୟାଳୟକୁ ଯାଇ ଅଡୁଆରେ ପଡିଲି । ଟାକ୍‌ସିରେ ଯାଇଥିଲି । ଫେରିଲାବେଳକୁ ନାଁ ଟାକ୍‌ସି ନା ବସ୍ । ଯାହାକୁ ପଚାରେ, ସେ କହେ ଅପେକ୍ଷା କର । ଅନେକ ସମୟ ପରେ ନିରାଶ ହୋଇ, ଜଣେ ହାଇକବାଲା ସାଙ୍ଗରେ ଚାଲିବାକୁ ଆରମ୍ଭ କଲି । ପଚାରିଲି, ଯାନବାହନର ଏ କି ଅବ୍ୟବସ୍ଥା । ସେ ମତେ ଚାହିଁଲା, ମୁଁ ବୋକାଟା ପରି କଣ କହୁଛି । ବୁଝାଇଦେଲା ମୋ ତ୍ରୁଟି । ଟାକ୍‌ସିରେ ଆସିଥିଲେ, ଫେରିବା ପର୍ଯ୍ୟନ୍ତ ସେଇ ଟାକ୍‌ସି ରଖିଥାଆନ୍ତି, ନଚେତ୍ ଗାଡିଟିଏ ଭଡା ନେଇ ନିଜେ ଚଳାଇ ଆସିଥାନ୍ତି । ଏଠାରେ ରାସ୍ତାରେ ଗାଡି ଉଭୟ ଦିଗକୁ ଯା ଆସ କରୁଛି ନିଜ, ନିଜ ଅକ୍ତିଆରରେ । ହାଇକ୍‌ବାଲା ନିର୍ବିଚାରରେ ହାତ ହଲାଉଥାଏ । ମଝିରେ ମଝିରେ । ତା କାନ୍ଧ ବୁଜୁଲା ଦେଖି, ଜଣେ ଗାଡି ଅଟକାଇଲେ । ହାଇକବାଲା ଫ୍ରେଞ୍ଚରେ ବୁଝାଇଲା ମୋ ଚାହିଦା ତାଠାରୁ ବେଶି । ଗାଡିରେ ଦୁଇଜଣଙ୍କ ପାଇଁ ଜାଗା ନାହିଁ । ଇଯେ କଟକ ନୁହେଁ ଯେ ଠେଲାପେଲା ହୋଇ ତିନି ଜାଗାରେ ସାତ ବସିଯିବେ । ଚାଳକ ସନ୍ଦେହ ଦୃଷ୍ଟିରେ ମତେ ଚାହିଁଲା, ମୁଁ ହାଇକବାଲା ନୁହେଁ, ଅଥଚ ପର ଗାଡିକୁ ଅପେକ୍ଷା କରୁଛି । ଶେଷକୁ ଦୟା ପ୍ରବର୍ତ୍ତିଲା ତାଙ୍କ ହୃଦୟରେ, ମତେ ଆଣି ହୋଟେଲ ଗଳିମୁଣ୍ଡରେ ଛାଡିଦେଲେ । ସେହି ଅଭିଜ୍ଞତା ପରେ ଦୂରକୁ ଆଗରୁ ବ୍ୟବସ୍ଥା ନ କରି ଆଉ ବାହାରି ନାହିଁ ଦେଶକୁ ଫେରିବାଯାଏ ।

ନାଇଟ କ୍ଲବକୁ ଜଣେ ପରିଚିତ ମତେ ନେଇଗଲେ । ତାଙ୍କ ପତ୍ନୀ ସଙ୍ଗରେ ଥାଆନ୍ତି । ସେଠାରେ କେବଳ ନଗ୍ନତା ନୁହେଁ, ଆମ ବିଚାରରେ ସଂପୂର୍ଣ୍ଣ ନିର୍ଲ୍ଲଜତାର କାରବାର; ଖାଦ୍ୟ ନାମମାତ୍ର, ପାନୀୟ ଭରପୁର । ଗୀତ ସାମାନ୍ୟ, ଅଭଙ୍ଗୀ ନୃତ୍ୟ ପ୍ରଚୁର । ମତେ ଆଶ୍ଚର୍ଯ୍ୟ ଲାଗୁଥାଏ, ମୋ ସାଥୀଦ୍ୱୟ କିପରି ଉପଭୋଗ କରୁଥାନ୍ତି ଏକ ସଙ୍ଗେ ଏହି ଦୃଶ୍ୟ । ଅନାସକ୍ତିର ଏ ନମୂନା ନୁହେଁ ତ ?

ଦିପହରରେ ଦିନେ ମୁଖ୍ୟ ରୋଟାରୀ କ୍ଲବ ମିଟିଙ୍ଗକୁ ଗଲି । ୩୨୫ ନମ୍ବର ଡିଷ୍ଟ୍ରିକ୍ଟ ଯେଉଁଥିରେ ଭାରତବର୍ଷର ପ୍ରଥମ ରୋଟାରୀ କ୍ଲବ (କଲିକତା)

Digitized by srujanika@gmail.com

ଅବସ୍ଥିତ, ସେଠାର ଗଭର୍ଣ୍ଣର ବୋଲି ମର୍ଯ୍ୟାଦା ବେଶି ମିଳିଗଲା । ସେ ବୈଠକର ମୁଖ୍ୟ ଅତିଥି ହୋଇଗଲି । ଆଦର ଅଭିନନ୍ଦନ ବହୁତ, ସବୁ ଫ୍ରେଞ୍ଚରେ । ଅନୁମାନରେ ବୁଝୁଥାଏ ଅଳ୍ପ । ମୋ କଥନକୁ ଜଣେ ଚାଟାର ଆକାଉଣ୍ଟାଣ୍ଟ ଫ୍ରେଞ୍ଚରେ କହିଦେବାରେ, ଭଲମନ୍ଦ ନିର୍ବିଚାରରେ ବିପୁଳ କରତାଳି ହେଲା, ସୌଜନ୍ୟ ନିଦର୍ଶନରେ । ସେ ଦିନର ଖାନାର ବିଶେଷତ୍ୱ ଥିଲା, ମଦିରାରେ ମୁରଗୀ ପାକ । କ୍ୱଚିତ ତାହା ହୁଏ । ଧନ୍ୟବାଦ ଅର୍ପଣବେଳେ କୁହାଗଲା, ମୋରି ଆସିବା ବୋଧହୁଏ ଆଗରୁ ଜାଣି ଅଭିନନ୍ଦନ ପାଇଁ ଚେଫ୍ (ମୁଖ୍ୟ ପାଚକ) ଏ ଖାନା ପକେଇଛି । ହସ ବୃଷ୍ଟି ହେଲା । ହସନ୍ତି ଫ୍ରେଞ୍ଚବାଲା ବେଶି ଓ ଅକାତରରେ । ଇଂରେଜଙ୍କର ଓଲଟା । ଗୀତ, ନୃତ୍ୟ, ଚିତ୍ର ଏ ଦେଶର ସର୍ବତ୍ର ସମୃଦ୍ଧ । ନିଶାକର ତୀବ୍ର ମଦ ଏମାନେ ପିଅନ୍ତି ନାହିଁ । ଅଳ୍ପ ଅଳ୍ପ ଚାଖୁଥାନ୍ତି ସୁସ୍ୱାଦୁ ଲଘୁ ୱାଇନ । ଦୁର୍ମୂଲ୍ୟ ୱାଇନ ଓଠରେ ଲାଗେ ନାହିଁ, କେବଳ ଜିଭରେ ଚାଟନ୍ତି, ପାନୀୟର ସ୍ୱରୂପ ସ୍ୱଗୁଣରେ ତୃପ୍ତି ପାଇଁ । ହୋଟେଲରେ ଖାଇଲାବେଳେ ପାଣି ମାଗିଲେ, ପରିଚାରିକା ଅବିଶ୍ୱାସରେ ହସେ । ମିନରାଲ ୱାଟର ବୋତଲଟିଏ ଆଣିଦିଏ ।

ପାରିସରୁ ଗଲି ନିସ୍ । ସାଗରବେଳା ପାଇଁ ଖ୍ୟାତି ସମ୍ପୂର୍ଣ୍ଣ । ଅନ୍ୟ ପ୍ରସିଦ୍ଧି ପୁଷ୍ପ ଉତ୍ସବ ପାଇଁ । ନ ଦେଖିଲେ କଳନା କରି ହେବ ନାହିଁ ଏ ଉତ୍ସବର ମାଦକତା, ବିପୁଳତା । ହଜାର ହଜାର ଲୋକ ରୁଣ୍ଡ ହୁଅନ୍ତି ସାଗରବେଳାରେ ସନ୍ଧ୍ୟାପରେ । ନଅଟାବେଳକୁ ପୁଷ୍ପସମ୍ଭାର ଆରମ୍ଭ ହୁଏ । ପ୍ରଥମେ ଆସନ୍ତି ମୁଣ୍ଡ ବୋଝରେ ଶୋଭାଯାତ୍ରୀ, କି ଅପରୂପ ଶୋଭା । ଅଣ୍ଟା ଓପରକୁ ମସ୍ତକ ସହିତେ, ଫୁଲରେ ଗୋଟିଏ ଗୋଟିଏ ପ୍ରକାଣ୍ଡ ଖୋଳ । ତା ପଛକୁ, ସାଇକେଲ ମଟରସାଇକେଲ, ମଟରଗାଡି, ଟ୍ରକ, ବସ, ଘୋଡାଗାଡି, ହାତଟଣାଗାଡି ଶହ ଶହ ସଂଖ୍ୟାରେ ବୋହି ଚାଲନ୍ତି ଫୁଲ ସ୍ତୁପମାନ । ବର୍ଣ୍ଣ ସୁଗନ୍ଧରେ ମାଇଲ ମାଇଲ ପୂରିଯାଏ । ଦେଖାଣାହାରୀ ହାତତାଳି, ଆନନ୍ଦ ଧ୍ୱନି ଦେଇ ସ୍ୱାଗତ କରୁଥାନ୍ତି ଆଉ ନିଜ ଭିତରେ ପରସ୍ପରକୁ ଚିହ୍ନା ଅଚିହ୍ନା ନିର୍ବିଶେଷରେ କାଗଜ ଫୁଲ ଫୋପାଡୁ ଥାଆନ୍ତି । ପୃଥିବୀରେ ଯେ ଏତେ ଫୁଲ ଫୁଟେ ବା ଫୁଟିପାରେ, ଏ ଧାରଣା ଏ ଉତ୍ସବ ନ ଦେଖିଲେ ମନକୁ ଆସିବ ନାହିଁ । ଦେଶବିଦେଶରୁ ଲୋକ ଆସନ୍ତି ଏହା ଦେଖିବା ପାଇଁ । ଟୁରିଷ୍ଟ ଭିଡ କହିଲେ ନ ସରେ । କହନ୍ତି, ଅନ୍ତତଃ ଥରେ ନ ଦେଖିଲେ ଜୀବନ ସାର୍ଥକ ହେବ ନାହିଁ; ପୁରୀ ରଥରେ ବାମନକୁ ଦେଖିଲା ପରି । ଫୁଲର ଯାତ୍ରାରେ ରାତି ପାହିଯାଏ ।

Digitized by srujanika@gmail.com

ପ୍ରତ୍ୟୁଷରେ ଭାସୁଥାଏ ସାଗର ବକ୍ଷରେ ପୁଷ୍ପ ରାଶି । ଢ଼େଉ ନଥାଏ । ପାଣିଉପରେ ପଡିରହେ ପୁଷ୍ପ ପ୍ରଚ୍ଛଦପଟ । ବେଳାଭୂମିରେ ସହସ୍ର ଚୌକି । ତମ ଇଚ୍ଛାରେ ତମେ ବସି ଉପଭୋଗ କର ରୌଦ୍ରତାପ ବା ଦୃଶ୍ୟାବଳୀ । ଚୌକୀଭଡା ସାମାନ୍ୟ । ନେବାକୁ ପିଆଦା ନାହିଁ । ଠାକୁ ଠାଆ ବାକ୍ସ ଅଛି, ବାକ୍ସ ଉପରେ କଣାରେ ଭଡା ପଇସା ତମେ ପକାଇଦବ । କେହି ଠକିବାର ଦେଖିଲି ନାହିଁ ।

ନିସ୍ ପାଖରେ ମଣ୍ଟେ କାର୍ଲୋ । ସମୁଦ୍ରକୂଳରେ ଛୋଟ ପାହାଡିଆ ଜାଗା । ଆମ ହିଲ୍ ଷ୍ଟେସନ୍ ପରି ଦିଶେ । ପାଣିତଟକୁ ଲାଗି ଏକ ନିସ୍ତବ୍ଧ କୋଠା । ସଭ୍ୟ ଜଗତର କଳଙ୍କ ପୀଠ । ପୃଥିବୀର ଧନିକ ଶ୍ରେଣୀ ଆସନ୍ତି ଜୁଆ ଖେଳିବାକୁ କାସିନୋକୁ । ସର୍ବହରା ହୋଇ ଫେରନ୍ତି କେତେକ । ଅନର୍ଜିତ ଲାଭରେ ଲୋଭଗ୍ରସ୍ତ ଆଉ କେତେକଙ୍କ ପକେଟ ଫୁଲିଉଠେ । ଆଗା ଖାଁଙ୍କର ଏ ପ୍ରିୟସ୍ଥଳୀ, ଧନ ମର୍ଯ୍ୟାଦାର ଶୀର୍ଷ କୋଠି ଏହି କାସିନୋ । ସିଗାର କଟୁସୁବାସ ଦ୍ୱାରଦେଶରେ ଅଭ୍ୟର୍ଥନା ଜଣାଏ । ଟେବୁଲ ଚାରିପଟେ ବସିଥାନ୍ତି ନିର୍ବାକ ଖେଳାଳୀ, ଅର୍ଥ ଭଣ୍ଡାରର ଅଧିକାରୀ । ପ୍ରବେଶ ପାଇଁ ଯୋଗ୍ୟତାର ପ୍ରମାଣ ଆବଶ୍ୟକ । ନାରୀସଙ୍ଗିନୀ ଥାଇ ଖେଳାଳୀଙ୍କର ମନ ଅଧିକ । ଏକାକିନୀ କ୍ରୀଡାରତା କ୍ୱଚିତ ।

ମଣ୍ଟିକାର୍ଲୋରେ ଗିରିଉପରେ ଗୋଟିଏ ରାଜପ୍ରାସାଦ । ଟୁରିଷ୍ଟ ଯାଆନ୍ତି ସନ୍ଧ୍ୟାପରେ ଦ୍ୱିତଳ ବାଲ୍‌କନିରେ ରାଣୀଙ୍କ ଦର୍ଶନ ପାଇଁ । ତକୁ ଅଭିନନ୍ଦନ ଜଣାନ୍ତି । ସ୍ମିତହାସ୍ୟ, ହସ୍ତ ଉତ୍ତୋଳନରେ ଉତ୍ତର ମିଳେ ।

ଆଥେନ୍ସରେ ବିମାନ ଓହ୍ଲାଇଲା ସମୁଦ୍ରକୂଳରେ । ପାଣିର ଏତେ ନିକଟରେ ବିମାନ ଘାଟୀ ଅନ୍ୟତ୍ର ନାହିଁ । ବୁଲୁଥିଲାବେଳେ ଗୋଟିଏ ଛାତ୍ରଛାତ୍ରୀ ଦଳ ଭେଟିଲି । ଦଶବର୍ଷ ତଳର ସମସ୍ତେ । ଆଳାପ କରିବା ପାଇଁ ପଚାରିଲି— ଇଂରେଜୀ କେହି ଜାଣନ୍ତି ନାହିଁ କି ? ଉତ୍ତରରେ ସମସ୍ତେ ହାତଟେକିଲେ । ସେମାନେ ୪ଟି ଭାଷା ଶିଖନ୍ତି । ମାତୃଭାଷା, ଇଂରେଜୀ, ଫ୍ରେଞ୍ଚ, ସ୍ପାନିସ କିମ୍ବା ଜର୍ମାନ । ଆମ ଦେଶରେ ତ୍ରିଭାଷା ଫର୍ମୁଲା ହାଇସ୍କୁଲରେ ଚଳିପାରୁ ନାହିଁ ।

ଭିଆନା ଏକ ସ୍ୱପ୍ନପୁରୀ । ଅରକେଷ୍ଟ୍ରା ଶୁଣିବାକୁ ସବୁଆଡୁ ଲୋକେ ଆସନ୍ତି । ପ୍ୟାରିସ, ଲଣ୍ଡନ, ନିଉୟର୍କରେ ଶୁଣିଛି । ଭିଆନା ତାକୁ ବଳି । ଦୁଇ ସନ୍ଧ୍ୟା କଟାଇଲି । ୧୬୮ ଜଣଙ୍କର ବିପୁଳ ବାଦ୍ୟଧ୍ୱନିରେ ଘର କମ୍ପୁଥାଏ । ଦ୍ୱିତୀୟ ମହାସମରରେ ଗୃହଟି ଧ୍ୱଂସ ହୋଇଥିଲା । କାରିଗରଙ୍କ କୌଶଳରେ ପୂର୍ବପରି ଠିକ୍ ଗଢ଼ାହୋଇଛି । ଆମେ ଚେଷ୍ଟା କଲେ କୋଣାର୍କ ପୁଣି ଗଢ଼ା ହୋଇ ପାରନ୍ତା ।

Digitized by srujanika@gmail.com

ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କ ଇଚ୍ଛା ଓ ଚେଷ୍ଟାରେ ସୋମନାଥ ମନ୍ଦିର ତ ମୂଳରୁ ଚୂଳଯାଏ ପୁଣି ନୂଆ ହୋଇ ଗଢ଼ାହୋଇ ପାରିଲା । ଇଜିପ୍ଟରେ ଆସ୍ୱାନ୍ ଡାମ ପାଇଁ ଯେତେକ ପୁରାତନ ପିରାମିଡ ଭଙ୍ଗା ଯାଇଥିଲା, ସେ ସବୁର ପ୍ରତି ପ୍ରସ୍ତର ଖଣ୍ଡର ଚିହ୍ନ ରଖି, ପୁଣି ସେହି ପଥର ସବୁ ସଜାଡ଼ି ସମାନ ସଂଖ୍ୟକ ପୂର୍ବପରି ପିରାମିଡ ଗଢ଼ାହୋଇଛି କୌଶଳୀ କାରିଗରଙ୍କ ଦ୍ୱାରା । ପ୍ରାଚୀନ କୀର୍ତ୍ତିର ଉଦ୍ଧାର, ସଂରକ୍ଷଣ, ପୁନର୍ବାର ନିର୍ମାଣ କୌଶଳରେ ଫରାସୀ ଆର୍କିଟେକ୍ଟ, ଇଞ୍ଜିନିଅର, କାରିଗରଙ୍କର ଖ୍ୟାତି ରହିଛି । ଦ୍ୱିତୀୟ ମହାସମରରେ ଧ୍ୱଂସ ବା ବିକ୍ଷତ ହୋଇଯାଇଥିବା ଭିଏନାର ବାଦ୍ୟଶାଳା, ଲଣ୍ଡନର ୱେଷ୍ଟମିନିଷ୍ଟର ହଲ ପ୍ରଭୃତି କେତେ ପ୍ରସିଦ୍ଧ ସୌଧ ପୁନର୍ଗଠିତ ହୋଇଗଲା ପୂର୍ବତନ ଅବସ୍ଥାକୁ ଶିଳ୍ପୀ ମାନଙ୍କର କୌଶଳରେ । ଆମ କୋଣାର୍କ ଥରେ ଭାଙ୍ଗିଯାଇଛି ବୋଲି ତାର ପୂନର୍ଗଠନ କାହିଁକି ନ ହୋଇପାରିବ । କାରୀଗର କୁଳ, କୌଶଳ ଅଦ୍ୟାପି ଉତ୍କଳରେ ଦୁର୍ଲଭ ନୁହନ୍ତି ।

ଏହି ବିଷୟରେ ରାଷ୍ଟ୍ରପତି ସଞ୍ଜୀବ ରେଡିଙ୍କୁ ମେମୋରେଣ୍ଡମ ଦେଲୁ—ବିଶ୍ୱନାଥ ଦାସ, ହରେକୃଷ୍ଣ ମହତାବ, ରାଧାନାଥ ରଥ, ନିତ୍ୟାନନ୍ଦ କାନୁନ୍‌ଗୋ ଓ ମୁଁ । ରାଜ୍ୟପାଳ ଭଗବତ ଦୟାଳ ଶର୍ମା ସୁପାରିଶ କଲେ । ଜନତା ସରକାରର କେନ୍ଦ୍ର ମନ୍ତ୍ରୀ ପ୍ରତାପଚନ୍ଦ୍ର ଆସିଲେ, ସରଜମିନକୁ । ରାଜଭବନରେ ଦ୍ୱିପହର ଭୋଜନବେଳେ ଡକ୍ଟର ମହତାବ ଓ ମୁଁ ତାଙ୍କ ସହିତ ରାଜ୍ୟପାଳଙ୍କ ଉପସ୍ଥିତିରେ ଆଲୋଚନା କଲୁ । ପରେ ଶ୍ରୀଯୁକ୍ତ ଚନ୍ଦ୍ରଙ୍କ ସହିତ କୋଣାର୍କ ଗଲି । ପ୍ରତ୍ନତତ୍ତ୍ୱ ବିଭାଗର ଡିରେକ୍ଟର ଜେନେରାଲ ଦିଲ୍ଲୀରୁ ଆସିଥିଲେ ସେଠାକୁ । ଶିକ୍ଷାମନ୍ତ୍ରୀ ପ୍ରଦୀପ୍ତକିଶୋର ଦାସ, କେନ୍ଦ୍ର ରାଷ୍ଟ୍ରମନ୍ତ୍ରୀ ସମରେନ୍ଦ୍ର କୁଣ୍ଡୁ, ରାଜ୍ୟମନ୍ତ୍ରୀ ଶ୍ରୀ ବିଶ୍ୱଭୂଷଣ ହରିଚନ୍ଦନ ମଧ ସେଠାକୁ ଯାଇଥାନ୍ତି । ସେଠାରେ ମନ୍ଦିର ନିକଟରେ ଦୀର୍ଘ ଆଲୋଚନା ହେଲା । ଦୁର୍ଭାଗ୍ୟର କଥା ସେଠାରେ ଆଲୋଚନାବେଳେ ସମରେନ୍ଦ୍ର କୁଣ୍ଡୁ ଡିରେକ୍ଟର ଜେନେରାଲଙ୍କ ପ୍ରତି ରୁଢ଼ ବ୍ୟବହାର ଓ କଟୁ ମନ୍ତବ୍ୟ ପ୍ରକାଶ କରିବାରେ ସେ ବିଗିଡ଼ିଗଲେ । ପରେ ପ୍ରତାପଚନ୍ଦ୍ର ମତେ କହିଲେ, ଅଫିସରମାନଙ୍କୁ ନେଇ କାର୍ଯ୍ୟ କରିବାକୁ ପଡିବ, ତାଙ୍କୁ ତିକ୍ତ କରିଦେଲେ ଏ ପ୍ରକାର ଅମାମୁଲି କାମ କରାଇବା କଷ୍ଟକର । ସତକୁ ସତ ଡିରେକ୍ଟର ଜେନେରାଲ ପରେ ବିରୋଧ ଦୁହା ଉଠାଇଲେ । ଜନତା ସରକାର ଭାଙ୍ଗିଲା । ଆମ ଉଦ୍ୟମ ବ୍ୟାହତ ହେଲା । ତାଙ୍କ ପରେ କଂଗ୍ରେସ ସରକାରରେ ଜାନକୀବଲ୍ଲଭ ପଟ୍ଟନାୟକଙ୍କୁ ଏକାଧିକବାର ଲିଖିତ ଓ ମୌଖିକ

Digitized by srujanika@gmail.com

ଅନୁରୋଧ କରାଗଲା । ସବୁ ନିଷ୍ଫଳ । ଆଶୁ ଭୋଟ କୋଣାର୍କରୁ ମିଳିବାର ସମ୍ଭାବନା ତ ନାହିଁ !!

ସୁଇଜରଲ୍ୟାଣ୍ଡକୁ କହନ୍ତି ସୌନ୍ଦର୍ଯ୍ୟ ନିକେତନ । ଜୁରିଚରେ ଓହ୍ଲାଇ ହୋଟେଲ ବହିରେ ଦସ୍ତଖତ କଲାବେଳେ ତିନିଜଣ ଭାରତୀୟ ଜଣେ ପାକିସ୍ଥାନୀ ସେଠାରେ ପହଞ୍ଚିଲେ । ତାଙ୍କ ଭିତରୁ ଜଣେ କର୍ମରତା ତରୁଣୀ ପ୍ରତି ଅସଙ୍ଗତ ମନ୍ତବ୍ୟ ପ୍ରକାଶ କରନ୍ତେ, ହୋଟେଲ ମାନେଜର ଚାରିଜଣଙ୍କୁ ଫେରାଇ ଦେଲେ । ସେମାନଙ୍କର ଅନ୍ୟତ୍ର ରହିବାର ସୁବିଧା ନାହିଁ, ରାତ୍ରି ହୋଇଗଲାଣି ଇତ୍ୟାଦି ସବୁ ଉଜୁହାତ ବ୍ୟର୍ଥ ହେଲା । ଭଲ ଶିକ୍ଷା ପାଇଲେ ଟୋକାଏ । କାନମୁଣ୍ଡା ଆଉଁସି ଗଲେ ବସା ଅଣ୍ଡାଳିବାକୁ । ଜୁରିଚରେ ଥିଲାବେଳେ କଣ୍ଡକ୍ଟ ଟୁରରେ ଗଲି ରାଇନ ନଦୀର ଜଳପ୍ରପାତ ଦେଖିବାକୁ । ରାସ୍ତା ମନମୁଗ୍ଧକର । ଅଧାବାଟ ପରେ ଫ୍ରାନ୍ସ ଭିତରେ ପଶିବାକୁ ହୁଏ । ସେହି ସ୍ଥାନରେ ଗାଡି ଅଟକିଲା, ଗାଇଡ କହିଲେ, ଟୁରିଷ୍ଟମାନେ ଫ୍ରାନ୍ସ ଭିସା ବାହାର କର । କେତେକ ତ୍ରସ୍ତ ହେଲେ, ତାଙ୍କ ପାସ୍‌ପୋର୍ଟରେ ସେ ଭିସା ନଥିଲା । ଗାଇଡଙ୍କ ପ୍ରସ୍ତାବ, ଭିସାହୀନ ଯାତ୍ରୀ ଓହ୍ଲାଇ ଯାଇ ସେଠାରେ ରହନ୍ତୁ, ଫେରିଲାବେଳକୁ ଜୁରିଚ ଫେରିବେ । ନିର୍ଜନ ସ୍ଥାନ । କେତେକ ଯାତ୍ରୀ ଗାଇଡକୁ ଦୋଷ ଦେଲେ, ମୂଳରୁ ଏକଥା କାହିଁକି ନ କହିଲେ । ଜଣେ ବୟସ୍କା ମହିଳା କାନ୍ଦ କାନ୍ଦ ହୋଇ ବ୍ୟାଗଧରି ବସରୁ ଓହ୍ଲାଇଲାବେଳକୁ ଜଣା ପଡିଲା, ଗାଇଡ କୌତୁକ କରୁଥିଲେ ଯାତ୍ରୀଙ୍କ ସଙ୍ଗେ । ଭିସାର ପ୍ରୟୋଜନ ନଥିଲା । ଗାଇଡଙ୍କ ମୁଣିରୁ କମଳା ଲେମ୍ବୁ ସମସ୍ତଙ୍କୁ ଗୋଟିଏ ଗୋଟିଏ ମିଳିଲା ହସରୋଳ, ମନଖୁସି ଗପ ମଧ୍ୟରେ । ଜଳ ପ୍ରପାତ ଦେଖିବାପାଇଁ କାଠ ପ୍ଲାଟଫର୍ମ । ତା ପାଖକୁ ଲାଗି ଚା' ଟୁଙ୍ଗି । ଯେ ଯାଆନ୍ତି, ଚା'କପ ଧରି ପ୍ଲାଟଫର୍ମ ଉପରେ ଘଣ୍ଟାଧିକ କାଳ ବସି ଦେଖନ୍ତି ।

ଜେନିଭା ପ୍ରଥମ ମହାସମର ଶେଷ ହେବା ପରେ ପୃଥିବୀର ସବୁ ରାଷ୍ଟ୍ରଙ୍କର କେନ୍ଦ୍ରସ୍ଥଳ ହୋଇ ଉଠିଲା, ଲିଗ୍ ଅଫ୍ ନେସନ ସେଠାରେ ବସିବାରୁ । ଶାନ୍ତି ପ୍ରତିଷ୍ଠାର ସମୂହ ଉଦ୍ୟମ ତା ପୂର୍ବରୁ କେବେ କେଉଁଠାରେ ହୋଇ ନଥିଲା । ଜେନିଭା ହ୍ରଦ ବିମୋହିତ କରେ ଦର୍ଶକକୁ । ଦିନକୁ ଦୁଇଥର ଯାଉଥିଲି, ମନବୋଧ ହୁଏ ନାହିଁ । ଚିଲିକା କଥା ମନେ ପଡୁଥାଏ । ପାଖରେ ବସିଥିବା ଜଣେ ଭାରତୀୟ ଶ୍ରୀନଗର ଡାଲ ଲେକ କଥା କହୁଥାନ୍ତି ତାଙ୍କ ସହଚରୀଙ୍କୁ । ମଟର ବୋଟରେ କେତେଲୋକ ବୁଲୁଥାନ୍ତି । ମୁଁ ବାଦ ପଡିଲି ପ୍ରତିଥର ବିଳମ୍ବରେ ପହଞ୍ଚିବାରୁ । ଚୁପ୍‌ଚାପ ବସିଲେ ଯେଉଁ ଦୃଶ୍ୟମିଳେ, ବୋଟ ବିହାରୀ ସେଥିରୁ ବଞ୍ଚିତ ।

Digitized by srujanika@gmail.com

ଢେନିଭାରେ ମନେପଡିଲା, ଆମେରିକାର ଲେକ୍ ପ୍ଲାସିଡ, ଯେଉଁଠାରେ ରୋଟାରୀ କାର୍ଯ୍ୟକ୍ରମରେ ସାତଦିନ କଟାଇଥିଲି । ସେଠା ହ୍ରଦ ପର୍ବତମାଳା ବେଷ୍ଟିତ । ଘନ ବୃକ୍ଷରାଜି ସବୁଆଡେ । ଗୋଟିଏ ବଡ ହୋଟେଲ ଅଛି । ବର୍ଷସାରା, କନଫରେନ୍ସ ସେମିନାର ଲାଗିଥାଏ ସେଠାରେ । ରୋଟାରୀ ଇଣ୍ଟରନାସନାଲ ଆସେମ୍ବ୍ଲି ହେଉଥିଲା ସେଠାରେ ସେ ବର୍ଷ ମେ ମାସରେ । ପୃଥିବୀର ସବୁଆଡୁ ପ୍ରାୟ ପାଞ୍ଚଶତ ନରନାରୀ ଆସିଥାନ୍ତି । କାର୍ଯ୍ୟସୂଚୀ ମଧ୍ୟରେ ଆଳାପର ଏକ ଅପୂର୍ବ ସୁଯୋଗ । ସମସ୍ତଙ୍କ ମଧ୍ୟରେ ଘନିଷ୍ଠ ପରିଚୟ ହୋଇଯାଏ, ବନ୍ଧୁତ୍ୱ ଆରମ୍ଭ ହୁଏ କେତେକଙ୍କ ମଧ୍ୟରେ ।

ପୂର୍ବରୁ କାନାଡା, ଆମେରିକା, ବ୍ରିଟେନ୍ ଆସିଥିଲାବେଳେ ଇଉରୋପ ଦେଇ ଫେରିଥିଲି, ରୋମ, ଇଜିପ୍ଟ ବାଟେ । ଏ ଯାତ୍ରାରେ ରୋମ ବାଦଦେଇ ରୁଷିଆ ଗଲି । ଭିସାପାଇଁ ଲଣ୍ଡନରେ ଯୋଗାଡ କରିଥିଲି । ରୁଷିଆକୁ ଯିବାରେ ବହୁ କଟକଣା । ଏକମାତ୍ର ସଂସ୍ଥା ଇନ୍‌ଟୁରିଷ୍ଟର ସହାୟତା ନବାକୁ ହୁଏ । ଡଲାର ପାଉଣ୍ଡ ବଦଳାଇ ରୁଷିଆ ମୁଦ୍ରା ଯାହା ସଂଗ୍ରହ କଲି, ତାହା ପାସ୍‌ପୋର୍ଟରେ ଦରଜ ହେଲା । ଫେରିଲାବେଳକୁ ଯାହା ବଳିଲା ତାକୁ ଆଣିବା ନିଷେଧ ବୋଲି ପରେ ଜାଣିଲି । ଆଗରୁ ଜାଣିପାରିଥିଲେ, ଖର୍ଚ୍ଚ କରି ଦେଇଥାନ୍ତି ସବୁ । ଅକାରଣ ଛାଡି ଆସିବାକୁ ହେଲା ବଳକା ମୁଦ୍ରାତକ ରୁଷିଆ ସରକାରଙ୍କୁ ବାଧ ଦାନସୂତ୍ରେ । ଶୁଣିଥିଲି ଜାମସେଦପୁରର ଡାକ୍ତର ଉଦୟକର ମିଶ୍ର (କମୁନିଷ୍ଟ) ଅସୁସ୍ଥ ଥାଇ ମସ୍କୋରେ ଚିକିତ୍ସିତ ହେଉଛନ୍ତି । ବହୁ ଦିନର ପରିଚିତ ବନ୍ଧୁ ସେ ।

ମସ୍କୋ ବିମାନ ବନ୍ଦରରେ ବିଳାସସଜ୍ଜା କମ । କର୍ମଚାରୀଙ୍କ ବ୍ୟବହାର ରୁକ୍ଷପରି ଲାଗିଲା । ଟାକ୍‌ସିରେ ଗଲି ହୋଟେଲକୁ । ରାସ୍ତା ପ୍ରଶସ୍ତ, ଦ୍ୱିପାର୍ଶ୍ୱରେ ବୃକ୍ଷରାଜି । ମୂଲ୍ୟ ଅନୁଯାୟୀ ହୋଟେଲ ଆରାମଦାୟକ ନୁହେଁ । ଲିଫଟରେ, କରିଡରରେ ଗାଲିଚା ନାହିଁ । ଅଧିକାଂଶ ଅଂଶ ଚଟାଣ ଅନାବୃତ କାଠ ବା ସିମେଣ୍ଟ । ମତେ ଲାଗୁଥାଏ, କିଏ ମୋ ପିଛା ଧରିଛି ପରା । ସଠିକ କହିପାରିବି ନାହିଁ । ପରଦିନ ସକାଳେ ପ୍ରଥମ କାମ ହେଲା ହସପିଟାଲକୁ ଟେଲିଫୋନ୍ କରି ଉଦୟକରଙ୍କ ଚିକିତ୍ସା ବିଷୟ ବୁଝିବା । ହସ୍ପିଟାଲ ନାମ ଆଗରୁ ବୁଝିଥିଲି । ଟେଲିଫୋନ୍ କଲାମାତ୍ରେ ଅପରପଟରୁ ଯେତେ ପ୍ରଶ୍ନ ହେଲା, ସେଥିରେ ଆମ ଚଉଦପୁରୁଷ ଖବର ଦେବାକୁ ହେଲା । କିଛି ସମୟ ପରେ ଉଦୟନାଥ ଟେଲିଫୋନ୍ ଧରିଲେ । ତାଙ୍କ କଥାରୁ ବୁଝିଲି ମୋ ଟେଲିଫୋନ୍ କରିବାରେ ସେ ବୋଧହୁଏ ଅପ୍ରତିଭ ବୋଧ କରୁଛନ୍ତି ।

Digitized by srujanika@gmail.com

ତାଙ୍କ ଅସୁସ୍ଥତା କଥା, ହସପିଟାଲ ନାମ, ମୁଁ କିପରି ଜାଣିଲି, ତାହା ପଚାରିଲେ ଆଶ୍ଚର୍ଯ୍ୟ ହୋଇ । ଶେଷରେ କହିଲେ ଚିକିତ୍ସାରେ ସ୍ୱାସ୍ଥ୍ୟରେ ଉନ୍ନତି ଘଟିଛି । ମୁଁ ହସପିଟାଲ ଯାଇ ଦେଖା କରିବି କହିବା ମାତ୍ରେ ସେ ଅଧୀର ହୋଇ ନାସ୍ତି କଲେ ଏବଂ ସେ ନିଜେ ଆସି ହୋଟେଲରେ ମୋ ସଙ୍ଗେ ଭେଟିବେ ବୋଲି କହିଲେ । ମୋ ରହିବା ଅବଶିଷ୍ଟ ଛଅଦିନ ଭିତରେ ସେ ଆସିନାହାନ୍ତି । କଅଣ କେଉଁଠି ଗୋଳମାଳ ରହିଲା, ମୁଁ ବୁଝିପାରିଲି ନାହିଁ । ଅନ୍ୟତ୍ର ହୋଇଥିଲେ, ପୀଡିତ ବନ୍ଧୁ ଉଲ୍ଲସିତ ହୋଇଥାଆନ୍ତେ ।

ପ୍ରଧାନ ରାସ୍ତାର କଡରେ ଏକ ତ୍ରିତଳ କୋଠା ଦିନେ ଅପରାହ୍ନରେ ଭଙ୍ଗା ହେବାର ଉପକ୍ରମ ଦେଖିଥିଲି ବସ୍‌ରୁ । ତା ପରଦିନ ପୂର୍ବାହ୍ନ ଦଶଟା ବେଳକୁ ସେ ବାଟେ ଗଲାବେଳେ ଦେଖିଲି ଚିହ୍ନ ବର୍ଣ୍ଣ ନାହିଁ, ଉନ୍ମୁକ୍ତ ପରିଷ୍କୃତ ଚଟାଣ ଛଡା । ଆମ ଦେଶରେ ମାସକ ଯାଏ ରାସ୍ତାଘାଟ ଧୂଳି ଧୂସରିତ ହେଉଥାନ୍ତା । ପଚାରିବାରେ ଜାଣିଲି, ଭାଙ୍ଗିବା ଦ୍ରୁତ ଯନ୍ତ୍ର ସାହାଯ୍ୟରେ ସେପରି ଘରଟିଏ ଛଅଘଣ୍ଟା ମଧ୍ୟରେ ଭାଙ୍ଗିପାରନ୍ତି; ମଳୁଆ ବୋଝେଇ ହୁଏ ଦଶଟିଆ ଟ୍ରକ୍ ରେଲ୍‌ରେ ଯନ୍ତ୍ର ସାହାଯ୍ୟରେ । ବାରଘଣ୍ଟାରେ ସବୁ ସାଫ୍, ଏହାର ତୁଳନା ଅନ୍ୟତ୍ର ଦେଖିନାହିଁ ।

ଦୋକାନପୁରୀରେ ଦେଖିଲି, ଏକା ଜିନିଷର ଦୋହରା ଦୋକାନ ଏକ ଦୋକାନଦାରର । ଗୋଟିକରେ ମିଳେ କଣ୍ଟ୍ରୋଲ ଦରରେ ଖାଉଟି କାର୍ଡ ପରିମାଣରେ । ଅପରଟିରୁ ଅଧିକ ପରିମାଣ ମିଳିପାରିବ ଚାରିଗୁଣରୁ ଅଧିକ ମୂଲ୍ୟରେ । ଟୁରିଷ୍ଟମାନେ ଦୋକାନରୁ ଆମେରିକାନ ଡଲାର ଦେଇ କିଣିଲେ ରିହାତି ମୂଲ୍ୟ ଦିଅନ୍ତି; ଯାହା ପ୍ରାୟ ଏକ ଚତୁର୍ଥାଂଶ କମ୍ । ଆମେରିକା ସଙ୍ଗେ ସିନା ଝଗଡା, ତାଙ୍କ ମୁଦ୍ରା ପାଇଁ ଅତ୍ୟଧିକ ଆଦର । ଟୁରିଷ୍ଟ ରୁଷିଆ ବାହାରକୁ ଜିନିଷ ନେବା ସାର୍ଟିଫିକେଟ୍ ଦେଲେ, କିଣା ଦରରେ ରିହାତି ମିଳେ । ହୋଟେଲ ସହବାସୀଙ୍କ ଠାରୁ ଶୁଣିଲି,'ଜଣେ ନାଗରିକ ବର୍ଷକୁ ୨ ହଳ ଜୋତା, ୨ଟି ପୋଷାକ କାର୍ଡରେ ପାଏ, ଯେପରି ଖାଦ୍ୟାଦି ପଦାର୍ଥର ନିର୍ଦ୍ଧିତ ପରିମାଣ ଉଲ୍ଲେଖ ଥାଏ । ସେଥିରୁ ଅଧିକା ଅକ୍ଲେଶରେ ମିଳେ ଅତ୍ୟଧିକ ଦରରେ ପ୍ରକାଶିତ ଭାବରେ । ଶୁଣିଲି ଉପାର୍ଜନ ହିସାବରେ, ଅଧ୍ୟାପକମାନେ ସର୍ବାଧିକ ପାରିଶ୍ରମିକ ପାଆନ୍ତି । ଖାଇବା, ପିନ୍ଧିବା, ରହିବାର ସାଧାରଣ ଆବଶ୍ୟକତା ପୂରଣର ବ୍ୟବସ୍ଥା ଥିବାରୁ ସମସ୍ତେ ସେଠାରେ ନିଶ୍ଚିନ୍ତ । ମନ କିନ୍ତୁ ଅଶାନ୍ତ, ମୋର ଧାରଣା ହେଲା ।

Digitized by srujanika@gmail.com

ୟୁନିଭରସିଟି ଅଞ୍ଚଳକୁ ଦିନେ ଗଲି ଆପେ ଆପେ— ଟୁରରେ ନୁହେଁ । ଉଦ୍ୟାନ, ଲନ, ଲାଇବ୍ରେରୀ, କ୍ରୀଡା ଗୃହ, ସନ୍ତରଣ ଆଦ୍ୱତା ଜିମ୍ନାସିଅମ ଯାହାକୁ ଯେତେ । ଛାତ୍ର ଛାତ୍ରୀ ଭରପୁର । ସମସ୍ତେ ଇଂରାଜୀ ବୁଝନ୍ତି, କହନ୍ତି କମ । ଛାତ୍ରାବାସ ଭିତରକୁ ପଶି ପାରିଲି ନାହିଁ; କିଛି ନା କିଛି ଉଜୁହାତ ଉଠୁଥାଏ । କଣ୍ଡକ୍ଟ ଟୁରରେ ପରଦିନ ଗଲି । ଆଗଦିନ ଠାରୁ କମ ଦେଖିବାକୁ ମିଳିଲା । ଗାଇଡ କହୁଥାନ୍ତି ଚାରିଭାଷାରେ, ଇଂରେଜୀ, ଫ୍ରେଞ୍ଚ, ସ୍ପାନିସ, ଋଷିଆନ । ରେଡସ୍କୋଆର ଦେଖାଇଲେ ତନ୍ନ ତନ୍ନ କରି । ପଟାଟୋପରେ ଗୋଟିଏ ସମ୍ବର୍ଦ୍ଧନା ଚାଲିଥିଲା ସେତେବେଳେ ।

ହୋଟେଲ ଖାଇବା ଘରେ ମୋ ଟେବୁଲରେ ଜଣେ ମସ୍କୋବାସୀ ରାତିରେ ବସୁଥିଲେ । ଆଳାପରେ ଜାଣିଲି, ସେ ଇଞ୍ଜିନିଅର— ଆମର ସୁପରିଟେଣ୍ଡିଙ୍ଗ ଇଞ୍ଜିନିଅର ପାହ୍ୟାର ସମାନ ପରି ବୋଧ ହେଲା । ଜଳସେଚନରେ ଦକ୍ଷ କିନ୍ତୁ ରହିଥାଆନ୍ତି ମସ୍କୋର ପାର୍କମାନଙ୍କର ହେପାଜିତ ଦାୟିତ୍ୱରେ । ମତେ ତାଙ୍କ ଫ୍ଲାଟକୁ ନେବାକୁ କହିଲେ । ସଙ୍ଗେ ସଙ୍ଗେ ପତ୍ନୀ ସ୍ୱଭାଷାରେ କିଛି ସୂଚାଇଲେ । ତଥାପି, ସ୍ଥିର ହେଲା, ମୁଁ ଗୋଟିଏ ସନ୍ଧ୍ୟା ତାଙ୍କ ଫ୍ଲାଟରେ କଟାଇବି । ମୁଁ ରହିବା ଭିତରେ ସେ ନେଇପାରିଲେ ନାହିଁ, ଯଦିଓ ୩/୪ ଥର ତାପରେ ସାକ୍ଷାତ ହୋଇଛି । ପ୍ରତିଥର ପରେ ଯିବାପାଇଁ କହନ୍ତି । ବୋଧହୁଏ ବିଦେଶୀକୁ ସ୍ୱସ୍ଥାନକୁ ନେବାରେ ବାରଣ ଥାଏ ବା ଅନୁମତିସାପେକ୍ଷ ଥାଏ । ସେ ସୁବିଧା କରି ନପାରି ଅସ୍ୱସ୍ତି ବୋଧ କରୁଥାନ୍ତି ମୋ ପାଖରେ ।

ଦିନେ ମୋ ଖାଇବା ଟେବୁଲରେ ରାତିରେ ମୁଁ ଏକୁଟିଆ । ପାଖ ଟେବୁଲରେ ପାଞ୍ଚଜଣ, ବାପ, ମା, ପୁଅ, ଝିଅ, ଝିଅର ଭାବୀ ସ୍ୱାମୀ । ଷଷ୍ଠ ସ୍ଥାନରେ ପ୍ଲେଟ ଗ୍ଲାସ ଅଛି, ଚୌକି ଖାଲି । ମା ଆସି ମତେ ଡାକିଲେ ତାଙ୍କ ଭାଷାରେ । ବୋକାଙ୍କ ପରି ମୁଁ ଅନାଇଲି ତାଙ୍କ ଟେବୁଲ୍ ଆଡ଼େ । ଝିଅ ଉଠିଆସିଲା ହସି ହସି । ଇଂରେଜୀରେ କହିଲା, ତାଙ୍କର ଆଜି ଭୋଜି (feast),ମୁଁ ଯୋଗଦେଲେ ସେମାନେ ଖୁସି ହେବେ । ଆନନ୍ଦରେ ଗଲି, ଷଷ୍ଠସ୍ଥାନ ପୂରଣ କରିବା ପାଇଁ । କାହାପାଇଁ ସେ ସ୍ଥାନ ଅଭିପ୍ରେତ ଥିଲା, ପଚାରିଲି ନାହିଁ । ମା'ଙ୍କ ଛଡା ସମସ୍ତେ ଇଂରେଜୀ ଅଚ୍ଚ ଅଚ୍ଚ କହୁଥିଲେ । ଝିଅଟି ପ୍ରଗଲ୍‌ଭା । ବାକଦାନର ଭୋଜି । ମୋଠାରୁ ବୁଝିଲେ ମୋର ପରିଚୟ । ବାପ ଶିକ୍ଷକ, ମା ଗୋଟିଏ ଦୋକାନରେ କାମ କରନ୍ତି । ପୁଅ ୟୁନିଭରସିଟିରେ । ଝିଅ ଚିତ୍ରକଳାରେ ସଦ୍ୟ ପାଶ୍‌କରି ଚିତ୍ରାଶାଳାରେ ପ୍ରୋବେସନର୍ । ଭାବୀ ସ୍ୱାମୀ

Digitized by srujanika@gmail.com

ଡାକ୍ତର । ଆମୋଦରେ ଖିଆପିଆ ହେଉଥାଏ । ଖାଇବା ଘର ମଝିରେ ନାଚ ଆରମ୍ଭ ହେଲା । ଝିଅ ହଠାତ୍ ଡାକିଲା ମତେ ତା ସଙ୍ଗେ ନାଚିବାକୁ । ଓଲଟା କଥା ପୁରୁଷ ଡାକନ୍ତି ଝିଅକୁ ନୃତ୍ୟସଙ୍ଗ ପାଇଁ । ବାପା କହିଲେ, ଆଜି ପାନିର (ଝିଅର ଡାକନାମ) କଥା ତଳେ ପଡିବାର ନୁହେଁ । ଭାବୀ ସ୍ୱାମୀ ଈଷତ୍ ହସି ହଁ ଭରିଲେ । ଅଗତ୍ୟା ଉଠିଲି ମୁଁ ଝିଅ ସାଙ୍ଗରେ । ମୋ ଜୀବନରେ ଏ ପହିଲି ନାଚ । ନା ଜାଣେ ନାଚର ଢ଼ଙ୍ଗ, ନା ବୁଝେ ଗୀତବାଦ୍ୟର ତରଙ୍ଗ । ତାପରେ ମା'ଙ୍କ ସଙ୍ଗେ ନାଚର ପାଳି । ମା, ଝିଅ, ଉଭୟେ କୃତାର୍ଥ ଜଣେ ବିଦେଶୀ ସଙ୍ଗେ ନାଚିବାରେ । ଅସଲ ନାଚହେଲା ପାନିର ଭାବୀ ସ୍ୱାମୀ ସଙ୍ଗେ ଘଣ୍ଟା ଘଣ୍ଟା ଧରି । ଟେବୁଲକୁ ଆସି ପାନୀୟ ଉତ୍ସାହ ନେଇ ଯାଉଛନ୍ତି ଥରକୁ ଥର ନୃତ୍ୟ କେନ୍ଦ୍ରକୁ । ରାତି ବାରଟାରେ ଭୋଜି ଭାଙ୍ଗିଲା ।

ମସ୍କୋରୁ ବିଦାୟ ଏ ଯାତ୍ରାର ଶେଷ ପର୍ଯ୍ୟାୟ ।



Digitized by srujanika@gmail.com

# ପିତୃବିୟୋଗ

ନନାଙ୍କୁ ୧୯୬୯ ଅଗଷ୍ଟ ମାସ ୨୨ ତାରିଖରେ ୯୫ ବର୍ଷ ପୂରିଲା । ଖରାଦିନରେ, ହାଇକୋର୍ଟ ଛୁଟିବେଳେ କଟକ ଆସିଲେ, ଆମେ ପୁରୀ ଆସୁ କିଛିଦିନ ପାଇଁ । ସେ ବର୍ଷ ମଧ ଆସିଥିଲୁ । ନନା ବୋଉ କଟକରୁ ପୁରୀ ସଙ୍ଗରେ ଆସିଥିଲେ । ରଥଯାତ୍ରା ବାହୁଡା ପରେ ଫେରିଯିବାର କଥା । ନନାଙ୍କୁ ପଚାରିବାରେ ସେ କହିଲେ ଆଉ କିଛିଦିନ ରହିବା । ତାଙ୍କ ଇଚ୍ଛା ଅନୁସାରେ କଟକ ଫେରିବା ବନ୍ଦ ହେଲା । ମୁଁ କାର୍ଯ୍ୟ ଉପଲକ୍ଷେ କଲିକତା ଯାଇ କଟକ ଆସିଲି ୨୧ ତାରିଖ ସକାଳେ । ସ୍ତ୍ରୀ ପୁରୀରୁ ୨୨ ତାରିଖ ସକାଳେ ଟେଲିଫୋନ କଲେ, ନନାଙ୍କୁ ଜ୍ୱର ହୋଇଛି । ମୁଁ ସଙ୍ଗେ ସଙ୍ଗେ ପୁରୀ ଆସିଲି । ଆଗରୁ ସ୍ଥିର କରିଥିଲି ସେଦିନ ଆସିବା ପାଇଁ, କାରଣ ସେ ଦିନ ନନାଙ୍କର ୯୫ ବର୍ଷ ପୂରିବ ବୋଲି ଜଗନ୍ନାଥ ମନ୍ଦିରରେ ସାମାନ୍ୟ ଭୋଗର ବରାଦ ଥିଲା । ପୁରୀ ଆସି ବୁଝିଲି, ୨୦ ତାରିଖ ମେଘୁଆ ପାଗ ହୋଇଥିଲା, ପବନ ବୋହୁଥିଲା । ଓପରଓଳା ଆମ ଗାଁରୁ କେତେଜଣ ଆସିଥିଲେ ନନାଙ୍କ ସଙ୍ଗେ ସାକ୍ଷାତ ପାଇଁ । ନନା ସେତେବେଳେ ବିଶ୍ରାମ ନେଉଥିଲେ । ପରିଚାରକ ତାଙ୍କୁ ଖବର ଦେବାରେ ସେ ହଠାତ୍ ଉଠିପଡି ଖାଲି ଦିହରେ ବାରନ୍ଦାକୁ ଆସି ଗାଁବାଲାଙ୍କ ସଙ୍ଗେ କଥାବାର୍ତ୍ତା ହେଲେ ବହୁତ ସମୟ । ରାତିକୁ ସାମାନ୍ୟ ଜ୍ୱର ହେଲା । ୨୧ ତାରିଖ ନିତ୍ୟକର୍ମ ସବୁଦିନ ପରି ନିଜେ କଲେ, ରାତିରେ ଜ୍ୱର ରହିଲା । ୨୨ ତାରିଖରେ ମୁଁ ଆସି ହୋମିଓପାଥି ଔଷଧ ଚକ୍ରଧର ମିଶ୍ରଙ୍କଠାରୁ ଆଣିଦେଲି । ଅସୁସ୍ଥ ବୋଧ କରୁଥିଲେ, ଯନ୍ତ୍ରଣା କିଛି ନ ଥାଏ । ତା ପରଦିନ ୨୩ ତାରିଖ ସକାଳ ଦଶଟାବେଳେ ଶେଷ ନିଃଶ୍ୱାସ । ପ୍ରାୟ ଇଚ୍ଛାମୃତ୍ୟୁ ୯୫ ବର୍ଷ ପୂରିବା ବାସୀ ଦିନ । ୨୧ ତାରିଖ ସୁଦ୍ଧା 'ସମାଜ'କାଗଜ ପଢ଼ିଛନ୍ତି; ନିତ୍ୟକର୍ମ ନିଜେ ସାରିଛନ୍ତି । ରୋଗଗ୍ରସ୍ତ ସେ ନଥିଲେ । ଆଚରଣରେ ନିର୍ମଳତା, ଅଭାବ ଅନଟନ ମଧ୍ୟରେ ସାଧୁତା, ଆତ୍ମସମ୍ମାନରେ ଦୃଢ଼ତା, ଆମେ ସର୍ବଦା ତାଙ୍କଠାରେ ଦେଖିଆସିଛୁ— କେତେଦୂର

Digitized by srujanika@gmail.com

ଆମେ ତାହା ଆମ ଦିହକରେ ପାଳନ କରିଛୁ ସେ କଥା ଅନ୍ୟମାନେ କହିବେ । ତାଙ୍କୁ ଯେଉଁଦିନ ବୟସ ୭୫ ବର୍ଷ ହେଲା, ସେ ଦିନ ରାତିରେ ଖାଇବା ପୂର୍ବରୁ ବେବି, ବସନ୍ତ (ମୋ ଦୁଇପୁଅ) ୭୫ ଟି ଟଙ୍କା ତାଙ୍କୁ ଉପହାର ଦେଇଥିଲେ । ୯୫ ବର୍ଷକୁ ସେହିପରି କରିବାକୁ ମୁଁ ଭାବିଥିଲି; ହୋଇପାରିଲା ନାହିଁ । ନନାଙ୍କ ଦେହାବସାନ ସମ୍ବାଦ ରେଡିଓ,ଖବର କାଗଜରୁ ଜାଣି, କଟକ, ବାଲେଶ୍ୱର, ସିଂହଭୂମ, ବ୍ରହ୍ମପୁର, ପୁରୀରୁ ଚିଠି, ଟେଲିଗ୍ରାମ ଦ୍ୱାରା ଶ୍ରଦ୍ଧା, ସମବେଦନା ଜଣାଇଥିଲେ ଯେଉଁମାନେ, ସେମାନଙ୍କ ମଧ୍ୟରେ ଅନେକ ଥିଲେ ତାଙ୍କର ପରିଚିତ, ବୟସ୍କ ବ୍ୟକ୍ତି । ନନା ମଧ୍ୟମ ଭର୍ଣ୍ଣାକୁଲ ସ୍କୁଲରୁ ପାଶ୍ କରି, କଟକ ନର୍ମାଲ ଟ୍ରେନିଂ ସ୍କୁଲ ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲା ପରେ, ପୁରୀ ହରଚଣ୍ଡୀ ମାଇନର ସ୍କୁଲରେ ଶିକ୍ଷକତା ଆରମ୍ଭ କରିଥିଲେ । ସେହି ପୁରୀରେ ତାଙ୍କ ଜୀବନ ସାଙ୍ଗ କଲେ । ତାଙ୍କ ସ୍ମୃତି ଓ ନାମ ବହନ କରି ପୁରୀଟାଉନ ହେରାଗୌରୀ ସାହି ସାମନ୍ତ ଚନ୍ଦ୍ରଶେଖର ଲାଇବ୍ରେରୀ ଗୃହରେ ଏକ ଗ୍ରନ୍ଥାଗାର— କାଶୀନାଥ ଗ୍ରନ୍ଥାଗାର ସ୍ଥାପିତ ହୋଇଛି । ତାଙ୍କର ତୈଳଚିତ୍ର ମଧ୍ୟ ସେଠାରେ ଉନ୍ମୋଚିତ ହେଲା ୧୯୭୧ ଅଗଷ୍ଟ ୨ ତାରିଖ ସନ୍ଧ୍ୟାରେ ଶଙ୍କରାନନ୍ଦ ମଠାଧିଶ୍ୱର ଜଗଦ୍‌ଗୁରୁ ଶିବାନନ୍ଦ ସରସ୍ୱତୀ ସ୍ୱାମୀଙ୍କ ଦ୍ୱାରା । ପଣ୍ଡିତ ଜଗନ୍ନାଥ ରଥ, ଡାକ୍ତର ମହାଦେବ ମିଶ୍ର ସେହି ସଭାର ଆୟୋଜନ କରିଥିଲେ । ନନାଙ୍କ ନାମରେ ଗୋଟିଏ ଦାତବ୍ୟ ଟ୍ରଷ୍ଟ (Public Charitable Trust) କରିଛୁ । ସେଥିର ପାଣ୍ଠିରୁ ଚିକିତ୍ସା, ଶିକ୍ଷା, ଉଦ୍ଦେଶ୍ୟରେ ଅଭାବଗ୍ରସ୍ତ ବ୍ୟକ୍ତିଙ୍କୁ ଆର୍ଥିକ ସାହାଯ୍ୟ ଦିଆ ହେଉଛି । ମନ୍ଦିର ନିର୍ମାଣ ଗୋଟିଏ ସ୍ଥାନରେ କରାଯାଇଛି । ଅନ୍ୟ ଏକ ସ୍ଥାନରେ ଆଂଶିକ ସାହାଯ୍ୟ ଦେଇଛୁ । ପ୍ରାକୃତିକ ବିପଦରେ ଯତ୍ କିଞ୍ଚିତ୍ ସହାୟତା ଦିଆଯାଏ । ଏଥିରେ ବଡ ପୁଅ ପ୍ରଭାତର ତତ୍‌ପରତା ଓ ଆଗ୍ରହରେ ମୁଁ ଅତି ଆନନ୍ଦିତ ।

ବୋଉର ଦେହାବସାନ ଘଟିଲା ଆଠବର୍ଷ ପରେ ୧୯୭୭ ଅଗଷ୍ଟ ତିରିଶି ତାରିଖରେ କଟକଠାରେ । ପୁରୀ ସ୍ୱର୍ଗଦ୍ୱାରଠାରେ ଶବ ସତ୍କାର କରାହେଲା । ଦଶାହ କ୍ରିୟାଆଦି ସେଠାରେ କଲୁ । ଗ୍ରାମବାସୀ ନନା, ବୋଉ ଉଭୟଙ୍କ କାର୍ଯ୍ୟରେ ଅକୁଣ୍ଠରେ ଆସି ପୁରୀରେ ଯୋଗ ଦେଇଥିଲେ । ସେଥିପାଇଁ ଆମ୍ଭେମାନେ କୃତଜ୍ଞ ।



Digitized by srujanika@gmail.com

# ପାଟନା ପରେ ଦଶ ବର୍ଷ

ପାଟନାରୁ ଆସିବାର ୨/୩ ମାସ ପରେ ଦିଲ୍ଲୀରୁ କେନ୍ଦ୍ର ସରକାରଙ୍କର କୃଷି ମନ୍ତ୍ରଣାଳୟରୁ ଟେଲିଗ୍ରାମ୍ ଆସିଲା; ଆଣ୍ଡାମାନ ଦ୍ୱୀପ ଜଙ୍ଗଲ ସଂକ୍ରାନ୍ତ କେତୋଟି ବିବାଦ ଆର୍ବିଟ୍ରେସନ ଆକ୍ଟ ଅନୁସାରେ ଶୁଣାଣି କଲିକତାରେ କରିବା ନିମନ୍ତେ । ମୁଁ ହଁ, ନାହିଁ କରିବା ପୂର୍ବରୁ ରଙ୍ଗନାଥ ହଁ ଭରି ଉତ୍ତର ଦେଇଦେଲେ । ଏ କାର୍ଯ୍ୟ ଲାଗିଲା ୧୯୭୦ ଠାରୁ ଛଅବର୍ଷ । କେନ୍ଦ୍ର ସରକାର ଓ ଗୋଟିଏ କମ୍ପାନୀ ମଧ୍ୟରେ ଜଙ୍ଗଲ ଲିଜ୍, କାଠର ମୂଲ୍ୟ, କ୍ଷତିପୂରଣ ନେଇ କେତେଗୁଡିଏ ବିବାଦ । କୋଟି କୋଟି ଟଙ୍କାର ଦାବୀ ଉଭୟ ପକ୍ଷରୁ । ଏ ବିଚାର ପାଇଁ ଗରିଆହାଟରେ ଏକ ଘର ସରକାର ଭଡା ନେଇଥାନ୍ତି । ଅକ୍‌ଲାଣ୍ଡ ପ୍ଲେସରେ ଆଣ୍ଡାମାନ ଜଙ୍ଗଲ ବିଭାଗର ଅଫିସ । ସେମାନଙ୍କ ତରଫରୁ କଲିକତା ହାଇକୋର୍ଟର ସରକାରୀ ଓକିଲ ଓ ଅନ୍ୟ ଦୁଇଜଣ ବାରିଷ୍ଟର ନିଯୁକ୍ତ ଥିଲେ । ଅପର ପକ୍ଷରେ ଦୁଇଜଣ ବାରିଷ୍ଟର । ସପ୍ତାହରେ ତିନିଦିନ ଶୁଣାଣି ହୁଏ । ସାକ୍ଷୀ, ନଥିପତ୍ର ଏତେ ହେବ ବୋଲି ଅନୁମାନ ନ ଥିଲା । ହାଇକୋର୍ଟ ଛୁଟି ହେଲେ ଆମର କାମ ବନ୍ଦ ରହେ । ୪/୩/୧୯୭୬ରେ ମୋ ନିଷ୍ପତ୍ତି ଜଣାଇ ଦେଲି ।

ସର୍ଦ୍ଦାର ଯୋଗନ୍ଦ୍ରେ ସିଂହ ଓଡିଶାର ରାଜ୍ୟପାଳ ଥିଲାବେଳେ ଉତ୍କଳ ବିଶ୍ୱବିଦ୍ୟାଳୟରେ ଛାତ୍ର ଅଶାନ୍ତି ଉତ୍କଟ ହୋଇଥିଲା । ରେଜିଷ୍ଟ୍ରାର ଶ୍ରୀଯୁକ୍ତ ବରାଇ ଇସ୍ତଫା ଦେଇଥିଲେ । ଚାନସେଲର ରୂପେ ରାଜ୍ୟପାଳ ମତେ ଏନକ୍ୱାରି କରିବାପାଇଁ ଦାୟିତ୍ୱ ଦେଲେ । ଡକ୍ଟର ସଦାଶିବ ମିଶ୍ର ଭାଇସ୍ ଚାନ୍‌ସେଲର ପଦରୁ ଇସ୍ତଫା ଦେଇଥିବାରୁ ଡାକ୍ତର ଘନଶ୍ୟାମ ମହାପାତ୍ର ଅସ୍ଥାୟୀ କୁଳପତି ରୂପେ ଥାଆନ୍ତି । ଡକ୍ଟର ପ୍ରାଣକୃଷ୍ଣ ପରିଜା, ଡକ୍ଟର ହରେକୃଷ୍ଣ ମହତାବ, ଡକ୍ଟର ସଦାଶିବ ମିଶ୍ର ଅଧ୍ୟାପକ, ସିଣ୍ଡିକେଟ୍ ସିନେଟର ସଭ୍ୟ, ଛାତ୍ର ଇଞ୍ଜିନିଅର ପ୍ରତିନିଧି, ଆସେମ୍ବ୍ଲି ମେମ୍ବର, ବିଶ୍ୱବିଦ୍ୟାଳୟ କର୍ମଚାରୀ ସଂଘର ପ୍ରତିନିଧି ପଭୃତିଙ୍କର ସାକ୍ଷ୍ୟ ମୋ କାର୍ଯ୍ୟରେ

Digitized by srujanika@gmail.com

ସାହାଯ୍ୟ କରିଥିଲା । ଏନ୍‌କୁଆରିର ଶେଷ ପର୍ଯ୍ୟାୟରେ ଶ୍ରୀଯୁକ୍ତ ବରାଇ ହଠାତ୍ ସହଯୋଗ ବନ୍ଦ କରିଦେଲେ, ସେ ବନ୍ଦ କରିଥିବା ଅଫିସ ଗୃହ ଖୋଲିବାକୁ ମୁଁ ନୋଟିସ ଦେବା ପରେ । ଚାବି ଆଣିବାକୁ ବସାକୁ ଯାଇ ଆଉ ଫେରିଲେ ନାହିଁ । କେତେଗୁଡିଏ ପ୍ରୟୋଜନୀୟ କାଗଜପତ୍ର ସେ ରୁଦ୍ଧ ଘରେ ଥିଲା । ଶ୍ରୀଯୁକ୍ତ ବରାଇଙ୍କ ବିରୁଦ୍ଧରେ କେତେକ ଅଭିଯୋଗ ଛାତ୍ରମାନଙ୍କର ଥିଲା । ବିଶ୍ୱବିଦ୍ୟାଳୟ ପରିଚାଳନାରେ କେତେକ ଗୁରୁତର ତ୍ରୁଟି ଜଣାପଡିଲା । ସେ ସବୁର ନିରାକରଣ ପାଇଁ ପରାମର୍ଶ ଦେଇ ରିପୋର୍ଟ ଚାନସେଲ୍‌ରଙ୍କୁ ଦେଲି । ଏନ୍‌କୁଆରୀ ଅଫିସ ରାଜଭବନର ଏକ ଅଂଶରେ ଥାଏ । ରାଜ୍ୟପାଳଙ୍କ ଡେପୁଟି ସେକ୍ରେଟାରୀ ଏନ୍‌କୁଆରୀର ସେକ୍ରେଟାରୀ ରୂପେ କାର୍ଯ୍ୟ କରୁଥିଲେ ।

ବି.ଡି.ଜଟ୍ଟି ରାଜ୍ୟପାଳ ଥିଲାବେଳେ ଓଡିଶା କୃଷି ବିଶ୍ୱବିଦ୍ୟାଳୟରେ (Orissa University of Agriculture and Technology) ବିଷମ ପରିସ୍ଥିତି ଉପୁଜିବାରୁ, ବିଶେଷ କରି ସେଠାରେ ଭାଇସ୍ ଚାନ୍‌ସେଲ୍‌ରଙ୍କ ବିରୁଦ୍ଧରେ କେତେକ ଅଭିଯୋଗ ଆଗତ ହୋଇଥିବାରୁ, ସେହି ବିଶ୍ୱବିଦ୍ୟାଳୟ ସଂକ୍ରାନ୍ତ ବ୍ୟାପାର ସବୁ ଏନ୍‌କୁଆରୀ କରିବାକୁ ୧୪/୬/୧୯୭୩ ରେ ମତେ ଦାୟିତ୍ୱ ଦିଆଗଲା । ଅଫିସ ରାଜଭବନର ଦୁଇଟି କୋଠରୀରେ ବସିଲା । ସାକ୍ଷ୍ୟ ପ୍ରମାଣ, ରେଡକ୍ରସ ଭବନରେ ନିଆହେଲା । ଡାକ୍ତର ଚନ୍ଦ୍ରମୋହନ ଚୌଧୁରୀ ଭାଇସ୍ ଚାନ୍‌ସେଲାର ଥାଆନ୍ତି । ଏନ୍‌କୁଆରୀ ଚାଲିଥିବା ମଧ୍ୟରେ ଜଗନ୍ନାଥ ଦାସ ଆଇ.ଏ.ଏସ୍. ତାଙ୍କ ପରିବର୍ତ୍ତେ କୁଳପତି ହେଲେ । ଡକ୍ଟର ବୈଦ୍ୟନାଥ ମିଶ୍ର ଡିନ୍ ଥିଲେ । ଅନେକ ଜଟିଳ ପ୍ରଶ୍ନ ଉଠିଲା ଅଧ୍ୟାପକମାନଙ୍କ ସାକ୍ଷୀରୁ । କୃଷି ବିଜ୍ଞାନ, ପଶୁଚିକିତ୍ସା ବିଜ୍ଞାନର ପୃଥକ ଶିକ୍ଷାଦାନର ବ୍ୟବସ୍ଥା ଥିବାରୁ ସଂଲଗ୍ନ ଛାତ୍ର ଓ ଛାତ୍ରାବାସ ମଧ୍ୟରେ କେତେକ ଛୋଟ ଛୋଟ ଘଟନା ନେଇ ତିକ୍ତଭାବ ରହିଥାଏ । ଅଣଶିକ୍ଷକ କର୍ମଚାରୀମାନଙ୍କର ଥାଏ ଅନେକ ଅଭିଯୋଗ । ମୋ ସାଧମତେ ଏ ସବୁ ବିଷୟରେ— ବିଶେଷ କରି ପରିଚାଳନାଗତ ବିଷୟମାନଙ୍କ ସମ୍ବନ୍ଧରେ ନଥିପତ୍ର, ସାକ୍ଷ୍ୟ, ସରଜମିନ ପରୀକ୍ଷା ଉପରେ ନିର୍ଭର କରି ମୋ ରିପୋର୍ଟ ୩୧/୧୨/୧୯୭୩ରେ କୁଳାଧିପତିଙ୍କୁ ଦେଇ ସେ କାର୍ଯ୍ୟ ଶେଷ କରିବାକୁ ଛଅ ମାସ ସତର ଦିନ ଲାଗିଲା ।

ଓଡିଶା ଜେଲ ସଂସ୍କାର ପାଇଁ ଏକ କମିଟି ଓଡିଶା ସରକାର ୧୯୭୯ ମାର୍ଚ୍ଚ ୨ ତାରିଖରେ ବସାଇଲେ । ସେଥିରେ ମେମ୍ବର ରହିଲେ ଆଇନ ବିଭାଗର ସେକ୍ରେଟାରୀ, ହୋମ ଡିପାଟମେଣ୍ଟର ଆଡିସିନାଲ ସେକ୍ରେଟାରୀ, ସମ୍ବଲପୁର

Digitized by srujanika@gmail.com

ବିଶ୍ୱବିଦ୍ୟାଳୟର ସମାଜ ବିଜ୍ଞାନ ଅଧ୍ୟାପକ ଡଃ ଏସ୍. ଏନ୍. ରଥ, ରାଜ୍ୟ ଜେଲ ପରିଚାଳନା ପରାମର୍ଶ ବୋର୍ଡର ସଭ୍ୟ ଶ୍ରୀ ମୁରାରୀ ପ୍ରସାଦ ମିଶ୍ର, ସମ୍ବଲପୁର ଓ ଜେଲ ଇନସପେକ୍ଟର ଜେନେରାଲ (ସେକ୍ରେଟାରୀ) । ମୁଁ ହେଲି ଚେୟାରମ୍ୟାନ । ବହୁ ଅନୁଧ୍ୟାନ କରିବାକୁ ପଡିଲା । ୧୯୪୨ ମସିହାର ଜେଲ ମାନୁଏଲକୁ ପରିବର୍ତ୍ତନ କରି ନୂଆ ଜେଲ ମାନୁଏଲ ଲେଖାଗଲା । ଏ କାର୍ଯ୍ୟରେ ବ୍ୟାପୃତ ରହିଲି ଅଢ଼େଇ ବର୍ଷ । ରିପୋର୍ଟ ଦେଲୁ ୧୯୮୧ ସେପ୍ଟେମ୍ବର ୩୦ ତାରିଖରେ । ସେତେବେଳକୁ ଜାନକୀବଲ୍ଲଭ ପଟ୍ଟନାୟକ ମୁଖ୍ୟମନ୍ତ୍ରୀ ।

୧୮୨୪ ମସିହାରେ ବ୍ରିଟିଶ ପାର୍ଲିଆମେଣ୍ଟରେ ଜେଲ ଶାସନ ସଂକ୍ରାନ୍ତ ଏକ ଆଇନ ପ୍ରବର୍ତ୍ତିତ ହେଲା ସମୟରୁ ସେଥିପ୍ରତି ସର୍ବତ୍ର ଦୃଷ୍ଟି ଆକର୍ଷିତ ହେଲା । ଭାରତବର୍ଷରେ ଜେଲ ସଂସ୍କାର ଉଦ୍ଦେଶ୍ୟରେ ଲର୍ଡ ମାକୁଲେଙ୍କ ପରି ପ୍ରଖ୍ୟାତ ବ୍ୟକ୍ତିମାନଙ୍କୁ ନେଇ ଏକ କମିଟି ୧୮୩୬ରେ ଗଠିତ ହୋଇଥିଲା । ବହୁଚେଷ୍ଟା ସତ୍ତ୍ୱେ ସେ କମିଟିର ରିପୋର୍ଟ ବା ତହିଁ ଉପରେ କି କାର୍ଯ୍ୟ ଗ୍ରହଣ କରାହୋଇ ଥିଲା, ତାହାର କୌଣସି ସନ୍ଧାନ କଲିକତା ବା ଦିଲ୍ଲୀରେ ମିଳିଲା ନାହିଁ । ୧୮୬୪ରେ ଆଉ ଏକ କମିଟି ବସିଥିଲା । ତାହାର ମଧ୍ୟ କୌଣସି ଲିଖିତ ବିବରଣୀ ମିଳିପାରିଲା ନାହିଁ । ପ୍ରକାରାନ୍ତରେ ସେ କମିଟିର ଉଲ୍ଲେଖ କେତେକ ସରକାରୀ (ଭାରତ ସରକାର) ନଥିରେ ଅଛି, କିନ୍ତୁ ତାହାକୁ ନେଇ ଜେଲ ମାନୁଆଲ ବା ଜେଲ ଶାସନ ପଦ୍ଧତିରେ କୌଣସି ପରିବର୍ତ୍ତନ ଅଣାଯାଇଥିବାର ସୂଚନା ମିଳିଲା ନାହିଁ । ୧୮୭୭ରେ ଅନେକ ଜେଲ ସଂକ୍ରାନ୍ତ ବିଶେଷଜ୍ଞମାନଙ୍କର ଏକ ସମ୍ମିଳନୀ ପରେ ଆଉ ଏକ କମିଟି ନିଯୁକ୍ତ ହୋଇଥିଲା ୧୮୮୮ରେ ଏବଂ ତାହାର ଫଳ ସ୍ୱରୂପ (Prison Act 1894, Prisoners Act 1900) ୧୮୯୪ ଜେଲ ଆଇନ, ୧୯୦୦ ମସିହା କଏଦୀ ଆଇନ ପ୍ରବର୍ତ୍ତିତ ହେଲା ଭାରତବର୍ଷରେ । ତାହାର ଅନୁକ୍ରମରେ ଆମ ଦେଶର ସବୁ ପ୍ରଦେଶରେ ଏକପ୍ରକାର ଜେଲ ଶାସନ ବିଧି ଚାଲିଲା ସତ, ମାତ୍ର ଆଭିମୁଖ୍ୟରେ ନ୍ୟାୟୋଚିତ ପରିବର୍ତ୍ତନ ବିଶେଷ ଆସିଲା ନାହିଁ । ୧୯୧୯ରେ ଭାରତୀୟ ଜେଲ କମିଟି ଭାରତ ସରକାର ବସାଇଲେ । ଏହି କମିଟି ବ୍ରିଟେନ, ଆମେରିକା, ଜାପାନ, ଫିଲିପାଇନସ୍, ହଙ୍ଗକଙ୍ଗ୍ ପ୍ରଭୃତି ଦେଶର ଜେଲ ଅବସ୍ଥା ଓ ତାହାର ଶାସନ ପ୍ରଣାଳୀ ଅନୁଧ୍ୟାନ କରି ଏବଂ ଆମ ନିଜ ଦେଶର ଜେଲ ଦୁରବସ୍ଥା ଦେଖି, ବହୁ କଷ୍ଟ ସ୍ୱୀକାର କରି ଜେଲ ସଂକ୍ରାନ୍ତ ଆଭିମୁଖ୍ୟ ଓ ଶାସନ ଉପରେ ମୂଲ୍ୟବାନ ପରାମର୍ଶ ଦେଇ ରିପୋର୍ଟ ପେସ୍ କରିଥିଲେ । ମାତ୍ର, ଦୁଃଖର କଥା, ତାହା କାର୍ଯ୍ୟରେ ପରିଣତ

Digitized by srujanika@gmail.com

ହୋଇଥିବାର ପ୍ରମାଣ ନାହିଁ । ୩୦ ବର୍ଷ ପରେ ଭାରତ ସରକାର ଜାତିସଂଘର ସହାୟତା ଲୋଡ଼ିବାରେ, Dr W.C. Rackless ୧୯୫୧ ରେ ଭାରତକୁ ଆସିଲେ ଭାରତୀୟ ଜେଲ ଅବସ୍ଥା ଅନୁସନ୍ଧାନ କରିବାକୁ । ଦୀର୍ଘକାଳ ସେ ଏଠାରେ ରହି ସଂସ୍କାର ମୂଳକ ପରିବର୍ତ୍ତନର ଚିଠା ପ୍ରସ୍ତୁତ କରିଥିଲେ । ବମ୍ବେରେ ଉଚ୍ଚ ଜେଲ ଅଫିସରମାନଙ୍କର ଏକ ଟ୍ରେନିଙ୍ଗ ବ୍ୟବସ୍ଥା ସେ ସମୟରେ କରାହୋଇଥିଲା । ପ୍ରଥମ ମୁକ୍ତାକାଶ ଜେଲ ଉତ୍ତର ପ୍ରଦେଶରେ ଖୋଲାହେଲା । Probation of Offenders Act ୧୯୫୮ ରେ ପ୍ରବର୍ତ୍ତିତ ହେଲା । ବେତମାଡ ଉଠିଗଲା ଆଇନରୁ ୧୯୫୫ ଠାରୁ । ଜାତିସଂଘ ତରଫରୁ ଜେନିଭାରେ ଅପରାଧ ନିରାକରଣ ଓ ଅପରାଧୀଙ୍କ ପ୍ରତି ବ୍ୟବହାର ସମ୍ବନ୍ଧରେ ନୀତି ନିର୍ଦ୍ଧାରଣ କରିବା ପାଇଁ ଏକ ଆନ୍ତର୍ଜାତିକ ସମ୍ମିଳନୀ ବସିଥିଲା (୧୯୫୫) ଏବଂ ଯାହା ସେଠାରେ ସ୍ଥିର ହେଲା, ତାହା ସବୁ ଦେଶକୁ ପଠା ଯାଇଥିଲା । ଏହା ଫଳରେ ସର୍ବତ୍ର ସରକାରୀ ମହଲରେ ଜେଲ ପରିଚାଳନା ବିଷୟ ନେଇ ସଜାଗ ଦୃଷ୍ଟି ଜାଗ୍ରତ ହୋଇଥିଲା । ଭାରତ ସରକାର ୧୯୫୬ରେ ଏକ ଜେଲ ମାନୁଆଲ କମିଟି ନିଯୁକ୍ତ କଲେ । ସେମାନେ କେତେକ ମଡେଲ ରୁଲ (ନିୟମ) ପ୍ରସ୍ତୁତ କରିଥିଲେ ତିନିବର୍ଷ ପରେ । ତାହା କାର୍ଯ୍ୟକାରୀ ହୋଇ ନଥିବାରୁ ଭାରତ ସରକାର ୧୯୭୨ରେ ଜେଲ ପରିଚାଳନା ଉପରେ ବିସ୍ତୃତ ବିଚାର କରିବା ନିମନ୍ତେ ଗୋଟିଏ Working group ନିଯୁକ୍ତ କଲେ ଏବଂ ସେମାନଙ୍କର ସୁପାରିଶ ଦେଶର ପଞ୍ଚବାର୍ଷିକ ଯୋଜନାରେ ସନ୍ନିବେଶିତ ହେବା ସ୍ଥିର ହେଲା । ଅପରାଧୀମାନଙ୍କର ଦଣ୍ଡଭୋଗ ପରେ ସମାଜକୁ ସୁସ୍ଥ ନାଗରିକ ରୂପେ ପ୍ରତ୍ୟାବର୍ତ୍ତନର ସମ୍ଭାବନାକୁ ଦୃଷ୍ଟିରେ ରଖି ଦଣ୍ଡକାଳ ମଧ୍ୟରେ ଜେଲରେ କି ପ୍ରକାର ବ୍ୟବହାର ଓ ପରିଚାଳନା ଉପଯୁକ୍ତ ହେବ ତାହାର ବିଚାର ଓ ସ୍ଥିରୀକରଣର ଗୁରୁତ୍ୱ ଦେଶର ଚିନ୍ତାଶୀଳ ଲୋକେ ଏବଂ ସରକାର ଉପଲବ୍ଧି କଲେ । ଅପରାଧ ନିମନ୍ତେ ଦଣ୍ଡର ବ୍ୟବସ୍ଥା ଯେତେ ଅପରାଧୀ ପ୍ରତି ଅଭିପ୍ରେତ, ତା ଠାରୁ ବେଶି ଅଭିପ୍ରେତ ସମାଜକୁ ଦଣ୍ଡମୁକ୍ତ ଅପରାଧୀର ବାଞ୍ଛିତ ପରିବର୍ତ୍ତିତ ରୂପେ ପ୍ରତ୍ୟାବର୍ତ୍ତନ ।

ଏହି ପରିପ୍ରେକ୍ଷୀରେ ସବୁ ରାଜ୍ୟ ସରକାର ଜେଲ ମାନୁଏଲ ସଂସ୍କାର ମୂଳକ ପରିବର୍ତ୍ତନ ପାଇଁ ପଦକ୍ଷେପ ନେବା ଆବଶ୍ୟକ ପଡ଼ିଲା । ୧୯୭୬ ଫେବୃୟାରୀ ୭ ତାରିଖରେ କେନ୍ଦ୍ର ସରକାର ରାଜ୍ୟ ସରକାରମାନଙ୍କୁ ପତ୍ର ଲେଖି ତାକିଦ୍ କଲେ ଅବିଳମ୍ବେ ୧୯୭୨ (working group) ୱାରକିଙ୍ଗ ଗ୍ରୁପ୍‌ର ସୁପାରିଶମାନ, ଅନ୍ତତଃ ପକ୍ଷେ ଯେଉଁଥିରେ ଖର୍ଚ୍ଚ ବହୁଳ ପରିବର୍ତ୍ତନ ଦରକାର ନ ପଡୁଛି, କାର୍ଯ୍ୟକାରୀ

Digitized by srujanika@gmail.com

କରାଯାଉ । ସେହି ଉଦ୍ଦେଶ୍ୟରେ ଆମ କମିଟି ଓଡିଶା ସରକାର ନିଯୁକ୍ତ କରିଥିଲେ । ଏହା ପୂର୍ବରୁ ସ୍ୱର୍ଗତ ଲାଲମୋହନ ପଟ୍ଟନାୟକଙ୍କ (ସେ ସେତେବେଳେ ବିଧାନସଭାର ବାଚସ୍ପତି ଥିଲେ) ଅଧ୍ୟକ୍ଷତାରେ ୧୯୫୨ ମସିହାରେ ଏକ କମିଟି ବସିଥିଲା ଏବଂ ତାଙ୍କର ରିପୋର୍ଟ ୧୯୫୫ ରେ ସରକାରଙ୍କର ହସ୍ତଗତ ହୋଇଥିଲେ ମଧ୍ୟ, ତାହା ଉପରେ କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯାଇ ଥିବାର ଦୃଷ୍ଟାନ୍ତ ମିଳି ନଥିଲା ।

ଓଡିଶାରେ, ଅନ୍ୟ ସମସ୍ତ ରାଜ୍ୟରେ ମଧ୍ୟ, ଜେଲ ପରିଚାଳନା, ବିଚାରାଧୀନ ବନ୍ଦୀ, ଦଣ୍ଡିତବନ୍ଦୀ, ବାଳଅପରାଧୀଙ୍କର ବନ୍ଦୀଶାଳାରେ ନିୟନ୍ତ୍ରଣ ଜେଲ ମାନୁଏଲ ଅନୁସାରେ ହୁଏ । ଓଡିଶା ୧୯୩୬ ରେ ସ୍ୱତନ୍ତ୍ର ପ୍ରଦେଶ ହେଲାବେଳକୁ ତାହାର ବିଭିନ୍ନ ଅଂଶ ଭିନ୍ନ ଭିନ୍ନ ଜେଲ ମାନ୍ୟୁଏଲ ଅଧୀନରେ ଥିଲା, ଯଥା ମାଡ୍ରାସ, ମଧ୍ୟପ୍ରଦେଶ, ବିହାର, ଓଡିଶା ଜେଲ ମାନ୍ୟୁଏଲ । ସେ ସବୁରୁ କିଛି ନେଇ ତରବରରେ ଓଡ଼ିଶା ଜେଲ ମାନ୍ୟୁଏଲ ୧୯୪୨ରେ ତିଆରି ହୋଇ ଚାଲୁଥିଲା । ଜେଲ ସଂସ୍କାରଗତ ଆଭିମୁଖ୍ୟ ସେଥିରେ ପ୍ରତିଫଳିତ ନ ହୋଇଥିବା ଆଶ୍ଚର୍ଯ୍ୟର କଥା ନୁହେଁ । ୧୯୫୨ରେ ଓଡିଶା ସରକାର ଯେଉଁ ଜେଲ କମିଟି କରିଥିଲେ, ଜେଲ ମାନ୍ୟୁଏଲ ସଂଶୋଧନ, ପରିବର୍ତ୍ତନ କରିବା ତାଙ୍କ କାର୍ଯ୍ୟ ଭିତରେ ନଥିଲା । ଆମକୁ ତାହା କରିବାକୁ ହେଲା ।

ଗତ ଶହେବର୍ଷ ଭିତରେ ଅପରାଧ ଓ ଅପରାଧୀ ପ୍ରତି ଆଭିମୁଖ୍ୟରେ କି ପରିବର୍ତ୍ତନ ସଭ୍ୟ- ଜଗତରେ ଘଟିଛି ତାହାର ସମ୍ୟକ୍ ସୂଚନା ଇଂଲଣ୍ଡର ୧୮୭୧ ମସିହାର ଓ ଭାରତର ୧୯୭୮ ମସିହାର ଦୁଇଟି ଉଚ୍ଚନ୍ୟାୟାଳୟର ମନ୍ତବ୍ୟରୁ ମିଳିବ । (Ruffin vrs. Commonwealth) ରଫିନ ଓ କମନ ୱେଲଥ ମକଦ୍ଦମାରେ ଇଂରେଜ ଜଜ୍ ୧୮୭୧ରେ କହିଥିଲେ :-

"He has as a consequence of his crime not only forfeited his liberty but all his personal rights except those which the law in its humanity accords to him. He is for the time being, the slave of the state."

ଶହେବର୍ଷ ପରେ ୧୯୭। ରେ ଆମ ସୁପ୍ରିମ କୋର୍ଟରେ ଚାର୍ଲସ ଶୋଭରାଜ ଓ ତିହାର ସେଣ୍ଟ୍ରାଲ ଜେଲ କେସ୍‌ରେ ତତ୍‌କାଳୀନ ପ୍ରଚଳିତ ପରିବର୍ତ୍ତିତ ଆଭିମୁଖ୍ୟ ଅନୁକ୍ରମରେ କୁହାଗଲା :-

It is now well settled, as a strerm of rulings of court proves, with deterrance, both specific and general, rehabilitation and institutional security are vital consideration .......A prisoner

Digitized by srujanika@gmail.com

retains all rights of a free citizen except those lost necessarily as an incident of confinement. ଆମ ଜେଲ ମାନୁଆଲ (ଅନ୍ୟ ରାଜ୍ୟର ମଧ୍ୟ) ଏହି ପରିବର୍ତ୍ତିତ ବିଚାରଧାରର ଉପଯୋଗୀ କରିବା ପାଇଁ ବହୁ ଅଂଶରେ ଏବଂ ପ୍ରାୟ ସମସ୍ତ ମୌଳିକ ଲକ୍ଷ୍ୟର ପରିବର୍ତ୍ତନ ଆବଶ୍ୟକ ହେଲା । ମୁଁ ୫୦/୬୦ ପୃଷ୍ଠା ପରିବର୍ତ୍ତନ କରି ଲେଖେ ଏବଂ ମେମ୍ବରମାନଙ୍କ ପାଖକୁ ପଠାଏ । ଏହିପରି ୨/୩ ଥର ପଠାଇଲା ପରେ, କମିଟିର ଗୋଟିଏ ବୈଠକ ଡକାଇ ତାହାର ଆଲୋଚନା କରି ଗ୍ରହଣ କରାଯାଏ । ଏଥିରେ ବହୁ ପରିଶ୍ରମ ଅପରିହାର୍ଯ୍ୟ ଥିଲା । ଓଡ଼ିଶାର କେତେଗୁଡ଼ିଏ ଜେଲ, ଦିଲ୍ଲୀର ତିହାର ଜେଲ, ଭାଇଜାଗ ଜେଲ, ହାଇଦ୍ରାବାଦ ଜେଲ ପ୍ରଭୃତି ପରିଦର୍ଶନ କରି ପରିଚାଳନାଗତ ପାର୍ଥକ୍ୟର ସୁବିଧା, ଅସୁବିଧା, ଯଥାର୍ଥତାର ବିଚାର ଆମ ଉପସଂହାରରେ ସାହାଯ୍ୟ କରିଥିଲା । ବନ୍ଦୀର ମନରେ ଆତ୍ମସମ୍ମାନ ଓ ସାଧୁତା ପ୍ରତି ଆଗ୍ରହ ଜନ୍ମାଇବା ଜେଲ ପରିଚାଳନାର ମୂଳଭିତ୍ତି ଉପରେ ଆମର ସଂସ୍କାର ରିପୋର୍ଟ, ସୁପାରିଶ, ମାନୁଆଲ ସଂଶୋଧନ ପ୍ରସ୍ତୁତ କରାଗଲା । କେତେକ ନୂତନ ଆଇନ ପ୍ରଣୟନ କରିବା ପାଇଁ ତାହାର ଚିଠା ପ୍ରସ୍ତୁତ କରି ଦିଆଗଲା । ନବେଗୋଟି ପ୍ରଶ୍ନ ସମ୍ବଳିତ ଲେଖା ୮୫୦ ଜଣ ମନ୍ତ୍ରୀ, ବିଧାୟକ, ପାର୍ଲିଆମେଣ୍ଟ ସଦସ୍ୟ, ବିଚାରପତି, ଜେଲ ଭିଜିଟର, ସ୍ୱାଧୀନତା ସଂଗ୍ରାମୀ, ଜିଲ୍ଲା ମାଜିଷ୍ଟ୍ରେଟ୍, ଜେଲ ସୁପରିଣ୍ଟେଣ୍ଡେଣ୍ଟ, ଓକିଲ, ଡାକ୍ତର, ଶିକ୍ଷାବିତ୍, ପ୍ରଭୃତିଙ୍କ ପାଖକୁ ପଠାଇ ସେମାନଙ୍କର ମତ ସଂଗ୍ରହ କରାଯାଇଥିଲା । ଦୁଃଖ ହୁଏ, ଏ ଯାବତ୍ ରିପୋର୍ଟ ସଂପୂର୍ଣ୍ଣ ରୂପେ ଅନୁଶୀଳନ କରାଯାଇଥିବା ବା କାର୍ଯ୍ୟକାରୀ ହୋଇଥିବା ଲକ୍ଷ୍ୟ କରାଯାଇ ପାରୁନାହିଁ । କେନ୍ଦ୍ର ଜେଲ ସ୍ୱତନ୍ତ୍ର ରୂପେ ସ୍ଥାପିତ ହୋଇନାହିଁ । କେତେକ ନୂଆ ଆଇନ ଓ ଗୋଟିଏ ଉନ୍ମୁକ୍ତ ଜେଲ ଏବେ ହୋଇଥିବାର ସମ୍ବାଦ ଖବର କାଗଜରୁ ପଢ଼ି ଟିକିଏ ଶ୍ରମ ସାର୍ଥକ ମନେ କଲି ।

ଆଉ ଗୋଟିଏ ଅନୁସନ୍ଧାନ କମିଟିର ଶ୍ରମରେ ଭାଗିଦାର ହେଲି ୧୯୭୮ ଏପ୍ରିଲ ମାସରୁ ବର୍ଷକ ପାଇଁ ଶ୍ରୀଯୁକ୍ତ ଭଗବତ ଦୟାଳ ଶର୍ମା ରାଜ୍ୟପାଳ ଥିଲା ବେଳେ । ସେତେବେଳେ ଶ୍ରୀ ନୀଳମଣି ରାଉତରାୟ ମୁଖ୍ୟମନ୍ତ୍ରୀ ଥିଲେ । ଓଡ଼ିଶା ସରକାର ପୁରୀ ଶ୍ରୀ ଜଗନ୍ନାଥ ମନ୍ଦିରର, ସେବା, ପୂଜା, ପରିଚାଳନା ଇତ୍ୟାଦି ସମସ୍ତ ବିଷୟରେ ଅନୁସନ୍ଧାନ ଓ ବିଚାର କରି ତତ୍‌ସମ୍ବନ୍ଧୀୟ ଉନ୍ନତି ନିମନ୍ତେ ପରାମର୍ଶ ଦେବାପାଇଁ ଗୋଟିଏ କମିଟି ନିଯୁକ୍ତ କଲେ ୭/୪/୧୯୭୮ ତାରିଖରେ । ସେଥିରେ ରାଜ୍ୟପାଳ ଅଧ୍ୟକ୍ଷ ଓ ପୁରୀର ଗଜପତି ଦିବ୍ୟସିଂହଦେବ, ଶ୍ରୀଯୁକ୍ତ ହରେକୃଷ୍ଣ

Digitized by srujanika@gmail.com

ମହତାବ, ଶ୍ରୀଯୁକ୍ତ ବିଶ୍ୱନାଥ ଦାସ, ଶ୍ରୀଯୁକ୍ତ ନିତ୍ୟାନନ୍ଦ କାନୁନ୍‌ଗୋ, ଶ୍ରୀଯୁକ୍ତ ରାଧାନାଥ ରଥ, ମୁଁ, ଶ୍ରୀଯୁକ୍ତ ନନ୍ଦକିଶୋର ମିଶ୍ର (ପୂର୍ବତନ ବାଚସ୍ପତି) ଓ ବଳରାମ କୋଟ ମଠର ଶ୍ରୟୁକ୍ତ ଅଯୋଧ୍ୟା ଦାସ ମେମ୍ବର ଥିଲୁ । ଶ୍ରୀଯୁକ୍ତ ବିଭୂତିଭୂଷଣ ତ୍ରିପାଠୀ ଅବସରପ୍ରାପ୍ତ ଆଇ.ଏ.ଏସ୍. କମିଟିର ସେକ୍ରେଟାରୀ ହେଲେ । ବିଷୟଟିର ଗୁରୁତ୍ୱ ଓ ଜଟୀଳତା ଦୃଷ୍ଟିରୁ କ୍ରମାଗତ ଅନୁସନ୍ଧାନ, ନଥିପତ୍ର ତନଖି ଓ ଆଲୋଚନା ପାଇଁ କମିଟିର ଆଦ୍ୟରୁ ଗୋଟିଏ ସବ୍‌କମିଟି ଗଠନ କରାଗଲା ଚାରିଜଣଙ୍କୁ ନେଇ, ଶ୍ରୀଯୁକ୍ତ ହରେକୃଷ୍ଣ ମହତାବ, ଶ୍ରୀଯୁକ୍ତ ରାଧାନାଥ ରଥ, ଶ୍ରୀଯୁକ୍ତ ନିତ୍ୟାନନ୍ଦ କାନୁନ୍‌ଗୋ ଓ ମୁଁ । ଆମର କାର୍ଯ୍ୟର ବିବରଣୀ, ପରାମର୍ଶ, ରିପୋର୍ଟ ପୂର୍ଣ୍ଣାଙ୍ଗ କମିଟିର ବୈଠକରେ ଆଲୋଚିତ ହୋଇ ଗୃହୀତ ହୁଏ । ଗୋଟିଏ ଗୋଟିଏ ଅଂଶକୁ ଅବଲମ୍ବନ କରି ଗୋଟିଏ ଗୋଟିଏ ରିପୋର୍ଟ ସରକାରଙ୍କୁ ଦେଇଥାଉ । ପ୍ରଥମ ଭାଗ ୬/୭/୧୯୭୮, ଦ୍ୱିତୀୟ ଭାଗ ୨୪/୮/୭୮, ତୃତୀୟ ଭାଗ ୧୪/୧୨/୭୮ ଏବଂ ଚତୁର୍ଥ ଭାଗକୁ ପୂରାଇ ପୂରା ରିପୋର୍ଟ ୩୧/୩/୭୯ରେ ଦିଆଗଲା ମୁଖ୍ୟମନ୍ତ୍ରୀଙ୍କୁ ରାଜଭବନରେ ଏକ ଅପରାହ୍ନ ବୈଠକରେ । କମିଟି କାର୍ଯ୍ୟକାଳ ମଧ୍ୟରେ, ଆରମ୍ଭରୁ ଅଳ୍ପଦିନ ପରେ, ପୁରୀ ଗଜପତି କମିଟିରୁ ଇସ୍ତଫା ଦେଇଦେଲେ । ସବ୍‌କମିଟି ଉପରେ ସବୁ କାର୍ଯ୍ୟଭାର ପଡିଥିଲା । ସେହି ସମ୍ପର୍କରେ ଏକାଦିକ୍ରମେ କୋଡିଏ ଦିନ ମୁଁ ପୁରୀ ମନ୍ଦିରର, ରୋଷ ଘରର, ଆନନ୍ଦ ବଜାରର ସମସ୍ତ ନୀତି, ପରିଚାଳନା ଲକ୍ଷ୍ୟ କରିବାର ସୁଯୋଗ ପାଇଥିଲି । ସେ ସମୟରେ ମୁଁ ତାହା କରୁଛି ବୋଲି ସେବାୟତ ଓ ପରିଚାଳକମାନେ ନ ଜାଣିପାରିବା ପାଇଁ ବେଶରେ ପରିବର୍ତ୍ତନ କରିବା ଆବଶ୍ୟକ ମନେ କରିଥିଲି । ଯାହା ଲକ୍ଷ୍ୟ କରିଥିଲି ତାହା ସବ୍‌କମିଟିଙ୍କ ଆଗରେ ବିଚାର, ଆଲୋଚନା ପାଇଁ ପ୍ରକାଶ କରିଥିଲି । କେତେକ ବାଧା ଅତିକ୍ରମ କରି ବହୁତ ଚେଷ୍ଟା ପରେ ସବ୍‌କମିଟି ଠାକୁରଙ୍କର ରତ୍ନଭଣ୍ଡାରର ସମସ୍ତ ଅଳଙ୍କାରର ଏକ ତାଲିକା ପ୍ରସ୍ତୁତ କରାଇ ପାରିଥିଲେ ଏବଂ ତାହାର ବିବରଣୀ ରିପୋର୍ଟଭୁକ୍ତ ହୋଇଛି । ଏହି ଅଳଙ୍କାର ଇତ୍ୟାଦିର ମୂଲ୍ୟ ନିରୂପଣ ପାଇଁ କଲିକତା, ମାଦ୍ରାଜ (ତାମିଲନାଡୁ) ଓ ଆନ୍ଧ୍ର ପ୍ରଦେଶର ରାଜ୍ୟପାଳଙ୍କ ଜରିଆରେ ଜହୁରୀ ଅଣାଇବାର ଚେଷ୍ଟା କରାଯାଇଥିଲା, କିନ୍ତୁ ଆମ ରିପୋର୍ଟ ଦାଖଲ କରିବା ଶେଷ ସମୟ ମଧ୍ୟରେ ତାହା ହୋଇପାରିଲା ନାହିଁ । ପୂର୍ଣ୍ଣ ବିବରଣୀ ହୋଇସାରିଥିବା ଦୃଷ୍ଟିରୁ, ରାଜ୍ୟ ସରକାର ତାହାର ମୂଲ୍ୟ ନିର୍ଦ୍ଧାରଣ କରାଇବାପାଇଁ ଆମେ ଅନୁରୋଧ କରାଇଥିଲୁ । ଦୁଃଖର କଥା, ଏ ପର୍ଯ୍ୟନ୍ତ ତାହା ହେଲାନାହିଁ କିମ୍ବା ରିପୋର୍ଟ ଉପରେ କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣ

Digitized by srujanika@gmail.com

କରାଯାଇନାହିଁ; କେବଳ ଡୁଣ୍ଡିସ୍ଥାପନ ଛଡ଼ା । ଏହି କମିଟି କାର୍ଯ୍ୟରେ ଅନେକ କଥା ଜାଣି ପାରିଲି ।

ଦେଖାଯାଉଛି, କମିଶନ୍, କମିଟି ବସୁଛି କେବଳ କାଳକ୍ଷେପଣ ପାଇଁ, ଆପତ୍ତି ଅଭିଯୋଗର ବେଗ ସମ୍ଭାଳି ନେବାପାଇଁ । ଏନ୍‌କୁଆରୀ ଧୁମଧାମ ଚାଲେ, ଲୋକେ ଆପାତତଃ ଆଶ୍ୱସ୍ତ ହୁଅନ୍ତି; ରିପୋର୍ଟ ହେଲାବେଳକୁ ଲୋକେ, ଅଭିଯୋଗ କାରୀମାନେ ଧିମେଇ ଯାଇଥାନ୍ତି । ସରକାରଙ୍କ ଉପରେ ଚାପ କୋହଳ ହୋଇଯାଇଥାଏ । ଆଉ ତ୍ୱରା ନ ଥାଏ କାର୍ଯ୍ୟାନୁଷ୍ଠାନ ପାଇଁ । ଯେଉଁ ଫାଇଲ ତଳେ ରହିଲା, ତାର ପାଳି ଉପରକୁ ଉଠିବାପାଇଁ ଆସିବ ନାହିଁ ପୁଣି ଧମକ, ଚମକ ନ ପଡିବା ଯାଏ । ଗୁରୁତ୍ୱ ନେଇ ବିଷୟର ବିଚାର ଯଥା ସମୟରେ କରିବା ଏ ଦେଶ ସରକାରଙ୍କର ପରିଚାଳନା ରୀତି ନୁହେଁ । ଧର୍ମଘଟ, ଅନଶନ, ବିକ୍ଷୋଭ, ଘେରାଉ, ପୋଡାଜଳା, ଲାଠିଚାଳନା, ଗୁଳିଫଏର ହେଲାପରେ ସରକାରଙ୍କର ନିଦ୍ରା ଭଙ୍ଗ ହୁଏ ଏବଂ ଯାହା ବହୁ ପୂର୍ବରୁ ସହଜରେ, ଶାନ୍ତିରେ, ସହୃଦୟତାର ସଙ୍ଗେ ହୋଇପାରି ଥାଆନ୍ତା, ତାହା କରିବାକୁ ବାଧ ହୁଅନ୍ତି । କମିଶନ, ଏନକୁଆରୀ ଇତ୍ୟାଦିରେ ଯେତେ ପରିଶ୍ରମ, ଯେତେ ଲୋକଙ୍କର ସହଯୋଗ ଯେତେ ସମୟ ଓ ଅର୍ଥ ବ୍ୟୟ ହୁଏ, ହେଉଛି, ତାହା ବ୍ୟର୍ଥ ଯାଉଛି ରିପୋର୍ଟର ବିଚାର ଓ କାର୍ଯ୍ୟାନୁଷ୍ଠାନ ନହୋଇ । ରିପୋର୍ଟ ଦେବାପାଇଁ ଯେପରି ସମୟ ନିର୍ଦ୍ଧାରିତ ହେଉଛି, ସେହିପରି ରିପୋର୍ଟ ଉପରେ ଶେଷ ବିଚାର ଓ କାର୍ଯ୍ୟ ଗ୍ରହଣ ପାଇଁ ସମୟ ସୀମା ଆଇନଗତ ଭାବେ ନିର୍ଦ୍ଦିଷ୍ଟ ରହିବା ଆବଶ୍ୟକ । ଦ୍ୱିତୀୟ କଥା, ଯେଉଁ ସ୍ତରର ଲୋକଙ୍କ ଦ୍ୱାରା ଏନ୍‌କୁଆରୀ କରାଯାଏ, ତାଙ୍କ ରିପୋର୍ଟ ସରକାରଙ୍କର ତଦ୍‌ରୂପ ବା ଶେଷ ସ୍ତରରେ ବିଚାର ନହୋଇ, ସେକ୍ରେଟେରିଏଟର ନିମ୍ନ ସ୍ତରରୁ ନୋଟିଙ୍ଗ ଆରମ୍ଭ ହୋଇ, ଉପରକୁ ଉପରକୁ ଉଠି ଶେଷ ପର୍ଯ୍ୟାୟକୁ ଗଲାବେଳକୁ କେବଳ ମାତ୍ରାଧିକ ବିଳମ୍ବ ଯେ ଘଟେ ତାହା ନୁହେଁ, ମୂଳ ରିପୋର୍ଟର କାର୍ଯ୍ୟ କାରଣ ପ୍ରାସଙ୍ଗିକତା ଦୃଷ୍ଟିରୁ ଅପସରି ଯାଇଥାଏ ଏବଂ ଶେଷ ନିଷ୍ପତି ନେବାଲୋକ ମୂଳ ରିପୋର୍ଟ ନୁହେଁ, ସେ ରିପୋର୍ଟ ଉପରେ ଅନ୍ୟ ରିପୋର୍ଟକାରଙ୍କ ରିପୋର୍ଟ ଦେଖି ଯାହା କରନ୍ତି । ଏହା ଅତ୍ୟନ୍ତ ଗର୍ହିତ ଓ ଅଯଥାର୍ଥ ବ୍ୟବସ୍ଥା ।

ତୃତୀୟ କଥା ଏନକୁଆରୀରେ ଜନ ସହଯୋଗ ସହଜରେ ବା ଯଥାଯଥ ଭାବେ ମିଳେନାହିଁ । ପାଟନାରେ ଗୋଟିଏ କମିଶନ ଛାଡିଦେଲେ, ଅନ୍ୟଗୁଡିକରେ ହଜାରେ ଲୋକଙ୍କୁ ପ୍ରଶ୍ନାବଳୀ ପଠାଇଲେ, ପାଞ୍ଚ ଭାଗରୁ ଭାଗେ ଲୋକଙ୍କଠାରୁ

Digitized by srujanika@gmail.com

ଉତ୍ତର ମିଳେ, ତାହାର ଦଶମାଂଶ ସାକ୍ଷ୍ୟ ଦେବାକୁ ଆସିଲେ ଯଥେଷ୍ଟ । ଏପରି ସ୍ଥଳେ, ନଥିପତ୍ର ଉପରେ ଅଧିକ ନିର୍ଭର କରିବାକୁ ପଡେ । ବିଚାର ବିଭାଗର ଦୁଇ ଅଂଶରେ କାର୍ଯ୍ୟକାଳ କଟାଇଥିବାରୁ ପ୍ରାସଙ୍ଗିକତା ଉପରେ ଦୃଷ୍ଟି ନିବିଷ୍ଟ ରହିବା ସ୍ୱାଭାବିକ । ତେଣୁ ମୌଖିକ ଓ ଲିଖିତ ସାକ୍ଷ୍ୟରୁ ଅନେକ ଅଂଶ କଟିଯାଏ । ଅଭିଜ୍ଞତାରୁ ଦେଖିଲି, ଧାରାବାହିକ ସାକ୍ଷ୍ୟ ଅପେକ୍ଷା ପଚରା ଉଚରାରୁ ଅଧିକ ନିର୍ଭରଯୋଗ୍ୟ ତଥ୍ୟ ସଂଗୃହୀତ ହୁଏ । ଅଧିକାଂଶ ଅଭିଯୋଗ ଲିଖିତ ଆକାରରେ ଆସିଲାବେଳକୁ ତାହା ନ୍ୟୂନ ହୋଇଯାଏ । ଘଟନା ଅପେକ୍ଷା ସନ୍ଦେହ ଉପରେ ବେଶିଭାଗ ଆରୋପିତ ହୋଇଥାଏ । ଉତ୍କଳ ବିଶ୍ୱବିଦ୍ୟାଳୟ ସମ୍ବନ୍ଧ ଏନ୍‌କ୍ୱାରୀ ବେଳେ ଶ୍ରୀଯୁକ୍ତ ହରେକୃଷ୍ଣ ମହତାବ ସାକ୍ଷ୍ୟ ଦେବାପାଇଁ ଅକୁଣ୍ଠିତ ଭାବରେ ଆସିଥିଲେ, ଥରେ ନୁହେଁ, ଦୁଇଥର । ସେହିପରି ଡକ୍ଟର ପ୍ରାଣକୃଷ୍ଣ ପରିଜା ଆସିଲେ କଟକ ସର୍କିଟ ହାଉସକୁ, ଯେଉଁଠାରେ ସାକ୍ଷ୍ୟ ନିଆଯାଉଥିଲା । ମୁଁ ତାଙ୍କ ଘରକୁ ଯିବାପାଇଁ ଚାହିଁଥିଲି । ସେ ନିଜେ ଆସି ପହଞ୍ଚିଲେ; କହିଲେ ମୁଁ ତମ ପାଖକୁ ଆସିବାର କଥା ! ପକ୍ଷାନ୍ତରରେ, କୃଷି ବିଶ୍ୱବିଦ୍ୟାଳୟ ଏନକ୍ୱାରୀ ବେଳେ ଜଣେ ବିଶିଷ୍ଟ ସଂପୃକ୍ତ ବ୍ୟକ୍ତି ତାଙ୍କ ପାଖରେ, ତାଙ୍କ କହିବାନୁସାରେ ଗୁରୁତର କାଗଜପତ୍ରର ଫଟୋଷ୍ଟାଟ କପିଅଛି ଏବଂ ତାହା ସେ ଦେବେ ବୋଲି, ଅନ୍ୟତ୍ର ସାକ୍ଷାତବେଳେ ଏକାଧିକବାର କହିଥିଲେ ସୁଦ୍ଧା, ଖଣ୍ଡେ ବୋଲି ଦେଲେ ନାହିଁ କି ଦେଖାଇଲେ ନାହିଁ, ସାକ୍ଷ୍ୟଦେବା ତ ଦୂରର କଥା । ଜେଲ ସଂସ୍କାର ଏନକ୍ୱାରୀ ସମୟରେ ବେସରକାରୀ ବ୍ୟକ୍ତି ଆଗେଇ ଆସିଲେ ଅତି କମ୍ । ସ୍ୱାଧୀନତା ସଂଗ୍ରାମରେ ଯେଉଁମାନେ ଜେଲ ଯାଇଥିଲେ ଏବଂ ନିଜ ଅନୁଭୂତିରୁ ସଂସ୍କାରର ରୂପରେଖ ଚିହ୍ନିତ କରିପାରିଥାନ୍ତେ, ସେମାନେ ମଧ୍ୟ ନିରବ ରହିଲେ । ସରକାରୀ କର୍ମଚାରୀ ଅନେକ, ବିଶେଷତଃ ଅବସରପ୍ରାପ୍ତ ଜେଲ କର୍ମଚାରୀ, ତାଙ୍କର ମତାମତ ଓ ଜେଲ ପରିଚାଳନାରେ ତ୍ରୁଟି ପ୍ରକାଶ କରିଥିଲେ । ସେହି ଏନ୍‌କ୍ୱାରୀ କାଳମଧ୍ୟରେ ମୁଁ ଥରେ ନିଜ କାର୍ଯ୍ୟରେ ଲଣ୍ଡନ ଯାଇଥିଲି । ସେଠାରେ ଲର୍ଡ ମେ'ଙ୍କର ଜେଲ ସଂସ୍କାର କମିଟିର ରିପୋର୍ଟ ସଦ୍ୟ ପ୍ରକାଶ ପାଇଥାଏ । ସେଥିରୁ ଦେଖିଲି ଜନ ସହଯୋଗର ତତ୍‌ପରତା ଏବଂ ରିପୋର୍ଟ ଦାଖଲ ସଙ୍ଗେ ସଙ୍ଗେ ସମ୍ବାଦପତ୍ର ଓ ଟେଲିଭିଜନରେ ବିସ୍ତୃତ ଆଲୋଚନା ଚାଲିଲା । ସରକାର ପଦକ୍ଷେପ ନ ନେଇ ସ୍ଥିର ରହିବେ ବା କିପରି । ପଚାରି ଜାଣିଲି, ରିପୋର୍ଟ ଉପରେ ସେଠାରେ ପ୍ରାଥମିକ ଟିପ୍‌ପଣୀ ସରକାରଙ୍କର ସଂକ୍ରାନ୍ତ ସେକ୍ରେଟାରୀ (ମନ୍ତ୍ରୀ) କରନ୍ତି ଏବଂ କାବିନେଟ୍‌ରେ ଆଲୋଚିତ ହୋଇ ହାଉସ ଅଫ କମନସରେ ବିବୃତି ଦିଆଯାଇ, କାର୍ଯ୍ୟାନୁଷ୍ଠାନ

Digitized by srujanika@gmail.com

ଆରମ୍ଭ ହୁଏ, ସମ୍ପୃକ୍ତ ଆନୁଷଙ୍ଗିକ ପରିସ୍ଥିତିକୁ ଚାହିଁ । ସେଠା ସରକାର ଗଣଚେତନାର ସମ୍ମୁଖୀନ ସବୁବେଳେ । ଆଉ, ଆମର ?

ଏକାଧିକ ଲୋକଙ୍କୁ ନେଇ କମିଟି ଗଢ଼ିଲେ, କାମ ଗଡି ଗଡି ପଡେ ପ୍ରକୃତରେ ଜଣେ, ଦିଜଣଙ୍କର ଉପରେ । ଅନ୍ୟମାନେ ସାହାଯ୍ୟ କରନ୍ତି ସ୍ଥୂଳ ଆଲୋଚନାରେ । ରିପୋର୍ଟର ଚିଠା ପ୍ରସ୍ତୁତ କରିବା ଦାୟିତ୍ୱ ଜଣଙ୍କର ହେବା ଅପରିହାର୍ଯ୍ୟ । ତାହା ମୁଁ ସବୁଥିରେ ଗ୍ରହଣ କରି ଆସିଛି । ୧୯୮୦ରେ ଓଡିଶାରେ ଛାତ୍ର ଆନ୍ଦୋଳନ ପ୍ରବଳ ହେଲା । ବାଣୀବିହାରରେ ତା'ର ପ୍ରଖରତା ବେଶି । ଡକ୍ଟର ମହେନ୍ଦ୍ରକୁମାର ରାଉତ ଥାଆନ୍ତି କୁଳପତି । ତାଙ୍କୁ ସେକ୍ରେଟାରୀ କରି, ସରକାର ଛାତ୍ର ସମସ୍ୟା ସମାଧାନ ପାଇଁ ଏକ ବଡ କମିଟି ନିଯୁକ୍ତ କଲେ । ଶ୍ରୀଯୁକ୍ତ ହରେକୃଷ୍ଣ ମହତାବ ଚେୟାରମ୍ୟାନ ଏବଂ ଶ୍ରୀଯୁକ୍ତ ରାଧାନାଥ ରଥ, ଡକ୍ଟର ସଦାଶିବ ମିଶ୍ର ଅବସରପ୍ରାପ୍ତ ବିଚାରପତି ରାଜକିଶୋର ଦାସ, ବାଳକୃଷ୍ଣ ପାତ୍ର, ଅଧ୍ୟାପକ ପ୍ରହ୍ଲାଦ ପ୍ରଧାନ, ଶ୍ରୀଯୁକ୍ତ ଶ୍ରଦ୍ଧାକର ସୂପକାର ଓ ମୁଁ ସଭ୍ୟ ଥିଲୁ । ପିଲାଙ୍କ ଭିତରେ ଅନେକ ଦଳ, ରାଜନୈତିକ ମାର୍କା ପ୍ରକାଶ୍ୟ ବା ଅପ୍ରକାଶ୍ୟ ଥାଇ । ଅଭିଯୋଗର ତାଲିକାଠାରୁ ଦାବୀର ସଂଖ୍ୟା ବହୁ ଅଧିକ ଥିଲା । କମିଟିର ବୈଠକ ବିଶ୍ୱବିଦ୍ୟାଳୟ ସିଣ୍ଡିକେଟ ରୁମରେ ବସୁଥାଏ କ୍ରମାଗତ । ଦୁଇଥର କଟକରେ ଆମ ଘରେ ବସିଥିଲା । ଉତ୍କଳ ବିଶ୍ୱବିଦ୍ୟାଳୟ ଅତିଥି ଭବନରେ ଥରେ ହେଲା । କମିଟି ଗୋଟିଏ ପ୍ରାଥମିକ ରିପୋର୍ଟ ମଝିରେ ଦେଲେ, କେତୋଟି ଦାବୀ ବିଷୟରେ । ଶେଷ ରିପୋର୍ଟ ଦିଆଗଲା ୨୬/୧୨/୮୦ ତାରିଖରେ । କମିଟିର ଅଧିକାଂଶ ସୁପାରିଶ ସରକାର ଗ୍ରହଣ କଲେ, ପିଲାଙ୍କ ଚାପରେ ।

ପାଟନାରୁ ୧୯୬୯ରେ ଫେରିବା ପରେ, ଦଶବର୍ଷ ଏହିପରି ମୁଖ୍ୟତଃ ଏନକ୍ୱାଇରୀ କାର୍ଯ୍ୟରେ କାଟିବାକୁ ପଡିଛି । କାମ ବା ଦାୟିତ୍ୱରେ କ୍ଳାନ୍ତି ଆସି ନାହିଁ ।



Digitized by srujanika@gmail.com

# ଏମରଜେନ୍‌ସି ଓ ପରେ

୧୯୭୫ ଏମରଜେନ୍‌ସିବେଳେ ଦେଶରେ କେତେ ଓଲଟପାଲଟ ହୋଇଗଲା । ପ୍ରଧାନମନ୍ତ୍ରୀ ଇନ୍ଦିରା ଗାନ୍ଧି ଆହ୍ଲାବାଦ ହାଇକୋର୍ଟରେ ତାଙ୍କ ନିର୍ବାଚନ ଅସିଦ୍ଧ ହୋଇଯିବା ପରେ, ସିଦ୍ଧାର୍ଥଶଙ୍କର ରାୟଙ୍କ ପରାମର୍ଶରେ ଦେଶରେ ଆଭ୍ୟନ୍ତରିକ ଜରୁରୀ ପରିସ୍ଥିତି ଉପୁଜିଥିବାର ଘୋଷଣା ରାଷ୍ଟ୍ରପତିଙ୍କ ସ୍ୱାକ୍ଷରରେ ପ୍ରକାଶ କରିଦେଲେ, କେବଳ ତାଙ୍କର ସ୍ଥିତି କାଏମ ରଖିବା ପାଇଁ । ଏକଛତ୍ରବାଦ ତ ତାଙ୍କର ନୀତି ଥିଲା; ଏ ଘୋଷଣା ପରେ ତାହା ଆଇନଗତ ଦୃଢ଼ତା ପାଇଗଲା । ନାଗରିକ ସ୍ୱାଧୀନତା, ମୌଳିକ ଅଧିକାର ଖର୍ବ ହୋଇଗଲା । ଧରପଗଡର କୋକୁଆ ଭୟରେ ସମସ୍ତଙ୍କୁ ବିଚଳିତ କରି ରଖିବାର ଚେଷ୍ଟା ସରକାରୀ କଳର ମୁଖ୍ୟ ନୀତି ହୋଇଗଲା । ଆମ ରାଜ୍ୟର ସେତେବେଳେ ମୁଖ୍ୟମନ୍ତ୍ରୀ ନନ୍ଦିନୀ ଶତପଥୀ । ଦିଲ୍ଲୀକୁ ଓଡିଶା ଆଉ ହାତେ ବଳିଗଲା । କଟକରେ କଲେକ୍ଟର ନଳିନୀ ପଣ୍ଡା ତହୁଁ ବଳିଲେ । କ୍ଷମତାଧିକାରୀଙ୍କ କଥା ଛାଡ, ତାଙ୍କ ପରିବାର ଲୋକଙ୍କର ଔଦ୍ଧତ୍ୟ କାହିଁକି କେତେ । ଧରାକୁ ସରା ମଣିଲେ, ସେମାନେ ।

ନବକୃଷ୍ଣ ଚୌଧୁରୀ ଦିନେ ଆସିଲେ ଆମ ଘରକୁ ଚାରିଜଣଙ୍କୁ ସାଙ୍ଗରେ ନେଇ । କହିଲେ, ପୂର୍ବଦିନ ଶ୍ରୀରାମଚନ୍ଦ୍ର ଭବନରେ ସଭା ହୋଇଥିଲା, ସ୍ଥିର ହେଲା ଓଡିଶାରେ ନାଗରିକ ସ୍ୱାଧୀନତା କମିଟି ଗଠିତ ହେବ । ମୁଁ ପ୍ରେସିଡେଣ୍ଟ ହେବା ସେମାନେ ଚାହାନ୍ତି । ମନ ଭାରାକ୍ରାନ୍ତ ଥାଏ, ହଁ ଭରିଲି । ରାଷ୍ଟ୍ରସ୍ତରରେ PUCL (People's Union of Civil Liberty)ଗଢ଼ା ହେଲା, ଦିଲ୍ଲୀରେ; ବମ୍ବେ ହାଇକୋର୍ଟର ଅବସରପ୍ରାପ୍ତ ବିଚାରପତି ତାରକୁଣ୍ଡେଙ୍କ ଅଧକ୍ଷତାରେ । ମିଟିଙ୍ଗ ଆମ ଘରେ ବସୁଥାଏ, ଥୋରିଆସାହି ଗୁଣନିଧି ଭବନରେ ଅଧିକାଂଶବେଳେ ବସେ । ଆଇ.ଜି. ନରସିଂହ ସ୍ୱାଇଁଙ୍କ ନିର୍ଦ୍ଦେଶରେ ପୁଲିସ ଛକିଥାନ୍ତି ଆମ ପଛେ ପଛେ— ଆଗକୁ ଆସିନଥିଲେ କେବେ । ଜିଲ୍ଲାମାନଙ୍କରେ କମିଟିର ଶାଖା ଗଢ଼ାଗଲା । କେତେକ

Digitized by srujanika@gmail.com

ସ୍ଥାନକୁ ମୁଁ ଗଲି । ଅନ୍ୟତ୍ର ଅନ୍ୟମାନେ ଗଲେ । ଜରୁରୀ ପରିସ୍ଥିତି ଘୋଷଣାର ପ୍ରକାଶ୍ୟ ବିରୋଧ ଯୋଗୁ ଏହି କମିଟି, ବିଶେଷ ଭାବେ ଛାତ୍ର ଓ ଯୁବ ସଂପ୍ରଦାୟ ଓ କଂଗ୍ରେସ (ଇ) ବିରୋଧଦଳଙ୍କର ସହଯୋଗ ଓ ପ୍ରିୟତା ଲାଭ କରିଥିଲା । କ୍ଷମତାସୀନ ସରକାରଙ୍କର ଅପ୍ରିୟ ହେବାର କଥା, ହେଲା ।

ଓଡିଶାରେ ଅନେକଙ୍କୁ ଗିରଫ, ଅଟକ କଲେ । ମହତାବବାବୁ, ନବବାବୁ, ବାଦ୍ ଗଲେ ନାହିଁ । ୧୯୭୬ ମାର୍ଚ୍ଚ ମାସ ଶେଷ ସପ୍ତାହରେ ମୁଁ ପୁରୀ ଯାଇଥିଲି । ସେଠାରେ ମହତାବବାବୁଙ୍କର ୨୬/୩/୭୬ ରିଖର ପତ୍ର ନେଇ 'ପ୍ରଜାତନ୍ତ୍ର'ର ବାର୍ତ୍ତା ସମ୍ପାଦକ ଚନ୍ଦ୍ରଶେଖର ମହାପାତ୍ର ଓ ଅନ୍ୟ ଦୁଇଜଣ ଉପସ୍ଥିତ ହେଲେ । ବୁଝିଲି, ସେ ବର୍ଷର ବିଷୁବମିଳନ ବନ୍ଦ କରିଦେଇ ମହତାବଙ୍କୁ ଓ 'ପ୍ରଜାତନ୍ତ୍ର' ଅନୁଷ୍ଠାନକୁ ଲୋକଚକ୍ଷୁରେ ନ୍ୟୁନ କରିଦେବା ପାଇଁ ସରକାର ଚେଷ୍ଟିତ । ମହତାବଙ୍କୁ ପାରୋଲରେ କିଛିଦିନ ପାଇଁ ଛାଡିଥାଆନ୍ତି କିନ୍ତୁ କଟକ ବା ଅନ୍ୟତ୍ର ଭୁବନେଶ୍ୱର ଛଡା ଯାଇପାରିବେ ନାହିଁ ବୋଲି ନିଷେଧ ଥାଏ । ଏପ୍ରିଲ ୧୧ ତାରିଖରେ ବିଷୁବମିଳନ ଆରମ୍ଭ ହେବାର କଥା । ମହତାବବାବୁ ଲେଖିଥିଲେ, ମୁଁ ସେ ଦାୟିତ୍ୱ ନେବାପାଇଁ । ମୁଁ ସ୍ୱୀକାର କଲି ଏବଂ ତହିଁ ଆରଦିନ କଟକ ଆସିଲି । ଏକଥା ପ୍ରକାଶ ପାଇବାରୁ, ଜଣେ ସେକ୍ରେଟାରୀ ମୋ ପାଖକୁ ଆସିଲେ ଉଚ୍ଚତମ ସ୍ତରର ନିର୍ଦ୍ଦେଶ ଅନୁଯାୟୀ ପରୋକ୍ଷରେ ମତେ ପ୍ରବର୍ତ୍ତାଇଲେ ଓହରି ଯିବାପାଇଁ । ବିଷୁବମିଳନରେ ଗଣ୍ଡଗୋଳ ଆଶଙ୍କା ଅଛି ବୋଲି କହି ପୁଲିସ ପକ୍ଷରୁ ମଧ୍ୟ ତଦ୍ରୂପ ଚେଷ୍ଟା ହେଲା । ମୁଁ ସକ୍ରିୟ ରାଜନୀତିର ଲୋକ ନୁହେଁ, କାହିଁକି ଝାମେଲାରେ ଅଯଥା ପଶିବି— ସଦୁପଦେଶ ଯେ ପଠାଇଥିଲେ, ଜନତା ସରକାରବେଳେ, ପୁଲିସ ଉଚ୍ଚ ବିଦ୍ୟାଳୟର ପୁରସ୍କାର ଉତ୍ସବରେ ମୋର (ମୁଖ୍ୟ ଅତିଥି) ପରିଚୟ ଦେବାକୁ ଯାଇ ଏମରଜେନ୍‌ସି ବେଳର ମୋ କାର୍ଯ୍ୟର ଚତୁର୍ମୁଖ ପ୍ରଶଂସା କରିବାରେ ଦ୍ୱିଧା କରି ନଥିଲେ । ବିଷୁବ ମିଳନ ବାଧାଗ୍ରସ୍ତ ହୋଇପାରିବ ନାହିଁ ବୋଲି ଜଣା ପଡିବାରୁ, ଦିନକ ପୂର୍ବରୁ (୧୦ତାରିଖ) ମହତାବଙ୍କୁ ଅନୁମତି ପତ୍ର ମିଳିଲା, ସେ ୧୫ ତାରିଖ ପର୍ଯ୍ୟନ୍ତ କଟକ ଯାଇ ପାରିବେ । ବିଷୁବମିଳନରେ ସେ ଆସି ଯୋଗଦେବାରେ ସେ ଯେତେ ପ୍ରୀତ ହେଲେ, ତା'ଠାରୁ ଅଧିକ ପ୍ରୀତ ହେଲେ ଦର୍ଶକ ଓ ଶ୍ରୋତୃବୃନ୍ଦ । ମୁଁ ମଧ୍ୟ ପ୍ରୀତ ହେଲି, ଏକ ଚକ୍ରାନ୍ତ ବ୍ୟର୍ଥ ହେବାରେ ମୁଁ କିଛି କାରଣ ହୋଇପାରିଲି । ୧୮ ତାରିଖ (୧୮/୪/୭୬) ପତ୍ରରେ ମହତାବବାବୁ ଲେଖିଲେ— " It was the Divine Grace which made the function of Visuvamilan successful in all respects. your

Digitized by srujanika@gmail.com

stewardship has largely contributed to the success the institution achieved. Since I was permitted to go to Cuttack only till the 15th , I tried to contact you on the 14th and also on the 15th afternoon, but you were out. Otherwise I would have personally conveyed to you my heart-full thanks for the trouble which you took. I hope, you will not please mind if I insist on requesting you to take continuous interest in the institution which has been built in the course of the last twenty seven years.....My parole period will be over on the 25th. I donot know where I shall be after that date. But I have so much faith in the Divine that all the institutions will go on well even though I may not be present because of the willing sympathy and the support which friends like you rendered to them,"

ଅନ୍ୟ ଏକ ପତ୍ରରେ ୨୩/୪/୭୬ରେ ସେ ଲେଖିଥିଲେ, ଅନିଶ୍ଚିତ ଅବସ୍ଥାର ପ୍ରତିଧ୍ୱନିରେ,......" most likely I shall be in prison on the 25th. Uptill now I have received no order from the Government, except that I shall have to surrender myself to the Bhubaneswar Sub-jail on the 25th by 4 P.M, We are passing through a wonderful period. Nobody konws when it is comming to an end."

ବିଷୁବମିଳନ ହୋଇଗଲା ସତ, କିନ୍ତୁ ଏମରଜନ୍‌ସି ଶେଷ ନ ହେବାଯାଏ, ମହତାବବାବୁ ବନ୍ଦୀଶାଳାରୁ ମୁକ୍ତ ନହେବା ପର୍ଯ୍ୟନ୍ତ ସରକାରଙ୍କର ପ୍ରତ୍ୟକ୍ଷ ଓ ପରୋକ୍ଷ ଭୟରେ 'ପ୍ରଜାତନ୍ତ୍ର' ପରିସରରେ ଲୋକଗହଳି ନଥିଲା । ସେହିପରି ଅବସ୍ଥା ଥିଲା ଥୋରିଆସାହି ସର୍ବୋଦୟ କାର୍ଯ୍ୟାଳୟରେ । ଜଣେ ଲୋକର ଇଚ୍ଛାରେ, ଶିକ୍ଷିତ ସିଭିଲ ସର୍ଭିସ, ଦଳୀୟ ମୁଖ୍ୟ ଲୋକେ ଏବଂ ସାଧାରଣ ଲୋକେ ଏପରି ମ୍ରିୟମାଣ, ହାଁ ହଜୁର ହୋଇଗଲେ, ଭାବିଲାବେଳକୁ କ୍ଷୋଭ ଓ ଲଜ୍ଜା ଲାଗୁଛି । ସୁପ୍ତ ଲୋକଙ୍କର ମନ ସୁପ୍ତ ନଥିଲା । ୧୯୭୭ ନିର୍ବାଚନରେ ଏମରଜେନସିର ପ୍ରତିକ୍ରିୟା ପ୍ରକାଶ ପାଇଲା, ଇନ୍ଦିରା ଗାନ୍ଧି ଓ ତାଙ୍କ ଦଳର ଶୋଚନୀୟ ପରାଜୟରେ ।

ପାଟନାରୁ ଆସିବା ପରେ, କଳାବିକାଶ କେନ୍ଦ୍ରର ସଭାପତି ଓ ପ୍ରତିନିଧି ଭାବରେ ଓଡିଶା ସଂଗୀତ ନାଟକ ଏକାଡେମୀର ସଭ୍ୟ ହେଲି । ଡକ୍ଟର ମହତାବ

Digitized by srujanika@gmail.com

ପ୍ରେସିଡେଣ୍ଟ ଥାଆନ୍ତି; ତିନି ଏକାଡେମୀର । କାର୍ଯ୍ୟକାରୀ ସମିତିକୁ ନିର୍ବାଚିତ ହୋଇ, ଉତ୍କଳ ସଂଗୀତ ମହାବିଦ୍ୟାଳୟର ପରିଚାଳନା କମିଟିକୁ ଯାଇ, ଏକାଡେମୀ ଓ ବିଦ୍ୟାଳୟ ବିଷୟରେ ପ୍ରତ୍ୟକ୍ଷ ଭାବରେ ଅବହିତ ହେବାର ସୁବିଧା ମିଳିଲା । କାଳୀଚରଣ ପଟ୍ଟନାୟକ ଏକାଡେମୀ ଉପସଭାପତି ଥାଆନ୍ତି । କଳାବିକାଶ କେନ୍ଦ୍ର ଓଡିଶାର ସର୍ବପ୍ରଥମ ବେସରକାରୀ ଅନୁଷ୍ଠାନ, ସଙ୍ଗୀତ, ନୃତ୍ୟ ବାଦ୍ୟ ଶିକ୍ଷା ଓ ଅନୁଶୀଳନରେ । ୧୯୫୨ ରୁ ଆରମ୍ଭ ହୋଇଥିଲା ବାବୁଲାଲ ଦୋଷୀଙ୍କର ମୁଖ୍ୟ ଚେଷ୍ଟାରୁ । ତାଙ୍କର ସହଯୋଗୀ ଥିଲେ ବୈକୁଣ୍ଠନାଥ ମହାନ୍ତି, ମନୋରଞ୍ଜନ ଦାସ ପ୍ରଭୃତି । ମୋର ସମ୍ପର୍କ ମୂଳରୁ ଥିଲା ବୋଲି ବାବୁଲାଲବାବୁ ତାଙ୍କ ଜୀବନୀରେ ଉଲ୍ଲେଖ କରିଛନ୍ତି । କେନ୍ଦ୍ର ପ୍ରତିଷ୍ଠା ପାଇଁ ପ୍ରଥମ ଚାନ୍ଦା (ଏକଶତଟଙ୍କା) ମୋଠାରୁ ନେଇଥିଲେ । ଏକଥା ମୋର ମନେ ନ ଥିଲା । ପରିଜା ସାହେବ ପ୍ରଥମରୁ କେନ୍ଦ୍ରର ପ୍ରେସିଡେଣ୍ଟ ଥିଲେ ୨/୩ ବର୍ଷ । ତାପରେ ଶ୍ୟାମସୁନ୍ଦର ମିଶ୍ର ଅଳ୍ପଦିନ ହେଲେ । ତାପରେ ମୁଁ ରହିଆସିଛି ପ୍ରେସିଡେଣ୍ଟ ରୂପେ ପ୍ରାୟ ତିରିଶ ବର୍ଷ ହେଲା । ଏକାଡେମୀକୁ ମୁଁ ଯିବାରେ ମହତାବବାବୁ ସନ୍ତୋଷ ପ୍ରକାଶ କରି ଏକ ଅଭିନନ୍ଦନ ପ୍ରସ୍ତାବ ସାଧାରଣ ଅଧିବେଶନରେ ଲିପିବଦ୍ଧ କରିଥିଲେ । ପରେ ଅନ୍ୟଏକ ସଭ୍ୟ ଶ୍ରୀମତୀ କୁନ୍ତଳାକୁମାରୀ ଆଚାର୍ଯ୍ୟ ଆପତ୍ତି ଦର୍ଶାଇ ପତ୍ର ଲେଖିଲେ କାହିଁକି ଜଣେ ସଭ୍ୟକୁ ଏପରି ସ୍ୱାଗତ କରାଗଲା । କଳାବିକାଶ କେନ୍ଦ୍ରର ଉନ୍ନତି ଓ କାର୍ଯ୍ୟ କୁଶଳତା କେତେକଙ୍କ ମନରେ ଈର୍ଷାଭାବ ଜନ୍ମାଇଥିବାର ଲକ୍ଷ୍ୟ କଲି । ସଂଗୀତ ନୃତ୍ୟ ଅନୁଷ୍ଠାନମାନଙ୍କୁ ବାର୍ଷିକ ସାହାଯ୍ୟ ଏକାଡେମୀରୁ ମିଳେ । କଳାବିକାଶ କେନ୍ଦ୍ରକୁ ମଧ୍ୟ । ତାହା ଅନ୍ୟମାନଙ୍କ ତୁଳନାରେ ବେଶି । ସେଥିପାଇଁ କେତେକଙ୍କର ଗାତ୍ରଦାହ ହୋଇ, ତାକୁ ବନ୍ଦ କରିବା ପାଇଁ କିମ୍ବା କମାଇବା ପାଇଁ ଚେଷ୍ଟା କଲେ । କେତେକ ଗୋଟିଏ ମିଟିଙ୍ଗରେ କେନ୍ଦ୍ରର କାର୍ଯ୍ୟ ସମ୍ବନ୍ଧରେ ତନଖି କରି ରିପୋର୍ଟ ଦେବାପାଇଁ ଜଣେ କର୍ମଚାରୀଙ୍କୁ ଭାରଦେଲେ । ସେ ମିଟିଙ୍ଗରେ ମୁଁ ନଥିଲି । ପରେ ଜାଣିଲି ସେ ମିଟିଙ୍ଗରେ ଉପସଭାପତି କାଳୀଚରଣ ପଟ୍ଟନାୟକ ଉପସ୍ଥିତ ଥିଲେ ମଧ୍ୟ, ସାଂସ୍କୃତିକ ବିଭାଗର ସେକ୍ରେଟରୀ ଅଧ୍ୟକ୍ଷତା କରିଥିଲେ । ପରବର୍ତ୍ତି ମିଟିଙ୍ଗରେ ମହତାବବାବୁଙ୍କ ଅଧ୍ୟକ୍ଷତାରେ ବସିଲାବେଳେ ପୂର୍ବ ମିଟିଙ୍ଗି ଉପସଭାପତି ଉପସ୍ଥିତ ଥାଇ ଅଧ୍ୟକ୍ଷତା ନ କରିଥିବାରୁ ଅସିଦ୍ଧ, ତେଣୁ କଳାବିକାଶ କେନ୍ଦ୍ର ବିଷୟରେ ଯେଉଁ ପସ୍ତାବ ସେଥିରେ ହୋଇ ଆର୍ଥିକ ସାହାଯ୍ୟ ଅଟକା ଯାଇଥିଲା, ତାହା କାର୍ଯ୍ୟକାରୀ ହେବା ଅବିଧେୟ ବୋଲି ମୁଁ ଆପତ୍ତି ଉଠାଇବାରୁ

Digitized by srujanika@gmail.com

ଶ୍ରୀଯୁକ୍ତ ମହତାବ ତାହା ସ୍ୱୀକାର କଲେ । କିନ୍ତୁ ସମସ୍ତଙ୍କ ମାନ ରହି କଅଣ ବ୍ୟବସ୍ଥା କଲେ ଭଲହେବ ତାହା ସୂଚାଇବା ପାଇଁ ମତେ ଖଣ୍ଡିଏ ଲେଖା ବଢ଼ାଇ ଦେଲେ । କଳାବିକାଶ କେନ୍ଦ୍ରକୁ ଆର୍ଥିକ ସାହାଯ୍ୟ ପୂରା ମଞ୍ଜୁର ହେଲା । ପୂର୍ବ ଅଧିବେଶନରେ ଉପସଭାପତି ଅସୁସ୍ଥ ବୋଧ କରୁଥିବାରୁ ଅଧକ୍ଷତା କରିପାରି ନଥିଲେ ବୋଲି ପ୍ରକାଶ କରାଗଲା । ସେହି ସମୟଠାରୁ ଏକାଡେମୀର ସଭ୍ୟ ମୁଁ ହୋଇ ଆସୁଥିଲି ।

ଏମରଜେନ୍‌ସି ପରେ ୧୯୭୯ ମାର୍ଚ୍ଚରେ ମୁଁ ତାହାର ପ୍ରେସିଡେଣ୍ଟ ନିଯୁକ୍ତ ହେଲି । ଧୀରେନ ପାଢ଼ୀ ଆଇ.ଏ.ଏସ୍. ଡିରେକ୍ଟର, ମନୋରଞ୍ଜନ ଦାସ ସେକ୍ରେଟାରୀ ଥିଲେ । ମହାବିଦ୍ୟାଳୟର ଅଧକ୍ଷା ଥିଲେ ଶ୍ରୀମତୀ ମିନତି ମିଶ୍ର । ଉତ୍ସାହର ସହିତ କାର୍ଯ୍ୟ ଚାଲିଲା । ଓଡିଶୀ ସଂଗୀତର  ବ୍ୟାକରଣ ପ୍ରସ୍ତୁତ କରିବା ପାଇଁ ବିଶେଷଜ୍ଞ କେତେଜଣଙ୍କୁ ଦାୟିତ୍ୱ ଦିଆଗଲା ଏବଂ ସେ କାର୍ଯ୍ୟ ପୂର୍ଣ୍ଣହେଲେ ତାହା ଛାପିବା ସ୍ଥିର ହେଲା । ମହାବିଦ୍ୟାଳୟକୁ ଉତ୍କଳ ବିଶ୍ୱବିଦ୍ୟାଳୟର ସ୍ୱୀକୃତି ଅନ୍ତର୍ଭୁକ୍ତ ବହୁ ଚେଷ୍ଟାରେ କରାହେଲା । ଅନ୍ୟଏକ ଉଲ୍ଲେଖନୀୟ କାର୍ଯ୍ୟ ହେଲା ଖାରବେଳଙ୍କ ସମୟର ଖୋଦିତ ଉଦୟଗିରି ପର୍ବତ ଗୁମ୍ଫାରେ ରାତ୍ରୀରେ ଏକ ନାଟକ ଅଭିନୟ । ଏଥିରେ ଶ୍ରୀଯୁକ୍ତ ଧୀରେନ୍ ଦାସ, ଏକାଡେମୀର ସ୍ୱତନ୍ତ୍ର ଅଫିସର ବିଶେଷ ଦକ୍ଷତାର ସହିତ ସାହାଯ୍ୟ ଓ ଆୟୋଜନ କରିଥିଲେ । ରାଜ୍ୟପାଳ ଉଦ୍‌ଘାଟନ ଓ ଡକ୍ଟର ମହତାବ ଅଧକ୍ଷତା କରିଥିଲେ । ସେହି ଗୁମ୍ଫା ଯେ ପୂରାକାଳରେ ଅଭିନୟ ପାଇଁ ବ୍ୟବହୃତ ହେଉଥିଲା, ଏହା ପରୀକ୍ଷା ଓ ପ୍ରତିପାଦିତ କରିବା ଆମର ଲକ୍ଷ୍ୟ ଥିଲା । ସେ ସନ୍ଧ୍ୟାର ମନୋରମ ପରିବେଶ, ସମବେତ ବହୁ ସଂଖ୍ୟକ ଦର୍ଶକଙ୍କର ହୃଦୟଗାହୀ ହୋଇଥିବାରୁ ମୁଁ ସନ୍ତୋଷ ଲାଭ କରିଥିଲି । ମୋର ଇଛା ଥିଲା, ଖଜୁରାହୋ ମନ୍ଦିର ପରିବେଶରେ ବାର୍ଷିକ ନୃତ୍ୟ ଉତ୍ସବ ହେଲାପରି, ଉଦୟଗିରିରେ କରିବା । ଏ ପ୍ରସ୍ତାବ ଓଡିଶା ସରକାର ଓ ଭାରତ ସରକାରଙ୍କ ଅନୁମୋଦନ ପାଇଁ ଯାଇଥିଲା । ସେ ଦିଗରେ ଅଧିକ ପଦକ୍ଷେପ ନେବା ପୂର୍ବରୁ ମୁଁ ଏକାଡେମୀ ଛାଡି ଦେଇଥିଲି ।

ଉତ୍କଳ ସଂଗୀତ ମହାବିଦ୍ୟାଳୟକୁ ଖଇରାଗଡ (ମଧପ୍ରଦେଶ) ଇନ୍ଦିରା (ପ୍ରଧାନମନ୍ତ୍ରୀ ନୁହନ୍ତି, ଖଇରାଗଡ ରାଜକନ୍ୟାଙ୍କ ନାମାନୁସାରେ ହୋଇଛି) ସଙ୍ଗୀତ କଳା ବିଶ୍ୱବିଦ୍ୟାଳୟ ପରି ଏକ ସ୍ୱୟଂଚାଳିତ ଶିକ୍ଷା ଅନୁଷ୍ଠାନ କରିବା ପାଇଁ ମୋର ପ୍ରୟାସ ଥିଲା । କିନ୍ତୁ କେତେକ ଅଧାପକ ସରକାରୀ ଚାକିରୀଭୁକ୍ତ ହେଲେ ଶୀଘ୍ର କେତେକ ସୁବିଧା ମିଳିପାରିବା ଆଶାରେ ସଂପୃକ୍ତ ମନ୍ତ୍ରୀଙ୍କ ମାଧମରେ ମୁଖ୍ୟମନ୍ତ୍ରୀ

Digitized by srujanika@gmail.com

ଜାନକୀବଲ୍ଲଭ ପଟ୍ଟନାୟକଙ୍କ ସମର୍ଥନ ପାଇଲେ ମହାବିଦ୍ୟାଳୟକୁ ଏକାଡେମୀରୁ ଅନ୍ତର କରି ସରକାରଙ୍କ ସାଂସ୍କୃତିକ ବିଭାଗ ଅଧୀନକୁ ଅଣାଯିବା ପାଇଁ । ଏହା ଏକ ଅନ୍ତର୍ଘାତି ପଦକ୍ଷେପ ଏବଂ ଏହାଦ୍ୱାରା ମହାବିଦ୍ୟାଳୟର ଭବିଷ୍ୟତ ସ୍ୱାତନ୍ତ୍ର୍ୟ ଉଧେଇ ପାରିବ ନାହିଁ ବୋଲି ମୁଁ ଲେଖିବାରୁ, ପ୍ରସ୍ତାବ କିଛିକାଳ ଧିମେଇଗଲା । ମାତ୍ର ପରେ ତାହା ସ୍ଥିର ହେବାରୁ, ମୁଁ ପ୍ରତିବାଦ ଜଣାଇ ଇସ୍ତଫା ଦେଇଦେଲି । ସେତେବେଳକୁ ମୋ କାର୍ଯ୍ୟକାଳ କେତେମାସ ବାକୀ ଥିଲା ।

ଅନ୍ୟ ଏକ ଘଟନାରେ ବହୁ ଆଲୋଡନ କିନ୍ତୁ ଅନେକ ସନ୍ତୋଷ ମିଳିଥିଲା । ଭାରତ ସରକାରଙ୍କ ଆନୁକୂଲ୍ୟ ଓ ସହାୟତାରେ ଏକାଡେମୀ ତରଫରୁ ଗୋଟିଏ ଓଡିଶୀ ନୃତ୍ୟ ଦଳ ପ୍ରଥମ ଥର ପାଇଁ ଦେଶ ବାହାରକୁ ପଠାଇବା ସ୍ଥିର ହେଲା । ଶିଳ୍ପୀ ମନୋନୀତ ହୋଇ ଏକାଡେମୀର ସହକାରୀ ସମ୍ପାଦକ ଶ୍ରୀ ଧୀରେନ୍ଦ୍ରନାଥ ପଟ୍ଟନାୟକଙ୍କ ଅଧିନାୟକତ୍ୱରେ ଯିବାର ସବୁ ବ୍ୟବସ୍ଥା କରି ସାରିବା ପରେ, ଜଣେ କଂଗ୍ରେସ (ଇ) ବିଧାୟିକାଙ୍କ କନ୍ୟାକୁ ସେହି ଦଳରେ ଅନ୍ତର୍ଭୁକ୍ତ କରିବା ପାଇଁ ସଂପୃକ୍ତ ମନ୍ତ୍ରୀ ଓ ଶାସନ ସଚିବ ହସ୍ତକ୍ଷେପ ଆରମ୍ଭ କଲେ । ଯେଉଁମାନେ ମନୋନୀତ ହୋଇ ତାଲିମ ପାଇ, ପ୍ରସ୍ତୁତ ହୋଇ ସାରିଥିଲେ ତାଙ୍କ ମଧ୍ୟରୁ ଜଣକୁ ବାଦ ଦେଇ, ବିଧାୟିକାଙ୍କ କନ୍ୟାକୁ ନେବା ଅସଙ୍ଗତ ହେବ ବୋଲି ମୁଁ ନାସ୍ତି କରିବାରେ, ଶାସନ ସଚିବ (ମନ୍ତ୍ରୀଙ୍କ ନିର୍ଦ୍ଦେଶରେ) କେନ୍ଦ୍ର ସରକାରଙ୍କୁ ଟେଲିଗ୍ରାମ, ଟେଲିଫୋନ୍ ଦ୍ୱାରା ଆମ ସିଦ୍ଧାନ୍ତରେ ପରିବର୍ତ୍ତନ କରାଇବାର ପ୍ରୟାସରେ ବିଫଳ ହେବାରୁ, ଶେଷ ମୁହୂର୍ତ୍ତରେ ସହକାରୀ ସମ୍ପାଦକଙ୍କୁ ସେ ଗସ୍ତରେ ଯିବାକୁ ନିଷେଧ କଲେ । ଧୀରେନବାବୁ ଏକାଡେମୀ ପ୍ରେସିଡେଣ୍ଟଙ୍କ ନିର୍ଦ୍ଦେଶ ପାଳନ କରୁଛନ୍ତି ବୋଲି ସାହସର ସହିତ ଶାସନ ସଚିବଙ୍କୁ ଜଣାଇ ଇଉରୋପକୁ ଦଳକୁ ନେଇ ଚାଲିଗଲେ । ମନ୍ତ୍ରୀଙ୍କ ରୋଷ ହେବା ସ୍ୱାଭାବିକ । କଥା ସେତିକରେ ରହିଲା ନାହିଁ । ବୋଧହୁଏ, ଏକାଡେମୀକୁ ଖର୍ବ କରିବା ପାଇଁ ମହାବିଦ୍ୟାଳୟକୁ ଅନ୍ତର କରି ନିଆହେଲା । ଘଇତା ପଛକେ ମରୁ, ସଉତୁଣୀ ରାଣ୍ଡ ହେଉ ।

ବିଶ୍ୱ ହିନ୍ଦୁ ପରିଷଦ ଏକ ବେସରକାରୀ ରାଷ୍ଟ୍ରୀୟ ଅନୁଷ୍ଠାନ । ଏହାର ଶାଖା ଅନେକ ବିଦେଶରେ ଏବଂ ଭାରତର ସମସ୍ତ ରାଜ୍ୟରେ ଅଛି । ସରକାରଙ୍କର କୋପଦୃଷ୍ଟିରୁ ଏହାର ନିସ୍ତାର ନଥାଏ, ଯେହେତୁ ଏହା ଅଣହିନ୍ଦୁ ସଂଗଠନମାନଙ୍କ ଦ୍ୱାରା ଦରିଦ୍ର, ଅନୁନ୍ନତ ହିନ୍ଦୁମାନଙ୍କୁ ଧର୍ମାନ୍ତର ଗ୍ରହଣ କରିବାର ପରିକଳ୍ପିତ ପ୍ରକ୍ରିୟାର

Digitized by srujanika@gmail.com

ପ୍ରକାଶ୍ୟ ପ୍ରତିରୋଧ କରେ ଏବଂ ସେ ଦିଗରେ ସରକାର ବିହିତ ପଦକ୍ଷେପ ନ ନେବାରୁ, ସରକାରଙ୍କୁ ତୀବ୍ର ସମାଲୋଚନା କରେ । ଶିକ୍ଷା, ସ୍ୱାସ୍ଥ୍ୟ, ଧର୍ମାଚରଣ କ୍ଷେତ୍ରରେ ଅବହେଳିତ ହିନ୍ଦୁ ସମ୍ପ୍ରଦାୟମାନଙ୍କ ମଧ୍ୟରେ, ବିଶେଷ କରି ହରିଜନ, ଗିରିଜନ, ଆଦିବାସୀ ଅଞ୍ଚଳରେ ସଂଗଠନ ଓ ସେବା କାର୍ଯ୍ୟରେ ପରିଷଦକୁ ଅନେକ ପଦସ୍ଥ ସରକାରୀ କର୍ମଚାରୀ ସାହାଯ୍ୟ କରିବାକୁ ଆଗେଇ ଆସନ୍ତି । ଏହାର ଅଧ୍ୟକ୍ଷ ମେଓ୍ୱାରର ରାଣା ପ୍ରତାପଙ୍କର ବର୍ତ୍ତମାନ ବଂଶଧର । ଏହା ଏକ ଟ୍ରଷ୍ଟବୋର୍ଡ ଦ୍ୱାରା ପରିଚାଳିତ ହୁଏ । କାର୍ଯ୍ୟକାରୀ ଭାବରେ ଗଭର୍ଣ୍ଣିଙ୍ଗ କାଉନସିଲର କାର୍ଯ୍ୟ କରେ । କାହାଆଡୁ ବା କାହା ସୂଚନାରୁ କହି ପାରିବି ନାହିଁ, ଏମରଜେନ୍‌ସିବେଳେ ଦିଲ୍ଲୀରୁ ପରିଷଦର ସମ୍ପାଦକ ଆସି ମତେ ଲଗାଇଲେ, ଓଡିଶା ଶାଖାକୁ ସକ୍ରିୟ କରିବା ପାଇଁ ଓ ତାହାର ସଭାପତି ହେବା ପାଇଁ । କଲିକତାର ଅବସରପ୍ରାପ୍ତ ବିଚାରପତି ରମାପ୍ରସାଦ ମୁଖାର୍ଜି (ସାର ଆଶୁତୋଷଙ୍କ ପୁତ୍ର) ପରିଷଦର ପ୍ରଥମ ଅଧ୍ୟକ୍ଷ ଥିଲେ । କୌଣସି ଧର୍ମର ବିରୋଧୀ ଏହି ଅନୁଷ୍ଠାନ ନୁହେଁ ଏବଂ ହିନ୍ଦୁମାନଙ୍କୁ ସ୍ୱଧର୍ମରେ ଜ୍ଞାନୀ, ନିଷ୍ଠାବାନ, ଉଦାରଚେତା କରିବା ଏହାର ପ୍ରଧାନ ଉଦ୍ଦେଶ୍ୟ ଜାଣି, ମୁଁ ଦାୟିତ୍ୱ ଗ୍ରହଣ କଲି । ଟ୍ରଷ୍ଟବୋର୍ଡ, ଗଭର୍ଣ୍ଣିଙ୍ଗ କାଉନିସିଲ, ଫାଉଣ୍ଡେସନ ଟ୍ରଷ୍ଟର ଅନ୍ତର୍ଭୁକ୍ତ ହୋଇ, କେନ୍ଦ୍ରୀୟ ପରିଷଦର ଉପସଭାପତି ଓ ପୂର୍ବ ଜୋନର (ବଙ୍ଗ, ବିହାର ଆସାମ, ଓଡିଶା, ମଣିପୁର, ତ୍ରିପୁରା, ନାଗାଲାଣ୍ଡ, ସିକିମ ପ୍ରଭୃତି) ସଭାପତି ହେଲି । ପରିଷଦର ଅଧିବେଶନମାନଙ୍କରେ ଦିଲ୍ଲୀ, କଲିକତା, ବମ୍ବେ, ବାରାଣସୀ, ପ୍ରଭୃତି ସ୍ଥାନରେ ଯୋଗଦେଇ ଅନେକ ଗୁରୁତର ସମସ୍ୟା ଯେ ହିନ୍ଦୁମାନଙ୍କ ପାଇଁ ନିଜ ଦେଶରେ, ସ୍ୱାଧୀନତା ପରେ ନିଜ ସରକାର ଥାଇ ରହିଛି, ତାହା ଜାଣିବାକୁ ମିଳିଲା । କେତେକ ଉଚ୍ଚାଙ୍ଗ ବ୍ୟବସାୟୀ, ଶିଳ୍ପପତି, ଧର୍ମଗୁରୁ ପରିଷଦର ସହଯୋଗୀ । ସଂସ୍କୃତ ଶିକ୍ଷାର ବ୍ୟାପକ ପ୍ରଚଳନ ପାଇଁ ପରିଷଦ କର୍ମତତ୍ପର । ଓଡିଶାକୁ ପ୍ରଥମଥର ପରିଷଦର ଅଧ୍ୟକ୍ଷ ମେବାରର ରାଣାକୁ ଅଣାଯାଇ ସମ୍ବର୍ଦ୍ଧନା ଦିଆଯିବା ଉପଲକ୍ଷେ ପଚାଶହଜାର ଟଙ୍କାରୁ ଉର୍ଦ୍ଧ୍ୱ ଚାନ୍ଦା ସଂଗୃହୀତ ହୋଇ ପରଷଦକୁ ଦିଆଯାଇଥିଲା । ଏହି କାର୍ଯ୍ୟରେ ଶ୍ରୀଯୁକ୍ତ ହରେକୃଷ୍ଣ ମହତାବ, ଶ୍ରୀଯୁକ୍ତ ରାଧାନାଥ ରଥ ପ୍ରଭୃତିଙ୍କର ଅକୁଣ୍ଠ ସହାୟତା ମିଳିଥିଲା । ପରିଷଦର କାର୍ଯ୍ୟ ବ୍ୟାପକ ଓ ଗରୁତ୍ୱପୂର୍ଣ୍ଣ । ଅଧିକରୁ ଅଧିକ ଜନ ସହଯୋଗ ଆବଶ୍ୟକ ।

୧୯୬୯ ମାର୍ଚ୍ଚ ମାସରେ ବିଶ୍ୱ ହିନ୍ଦୁଧର୍ମ ସମ୍ମିଳନୀ ପାଟନାରେ ବସିଥିଲା । ବହୁଆଡୁ ଅନେକ ବିଶିଷ୍ଟ ବ୍ୟକ୍ତି ଆସିଥିଲେ ଏବଂ ସମ୍ମିଳନୀର କାର୍ଯ୍ୟ ଅତି ସୁଚାରୁ

Digitized by srujanika@gmail.com

ରୂପେ ହୋଇଗଲା । କାଶୀ ନରେଶ ତାହାର ଅଧକ୍ଷ ଥିଲେ । ସେ ମେ ୯ ତାରିଖରେ (୧୯୬୯) ମତେ ଖଣ୍ଡିଏ ଚିଠି ଲେଖିବାରେ ମୁଁ ଟିକିଏ ଆଶ୍ଚର୍ଯ୍ୟ ବୋଧ କଲି ।

Fort Ramnagar
Varanasi
May 9, 1969

Dear Mr. Justice Mahapatra,

The recent session of Vishiba Hindu Dharma Sammilan held at patna on the last three days of the month of March could be successfully held primarily because of the valuable cooperation and sympathy which the local promoters could receive from you. As the president of the body, I give my hearty thanks to you for this zeal in the cause of Dharma and I am sure you will continue to help us in our efforts to make our body an effective forum for the Hindus residing throughout the world.

Yours sincerely
Vibhuti Narayan Singa

The Hon'ble
Mr. Justice Harihar Mahapatra
7. Sarpentine Road
Patna-1

ଧର୍ମ ନିରପେକ୍ଷ ଆମ ସମ୍ବିଧାନର ନୀତି । ତା ଅର୍ଥ ନୁହେଁ ଧର୍ମହୀନତା । ସବୁ ଧର୍ମର ଶୁଦ୍ଧ ଆଚରଣ ପ୍ରତି ସହାନୁଭୂତି ରହିବା ଓ ସେଥିରେ ନିରପେକ୍ଷ ଭାବେ ସହାୟକ ହେବାରେ ସରକାରୀ ସ୍ତରରେ କୌଣସି ଦ୍ୱିଧା ରହିବାର କଥା ନୁହେଁ । କିନ୍ତୁ କାର୍ଯ୍ୟତଃ ଦେଖାଯାଉଛି ଅଣହିନ୍ଦୁ ସଂଗଠନର ଅବାଞ୍ଛିତ କାର୍ଯ୍ୟକଳାପ ପ୍ରତି ସରକାର ନିରୁଦ୍‌ବେଗ୍ ରହୁଥିଲାବେଳେ ହିନ୍ଦୁଙ୍କର ସଂଗଠନରେ ତାଙ୍କର ପିଳିହା ଚମକି ଯାଉଛି । ଏହା ଏକ ଦୁର୍ବଳ ଆଭିମୁଖ୍ୟ । କେବଳ ହିନ୍ଦୁଧର୍ମ ନୁହେଁ, ସବୁ ଧର୍ମ ବର୍ତ୍ତମାନ, ଭାରତବର୍ଷରେ କାହିଁକି, ପୃଥିବୀର ସର୍ବତ୍ର ଆବଦ୍ଧ ରହିଛି ଅଳ୍ପ କେତେଜଣଙ୍କ ମଧ୍ୟରେ । ଧର୍ମାବଲମ୍ବୀ ଅଧିକାଂଶ ଧର୍ମ ପ୍ରତି ବୀତସ୍ପୃହ । କିଛି ପାଇବା, ଯାହା ପ୍ରାପ୍ୟ ନୁହେଁ, ଦରକାର ହେଲେ ବା କିଛି ବିପତ୍ତି ପଡିଲେ, ଭଗବାନ ମନେ

Digitized by srujanika@gmail.com

ପଡନ୍ତି, ଫୁଲ, ଫଳ, ଭୋଗ, ଅର୍ଥ ଯାଚିବା ପାଇଁ, ସତେ ଅବା ସେ ଅପେକ୍ଷା କରିଛନ୍ତି ଲାଞ୍ଚ ପାଇଁ । କେତେଦିନ ତଳେ ଲଣ୍ଡନରେ ରବିବାର ଦିନ ଗୋଟିଏ ଗୀର୍ଜାକୁ ଯାଇଥିଲି, ଦେଖିଲି ଯାଜକଙ୍କ ଛଡା ମାତ୍ର ତିନିଜଣ । ତିନିଜଣଙ୍କ ମଧ୍ୟରୁ ଅଶିତିପର ଦୁଇଜଣ ସ୍ୱାମୀ ସ୍ତ୍ରୀ, ଅନ୍ୟ ଜଣେ ଅଧିକ ବୃଦ୍ଧା । ପଚାରିବାରେ ଯାଜକ କହିଲେ, ଗିର୍ଜାକୁ ଆସିବାକୁ ଲୋକଙ୍କର ଆଉ ଆଗ୍ରହ ଦେଖାଯାଏ ନାହିଁ । ଖ୍ରୀଷ୍ଟମାସବେଳକୁ କିଛିଲୋକ ଆସନ୍ତି । କେହି ଆସନ୍ତୁ ନ ଆସନ୍ତୁ, ମୁଁ ଆସେ । ମସଜିଦ୍‌ରେ ଶୁକ୍ରବାର ଦିନ ଗହଳ ରହେ । ଆମ ମନ୍ଦିରରେ ପର୍ବଦିନ ଭିଡ ।

କଳାବିକାଶ କେନ୍ଦ୍ରକୁ ରୁକ୍ମଣି ଅରୁଣ୍ଡେଲଙ୍କର ମାନ୍ଦ୍ରାଜସ୍ଥିତ କଳାକ୍ଷେତ୍ର ପରି ଏକ ସ୍ୱତନ୍ତ୍ର ଅନୁଷ୍ଠାନ କରିବା ପ୍ରସ୍ତାବରେ ବାବୁଲାଲ ଦୋଷୀ ରାଜିହେଲେ । କେନ୍ଦ୍ରକୁ ରାଜ୍ୟ ଓ କେନ୍ଦ୍ର ସରକାରଙ୍କଠାରୁ ଅଳ୍ପ ସାମୟିକ ଆର୍ଥିକ ସାହାଯ୍ୟ ମିଳେ । ସବୁବେଳେ ଅର୍ଥର ଅନଟନ । ଶିକ୍ଷକମାନଙ୍କର ବେତନ ସ୍ୱଳ୍ପ । ଯାହା କୋଠାବାଡି ହୋଇଛି ତାହା ବାବୁଲାଲଙ୍କ ଚେଷ୍ଟାରେ ବେସରକାରୀ ଦାନଦ୍ୱାରା । ସ୍ଥିର କଲୁ ଅନ୍ୟୂନ ଦଶଲକ୍ଷ ଟଙ୍କାରେ ଗୋଟିଏ ଫାଉଣ୍ଡେସନ ଟ୍ରଷ୍ଟ କରି ପାରିଲେ, ସେଥିରୁ ମିଳିବା ସୁଧରୁ କେନ୍ଦ୍ରର ଶିକ୍ଷା ବିଭାଗ ଅଧିକ ସାର୍ଥକ ଭାବରେ ଚାଲିପାରିବ, ସରକାରଙ୍କ ଅନୁଦାନ ଉପରେ ଅପେକ୍ଷା ବା ନିର୍ଭର ନ ରଖି । ବାବୁଲାଲଙ୍କ ଚେଷ୍ଟାରେ ଓଡିଶା ବାହାରୁ ତିନିଲକ୍ଷ ମିଳିଲା । ମୁଖ୍ୟମନ୍ତ୍ରୀ ଏକଲକ୍ଷ, ବାବୁଲାଲ ପଚାଶହଜାର ଓ ମୁଁ ପଚାଶହଜାର ଦେଲୁ । ଓଡିଶାର ଜଣେ ବିଶିଷ୍ଟ ଶିଳ୍ପପତି ଏକାଧିକବାର କେନ୍ଦ୍ରର ବାର୍ଷିକ ଉତ୍ସବରେ ଏକଲକ୍ଷ ଦେବେ ବୋଲି ପ୍ରକାଶ କରିଥିଲେ ମଧ୍ୟ, ମୌଖିକ, ଲିଖିତ ଅନୁରୋଧ ସତ୍ତ୍ୱେ ତାହା ମିଳିପାରିଲା ନାହିଁ । ଏପର୍ଯ୍ୟନ୍ତ ଛଅଲକ୍ଷ ଟଙ୍କା ସଂଗୃହୀତ ହୋଇଛି । ଦଶଲକ୍ଷ ପୂରଣର ଚେଷ୍ଟା ଅଛି । ମୋ ପରି ଜଣେ ସାଧାରଣ ଅଣବ୍ୟବସାୟୀ ସ୍ୱଳ୍ପଆୟ ମଧ୍ୟବିତ୍ତ ଶ୍ରେଣୀର ଲୋକ ଅପ୍ରତ୍ୟାଶିତ ଭାବରେ ପଚାଶହଜାର ଟଙ୍କା ଦେବାରେ ବାବୁଲାଲ ଓ ଶ୍ରୀଯୁକ୍ତ ଶ୍ୟାମସୁନ୍ଦର ମିଶ୍ର (Servants of India Society ) ଅତି ମମତାପୂର୍ଣ୍ଣ ପତ୍ର ଲେଖିଥିଲେ । ବାର୍ଷିକ ଅଧିବେଶନ ରାଜ୍ୟପାଳଙ୍କ ଉପସ୍ଥିତିରେ ଶେଷ ହେବାପରେ ମୁଁ ଚେକଟି ଲଫାପାରେ ବାବୁଲାଲବାବୁଙ୍କୁ କିଛି ନ କହି ଦେଇ ଆସିଥିବାରୁ ସେ ଲଫାପାଟି ପରଦିନ ଖୋଲି ଅତି ବିହ୍ୱଳ ବୋଧ କଲେ । ସଭାରେ ପ୍ରକାଶ୍ୟରେ ବା ରାଜ୍ୟପାଳଙ୍କ ହାତରେ ନ ଦେଇଥିବାରୁ ତାଙ୍କୁ ଆଶ୍ଚର୍ଯ୍ୟ ଲାଗିଲା । ତାଙ୍କର ଓ ଅନ୍ୟମାନଙ୍କ ଦାନ ସଭାସ୍ଥଳରେ

Digitized by srujanika@gmail.com

ସମସ୍ତଙ୍କ ଅବଗତିରେ ଦିଆଯାଏ ବା ଘୋଷଣା କରାଯାଏ । ମୋର ତ ଦାନ ନ ଥିଲା, ତାହାହେଲା ମୋର ଦେୟ ।

୧୯୮୦ ମଝିରେ ପୁଣି ଥରେ ଆମେରିକା ଯିବାର ହେଲା । ରୋଟାରୀ କନଭେନସନ ଓ ରୋଟାରୀ ନିୟମ ପ୍ରଣୟନ କାଉନସିଲ ଚିକାଗୋରେ ବସିଥିଲା । କାଉନସିଲକୁ ଭାରତବର୍ଷର ଅନ୍ୟ ସ୍ଥାନରୁ ଆଉ ଛଅଜଣ ପ୍ରତିନିଧି ଯାଇଥିଲେ । ଯିବା ପୂର୍ବରୁ ସବୁ ପ୍ରତିନିଧିଙ୍କର ଏକ ବୈଠକ ଦିଲ୍ଲୀରେ ହୋଇଥିଲା । କନ୍‌ଭେନ୍‌ସନକୁ ଆହୁରି ଅନେକ ଯାଇଥିଲେ । ପୃଥିବୀର ସବୁଆଡୁ ରୋଟାରୀ ପ୍ରତିନିଧି କାଉନସିଲକୁ ଆସିଥିବାରୁ, ଅଳ୍ପ ସମୟ ମଧ୍ୟରେ ବହୁ ବିଶିଷ୍ଟ ଲୋକଙ୍କ ସଙ୍ଗେ ପରିଚୟ ଏବଂ ତହିଁ ମଧ୍ୟରୁ କେତେଜଣଙ୍କ ସଙ୍ଗେ ବନ୍ଧୁତା ହୋଇଯାଏ । କାନଉନସିଲରେ ଅନେକ ପ୍ରସ୍ତାବ ଥିଲା ବିଚାର ପାଇଁ । ଜନସେବା ଆଭିମୁଖ୍ୟରେ ସବୁ କଥାର ନିଷତ୍ତି ହୁଏ । ଯୁକ୍ତିତର୍କ ସମ୍ମାନର ସହିତ କିପରି ହୁଏ ଦେଖିବାର ବିଷୟ । ଇଂରେଜ ଛଡା ଅନ୍ୟ ଭାଷାରେ ମଧ କୁହାଯାଏ । ସେଠାରେ ଯେ ଯେଉଁ ଭାଷାରେ କହିଲେ ମଧ, ତାହା ସଙ୍ଗେ ସଙ୍ଗେ ଇଂରାଜୀ, ଜାପାନୀ, ଫ୍ରେଞ୍ଚ, ସ୍ପାନିସରେ ଅନୁଦିତ ହୋଇ କାନ ଫୋନରେ ଶୁଭୁଥାଏ । ଯାହାକୁ ଯେଉଁ ଭାଷା ଲୋଡା, ସେ ସେହି ବୋତାମ ଟିପି ରଖିଲେ, ସବୁଭାଷଣ କେବଳ ସେହି ଭାଷାରେ ତାକୁ ଶୁଭେ । ତିନିଦିନ କାଉନସିଲ ଚାଲିଲା ପ୍ରାୟ ନଅଘଣ୍ଟା କରି । ମୋ ପାଖରେ ସ୍ଥାନ ଥିଲା ଅଷ୍ଟ୍ରେଲିଆର ଜଣେ ପ୍ରତିନିଧିଙ୍କର—ବୟସ୍କ ଶିକ୍ଷକ, ମାର୍ଜିତ ରୁଚି, ଯେଉଁ ପ୍ରସ୍ତାବ ଉପରେ ବେଶି ଟଣାଟଣି ପଡେ, ମତେ ଲଗାନ୍ତି କହିବାକୁ । ସଂଖ୍ୟା ଗଣନାରେ ତାଙ୍କର ବ୍ୟୁତ୍‌ପତି ଥିଲା, କହୁଥିଲେ ତିନିଦିନ ଭିତରୁ ଯେଉଁ ପକ୍ଷରେ ମୁଁ କହିବି, ସେହି ପକ୍ଷର ପ୍ରସ୍ତାବ ଭୋଟରେ ଜିତିବ । କାକତାଳୀୟ ନ୍ୟାୟରେ କେତେଥର ତାହା ହେବାରୁ ମୁଁ ସେ କଥା କୌତୁକରେ ପ୍ରକାଶ କରିବାରୁ ସଭାସ୍ଥଳରୁ Miracle speaker ବୋଲି କେହି କଫି ବିରାମ ସମୟରେ ମତେ ଡାକିଲେ । ବନ୍ଧୁଙ୍କ ସଂଖ୍ୟାଗଣନା ଭୁଲ ହୋଇଗଲା ଗୋଟିଏ ପ୍ରଧାନ ପ୍ରସ୍ତାବ ଉପରେ । ସ୍ତ୍ରୀ ଲୋକ ରୋଟାରୀର ସଭ୍ୟ ହେବାପାଇଁ ପ୍ରସ୍ତାବ ସପକ୍ଷରେ ମୁଁ କହିଲି, କିନ୍ତୁ ଭୋଟରେ ତାହା କାଟ ଖାଇଗଲା । ଜାପାନୀ ପ୍ରତିନିଧି ବେଶି ଭୋଟ ଦେଲେ ତାହା ବିରୁଦ୍ଧରେ । ଆମେରିକାନ, ଇଉରୋପୀୟ ମଧ ତଦ୍ରୂପ । ସେ ପ୍ରସ୍ତାବର ଆଲୋଚନା ଓ ଭୋଟବେଳେ, ହଲର ଦର୍ଶକ ଅଂଶରେ ଅନେକ ରୋଟାରୀଆନଙ୍କର ସ୍ତ୍ରୀମାନେ ବସିଥାନ୍ତି ଭୋଟ ଫଳର ଅପେକ୍ଷାରେ । ସେ

Digitized by srujanika@gmail.com

ଅଧିବେଶନ ଶେଷରେ ବିରୁଦ୍ଧ ଭୋଟ ଦେଇଥିବା ସ୍ୱାମୀମାନେ ସ୍ତ୍ରୀମାନଙ୍କର ଦାମ୍ପତ୍ୟ କଳହରେ ଆପ୍ୟାୟିତ (ନାକଶାଘାତ) ହେଉଥିବା ଅନ୍ୟମାନଙ୍କ ପକ୍ଷରେ ଏକ ଆମୋଦଦାୟକ ଦୃଶ୍ୟ ଥିଲା । ଗୋରା ହେଉନ୍ତୁ, କଳା ହେଉନ୍ତୁ, ସ୍ତ୍ରୀ ସବୁଠି ସମାନ, କ୍ଷଣକେ ତୁଷ୍ଟ, କ୍ଷଣକେ ରୁଷ୍ଟ ।

କାମ ସରିଲା ପରେ ଆଉ ଦୁଇଦିନ ଅଧିକା ରହିଲି, ଓଡିଶାରୁ ଯାଇ ସିକାଗୋରେ ରହୁଥିବା କେତେଜଣ ପରିଚିତଙ୍କ ଅନୁରୋଧରେ । ମୟୂରଭଞ୍ଜର ସ୍ୱର୍ଗତ ରାମଚନ୍ଦ୍ର ଦାଶଙ୍କ (ପୁଲିସ ଆଇ.ଜି. ଥିଲେ) ପୁତ୍ର ଭବେଶ ସପରିବାର ସ୍ୱଗୃହରେ ଥାଆନ୍ତି । ତାଙ୍କ ଜାଆଁଳା ଭାଇ ପରେଶ ସେତେବେଳେ ଯାଇଥିଲେ । ତାଙ୍କ ଘରେ ଓଳିଏ ରହିଲି । ତାଙ୍କ କର୍ମସ୍ଥଳ ଓ କେତେକ ବନ୍ଧୁଙ୍କ ବାସସ୍ଥଳୀ ବୁଲି ଦେଖାଇଲେ । ଭବେଶ ଯେପରି କର୍ମତତ୍ପର, ସେପରି ଆଶାବାଦୀ । ଏକ ଜକଜକିଆ ଟାଇ ମୋ ପିନ୍ଧାସୁଟକୁ ମନାଇ ଆଣିଦେଲେ । ପରେଶ କହିଲେ, ସୁଟକୁ ମନାଇଲେ କଣ ହେବ ମନକୁ ମାନିଲେ ସିନା ହେବ । ଜକ୍‌ଜକିଆ ଟାଇ ବଦଳି, ଏକରଙ୍ଗିଆ ଟାଇଟିଏ ଆସିଲା । ସନ୍ଧ୍ୟାରେ ଗଲି ଆମ ଗାଁ ସୋମନାଥ ମିଶ୍ରଙ୍କ ପୁଅ ସୁଧାଂଶୁଙ୍କ ଘରକୁ । ମୁଁ ପୂର୍ବରୁ ଜାଣି ନ ଥିଲି ସେ ସେଠାରେ ଥିବାର । ଦେଖା କରିବାକୁ ଆସି ତାଙ୍କ ଘରକୁ ନେଲେ । ସ୍ତ୍ରୀ ଦୁଇପିଲା, ଆଶ୍ଚର୍ଯ୍ୟ ଓ ଆନନ୍ଦ ଲାଗୁଥାଏ । କାହିଁ ବିଶ୍ୱନାଥପୁର କାହିଁ ସିକାଗୋ । ବୁଝୁ, ବୁଝୁ, ସ୍ତ୍ରୀ ହେଉଛି ଲୋକରତ୍ନ କୁଞ୍ଜବିହାରୀ ଦାଶଙ୍କ ପତ୍ନୀଙ୍କ ସାନ ଭଉଣୀ । ସୁଧାଂଶୁ ବୋଉ ନୀଳ ଆମ କୁଟୁମ୍ବର ଅତି ଇଗ୍ନିକ । ମୋ ସ୍ତ୍ରୀଙ୍କର ନିଜ ପିଇସି ଝିଅ । ସୁଧାଂଶୁ ନିଜ ଚେଷ୍ଟାରେ ମଣିଷ, ନିଜ ଗୋଡରେ ବିଦେଶରେ ଠିଆ । ଅନ୍ଧାର ବର୍ଷାରାତିରେ ଦୂରବାଟ ମତେ ଘରକୁ ନେଇ, ଖୁଆଇ ପୁଣି ଆଣି ଛାଡିଲେ ହୋଟେଲରେ । ଦ୍ୱିତୀୟ ଦିନ ସିକାଗୋରେ ରହୁଥିବା ଓଡିଶାବାସୀ ଏକତ୍ର ହେଲେ ସନ୍ଧ୍ୟାରେ ଜଣକ ଘରେ । ବହୁ ଆନନ୍ଦ ମିଳିଲା ମତେ ସମସ୍ତଙ୍କୁ ଦେଖି । କିଏ ଗୀତ ଗାଇଲା ତ କିଏ ବାଜା ବଜାଇଲା; କିଏ ବାରିକେଚର କଲା ତ, କିଏ ତା ଆତ୍ମୀୟମାନଙ୍କ କଥା ପଚାରିଲା । ପୁରୀଖିରୀ କରି ବୋଧ ନ ଥିଲେ, ପ୍ରବାସୀ ଡିସ୍ ମିଶାଇଥିଲେ ପ୍ରକାର ଭେଦରେ । ସମସ୍ତେ ଥିଲେ ମୋ ପୁତ୍ର କନ୍ୟା ବୟସୀ । ଜଣେ ମତେ ଅବାକ୍ କଲେ ଖଣ୍ଡିଏ ଓଡିଆ ଲେଖା ଚିଠି ହାତକୁ ବଢ଼ାଇ । ସମ୍ବଲପୁରର ବନ୍ଧୁ ଶ୍ରଦ୍ଧାକର ସୂପକାର ତାଙ୍କ ପୁଅକୁ ଲେଖିଥିଲେ, ମୁଁ ସିକାଗୋ ଯାଉଛି; ମୋ ସାଙ୍ଗରେ ସେ ଅବଶ୍ୟ ଦେଖାକରିବ । ମୁଁ ଯିବା କଥା ତାଙ୍କୁ ଜଣାଇ

Digitized by srujanika@gmail.com

ନଥିଲି । ସେ କୁଆଡୁ ଖବର ପାଇ, ପୁଅକୁ ତାହା ଜଣାଇ ପିତୃବନ୍ଧୁଙ୍କୁ ସାକ୍ଷାତ କରିବାକୁ ଲେଖିବା କେତେ ଆତ୍ମୀୟତାର ପରିଚାୟକ, ଭାବିଲାବେଳକୁ ମୁଁ କୃତଜ୍ଞତାରେ ବୁଡିଗଲି ।

ଯାହାଙ୍କ ଘରେ ସାନ୍ଧ୍ୟ ମିଳନ ହୋଇଥିଲା; ସେ ଅନେକ ଦିନୁ ରହିଲେଣି ସେଠାରେ । ଘର ସୁସଜ୍ଜିତ ଡୁପ୍ଲେକ୍ସ ଟାଇପର । ଖାଇବା ପରସା ପୂର୍ବରୁ ସମସ୍ତଙ୍କର ଅଧାଖିଆ ସରିଥିଲା, ରୋଷାଇ ଘରୁ ମଝିରେ ମଝିରେ ଆଣି । ରାନ୍ଧୁଣୀଙ୍କଠାରୁ ଚାଖୁଣୀ ଥିଲେ ଅଧିକ । ଚାଖିବାରେ ଯାହାକୁ ଯାହା ସୁଆଦ ଲାଗେ, ସେ ସେଥିରୁ କିଛି କିଛି ସମସ୍ତଙ୍କୁ ଚଖାଇ ଦିଏ । ଘରର ଗୃହିଣୀ କିଚେନ୍ ଲକ୍ କରିଦେଲେ ଭିତରୁ, ସଙ୍ଗିନୀମାନଙ୍କ ଉତ୍ପାତରୁ ରକ୍ଷା ପାଇଁ । କିନ୍ତୁ ତାଙ୍କ ସ୍ୱାମୀଙ୍କଠାରୁ ଜଣେ ବୁଦ୍ଧିମତୀ ଦୋହରା ଚାବି ନେଇ ଗୃହିଣୀଙ୍କୁ କାବୁ କରିଦେଲେ । ହାରଜିତ ଚାଲିଥାଏ ନାନା ପ୍ରକାରେ । ମୁଁ ଲକ୍ଷ୍ୟ କଲି ସ୍ୱଦେଶ ଟାଣ କେତେ ବେଶି ବିଦେଶରେ । ଏବେ ଆମେରିକାରେ ଏକ ଦୃଢ଼ ସଂଗଠନ ଠିଆ ହେଲାଣି । ପର୍ବପର୍ବାଣୀରେ ଆଞ୍ଚଳିକ ମିଳନ ସାଙ୍ଗକୁ, ରାଷ୍ଟ୍ରସ୍ତରରେ ବାର୍ଷିକ ମିଳନକୁ ସମସ୍ତେ ଅପେକ୍ଷା ରଖୁଛନ୍ତି । ନୃତ୍ୟଶିଳ୍ପୀ, ସଂଗୀତ ଶିଳ୍ପୀଙ୍କୁ ଓଡିଶାରୁ ଡକାଇ କଳା କୌଶଳ ଦେଖୁଛନ୍ତି; ଶୁଣୁଛନ୍ତି । ଜଗନ୍ନାଥ ସଂସ୍କୃତି ଉପରେ ପ୍ରବଚନର ଆୟୋଜନ କରୁଛନ୍ତି ।

ମୋ ଦେଖିବାରେ, କେବଳ ଓଡିଆ ନୁହନ୍ତି, ସବୁ ଭାରତୀୟ ବିଦେଶ ବାସୀଙ୍କର ଏକ ସଂସ୍କାରଗତ ସମସ୍ୟା କ୍ରମଶଃ ଗୁରୁତର ଆକାର ଧାରଣ କରୁଛି । ସେମାନଙ୍କ ପିଲାମାନେ ସ୍ୱଦେଶ-ଅଭିମାନୀ ନୁହନ୍ତି । ବାପ, ମା'ଦେଶକୁ ଆସିଲେ, ସେମାନେ ଆସୁଛନ୍ତି ବାଧ ବାଧକତାରେ ପନ୍ଦର ଷୋହଳ ବର୍ଷ ବୟସ ଯାଏ । ତା ପରେ ଆରମ୍ଭ ହେଉଛି ପ୍ରତିରୋଧ । ବାସିନ୍ଦା ବା ନାଗରିକ ପରମିଟ୍ ପାଇବା ପରେ, ସ୍ୱଦେଶର ଆକର୍ଷଣ ବାପମାନଙ୍କର ରହୁଛି ସମ୍ପତ୍ତି ବା ବୃହତ୍ତର ପରିବାରକୁ ନେଇ । ପିଲାଙ୍କର ତାହା ନାହିଁ । ସ୍ୱଦେଶ ତାଙ୍କ ଚକ୍ଷୁରେ ବିଦେଶ । ସ୍ୱଦେଶର ଧାର୍ମିକ, ସାଂସ୍କୃତିକ ପରଂପରା ସଙ୍ଗେ ସେମାନଙ୍କର ସଂଯୋଗର ଅଭାବରୁ, ପିଲାମାନେ ସେଥିରୁ ବିଚ୍ୟୁତ ହୋଇ ଯାଉଛନ୍ତି । ତରୁଣ ବୟସରେ ସେମାନେ ଉପଲବ୍ଧି କରିପାରୁ ନାହାନ୍ତି ଯେ ଅର୍ଥନୈତିକ ଚାପରୁ ବହିରାଗତମାନଙ୍କ ପ୍ରତି ମୈତ୍ରୀଭାବର ଅଭାବ ଅଧିକରୁ ଅଧିକ ହେଉଛି ଏବଂ ହେବ ଏବଂ ଭବିଷ୍ୟତରେ ତାହା ସେମାନଙ୍କ ପକ୍ଷରେ ଏକ ପ୍ରତିବନ୍ଧକ ହେବ । ଅତି ପ୍ରତିଭାଶାଳୀ ବା ପ୍ରଭାବଶାଳୀ

Digitized by srujanika@gmail.com

ଜଣେ ଅଧେ ତାହା ଅତିକ୍ରମ କରି ପାରନ୍ତି, କିନ୍ତୁ ସାଧାରଣତଃ ଅନ୍ୟମାନେ କାର୍ଯ୍ୟତଃ ଏକଘରିଆ ପରି ରହିଯିବେ । ଜଣେ ଶିଖବନ୍ଧୁ ଆମେରିକାରେ ଦକ୍ଷ ଚିକିତ୍ସକ, ରୋଜଗାର ଭଲ୍ । ଘର କରିଛନ୍ତି ବିସ୍ତୃତ ଜମି ଉପରେ । କହିଲେ, ପୁଅ ଝିଅଙ୍କ ପାଇଁ ଭାରତରେ ପାତ୍ର, ପାତ୍ରୀ, ଖୋଜୁଛନ୍ତି । କାରଣ ପଚାରିଲି । ଉତ୍ତର ହେଲା, ଆମେରିକୀୟ ବିବାହ କଲେ ସେମାନେ ଏ କୁଳ ହେବେ ନାହିଁ କି ସେ କୁଳ ହେବେନାହିଁ । ତାଙ୍କ ପିଲାମାନେ କାଳକାଳକୁ ବିଛିନ୍ନ ହୋଇଯିବେ ମୂଳ ପିଣ୍ଡରୁ । ସେହି ଭୟରେ ଶିଖମାନେ ତାଙ୍କର ପିଲାମାନଙ୍କର ଦଶବର୍ଷ ବୟସରୁ ପ୍ରତିବର୍ଷ ଛଅ ସପ୍ତାହ (ଅନ୍ତତଃ ପକ୍ଷେ ଏକମାସ) ପାଇଁ ପଞ୍ଜାବରେ ପୂର୍ବରୁ ସ୍ଥିରୀକୃତ ସ୍ଥାନରେ ଶିବିର ସ୍ଥାପନ କରି, କୁଳାଚାର, ଧର୍ମାଚାର ଶିଖାଉଛନ୍ତି । ସମସ୍ୟାର ଗୁରୁତ୍ୱ ଏଥିରୁ ଜଣା ପଡିବ ।

ସିକାଗୋରୁ ଫେରିଲି ଲଣ୍ଡନ । ଏଥର ଜଣେ ଇଂରେଜ ବନ୍ଧୁଙ୍କ ସଙ୍ଗେ ଦେଖାହେଲା । ଅନେକ ବର୍ଷ ସେ କଲିକତାରେ ଭୂସମ୍ପତ୍ତିର କାରବାର ଓ ପରିଚାଳନା କମ୍ପାନୀରେ କାମ କରି ଅବସର ନେଇ ନିଜ ଦେଶକୁ ଫେରି ସସ୍ତ୍ରୀକ ରହିଛନ୍ତି ନିଜ ଘରେ । ଗୋଟିଏ ପୁତ୍ର, ସେ ରହେ ଅନ୍ୟତ୍ର  ନିଜ ପରିବାରକୁ ନେଇ । କଲିକତାରେ ମୋର ପରିଚୟ ଥିଲା ତାଙ୍କ ସାଙ୍ଗେ । ମୁଁ ଯିବା ଖବର ପାଇ ଆସିଥିଲେ । ଦେଖିଲି ଆନନ୍ଦରେ ଗଦ୍ ଗଦ୍ । କହିଲେ, ୬୫ ବର୍ଷ ପୂରିଯିବାରୁ (Senior citizen) ବୟସ୍କ ନାଗରିକ କାର୍ଡ ପାଇଛନ୍ତି ସେ ଓ ତାଙ୍କ ପତ୍ନୀ । ତା'ର ଅର୍ଥ, ଟ୍ରେନ୍‌ରେ, ବସରେ, ସିନେମାରେ ଏବଂ ଆହୁରି ଅନେକ ବିଷୟରେ ଅଳ୍ପ ଦାମ ଲାଗିବ । କାପିଟାଲ ଗେନ୍ ଟ୍ୟାକ୍‌ସରୁ ଛାଡ ପାଇବେ, ଇତ୍ୟାଦି ଇତ୍ୟାଦି ଅନେକ ରିହାତି ମିଳିବ । ଚିକିତ୍ସା ଖର୍ଚ୍ଚ ଛାଡ । ବ୍ରିଟେନରେ ବର୍ତ୍ତମାନ ୬୫ ବର୍ଷରୁ ଉର୍ଦ୍ଧ୍ୱ ଲୋକ, ସମୂହ ଲୋକ ସଂଖ୍ୟାର ପାଞ୍ଚଭାଗରୁ ଭାଗେ । ସେମାନଙ୍କର ନିରାପତ୍ତା, ସ୍ୱାଚ୍ଛନ୍ଦ୍ୟ, ସ୍ୱାସ୍ଥ୍ୟ, ଆବାସ ପ୍ରଭୃତି ପାଇଁ ସରକାରୀ ଓ ବେସରକାରୀ ସ୍ତରରେ  ବହୁ ଆଲୋଡନ ଓ ବ୍ୟବସ୍ଥା ଚାଲିଛି । ତଥ୍ୟ ସଂଗ୍ରହରୁ ଜଣାଯାଇଛି, ରହିବା ଘରମାନଙ୍କର ସାତ ଭାଗରୁ ଭାଗେ ସଂଖ୍ୟାରେ ଜଣେ ବୃଦ୍ଧ ବା ବୃଦ୍ଧା ଏକୁଟିଆ ବାସ କରୁଛନ୍ତି । ଦଶଲକ୍ଷ ବୃଦ୍ଧ ବା ବୃଦ୍ଧାଙ୍କ  ପାଖକୁ ନିଶ୍ଚିତ ଭାବରେ କିଏ ଆସିବାର ନାହିଁ । ପାଞ୍ଚଲକ୍ଷ ଏକାବେଳେ ଆତ୍ମୀୟହୀନ । ଏକଲକ୍ଷ ଅଠାନବେ ହଜାର ବୃଦ୍ଧ ବୃଦ୍ଧା ବିନା ସାହାଯ୍ୟରେ ବିଛଣାକୁ ଯିବା ଆସିବା ପାଇଁ ଅସମର୍ଥ । ଦଶଲକ୍ଷ ଛପନ ହଜାର ଅନ୍ୟର ସାହାଯ୍ୟ ବିନା ଚାଲି ପାରନ୍ତି ନାହିଁ ।

Digitized by srujanika@gmail.com

ଏ ପ୍ରକାର ଜରାଗ୍ରସ୍ତ ଓ ଅପେକ୍ଷାକୃତ ସମକକ୍ଷ ବୃଦ୍ଧ ବ୍ୟକ୍ତିମାନଙ୍କ ସହାୟତା ପାଇଁ ଓଲଡ୍‌ଡ ପିପଲ ହୋମ ବ୍ୟତୀତ ଅନ୍ୟ କେତେକ ବ୍ୟବସ୍ଥା କରାଯାଇଛି । ତାଙ୍କପାଇଁ ସ୍ୱତନ୍ତ୍ରଭାବେ ଦୁଇଶହ ଏକଚାଳିଶଟି ମିନିବସ ଚାଲେ, ନିର୍ଦ୍ଧାରିତ ସମୟରେ ଓ ସ୍ଥାନରୁ । ସେଥିରେ ସେମାନେ ଦୋକାନ, ହସ୍‌ପିଟାଲ, ଲାଇବ୍ରେରୀ, ସିନେମା, ପିକ୍‌ନିକ୍ କିମ୍ବା ଖାଲି ବୁଲିବାକୁ ଯାଇ ପାରନ୍ତି । ଅନ୍ୟ କେହି ଯାତ୍ରୀ ସେଥିରେ ଯାଆନ୍ତି ନାହିଁ । ବସରେ ସେମାନଙ୍କୁ ଦେଖାଶୁଣା କରିବା ପାଇଁ ଲୋକ ଥାଆନ୍ତି । ବୃଦ୍ଧ ବୟସରେ ସଙ୍ଗହୀନତା ଦୁଃଖଦାୟକ । ଏକାକୀତ୍ୱ ଯୋଗୁ ମନ ଉଦାସ ରହେ । ଦିବାରାତ୍ର ନୀରର୍ଥକ ବୋଧହୁଏ । ଏହାର ଅପନୋଦନ ନିମନ୍ତେ ଶହେ ଏକତ୍ରିଶ ଡେ ସେଣ୍ଟର ଖୋଲିଛନ୍ତି । ସେଠାକୁ ଯାଇ ସମବୟସ ଗୋଷ୍ଠୀର ଲୋକଙ୍କ ସହିତ କଥାବାର୍ତ୍ତା, ଆଳାପ ପରିଚୟ ଛଡା, ସୁଲଭ ମୂଲ୍ୟରେ ପୁଷ୍ଟିକର ସୁସ୍ୱାଦୁ ଖାଦ୍ୟପେୟର ବ୍ୟବସ୍ଥା ଅଛି । ଡେ. ହସ୍‌ପିଟାଲ ଦୁଇଟି ମଧ କାର୍ଯ୍ୟ କରୁଛି ଏମାନଙ୍କ ପାଇଁ । ବୟସାଧିକ୍ୟ ଯୋଗୁ ରୋଗ ମୁକ୍ତିପାଇଁ ଯେପରି ବେଶି ସମୟ ଲାଗେ, ରୋଗମୁକ୍ତି ପରେ ଉଠି ବସିବା ପାଇଁ ସେପରି ବିଳମ୍ବ ଘଟେ । ହସ୍‌ପିଟାଲରେ ରୋଗମୁକ୍ତି ପରେ ରହିବା ସମ୍ଭବ ନୁହେଁ, ଅଥଚ ଘରେ ଏକୁଟିଆ ଯାଇ ରହିବା କଷ୍ଟକର । ଡେ ହସ୍‌ପିଟାଲରେ ସେବା, ଶୁଶ୍ରୁଷା, ପଥ୍ୟ ଯୋଗାଇ ଦିନବେଳାଟି ଡାକ୍ତର, ନର୍ସ, ମନବିଜ୍ଞାନୀଙ୍କ ତତ୍ତ୍ୱାବଧାନରେ କଟିବାର ସୁବିଧା ରହିଛି । ବୃଦ୍ଧ ବୟସରେ ଯେ ଏକୁଟିଆ ରହୁଛି, କିଛି ଅଘଟନ ଘଟିଲେ, ବାହାରେ କେହି ଜାଣିବା ସମ୍ଭବପର ନୁହେଁ । ଆମ ସମାଜରେ ଲୋକଙ୍କର ଯେପରି ଯାଆସ, ସେଠାରେ ତ ତାହା ନାହିଁ । ଯେ ଯାହା ଧନ୍ଦାରେ ବ୍ୟସ୍ତ । ପ୍ରାଇଭେସି ରଖୁ ରଖୁ ଡିପ୍ରାଇଭେସନ୍‌ରେ ପହଞ୍ଚିଲେଣି । ଅଟୋମେଟିକ୍ ଆଲାରାମ ଖଞ୍ଜିଛନ୍ତି ପାଞ୍ଚଶହ ଅତି ଅଶକ୍ତ ଜରାଗ୍ରସ୍ତ ଏକୁଟିଆ ରହୁଥିବା ଲୋକଙ୍କ ଘରେ । କିଛି ଦୁର୍ଘଟନା ହେଲେ ଘଣ୍ଟା ଆପେ ଆପେ ବାଜିଉଠିବ, ବାହାର ଲୋକ କେହି ଜାଣିପାରି କିଛି ନା କିଛି ସାହାଯ୍ୟ ଦେବା ସମ୍ଭବ ହେବ । ହେଲ୍‌ପ ଦି ଏଜେଡ ନାମରେ ଏକ ସେବା ମୂଳକ ଅନୁଷ୍ଠାନ ଏପରି କେତେ କାମ କରୁଛନ୍ତି ଏବଂ ତାଙ୍କ ନିବେଦନ ପ୍ରକାଶ ପାଇଲେ, ବହୁଲୋକ ଆର୍ଥିକ ସାହାଯ୍ୟ ପଠାନ୍ତି । ମାନବିକତା କାର୍ଯ୍ୟରେ ରୂପ ନେଉଛି ଏ ଦେଶରେ । ଆମ ଦେଶରେ ଭାଷଣରେ ବା ପ୍ରଚାରରେ କେବଳ ତାହାର ସୀମାବଦ୍ଧ । ତଥାପି ଆମେ ଘୋଷିହେଉ, ନୁଖୁରା ଗର୍ବ କରୁ ଆମ ଧର୍ମର ମୂଳମନ୍ତ୍ର ସେବା, ତ୍ୟାଗ !!

Digitized by srujanika@gmail.com

ଲଣ୍ଡନରେ କିଛି ଦିନ ରହି କଟକ ଫେରିବା ପରେ ମୋର କାର୍ଯ୍ୟଧାରା ପୂର୍ବପରି ପୁଣି ଆରମ୍ଭ ହେଲା ।

ଜୀବିକା ବହୁଦିନରୁ ସରିଛି । ଜୀବନ ଅଛି ଶେଷ ପ୍ରତୀକ୍ଷାରେ । ଭଲମନ୍ଦ, ସୁଖଦୁଃଖ, ଯାହା ଆସିଛି, ତାହା ଛାଣି ହୋଇଯାଇଛି ଅନୁଭୂତିରେ । ସ୍ମୃତି ରଖିଛି ସେଥିରୁ କିଛି । ଅରଣ୍ୟରେ ସୁଗନ୍ଧ, ଦୁର୍ଗନ୍ଧ, ନିର୍ଗନ୍ଧ ଫୁଲ ଫୁଟେ । ଭିନ୍ନତା ବାରିହୁଏ କେବଳ ପବନରେ । ଅରଣ୍ୟ ପାଇଁ ସେ ସବୁ ସମାନ ଏବଂ ପୂର୍ଣ୍ଣତାର ଅଂଶବିଶେଷ । ଗଛରେ ଏକା ସମୟରେ କଅଁଳ ପତ୍ର, ପାଚିଲା ପତ୍ର ଥାଏ । ସବୁଟାକୁ ନେଇ ବୃକ୍ଷ । ମନୁଷ୍ୟ ଜୀବନ ସେହିପରି । ଛୋଟ ମାଠିଆରେ ପାଣି ପୂରିଲେ ପୂର୍ଣ୍ଣକୁମ୍ଭ । ବଡ ମାଠିଆରେ ପାଣି ପଶିଲେ, ସେ ମଧ୍ୟ ହୁଏ ପୂର୍ଣ୍ଣକୁମ୍ଭ । ପାଣିର ମାପରେ ପୂର୍ଣ୍ଣତା ଆସେ ନାହିଁ, ମାଠିଆର ମାପ ଆଣେ । ଏ ମାଠିଆ ହେଉଛି ଜୀବନରେ କାର୍ଯ୍ୟର ପରିସର । କାର୍ଯ୍ୟ ସମ୍ପାଦନର ପ୍ରୟାସ ତାହାର ପୂରଣ ପାଇଁ ଲୋଡା ହୁଏ । ପରିସର ଯେତିକି ଲମ୍ବିଛି, ପୂର୍ଣ୍ଣତା ପାଇଁ ସେତିକି ପ୍ରୟାସ ଲୋଡା । ପ୍ରୟାସ ଆମ ଅଧିକାରରେ, ଫଳର ନିଅନ୍ତା ଅନ୍ୟତ୍ର ।

ଯେଉଁ କାର୍ଯ୍ୟ ଯେତେବେଳେ ହାତକୁ ଆସିଛି, ଛୋଟ ହେଉ, ବଡ ହେଉ, ଦିନକର ହେଉ କି ବର୍ଷ ବର୍ଷ ଧରି ହେଉ, ଘରେ ହେଉ ବା ବାହାରେ ହେଉ, ତାହାପାଇଁ ନିଜକୁ ପ୍ରସ୍ତୁତ କରିବା ମୋର ପ୍ରଥମ ଚେଷ୍ଟା, କାର୍ଯ୍ୟ ସମ୍ପାଦନ ପାଇଁ ସାଧ୍ୟମତ ପ୍ରୟାସ ଆନ୍ତରିକତାର ସହ କରିବା ଦ୍ୱିତୀୟ ପର୍ଯ୍ୟାୟ ରୂପେ ଗ୍ରହଣ କରି ଆସିଛି । ସେଥିରେ ମୋର ସନ୍ତୋଷ ।

Digitized by srujanika@gmail.com